

# ବ୍ରଜବିହାରୀ ରଚନାବଳୀ

ସଂକଳକ : ଡକ୍ଟର ଶରତ ଚନ୍ଦ୍ର ପ୍ରଧାନ

ଓଡ଼ିଶା ସାହିତ୍ୟ ଏକାଡେମୀ

# ବ୍ରଜବିହାରୀ ରଚନାବଳୀ

ସଂକଳନ : ଡକ୍ଟର ଶରତ ଚନ୍ଦ୍ର ପ୍ରଧାନ



ଓଡ଼ିଶା ସାହିତ୍ୟ ଏକାଡେମୀ

# ବ୍ରଜବିହାରୀ ରଚନାବଳୀ

ରଚନା : ଡକ୍ଟର ବ୍ରଜବିହାରୀ ମହାନ୍ତି

ସଂକଳନ : ଡକ୍ଟର ଶରତଚନ୍ଦ୍ର ପ୍ରଧାନ




ଓଡ଼ିଶା ସାହିତ୍ୟ ଏକାଡେମୀ

ବ୍ରଜବିହାରୀ ରଚନାବଳୀ

ସଙ୍କଳନ : ଡକ୍‌ଟର ଶରତଚନ୍ଦ୍ର ପ୍ରଧାନ

ପ୍ରକାଶକ : ଓଡ଼ିଶା ସାହିତ୍ୟ ଏକାଡେମୀ
ଭୁବନେଶ୍ୱର—୭୫୧୦୧୪

ପ୍ରକାଶକାଳ : ୧୯୮୬—୧୦୦୦ ମୁଦ୍ରଣ

ମୁଦ୍ରଣ : ସଂସାର ପ୍ରେସ
ତଳତେଲେଙ୍ଗାବଜାର, କଟକ-୯

ମୂଲ୍ୟ : ଟ ୫୩·୦୦

BRAJAVIHARI RACHANAVALI

*Compiled by* : Dr. Sarat Chandra Pradhan

*Published by* : Orissa Sahitya Akademi
Bhubaneswar—751014

*First Edition* : 1986—1000 Print

*Printed at* : Sansar Press
Tala Telenga Bazar, Cuttack-9

Price : **Rs. 53'00**

# ଅଗ୍ରଲେଖ

ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଯେଉଁ କେତେକ ପ୍ରାବନ୍ଧିକ ଓଡ଼ିଆ ପ୍ରବନ୍ଧ-ସାହିତ୍ୟକୁ ସେମାନଙ୍କ ସୁମହାନ୍ ଚିନ୍ତାଧାରାରେ ଋଦ୍ଧିମନ୍ତ ଓ ପୁଷ୍କଳ କରିଯାଇଛନ୍ତି ସେମାନଙ୍କ ମଧ୍ୟରେ ଡକ୍ଟର କୁଞ୍ଜବିହାରୀ ମହାନ୍ତି (୧୯୦୬-୧୯୫୭) ଅନ୍ୟତମ ।

ଓଡ଼ିଆ ସାହିତ୍ୟରେ ସେ ଜଣେ ବହୁବିଦ୍ୟ ସୃଜନଶୀଳ ସାରସ୍ୱତ ପ୍ରତିଭା । ତାଙ୍କ ପ୍ରବନ୍ଧର ବିଗବିଗନ୍ତ ସୁଦୂରପ୍ରସାରୀ ଓ ବୈଚିତ୍ର୍ୟମୟ । ତାଙ୍କ ରଚନାବଳୀରେ ଜୀବନର ବହୁବିଧ ଘଟଣାପ୍ରବାହ ଅତି ଆବେଗମୟ ଭାଷାରେ ପରିସ୍ଫୁଟିତ ହୋଇଛି । ଶୈଶବରୁ ନିସର୍ଗ ପ୍ରକୃତି କୋଳରେ ଲାଳିତପାଳିତ ହୋଇ ସେ ନିଜ ଜୀବନରେ ସଚ୍ଚିଦାନନ୍ଦର ଉପାସନା କରିବାକୁ ଶିଖିଥିଲେ । ସେହି ଜୀବନ-ଦର୍ଶନ ତାଙ୍କର ସମଗ୍ର ସାହିତ୍ୟକୃତିର ଛନ୍ଦେ ଛନ୍ଦେ ପ୍ରତିଫଳିତ ହୋଇ ସୃଷ୍ଟିକୁ ଚିରସୁନ୍ଦର, ଚିରଭାସ୍ୱର ଓ ମହିମାନ୍ୱିତ କରିପାରିଛି ।

ବ୍ୟକ୍ତିଗତ ଜୀବନରେ ଜଣେ ଆଦର୍ଶବାଦୀ ଆତ୍ମନିର୍ଭରଶୀଳ ଭାବରେ ସେ ସୁପରିଚିତ ଥିଲେ । କର୍ତ୍ତବ୍ୟନିଷ୍ଠା, ସତ୍ତ୍ୱସ୍ୱଭାବ ଓ କର୍ମକୁଶଳତାଦ୍ୱାରା ସେ ତାଲଚେର ଷ୍ଟେଟ୍‌ରେ ମାଜିଷ୍ଟ୍ରେଟ୍ ପଦବୀରେ ଅଧିଷ୍ଠିତ ହୋଇପାରିଥିଲେ । ସମସ୍ତ କର୍ମଜଞ୍ଜାଳ ମଧ୍ୟରେ ତାଙ୍କର ସାହିତ୍ୟ-ସାଧନା ଅବ୍ୟାହତ ଥିଲା । ଜୀବନର ଶେଷଅବସ୍ଥାରେ ମଧ୍ୟ ତାଙ୍କର ଲେଖନୀ ଥିଲା ଜୀବନ୍ତ ଓ ସୃଷ୍ଟିଶୀଳ ।

୧୯୩୫ ମସିହାରେ ପ୍ରକାଶିତ 'ଚିନ୍ତା' ଶୀର୍ଷକ ପୁସ୍ତକ ତାଙ୍କର ପ୍ରଥମ ପ୍ରବନ୍ଧ-ସଙ୍କଳନ । ଏଥିରେ ସନ୍ନିବେଶିତ ତିରିଶଟି ପ୍ରବନ୍ଧ ପ୍ରଥମେ 'ସହକାର' ସାହିତ୍ୟ-ପତ୍ରିକାର ପୃଷ୍ଠା ମଣ୍ଡନ କରିଥିଲା । ପ୍ରବନ୍ଧଗୁଡ଼ିକ ଯେପରି ଚିନ୍ତାଦ୍ୟୋତକ ସେପରି ଭାବଗର୍ଭକ ମଧ୍ୟ । ୧୯୫୭ରେ ପ୍ରକାଶିତ ତାଙ୍କର ଦ୍ୱିତୀୟ ପ୍ରବନ୍ଧ-ସଙ୍କଳନ 'ସାଧନା' ପନ୍ଦରଟି ମନୋଜ୍ଞ ପ୍ରବନ୍ଧର ଅପୂର୍ବ ସମାବେଶ । ଉନ୍ନତ ଭାବଧାରାରେ ଅନୁରଞ୍ଜିତ ଆହୁରି ଅନେକ ପ୍ରବନ୍ଧ 'ସହକାର' ଓ 'ନବଭାରତ' ପତ୍ରିକାରେ ପ୍ରକାଶ ଲାଭ କରିଛି । ଏହି ସଙ୍କଳନରେ ଚଉଷଠିଟି ପ୍ରବନ୍ଧ ଏବଂ 'ସରସୀ' ଶୀର୍ଷକ ଏକ ଗଳ୍ପ ସ୍ଥାନିତ ହୋଇଛି, ଯାହା ତାଙ୍କର ସମଗ୍ର ସାହିତ୍ୟକୃତିର ସଙ୍କଳନ ବୋଲି ଗଣ୍ୟ କରାଯାଇପାରେ ।

ଡକ୍ଟର ମହାନ୍ତିଙ୍କ ପ୍ରବନ୍ଧଗୁଡ଼ିକୁ ପ୍ରଧାନତଃ ତିନିଭାଗରେ ବିଭକ୍ତ କରାଯାଇପାରେ—ସମସ୍ୟାମୂଳକ ରଚନା, ଚିନ୍ତାମୂଳକ ରଚନା ଓ ସୌନ୍ଦର୍ଯ୍ୟଧର୍ମୀ ରଚନା । ତାଙ୍କର ପ୍ରବନ୍ଧାବଳୀ ସ୍ୱକୀୟ ମୌଳିକତା, ଗଭୀର ମନନଶୀଳତା, ତୀକ୍ଷ୍ଣ ଯୁକ୍ତିନିଷ୍ଠତା, ସୂକ୍ଷ୍ମ ଭାବାନୁଭୂତି, ସୌନ୍ଦର୍ଯ୍ୟସଚେତନତା, ସ୍ୱଦେଶପ୍ରାଣତା ଓ ଅପୂର୍ବ କଳାନୈପୁଣ୍ୟର ଉଜ୍ଜ୍ୱଳ ସ୍ୱାକ୍ଷର ବହନ କରିଛି । କାବ୍ୟ-ଧର୍ମୀ ଗଦ୍ୟଶୈଳୀ ମାର୍ଜିତ ଓ ରୁଚିସମ୍ପନ୍ନ ହେବା ସଙ୍ଗେ ସଙ୍ଗେ ଆବେଗମୟୀ, ହୃଦୟଗ୍ରାହୀ ଓ ପ୍ରାଣବନ୍ତ ହୋଇପାରିଛି । ଡକ୍ଟର ମହାନ୍ତି ଓଡ଼ିଆ ପ୍ରବନ୍ଧ-ସାହିତ୍ୟ ଇତିହାସରେ ଜଣେ ବିରଳ ପ୍ରତିଭା ; ତାଙ୍କ ଅଭିନବ ସୃଷ୍ଟିଦ୍ୱାରା ଓଡ଼ିଆ ଭାଷା ଓ ସାହିତ୍ୟର ଶ୍ରୀ ଓ ସମୃଦ୍ଧି ସାଧିତ ହୋଇପାରିଛି ।

ଡକ୍ଟର ଶରତ ଚନ୍ଦ୍ର ପ୍ରଧାନ ବହୁ କଷ୍ଟସ୍ୱୀକାରପୂର୍ବକ ଡକ୍ଟର ମହାନ୍ତିଙ୍କର ଦୁଷ୍ପ୍ରାପ୍ୟ ରଚନାଗୁଡ଼ିକୁ 'ସହକାର' ଓ 'ନବଭାରତ' ପୃଷ୍ଠାରୁ ଉଦ୍ଧାର କରି ଏହି ପୁସ୍ତକରେ ସଙ୍କଳିତ କରିଛନ୍ତି; ସେଥିପାଇଁ ସେ ଧନ୍ୟବାଦର ପାତ୍ର । ଓଡ଼ିଶା ସାହିତ୍ୟ ଏକାଡେମୀ ଏପରି ଜଣେ ପ୍ରତିଭାଧର ସାହିତ୍ୟ-ସାଧକଙ୍କ ରଚନାସମ୍ଭାରକୁ ବିଦଗ୍ଧ ପାଠକଙ୍କ ସମକ୍ଷରେ ଉପସ୍ଥାପନ କରିବାର ସୁଯୋଗ ଲାଭ କରି ନିଜକୁ ଗୌରବାନ୍ୱିତ ମନେକରୁଛି । ସୁଧୀ ପାଠକ-ସମାଜଦ୍ୱାରା ପୁସ୍ତକଟି ବିଶେଷ ଆଦୃତ ହେବ ବୋଲି ଆଶା ।

**ସୁରେନ୍ଦ୍ରନାଥ ଶତପଥୀ**
ସମ୍ପାଦକ
ଓଡ଼ିଶା ସାହିତ୍ୟ ଏକାଡେମୀ

# ସୂଚୀ

| ବିଷୟ | ପୃଷ୍ଠା |
|---|---|

| ବିଷୟ | ପୃଷ୍ଠା |
| --- | --- |
| ଦ୍ୱନ୍ଦ୍ୱର ସାଧନା | ୧୪୧ |
| ସେ ଓ ମୁଁ | ୧୪୬ |
| ସାଥୀ | ୧୪୯ |
| ପାର୍ଥକ୍ୟର ପରଖ | ୧୫୪ |
| ବାସ୍ତବତା | ୧୬୦ |
| କଳା ଓ ପ୍ରକୃତ | ୧୬୫ |
| ସୌନ୍ଦର୍ଯ୍ୟ ଓ କଳା | ୧୭୧ |
| ଜୀବନ ଓ ଆକାଂକ୍ଷା | ୧୭୬ |
| ମୁଁ ଓ କଳ୍ପ | ୧୮୧ |

୫ । **ଗଳ୍ପ**

| | |
| --- | --- |
| ସରସା | ୧୮୫ |



[illegible]
[illegible]
[illegible]
[illegible]
[illegible]

— Rabindranath —

I do not desire to forestall the [illegible] decision of the National Scheme of education. A wide-spread basic education requires teachers in arts and crafts and leaders in Science and industry, which only [illegible]-ting a university can produce.

Braja Vihari Mohanty

ବ୍ରଜବିହାରୀଙ୍କ ଓଡ଼ିଆ ଓ ଇଂରାଜୀ ହସ୍ତଲିପି

# ଗ୍ରନ୍ଥପ୍ରବେଶ

ଓଡ଼ିଆ ପ୍ରବନ୍ଧ ସାହିତ୍ୟର ଦିଗନ୍ତ ପ୍ରସାରିତ ନୁହେଁ, ସଙ୍କୁଚିତ । ଗୋଟିଏ ଜାତି, ଗୋଟିଏ ଦେଶର ପ୍ରଜ୍ଞା ଓ ମନୀଷାର ବାହନ ହେଉଛି ଏହି ବୁଦ୍ଧିଦୀପ୍ତ ସାରସ୍ୱତ ବିଭବଟି । ଓଡ଼ିଆ ପରି ଏକ ସମୃଦ୍ଧ ଭାଷା ଓ ସଂସ୍କୃତିର ପରିପ୍ରକାଶ ଓ ପ୍ରସାର ପାଇଁ ଏ ବିଭବର ସୁଷମ ବିକାଶ ଏକାନ୍ତ କାମ୍ୟ । କିନ୍ତୁ ଏଯାବତ୍ ଓଡ଼ିଆ ପ୍ରବନ୍ଧ ସାହିତ୍ୟର ଆଶାନୁରୂପ ଅଗ୍ରଗତି ଘଟିଛି ବୋଲି ମନେ ହୁଏନା । ଓଡ଼ିଆ ସାହିତ୍ୟର ଅନ୍ୟାନ୍ୟ ବିଭବ ତୁଳନାରେ ଏ ବିଭବଟି ନିଷ୍ପ୍ରଭ ଦିଶେ । ପ୍ରଜ୍ଞାଦୀପ୍ତ ମନ ଓ ବୈଜ୍ଞାନିକ ଚେତନାହିଁ ପ୍ରବନ୍ଧରଚନାର ଧରିତ୍ରୀ ଓ ଧାତ୍ରୀ । ଓଡ଼ିଆ ଜାତିର ଏ ଦୁଇଟି ବୃତ୍ତିର ଯଥାଯଥ ବିକାଶର ଅଭାବରୁ ହୁଏତ ଓଡ଼ିଆ ପ୍ରବନ୍ଧ ବିଭବ ଏପରି ବିଡ଼ମ୍ବିତ । ଓଡ଼ିଆରେ କୁଶଳୀ ପ୍ରାବନ୍ଧିକଙ୍କ ସଂଖ୍ୟା ବି ମୁଷ୍ଟିମେୟ । ଭାରତର ଅନ୍ୟାନ୍ୟ ସାହିତ୍ୟ ପରି ଓଡ଼ିଆରେ ମଧ୍ୟ ପ୍ରବନ୍ଧ ଏକ ଅର୍ବାଚୀନ ସାରସ୍ୱତ ସୃଷ୍ଟି ।

ଓଡ଼ିଆ ପ୍ରବନ୍ଧ ସାହିତ୍ୟର ଇତିବୃତ୍ତ ସୁଦୀର୍ଘ ନୁହେଁ । ଊନବିଂଶ ଶତକର ଶେଷପାଦରେ ଏହି ବିଭବଟିର ଉଦ୍ଭବ ଓ ବିକାଶ । ପ୍ରଥମେ ବାର୍ତ୍ତାବାହୀ ପ୍ରବନ୍ଧ ଓ ପରେ ପରେ ରସବାହୀ ପ୍ରବନ୍ଧର ଅବତରଣ ଏକ ଗ୍ରହଣୀୟ ବ୍ୟାପାର । ଏଥିପାଇଁ ବିଭିନ୍ନ ପତ୍ରପତ୍ରିକାର ଦାନକୁ ଅବଶ୍ୟ ଅସ୍ୱୀକାର କରିହେବ ନାହିଁ ନ ପାରେ । ତେବେ ସୃଜନାତ୍ମକ ପ୍ରବନ୍ଧ ରଚନା କ୍ଷେତ୍ରରେ ମଧୁସୂଦନ ରାଓ ହିଁ ପଥିକୃତ ଶିଳ୍ପୀ । ପରେ 'ଉତ୍କଳ ସାହିତ୍ୟ' ଓ 'ମୁକୁର' ମାଧ୍ୟମରେ ବହୁ ପ୍ରାବନ୍ଧିକଙ୍କ ଆବିର୍ଭାବ ଘଟିଛି । ଓଡ଼ିଆ ସାହିତ୍ୟର ଏହି ଅବହେଳିତ ବିଭବଟି କ୍ରମେ ପୁଷ୍ଟ ହୋଇଛି ।

ବିଂଶ ଶତକର ତୃତୀୟ ଓ ଚତୁର୍ଥ ଦଶନ୍ଧିରେ ଓଡ଼ିଆ ପ୍ରବନ୍ଧ କ୍ଷେତ୍ରରେ ଯେଉଁ କେତେଜଣ ଏକନିଷ୍ଠ ସାଧକଙ୍କ ଆବିର୍ଭାବ ଘଟିଛି, ସେମାନଙ୍କ ମଧ୍ୟରେ ବ୍ରଜବିହାରୀ ମହାନ୍ତିଙ୍କୁ ସ୍ମରଣ କରାଯାଇପାରେ । ସେ ରସବାହୀ ବହୁବିଧ ପ୍ରବନ୍ଧର ସ୍ରଷ୍ଟା । ତାଙ୍କର ଏଯାବତ୍ ଦୁଇଟି ପ୍ରବନ୍ଧ ଗ୍ରନ୍ଥ ପ୍ରକାଶିତ । ବହୁ ପ୍ରବନ୍ଧ ବିଭିନ୍ନ ପତ୍ରପତ୍ରିକାରେ ଯଦିଓ ପ୍ରକାଶିତ କିନ୍ତୁ ଏଯାଏ ସେଗୁଡ଼ିକ ଏକତ୍ର ସଂକଳିତ କିମ୍ବା ଆଲୋଚିତ ହୋଇନାହିଁ । 'ଓଡ଼ିଆ ପ୍ରବନ୍ଧ ସାହିତ୍ୟ ଓ ଡଃ ବ୍ରଜବିହାରୀ ମହାନ୍ତି' ଶୀର୍ଷକ ଆଲୋଚନାରେ ଅଧ୍ୟାପକ ଦାଶରଥି ଦାସ ବ୍ରଜବିହାରୀ ମହାନ୍ତିଙ୍କ ପ୍ରାବନ୍ଧିକ ପ୍ରତିଭାକୁ କଳନା କରିବାର ପ୍ରଚେଷ୍ଟା କରିଛନ୍ତି, କିନ୍ତୁ ତାହା ପର୍ଯ୍ୟାପ୍ତ ନୁହେଁ । ଶ୍ରୀ ଦାସ ଖେଦ ପ୍ରକାଶ କରି କହନ୍ତି—"ଆଜି ଧର୍ମ, ଦର୍ଶନ, ବିଜ୍ଞାନ, ସାହିତ୍ୟ, ଇତିହାସ, ମନସ୍ତତ୍ତ୍ୱ, ଅର୍ଥନୀତି ଓ ରାଜନୀତି ଆଦି ବହୁ ବିଷୟରେ ଓଡ଼ିଆ ଭାଷାରେ ବହୁ ପ୍ରବନ୍ଧ ଲେଖାଯାଉଥିଲାବେଳେ ସେମାନଙ୍କ ସଂଖ୍ୟା କ୍ରମଶଃ ଆହୁରି ବିରଳ ହୋଇ ଆସୁଛି । ସେହି ପ୍ରବିରଳ ସାହିତ୍ୟ-ରମ୍ୟସୃଷ୍ଟି-ପ୍ରୟାସୀ ପ୍ରାବନ୍ଧିକମାନଙ୍କ ମଧ୍ୟରେ ଡକ୍ଟର ବ୍ରଜବିହାରୀ ମହାନ୍ତି ଅନ୍ୟତମ । ସେ ବହୁବିଧ ପ୍ରବନ୍ଧଦ୍ୱାରା ଓଡ଼ିଆ ପ୍ରବନ୍ଧ-ସାହିତ୍ୟକୁ ସମୃଦ୍ଧ କରିଛନ୍ତି, ଅଥଚ ଆମେ ତାଙ୍କୁ ଏ ମଧ୍ୟରେ ଭୁଲିବସିଛୁ । ଓଡ଼ିଶାରେ ପ୍ରକୃତ ସାହିତ୍ୟିକଙ୍କ ଆୟୁଷ୍କାଳ ପ୍ରକୃତରେ ବହୁତ କମ୍ । ଆମେ ତାଙ୍କୁ ପଚିଶି ତିରିଶି ବର୍ଷରେ ଭୁଲିଯାଉ ।" (ଝଙ୍କାର ୩୨/୧, ପୃ. ୯) । ଅଧ୍ୟାପକ ଦାସଙ୍କ ଏ ଖେଦୋକ୍ତି ଭିତ୍ତିହୀନ ନୁହେଁ; ତେବେ ଯେଉଁମାନେ କାଳଜୟୀ ସାହିତ୍ୟିକ ସେମାନଙ୍କ କୃତି ଓ ତାର ଯଥାଯଥ ମୂଲ୍ୟାୟନ ନିଶ୍ଚୟ ହେବ । ନିରବଧି କାଳ ଓ ବିପୁଳାଚ ପୃଥ୍ୱୀରେ ସେହି ସାରସ୍ୱତ ସୃଷ୍ଟି ଦିନେ ନା ଦିନେ ପୁନଃ ଆବିଷ୍କୃତ ହେବ । ଆମେ ସମସାମୟିକ ବ୍ୟକ୍ତିଏ ହୁଏତ ତାର ଯଥୋଚିତ ମୂଲ୍ୟାୟନରେ ଭ୍ରାନ୍ତ କରିବା ସ୍ୱାଭାବିକ ।

ବ୍ରଜବିହାରୀ ମହାନ୍ତି ସମକାଳର ଜଣେ ବହୁ-ବିଷୟ-ଗ୍ରାହୀ ପ୍ରାବନ୍ଧିକ । ସେ ୧୯୦୨ ଖ୍ରୀଷ୍ଟାବ୍ଦ ଫେବୃୟାରୀ ମାସରେ କଟକର ସାଲେପୁର ଥାନା ଅନ୍ତର୍ଗତ ଆତୋଡ଼ା ଗ୍ରାମରେ ଭୂମିଷ୍ଠ ହୋଇଥିଲେ । ପିତା ବିନୋଦ ବିହାରୀ ମହାନ୍ତି ସ୍କୁଲ ସବଇନସ୍‌ପେକ୍ଟର ଥିଲେ । ମାତା ଶ୍ରୀମତୀ ଦେବୀ କଟକ ସଦରଥାନା ଅନ୍ତର୍ଗତ ଉତ୍ତମାପୁରର ତନୟା ଥିଲେ । ଆର୍ଥିକ ଦୁଃସ୍ଥିତି ହେତୁ ସେ ସ୍ୱାମୀ ଓ ସନ୍ତାନଙ୍କ ସହ ଉତ୍ତମାପୁରରେ ବସବାସ କରୁଥିଲେ । କିନ୍ତୁ ସମସ୍ତଙ୍କ ଭ୍ରାତୃ ବିୟୋଗ ପରେ ପିତୃ ସମ୍ପତ୍ତିର ଉତ୍ତରାଧିକାରିଣୀ ହେଲେ ଓ ତାଙ୍କର ସ୍ଥାୟୀ ବାସଭୂମି ହେଲା ଉତ୍ତମ[illegible] ଏହି ଜ[illegible] ନିସର୍ଗ ପ୍ରକୃତି-

କୋଳରେ ବ୍ରଜବିହାରୀ ଓ ତାଙ୍କର ସହୋଦରବର୍ଗ ଲାଳିତପାଳିତ ହୋଇଥିଲେ । ଅଗ୍ରଜ ବ୍ରଜବିହାରୀ ପାଟନା ବିଶ୍ୱବିଦ୍ୟାଳୟରୁ ବି. ଏ. ଓ ବି. ଏଲ୍. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଆଇନଜୀବୀ ଭାବେ ଜୀବନ ଆରମ୍ଭ କରନ୍ତି । ପର୍ଯ୍ୟାୟକ୍ରମେ ଏହି ବ୍ୟବସାୟ ପ୍ରତି ସେ ବୀତସ୍ପୃହ ହୋଇପଡ଼ନ୍ତି । ତାଳଚେର ରାଜାଙ୍କ ଆହ୍ୱାନକ୍ରମେ ସେ ମାଜିଷ୍ଟ୍ରେଟଭାବେ ଯୋଗଦେଇ ତାଳଚେରର ସଦର ଏସ. ଡି. ଓ. ପଦକୁ ଉନ୍ନୀତ ହୁଅନ୍ତି । ପରେ ଗଡ଼ଜାତ ମିଶ୍ରଣପରେ ସେ ବୀରମହାରାଜପୁରରେ ମାଜିଷ୍ଟ୍ରେଟ ଭାବେ ଅବସ୍ଥାପିତ ହୋଇ ଶେଷ ପର୍ଯ୍ୟାୟରେ ସେହି ପଦବୀରେ କଟକକୁ ସ୍ଥାନାନ୍ତରିତ ହୋଇ ଆସନ୍ତି । କିନ୍ତୁ ଚାକିରୀକାଳ ଶେଷହେବା ପୂର୍ବରୁ ସେ ଦୁରାରୋଗ୍ୟ କର୍କଟ ରୋଗରେ ଆକ୍ରାନ୍ତ ହୋଇ ୧୯୫୭ ଖ୍ରୀଷ୍ଟାବ୍ଦ ଫେବୃଆରୀ ୨୮ ତାରିଖରେ କଟକ ବଡ଼ ଡାକ୍ତରଖାନାରେ ଶେଷ ନିଃଶ୍ୱାସ ତ୍ୟାଗ କରନ୍ତି । ତାଙ୍କର ମହାପ୍ରୟାଣ ଦିନ ଥିଲା ଶିବରାତ୍ରି । ଶିବ ମନ୍ଦିରରେ ମହାଦୀପ ଉଠିଲାବେଳକୁ ଏହି ନିରଳସ ସାଧକଙ୍କର ଜୀବନଦୀପ ନିର୍ବାପିତ ହୋଇଯାଇଥିଲା । ତାଙ୍କର ଉତ୍ତର ଦାୟାଦଭାବେ ତିନି ପୁଅ, ଦୁଇ ଝିଅ ଓ ବିଧବାପତ୍ନୀ ଏବେ ବି ଅଛନ୍ତି । ଏହି ଏକନିଷ୍ଠ ପ୍ରାବନ୍ଧିକ ଜୀବନର ଶେଷଭାଗରେ ଦୁରାରୋଗ୍ୟ ରୋଗ ସହିତ ଯୁଝି ଏକ ପ୍ରକାର ଲେଖାଲେଖି ଛାଡ଼ି ଦେଇଥିଲେ । ତେବେ ଗୀତା ଅଧ୍ୟୟନ ଓ ବିଭୂନିରଜନାରେ ତ୍ରୁଟି କରୁ ନ ଥିଲେ ବୋଲି ତାଙ୍କର ଅନୁଜ ଶ୍ରୀ ଗଗନ ବିହାରୀ ମହାନ୍ତି କହନ୍ତି । ଅନୁଜଙ୍କର ଏ ମନ୍ତବ୍ୟ ତାଙ୍କ ପ୍ରବନ୍ଧଗୁଡ଼ିକ ଆଲୋଚନା କଲେ ଯଥାର୍ଥ ବୋଲି ମନେହୁଏ । ବ୍ରଜବିହାରୀଙ୍କ ବହୁ ପ୍ରବନ୍ଧରେ ଭଗବତ୍‌ବୋଧ ସହିତ ସୌନ୍ଦର୍ଯ୍ୟଚେତନାର ଯୁଗପତ୍ ପ୍ରବାହ ଲକ୍ଷିତ ହୁଏ ।

ଓଡ଼ିଆ ପ୍ରବନ୍ଧ ସାହିତ୍ୟର କ୍ରମବିକାଶରେ ପତ୍ରପତ୍ରିକାର ଦାନ ଅନସ୍ୱୀକାର୍ଯ୍ୟ । ପ୍ରବନ୍ଧ ଲେଖକେ କୌଣସି ନା କୌଣସି ପତ୍ରପତ୍ରିକା ମାଧ୍ୟମରେ ପ୍ରତିଷ୍ଠିତ ହୋଇଛନ୍ତି । ବ୍ରଜବିହାରୀ ମହାନ୍ତିଙ୍କ ପ୍ରବନ୍ଧନିଚୟର ଲାଳନଭୂମି ହେଉଛି ସହକାର । ସହକାରର ସାରସ୍ୱତ ପରିବାରରେହିଁ ବ୍ରଜବିହାରୀଙ୍କ ପ୍ରବନ୍ଧମାନଙ୍କର ଉଦ୍ଭବ ଓ ଉତ୍ତରଣ । ଲେଖକଙ୍କ ପ୍ରାବନ୍ଧିକ ମନ ଓ ମନନର ବିକାଶରେ ସହକାର କିପରି ପ୍ରମୁଖ ଭୂମିକା ଗ୍ରହଣ କରିଛି, ତାହା ରଚନା ସମ୍ଭାରର କାଳଭିତ୍ତିକ ସାରଣୀରେ ପ୍ରଦର୍ଶିତ ହୋଇଛି । ସହକାରରେ ପ୍ରକାଶିତ କେତେକ ପ୍ରବନ୍ଧାବଳୀ 'ଚୟନ' ପୁସ୍ତକରେ ସଙ୍କଳିତ ହୋଇ ଲେଖକଙ୍କୁ ପି.ଏଚ୍.ଡି. ଡିଗ୍ରୀ ଆଣିଦିଏ । ଏ ସମ୍ବାଦ ସହକାରର 'ଦେଶେ ବିଦେଶେ' ବିଭାଗରେ 'ଓଡ଼ିଆ ପି-ଏଚ୍. ଡି.' ଶୀର୍ଷକ ସମ୍ବାଦରେ ପରିବେଷଣ କରାଯାଏ । ''ଏ ପର୍ଯ୍ୟନ୍ତ ଓଡ଼ିଶାରେ ସାହିତ୍ୟ ରଚନାଦ୍ୱାରା କେହି ପି-ଏଚ. ଡି ଡିଗ୍ରୀ ଲାଭ କରିପାରି ନ ଥିଲେ । ଅତ୍ୟନ୍ତ ଆନନ୍ଦର ବିଷୟ ଯେ, ଆମ୍ଭମାନଙ୍କର ଶ୍ରଦ୍ଧେୟ ବନ୍ଧୁ ଶ୍ରୀଯୁକ୍ତ ବ୍ରଜବିହାରୀ ମହାନ୍ତି ବି. ଏ., ବି.ଏଲ୍ ତାଙ୍କ ପ୍ରକାଶିତ 'ଚୟନ' ଦ୍ୱାରା ଏ ପଦ ଲାଭ କରିବାକୁ ସମର୍ଥ ହୋଇଛନ୍ତି । ବ୍ରଜବିହାରୀବାବୁଙ୍କ ରଚନା ସହିତ 'ସହକାର'ର ପାଠକପାଠିକାମାନେ ସୁପରିଚିତ ଥିବେ ବୋଲି ଆଶା କରାଯାଏ । ବସ୍ତୁତଃ ଚୟନରେ ପ୍ରକାଶିତ ସମୁଦାୟ ପ୍ରବନ୍ଧ ପ୍ରଥମେ ସହକାରରେ ପ୍ରକାଶିତ ହୋଇଥିଲା । ତେଣୁ ବ୍ରଜବିହାରୀବାବୁଙ୍କ ଏହି ସମ୍ମାନ ଲାଭଦ୍ୱାରା ଆମ୍ଭେମାନେ ଗୌରବ ଲାଭ କରିବା ସଙ୍ଗେ ସଙ୍ଗେ ତାଙ୍କୁ ଆନ୍ତରିକ ଅଭିନନ୍ଦନ ଜ୍ଞାପନ କରୁଅଛୁ ।'' (ସହକାର ୧୭।୩, ଆଷାଢ଼ ୧୩୪୩, ପୃ ୨୮୫-୮୬) । ସହକାରର ଏହି ସମ୍ବାଦକୁ ଭିତ୍ତିକରି ଅଧ୍ୟାପକ ଦାସ ଏହାକୁ ଓଡ଼ିଆ ସାହିତ୍ୟରେ ପ୍ରଥମ ପି-ଏଚ୍.ଡି. ବୋଲି ଦାବୀ କରିଛନ୍ତି ।

ବ୍ରଜବିହାରୀ ଥିଲେ ନିରଳସ ସାଧକ । ସେ ପ୍ରବନ୍ଧ ରଚନା ପାଇଁ ବିଭିନ୍ନ ଉପାଦାନ ସଂଗ୍ରହ କରି ନୋଟବୁକ୍‌ମାନ ପ୍ରସ୍ତୁତ କରୁଥିଲେ ଏବଂ ତାକୁ ପ୍ରବନ୍ଧ ଲିଖନ କାଳରେ ବିନିଯୋଗ କରୁଥିଲେ । ଏହି ନୋଟ୍‌ଗୁଡ଼ିକ ସମସାମୟିକ ପତ୍ରପତ୍ରିକା ଓ ବିଭିନ୍ନ ଗ୍ରନ୍ଥରୁ ସଂଗୃହୀତ । ସେ ସାଂପ୍ରତିକ ଘଟଣା ସମ୍ପର୍କରେ ମୁଖ୍ୟତଃ ଦୈନିକ ଷ୍ଟେଟ୍‌ସମ୍ୟାନ୍ ଓ ଅମୃତବଜାର ପତ୍ରିକା ଉପରେ ନିର୍ଭର କରୁଥିଲେ । ତାଙ୍କର ପ୍ରସ୍ତୁତ ନୋଟ୍‌ଗୁଡ଼ିକ ପ୍ରବନ୍ଧ ପୃଷ୍ଠା ମଣ୍ଡନ କରିଛି । ସାଧନା ପୁସ୍ତକରେ ବିପ୍ଳବ ପ୍ରବନ୍ଧରେ ନେପୋଲିୟନଙ୍କ ମୁଖରେ ପ୍ରଦତ୍ତ ଇଂରାଜୀ ଉକ୍ତିଟି—'Napoleon—The great exponent of brute force—1800' ଶୀର୍ଷକ ରଚନାରୁ ଗୃହୀତ । ପୁଣି 'ବିପ୍ଳବ' ପ୍ରବନ୍ଧର ଫ୍ରାନ୍ସ ପ୍ରେସିଡେଣ୍ଟ M. Leburnଙ୍କ ବକ୍ତବ୍ୟଟି (ସାଧନା ପୃ ୧୩୫) ୧୧. ୧୧. ୩୯ ମସିହାରେ ପ୍ରକାଶିତ ଦୈନିକ ଷ୍ଟେଟସ୍‌ମ୍ୟାନ ପତ୍ରିକାରୁ ଉଦ୍ଧୃତ । 'ଯୁଗଧାରାରେ ଯୁବଶକ୍ତି' ପ୍ରବନ୍ଧରେ ନିହିତ ଦ୍ୱିତୀୟ ଇଂରାଜୀ ଉଦ୍ଧୃତିଟି 'Ideal of Education' ଶୀର୍ଷକରେ ଷ୍ଟେଟସ୍‌ମ୍ୟାନ ୨୭. ୧୨. ୩୯ରେ ପ୍ରକାଶ ପାଇଥିଲା ଏବଂ ପ୍ରବନ୍ଧର ଶେଷଭାଗରେ ପରିଜାଙ୍କ ଇଂରାଜୀ ବକ୍ତବ୍ୟଟି ଷ୍ଟେଟ୍‌ସମ୍ୟାନର ୬. ୧. ୪୦ ତାରିଖରେ ପ୍ରକାଶିତ ହୋଇଥିଲା । ଏ ସମସ୍ତ ଅନୁଧ୍ୟାନ

କଲେ ମନେହୁଏ ଯେ ବ୍ରଜବିହାରୀ ସମସାମୟିକ ସମସ୍ୟା ଆଧାରିତ ପ୍ରବନ୍ଧ ପ୍ରସ୍ତୁତ କଲାବେଳେ ସମକାଳୀନ ଘଟଣାପ୍ରବାହ ଓ ପତ୍ରପତ୍ରିକାର ମନ୍ତବ୍ୟକୁ ପ୍ରାସଙ୍ଗିକଭାବେ ଉପସ୍ଥାପନ କରୁଥିଲେ । ଏହା ଜିଜ୍ଞାସାପ୍ରବଣ ଚିତ୍ତ ଓ ସୁପଠ ମନର ପରିଚାୟକ ।

କବିବର ରାଧାନାଥ ରାୟ କାବ୍ୟକବିତାଟିଏ ଲେଖିବା ପୂର୍ବରୁ ଯେପରି ନିଜର ଟିପା ଖାତାଟିକୁ ଆବଶ୍ୟକସ୍ଥଳେ ବ୍ୟବହାର କରୁଥିଲେ, ବ୍ରଜବିହାରୀ ମଧ୍ୟ ସେହି ପଦ୍ଧତିକୁ ଅନୁସରଣ କରୁଥିଲେ । ଏହା ଊନବିଂଶ ଶତାବ୍ଦୀର ଇଂରେଜ ଲେଖକଙ୍କ ଏକ ଲିଖନ ବିଧି ହୋଇପଡ଼ିଥିଲା । ଏହାଦ୍ୱାରା ଐତିହାସିକ ବିବରଣୀପ୍ରଧାନ କିମ୍ବା ସମସାମୟିକ ଘଟଣାର ଯଥାଯଥ ବିବରଣଦାନ ସୁଗମ ହୋଇ ପାରୁଥିଲା । ଏତାଦୃଶ ଲିଖନବିଧିରୁ ଐତିହାସିକ ବିସ୍ତୃତଧାରାର ଉଦ୍ଭବ ହୋଇଥିଲା । ବ୍ରଜବିହାରୀ ସେହି ପ୍ରଚଳିତ ଐତିହାସିକ ଲିଖନଧାରାକୁ ସ୍ୱୀୟ ପ୍ରବନ୍ଧରଚନାର ମୁଖ୍ୟ ପଦ୍ଧତି ଭାବେ ଗ୍ରହଣ କରିନେଇଥିଲେ । ବସ୍ତୁତଃ ତାଙ୍କ ରଚିତ ପ୍ରବନ୍ଧରେ ମୁକ୍ତିନିଷ୍ଠ ଉପସ୍ଥାପନା ସହ ଠାଏ ଠାଏ ବିବରଣ-ଧର୍ମିତାକୁ ଲକ୍ଷ୍ୟ କରାଯାଇପାରେ । ତେବେ ବ୍ରଜବିହାରୀ ମୁଖ୍ୟତଃ ଜଣେ କୁଶଳୀ ପ୍ରାବନ୍ଧିକ । ତାଙ୍କ ପ୍ରବନ୍ଧରେ ଯୁଗପତ୍ଭାବରେ ଜୀବନବୋଧ, ସୌନ୍ଦର୍ଯ୍ୟଧର୍ମିତା, ଭାବାବିଷ୍ଟ ମନ ଓ ଜାଗତିକ ସମସ୍ୟାର ଜଟିଳ ବିନ୍ୟାସ ଲକ୍ଷିତ ହୁଏ । ଫଳରେ ପ୍ରବନ୍ଧଗୁଡ଼ିକର ଭାବଧର୍ମ ଅନୁସାରେ ବିଭାଗୀକରଣ କଲାବେଳେ ବହୁସମୟରେ ଦ୍ୱନ୍ଦ୍ୱର ସମ୍ମୁଖୀନ ହେବାକୁ ପଡ଼ିଥାଏ । ତଥାପି ଆଲୋଚନାର ସୌନ୍ଦର୍ଯ୍ୟ ଦୃଷ୍ଟିରୁ ବ୍ରଜବିହାରୀଙ୍କ ପ୍ରବନ୍ଧଗୁଡ଼ିକୁ ନିମ୍ନୋକ୍ତ କେତୋଟି ଶ୍ରେଣୀରେ ବିଭକ୍ତ କରାଯାଇପାରେ ।

(କ) ସମସ୍ୟାଧର୍ମୀ ପ୍ରବନ୍ଧ—ସମସ୍ୟା ନ ଥିଲେ ଜୀବନ କାହିଁ ? ସମସ୍ୟାର ବିପ୍ରତୀପତା ଜୀବନକୁ ବିଚିତ୍ର କରେ; ସମସ୍ୟାହିଁ ଜୀବନର ଜଟିଳଧର୍ମିତା ଓ ବହୁମୁଖୀ ବିଭାବକୁ ଦୀପ୍ତ କରେ । ବ୍ରଜବିହାରୀଙ୍କ ସମସ୍ୟାବହୁଳ ପ୍ରବନ୍ଧଗୁଡ଼ିକରେ ମନୁଷ୍ୟ ଜୀବନର ବିଚିତ୍ର ଦିଗନ୍ତ ପ୍ରଦର୍ଶିତ ହୋଇଛି । ତେବେ ଆଲୋଚ୍ୟ ପ୍ରବନ୍ଧଗୁଡ଼ିକରେ ମୁଖ୍ୟତଃ ଦ୍ୱିବିଧ ସମସ୍ୟା ଉତ୍ଥାପିତ ହୋଇଛି; (i) ଜାତୀୟ ସମସ୍ୟା—ଏହି ଅନୁଭାଗରେ ଜାତୀୟ ଶିକ୍ଷା, ବିଶ୍ୱବିଦ୍ୟାଳୟ ଶିକ୍ଷା, ସମର ପ୍ରସଙ୍ଗ, ଅତୀତର ଉଦ୍‌ବୋଧନ, ଯୁଗଧାରାରେ ଯୁବଶକ୍ତି, ଯୁଗର ପରିବର୍ତ୍ତନ, ଭାରତର ଜାଗରଣ, ଭାରତର ସମସ୍ୟା ଓ ହିନ୍ଦୁର ସାଧନା ପ୍ରଭୃତି ପ୍ରବନ୍ଧକୁ ଅନ୍ତର୍ଭୁକ୍ତ କରାଯାଇପାରେ । ଜାତୀୟ ସମସ୍ୟା ସମ୍ପର୍କିତ ପ୍ରବନ୍ଧଗୁଡ଼ିକରେ ଲେଖକଙ୍କର ଜାତୀୟ ସଂସ୍କୃତିବୋଧ ଓ ଦେଶପ୍ରେମର ସ୍ୱାକ୍ଷର ସୁସ୍ପଷ୍ଟ । ସ୍ୱାଧୀନତା ପ୍ରାପ୍ତି ପୂର୍ବରୁ ରଚିତ ପ୍ରବନ୍ଧରୁ ଦୃଷ୍ଟାନ୍ତଟିଏ ନିଆଯାଇପାରେ—"ନିଜର ମୁକ୍ତିପାଇଁ ଭାରତ ଅନ୍ୟଦେଶର ଅପେକ୍ଷା ରଖିବ ନାହିଁ । ତାର ସୌଭାଗ୍ୟରବି ଅସ୍ତମିତ ହୋଇଯାଇଥିଲେ ସୁଦ୍ଧା ଆଜି ପୂର୍ବଆକାଶ ଭିନ୍ନ ସୂଚନା ଦେଲାଣି; ତାର ଆତ୍ମୋନ୍ନତିପାଇଁ ସେ ଜାଗ୍ରତ ହେଲାଣି । ଅତୀତର ଆଦର୍ଶ ଲୁଚିଯାଏ ନାହିଁ; ବରଂ ଆମ୍ଭେମାନେ ତାକୁ ଭୁଲି ଯାଇଥିଲୁଁ । ସେହି ଆଦର୍ଶପ୍ରତି ଦୃଢ଼ ଲକ୍ଷ୍ୟ ରଖି ଭାରତୀୟ ତାର କର୍ମକ୍ଷେତ୍ରରେ ଅଗ୍ରସର ହେଲେ, ଜଗତ ଗୋଟାଏ ମହତ୍ ଶିକ୍ଷା ପାଇବ । ନବଯୁଗର ଆବିର୍ଭାବରେ ଭାରତ ଯୁଗପ୍ରବର୍ତ୍ତକର ସ୍ଥାନ ଅଧିକାର କରିବ । ଭାରତରୁ ଯେଉଁ ଆଲୋକ ବିକୀର୍ଣ୍ଣ ହେବ, ସେଥିରେ ଜଗତବାସୀର ଜଡ଼ତା ଭାଙ୍ଗିଯିବ ।" (ଅତୀତର ଉଦ୍‌ବୋଧନ-ଚିନ୍ତା ପୃ ୬୭) । ଉକ୍ତ ଅଂଶରେ ଭାରତର ପ୍ରାକ୍ତନ ଆଦର୍ଶ ଓ ଜୀବନବୋଧର ପୁନର୍ମୂଲ୍ୟାୟନପାଇଁ ଆହ୍ୱାନ କରିଛନ୍ତି । ଭାରତର ଅତୀତ ଜୀବନାଦର୍ଶ ଆଜି କିପରି ବିଶ୍ୱର ଜୀବନାଦର୍ଶ ହେବା ବିଧେୟ—ତାହା ପ୍ରାବନ୍ଧିକଙ୍କର ବକ୍ତବ୍ୟରେ ସ୍ପଷ୍ଟ । ବ୍ରଜବିହାରୀଙ୍କ ପ୍ରବନ୍ଧାବଳୀରେ ଭାରତର ମୌଳିକତା, ଐତିହ୍ୟବୋଧ ଓ ଜୀବନଧାରାର ଜୟଗାନ କରାଯାଇଛି । (ii) ଜାଗତିକ ସମସ୍ୟା—ସାଂପ୍ରତିକ କାଳରେ ଲେଖକ ମାନେ ବିଶ୍ୱଜୀବନ ସହ ନିଜ ଜୀବନଧାରାକୁ ଏକୀଭୂତ କରିଥାନ୍ତି । ଏହି ଯୁଗଧର୍ମରୁ ଶ୍ରୀ ମହାନ୍ତି ବିଚ୍ୟୁତ ନୁହନ୍ତି । ତାଙ୍କର ବହୁ ପ୍ରବନ୍ଧରେ ବିଶ୍ୱଜୀବନର ଗତି ସହ ସ୍ୱକୀୟ ଜୀବନ ମିଶିଯାଇଛି । ବସ୍ତୁତଃ ତାଙ୍କ ପ୍ରବନ୍ଧସମ୍ଭାରରେ ଜାଗତିକ ସମସ୍ୟାର ଚିତ୍ତାକର୍ଷକ ଶୃଙ୍ଖଳିତ କମ୍ରପ୍ରକାଶକୁ ଲକ୍ଷ୍ୟ କରାଯାଇଥାଏ । ଜାଗତିକ ସମସ୍ୟାଭିତ୍ତିକ ପ୍ରବନ୍ଧଗୁଡ଼ିକ ମଧ୍ୟରେ ମାନବ ପ୍ରଗତି, ନାରୀ ଓ ସମାଜ, ନାରୀର ସ୍ୱାତନ୍ତ୍ର୍ୟ, ପରିଣୟ ପ୍ରସ୍ତାବ, ସଂଘର୍ଷ, ଶକ୍ତିର ବିକାଶ, ହିଂସାତ୍ମକ ନୀତି, ଇତିହାସର ଧାରା, ଗୃହସ୍ଥର ଆଚରଣ, ବିପ୍ଳବ, ଯୁବକ ଓ ଜଗତ ପରି ପ୍ରବନ୍ଧକୁ ସ୍ମରଣ କରାଯାଇପାରେ । ଏଗୁଡ଼ିକରେ ମାନବୀୟ ସମସ୍ୟା ଓ ଜଗତର ବାଣୀହିଁ ଲେଖକଙ୍କର ମନକୁ ଆକୃଷ୍ଟ କରିଛି । ସେ ବିଶ୍ୱପ୍ରକୃତିର ମହାନ୍ ସ୍ରୋତରେ ବ୍ୟକ୍ତିସତ୍ତାର ନିମଜ୍ଜନକୁ ସ୍ୱାଗତ କରି କହନ୍ତି—"ଅନନ୍ତ ଜଳଧି ସଙ୍ଗେ ଯେପରି ତଟିନୀ ମିଶିଯାଏ, ସେହିପରି ବିଶ୍ୱପ୍ରକୃତିର ଅସୀମତାରେ ଜୀବନଧାରାଟି ଗୋଟାଏ ଚିରନ୍ତନ ମିଳନ ଲୋଡ଼େ ।"—(ସାଥୀ

ସହକାର ୧୬।୧୧) । ଏଣୁ ଲେଖକଙ୍କର ଜାଗତିକ ସମସ୍ୟା ଆଧାରିତ ରଚନାବଳୀରେ ଏକ ଊର୍ଦ୍ଧ୍ୱାସ୍ଥିତ ଭାବବଳୟକୁ ଲକ୍ଷ୍ୟ କରାଯାଇପାରେ ।

(ଖ) ଚିନ୍ତାଧର୍ମୀ ପ୍ରବନ୍ଧ—ଚିନ୍ତାଧର୍ମୀ ପ୍ରବନ୍ଧ ରଚନାରେ ଲେଖକଙ୍କ ପ୍ରୟାସ ଅଧିକ । ତାଙ୍କର ଚିନ୍ତାଧର୍ମୀ ପ୍ରବନ୍ଧମାନଙ୍କ ମଧ୍ୟରେ ଜୀବନଯାତ୍ରା, ଭାବୁକର ଦୃଷ୍ଟି, ଭୋଗ ଓ ତ୍ୟାଗ, କାଳିମା, ନୀତି ଓ ସମାଜ, ଆକାଙ୍କ୍ଷା ଓ ସମାଜ, ସୁଖର ସନ୍ଧାନ, ଶାନ୍ତିର ସୋପାନ, ଜ୍ଞାନ ଓ କର୍ମ, କର୍ମ ଓ ସ୍ୱାତନ୍ତ୍ର୍ୟ, ପ୍ରତୀକ୍ଷା, ମହତ୍ତ୍ୱର ଚିନ୍ତାଧାରା, ଦେଶପ୍ରୀତି, ଅବସାନ, ଅବସାଦ, ଗନ୍ତବ୍ୟପଥ, ଅବଲମ୍ବନ ଓ ନୀତି, ନବବର୍ଷ, ସମାଲୋଚନା ଓ ସ୍ୱାତନ୍ତ୍ର୍ୟ, ଅଦୃଷ୍ଟ ଓ ଧର୍ମ ପ୍ରଭୃତିର ନାମ ଉଲ୍ଲେଖଯୋଗ୍ୟ । ଏତାଦୃଶ ପ୍ରବନ୍ଧସମ୍ଭାରରେ ଲେଖକଙ୍କ ଚିନ୍ତାଚେତନା ଅମନ୍ଦଗାମିନୀ ତଟିନୀପରି ପ୍ରବହମାନା, କିନ୍ତୁ ଉଦ୍ବେଳିତ ପ୍ଲାବିନୀ ନୁହେଁ । ସବୁଠି ମାପଚୁପ୍ । ପ୍ରାବନ୍ଧିକସୁଲଭ ମନନରେ ସୁନିୟନ୍ତ୍ରିତ । ପ୍ରବନ୍ଧର ଶ୍ଳଥ ଗ୍ରଥନରେ ସେ ବିଶ୍ୱାସ କରନ୍ତି ନାହିଁ । ସେ 'ଧର୍ମ' ବିଷୟରେ କହିଲାବେଳେ ଧର୍ମର ବାହ୍ୟା ଗୃହକୁ ଦୀପ୍ତ କରନ୍ତି ନାହିଁ । ବରଂ ସେ କହନ୍ତି "ଯେଉଁ ଧର୍ମ କହେ, ତାର ପଥ ଏକମାତ୍ର ଅବଲମ୍ବନୀୟ ଏବଂ ଅନ୍ୟ ଧର୍ମ ଆଶ୍ରୟରେ ମନୁଷ୍ୟର ପତନ ଅନିବାର୍ଯ୍ୟ, ଏପରି ଧର୍ମର ପୋଷକତା କରିବା ବିବେକୀ ଲୋକର କର୍ତ୍ତବ୍ୟ ନୁହେଁ ।" (ଧର୍ମ–ସହକାର ୧୫।୭) । ଧର୍ମ ତାଙ୍କ ମତରେ ସତ୍ୟର ରୂପାନ୍ତର ମାତ୍ର । "ଆତ୍ମା ସ୍ୱପ୍ରକାଶ । ତାହାର ଧ୍ୱଂସ ନାହିଁ । ମନରେ ଯେ ଆଲୋକ ପ୍ରକାଶିତ ହୁଏ, ତାହା ମନର ନୁହେଁ । ମନ କେବଳ ଆତ୍ମାର ପ୍ରତିବିମ୍ବର କାର୍ଯ୍ୟ କରେ ।"—ଏ ଅବବୋଧରେ ବ୍ରଜବିହାରୀଙ୍କ ସନ୍ତ ଓ ଋଷିପ୍ରବଣ ଚରିତ୍ରର ପ୍ରତିଫଳନ ଦେଖିବାକୁ ମିଳେ । ସେ ଚିନ୍ତାଧର୍ମୀ ପ୍ରବନ୍ଧ ରଚନା କଲାବେଳେ ଦାର୍ଶନିକସୁଲଭ ବସ୍ତୁନିଷ୍ଠ ଭଙ୍ଗୀକୁ ଅନୁସରଣ କରିଥାନ୍ତି । ସେ 'ବାସ୍ତବତା' ସମ୍ପର୍କରେ ମନ୍ତବ୍ୟ ଦେଇ କହନ୍ତି—"ବାସ୍ତବତା ଓ ସୃଷ୍ଟିରହସ୍ୟ ପରସ୍ପର ସମ୍ପୃକ୍ତ, ଗୋଟିକର ଶ୍ରେଣୀ ପ୍ରକାଶରେ ଅନ୍ୟଟି ପ୍ରତିବିମ୍ବିତ ହୁଏ ।" (ବାସ୍ତବତା—ସହକାର ୧୭।୮) । ଫଳରେ ବାସ୍ତବତାସମ୍ପର୍କିତ ଚିନ୍ତାଧାରା ଏକ ରୂପାତୀତ ରହସ୍ୟଲୋକରେ ସାମିଲ ହୋଇଯାଏ । ଚିନ୍ତାଧର୍ମୀ ପ୍ରବନ୍ଧ ରଚନା କଲାବେଳେ ବ୍ରଜବିହାରୀ ତନ୍ମୟ ହୋଇ ପଡ଼ନ୍ତି । ତେବେ ତାଙ୍କର ତନ୍ମୟତା ଭିତରେ ମନ୍ମୟତା ଯେ ନାହିଁ, ତାହା ନୁହେଁ ।

(ଗ) ସୌନ୍ଦର୍ଯ୍ୟଧର୍ମୀ ପ୍ରବନ୍ଧ—ସୌନ୍ଦର୍ଯ୍ୟଧର୍ମୀ ପ୍ରବନ୍ଧ ରଚନାରେ ବ୍ରଜବିହାରୀଙ୍କ ଦକ୍ଷତାକୁ ଉପେକ୍ଷା କରାଯାଇ ନପାରେ । ସେ ସୌନ୍ଦର୍ଯ୍ୟଗ୍ରାହୀ ଉଦାର ବ୍ୟକ୍ତିସତ୍ତା । 'ଜଗତରେ ଯେ ଯେତେ ଉଦାର ତାର ଦୃଷ୍ଟିରେଖା ସେତେ ବିସ୍ତୃତ'—(ଗନ୍ତବ୍ୟପଥ) ଉକ୍ତିରେ ସେ ବିଶ୍ୱାସୀ । ଏଣୁ ତାଙ୍କ ରଚନାରେ ସୌନ୍ଦର୍ଯ୍ୟଧର୍ମିତାର ମୋହନ ଲୀଳା । ସେ 'ସଙ୍ଘର୍ଷ' ପ୍ରବନ୍ଧରେ ପ୍ରକୃତି ସୁନ୍ଦରୀର ଅପରୂପ ଶୋଭା ସନ୍ଦର୍ଶନ କରି କହନ୍ତି—"ପ୍ରକୃତି ଗାମ୍ଭୀର୍ଯ୍ୟ ବାରିଦ ପଟଳ ଆକାଶର ନୀଳିମା ଉପରେ ଆଧିପତ୍ୟ ବିସ୍ତାର କରି ଅଜସ୍ର ବାରି ବର୍ଷଣ କଲାବେଳେ ଯେ ଦୃଶ୍ୟ ପ୍ରକଟିତ ହୁଏ, ତାହା ପୁଣି ସନ୍ଧ୍ୟାକାଳୀନ ଅସ୍ତରାଗ ରଞ୍ଜିତ ଛିନ୍ନ ମେଘମାଳାରେ ପ୍ରକାଶ ପାଏ ନାହିଁ ।" ପୁଣି ସ୍ଥଳବିଶେଷରେ ତାଙ୍କର ସୌନ୍ଦର୍ଯ୍ୟାନୁଭବ ଋଷିସୁଲଭ ଉଦାତ୍ତଚିନ୍ତାର ପରିପୋଷକ । ତାଙ୍କ ଦୃଷ୍ଟିରେ 'ତଟିନୀର ଉଚ୍ଛ୍ୱାସ, ସଙ୍ଗୀତର ମୂର୍ଚ୍ଛନା ଓ ଭାବର ଗାମ୍ଭୀର୍ଯ୍ୟରେ ଗୋଟାଏ ସମାନତା ଅଛି ।' କବିର କଳ୍ପନା, ଭାବୁକର ଭାବନା, ଯୋଗୀର ସାଧନା ଯୁଗପତ୍ ଭାବରେ ବିକଶିତ ହୁଏ । ଏ ଭାବ ବିକାଶକାଳରେ ସମୁଦ୍ର ସଙ୍ଗମରେ ସ୍ଥିତା ତଟିନୀର ସମୀଭୂତ ହେବା ଚେତନା ଉଦେ ହୁଏ । ସୌନ୍ଦର୍ଯ୍ୟର ମୋହନ ସ୍ପର୍ଶରେ ଲେଖକଙ୍କ ଚିତ୍ତବୃତ୍ତି ହୃଷ୍ଟ ହେଲେ ମଧ୍ୟ ସେ ଆତ୍ମବିସ୍ମୃତ ହୁଅନ୍ତି ନାହିଁ । ତାଙ୍କ ପାଇଁ 'ସୌନ୍ଦର୍ଯ୍ୟ ଓ ଜ୍ଞାନର କୌଣସି ନିର୍ଦ୍ଦିଷ୍ଟ ପରିମାପ ନାହିଁ' । ନ ରହିବା ସ୍ୱାଭାବିକ । ସୌନ୍ଦର୍ଯ୍ୟ ଏକ ମୁକ୍ତନିୟନ୍ତ୍ରା ଭାବସତ୍ତା । ବସ୍ତୁତଃ ଶ୍ରୀ ମହାନ୍ତିଙ୍କ ପ୍ରବନ୍ଧାବଳୀରେ ସୌନ୍ଦର୍ଯ୍ୟର ପଟଳ ଗୋଟିଏ ପରେ ଗୋଟିଏ ଖୋଲିଯାଏ । ଏଥିପାଇଁ ରୂପର ପୂଜା, ଚିତ୍ର, କଳାବିଭବ, ପ୍ରିୟ ଦର୍ଶନ, ଉଚ୍ଛ୍ୱାସ, ମାଧୁର୍ଯ୍ୟର ସନ୍ଧାନ, ରମଣୀ ସମ୍ପର୍କ, ସେ ଓ ମୁଁ, ସାଥୀ, କଳା ଓ ପ୍ରକୃତି, ସୌନ୍ଦର୍ଯ୍ୟ ଓ କଳା, ମୁଁ ଓ କବି, ପାର୍ଥକ୍ୟର ପରୀକ୍ଷା, ବାସ୍ତବତା, ଜୀବନ ଓ ଆକାଙ୍କ୍ଷା ପରି ପ୍ରବନ୍ଧକୁ ପାଠ କରାଯାଇପାରେ । ଏ ପ୍ରବନ୍ଧଗୁଡ଼ିକରେ ଠାଏ ଠାଏ ସୌନ୍ଦର୍ଯ୍ୟର ଶରତ୍‌କାଳୀନ ଜହ୍ନରାତି ବାଦଲର ଭାସମାନ ଛବି । ଲେଖକଙ୍କ ସୌନ୍ଦର୍ଯ୍ୟବୋଧ ସହଜ କିନ୍ତୁ ବୈଚିତ୍ର୍ୟଭରା । କେତୋଟି ଉଦ୍ଧୃତ ଦେଲେ କଥାଟି ସୁସ୍ପଷ୍ଟ ହୋଇପାରିବ ।

(କ) ପ୍ରେମର ପ୍ରତିମାଟି ସୌନ୍ଦର୍ଯ୍ୟର ଉପାଦାନରେ ନିର୍ମିତ । (ପ୍ରତିମା)

(ଖ) ହୃଦୟ ଗୋଟିଏ ରୂପର ପୂଜାରେ ସମସ୍ତ ବିଶ୍ୱର ଛବିକୁ ପ୍ରକାଶିତ କରିପାରିଛି । ସୌନ୍ଦର୍ଯ୍ୟ ଓ ପ୍ରେମ ଦୁହେଁ ସାଧନାବଳରେ ଅଭିନ୍ନ ଓ ଏକ ହୋଇଯାନ୍ତି । (ପ୍ରତିମା)

(ଗ) ଥରେ ନାରୀ ହୃଦୟ ତାର ସାର୍ଥୀଟି ପାଇଁ ଉନ୍ମୁକ୍ତ ହୋଇଗଲେ, ତାକୁ ସହଜରେ ବନ୍ଦ କରି ହୁଏ ନାହିଁ । ଏହା ହେଲା ନାରୀହୃଦୟର ବିଶେଷତ୍ୱ । ସାର୍ଥୀ—ସହକାର ୧୭।୧୧ ।

(ଘ) ସୌନ୍ଦର୍ଯ୍ୟ ଜୀବନର ଲକ୍ଷ୍ୟ । ବିଶ୍ୱପ୍ରକୃତିରେ ଅନନ୍ତର ସତ୍ତା ସୌନ୍ଦର୍ଯ୍ୟର ଚିତ୍ରଣ କୌଶଳରେ ଆତ୍ମପ୍ରକାଶ କଲେ ଜୀବଜଗତ ମୋହିତ ହୁଏ । ସୌନ୍ଦର୍ଯ୍ୟ ଓ କଳା—ସହକାର ୧୮।୮

ଉଦ୍ଧୃତ ଉକ୍ତିଗୁଡ଼ିକରେ ସୌନ୍ଦର୍ଯ୍ୟଚେତନାର ନିରାଡ଼ମ୍ବର ଅଥଚ ଭାବ ଉଦ୍ରେକକାରୀ ପରିପ୍ରକାଶକୁ ଲକ୍ଷ୍ୟ କରାଯାଇ-ପାରେ । ଲେଖକଙ୍କ ସୌନ୍ଦର୍ଯ୍ୟଧର୍ମୀ ପ୍ରବନ୍ଧଗୁଡ଼ିକରେ ବେଳେ ବେଳେ କବିସୁଲଭ ବ୍ୟଞ୍ଜନା ଫୁଟେ । ତହିଁରେ ଗୀତିକବିତାର ଚେତନା ସଞ୍ଚରିଯାଏ । "ଜାତିର ମୃତ୍ୟୁଚିହ୍ନ ଅସମ୍ପତ୍ତି ମଧ୍ୟଦେଇ ଆସିଯାଏ" ପରି ବକ୍ତବ୍ୟଟିଏ ପୋଥିଏ କଥା କହିଦିଏ; କିମ୍ବା 'ଅନ୍ଧକାର ନଥିଲେ ଆଲୋକର ଆଦର ହୁଅନ୍ତା ନାହିଁ । ବୈଷମ୍ୟରୁ ବୈଚିତ୍ର୍ୟର ଉତ୍ପତ୍ତି' ପରି ଉକ୍ତିରେ ଶୁଚିଭରା କାବ୍ୟଧ୍ୱନି ଶୁଭେ । ଏଣୁ ବ୍ରଜବିହାରୀଙ୍କ ପ୍ରବନ୍ଧରେ କାବ୍ୟଧର୍ମିତା ଆବିଷ୍କାର କରାଯାଇପାରେ । କିନ୍ତୁ କାବ୍ୟଧର୍ମିତା ପ୍ରବନ୍ଧର ଶେଷକଥା ନୁହେଁ । ଜାଙ୍ଗଲିକ ସୁଷମା କାବ୍ୟକୁ ହୁଏତ ମହିମାମୟ କରିପାରେ କିନ୍ତୁ ପ୍ରବନ୍ଧ ହିଁ ବରଂ ଉଦ୍ୟାନର ସୁଷମାପରି ନିୟନ୍ତ୍ରିତ ସଂରଚନାର ଅପେକ୍ଷା ରଖେ ।

(ଘ) ଅନ୍ୟାନ୍ୟ ପ୍ରବନ୍ଧ—ଆଲୋଚ୍ୟ ତିନୋଟି ବିଭାଗରେ ବିଭକ୍ତୀଭୂତ ହୋଇ ନ ଥିବା ପ୍ରବନ୍ଧଗୁଡ଼ିକୁ ଏଥିରେ ଅନ୍ତର୍ଭୁକ୍ତ କରାଯାଇଛି । କୌଣସି ବିଭାଗଟି ସ୍ୱୟଂ ସମ୍ପୂର୍ଣ୍ଣ ନୁହେଁ । ଏ ବିଭାଗର ପ୍ରବନ୍ଧରେ ଯେ ଅନ୍ୟ ବିଭାଗର ଗୁଣାବଳୀ ଲକ୍ଷିତ ନ ହେବ, ତାହା ନୁହେଁ । କେବଳ ଅବବୋଧର ସୁଗମ ପାଇଁ ଏପରି ବିଭାଗୀକରଣ କରାଯାଇଛି । ପୂର୍ବୋକ୍ତ ତିନୋଟି ବିଭାଗରେ ଯେଉଁ ପ୍ରବନ୍ଧମାନ ଅନ୍ତର୍ଭୁକ୍ତ ହୋଇନାହିଁ, ତାକୁ 'ଅନ୍ୟାନ୍ୟ ପ୍ରବନ୍ଧ' ଶିରୋନାମାରେ ଆଲୋଚନା କରାଯାଇପାରେ । ଏ ବିଭାଗରେ ଲକ୍ଷ୍ମୀବାଈ, କର୍ମୀ ମଧୁସୂଦନପରି ଜୀବନଚରିତମୂଳକ ପ୍ରବନ୍ଧ ଅବଶ୍ୟ ଆଲୋଚନୀୟ । ଏ ପ୍ରବନ୍ଧ ଦୁଇଟିରେ ପ୍ରାବନ୍ଧିକ ଦୁଇଜଣ କୃତୀ ସନ୍ତାନଙ୍କ ପ୍ରତି ସ୍ୱୀୟ ଶ୍ରଦ୍ଧା ନିବେଦନ କରିଛନ୍ତି । 'ଲକ୍ଷ୍ମୀବାଈ' ପ୍ରବନ୍ଧରେ ଲେଖକଙ୍କ ବକ୍ତବ୍ୟ ପ୍ରଣିଧାନଯୋଗ୍ୟ । "କୋମଳତାର ପ୍ରତିମୂର୍ତ୍ତି ନାରୀ ଅଗ୍ନିର ସ୍ଫୁଲିଙ୍ଗ । ଏହି ଅଗ୍ନିକଣା ସଂଯୋଜନାରେ ଜାତୀୟ ଅନ୍ଧକାର ଚିରଦିନ ସକାଶେ ଅପସାରିତ ହୋଇପାରେ । ପ୍ରମୋଦ କାନନରେ ରମଣୀର ଅଧିଷ୍ଠାନକୁ ଭସ୍ମୀଭୂତ କରିବାପାଇଁ ଏହି ଅଗ୍ନିକଣା ବର୍ତ୍ତମାନ ଲୋଡ଼ା ।" ଏଣୁ ଲକ୍ଷ୍ମୀବାଈଙ୍କୁ ଶ୍ରଦ୍ଧାଞ୍ଜଳି ଦେଉଁ ଦେଉଁ ପ୍ରାବନ୍ଧିକ ଭାରତୀୟ ନାରୀଶକ୍ତିର ଅଭ୍ୟୁଦୟ କାମନା କରିଛନ୍ତି । ତାଙ୍କ ଦୃଷ୍ଟିରେ 'ନାରୀ ଅବସନ୍ନ ପୁରୁଷପ୍ରାଣର ଏକମାତ୍ର ଅବଲମ୍ବନ । କଠୋର କାର୍ଯ୍ୟ ସମ୍ପାଦନରେ ପୁରୁଷ ନାରୀଠାରୁ ଅଲକ୍ଷିତରେ ପ୍ରେରଣା ପାଇଥାଏ ।' ସୁସ୍ଥ ସମାଜ ପରିକଳ୍ପନାରେ ନରନାରୀର ସୁଷମ ଦ୍ୱୈତ ଭୂମିକା ଏକାନ୍ତ କାମ୍ୟ । "କଲ୍ୟାଣର ସାଧନାରେ ନରର ଦେବତ୍ୱ ଓ ନାରୀର ଦେବୀତ୍ୱ ପ୍ରକାଶ କଲେ ଜୀବନର ପୂର୍ଣ୍ଣତା ଆସେ"—ରମଣୀ ସମ୍ପର୍କ—ସହକାର ୧୩।୧ । ଏଥିପାଇଁ ନାରୀର ସ୍ୱାତନ୍ତ୍ର୍ୟ, ରମଣୀ ସମ୍ପର୍କ, ନାରୀ ଓ ସମାଜ ପରି ନାନାବିଧ ବିଷୟର ପରିକଳ୍ପନା କରାଯାଇଛି । 'କର୍ମୀ ମଧୁସୂଦନ' ପରି ପ୍ରବନ୍ଧରେ ଲେଖକଙ୍କର ଉତ୍କଳପ୍ରୀତି ପ୍ରକଟିତ । ସେ ଉତ୍କଳର ପ୍ରାଣପୁରୁଷ ମଧୁସୂଦନଙ୍କ ସ୍ମୃତିତର୍ପଣ କରୁ କରୁ କହିଥିଲେ—'ବର୍ତ୍ତମାନ ଦାସବୃତ୍ତିଜୀବୀ ଓଡ଼ିଆ ପକ୍ଷରେ ମଧୁସୂଦନଙ୍କ ଆଦର୍ଶ ଅତି ଉଚ୍ଚ' । ଏଥିରେ ପ୍ରାବନ୍ଧିକଙ୍କ ସ୍ୱଦେଶପ୍ରୀତି ସହ ଓଡ଼ିଆ ଜାତିର ହୀନମନ୍ୟତାପ୍ରତି ଆକ୍ଷେପ କରାଯାଇଛି । ଏ ରୂପେ ଆଲୋଚନା କଲେ ପ୍ରାବନ୍ଧିକଙ୍କର ଚିନ୍ତା ଚେତନାର ବିଚିତ୍ର ଦିଗନ୍ତ ପ୍ରକଟନ ପାଇଁ କୌଣସି ପ୍ରବନ୍ଧ ଉପେକ୍ଷାର ବସ୍ତୁ ହୋଇ ନ ପାରେ ।

ବ୍ରଜବିହାରୀ ବହୁବିଷୟଗ୍ରାହୀ ପ୍ରାବନ୍ଧିକ । ତାଙ୍କ ପ୍ରବନ୍ଧରେ ଇତିହାସ, ରାଜନୀତି, ସମାଜବିଜ୍ଞାନ, ଦର୍ଶନ, ସାମୟାମୟିକ ସମସ୍ୟା, ସାହିତ୍ୟ, ସଂସ୍କୃତି ଆଦି ବହୁ ବିଷୟ ଚର୍ଚ୍ଚିତ ହୋଇଛି । କିନ୍ତୁ ଲେଖକଙ୍କ ରଚନାବଳୀରେ ସଂଯୋଗକାରୀ

ଅନ୍ତର୍ନିହିତ ଯୋଗସୂତ୍ର ଲକ୍ଷଣୀୟ । Discourse on styleରେ Buffon କହନ୍ତି—"Style consists in the order and the movement which we introduce into our thought." ଆମ ଭାବବଳୟର କ୍ରମ ଓ ଗତି ତ ଶୈଳୀଦ୍ୱାରା ନିୟନ୍ତ୍ରିତ । ଏହି ଶୈଳୀ ଆମ ମନର ପ୍ରତିଛବି ଆଙ୍କେ । ଅବଶ୍ୟ ଅଧ୍ୟବସାୟବଳରେ ଆମେ ଭାଷା ଚୟନ କରୁ ଓ ଭାଷା ଉପରେ ଆମର କର୍ତ୍ତୃତ୍ୱ ଜାହିର ହୁଏ । ଏଣୁ ଲେଖକମାନେ ସ୍ୱକୀୟ ଶୈଳୀଦ୍ୱାରା ଚିହ୍ନିତ ହୁଅନ୍ତି ।

ବ୍ରଜବିହାରୀଙ୍କ ଗଦ୍ୟଶୈଳୀ ସ୍ୱଚ୍ଛ ଓ ସ୍ୱଚ୍ଛନ୍ଦ । ଏଥିରେ ସଂସ୍କୃତନିଷ୍ଠ ଗଦ୍ୟଶୈଳୀର ଭାବ କ୍ୱଚିତ୍ ଲକ୍ଷିତ ହୁଏ । ଏହା ବକ୍ତବ୍ୟଶାଣିତ, ପୁଣି ସ୍ଥଳବିଶେଷରେ ବେଶ୍ ଆବେଗଭରା । 'ମୁଁ ଓ କିନ୍ତୁ' ପରି ପ୍ରବନ୍ଧରେ ବକ୍ତବ୍ୟ ଏକାନ୍ତ ଆବେଗ-ମୁଖର । "ମୁଁ ତ ନିଜକୁ ଭୁଲିଯିବି; କିନ୍ତୁ ରଖିବ କିଏ ? ରହିବ ଗୋଟାଏ ପ୍ରକାଣ୍ଡ ଶୂନ୍ୟତା, ଶୂନ୍ୟତାର ମୂଲ୍ୟ ନାହିଁ । ଏ ତ ବଡ଼ କଠିନ କଥା, ତୃପ୍ତି ପାଇବା ଆଶାରେ ସବୁ ଗୁଡ଼ାଇବାକୁ ମନ ବଳାଇଥିଲି । କିନ୍ତୁ ଏ ପ୍ରୟାସ ମଧ୍ୟ ବୃଥା ହେଲା ।" ଏପରି ଆବେଗଧର୍ମୀ ଗଦ୍ୟଶୈଳୀ 'ସେ ଓ ମୁଁ', 'ଉଚ୍ଛ୍ୱାସ', 'କଳା ଓ ପ୍ରକୃତି' ପରି ରଚନା ମାନଙ୍କରେ ଅତୁଟ ରହିଛି ।

କାବ୍ୟଧର୍ମୀ ଗଦ୍ୟଶୈଳୀ ପ୍ରବନ୍ଧର ଦୂଷଣ ନ ହେଲେହେଁ ଭୂଷଣ ମଧ୍ୟ ନୁହେଁ । ହାରବର୍ଟ ରିଡ୍ 'ଇଂଲିଶ ପ୍ରୋଜ୍ ଷ୍ଟାଇଲ୍' ଗ୍ରନ୍ଥରେ କବିତାକୁ ସୃଜନାତ୍ମକ ଅଭିବ୍ୟକ୍ତି (Creative expression) ଓ ଗଦ୍ୟକୁ ଗଠନାତ୍ମକ ପରିପ୍ରକାଶ (Constructive expression) ବୋଲି ଅଭିହିତ କରିଛନ୍ତି । କବିତା ସତତ ସଂକ୍ଷେପନ (Process of condensation) ପ୍ରକ୍ରିୟା ହେଉଥିବାବେଳେ ଗଦ୍ୟ ବିକ୍ଷେପନ ପ୍ରକ୍ରିୟା (Process of dispersion)ର ସଂବାହକ । କବିତା ଲେଖିଲାବେଳେ ଶବ୍ଦଟି ପୁନର୍ଜନ୍ମ ନିଏ । କିନ୍ତୁ ପ୍ରବନ୍ଧରେ ସୁଲଭ ଶବ୍ଦଙ୍କ ସଂରଚନାହିଁ ଭାବପ୍ରକାଶନର ମାଧ୍ୟମ ହୋଇଥାନ୍ତି । ଏଣୁ କବିତା ଓ ଗଦ୍ୟକୃତି ଯଥାକ୍ରମେ ସମୁଦ୍ର ଓ ସ୍ଥଳଭାଗ ପରି ପ୍ରତିଭାତ ହୁଅନ୍ତି । ଗୋଟିଏ ତରଳ ଓ ତରଙ୍ଗାୟିତ ହେବା-ସ୍ଥଳେ ଅନ୍ୟଟି କଠିନ ଓ ଦନ୍ତୁରିତ ପରି ପ୍ରତୀତ ହୁଏ । ଏଣୁ ସମୁଦ୍ରର ଉପରିଭାଗ ପରି କବିତା ଲୀଳାଚଞ୍ଚଳ । ଏହା ବହୁ ଭାବ ବହୁ ବ୍ୟଞ୍ଜନାକୁ ବ୍ୟକ୍ତ କରି ବସେ । କିନ୍ତୁ ଗଦ୍ୟକୃତିରେ ଶବ୍ଦର ଯାଦୁଛକିକ ଲୀଳା । ଗଦ୍ୟ ରଚନାରେ ଶବ୍ଦଗୁଡ଼ିକ ସ୍ୱୀକୃତ । ସେମାନେ ସର୍ବଦା ଲେଖକର ହାତପାହାନ୍ତାରେ ପ୍ରସ୍ତୁତ ହୋଇ ରହିଥାନ୍ତି । ଏଣୁ ଗଦ୍ୟକୃତିଟିଏ କାବ୍ୟଧର୍ମୀ ହେଲେ ବେଳେବେଳେ ଭାବସଂବାହୀ ହେବାର ପ୍ରତିବନ୍ଧକ ଯେ ନାହିଁ, ତାହା ନୁହେଁ । ଏ ଦୃଷ୍ଟିରୁ ବିଚାର କଲେ ବ୍ରଜବିହାରୀ ମୁଖ୍ୟତଃ ଜଣେ ସଚେତନ ଗଦ୍ୟ ଶିଳ୍ପୀ । ତାଙ୍କର ଗଦ୍ୟସମ୍ଭାରରେ କାବ୍ୟଧର୍ମିତାର ବାହୁଲ୍ୟ ନାହିଁ । ସେ ଋଜୁ ଓ ଶାଣିତ ଗଦ୍ୟ ସୃଷ୍ଟିରେ ପ୍ରୟାସୀ ।

ବ୍ରଜବିହାରୀଙ୍କ ପ୍ରବନ୍ଧର ଶବ୍ଦସମ୍ଭାର ବେଶ ଭାବବାହୀ । ସେ ଅଚଳନ୍ତି ଶବ୍ଦସମ୍ଭାର ପ୍ରତି ଆଗ୍ରହୀ ନୁହଁନ୍ତି । ଶବ୍ଦର ସହଜ ବିନ୍ୟାସରେ ସଚେତନ । ଗଦ୍ୟସୃଷ୍ଟିପାଇଁ ଶବ୍ଦର ଇତିହାସ ଲୋଡ଼ନ୍ତି ନାହିଁ । ଚଳନ୍ତି ଶବ୍ଦମାନେହିଁ ତାଙ୍କ ପ୍ରବନ୍ଧମାନଙ୍କର ପ୍ରାଣଭୂମି । "ସୌନ୍ଦର୍ଯ୍ୟ ଓ ପ୍ରେମର ଅନୁଭୂତି ପରସ୍ପରସାପେକ୍ଷ । ସୌନ୍ଦର୍ଯ୍ୟଜ୍ଞାନର ଅଳ୍ପତାରେ ପ୍ରେମର ସହଜ ବିକାଶ ହୁଏ ନାହିଁ ।" (ପାର୍ଥକ୍ୟର ପରଖ—ସହକାର ୧୬୭)—ପରି ବଚନିକାରେ ଶବ୍ଦମାନଙ୍କର ଯାଦୁଛକିକ ଖେଳ ନାହିଁ । ଗଦ୍ୟକୃତିର କଳାଗତ ଅଭିବ୍ୟକ୍ତି ସହଜ ଓ ଭାବାନୁସାରୀ ହେବା ବିଧେୟ । କଳାର ପରିପୂର୍ଣ୍ଣତା ସମ୍ପର୍କରେ ମନ୍ତବ୍ୟ ଦେବାକୁ ଯାଇ ପ୍ରାବନ୍ଧିକ କହନ୍ତି—"କିନ୍ତୁ କଳା ପୂର୍ଣ୍ଣତା ପାଏ କେତେବେଳେ ? ମନୁଷ୍ୟ ତାକୁ ପୂର୍ଣ୍ଣପ୍ରାଣରେ ଗ୍ରହଣ କରେ କେତେବେଳେ ? ଯେତେବେଳେ କଳା ନିଜର ବାସ୍ତବ ସ୍ୱରୂପକୁ ଅବଗୁଣ୍ଠନ ମଧ୍ୟରେ ଆବଦ୍ଧ ରଖି କହେ—'ମୁଁ କଳା ନୁହେଁ—ମୁଁ ବାସ୍ତବ ଜିନିଷ', ସେତେବେଳେ ଯାଇ ମନୁଷ୍ୟ ତାକୁ ପାଇବାକୁ ଲାଳାୟିତ ହୋଇଉଠେ"—(କଳା ଓ ପ୍ରକୃତି ସହକାର ୨୯୮) । ଏଣୁ ଗଦ୍ୟଶିଳ୍ପୀମାନେ କଳାର ବାସ୍ତବପକ୍ଷର ସମର୍ଥକ । ଶ୍ରୀ ମହାନ୍ତିଙ୍କ ବକ୍ତବ୍ୟରେ ତାହାହିଁ ଫୁଟିଛି ।

ଗୁଣ ପ୍ରକାଶକ ଶବ୍ଦ (epithet)ର ଅବାଧ ପ୍ରୟୋଗ ଏକ ପରିଣତ ସାହିତ୍ୟକୃତିରେହିଁ ସମ୍ଭବ । ଏହା ପୁଣି ଉନ୍ନତ ରୁଚିବୋଧ, ବିକଶିତ ଚେତନା ଓ ବିଶ୍ଳେଷଣାତ୍ମକ ମନର ପ୍ରକାଶକ । ବ୍ରଜବିହାରୀଙ୍କ ଗଦ୍ୟସମ୍ଭାରରେ ଏତାଦୃଶ ଗୁଣବାଚୀ ଶବ୍ଦସମ୍ଭାରର ଅଭାବ ନାହିଁ । 'କ୍ୱଚିତ୍ **ରୂପହୀନ** ସୌନ୍ଦର୍ଯ୍ୟ, ମାନବପ୍ରାଣକୁ ଆଲୋଡ଼ନ କରିଥାଏ'—(ରୂପର ପୂଜା) ଅଥବା '**ଭୁଲମନ** ସହଜରେ ତାକୁ ଦେଖିପାରେ ନାହିଁ' (ଉଚ୍ଛ୍ୱାସ) ତୁଲ୍ୟ ବାକ୍ୟରେ ଗୁଣବାଚୀ ଶବ୍ଦ ବା ବିଶେଷଣ ପ୍ରୟୋଗକୁ ଲକ୍ଷ୍ୟ କରିଯାଇପାରେ ।

ପୂର୍ବରୁ କୁହାଯାଇଛି ବ୍ରଜବନ୍ଧୁଙ୍କ ସ୍ୱଚ୍ଛ ଓ ସ୍ୱଚ୍ଛନ୍ଦ ଗଦ୍ୟଶୈଳୀରେ ବଶମ୍ବଦୀ । ସ୍ୱୀୟ ବକ୍ତବ୍ୟକୁ ଶାଣିତ ଓ ବୋଧଗମ୍ୟ ବା ପ୍ରାଞ୍ଜଳ କରିବାପାଇଁ ସ୍ଥଳବିଶେଷରେ ଉପମାଟିଏ, ରୂପକଟିଏ କିମ୍ବା ଚିତ୍ରକଳ୍ପଟିଏ ବ୍ୟବହାର କରିଥାନ୍ତି । ଶ୍ରୀ ମହାନ୍ତିଙ୍କ ରୂପକ(ମେଟାଫର)ଗୁଡ଼ିକ ଅଧିକାଂଶ ସ୍ଥଳରେ ବକ୍ତବ୍ୟକୁ ବିଭୂଷିତ (decorative) ନ କରି ଦୀପ୍ତ (illuminative) କରେ । (କ) ଜଗତଟା ଗୋଟାଏ ରୂପର ହାଟ—ରୂପର ପୂଜା । (ଖ) କାମିନୀ କିମ୍ବା କାଞ୍ଚନର ଆଗ୍ନି ଦାମିନୀ ପରି ଝଟକି ଉଠେ—ଉଚ୍ଛ୍ୱାସ ।(ଗ) ରଜନୀର ଶେଷ ପର୍ଦ୍ଦାଟି ଉଷା ଆବିର୍ଭାବରେ ଉଠିଗଲା ପରି ଜୀବନର ଯାବତୀୟ ଗ୍ଳାନି ହୃଦୟର ଏହି ଅମଳ ଉଚ୍ଛ୍ୱାସରେ ଦୂର ହୋଇଯାଏ—ଉଚ୍ଛ୍ୱାସ । ଏହି ତିନୋଟି ଦୃଷ୍ଟାନ୍ତକୁ ଦୃକ୍‌ପାତ କଲେ ମେଟାଫରଗୁଡ଼ିକ ବକ୍ତବ୍ୟକୁ କାବ୍ୟଧର୍ମୀ କିମ୍ବା ପ୍ରାଞ୍ଜଳ କରିବାକୁ କେବଳ ବ୍ୟବହୃତ ହୋଇନାହିଁ, ପରନ୍ତୁ ଭାବାଭିବ୍ୟକ୍ତିକୁ ପାଠକ ପାଖରେ ପହଞ୍ଚାଇ ଦେବାକୁ ସହାୟତା କରିଛି । ଏମୁଡ଼ିକଦ୍ୱାରା ପ୍ରାବନ୍ଧିକଙ୍କର ସର୍ଜନାତ୍ମକ ମନ ଅଧିକ ଦୀପ୍ତ ହୋଇଉଠିଛି ।

ବ୍ରଜବନ୍ଧୁଙ୍କ ପ୍ରବନ୍ଧର ବାକ୍ୟବିନ୍ୟାସର ପାଟବ ବେଶ ଆକର୍ଷଣୀୟ । ସେ ବକ୍ତବ୍ୟକୁ ଗୁରୁଗମ୍ଭୀର କଲାବେଳେ ଜଟିଳ ବାକ୍ୟର ବ୍ୟବହାର କରନ୍ତି । କିନ୍ତୁ ସେ ମୁଖ୍ୟତଃ ସରଳ ଓ ଯୌଗିକ ବାକ୍ୟ ମାଧ୍ୟମରେହିଁ ନିଜର ଭାବଚେତନାକୁ ରୂପ ଦେଇଚନ୍ତି । ସେ ଭାବାବେଗକୁ ଉଚ୍ଛ୍ୱସିତ ଭାବେ ବ୍ୟକ୍ତକଲାବେଳେ କ୍ଷୁଦ୍ର କ୍ଷୁଦ୍ର ବାକ୍ୟ ବ୍ୟବହାର କରିଥାନ୍ତି । "ସେ ଥରେ ଦୂର ପର୍ବତଟିଏ ଦେଖାଇ ମୋତେ ଶୁଣାଇଦେଲା—ଏହି ଦେଖ, ଦିଗ୍‌ବଳୟରେ ପର୍ବତର ଶ୍ୟାମଳିମା କେଉଁଆଡ଼େ ଲୁଚିଯାଉଛି । ଶାନ୍ତ ନିବିଡ଼ ମନ ଏହା କେଡ଼େ ରମଣୀୟ !! ତୁମେ କଣ ମୋତେ ଏହିପରି ଦୂରରେ ରଖି ଭଲପାଇବାକୁ ଇଚ୍ଛାକର ? ମୁଁ ନୀରବ ରହିଲି । ସେ ହସିଦେଇ ଚାଲିଗଲା । ତାର ରକ୍ତାଧରରେ କ୍ଷଣକପାଇଁ ଯେଉଁ କମନୀୟ କାନ୍ତି ଉଠିଥିଲା, ତାହା ସେହି ଦିଗ୍‌ବଳୟରେ ଅସ୍ତଗାମୀ ସୂର୍ଯ୍ୟର ଶେଷ ରକ୍ତିମ ରଶ୍ମି ସଙ୍ଗେ ମିଶିଗଲା ।"—ସେ ଓ ମୁଁ —ଏଥିରେ ଭାବୋଚ୍ଛ୍ୱାସକୁ ବ୍ୟକ୍ତ କରିବାକୁ ପାରଦର୍ଶିକ କ୍ଷୁଦ୍ର କ୍ଷୁଦ୍ର ବାକ୍ୟ ବ୍ୟବହାରକୁହିଁ ଶ୍ରେୟ ମଣିଛନ୍ତି । କିନ୍ତୁ 'ଅତୀତର ଉଦ୍‌ବୋଧନ' ପରି ପ୍ରବନ୍ଧରେ ପ୍ରାଚୀନ ଭାରତର ଗୌରବ ଗାନ କଲା ପର୍ଯ୍ୟାୟରେ କହନ୍ତି—"ଜାତୀୟ ଭାବରେ ପ୍ରଣୋଦିତ ହୋଇ ଜାତିର ମୌଳିକତା ରକ୍ଷା କରିବା ଦୂରେଥାଉ । ଯେଉଁମାନେ ସାମୟିକ ଉତ୍ତେଜନାବଶତଃ ନିଜର କୌଳିନ୍ୟ ଭୁଲି କେବଳ ବାହ୍ୟ ଅନୁକରଣରେ ଅପରକୁ ଅନୁସରଣ କରନ୍ତି ସେମାନଙ୍କ ଦଶା ଶେଷରେ ଭିତ୍ତିହୀନ ଅଟ୍ଟାଳିକା ସଦୃଶ ।" ଏହି ଜଟିଳ ବାକ୍ୟ ବିନ୍ୟାସରେ ଲେଖକଙ୍କ ଗୁରୁଗମ୍ଭୀର ଚିନ୍ତା ଅବଶ୍ୟ ଲକ୍ଷଣୀୟ ।

ଏରୂପେ ବିଗ୍ରହକଲେ ଉକ୍ତିର ବ୍ରଜବନ୍ଧୁଙ୍କ ମହାନ୍ତିଙ୍କ ପ୍ରବନ୍ଧକଳାର ବୈଚିତ୍ର୍ୟ ପାଠକକୁ ଆକୃଷ୍ଟ କରେ । "ପ୍ରବନ୍ଧର ଅର୍ଥ ହେଉଛି ଏକ ପ୍ରଚେଷ୍ଟା । ମନନଶୀଳ ମନର ଅବ୍ୟକ୍ତ ଭାବନା, ଅବସ୍ଥା ଓ ଧାରଣାକୁ ଏହା ବ୍ୟକ୍ତ କରେ । ଏହା ଧାରଣା, ଅବସ୍ଥା ଓ ଭାବାବେଗର ଏକ ପ୍ରରୂପ । ଏହାକୁ କାମଚଲା ସଙ୍ଗୀତ ସହ ତୁଳନା କରାଯାଇପାରେ । କାବ୍ୟରାଜ୍ୟରେ ଗୀତିକବିତା ପରି ଗଦ୍ୟଜଗତରେ ପ୍ରବନ୍ଧର ସ୍ଥାନ—ଶରତ୍‌ଙ୍କ ପ୍ରବନ୍ଧ ସମ୍ପର୍କିତ ଏ ମନ୍ତବ୍ୟ ବ୍ରଜବନ୍ଧୁଙ୍କ ପ୍ରତି ପ୍ରଯୁଜ୍ୟ । ବ୍ରଜବନ୍ଧୁ ବହୁପ୍ରବନ୍ଧ ରଚନା କରିଛନ୍ତି—ତାଙ୍କ ପ୍ରବନ୍ଧସମ୍ଭାରରେ ଗୋଟିଏ ସୁକ୍ରମନର ଅକୁଣ୍ଠ ସଞ୍ଚରଣକୁ ଲକ୍ଷ୍ୟ କରାଯାଇପାରେ ! ତାଙ୍କର ପ୍ରବନ୍ଧଗୁଡ଼ିକ ଏକ ପୂର୍ଣ୍ଣାଙ୍ଗ ଏକକ । ଏଥିରେ ଅଭିବ୍ୟକ୍ତିର ପୂର୍ଣ୍ଣତା ରହିଛି । ପ୍ରତ୍ୟେକ ପ୍ରବନ୍ଧରେ ଆରମ୍ଭ, ଅଭିବୃଦ୍ଧି ଓ ପରିଣତିକୁ ଦେଖିହୁଏ । ପ୍ରାବନ୍ଧିକଙ୍କ ଅଭିବ୍ୟକ୍ତିରେ କ୍ୱଚିତ୍ ଶ୍ଳଥତା ରହିଛି । ଭାଷାର ପରିମିତ ପ୍ରୟୋଗ ରଚନାକୁ ଶକ୍ତିଶାଳୀ କରିଛି । ସେ ପ୍ରବନ୍ଧ ଲେଖୁ ଲେଖୁ ସ୍ଥଳବିଶେଷରେ ଗଦ୍ୟରେ ଗୀତି କବିତା ବା ଲଳିତକଟିଏ ରଚନା କରିଯାଇଛନ୍ତି । ତାଙ୍କର ରୂପର ପୂଜା, ଉଚ୍ଛ୍ୱାସ, ପ୍ରତିମା, ସାଥୀ, ଚନ୍ଦ୍ର ଓ ଭାବୁକର ଦୃଷ୍ଟି ପରି କୃତି ଲଳିତଧର୍ମୀ ହୋଇଉଠିଛନ୍ତି ।

ବ୍ରଜବନ୍ଧୁଙ୍କ ସାହିତ୍ୟସାଧନା ପ୍ରବନ୍ଧ ରଚନାରେହିଁ ସୀମିତ । ସେ 'ସରସୀ' ନାମକ ଗଳ୍ପଟିଏ ସହକାରରେ ଲେଖିବାକୁ ଆରମ୍ଭ କରିଥିଲେ । ତାହା ଅସମ୍ପୂର୍ଣ୍ଣ ରହିଛି । ତହିଁରେ ଗଳ୍ପସୁଲଭ କଳାଦୃଷ୍ଟି ନାହିଁ । ତାହା ବହୁ ସମୟରେ ପ୍ରବନ୍ଧସୁଲଭ ଭାଷାବିନ୍ୟାସ ଓ ଗଠନଶୈଳୀରେ ମେଦୁରିତ ହୋଇଛି । ଫଳତଃ 'ସରସୀ' ମଧ୍ୟ ଏକ ପ୍ରଚେଷ୍ଟା ହୋଇ ରହିଛି ।

ବ୍ରଜବନ୍ଧୁ ଜଣେ ଏକନିଷ୍ଠ ପ୍ରବନ୍ଧଲେଖକ । ସେ ପ୍ରବନ୍ଧ ରଚନା କଲାବେଳେ ବେଳେବେଳେ ଭାବାବେଗରେ ମୁହ୍ୟମାନ ହୋଇପଡ଼ିଛନ୍ତି । ତାଙ୍କର ସେ ଓ ମୁଁ, କଳା ଓ ପ୍ରକୃତ, ମୁଁ ଓ କିନ୍ତୁ, ସାଥୀ ପରି ପ୍ରବନ୍ଧରେ

ଆବେଗମୂଳକର ଦ୍ୱାରା ପ୍ରତିପାଦ୍ୟ ବିଷୟକୁ ଷ୍ଟୀଗ୍ରସ୍ତ କରିପକାଇଛନ୍ତି । ଭାବାବେଶର ଶ୍ଳଥ ପ୍ରକାଶନ ତାଙ୍କ ପ୍ରଜ୍ଞା ଦୃଷ୍ଟିର ପ୍ରତିବାଧକ । ଏ ସମସ୍ତ ଦୋଷତ୍ରୁଟି ସତ୍ତ୍ୱେ ବ୍ରଜବିହାରୀ ଜଣେ କଳାପ୍ରବଣ ପ୍ରାବନ୍ଧିକ । ପ୍ରବନ୍ଧ ଯୁଗେ ଯୁଗେ ବ୍ୟକ୍ତି-ମନୀଷା ଓ ଭାବାଭିବ୍ୟକ୍ତିର ଏକ ପ୍ରଚେଷ୍ଟାମାତ୍ର । ଏ ସମ୍ପର୍କରେ ଶ୍ରୀ ମହାନ୍ତି ଯଥେଷ୍ଟ ସଚେତନ ଥିଲେ । ତାଙ୍କର ବକ୍ତବ୍ୟ ଥିଲା—"ଆଲୋକ ରେଖାଟିଏ ଯେତେ କ୍ଷୀଣ ହେଲେ ସୁଦ୍ଧା ଗଭୀର ଅନ୍ଧକାରରେ ତାର ସ୍ୱାତନ୍ତ୍ର୍ୟ ରକ୍ଷା କରିଥାଏ । ମନୁଷ୍ୟର ଲକ୍ଷ୍ୟ ଏପରି ହେବା ଆବଶ୍ୟକ । ଜୀବନରେ ପ୍ରତିବନ୍ଧକ ଆସିବ, ଜୀବନମାର୍ଗରେ ବିଡ଼ମ୍ବନା ଘଟିବ; ସଂସାର ନିର୍ଯ୍ୟାତନାରେ ସେ ମୂହ୍ୟମାନ ହୋଇପଡ଼ିବ; କିନ୍ତୁ ସ୍ୱାତନ୍ତ୍ର୍ୟ ରକ୍ଷାରେ ତାର ପ୍ରକୃତ ଆତ୍ମବଳ ସୂଚିତ ହେବ ।"—ପାର୍ଥକ୍ୟର ପରୀକ୍ଷା, ସହକାର ୧୭।୭ । ଏ ଉକ୍ତିରେ ଲକ୍ଷିତ ଭାବରେ ବ୍ରଜବିହାରୀ ସ୍ୱୟଂ ତ ନିଜ ରଚନାର ସ୍ୱତନ୍ତ୍ରତା ସମ୍ପର୍କରେ ସୂଚେଇ ଦେଇଛନ୍ତି । ଏଣୁ ଓଡ଼ିଆର ବ୍ରଜବିହାରୀ ମହାନ୍ତିଙ୍କ ପରି ବହୁ ବିଷୟଗ୍ରାହୀ, ସୁପଠ, ବିଚିତ୍ରବିଭବମଣ୍ଡିତ ପ୍ରାବନ୍ଧିକ ବିସ୍ମୃତ ହେବେ କିପରି ?

ଏହି ବିଚିତ୍ରବିଭବସମ୍ବଳୀ ପ୍ରାବନ୍ଧିକଙ୍କର ରଚନାସମ୍ଭାର ସଙ୍କଳନ କରିବାର ଦାୟିତ୍ୱ ଏ ଲେଖକଠାରେ ନ୍ୟସ୍ତ ଥିବାରୁ ଲେଖକ ସାହିତ୍ୟ ଏକାଡେମୀ କର୍ତ୍ତୃପକ୍ଷଙ୍କୁ ସାଧୁବାଦ ଜଣାଉଛି । ପୁନଶ୍ଚ ବ୍ରଜବିହାରୀ ମହାନ୍ତିଙ୍କ ଜୀବନୀସମ୍ପର୍କିତ ତଥ୍ୟ ଓ ଫଟୋଚିତ୍ରାଦି ତାଙ୍କର ଅନୁଜ ଗଗନ ବିହାରୀ ମହାନ୍ତି ଏ ସଙ୍କଳକଙ୍କୁ ଯୋଗାଇଦେଇ କୃତଜ୍ଞତା ପାଶରେ ଆବଦ୍ଧ କରିଛନ୍ତି । ମାତୃଭୂମିର ସମ୍ପାଦକ ବିଚିତ୍ରାନନ୍ଦ କର୍ଣ୍ଣଠାରୁ ପୁରୁଣା ସହକାର ପାଠ କରି ପ୍ରାବନ୍ଧିକଙ୍କ ବହୁ ପ୍ରବନ୍ଧ ସଂଗ୍ରହ କରିବାର ସୁଯୋଗ ପାଇଛି । ଏ ଅବସରରେ ସମସ୍ତେ ମୋର ଶ୍ରଦ୍ଧାର ସହ ସ୍ମର୍ତ୍ତବ୍ୟ ।

ପରିଶେଷରେ ବ୍ରଜବିହାରୀ ମହାନ୍ତିଙ୍କ ରଚନାସମ୍ଭାର ସୁଧୀମହଲରେ ଯଥୋଚିତ ଆଦର ପାଇବ ଏହା ହିଁ ସଙ୍କଳକର ଏକାନ୍ତ କାମ୍ୟ ।

**ଶରତ ଚନ୍ଦ୍ର ପ୍ରଧାନ**

# ରଚନା ଓ ପ୍ରକାଶନ କାଳ

**ଚଲ୍ଲ** : ପ୍ରଥମ ସଂସ୍କରଣ, ୧୯୩୫, ସାରସ୍ୱତ ପ୍ରେସ, କଟକ

| ପ୍ରବନ୍ଧର ନାମ | କେଉଁ ପତ୍ରିକାରେ ପ୍ରକାଶିତ | ପ୍ରକାଶନ କାଳ |
|---|---|---|
| ୧ । ଜୀବନଯାତ୍ରା | ସହକାର ୧୩।୩ | ଆଷାଢ଼ ୧୩୩୯ |
| ୨ । ନୀତି ଓ ସମାଜ | ସହକାର ୧୩।୬ | କାର୍ତ୍ତିକ ୧୩୪୦ |
| ୩ । ଲକ୍ଷ୍ମୀବାଈ | ସହକାର ୧୪।୪ | ଶ୍ରାବଣ ୧୩୪୦ |
| ୪ । ଅତୀତର ଉଦ୍‌ବୋଧନ | ସହକାର ୧୩।୧୨ | ଚୈତ୍ର ୧୩୪୦ |
| ୫ । ରୂପର ପୂଜା | ସହକାର ୧୪।୧୦ | ମାଘ ୧୩୪୧ |
| ୬ । ନାରୀର ଶିକ୍ଷା | ସହକାର ୧୪।୭ | କାର୍ତ୍ତିକ ୧୩୪୧ |
| ୭ । ଜ୍ଞାନ ଓ କର୍ମ | — | — |
| ୮ । କର୍ମ ଓ ସ୍ୱାତନ୍ତ୍ର୍ୟ | ସହକାର ୧୩।୧୦ | ମାଘ ୧୩୪୦ |
| ୯ । କର୍ମୀ ମଧୁସୂଦନ | ସହକାର ୧୪।୧୦ | ମାଘ ୧୩୪୧ |
| ୧୦ । ଚନ୍ଦ | ସହକାର ୧୪।୮ | ମାର୍ଗଶିର ୧୩୪୧ |
| ୧୧ । ପରଶଣସ୍ଥ ପ୍ରସ୍ତାବ | ସହକାର ୧୩।୧ | ବୈଶାଖ ୧୩୩୯ |
| ୧୨ । ସୁନ୍ଦରର ସନ୍ଧାନ | ସହକାର ୧୩।୪ | ଶ୍ରାବଣ ୧୩୩୯ |
| ୧୩ । ଆକାଙ୍‌କ୍ଷା ଓ ସନ୍ଧାନ | ସହକାର ୧୩।୯ | ପୌଷ ୧୩୪୦ |
| ୧୪ । ବିଶ୍ୱବିଦ୍ୟାଳୟସ୍ଥ ଶିକ୍ଷା | ସହକାର ୧୪।୫ | ଭାଦ୍ର ୧୩୪୦ |
| ୧୫ । ଭାବୁକର ଦୃଷ୍ଟି | ସହକାର ୧୪।୧ | ବୈଶାଖ ୧୩୪୦ |
| ୧୬ । କଳାବିଭବ | ସହକାର ୧୩।୮ | ମାର୍ଗଶିର ୧୩୪୦ |
| ୧୭ । ଶକ୍ତିର ବିକାଶ | ସହକାର ୧୩।୬ | ଆଶ୍ୱିନ ୧୩୪୦ |
| ୧୮ । ସଂଘର୍ଷ | — | — |
| ୧୯ । ଧ୍ୱଂସାତ୍ମକ ନୀତି | ସହକାର ୧୪।୩ | ଆଷାଢ଼ ୧୩୪୦ |
| ୨୦ । ସମରର ମୃଦଙ୍ଗ | ସହକାର ୧୪।୨ | ଜ୍ୟେଷ୍ଠ ୧୩୪୦ |
| ୨୧ । ମାନବ ପ୍ରଗତି | ସହକାର ୧୪।୧୨ | ଚୈତ୍ର ୧୩୪୧ |
| ୨୨ । ଶାନ୍ତିର ସୋପାନ | ସହକାର ୧୩।୫ | ଭାଦ୍ର ୧୩୩୯ |
| ୨୩ । କାଳିମା | ସହକାର ୧୫।୫ | ଭାଦ୍ର ୧୩୪୧ |
| ୨୪ । ପ୍ରତୀକ୍ଷା | ସହକାର ୧୫।୬ | ଆଶ୍ୱିନ ୧୩୪୨ |
| ୨୫ । ଭୋଗ ଓ ତ୍ୟାଗ | ସହକାର ୧୫।୨ | ଜ୍ୟେଷ୍ଠ ୧୩୪୧ |
| ୨୬ । ମହତର ଚିନ୍ତାଧାରା | ସହକାର ୧୬।୪ | ଶ୍ରାବଣ ୧୩୪୨ |

| ପ୍ରବନ୍ଧର ନାମ | କେଉଁ ପତ୍ରିକାରେ ପ୍ରକାଶିତ | ପ୍ରକାଶନ କାଳ |
|---|---|---|
| ୧୭ । ବେଷ୍ଟନୀ | ସହକାର ୧୫।୧୧ | ଫାଲ୍‌ଗୁନ ୧୩୪୨ |
| ୧୮ । ଅବସାଦ | ସହକାର ୧୪।୩ | ଆଷାଢ଼ ୧୩୪୧ |
| ୧୯ । ପ୍ରିୟଦର୍ଶନ | ସହକାର ୧୫।୧୨ | ଚୈତ୍ର ୧୩୪୨ |
| ୨୦ । ଅବଦାନ | ସହକାର ୧୫।୧୦ | ମାଘ ୧୩୪୨ |

**ସାଧନା** : ପ୍ରଥମ ସଂସ୍କରଣ, ୧୯୪୭, ଉତ୍କଳ ବୁକ୍ ଏଜେନ୍‌ସି, ରାଣୀହାଟ, କଟକ

| | | |
|---|---|---|
| ୧ । ଉଚ୍ଛ୍ୱାସ | ସହକାର ୧୮।୭ | ଆଶ୍ୱିନ ୧୩୪୫ |
| ୨ । ଗୃହସ୍ଥର ଆଚରଣ | ସହକାର ୧୮।୫ | ଭାଦ୍ର ୧୩୪୪ |
| ୩ । ଛତ୍ରଦ୍ୱାରର ଧାରା | ସହକାର ୧୮।୩ | ଆଷାଢ଼ ୧୩୪୪ |
| ୪ । ରାଜପଥ | ସହକାର ୧୮।୨ | ଜ୍ୟେଷ୍ଠ ୧୩୪୪ |
| ୫ । ମାଧୁରୀର ବନ୍ଧନ | ସହକାର ୧୮।୯ | ପୌଷ ୧୩୪୫ |
| ୬ । ଅବଲମ୍ବନ ଓ ନୀତି | ସହକାର ୨୦।୫ | ଭାଦ୍ର ୧୩୪୭ |
| ୭ । ଭାବ ଜଗତ | — | — |
| ୮ । ନବ ବର୍ଷ | ସହକାର ୨୦।୧ | ବୈଶାଖ ୧୩୪୭ |
| ୯ । ଯୁଗର ପରିବର୍ତ୍ତନ | ସହକାର ୧୯।୧୦ | ମାଘ ୧୩୪୬ |
| ୧୦ । କର୍ମର ଅସାମଞ୍ଜସ୍ୟ | ସହକାର ୨୦।୧ | ବୈଶାଖ ୧୩୪୬ |
| ୧୧ । ବିପ୍ଳବ | — | — |
| ୧୨ । ଯୁଗଧାରାରେ ଯୁବଶକ୍ତି | ସହକାର ୨୦।୧୦ | ମାଘ ୧୩୪୭ |
| ୧୩ । ଆକର୍ଷଣର ଅଭିବ୍ୟକ୍ତି | ସହକାର ୧୯।୧ | ବୈଶାଖ ୧୩୪୫ |
| ୧୪ । ପ୍ରତିମା | ସହକାର ୧୩।୪ | ଶ୍ରାବଣ ୧୩୪୫ |
| ୧୫ । ଯୁବକ ଓ ଜଗତ୍ | ସହକାର ୧୫।୪ | ଶ୍ରାବଣ ୧୩୪୧ |

**ଅନ୍ୟାନ୍ୟ ପ୍ରବନ୍ଧ** : ( ପୁସ୍ତକ ଆକାରରେ ସଙ୍କଳିତ ହୋଇ ନ ଥିବା ପ୍ରବନ୍ଧାବଳୀ )

| | | |
|---|---|---|
| ୧ । ଭାରତର ଜାଗରଣ | ସହକାର ୧୨।୭ | କାର୍ତ୍ତିକ ୧୩୩୯ |
| ୨ । ଭାରତର ସମସ୍ୟା | ସହକାର ୧୨।୮ | ମାର୍ଗଶିର ୧୩୩୯ |
| ୩ । ସମାଲୋଚନା ଓ ସ୍ୱାତନ୍ତ୍ର୍ୟ | ସହକାର ୧୨।୧୦ | ମାଘ ୧୩୩୯ |
| ୪ । ଅଦୃଷ୍ଟ | ସହକାର ୧୨।୧୧ | ଫାଲ୍‌ଗୁନ ୧୩୩୯ |
| ୫ । ଈଶ୍ୱର | ସହକାର ୧୫।୧ | ବୈଶାଖ ୧୩୪୧ |
| ୬ । ଧର୍ମ | ସହକାର ୧୫।୭ | କାର୍ତ୍ତିକ ୧୩୪୨ |
| ୭ । ନାରୀ ଓ ସମାଜ | ସହକାର ୧୫।୮ | ମାର୍ଗଶିର ୧୩୪୨ |
| ୮ । ନାରୀର ସ୍ୱାତନ୍ତ୍ର୍ୟ | ସହକାର ୧୫।୯ | ପୌଷ ୧୩୪୨ |
| ୯ । ସ୍ୱାଧୀନ ଚିନ୍ତା | ସହକାର ୧୨।୯ | ପୌଷ ୧୩୩୯ |

| ପ୍ରବନ୍ଧର ନାମ | କେଉଁ ପତ୍ରିକାରେ ପ୍ରକାଶିତ | ପ୍ରକାଶନ କାଳ |
|---|---|---|
| ୧୦ । ରମଣୀ ସମ୍ପର୍କ | ସହକାର ୧୩।୧ | ବୈଶାଖ ୧୩୩୯ |
| ୧୧ । ବନ୍ଧୁର ସାଧନା | ସହକାର ୧୩।୨ | ଜ୍ୟେଷ୍ଠ ୧୩୩୯ |
| ୧୨ । ସେ ଓ ମୁଁ | ସହକାର ୧୬—ଶାରଦୀୟ ସଂଖ୍ୟା | ଭାଦ୍ର-ଆଶ୍ୱିନ ୧୩୪୩ |
| ୧୩ । ସାଥୀ | ସହକାର ୧୬।୧୧-୧୨ | ଫାଲ୍‌ଗୁନ-ଚୈତ୍ର ୧୩୪୨ |
| ୧୪ । ପାର୍ଥକ୍ୟର ପରୀକ୍ଷା | ସହକାର ୧୬।୬ | କାର୍ତ୍ତିକ ୧୩୪୪ |
| ୧୫ । ବାସ୍ତବତା | ସହକାର ୧୬।୮ | ମାର୍ଗଶିର ୧୩୪୫ |
| ୧୬ । କଳା ଓ ପ୍ରକୃତି | ସହକାର ୨୯।୮ | ବୈଶାଖ ୧୩୫୮ |
| ୧୭ । ସୌନ୍ଦର୍ଯ୍ୟ ଓ କଳା | ସହକାର ୧୮।୧୦ | ମାଘ ୧୩୫[illegible] |
| ୧୮ । ଜୀବନ ଓ ଆକାଙ୍କ୍ଷା | ସହକାର ୧୯।୮ | କାର୍ତ୍ତିକ ୧୩୪୬ |
| ୧୯ । ମୁଁ ଓ କବି | ନବଭାରତ ୧।୩ | ସିଂହ ୧୩୪୧ |

**ଗଳ୍ପ :**

| | | |
|---|---|---|
| ସରସୀ | ସହକାର ୨୧।୧୧ | ଫାଲ୍‌ଗୁନ ୧୩୪୮ |

# ଜୀବନ-ଯାତ୍ରା

କାଳସ୍ରୋତରେ ଜୀବନର ଗତି ନିର୍ଣ୍ଣୟ କରିବା ସହଜ ନୁହେଁ । ବର୍ତ୍ତମାନ ଜୀବନରେ ଯାହା ଗର୍ହିତ ଓ ଅଶୁଭ ଫଳ ପ୍ରସବ କରୁଛି, ସମୟବିଶେଷରେ ତାର ସମ୍ପୂର୍ଣ୍ଣ ପରିବର୍ତ୍ତନ ଘଟିପାରେ । ଯାବତୀୟ ସାଂସାରିକ ବିସ୍ତାର ବିକାଶ ଓ ଉନ୍ନତି ସଙ୍ଗେ ପରିବର୍ତ୍ତନ-ନିୟମର ସମ୍ବନ୍ଧ ରହିଛି । ବ୍ୟକ୍ତିଗତ ଭାବରେ ଦେଖିବାକୁ ଗଲେ ଜଣାଯାଏ ଯେ, ପ୍ରତ୍ୟେକର ଜୀବନରେ ଏ ନିୟମର ବ୍ୟତିକ୍ରମ ନାହିଁ । ମନୁଷ୍ୟର ବୟସ କ୍ରମଶଃ ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ପାରିପାର୍ଶ୍ୱିକ ଅବସ୍ଥାମାନଙ୍କର ପରିବର୍ତ୍ତନ ଆବଶ୍ୟକ ହୁଏ । କ୍ରୀଡ଼ାରତ ବାଳକର ଶୃଙ୍ଖଳା ବାର୍ଦ୍ଧକ୍ୟରେ ଲୋପ ପାଇବା ସ୍ୱାଭାବିକ ହୁଏ । ଯୌବନରେ ଯାହା ମନୋମୁଗ୍ଧକର ହୋଇଥାଏ, ବୟସର ଆଧିକ୍ୟବଶତଃ ସେଥିରେ ବିକାର ଜନ୍ମିବା ଅସମ୍ଭବ ନୁହେଁ । ସମୟର ଗତି ସଙ୍ଗେ ଏକ ପଦାର୍ଥରୁ ଅନ୍ୟ ପଦାର୍ଥକୁ ମନ ଆକୃଷ୍ଟ ହୋଇଥାଏ । ଏହାଦ୍ୱାରା ଜୀବନର ବୈଚିତ୍ର୍ୟ ଉପଲବ୍ଧ ହୁଏ ନାହିଁ ; ବରଂ ଗୋଟିକ ପରେ ଗୋଟିଏ ବିଷୟ ତ୍ୟାଗ କରି ଜୀବନର ନୀରସତା ବଢ଼ିଯାଏ । ଜୀବନରେ ମହତ୍ତ୍ୱ ପାଇବାକୁ ହେଲେ ସମୟ-ସ୍ରୋତରେ ନିଜର ସ୍ୱାତନ୍ତ୍ର୍ୟ ଅକ୍ଷୁଣ୍ଣ ରଖି ପ୍ରକୃତ କର୍ମର ପନ୍ଥା ଅନୁସରଣ କରିବା ବିଧେୟ । ଏପରି କଲେ, ବୟସର ଆଧିକ୍ୟ ସଙ୍ଗେ ଉତ୍ସାହର ନ୍ୟୂନତା କୌଣସି ପ୍ରତିବନ୍ଧକ ଜନ୍ମାଏ ନାହିଁ । ଜୀବନର ସୁନିୟନ୍ତ୍ରଣରେ ସୁଖଲାଭ ନିର୍ଭର କରେ ।

ବୟୋବୃଦ୍ଧି ସଙ୍ଗେ ଅନେକ ଜୀବନର ନିଷ୍ଫଳତା ଦେଖାଯାଏ । କ୍ଷଣିକ ସୁଖ ଆଶାରେ ଯେଉଁମାନେ ବ୍ୟସ୍ତ, ସେମାନେ ଏପରି ଦଶାର ଅଧୀନ ହୁଅନ୍ତି; କିନ୍ତୁ ଯେଉଁମାନେ ସତର୍କ ଥାଇ ପ୍ରତ୍ୟେକ କାର୍ଯ୍ୟ ପୁଙ୍ଖାନୁପୁଙ୍ଖରୂପେ ବିଚାର କରି ଶାନ୍ତଭାବରେ ଅଗ୍ରସର ହୁଅନ୍ତି ଓ ନିଜ ବିବେକର ଆଦେଶ ପାଳନ କରନ୍ତି, ସେମାନଙ୍କୁ ବାର୍ଦ୍ଧକ୍ୟରେ ଆପରିଣାମଦର୍ଶିତା ପାଇଁ କୌଣସି ଦୁଃଖ ଭୋଗ କରିବାକୁ ହୁଏ ନାହିଁ । ଯୌବନରେ ସ୍ଫୂର୍ତ୍ତି, ଆନନ୍ଦର ମୁକ୍ତତା ଓ ଆବେଗ ସଫଳୀଭୂତ ଥାଏ ବୋଲି ସ୍ୱାର୍ଥହୀନ ଓ ସରଳ ଜୀବନର ଶେଷ ଅବସ୍ଥାଟି ବେଶି ଆରାମପ୍ରଦ ବୋଧହୁଏ । ଦିବସର ଅବସାନ ସଙ୍ଗେ ମନୁଷ୍ୟର ଶେଷ-ଜୀବନକୁ ତୁଳନା କରାଯାଇପାରେ । ମେଘନିର୍ମୁକ୍ତ ଆକାଶ ସନ୍ଧ୍ୟା ଆଗମରେ ରମଣୀୟ ଶୋଭା ଧାରଣ କରି ସମସ୍ତ ଦିବସର ଶାନ୍ତଛବି ପ୍ରକଟିତ କରେ । ସେହିପରି ଜୀବନ-ସମୁଦ୍ରରେ ବାତ୍ୟା-ବିକ୍ଷୋଭିତ ତରଙ୍ଗରାଶିର ବିରାମ ଘଟିଲେ, ପ୍ରଶାନ୍ତ ଭାବ ସ୍ୱତଃ ଉଦିତ ହୋଇ ମନରେ ଯେଉଁ ଆନନ୍ଦ ଜନ୍ମାଏ, ତାହା ସାଧାରଣ ବିଷୟ-ସୁଖରେ ମିଳେ ନାହିଁ ।

ଶିଶେରୋ (Cicero) ବୃଦ୍ଧାବସ୍ଥାର ଦୁରବସ୍ଥା ସମ୍ବନ୍ଧରେ ଚାରୋଟି କାରଣ ସ୍ଥିର କରିଛନ୍ତି । ପ୍ରଥମରେ—କାର୍ଯ୍ୟ-କ୍ଷେତ୍ରରୁ ଅବ୍ୟାହତି ପାଇ ନୀରବ ରହିବା; ଦ୍ୱିତୀୟରେ—ଶାରୀରିକ ଦୁର୍ବଳତା; ତୃତୀୟରେ—ଇନ୍ଦ୍ରିୟମାନଙ୍କର ଶିଥିଳତା; ଚତୁର୍ଥରେ—ମୃତ୍ୟୁର ନୈକଟ୍ୟ ।

କର୍ମମୟ ଜୀବନର ଶେଷ ଅବସ୍ଥାରେ ବିଶ୍ରାମ ପାଇଲେ ମନର କୌଣସି ବିକ୍ଷେପ ହେବା ସଙ୍ଗତ ବୋଧହୁଏ ନାହିଁ; ବରଂ ସମ୍ପାଦିତ ପବିତ୍ର କାର୍ଯ୍ୟମାନଙ୍କର ସ୍ମୃତି ମନରେ ଜାଗ୍ରତ ହୋଇ ଜୀବନର ମହତ୍ତ୍ୱ ପ୍ରତିପନ୍ନ କରିଏ । ଦ୍ୱିତୀୟରେ, ଶରୀରର ଦୁର୍ବଳତା ନିୟମିତ ଭାବରେ ଜୀବନଯାପନ କରିବାଦ୍ୱାରା ଅନୁଭୂତ ହୁଏ ନାହିଁ । ତୃତୀୟତଃ ଇନ୍ଦ୍ରିୟମାନଙ୍କର ତାଡ଼ନାରୁ ନିବୃତ୍ତ ହୋଇ ମନ ଉତ୍ତରୋତ୍ତର ଭାବରାଜ୍ୟରେ ଅଗ୍ରସର ହୁଏ ଓ ସତ୍‌ପ୍ରବୃତ୍ତିମାନଙ୍କର ଉନ୍ନତସାଧନରେ କ୍ଷୁଦ୍ର ସାଂସାରିକ ସୁଖ ଆତ୍ମୋନ୍ନତି ପଥରୁ ଅନ୍ତର ହୋଇଯାଏ । ଉନ୍ନତପରାୟଣ-କର୍ମୀ ମନୁଷ୍ୟ ଶେଷ ଅବସ୍ଥାରେ ସୁଦ୍ଧା ଆସନ୍ନ ମୃତ୍ୟୁକୁ ଭୟ କରେ ନାହିଁ ।

ସୁପ୍ରସିଦ୍ଧ ଲେଖକ ଇମାରସନ୍ ମାନବମନର ଚରମ ଉତ୍କର୍ଷରେ ଈଶ୍ୱରଙ୍କ ସ୍ୱରୂପ ନିର୍ଦ୍ଧାରଣ ପଥ ନିର୍ଦ୍ଦେଶ କରନ୍ତି । ପ୍ରାଚୀନ ହିନ୍ଦୁ ମଧ୍ୟ ଏହା ସ୍ଥିର କରିଥିଲେ । ସାଧନାଦ୍ୱାରା ମନରୁ ଯେଉଁ ଜ୍ଞାନାଲୋକ ବିକୀର୍ଣ୍ଣ ହୁଏ, ତାହା ଶତ ସୂର୍ଯ୍ୟରଶ୍ମିକୁ ପରାଜିତ କରି ଈପ୍‌ସିତ ଗନ୍ତବ୍ୟ ପଥରେ ଧାବିତ ହୁଏ । ମନୁଷ୍ୟର ଜନ୍ମ ଓ ମୃତ୍ୟୁ କେବଳ ଏ ପଥର ସୋପାନ ସ୍ୱରୂପ । ଅଧିକାଂଶ ମନୁଷ୍ୟ ଜୀବନର ଲକ୍ଷ୍ୟ ସ୍ଥିର କରି ନ ପାରି ଉଦ୍‌ଭ୍ରାନ୍ତ ପଥିକ ପରି ଅଗ୍ରସର ହୁଅନ୍ତି । ସେମାନଙ୍କ ପକ୍ଷରେ ଜୀବନ ନିରର୍ଥକ ଓ ମୃତ୍ୟୁ ଭୟପ୍ରଦ ।

ପ୍ଲେଟୋ ମନୁଷ୍ୟକୁ ବିଭିନ୍ନ ପ୍ରବୃତ୍ତିଦ୍ୱୟର ସମାବେଶରେ ଦୁଇଟି ପକ୍ଷିରାଜ ଘୋଡ଼ା ଓ ଗୋଟିଏ ରଥଚାଳକ ସଙ୍ଗେ ତୁଳନା କରିଛନ୍ତି । ଦୁଇଟି ଘୋଡ଼ା ମଧ୍ୟରୁ ଗୋଟିଏ ଶାନ୍ତ ଓ ଅପରଟି ଦୁର୍ଦ୍ଦାନ୍ତ । ଯେତେବେଳେ ଶାନ୍ତ ଅଶ୍ୱଟି ରଥକୁ ଊର୍ଦ୍ଧ୍ୱଗାମୀ କରାଇବାକୁ ଚେଷ୍ଟାକରେ, ସେତେବେଳେ ତାର ଦୁଷ୍ଟ ସଙ୍ଗୀ ନିମ୍ନକୁ ଟାଣିଧରେ । ରଥଚାଳକ ବିଜ୍ଞ ଓ ଦୃଢ଼ ହେଲେ ସୁଗତି ସମ୍ଭବପର ହୁଏ । ପ୍ରତ୍ୟେକ ମନୁଷ୍ୟର ଉଚ୍ଚ ଓ ନୀଚ ପ୍ରବୃତ୍ତି ଅଛି । ଉଚ୍ଚ ପ୍ରବୃତ୍ତିମାନଙ୍କୁ ପୋଷଣ କରିବା ଦ୍ୱାରା ନୀଚ ସ୍ୱଭାବ କ୍ରମଶଃ ଅନ୍ତର୍ହିତ ହୋଇଯାଏ । ଯେଉଁମାନେ ସାବଧାନ ହୋଇ ଉଚ୍ଚ ଆଡ଼କୁ ଲକ୍ଷ୍ୟ ରଖି କାର୍ଯ୍ୟ କରନ୍ତି, ସେମାନଙ୍କର ଜୀବନ ସାର୍ଥକ ହୁଏ । କେବଳ ବାର୍ଦ୍ଧକ୍ୟରେ ସମ୍ପୂର୍ଣ୍ଣରୂପେ କୁସ୍ୱଭାବ ପରିତ୍ୟାଗ କରି ସୁସ୍ୱଭାବର ଅନୁବର୍ତ୍ତୀ ହେବା ଅସମ୍ଭବ କହିଲେ ଚଳେ । ମନ ଓ ଇନ୍ଦ୍ରିୟ ପରସ୍ପର ଘନିଷ୍ଠଭାବରେ ଆବଦ୍ଧ । ସେମାନଙ୍କ ମଧ୍ୟରେ ସୁସ୍ଥିର ଭାବ ଆଣିବା ସହଜ ନୁହେଁ । ଉନ୍ନତିକାମୀ ମନୁଷ୍ୟ ଜୀବନର ଅସ୍ଥାୟିତ୍ୱ ସ୍ମରଣ ରଖି ସତ୍‌ପଥରେ ଚାଳିତ ହୋଇ ମନକୁ ସଂଯତ କରେ । ଯୌବନର ଶୃଙ୍ଖଳା ଓ ବାର୍ଦ୍ଧକ୍ୟର ଉତ୍ସାହହୀନତାରେ ତାର ସ୍ୱତନ୍ତ୍ରତା ନଷ୍ଟ ହୁଏ ନାହିଁ ।

ଅନେକଙ୍କର ଧାରଣା, ମୃତ୍ୟୁ ବଡ଼ ଯନ୍ତ୍ରଣାପ୍ରଦ । ତାର ନାମ ସୁଦ୍ଧା ଉଚ୍ଚାରଣ କରିବାକୁ ସେମାନେ ଭୟ କରନ୍ତି । ପ୍ରକୃତରେ ଭୟର କାରଣ କିଛି ନାହିଁ । କେବଳ ଗୋଟାଏ କଳ୍ପିତ ଅଜ୍ଞାତ ଅବସ୍ଥାର ଶୁଶ୍ରୂଷା ମନର ସ୍ଥିରତା ନଷ୍ଟ କରି ବିଭୀଷିକା ଜନ୍ମାଏ । ଶାରୀରିକ ଅଙ୍ଗପ୍ରତ୍ୟଙ୍ଗ ସବଳ ଅବସ୍ଥାରେ ପୀଡ଼ାଗ୍ରସ୍ତ ହେଲେ ଯନ୍ତ୍ରଣା ଅନୁଭୂତ ହୁଏ; କିନ୍ତୁ ବାର୍ଦ୍ଧକ୍ୟରେ ଶୀର୍ଣ୍ଣ ଓ ଦୁର୍ବଳ ଦେହରେ କଷ୍ଟ ଅନୁଭବ କରିବାର କ୍ଷମତା ହ୍ରାସ ପାଇଥାଏ । ସୁତରାଂ ଶରୀର ତ୍ୟାଗ କରିବାରେ ବିଶେଷ କଷ୍ଟ ହୁଏ ନାହିଁ । ପ୍ଲେଟୋ ଗ୍ରନ୍ଥ ଲେଖିଲାବେଳେ, ଲୁକାନ୍ ନିଜ ପ୍ରଣୀତ ପୁସ୍ତକର କେତେକାଂଶ ଆବୃତ୍ତି କଲାବେଳେ ଓ ବ୍ଲେକ୍ ଗୀତ ଗାଇବା ବେଳେ ଶରୀରତ୍ୟାଗ କରିଛନ୍ତି । ମୃତ୍ୟୁର ଭୀଷଣତା ସେମାନେ କିଛିମାତ୍ର ଜାଣିନାହାନ୍ତି । ଅନେକଙ୍କର ନିଦ୍ରାବସ୍ଥାରେ ମଧ୍ୟ ମୃତ୍ୟୁ ହୁଏ ।

ବିଖ୍ୟାତ ଚିକିତ୍ସା-ବିଜ୍ଞାନବିତ୍‌ମାନେ ସ୍ଥିର କରିଛନ୍ତି ଯେ ମୃତ୍ୟୁରେ ଭୟ କିମ୍ବା କଷ୍ଟ ନାହିଁ । ଯୁଦ୍ଧକ୍ଷେତ୍ରରେ ଆହତ କିମ୍ବା କୌଣସି କଠିନ ରୋଗଗ୍ରସ୍ତ ଲୋକ ମୃତ୍ୟୁରେ ସେପରି ବିଶେଷ କଷ୍ଟ ପାଏ ନାହିଁ ବୋଲି ସେମାନଙ୍କର ବିଶ୍ୱାସ ।

ମୃତ୍ୟୁରେ ଶରୀର ବିନଷ୍ଟ ହେଲେ ଆତ୍ମାର କି ପରିବର୍ତ୍ତନ ହୋଇପାରେ ? ଅନେକଙ୍କ ମତରେ ଆତ୍ମାର ବହୁତା ନାହିଁ; ସେ ଏକ ଓ ଅବିନଶ୍ୱର । ଶସ୍ୟବୀଜରୁ ଉଦ୍ଭିଦର ଉତ୍ପତ୍ତି ହୋଇ ପୁଣି ଶସ୍ୟର ସୃଷ୍ଟି ସାଧନ କରେ । ଏହି ଅବିଚ୍ଛିନ୍ନ କ୍ରିୟାରୁ ଉଦ୍ଭିଦଜଗତରେ ଗୋଟାଏ ପ୍ରାଣର ଆଭାସ ମିଳେ । ସେହିପରି ପିତାମାତାଠାରୁ ସନ୍ତାନସନ୍ତତିମାନଙ୍କର ଜନ୍ମ ହୁଏ ଏବଂ କାଳକ୍ରମେ ସେମାନେ ଜନକଜନନୀର ସ୍ଥାନ ଅଧିକାର କରିବାଦ୍ୱାରା ସେମାନଙ୍କର ଏକ ଅପ୍ରତିହତ ଓ ଧାରାବାହିକ କାର୍ଯ୍ୟବିଧି ଦେଖିବାକୁ ମିଳେ । ଏକା ପରମାତ୍ମା ଏହି କାର୍ଯ୍ୟର ନିର୍ବିକଳ୍ପ କର୍ତ୍ତାସ୍ୱରୂପ ଅଟନ୍ତି । ତାଙ୍କ ଛଡ଼ା ଅନ୍ୟ ଆତ୍ମାର ପ୍ରକାଶ ନାହିଁ । ମନୁଷ୍ୟ ଆନନ୍ଦ ଉପଭୋଗ କଲାବେଳେ ନିଜକୁ ସୃଷ୍ଟିକ୍ରିୟାରେ ସ୍ୱତନ୍ତ୍ର ଭାବିବା ଆବଶ୍ୟକ ନୁହେଁ । ସାଧାରଣତଃ ଉପର୍ଯ୍ୟୁକ୍ତ ମତକୁ ଅଧିକାଂଶ ଗ୍ରହଣ କରନ୍ତି ନାହିଁ । ସେମାନେ କହନ୍ତି, ମୃତ୍ୟୁପରେ ବ୍ୟକ୍ତିଗତ ଆତ୍ମା ସ୍ୱାତନ୍ତ୍ର୍ୟ ରକ୍ଷା କରେ । ଶରୀର ନଷ୍ଟ ହେଲେ ସୁଦ୍ଧା ତନ୍ନିହିତ ଜୀବାତ୍ମା ଅନ୍ୟ ଆଧାରରେ ପୁଣି ପ୍ରକାଶିତ ହୁଏ । ତାର ଗତି ଅନୁସରଣ କରିବା ସହଜ ନୁହେଁ । ଆତ୍ମା ଏକ କିମ୍ବା ବହୁ ପ୍ରମାଣିତ ହୋଇପାରେ; କିନ୍ତୁ ମୃତ୍ୟୁ ସଙ୍ଗେ ତାର କୌଣସି ସମ୍ପର୍କ ନାହିଁ । ମରଣଶୀଳ ମନୁଷ୍ୟର କିଛି ସମୟ ସାଂସାରବାସ ପରେ ମୃତ୍ୟୁ ଇଚ୍ଛା ସ୍ୱାଭାବିକ ହୁଏ । ପ୍ରକୃତ ବସ୍ତୁଜଗତର ସ୍ଥିତିକୁ ଗୋଟାଏ ସୀମା ମଧ୍ୟରେ ଆବଦ୍ଧ ରଖେ ।

ମନୁଷ୍ୟର ମଧ୍ୟ ସାଂସାରିକ ଜୀବନର ପ୍ରକୃତି-ନିର୍ଦ୍ଦିଷ୍ଟ ଗୋଟିଏ ସୀମା ଅଛି । କ୍ରୀଡ଼ାରତ ବାଳକବାଳିକା କିଛି କ୍ଷଣ ଖେଳିବା ପରେ ବିତୃଷ୍ଣ ହୋଇ କ୍ରୀଡ଼ାଭୂମି ତ୍ୟାଗ କରି ଚାଲିଯାନ୍ତି । ସେହିପରି ବୃଦ୍ଧାବସ୍ଥା ମାନବଜୀବନରେ ବୈରାଗ୍ୟ ଆଣି ମୃତ୍ୟୁକୁ ଅପେକ୍ଷା କରି ରହେ ।

ଜୀବିତାବସ୍ଥାରେ ମନୁଷ୍ୟ ଅଧିକାଂଶ ସ୍ଥଳରେ ସୁଖ ଅପେକ୍ଷା ଦୁଃଖ ବେଶି ପରିମାଣରେ ଭୋଗ କରେ । ସାଂସାରିକ ସୁଖପ୍ରାପ୍ତି ଆଶାରେ ସେ ଯେତେ କାର୍ଯ୍ୟ କରେ ସବୁ ଅସ୍ଥାୟୀ ହୁଏ ଏବଂ ପ୍ରକୃତ ଶାନ୍ତିର ପଥ ଉନ୍ମୁକ୍ତ କରିବାରେ ଅକ୍ଷମ ହୁଏ । ଶେଷରେ ନୈରାଶ୍ୟର ଘନ ଅନ୍ଧକାର ମଧ୍ୟରେ ଯନ୍ତ୍ରଣା ଅସହ୍ୟ ବୋଧ ହେଲେ ମନୁଷ୍ୟ କ୍ଷୁବ୍ଧ ହୋଇ ପରପାରରେ ଶାନ୍ତି ଅନୁସନ୍ଧାନ ପାଇଁ ତତ୍ପର ହୁଏ । ମୃତ୍ୟୁର ଭୟ ଉପସ୍ଥିତ ବିପଦ ଓ କଷ୍ଟରେ ଉପଶମିତ ହୁଏ । ଦୁଃଖ ନିରାକରଣ ପାଇଁ ସେ ଶରୀରଧାରଣ କରିବାର ଇଚ୍ଛା ତ୍ୟାଗ କରେ । ଆତ୍ମାର ବହିରାବରଣ ଶରୀର ବିନାଶଶୀଳ । ଜୀବ ଅବସ୍ଥାନ୍ତର ପ୍ରାପ୍ତିରେ ବିନାଶ-ଧର୍ମର ଆଶ୍ରୟ ନିଏ । ଉତ୍ପତ୍ତି ଓ ବିନାଶ ସୃଷ୍ଟିର ନିୟମ । ଗୋଟିକକୁ ବାଦ୍ ଦେଲେ ଅପରର ମହତ୍ତ୍ୱ ଜଣା ପଡ଼ିବ ନାହିଁ କିମ୍ବା ସୃଷ୍ଟିପ୍ରବାହ ନିୟମିତରୂପେ ଚାଳିତ ହେବ ନାହିଁ ।

ଏତଦ୍‌ବ୍ୟତୀତ ମନୁଷ୍ୟ ଏହି ନିୟମର ଅଧୀନ ହୋଇ ନ ଥିଲେ ତା ଜୀବନର ମୂଲ୍ୟ କର୍ମଜଗତରେ ଜଣାଯାଆନ୍ତା ନାହିଁ । କର୍ମର ତାରତମ୍ୟ ଅନୁସାରେ ଜୀବନର ମହତ୍ତ୍ୱ ନିରୂପିତ ହୋଇଥାଏ । କେବଳ ଦୀର୍ଘ ଜୀବନ ଯାପନ କରିବାଦ୍ୱାରା ମନୁଷ୍ୟ ନିଜର କିମ୍ବା ଜଗତର କୌଣସି ମଙ୍ଗଳ ସାଧନ କରିପାରେ ନାହିଁ । ପୃଥିବୀର ଅନେକ ଆଦର୍ଶ କର୍ମୀ ଏଥିର ନିଦର୍ଶନସ୍ୱରୂପ ସେମାନଙ୍କ ସ୍ୱଳ୍ପ ଜୀବନକାଳ ମଧ୍ୟରେ ଅସାଧାରଣ କାର୍ଯ୍ୟ ସମ୍ପାଦନ କରିଯାଇଛନ୍ତି ।

କେତେକ କହନ୍ତି, ବିନାଶ ଓ ପରିବର୍ତ୍ତନ ଜଗତରେ ପୂର୍ଣ୍ଣ ଆନନ୍ଦ ଲାଭ କରିବା ପଥରେ ବାଧା ଜନ୍ମାନ୍ତି । ଅନ୍ୟ ପକ୍ଷରେ ବୈଚିତ୍ର୍ୟବିହୀନ ଅପରିବର୍ତ୍ତିତ ଗୋଟିଏ ଶୁଷ୍କ ଅବସ୍ଥାର ଅଧୀନ ହେଲେ ଜୀବନର ସ୍ଫୂର୍ତ୍ତି ଓ ଆନନ୍ଦ ରହେ ନାହିଁ । ବିଷୟବାସନା-ଅନାସକ୍ତ ଲୋକ ସାଂସାରିକ କ୍ରିୟାମାନଙ୍କରେ ଅବିଚଳିତ ଥାଇ ପ୍ରକୃତ ଆନନ୍ଦ ପାଇପାରେ; କିନ୍ତୁ ଏପରି ନିର୍ଲିପ୍ତ ଅବସ୍ଥାରେ ଜୀବନ ଯାପନ କରିବା ସହଜ ନୁହେଁ । ଜୀବ ନିରନ୍ତର ଆନନ୍ଦ ପାଇଁ ବ୍ୟାକୁଳ । ତାକୁ ସେହି ଉଦ୍ଦେଶ୍ୟରେ ଚାଳିତ କରାଇବା ସାଂସାରିକ ବିଷୟମାନଙ୍କର ଲକ୍ଷ୍ୟ ନୁହେଁ । ଏହା ବୋଲି, ସେମାନଙ୍କୁ ତୁଚ୍ଛ ମନେ କରିବାକୁ ହେବ ନାହିଁ । ଅନ୍ଧକାରରେ ପଡ଼ି ଆଲୋକର ସନ୍ଧାନ ନେବାକୁ ହୁଏ । ମନୁଷ୍ୟ ସଂସାରର କ୍ଷଣସ୍ଥାୟୀ ସୁଖର ପରିଣାମ ଦୁଃଖପୂର୍ଣ୍ଣ ବୁଝି ପାରିଲେ ଆଉ ସେଥିରେ ମନ ନ ବଳାଇ ତାର ଅନ୍ତର୍ନିହିତ ଆତ୍ମଶକ୍ତିକୁ ସଞ୍ଚାର କରେ । ତଦ୍ଦ୍ୱାରା ପାର୍ଥିବ ବସ୍ତୁମାନଙ୍କରେ ଆସକ୍ତି କ୍ରମଶଃ କ୍ଷୀଣ ହୋଇଆସେ । ପରିଶେଷରେ ଆତ୍ମାର ସ୍ୱରୂପ ଅବସ୍ଥାରେ ବିଶ୍ୱର ଉନ୍ମେଷ ଦେଖିବାକୁ ସମର୍ଥ ହେଲେ ସେ ପୂର୍ଣ୍ଣ ଅନନ୍ଦ ପାଏ । କ୍ଷୁଦ୍ରତ୍ୱ-ଜ୍ଞାନ ଅପସାରିତ ହେଲେ ଆତ୍ମବଳର ସମ୍ୟକ୍ ଉତ୍କର୍ଷ ସାଧିତ ହୁଏ । ସେଥିପାଇଁ ମନୁଷ୍ୟ ସମାଜ-ବନ୍ଧନରେ ଥାଇ ପ୍ରଥମେ ଲୋକହିତକର କାର୍ଯ୍ୟମାନ ସାଧନ କରି ଉଦାର ଭାବ ସଞ୍ଚୟ କରେ । ଉଦାରତା ଆସିଲେ ସଂକୀର୍ଣ୍ଣତା ଦୂର ହୁଏ । କାଳକ୍ରମେ ନିଃସ୍ୱାର୍ଥ କାର୍ଯ୍ୟ-ମାନଙ୍କରେ ଲିପ୍ତ ଥାଇ ସେ ତାର ବ୍ୟକ୍ତିତ୍ୱ ଭୁଲିଯାଏ ଓ ସ୍ୱାର୍ଥଜଡ଼ିତ ସଂସାରବନ୍ଧନକୁ ଶିଥିଳ କରେ । ଏ ଅବସ୍ଥାରେ ସେ ତ୍ୟାଗ ସୁଖ ଅନୁଭବ କରେ ।

ପାର୍ଥିବ ଜୀବପକ୍ଷରେ ହଠାତ୍ ତ୍ୟାଗ-ମାର୍ଗ ଅବଲମ୍ବନ କରିବା ସମ୍ଭବ ନୁହେଁ । ପ୍ରଥମେ ଉଚ୍ଚ ଓ ନୀଚ ପଦାର୍ଥ ଭେଦରେ ମନର ଆକର୍ଷଣୀ ଶକ୍ତିକୁ ବ୍ୟକ୍ତିବିଶେଷର ରୁଚି ସ୍ଥିର କରିଯାଏ । ବିଭିନ୍ନ ରୁଚିରୁ ପ୍ରବୃତ୍ତିମାନଙ୍କର ବିକାଶ ଜଣାପଡ଼େ । ଶିକ୍ଷାଦ୍ୱାରା ରୁଚି ମାର୍ଜିତ ହୁଏ ଓ ମନଃସଂଯୋଗ ପାଇଁ ଉପଯୁକ୍ତ ବିଷୟମାନ ଆବଶ୍ୟକ ହୁଅନ୍ତି । ଏସବୁ ପ୍ରାଥମିକ କ୍ରିୟା ଶେଷ ହେଲେ ମନୁଷ୍ୟ ଉଚ୍ଚତର ସୋପାନରେ ଆରୋହଣ କରି ସ୍ୱାର୍ଥ ତ୍ୟାଗରେ ବ୍ରତୀ ହୁଏ । ଏ ପର୍ଯ୍ୟନ୍ତ ସମସ୍ତ ପାର୍ଥିବ ପଦାର୍ଥମାନଙ୍କରୁ ତାର ଆସକ୍ତି ପୂର୍ଣ୍ଣରୂପେ ଛାଡ଼ି ନ ଥାଏ ।

କ୍ଷଣସ୍ଥାୟୀ ସୁଖର ତେଉ ସମୟ ସମୟରେ ତାକୁ ଇତସ୍ତତଃ କରେ; କିନ୍ତୁ ସାଧନାର କର୍କଶ ପଥରେ ଜୀବନ ଅତିବାହିତ ହୋଇଥିବାରୁ ସେ ସହଜରେ ବିଚଳିତ ହୁଏ ନାହିଁ । ଅନେକଙ୍କ ପକ୍ଷରେ ଏ ଅବସ୍ଥାପ୍ରାପ୍ତି ସହଜ ନୁହେଁ । ସର୍ବଦା ସଂସାର

ବିଷୟରେ ଲିପ୍ତ ରହିଲେ କିମ୍ବା କୁହୁକିନୀ ଆଶାର ବଶବର୍ତ୍ତୀ ହୋଇ ଧାବିତ ହେଲେ ମନର ପ୍ରସନ୍ନତା କିଛି ସମୟ ପରେ ନଷ୍ଟ ହୋଇଯାଏ । ସହଜ ସୁଖ-ପ୍ରାପ୍ତିର ଆଶା ଅତ୍ୟଧିକ ମାତ୍ରାରେ ହୃଦୟକୁ ଗ୍ରାସ କରିବାଦ୍ୱାରା ଶୋଚନୀୟ ଦଶା ଭୋଗ କରିବାକୁ ହୁଏ । ମନର ତୁଷ୍ଟିମାତ୍ରାକୁ ପ୍ରଖର କରିବା ଉଚିତ ନୁହେଁ । ପାର୍ଥିବ ସୁଖ ପୂର୍ଣ୍ଣ ଆନନ୍ଦର ଆଭାସ ମାତ୍ର । ସେହି ଆଭାସ କିମ୍ବା ଛାୟାକୁ ଅନୁସରଣ କରି ଲକ୍ଷ୍ୟଭ୍ରଷ୍ଟ ହେବା ମନୁଷ୍ୟର କାର୍ଯ୍ୟ ନୁହେଁ ।

କର୍ମମାର୍ଗ ଦେଇ ସମସ୍ତଙ୍କର ଜୀବନ ନିୟନ୍ତ୍ରିତ ହୁଏ । ଭିନ୍ନ ଭିନ୍ନ କର୍ମରୁ ମନୁଷ୍ୟର ଉନ୍ନତି କିମ୍ବା ଅବନତି ଜଣାପଡ଼େ । ଅନେକେ ମୃତ୍ୟୁରେ ସବୁ କର୍ମର ସମାପ୍ତି ସ୍ଥିର କରି ଉତ୍ସାହହୀନ ହୁଅନ୍ତି । ସେମାନଙ୍କର ଜୀବନ ବଡ଼ ଶୂନ୍ୟ ବୋଧହୁଏ । ଜନ୍ମାନ୍ତରରେ ସେମାନେ କୌଣସି ଆସ୍ଥା ରଖନ୍ତି ନାହିଁ । ଯଦି ସେମାନଙ୍କ ମତାନୁଯାୟୀ ସ୍ଥିର କରିବାକୁ ହୁଏ ଯେ, ମୃତ୍ୟୁ ପରେ ଆଉ ଜୀବର ବିକାଶ ହୁଏ ନାହିଁ ଓ ଅନନ୍ତ କାଳଗର୍ଭରେ ସେ ଲୀନ ହୋଇଯାଏ, ତଥାପି ନିରୁତ୍ସାହ ହେବା ଉଚିତ ନୁହେଁ । ଗାଢ଼ ନିଦ୍ରାରେ ମନୁଷ୍ୟ ଯେପରି ସୁଖ ଓ ଶାନ୍ତି ଅନୁଭବ କରେ, ମୃତ୍ୟୁ ପରେ ଚିରକାଳ ପାଇଁ ସେହି ଅବସ୍ଥା ଆସିବା ବାଞ୍ଛନୀୟ ନୁହେଁ କି ? ଦିବସର କାର୍ଯ୍ୟଶେଷରେ ରାତ୍ରିର ସୁଖନିଦ୍ରା ଓ ସମସ୍ତ କର୍ମଜୀବନର ବିଶ୍ରାମ ମହାନିଦ୍ରା, ଦୁହେଁ ସମାନ ।

କର୍ମହିଁ ଜୀବନ ଓ ମରଣର ବ୍ୟବଧାନକୁ ସଂଯୋଗ କରି ମନରୁ ଶୂନ୍ୟଭାବ ଦୂର କରେ । ବିନାଶରେ ଉତ୍ପତ୍ତିର ବୀଜ ନିହିତ ଥାଏ । ଯାହା ସାଧାରଣ ଚକ୍ଷୁରେ ନଷ୍ଟ ହେବାର ଦେଖାଯାଏ, ତାହା ପୁଣି ଅନ୍ୟ ଆକାରରେ ଜଗତରେ ଅବସ୍ଥାନ କରେ । କର୍ମର ଗୁଣଭେଦରେ ମନୁଷ୍ୟମାନେ ଭିନ୍ନ ଭିନ୍ନ ଦଶାର ଅଧୀନ ହୁଅନ୍ତି । ତା ନ ହୋଇଥିଲେ ସମଭାବାପନ୍ନ ଓ ସମଜାତୀୟ ମନୁଷ୍ୟ ଜଗତରେ ବାସ କରୁଥାନ୍ତେ ।

ମନୁଷ୍ୟର ଜାତିଗତ ବନ୍ଧନ ଅନେକ ପରିମାଣରେ ତାର ଅନୁସୃତ କର୍ମ ଓ ଧର୍ମ ଉପରେ ନିର୍ଭର କରେ । ସମମତାନୁବର୍ତ୍ତୀ ବିଭିନ୍ନ ମନୁଷ୍ୟ ଶ୍ରେଣୀରେ ନାନା ସଂପ୍ରଦାୟ ଓ ଜାତିର ସୃଷ୍ଟି ହୁଏ । କାର୍ଯ୍ୟ-ବୈଷମ୍ୟ ସେମାନଙ୍କ ମଧ୍ୟରେ ଭେଦଭାବ ଜନ୍ମାଏ । ଜାତୀୟ ସ୍ୱାର୍ଥପରତା ଜଗତର ଅକଲ୍ୟାଣ ସକାଶେ ଦାୟୀ ହୁଏ । ଜାତୀୟ ଜୀବନରୁ ପ୍ରବଳର ଦୁର୍ବଳ ଉପରେ ଅତ୍ୟାଚାର ଓ ପଶୁତ୍ୱର ପରିଚୟ ମିଳେ । ନିରପେକ୍ଷ ଭାବରେ ବାସ କରୁଥିଲେ ମନୁଷ୍ୟ ଦ୍ୱେଷର ଅଧୀନ ହୋଇ ଦୁର୍ବଳର ସର୍ବସ୍ୱ ଲୁଣ୍ଠନରେ ଗୌରବ ଅନୁଭବ କରନ୍ତା ନାହିଁ ।

ଯେଉଁମାନେ କହନ୍ତି ପ୍ରବଳର ସବୁ ବିଷୟରେ ଅଧିକାର ରହିବ, ସେମାନଙ୍କର ଲକ୍ଷ୍ୟ କେବଳ ଜଗତର ଅସ୍ଥାୟୀ ବିଷୟମାନଙ୍କରେ ଆବଦ୍ଧ ରହେ । ଅରଣ୍ୟର ହିଂସ୍ରପଶୁମାନଙ୍କ ପରି ସେମାନେ ଅନ୍ୟର ରକ୍ତ ଶୋଷଣ କରି ଜୀବନଧାରଣ କରିବାକୁ ଚାହାନ୍ତି । ବିଶ୍ୱପ୍ରେମ ଆସ୍ୱାଦନରେ ମାନବର ଦେବତ୍ୱ ପ୍ରକାଶ କରିବା ଏମାନଙ୍କ ପକ୍ଷରେ ସମ୍ଭବ ନୁହେଁ । ଲକ୍ଷ୍ୟ ଅନୁସାରେ ଜୀବନର ଗତି ହୋଇଥାଏ । ପାର୍ଥିବ ସମ୍ପଦ ଲାଭ କରିବାକୁ ପ୍ରୟାସୀ ହେଲେ ଦୈବୀ ସମ୍ପଦ ମିଳେ ନାହିଁ । ଯେଉଁମାନେ ଜଗତ ଚକ୍ଷୁରେ ହୀନ, ଦରିଦ୍ର ଓ ପ୍ରବଳର ପଦଦଳିତ, ସେମାନେ ଆତ୍ମନିର୍ଭରଶୀଳ ହେଲେ ଦୁର୍ଜୟ ହୁଅନ୍ତି । ଅହିଂସା ଯେଉଁ ଜାତିର ପ୍ରଧାନ ଅବଲମ୍ବନ, ତାର ଗତିରୋଧ କରିବା ପାର୍ଥିବ ଶକ୍ତିର ସାଧ୍ୟାତୀତ । ଦିନ ଆସେ, ଯେତେବେଳେ ସେହି ଜାତିର ଜୀବନରେ ଗୋଟାଏ ଉଚ୍ଛ୍ୱାସ ଉଠେ ଓ ସମସ୍ତ ଜଗତରେ ତଦ୍ଦ୍ୱାରା ଗୋଟାଏ ନୂତନ ଆଲୋକ ଦେଖାଦିଏ । ଏହି ଆଲୋକରେ ଜଗଦ୍‌ବାସୀ ବୁଝିବେ, ସଂସାରରେ କିଏ ବଡ଼—ପଶୁ ନା ମାନବ ?

# ନୀତି ଓ ସମାଜ

ଅଭିଜ୍ଞତାରୁ ପ୍ରତ୍ୟୟ ଜନ୍ମାଇବାକୁ ହେଲେ କେତେଗୁଡ଼ିଏ ପ୍ରମାଣ ଆବଶ୍ୟକ । ପ୍ରମାଣମାନଙ୍କୁ ବାଦ୍ ଦେଇ କେବଳ ଅନୁସୃତ କୌଣସି ମତ ଉପରେ ନିର୍ଭର କରିବା ସମୀଚୀନ ନୁହେଁ । ଜୀବନ ସମସ୍ୟା ସମାଧାନରେ ଘଟଣାଚକ୍ରରୁ ସଂଗୃହୀତ ତଥ୍ୟକୁ କୌଣସି ପ୍ରମାଣଦ୍ୱାରା ପରୀକ୍ଷା କଲେ କିଛି କ୍ଷତି ନାହିଁ । ଆଦର୍ଶ ଜୀବନର ବିଶେଷତ୍ୱ ଅନେକ ସମୟରେ ଯୌବନରେ ପରିଲକ୍ଷିତ ହୁଏ ନାହିଁ । ଜ୍ଞାନର ବିକାଶ ହେବା ପୂର୍ବରୁ ସ୍ୱାଭାବିକ ଆକାଙ୍‌କ୍ଷା ଓ କର୍ଷଣର ସମନ୍ୱୟରେ ବିକାଶୋନ୍ମୁଖ ଅବସ୍ଥାର ସୂଚନା ମିଳେ ।

କର୍ମୀର ଭାବ ଜ୍ଞାନ ଓ କର୍ତ୍ତୃତ୍ୱରେ ପରିଚୟ ଦିଏ । ଭାଷା ଭାବର ପ୍ରକାଶକ ରୂପେ ସାମାଜିକତାର ଭିତ୍ତି ସ୍ଥାପନ କରେ । ଏହାଦ୍ୱାରା ବ୍ୟକ୍ତିଗତ ଅନୁଭୂତି ଓ ସାଧାରଣ ପ୍ରଚଳିତ ମତର ବ୍ୟବଧାନ ଦୂର ହୋଇ ଭ୍ରମର ପ୍ରଚ୍ଛନ୍ନତା ନଷ୍ଟ ହୁଏ । ନିଭୃତ ସାଧକର ଭାବରାଜ୍ୟରେ ମନୋବିଜ୍ଞାନବିତ୍ ଅଗ୍ରସର ହେବାପାଇଁ ସର୍ବଦା ଚେଷ୍ଟିତ ଥାଏ । ଅଦୃଷ୍ଟ କିମ୍ବା ଅଶ୍ରୁତପୂର୍ବ ବିଷୟମାନଙ୍କର ସ୍ୱରୂପ ଓ ସ୍ଥିତି ନିର୍ଣ୍ଣୟ କରିବାରେ ପରସ୍ପରଠାରୁ ସାହଚର୍ଯ୍ୟ ଲାଭକରି ମନୁଷ୍ୟ କ୍ରମଶଃ ସାମାଜିକ ଉନ୍ନତି ଦିଗରେ ଚାଳିତ ହେଉଛି । ପୃଥିବୀର ସମସ୍ତ ସଭ୍ୟଜାତିର କାର୍ଯ୍ୟ ଓ ଲକ୍ଷ୍ୟ ଅନୁସରଣ କଲେ ଜଣାଯାଏ ଯେ, ଗୋଟାଏ ଉନ୍ମୁକ୍ତ ପ୍ରେରଣା ସେମାନଙ୍କୁ ଏକ ଦିଗରେ ଆକର୍ଷଣ କରି ରଖିବାକୁ ଇଚ୍ଛା କରେ । ସ୍ୱାର୍ଥସିଦ୍ଧି ଏହାର ପ୍ରଧାନ ଅନ୍ତରାୟ । ସ୍ୱାର୍ଥର ପ୍ରତିବନ୍ଧକକୁ ଉଠାଇଦେଲେ ଗୋଟାଏ ମହତ୍ ସମାଜରେ ସମସ୍ତ ମାନବଜାତି ନିର୍ବିରୋଧରେ ବାସ କରିପାରନ୍ତେ । ଉଚ୍ଚ ଓ ନୀଚ ଶ୍ରେଣୀ-ବ୍ୟବଧାନ ଆଧୁନିକ ପ୍ରତ୍ୟେକ ସମାଜରେ ଦୃଷ୍ଟ ହେଲେ ସୁଦ୍ଧା ବୈଦେଶିକ ବିଜାତୀୟ ଭାବ ପରି ଏହା ଅନିଷ୍ଟକାରକ ନୁହେଁ । ଆନ୍ତର୍ଜାତିକ ସମ୍ମିଳନୀ ପ୍ରଭୃତିରେ ପାଶ୍ଚାତ୍ୟ ଜଗତ୍ ଅନେକ ପରିମାଣରେ ଜଟିଳ ସମସ୍ୟାମାନଙ୍କର ସମାଧାନ ଚେଷ୍ଟାରେ ସାମାଜିକତାର ଉନ୍ନତି ସାଧନ କରିଅଛି । ସ୍ୱାଧୀନ ମତବିନିମୟରେ ସନ୍ଦେହର କାଳିମା ଅପସାରିତ ହେଲେ ଈର୍ଷ୍ୟା ଓ ବିରୋଧ ଭାବ ଜାତୀୟ ଜୀବନରେ ପୁଷ୍ଟିଲାଭ କରିପାରେ ନାହିଁ ।

ମନୁଷ୍ୟର ପ୍ରବୃତ୍ତି ଯେ ସମାଜର ବେଷ୍ଟନୀ ମଧ୍ୟରେ ଆବଦ୍ଧ ରହେ, ତଦନୁଯାୟୀ ଉତ୍କର୍ଷ କିମ୍ବା ଅପକର୍ଷ ଲାଭ କରିଥାଏ । ଏକ ସମାଜରେ ବାସ କରୁଥିବା ବ୍ୟକ୍ତିମାନଙ୍କର ସମୟବିଶେଷରେ ଏକ ପ୍ରକାର ଭ୍ରମ ଘଟିବା ଅସମ୍ଭବ ନୁହେଁ; କାରଣ ସେମାନେ ଗୋଟାଏ ସୀମା ମଧ୍ୟରେ ବିଚରଣ କରିବାଦ୍ୱାରା ସମପ୍ରେରଣାର ଅଧୀନ ହୋଇ କାର୍ଯ୍ୟ କରିଥାନ୍ତି । ସମାଜର ବନ୍ଧନ ବାଲ୍ୟାବସ୍ଥାରୁ ମନୁଷ୍ୟକୁ ଗୋଟାଏ ନିର୍ଦ୍ଦିଷ୍ଟ ଛାଞ୍ଚରେ ଗଢ଼ିନେବାକୁ ଲୋଡ଼େ; କିନ୍ତୁ କୌଣସି କୌଣସିଠାରେ ମଧ୍ୟ ଏହାର ବ୍ୟତିକ୍ରମ ଦେଖାଯାଏ ।

ଅଭ୍ୟାସ ସମଷ୍ଟିରେ ବ୍ୟକ୍ତିତ୍ୱର ପରାକାଷ୍ଠା । ଧାରଣା କିମ୍ବା ବିଶ୍ୱାସ ଶିଶୁଜୀବନରେ ଭିତ୍ତି ସ୍ଥାପନ କରି ପରିପକ୍ୱ ଅବସ୍ଥାରେ ନିଜର ଦୃଢ଼ତା ଦେଖାନ୍ତି । ଜୀବନ ଯେ ପ୍ରଣାଳୀରେ ପୁଷ୍ଟିଲାଭ କରେ, ତାକୁ ପ୍ରାକୃତିକ କୌଣସି କ୍ରିୟାଦ୍ୱାରା ହଠାତ୍ ପରିବର୍ତ୍ତିତ କରିବା ସମ୍ଭବପର ନୁହେଁ । ସାଧାରଣତଃ ଅବସ୍ଥାମାନଙ୍କ ପ୍ରଭାବରେ ମନୁଷ୍ୟ ଭଲ କିମ୍ବା ମନ୍ଦ ଦିଗରେ ଗତି କରିଥାଏ । ଅବଶ୍ୟ ପ୍ରତିଭା ଏ ନିୟମର ଅଧୀନ ନୁହେଁ । ଅଧିକାଂଶ ସ୍ଥଳରେ ପ୍ରତିଭା ବିରୋଧୀ ଭାବମାନଙ୍କ ସଂଘର୍ଷରେ ଶୀଘ୍ର ପ୍ରକାଶିତ ହୋଇଥାଏ । ଅବସ୍ଥାଗତ କିମ୍ବା ସାମାଜିକ ପ୍ରବାହ ମନୁଷ୍ୟଜୀବନରେ ଯେପରି କାର୍ଯ୍ୟ କରେ, ଅନ୍ୟାନ୍ୟ ପ୍ରାଣୀଙ୍କଠାରେ ସେପରି କରିପାରେ ନାହିଁ । ପ୍ରାଣିଜଗତରେ ମନୁଷ୍ୟ ସର୍ବାପେକ୍ଷା ବେଶି ଶିକ୍ଷାଲିପ୍ସୁ । ସମାଜ ତାର ପ୍ରଧାନ ଶିକ୍ଷାକ୍ଷେତ୍ର । ପ୍ରତ୍ୟେକ ବ୍ୟାବହାରିକ କ୍ରିୟାରେ ସେ ସାମାଜିକ ନିୟମର ଅଧୀନ ଥାଏ । ଯାବତୀୟ ସାଂସାରିକ କାର୍ଯ୍ୟସମ୍ପାଦନରେ ସମାଜର ଆଦେଶ

ପାଳନ କରିବା ବ୍ୟତୀତ ମନୁଷ୍ୟର ଅନ୍ୟ ଉପାୟ ନ ଥାଏ । ବିଧିର ନିୟମ ସମାଜ ନୀତିରେ ସୁସ୍ଥାପିତ କରି ମନୁଷ୍ୟ ଜାତିକୁ ଶୃଙ୍ଖଳାର ବଶବର୍ତ୍ତୀ କରାଏ । ମନୁଷ୍ୟର କାର୍ଯ୍ୟକଳାପରୁ ତାର ସାମାଜିକ ଅବସ୍ଥା ନିର୍ଣ୍ଣୟ କରାଯାଇପାରେ । ସମାଜ ରକ୍ଷା ସକାଶେ ଯେଉଁ ବିଧି ଓ ଆଇନ ପ୍ରଣୟନ କରାଯାଏ, ତାହା ସତ୍ୟ ଉପରେ ପ୍ରତିଷ୍ଠିତ ହେଲେ ସୃଷ୍ଟିର ମଙ୍ଗଳମୟ ଉଦ୍ଦେଶ୍ୟ ଉପଲବ୍ଧ ହୋଇପାରେ । ସୁବିଶାଳ ବୃକ୍ଷ ଅଙ୍କୁରୋଦ୍‌ଗମ ଅବସ୍ଥାରେ ଯତ୍ନର ଅପେକ୍ଷା କରେ । ସେହି ଯତ୍ନର ଅଭାବ ଘଟିଲେ ବୃକ୍ଷ ସମୂଳେ ନଷ୍ଟ ହେବାର ଆଶଙ୍କା ଥାଏ । ସେହିପରି ମନୁଷ୍ୟର ଅମଙ୍ଗଳ ହେବା ଭୟରେ ମନୀଷୀମାନେ ସମାଜନୀତି ପ୍ରବର୍ତ୍ତନ କରି ତାର କ୍ରମୋନ୍ନତି ପଥ ପରିଷ୍କାର କରିଦିଅନ୍ତି । ଜୀବନର ଗତି ନୀତିମାର୍ଗାବଲମ୍ବୀ ହେଲେ ତାର ଉପାଦେୟତା ଜଣାପଡ଼େ । ସଭ୍ୟତାର ପ୍ରସାର ସଙ୍ଗେ ସାମାଜିକତାର ଉନ୍ନତି ଦେଖିଲେ ମନେହୁଏ ଯେ, ଦୁହିଙ୍କ ମଧ୍ୟରେ ଗୋଟିଏ ଅପରିଚ୍ଛେଦ୍ୟ ସମ୍ପର୍କ ନିହିତ ଅଛି । କୌଣସି ଐଶ୍ୱର୍ଯ୍ୟକୁ ସାମାଜିକତାରେ ପ୍ରକଟିତ କରିବାରେ ସଭ୍ୟତା ବାଧା ଦିଏ ନାହିଁ; ବରଂ ଭାବ ଓ ଭାଷା ସାହାଯ୍ୟରେ ତାର ମୁକ୍ତ ଅବସ୍ଥା ଅନୁଭୂତ ହୋଇଥାଏ ।

ଧର୍ମ, ବିଜ୍ଞାନ, କଳା ପ୍ରଭୃତି ମାନବୀୟ ଭାବନାରାଶିର ପୃଥକ୍ ସ୍ତର ମାତ୍ର । ସେମାନଙ୍କୁ ପ୍ରମାଣଦ୍ୱାରା ସ୍ଥିର କରାଯାଏ । ଭାବର ଆଦାନପ୍ରଦାନରେ ଯୁକ୍ତିର ଆଶ୍ରୟ ଗ୍ରହଣ କରାଯାଇ ଗୋଟିଏ ସିଦ୍ଧାନ୍ତରେ ଉପନୀତ ହେବାକୁ ହୁଏ । କାଳକ୍ରମେ ଭାଷା ଓ ଆଲୋଚନା ବିଷୟରେ ପରିବର୍ତ୍ତନ ଘଟିପାରେ; କିନ୍ତୁ ତଦ୍ଦ୍ୱାରା ଭାବ-ବିନିମୟର କୌଣସି ବାଧା ନ ଥାଏ କିମ୍ବା ସମାଜର କୌଣସି ଅଙ୍ଗହାନି ହୁଏ ନାହିଁ । ପୁରାତନ ହିନ୍ଦୁସମାଜ ସଙ୍ଗେ ଆଧୁନିକ ସମାଜକୁ ତୁଳନା କଲେ ଏ ବିଷୟର ଯାଥାର୍ଥ୍ୟ ସହଜରେ ବୁଝାଯାଇପାରେ । କୌଣସି ବିଷୟରେ କିଛି ବିଶେଷତ୍ୱ କିମ୍ବା ନୂତନତ୍ୱ ଦେଖିଲେ, ସମାଜ ତାକୁ ପରୀକ୍ଷା କରି ଦେଖେ, ତାହା କେତେଦୂର ଗ୍ରହଣୀୟ । ଅଯୌକ୍ତିକ ସମସ୍ୟା ସମାଜରେ ବେଶି ଦିନ ତିଷ୍ଠିପାରେ ନାହିଁ । ଅନ୍ଧବିଶ୍ୱାସର ବଶବର୍ତ୍ତୀ ହୋଇ ମନୁଷ୍ୟ ଗୋଟିଏ ପଦାର୍ଥକୁ ସବୁବେଳେ ଆଦର କରି ନ ପାରେ । ଆଧୁନିକ ସଂସ୍କାର-ପ୍ରୟାସୀ ପୁରାତନ କୁସଂସ୍କାର ବିରୁଦ୍ଧରେ ଯେଉଁସବୁ ପରିବର୍ତ୍ତନ ଆଣିବାକୁ କହେ, ସେମାନଙ୍କୁ ସମାଜ ଅକାତରରେ ଗ୍ରହଣ କରେ ନାହିଁ । ପୂର୍ବର ରୀତିନୀତିକୁ ସମ୍ପୂର୍ଣ୍ଣ ଅକ୍ଷୁଣ୍ଣ ରଖିବା ପାଇଁ ଯେଉଁମାନେ କହନ୍ତି, ସେମାନଙ୍କର ମତ ପ୍ରଶସ୍ତ ବୋଲି ବୋଧହୁଏ ନାହିଁ । ଶକଟ ଓ ବାଷ୍ପୀୟ ଯାନ ଉଭୟର ପ୍ରଚଳନ ପରି ପୁରାତନ ଧର୍ମନୀତି ଓ ଆଧୁନିକ ମାର୍ଜିତ ସମାଜନୀତି ମଧ୍ୟରେ ବିରୋଧ ଜନ୍ମିବାର ଆଶଙ୍କା ନାହିଁ । ସମୟର ଗୁରୁତ୍ୱ ଅନୁସାରେ ଗୋଟିକର ବେଶି ଆଦର ହୋଇପାରେ । ସମାଜର ପରିବର୍ତ୍ତନଶୀଳତା ପ୍ରତି ଲକ୍ଷ୍ୟ କଲେ ଜଣାଯାଏ, ସମାଜ-ନୀତି, ଧର୍ମ-ନୀତି ଅପେକ୍ଷା ବେଶି ସରଳ ଓ ବ୍ୟାପକ । ସେଥିପାଇଁ ଲୋକମାନେ ସମାଜ-ନୀତି ଚର୍ଚ୍ଚା କରିବା ପାଇଁ ବେଶି ଆଗ୍ରହ ପ୍ରକାଶ କରନ୍ତି । ମନୁଷ୍ୟମାନେ ପରିବର୍ତ୍ତନ ଓ ନୂତନତ୍ୱର ପ୍ରୟାସୀ । ସମାଜ-ନୀତି ଆଲୋଚନା କରିବାଦ୍ୱାରା ଏହି ଈପ୍‌ସିତ ବିଷୟରେ ଜ୍ଞାନ ଜନ୍ମେ ଏବଂ ମନୁଷ୍ୟ ନିଜ ଅବସ୍ଥାନୁଯାୟୀ ପରିବର୍ତ୍ତନ ଆଣିବାରେ କ୍ଷମ ହୋଇଥାଏ । ସାମାଜିକ ଉନ୍ନତିରେ ଯେଉଁ ଜ୍ଞାନ ଜନ୍ମେ, ତାହା ସ୍ୱାର୍ଥଜଡ଼ିତ ଅଜ୍ଞାନତା ଓ ଅନ୍ଧକାରକୁ ସମ୍ପୂର୍ଣ୍ଣ ରୂପେ ଦୂର କରେ ।

ଶୃଙ୍ଖଳା ବୁଦ୍ଧିବିସ୍ତାରରେ ସହାୟତା କରେ; ବୁଦ୍ଧି ଜ୍ଞାନର ଅନୁଶୀଳନ କରେ । ବ୍ରହ୍ମଜ୍ଞାନ ଓ ଜଡ଼ବିଜ୍ଞାନର ସାଧନକୌଶଳ ବିଭିନ୍ନ । ବ୍ରହ୍ମବାଦୀ ଓ ବୈଜ୍ଞାନିକ ସ୍ୱତନ୍ତ୍ର ଉପାୟରେ ସେମାନଙ୍କର ସମସ୍ୟା ସମାଧାନ କଲେ ସୁଦ୍ଧା ପ୍ରଣାଳୀ ଏକ । ବିଶିଷ୍ଟ କିମ୍ବା ସମଷ୍ଟିଗତ ବିଷୟମାନଙ୍କରୁ ଯୁକ୍ତିସିଦ୍ଧ ସତ୍ୟ ଉପରେ ଉଭୟେ ପ୍ରତିଷ୍ଠା ସ୍ଥାପନ କରନ୍ତି । ବ୍ରହ୍ମବାଦୀ ଗୁରୁଙ୍କର ପ୍ରତିଷ୍ଠିତ ନୀତି ଓ ଅନୁଜ୍ଞା ଶିଷ୍ୟ ପାଳନ କଲେ ସବୁ ସଂଶୟ ଦୂର ହୁଏ; କିନ୍ତୁ ଜଣେ ବୈଜ୍ଞାନିକର ପ୍ରକାଶିତ ତଥ୍ୟ ଅପରଦ୍ୱାରା ପୁଣି ସଂଶୋଧିତ ହୋଇପାରେ । ଏଥିର ଦୃଷ୍ଟାନ୍ତ ଆଜିକାଲି ଯୁଗରେ ବିରଳ ନୁହେଁ । ଅନ୍ୟ ପକ୍ଷରେ ବିଂଶ ଶତାବ୍ଦୀର ବ୍ରହ୍ମବାଦୀମାନେ ଯୀଶୁ ଓ ବୁଦ୍ଧଙ୍କ ତୁଳନାରେ କେତେ ଦୂର ବାସ୍ତବତା ଆଡ଼କୁ ଅଗ୍ରସର ହୋଇଅଛନ୍ତି, କେହି କହିପାରିବେ କି ? ଆନୁମାନିକ ପ୍ରମାଣ ଉପରେ ବ୍ରହ୍ମଜ୍ଞାନ ଅନେକ ପରିମାଣରେ ନିର୍ଭର କରିବା ହେତୁ ଜଣକଦ୍ୱାରା ପ୍ରବର୍ତ୍ତିତ ଧର୍ମ ଅନ୍ୟମାନଙ୍କଦ୍ୱାରା ସଂଶୋଧିତ ହେବାର ସମ୍ଭାବନା ନ ଥାଏ । ପୃଥିବୀର ବିଭିନ୍ନ ଧର୍ମ ମଧ୍ୟରେ ଯେ ସବୁ ଅସାମଞ୍ଜସ୍ୟ ରହିଛି, ତାକୁ ଦୂର କରି ଗୋଟିଏ ମାର୍ଗରେ ସମସ୍ତ ମନୁଷ୍ୟଜାତିକୁ ଚାଳିତ କରିବା ଅସମ୍ଭବ ବୋଧହୁଏ । ବୈଜ୍ଞାନିକ ତଥ୍ୟମାନଙ୍କରେ କୌଣସି ଭ୍ରମ ବେଶି ଦିନ ରହିପାରେ ନାହିଁ । ପ୍ରତ୍ୟକ୍ଷ ପ୍ରମାଣଦ୍ୱାରା ସେମାନଙ୍କର ବିଶୁଦ୍ଧିକ୍ରିୟା ଉପଲବ୍ଧ କରାଯାଏ ।

ସମାଜିକତାର ବିକାଶ ଓ ନିର୍ଣ୍ଣୟରେ ବିଜ୍ଞାନର ସାହାଯ୍ୟ ଯଥେଷ୍ଟ ନିଆଯାଇପାରେ । ସମାଜ କେତେଗୁଡ଼ିଏ ବିଭିନ୍ନ ଉପାଦାନ—ଜାତି, ଧର୍ମ ଓ କର୍ମ ପ୍ରଭୃତିରେ ଗଠିତ ହୁଏ । ସେଥିରେ ପୁଣି ଧାରାବାହିକ ପ୍ରଥା ଓ କାଳର ପ୍ରଭାବ ଯଥାର୍ଥରୂପେ କାର୍ଯ୍ୟ କରନ୍ତି । ସ୍ଥାନ ଓ ସମୟବିଶେଷରେ ବ୍ୟକ୍ତି କିମ୍ବା ଶ୍ରେଣୀଗତ ବିଶିଷ୍ଟ କୌଣସି କାର୍ଯ୍ୟ ସମାଜ-ଗଠନ ପ୍ରଣାଳୀକୁ ପ୍ରଭାବିତ କରେ । ଉପର୍ଯ୍ୟୁକ୍ତ ବିଷୟମାନଙ୍କରେ ମନୁଷ୍ୟକୁ ପ୍ରଧାନ କର୍ତ୍ତା ବୋଲି ଗ୍ରହଣ କରାଯାଇପାରେ । ମନୁଷ୍ୟକୁ ସମାଜର ଗଠନ-କର୍ତ୍ତା ରୂପେ ନିର୍ଦ୍ଦେଶକରି ତାର କାର୍ଯ୍ୟକୁ ଗାଣିତିକ ପ୍ରଣାଳୀରେ ବିଜ୍ଞାନର ସୀମା ମଧ୍ୟକୁ ଆଣିବା ସହଜ ନୁହେଁ ବୋଲି ଅନେକେ ସ୍ୱୀକାର କରନ୍ତି । ସମାଜର ଗତି ନିର୍ଦ୍ଧାରଣରେ ତାର ପ୍ରଧାନ କାର୍ଯ୍ୟକାରୀ ବୃତ୍ତିଗୁଡ଼ିକୁ ପ୍ରଥମେ ସ୍ଥିର କରିନେଲେ ସାମାଜିକ ଉନ୍ନତି କିମ୍ବା ଅବନତିର ପରିମାଣ ସହଜରେ ଜଣାଯାଇପାରେ । ଅନେକେ କହନ୍ତି, ମନୁଷ୍ୟର ଚରିତ୍ର ବଡ଼ ଜଟିଳ । ତାକୁ ଅନୁସରଣ କରି କୌଣସି ସାମାଜିକ ସିଦ୍ଧାନ୍ତ ପ୍ରକାଶ କରିବା ଉଚିତ ନୁହେଁ । ଯେଉଁମାନେ କେବଳ ମନୁଷ୍ୟର ଦୁର୍ବଳତା ପ୍ରତି ଲକ୍ଷ୍ୟ ରଖିଥାନ୍ତି, ସେମାନେ ଏହି ମତର ଅଧୀନ ହୁଅନ୍ତି । ମନୁଷ୍ୟ-ସ୍ୱଭାବର ଆଲୋଚନା କଷ୍ଟକର ହୋଇପାରେ, ଏହା ବୋଲି ବାହ୍ୟଦୃଷ୍ଟିରେ ପ୍ରଣୋଦିତ ହୋଇ ଗୋଟାଏ ଅଶାଶୂନ୍ୟ ଭାବ ହୃଦୟରେ ପୋଷଣ କରିବା ଉଚିତ ନୁହେଁ । ଜାଗତିକ ସମସ୍ତ କାର୍ଯ୍ୟରେ ସ୍ୱଭାବର ଦୋଷ ଓ ଗୁଣ ସଂଯୁକ୍ତ ଅଛି; ସୁତରାଂ ସ୍ୱଭାବକୁ ବାଦ୍‌ଦେଇ ସାମାଜିକ ବିଷୟ ଆଲୋଚନା କରାଯାଇ ନ ପାରେ ।

ସାମାଜିକ ଅନୁଷ୍ଠାନମାନଙ୍କରେ ବିଭିନ୍ନ ଲୋକାଚାରର ଅନେକ ସମୟରେ ବୈଷମ୍ୟ ଆସେ । ଏହା ଛଡ଼ା ଶ୍ରେଣୀବିଭାଗ ସକାଶେ ମନୁଷ୍ୟର କଳ୍ପିତ ଭେଦବୁଦ୍ଧି ବ୍ୟତୀତ କୌଣସି ଚରିତ୍ରଗତ ପାର୍ଥକ୍ୟକୁ ନିଶ୍ଚିନ୍ତରୂପେ ନିର୍ଦ୍ଦେଶ କରାଯାଇ ନ ପାରେ । ଯଦି ଶ୍ରେଣୀବୈଷମ୍ୟରେ ମନୁଷ୍ୟର ବେଶି ଅନୁରାଗ ଜନ୍ମୁ ନ ଥାନ୍ତା, ତା'ହେଲେ ଏକତାର ମହତ୍ତ୍ୱ ସମାଜରେ ପ୍ରତିପନ୍ନ କରାଇବା ପାଇଁ ସମାଜନାୟକମାନଙ୍କୁ ଆଦୌ ଚେଷ୍ଟା କରିବାକୁ ପଡ଼ନ୍ତା ନାହିଁ । ପୌରୋହିତ୍ୟ, ପଣ୍ଡିତ୍ୱ ଓ ଦାସତ୍ୱ ପ୍ରଭୃତି ଉଚ୍ଚ ନୀଚ କାର୍ଯ୍ୟମାନଙ୍କରେ ମନୁଷ୍ୟମାନଙ୍କୁ ଶ୍ରେଣୀବଦ୍ଧ କରାଯାଇ ନ ଥିଲେ, ସମାଜରେ ଜଟିଳତା ମଧ୍ୟ ଜନ୍ମି ପାରନ୍ତାନାହିଁ । ସମ-ଅବସ୍ଥାପନ୍ନ ଲୋକମାନଙ୍କର ଚରିତ୍ର ସହଜରେ ପରୀକ୍ଷା କରାଯାଇପାରେ । ଭିନ୍ନ ଭିନ୍ନ ଅବସ୍ଥାଧୀନ ମନୁଷ୍ୟର ପ୍ରକୃତ ଚରିତ୍ର ଅଧିକାଂଶ ସମୟରେ ଆବୃତ ଥାଏ । ଧନୀ ଓ ପଦସ୍ଥ ବ୍ୟକ୍ତିମାନେ ସମାଜ ଚକ୍ଷୁରେ ଗୋଟିଏ କୃତ୍ରିମ ବ୍ୟବହାର ଦେଖାନ୍ତି, ଯଦ୍ଦ୍ୱାରା ସେମାନଙ୍କ ସ୍ୱଭାବାନୁଗତ ଧର୍ମ ସହଜରେ ପ୍ରକାଶିତ ହୁଏ ନାହିଁ । ଏହି ଅବାସ୍ତବ ପରଦାକୁ ଅପସାରିତ କରିଦେଲେ ମନୁଷ୍ୟର ପ୍ରକୃତ ପରିଚୟ ମିଳେ ।

ସ୍ଥୂଳତଃ ସମାଜର ଅଙ୍ଗକୁ ଦୁଇଟି ବିଭାଗରେ ବିଭକ୍ତ କରାଯାଇପାରେ । ଗୋଟିକରେ କୃତ୍ରିମତା ଅଭିନୟକାରୀ ପଦସ୍ଥ ଓ ଧନୀଲୋକମାନଙ୍କୁ ଦେଖାଯାଏ ଏବଂ ଅପରଟିରେ ଶକ୍ତିର ତାରତମ୍ୟ ଅନୁସାରେ ଆଡ଼ମ୍ବରହୀନ ସମସ୍ତ ସତ୍କର୍ମୀମାନଙ୍କର ସ୍ଥାନ ନିରୂପଣ କରାଯାଇପାରେ । ପ୍ରଥମ ବିଭାଗକୁ ବାଦ୍ ଦେଇ ଦ୍ୱିତୀୟରେ ମନୋନିବେଶ କଲେ ଶକ୍ତି ଓ କର୍ମର ବିସ୍ତାର ସଙ୍ଗେ ସମାଜର ଉନ୍ନତି ପରିମାଣ ଜଣାପଡ଼େ । ବିଜ୍ଞାନର ଭିତ୍ତି ଉପରେ କର୍ମପ୍ରସୂ ସାମାଜିକ ନିୟମର ପ୍ରତିଷ୍ଠା ସହଜ-ସାଧ୍ୟ ହୁଏ; ବୃଥା ଆଡ଼ମ୍ବର-ମୋହ କର୍ମଜଗତରୁ ଅନ୍ତର୍ହିତ ହୋଇ ସରଳତାର ଚିତ୍ର ସମାଜ ଆଗରେ ଅଙ୍କିତ ହୁଏ ।

ସମାଜ-ନୀତି ପ୍ରଚଳନରେ ସତ୍ୟପ୍ରତି ଅବ୍ୟାହତ ଦୃଷ୍ଟି ରଖିବା ଆବଶ୍ୟକ । ଧର୍ମର ଦୋହାଇ ଦେଇ ଶ୍ରେଣୀଗତ ପାର୍ଥକ୍ୟରେ ସ୍ୱାର୍ଥର ବୀଜ ରୋପଣ କଲେ ଭବିଷ୍ୟତର ଅମଙ୍ଗଳ ଅନିବାର୍ଯ୍ୟ ହୁଏ । ସମାଜର କଲ୍ୟାଣକର କାର୍ଯ୍ୟରେ ଗୁଣକୁ ଅପେକ୍ଷା କରି ଅସମାନ ଅଧିକାର ସୃଷ୍ଟି କରିବାଦ୍ୱାରା ସଙ୍କୀର୍ଣ୍ଣତା ବଢ଼ିଯାଏ । ସାମାଜିକତା ପ୍ରସାରଣରେ ଦେଶପ୍ରୀତି ସ୍ୱତଃ ଜାତ ହୁଏ । ଜାତୀୟତା ଗଠନ କରିବା ପାଇଁ ଅନ୍ୟ ଉପାୟ ଅବଲମ୍ବନ କରିବାକୁ ପଡ଼େ ନାହିଁ । ପ୍ରତ୍ୟେକ କ୍ରିୟାକୁ କଠିନ ଧର୍ମ-ଆବରଣରେ ଆବୃତ କରି ରଖିଲେ, ସମାଜର ସ୍ୱଚ୍ଛନ୍ଦ ଗତିରେ ବାଧା ଆସେ । ଧର୍ମକୁ ବାଦ୍ ଦେଲେ ସମାଜ-ନୀତି-ଗଠନ ଅସମ୍ଭବ ବୋଧ ହୋଇପାରେ; କିନ୍ତୁ ସେମାନଙ୍କ ମଧ୍ୟରେ ଗୋଟାଏ ବ୍ୟବଧାନ ରହିବା ଆବଶ୍ୟକ । କେବଳ ଖାଣ୍ଟି ଧର୍ମ ଉପରେ ସାଂସାରିକ ଜୀବନ ଗଢ଼ା ହୋଇ ନ ପାରେ ।

# ଲକ୍ଷ୍ମୀ ବାଈ

ଭାରତମାତାର ମୁକୁଟମଣି, ଦେଶର ସମୁଜ୍ଜ୍ୱଳ ଜ୍ୟୋତିଷ୍କ, ପ୍ରାତଃସ୍ମରଣୀୟା ରାଣୀ ଲକ୍ଷ୍ମୀ ବାଈ ସ୍ୱାଧୀନତା ଅଙ୍କର ଶେଷ-ଯବନିକା ପତନ ବେଳେ ବ୍ରିଟିଶ-କେଶରୀଙ୍କୁ ଯେଉଁ ଅଦମ୍ୟ ସାହସ ଦେଖାଇଥିଲେ, ସେହି ଅମର କାହାଣୀ କାଳଗର୍ଭରେ କଦାପି ମ୍ଳାନ ହେବ ନାହିଁ । ହିନ୍ଦୁର ଅସ୍ତିତ୍ୱ ଥିବା ପର୍ଯ୍ୟନ୍ତ ତାର ବୀରତ୍ୱର ଶେଷ ନିଦର୍ଶନ ଲକ୍ଷ୍ମୀ ବାଈଙ୍କ ଜୀବନୀରୁ ଘୋଷିତ ହେବ ।

ନାରୀ-ହୃଦୟ କୋମଳତାର ଉତ୍ସ । ପାର୍ଥିବ କ୍ଳେଶର ଉଷ୍ଣତା ଦୂର କରିବାପାଇଁ ଏହାର ସୃଷ୍ଟି । ଜଗତର ହାହାକାର ମଧ୍ୟରେ ଏହାର କଳତାନ ସଞ୍ଜୀବନୀ ମନ୍ତ୍ର । ନାରୀ ଅବସନ୍ନ ପୁରୁଷପ୍ରାଣର ଏକମାତ୍ର ଅବଲମ୍ବନ । କଠୋର କାର୍ଯ୍ୟ ସମ୍ପାଦନରେ ପୁରୁଷ ନାରୀଠାରୁ ଅଲକ୍ଷିତରେ ପ୍ରେରଣା ପାଇଥାଏ । ରାଜପୁତ ବୀରର ଅସାମାନ୍ୟ ବୀରତ୍ୱ ରାଜପୁତ ରମଣୀର ନିଃସ୍ୱାର୍ଥ ପ୍ରେମ ସହାୟତାରେ ଉଦ୍ଭାସିତ ହୋଇଉଠିଥିଲା । କମଳିନୀ ରବିଙ୍କର ଖରତେଜରେ ତାର ଶୋଭା ବିସ୍ତାର କରେ । ନାରୀର ଅଲକ୍ଷିତ ସଦ୍‌ଗୁଣସବୁ ପୁରୁଷ ସମ୍ପର୍କରେ ଜଗତ୍ ସମକ୍ଷରେ ଗୋଟାଏ ଅନିନ୍ଦ୍ୟ ଆଦର୍ଶ ସୃଷ୍ଟି କରେ, ଯାହାକୁ ଲକ୍ଷ୍ୟ କରି ପୁରୁଷ ସହସ୍ର ନିର୍ଯ୍ୟାତନା ମଧ୍ୟରେ ତାର ସୁନ୍ଦର ସଂସାର ଗଢ଼ିନିଏ । ନାରୀ ବିଳାସର ସାମଗ୍ରୀ ନୁହେଁ; କେବଳ ସରସତା ଆଣି ପୁରୁଷ ପ୍ରାଣକୁ ସତେଜ କରିବା ତାର କାର୍ଯ୍ୟ ନୁହେଁ । ସୁରଭି କୁସୁମର ସ୍ନିଗ୍ଧତା ଓ ବଜ୍ରର ଦୃଢ଼ତା ନାରୀପ୍ରାଣରେ ଲକ୍ଷିତ ହେବା ଆବଶ୍ୟକ । ନିର୍ମମ କର୍ତ୍ତବ୍ୟ ନିକଟରେ ତାର ସେହି ସ୍ନିଗ୍ଧତା ଭଗ୍ନ ପୁରୁଷହୃଦୟକୁ ନୂତନ ବଳ ଦେଇ ମାନବ ଜୀବନକୁ ଚୈତନ୍ୟମୟ କରିଦିଏ । ସାବିତ୍ରୀଙ୍କର ପବିତ୍ର ଜୀବନ ଏହାର ଶ୍ରେଷ୍ଠ ନିଦର୍ଶନ । ପ୍ରାଣର ଆରାଧ୍ୟ ଦେବତାଙ୍କୁ ସମରାନଳରେ ପ୍ରବେଶ କରିବା ପାଇଁ ନାରୀ ଉତ୍ସାହ ଦେଇ ଯେଉଁ ଗୌରବ ଅନୁଭବ କରେ, ତାହା ଆଧୁନିକ ଭାରତୀୟ ରମଣୀ ପକ୍ଷରେ ଅନୁଭବ କରିବା ସମ୍ଭବପର ନୁହେଁ । ଜୀବଜଗତ୍ ବିଭିନ୍ନ ସ୍ତରରେ ଗଠିତ । ସମଜାତୀୟ ପ୍ରାଣୀମାନଙ୍କ ମଧ୍ୟରେ ମନୁଷ୍ୟ ଚରିତ୍ର ଯେପରି ଜଟିଳତାରେ ପୂର୍ଣ୍ଣ, ତାହା ଅନ୍ୟାନ୍ୟ ଜୀବମାନଙ୍କ ମଧ୍ୟରେ ଦେଖିବାକୁ ବିରଳ । ଏହି ଜଟିଳତା ଅନ୍ଧକାରକୁ ଭେଦ କରି ପୁରୁଷ ଓ ନାରୀ ଜୀବନରେ ଏକତ୍ୱ ପ୍ରତିପାଦନ କଲେ ଜଗତ୍ପତିଙ୍କର ମଙ୍ଗଳମୟ ନିର୍ଦ୍ଦେଶ ପାଳିତ ହୁଏ । ଦୁହିଙ୍କ ମଧ୍ୟରେ ବିଚ୍ଛେଦ ଆଣି ଲକ୍ଷ୍ୟ ଆଡ଼କୁ ଅଗ୍ରସର ହେବା ଦୁରୂହ । କେତେକ ଅସାଧାରଣ ପୁରୁଷ ଓ ନାରୀଙ୍କ ଜୀବନରେ ଉପର୍ଯ୍ୟୁକ୍ତ ବ୍ୟତିକ୍ରମ ଦେଖାଯାଏ । ନାରୀ ଯେତେ ଥର ପୁରୁଷର କାର୍ଯ୍ୟ ସମ୍ପାଦନ କରିଛି ତାହା ଇତିହାସ ପୃଷ୍ଠାରେ ଅମରାକ୍ଷରରେ ଲିପିବଦ୍ଧ କରାଯାଇଛି । ରାଣୀ ଦୁର୍ଗାବତୀ ଆଦି ଯୁଦ୍ଧକ୍ଷେତ୍ରରେ ଯେଉଁ ଅସୀମ ସାହସ ଦେଖାଇଅଛନ୍ତି, ତାହା ଭାରତ-ଇତିହାସକୁ ଚିରଦିନ ଉଜ୍ଜ୍ୱଳ କରି ରଖିବ । ସିଂହର ଅଭାବରେ ସିଂହୀ ଯେପରି ଦ୍ୱିଗୁଣ ବିକ୍ରମରେ ନିଜର ପ୍ରଭାବ ବିସ୍ତାର କରେ, ଭାରତ ରମଣୀ ସେହିପରି ଅସହାୟା ହୋଇ ଜାତିର ଗୌରବକୁ ଅକ୍ଷୁଣ୍ଣ ରଖି ଆସିଛି । ଦୁର୍ଦ୍ଦିନରେ ତାର ଶକ୍ତି ପରୀକ୍ଷା କରାଯାଇଛି । ଘୋର ଅନ୍ଧକାର ମଧ୍ୟରେ ସେ ଦେଶବାସୀଙ୍କୁ ଆଲୋକର ସନ୍ଧାନ ଦେଇଛି । ସ୍ୱାର୍ଥାନ୍ଧ ଭୀରୁ ପୁରୁଷପ୍ରାଣରେ ଯେଉଁ ସ୍ପନ୍ଦନ ସେ ଖେଳାଇ ଦେଇଛି, ତାକୁ ଆଜି ଏ ପତିତ ଜାତି ସ୍ମରଣ କରିବାକୁ ସୁଦ୍ଧା କୁଣ୍ଠିତ । କୋମଳତାର ପ୍ରତିମୂର୍ତ୍ତି ନାରୀ ଅଗ୍ନିର ସ୍ଫୁଲିଙ୍ଗ । ଏହି ଅଗ୍ନିକଣା ସଂଯୋଗରେ ଜାତୀୟ ଅନ୍ଧକାର ଚିରଦିନ ସକାଶେ ଅପସାରିତ ହୋଇପାରେ । ପ୍ରମୋଦ କାନନରେ ରମଣୀର ଅଧିଷ୍ଠାନକୁ ଭସ୍ମୀଭୂତ କରିବା ପାଇଁ ଏହି ଅଗ୍ନିକଣା ବର୍ତ୍ତମାନ ଲୋଡ଼ା ।

ପ୍ରତି ଯୁଗରେ ଦେଶର ମହତ୍ତ୍ୱ କୌଣସି ବିଶିଷ୍ଟ ନର କିମ୍ବା ନାରୀର କାର୍ଯ୍ୟାବଳିଦ୍ୱାରା ପ୍ରମାଣିତ ହୁଏ । ସେହି ଅସାଧାରଣ କାର୍ଯ୍ୟପ୍ରଣାଳୀ ଦେଶର ଅବନତିକୁ ଅପେକ୍ଷା ରଖେ ନାହିଁ । ସାଂସାରିକ କର୍ମର ବିରାମ ନାହିଁ । ସଂଖ୍ୟାତୀତ କ୍ଷୁଦ୍ର ଅନାଦୃତ

କର୍ମ ସମଷ୍ଟିରେ କାଳଚକ୍ରର କୌଣସି ପରିବର୍ତ୍ତନ ପରିଦୃଷ୍ଟ ହୁଏ ନାହିଁ; କିନ୍ତୁ ବାତ୍ୟାବର୍ତ୍ତ ପରି କୌଣସି କୌଣସି କାର୍ଯ୍ୟ ଥରେ ଥରେ ପ୍ରଚଳିତ ମାର୍ଗରେ ବିପ୍ଳବ ଆଣେ । ବିପ୍ଳବବାଦୀଙ୍କୁ ସରଳ ବିଶ୍ୱାସରେ ଅନୁସରଣ କରିବାକୁ ଦେଶ ସହଜରେ ପ୍ରସ୍ତୁତ ହୁଏ ନାହିଁ । ଗୋଟାଏ ସଂଘର୍ଷ ମଧ୍ୟରେ ନୂତନ କର୍ମପନ୍ଥା ତାର ବିଶେଷତ୍ୱ ପ୍ରମାଣ କରି ଲୋକମତ ସଂଗ୍ରହ କରେ । ସମୟୋପଯୋଗୀ ହେଲେ ବିନା ଆପତ୍ତିରେ ଦେଶବାସୀ ନୂତନ କର୍ମମନ୍ତ୍ରକୁ ଗ୍ରହଣ କରନ୍ତି; ନଚେତ୍ ଗୋଟାଏ ବିପର୍ଯ୍ୟସ୍ତ ଅବସ୍ଥାରେ ଦେଶକୁ ପକାଇ ବିପ୍ଳବୀ କର୍ମକ୍ଷେତ୍ରରୁ ଅନ୍ତର୍ହିତ ହୋଇଯାଏ । କେହି କେହି କହି ପାରନ୍ତି—ଏହାଦ୍ୱାରା ମଧ୍ୟ ଦେଶର ପ୍ରଭୂତ କଲ୍ୟାଣ ସାଧିତ ହୁଏ । ଆଳସ୍ୟପରତନ୍ତ୍ର ମୋହାସକ୍ତ ଦେଶବାସୀଙ୍କୁ ଶିକ୍ଷା ଦେବାପାଇଁ ଭଗବାନ ଯେତେ ଉପାୟ ଅବଲମ୍ବନ କରନ୍ତି, ଏହା ତନ୍ମଧ୍ୟରେ ପ୍ରକୃଷ୍ଟ ବୋଲି କୁହାଯାଇପାରେ । କୌଣସି କର୍ମ ଦୋଷ କିମ୍ବା ଗୁଣରୁ ନିର୍ବିକୃତ ନୁହେଁ ; ସୁତରାଂ ପ୍ରତ୍ୟେକ କାର୍ଯ୍ୟକୁ ଭବିଷ୍ୟକଲ୍ୟାଣର ଆଧାର ସ୍ୱରୂପ ଧରି ବିଚାର କରିବା ଆବଶ୍ୟକ । ବର୍ତ୍ତମାନ ଅନିଷ୍ଟ ଯଦି ଭବିଷ୍ୟତ୍ ଇଷ୍ଟରେ ପରିଣତ ହୁଏ, ତା ହେଲେ ମନରୁ ସନ୍ଦେହ ଦୂର କରିବା ସର୍ବାଦୌ କର୍ତ୍ତବ୍ୟ । ଦେଶର କେତେ ଜଣ ଲୋକ ନିରପେକ୍ଷ ଭାବରେ ନୂତନ ପ୍ରବର୍ତ୍ତିତ କାର୍ଯ୍ୟପ୍ରଣାଳୀର ଆଲୋଚନା କରନ୍ତି ? ଅଧିକାଂଶ ସ୍ଥଳରେ ଦେଖାଯାଏ ଯେ, ଆଶୁଫଳପ୍ରଦ କାର୍ଯ୍ୟ ପରିଣାମରେ ଘୋର ଅନିଷ୍ଟ କଲେ ସୁଦ୍ଧା ଦେଶବାସୀ ଅକାତରରେ ତାକୁ ବରଣ କରନ୍ତି । ଯେଉଁଥିରେ ତ୍ୟାଗ ଓ ପୁରୁଷତ୍ୱର ବିକାଶ ଜଣାପଡ଼େ , ତାହା ସାଧାରଣତଃ ଲୋକଦୃଷ୍ଟିରେ ଉପେକ୍ଷିତ ହୋଇଥାଏ । ଏହା ସମ୍ପୂର୍ଣ୍ଣରୂପେ ପ୍ରଚଳିତ ଲୋକଚରିତ୍ରର ଭକ୍ତିହୀନତା ପ୍ରମାଣ କରେ । ମହତ୍ ଚରିତ୍ର ପ୍ରମାଣ ପାଇଁ ଗୋଟାଏ ଜନତାର ସମାବେଶ କରିବାକୁ ପଡ଼େ ନାହିଁ, ସ୍ୱତଃ ତାହା ଫୁଟିଉଠେ । ଶତ୍ରୁ କିମ୍ବା ମିତ୍ରଦୃଷ୍ଟିରେ ତାହା ସମାନ ଦେଖାଯାଏ । ଅପୂର୍ଣ୍ଣ ମନୁଷ୍ୟର ଶ୍ରେଷ୍ଠ ଆଦର୍ଶ ଭଗବାନ ରାମଚନ୍ଦ୍ର ତାଙ୍କର ପରମ ଶତ୍ରୁ ବହୁଦର୍ଶୀ ଅସୁର ରାବଣଠାରୁ ସୁଦ୍ଧା ରାଜନୀତି ଶିକ୍ଷା କରିବାକୁ ପରାଙ୍ମୁଖ ହୋଇ ନ ଥିଲେ । ଉପର୍ଯ୍ୟୁକ୍ତ ବିଷୟର ସତ୍ୟତା ପ୍ରମାଣ କରିବା ଆମ୍ଭମାନଙ୍କର ଉଦ୍ଦେଶ୍ୟ ନୁହେଁ—କେବଳ ଯାହା ମହତ୍ ଓ ଉଦାର ତାହା ସର୍ବଥା ଗ୍ରହଣୀୟ ।

ପରିମିତ ଜୀବନକାଳ ମଧ୍ୟରେ ମନୁଷ୍ୟ କେତେ ରଙ୍ଗର ଚିତ୍ର ଦେଖେ । ସମୟ ବିଶେଷରେ କୌଣସି ବିଶିଷ୍ଟ ଘଟନାକୁ ଅବଲମ୍ବନ କରି ସେ ତାର ଜୀବନ-ତରୀକୁ ସ୍ୱଚ୍ଛନ୍ଦରେ ଛାଡ଼ିଦିଏ । ସେତେବେଳେ ସହସ୍ର ବାଧା ଆସିଲେ ସୁଦ୍ଧା ତାର ଅନ୍ତର୍ନିହିତ ଶକ୍ତି ପୂର୍ଣ୍ଣ ଆବେଗରେ ପ୍ରକାଶିତ ହୁଏ । ଯେତେ ଦିନ ପର୍ଯ୍ୟନ୍ତ ମନୁଷ୍ୟ କେବଳ ସାଂସାରିକ କାର୍ଯ୍ୟ ସମ୍ପାଦନରେ ନିଜର ଶକ୍ତିକୁ ନିୟୋଗ କରି ଆତ୍ମତୃପ୍ତି ଅନୁଭବ କରୁଥାଏ, ସେତେ ଦିନ ଯାଏ ଜୀବନର ମହତ୍ତ୍ୱ ଉପଲବ୍ଧ ହୁଏ ନାହିଁ । କୃଷିଜୀବୀ କିମ୍ବା ଦାସବୃତ୍ତିଜୀବୀ ପକ୍ଷରେ ଜନ୍ମଭୂମି ପାଇଁ ପ୍ରାଣ ବିସର୍ଜନ କରିବା ସମ୍ଭବପର ନୁହେଁ । ସେ ଯେଉଁ ସ୍ତରରେ ଥାଏ, ସେଠାରେ ମାନବିକତାର ଉଦ୍ଗମ ବିକାଶ ହୋଇ ନ ଥାଏ । ସେଥିଯୋଗୁଁ ହିନ୍ଦୁମାନେ ବର୍ଣ୍ଣାଶ୍ରମ ଆଶ୍ରୟରେ ଦେଶର ସ୍ୱାର୍ଥ ଲାଗି କେତୋଟି ଶ୍ରେଣୀବିଭାଗ କରିଥିଲେ । ଉତ୍ତମ, ମଧ୍ୟମ ଓ ଅଧମକୁ ବିଭିନ୍ନ ଅବସ୍ଥାନୁରୂପୀ କାର୍ଯ୍ୟଭାର ଦିଆଯାଉଥିଲା । ଚିରଦିନ ସମାନ ଯାଏ ନାହିଁ । ଭାରତର ଦୁର୍ଦ୍ଦିନ ଆସିଲା । ପ୍ରକୃତ ମର୍ମ ନ ବୁଝି, ହିନ୍ଦୁ ଗୋଟାଏ ରାସ୍ତା ଅନୁସରଣ କଲା । ଜାତିଭେଦକୁ ଗଣ୍ଡିବଦ୍ଧ କରି ସେ ସମାଜମୁଖରେ ଅକାତରରେ ଯେଉଁ କଳଙ୍କ- କାଳିମା ଲେପିଦେଲା, ତାକୁ ପୋଷଣ କରିବା ପାଇଁ ଅଙ୍କନ ହିନ୍ଦୁସନ୍ତାନ ଅଭାବ ହେଲେ ନାହିଁ । ଶକ୍ତିପ୍ରସବିନୀ ଭାରତ ଭୂମି କେତେଗୁଡ଼ାଏ ଅପଦାର୍ଥଙ୍କୁ ଘେନି ଅନ୍ଧକାରରେ ବୁଡ଼ି ରହିଲା । ବହିଃଶତ୍ରୁର ପଦାଘାତକୁ ଉପଯୁକ୍ତ ପ୍ରତିଦାନ ଦେବା ପାଇଁ କ୍ଷତ୍ରିୟକୁଳ ଅଗ୍ରସର ହେଲେ ନାହିଁ । କେତେକ କ୍ଷତ୍ରିୟାପସଦ ଜାତୀୟ ସ୍ୱାର୍ଥରେ ଜଳାଞ୍ଜଳି ଦେଇ ବ୍ୟକ୍ତିଗତ ସ୍ୱାର୍ଥର ଚିତ୍ରକୁ ନିଜ ଦୃଷ୍ଟି ସମ୍ମୁଖରେ ସର୍ବଦା ଦେଖିବାକୁ ଲାଗିଲେ । ଭୀରୁତା ଓ କପଟତାରେ ଦେଶର ଅନ୍ତର୍ଦାହ ହେଲାବେଳେ ସିନ୍ଧୁ-ବକ୍ଷୋଦ୍ଭୂତା ରମାଙ୍କ ଆବିର୍ଭାବ ସଦୃଶ ରାଣୀ ଲକ୍ଷ୍ମୀ ବାଈ ବୀର-ରମଣୀର ଶ୍ରେଷ୍ଠତ୍ୟାଗ ଦେଖାଇଦେଲେ ।

୧୮୫୮ ମସିହା ଜୁନ ୧୭ ତାରିଖଟି କେବଳ ସିପାହୀ-ବିଦ୍ରୋହ ସମ୍ପର୍କରେ ସ୍ମରଣୀୟ ଦିବସ ନୁହେଁ । ଭାରତ ଇତିହାସରେ ଏହି ଦିବସର କ୍ୱଚିତ୍ ତୁଳନା ଦେଖାଯାଏ । ନିଃସ୍ୱ ଭାରତମାତାର ଶେଷ ସମ୍ବଳ, ଭାରତୀୟ ନାରୀର ଶେଷ ଆରାଧ୍ୟା ଦେବୀ, ଆଦର୍ଶର ଶ୍ରେଷ୍ଠା ପୂଜୟିତ୍ରୀ, ତ୍ୟାଗର ଚରମ ନିଦର୍ଶନଭୂତା ନାରୀ-ଶିରୋମଣି ରାଣୀ ଲକ୍ଷ୍ମୀ ପୁତ୍ରକଲେବରା ଜନ୍ମଭୂମିକୁ ଯେଉଁ ଦିନ ନିଜ ଶୋଣିତ ଦାନ କଲେ, ତାହା ଅତୀତର ଗୋଟାଏ ମହତ୍ ଦିବସ ! ଦିନ ଚାଲି ଯାଉଛି, କିଏ ତାର

ଗଣନା କରୁଛୁ ? ଭବିଷ୍ୟତ୍ ବର୍ତ୍ତମାନ ମଧ ଦେଇ ଅତୀତରେ ମିଶି ଯାଉଛୁ; କିନ୍ତୁ ଏ ଅବିରାମ ଘୂର୍ଣ୍ଣନ ବେଳେ କ୍ଷଣେ କ୍ଷଣେ ଗୋଟାଏ ଅଗ୍ନି ସ୍ଫୁଲିଙ୍ଗ ବହିଃଗତ ହୋଇ ପ୍ରଜ୍ଜ୍ୱଳିତ ହୁଏ ଓ ପୁଣି ନିର୍ବାପିତ ହୋଇଯାଏ; ଉଲ୍‌କାପାତ ବେଳେ ନଭୋମଣ୍ଡଳ କିୟତ୍‌ପରିମାଣରେ ଉଦ୍‌ଭାସିତ ହୁଏ । କିନ୍ତୁ ତାର ଅନନ୍ତ ସତ୍ତାରେ ସବୁ କୁଆଡ଼େ ହଜିଯାଏ । ଦୀପ୍ତି ପ୍ରକାଶକ ତାଙ୍କ ଅନନ୍ତ ଗର୍ଭରେ ସମସ୍ତ ଦୀପ୍ତିକୁ ଗ୍ରହଣ କରନ୍ତି; କେବଳ କ୍ଷୁଦ୍ର ମନୁଷ୍ୟକୁ ଜଟିଳ ସଂସାର-ପଥରେ ଅଗ୍ରସର ହେବାପାଇଁ ଗୋଟିଏ ଗୋଟିଏ ସଙ୍କେତ ଦିଅନ୍ତି । ଆଦର୍ଶର ଉଜ୍ଜ୍ୱଳ ଆଭା ଗ୍ରହଣ କରିବାକୁ ଅତ୍ୟଳ୍ପ ଲୋକ ସମର୍ଥ ହୋଇଥାନ୍ତି । ବିଶେଷତଃ ଦେଶର ପତିତ ଅବସ୍ଥାରେ ପ୍ରକୃତ ମାର୍ଗ ଅବଧାରିତ ହୋଇପାରେ ନାହିଁ; ବରଂ ସେହି ଆଲୋକ ସାହାଯ୍ୟରେ ଭ୍ରାନ୍ତିଜ୍ଞାନର ମାତ୍ରା ବଢ଼ିଯାଏ । ଜଣକର ଅସାଧାରଣ ଶକ୍ତି କିଛି ସମୟ ପାଇଁ ଗୋଟାଏ ସରସ ସମସ୍ତ କମ୍ପ୍ରା ଅବସ୍ଥା ସୃଷ୍ଟି କରିପାରେ; କିନ୍ତୁ ସେହି ମହାନୁଭବ ବ୍ୟକ୍ତିଙ୍କ ପଦାଙ୍କ ଅନୁସରଣ କରି କଳଙ୍କ-ରେଖାକୁ ଦୂରକୁ ଟାଣିନେବା ଅନ୍ୟାନ୍ୟଙ୍କ ପକ୍ଷରେ ଅସମ୍ଭବ ନୁହେଁ । ଜାତୀୟ ଚରିତ୍ରରେ ଏହିପରି ଅନେକ ଘଟଣା ଘଟିଥିବାର ପ୍ରମାଣ ମିଳେ । ସମସ୍ତ ଦୃଷ୍ଟିରେ କର୍ମୀର ମହତ୍ତ୍ୱ ନିରୂପଣ କରିବା ଉଚିତ । ବ୍ୟକ୍ତିଗତ ଚରିତ୍ରର ମହନୀୟତା ଜାତୀୟ ଉଚ୍ଛୃଙ୍ଖଳତାରେ ମ୍ଳାନ ବୋଧ ହେବା ସଂକୀର୍ଣ୍ଣ ଦୃଷ୍ଟିର ପରିଚାୟକ । ଯେ ଜାତି ମହତ୍ ନୁହେଁ, ସେ ମହତ୍ତ୍ୱର ମୂଲ୍ୟ ବୁଝେ ନାହିଁ । ବୀରଜାତି ଶତ୍ରୁକୁ ସୁଦ୍ଧା ଉପେକ୍ଷା କରେ ନାହିଁ । ଶତ୍ରୁର ଅମର ଚିତାରେ ଶାନ୍ତିବାରି ସେଚନ କରି ସେ ସୁବିଶାଳ କୀର୍ତ୍ତି ଅର୍ଜନ କରେ ।

ବିଧିର ଆଦେଶ ଅଲଙ୍ଘନୀୟ । ତାର ବିଚିତ୍ର ବିଧାନରେ ବ୍ରିଟେନ ଆଜି ଭାରତର ଭାଗ୍ୟବିଧାତା । କର୍ମସୂତ୍ରର ଅଧୀନ ହୋଇ ଭାରତ ତାର ଅତୀତ ପାପରାଶିର କ୍ଷାଳନ କରୁଛି । ଜନ୍ମଭୂମି ସକାଶେ ଉତ୍ସର୍ଗୀକୃତ ଲକ୍ଷ୍ମୀଙ୍କର ନଶ୍ୱର ଶରୀର ପବିତ୍ର ସମରକ୍ଷେତ୍ରରେ ବିଲୀନ ହୋଇଯାଇଛି; କିନ୍ତୁ ତାଙ୍କର ଅପାର୍ଥିବ ଯଶୋଗାଥା ବ୍ରିଟିଶ ବୀର ଲିପିବଦ୍ଧ କରିବାକୁ ପଶ୍ଚାଦ୍‌ପଦ ହୋଇ ନାହାନ୍ତି । ଦେଶମାତୃକାର ମହତ୍ତ୍ୱ ରକ୍ଷା ଲାଗି ତରବାରୀହସ୍ତରେ ମହାନିଦ୍ରାରେ ଅଭିଭୂତ ହେବା ପାଇଁ ଲକ୍ଷ୍ମୀ ତିଳେ ମାତ୍ର ଦ୍ୱିଧା ବୋଧ କରି ନାହାନ୍ତି । ଲକ୍ଷ୍ମୀଙ୍କର ସ୍ୱାଭାବିକ କୋମଳ ହୃଦୟ ବିପକ୍ଷ ପକ୍ଷର ସମର ଦୁନ୍ଦୁଭି ବାଜି ଉଠିଲବେଳେ ଦୃପ୍ତା ସିଂହୀର ଭୀଷଣ ଗର୍ଜନ ପରି ପ୍ରତ୍ୟୁତ୍ତର ଦେବାକୁ ବିସ୍ମୃତ ହୋଇ ନାହିଁ । ସ୍ୱାଧୀନତା ରକ୍ଷା ଲାଗି ସମରର ସୃଷ୍ଟି । ମୁକ୍ତ ବିହଙ୍ଗ ପିଞ୍ଜରରେ ଆବଦ୍ଧ ହେବାକୁ ଚାହେଁ ନାହିଁ । ଅନନ୍ତ ଆକାଶରେ ଉଡ଼ି ପାରିଲେ ସେ ଅସୀମ ଆନନ୍ଦ ଅନୁଭବ କରେ । ଲକ୍ଷ୍ମୀଙ୍କ ପରି ଅସାଧାରଣ ମାନବୀଙ୍କ ମନରେ ଏହି ସ୍ୱାଧୀନତା ଧନରୁ ବଞ୍ଚିତ ହେବା କେତେ ଦୂର ମର୍ମାନ୍ତିକ କଷ୍ଟ ଦେଇଥିବ, ତାହା ସହଜରେ ଅନୁମାନ କରାଯାଇ ପାରେ । ଝାନ୍‌ସିର କ୍ଷୁଦ୍ରତ୍ୱ ତୁଳନାରେ ତାର ଅଧୀଶ୍ୱରୀର ଅମିତ ବିକ୍ରମ ତତ୍‌କାଳୀନ ଭାରତବିଜେତାଙ୍କୁ ସ୍ତମ୍ଭିତ କରିଦେଇଥିଲା । ବ୍ରିଟିଶ୍ ପ୍ରତିନିଧିଙ୍କୁ ସେ ଯେଉଁ ନିର୍ଭୀକ ବାଣୀ ଶୁଣାଇଥିଲେ, ତାହା ଆଜି ଭାରତୀୟ ରମଣୀ କଣ୍ଠରେ ମେଘମନ୍ଦ୍ର ଗୁରୁ ଗର୍ଜନ ପରି ଜଣାଯାଏ । ରମଣୀର ବାଣୀ କୀଦୃଶ ଓଜସ୍ୱୀ ଓ ଅବିଚଳିତ, ତାହା ତାଙ୍କ ଉକ୍ତିରୁ ଅନୁମିତ ହୁଏ । ପ୍ରାଣ ବିନିମୟରେ ନିଜର ଜନ୍ମଭୂମିକୁ ରକ୍ଷା କରିବାକୁ ଯାଇ ସେ କହିଲେ, "ମେରା ଝାନ୍‌ସି ଦେଏଙ୍ଗେ ନେହିଁ ।"

ଅସହାୟା ରମଣୀର ବୀରତ୍ୱ ପ୍ରତି ବ୍ରିଟିଶ୍ ସେନାପତି ଦୃକ୍‌ପାତ କଲେ ନାହିଁ । ସିଂହାସନରୁ ତାର ଅମୂଲ୍ୟ ଅବଲମ୍ବନ କାଢ଼ି ନିଆଗଲା । ଝାନ୍‌ସିର ସ୍ୱାଧୀନତା ରବି ଚିରଦିନ ସକାଶେ ଅସ୍ତମିତ ହେଲେ । ଦେଶପ୍ରାଣା ରାଜ୍ୟର ସ୍ୱାଧୀନତା ରକ୍ଷା ଲାଗି ବିଦ୍ରୋହୀମାନଙ୍କ ସହିତ ଯୋଗ ଦେବାକୁ ଘୃଣା ବୋଧ କଲେ । ବୀରତ୍ୱରେ ଯେଉଁ ଜାତି ଅକ୍ଷୟ କୀର୍ତ୍ତି ଅର୍ଜି ଆସିଛି, ସେହି ଜାତିର କୁଳାଙ୍ଗାର ହୋଇ ଲକ୍ଷ୍ମୀ ଅବୈଧ ଉପାୟରେ ବ୍ରିଟିଶ ସୈନ୍ୟମାନଙ୍କୁ ଆକ୍ରମଣ କରିବାକୁ ଆଦୌ ଅଗ୍ରସର ହେଲେ ନାହିଁ ଏବଂ ୧୮୫୭ରେ ଯେଉଁ ଅମାନୁଷିକ ହତ୍ୟାକାଣ୍ଡ ଝାନ୍‌ସିରେ ଘଟିଗଲା, ସେଥିରୁ ସେ କ୍ଷାନ୍ତ ରହିଲେ । ପକ୍ଷାନ୍ତରରେ ନିଜ ଜୀବନକୁ ସଙ୍କଟାପନ୍ନ କରି କେତେକ ଇଂରେଜ ବନ୍ଦୀମାନଙ୍କୁ ରକ୍ଷା କରିବାକୁ ସେ ଯଥାସମ୍ଭବ ଚେଷ୍ଟା କରିଥିଲେ । କୋମଳତାର ଚରମ ବିକାଶ ଲକ୍ଷ୍ମୀଙ୍କ ଚରିତ୍ରରେ ପ୍ରମାଣିତ ହେଲା । ସେ ମାତୃଜାତିର ଗୌରବକୁ ଅକ୍ଷୁଣ୍ଣ ରଖିଗଲେ । ମୁସଲମାନ ସିପାହୀମାନେ ତାଙ୍କଠାରୁ ସାହାଯ୍ୟ ପାଇବେ ବୋଲି ଯେଉଁ ଆଶା ପୋଷଣ କରିଥିଲେ, ତାହା ସମୂଳେ ବିଫଳ ହେଲା । ସେମାନେ ରାଣୀଙ୍କ ଉପରେ ବିରକ୍ତ ହୋଇ ଝାନ୍‌ସି ଛାଡ଼ି ଦିଲ୍ଲୀ ଆଡ଼କୁ ଅଗ୍ରସର ହେଲେ । ଇଂରେଜମାନଙ୍କର ଝାନ୍‌ସି ଅଧିକାର କରିବାର ପ୍ରବଳ ଆକାଙ୍‌କ୍ଷା ଥିବାରୁ ସେମାନେ ମଧ ଲକ୍ଷ୍ମୀଙ୍କର ସାହାଯ୍ୟ ପାଇଲେ ନାହିଁ । ଝାନ୍‌ସି ଅଧିକାରରୁ କ୍ଷାନ୍ତ ହୋଇ ଇଂରେଜମାନେ ଯଦି ଲକ୍ଷ୍ମୀଙ୍କର କାର୍ଯ୍ୟାବଳୀ ନିରପେକ୍ଷଭାବରେ ବିଚାର କରିଥାନ୍ତେ, ତାହା ହେଲେ ଭାରତର ଶେଷ କମଳକଳିକାଟି ଅକାଳରେ ଝଡ଼ି ପଡ଼ି ନ ଥାନ୍ତା ।

ଇଂରେଜମାନେ ରାଣୀଙ୍କୁ ବିଦ୍ରୋହର ପ୍ରଧାନ ପୋଷପୃଷ୍ଠିଣୀ ବୋଲି ମନେ କରିଥିଲେ । ୧୮୫୮ ମସିହା ମାର୍ଚ୍ଚମାସ ୨୨ ତାରିଖରେ ଝାନ୍ସି ଅବରୁଦ୍ଧ ହେଲା । ପକ୍ଷାବଧି ଭୀଷଣ ସଂଗ୍ରାମ ଚାଲିଲା । ରାଣୀଙ୍କର ସନ୍ଧି ପ୍ରସ୍ତାବ ନେଇ ଯେଉଁମାନେ ଇଂରେଜ ଶିବିରକୁ ଯାଇଥିଲେ, ସେମାନଙ୍କୁ ପ୍ରକାଶ୍ୟ ଭାବରେ ପ୍ରାଣଦଣ୍ଡ ଦିଆଯାଇଥିଲା । ଦୂତମାନଙ୍କର ଭାଗ୍ୟମୀମାଂସା ଦେଖି ଲକ୍ଷ୍ମୀ ନିଜର ପରିଣାମ ଜାଣିପାରିଲେ । କ୍ଲାନ୍ତ ଓ ଭଗ୍ନହୃଦୟରେ ସେ ଏକାକିନୀ ନିବିଡ଼ ଅନ୍ଧକାରମୟ ରଜନୀରେ ଝାନ୍ସି ଦୁର୍ଗରୁ ରଣାଙ୍ଗନରେ ରମଣୀର ଆତ୍ମବଳ ପରୀକ୍ଷା ଦେବାପାଇଁ ବିଦାୟ ନେଲେ । ଏହା ପରେ ତିନି ମାସ ପର୍ଯ୍ୟନ୍ତ ଯେଉଁ ସବୁ ଖଣ୍ଡସମର ଚାଲିଥିଲା ସେଥିରେ ତାଙ୍କର ରଣନୈପୁଣ୍ୟ ଅସାଧାରଣଭାବରେ ପ୍ରକାଶିତ ହୋଇଥିଲା । ତାଙ୍କର ଅଦମ୍ୟ ସାହସ ଦେଖି ତତ୍କାଳୀନ ଇଂରେଜ ସେନାପତି ସାର ହିଉ ରୋଜ୍ ବିସ୍ମିତ ହୋଇଥିଲେ । ଜୁନମାସର ୧ ତାରିଖରେ ଗୁଆଲିୟର ଦୁର୍ଗ ଇଂରେଜମାନଙ୍କର ହସ୍ତଗତ ହେଲା । ସାର୍ ହିଉଙ୍କର ଅଧିନାୟକତ୍ୱରେ କ୍ରମଶଃ ଇଂରେଜ ବାହିନୀ ଲକ୍ଷ୍ମୀଙ୍କର ଅଧିକୃତ ସମର-ଭୂମିକୁ ଆକ୍ରମଣ କରିବାକୁ ଲାଗିଲେ । ୧୮୫୮ ମସିହା ଜୁନମାସ ୧୭ ତାରିଖ ସକାଳ ୭ଟା ଘଣ୍ଟା ସମୟରେ ରାଣୀ ଗୁଆଲିୟର ଅଦୂରବର୍ତ୍ତୀ 'କୋଠା କି ସରେଇ' ସହର ନିକଟବର୍ତ୍ତୀ ଛାଉଣୀରେ ଅବସ୍ଥାନ କରୁଥିବାବେଳେ ସେଠାକୁ ଇଂରେଜମାନଙ୍କର ଆଗମନ ବାର୍ତ୍ତା ଜାଣିପାରିଲେ ।

ଲକ୍ଷ୍ମୀ ବୀରବେଶରେ ସଜ୍ଜିତ ହେଲେ । ପୁରୁଷର ଆଦର୍ଶ କାର୍ଯ୍ୟ ସମ୍ପାଦନ କରିବେ ବୋଲି ନାରୀଶିରୋମଣି ବୀରର ପରିଚ୍ଛଦ ପରିଧାନ କରିବାକୁ ଗୌରବ ମନେ କଲେ । ଅଶ୍ୱପୃଷ୍ଠରେ ଆରୋହଣ କରି ସେ ବ୍ରିଟିଶ ବାହିନୀର ସମ୍ମୁଖୀନ ହେଲେ । ଦୃପ୍ତା ସିଂହୀ ମରଣକୁ ଅକାତରରେ ଆହ୍ୱାନ କଲା । ସମରାଗ୍ନି ପ୍ରବଳବେଗରେ ଜଳି ଉଠିଲା । ଭାରତର ବୀରତ୍ୱ ଗରିମା ଶେଷଥର ପାଇଁ ତାର ଆଭା ଦେଖାଇଦେଲା । ଭାରତ ରମଣୀର ଅସୀମ ସାହସ ନିକଟରେ ପ୍ରବଳ ଇଉରୋପୀୟ ଅଶ୍ୱାରୋହୀମାନେ ସେମାନଙ୍କର ଯଥାସାଧ୍ୟ ଶକ୍ତି ପ୍ରୟୋଗ କରିବାକୁ ଆଦିଷ୍ଟ ହେଲେ । ଲକ୍ଷ୍ମୀ ପଶ୍ଚାତ୍‌ପଦ ହେଲେ ନାହିଁ । ଅସ୍ତମିତ ସୂର୍ଯ୍ୟ ଦିଗ୍‌ବଳୟରେ ଲୁକ୍‌କାୟିତ ହେବାର ସମୟ ଆସିଥିଲା । ସମରର ପ୍ରଳୟ ଝଞ୍ଜାରେ ଲକ୍ଷ୍ମୀଙ୍କର ସହଯୋଦ୍ଧାମାନେ କ୍ଷୁବ୍ଧ ହୋଇ ପଳାୟନ କଲେ । ତାଙ୍କର ଅଶ୍ୱ ଆଦେଶ ନ ମାନି ପଳାତକମାନଙ୍କୁ ଅନୁସରଣ କଲା । ସେ ନିର୍ବିଘ୍ନରେ ରକ୍ଷା ପାଇପାରିଥାନ୍ତେ; କିନ୍ତୁ ଘନ ଅନ୍ଧକାର ମଧ୍ୟରେ ଆଲୋକର ଚିହ୍ନ ଲୁଚା ରଖିବା ଭଗବାନଙ୍କର ଅଭିପ୍ରାୟ ନ ଥିଲା । ସୈନ୍ୟଛାଉଣୀର ନିକଟବର୍ତ୍ତୀ ପରିଖା ପାର ହେଲାବେଳେ ଲକ୍ଷ୍ମୀଙ୍କର ଅଶ୍ୱ ହଠାତ୍ କୌଣସି ବାଧା ପାଇ ପଡ଼ିଗଲା । ଜଣେ ଇଂରେଜ ସୈନିକ ଏହି ଅବସରରେ ତାଙ୍କୁ ଆଘାତ କଲା । ଆଘାତକୁ ଉପେକ୍ଷା କରି ପୁଣି ଉଠିଲା ବେଳକୁ ଗୋଟାଏ ଗୁଳି ଆସି ତାଙ୍କ ବକ୍ଷଦେଶରେ ବିଦ୍ଧ ହେଲା । ଲକ୍ଷ୍ମୀ ନଶ୍ୱର ଲୀଳା ଶେଷ କଲେ; ବୀରତ୍ୱର ଏକମାତ୍ର ଆଶ୍ରୟ ଜନ୍ମଭୂମିରୁ ବିଦାୟ ନେଲେ । ତ୍ରୟୋବିଂଶବର୍ଷ-ବୟସ୍କା ଯୁବତୀ ଜଗତ୍ ସମକ୍ଷରେ ଯେ ଆଦର୍ଶ ରଖିଦେଇଗଲେ, ସେଥିସକାଶେ ହତଭାଗ୍ୟ ଭାରତ ଚିରଦିନ ଋଣୀ ରହିବ । ଲକ୍ଷ୍ମୀଙ୍କ ପ୍ରତି ଯୋଦ୍ଧା ଇଂରେଜ ସେନାପତି ସାର୍ ହିଉ ରୋଜ୍ ତାଙ୍କ ବୀରତ୍ୱ ସମ୍ବନ୍ଧରେ ଯାହା ଅନୁଭବ କରିଥିଲେ, ନିମ୍ନରେ ତାହା ଉଦ୍ଧାର କରାଗଲା—

"The most important result of the day was the death of Rani of Jhansi who although a lady was the bravest and best military leader of the rebels."

ଇଂରେଜମାନଙ୍କ ଦୃଷ୍ଟିରେ ଲକ୍ଷ୍ମୀବାଈ ଅନାଦୃତ ହୋଇପାରନ୍ତି, ତାଙ୍କଦ୍ୱାରା ଇଂରେଜ ଶକ୍ତି ବିଚଳିତ ହୋଇପାରିଥାଏ; କିନ୍ତୁ ଭାରତବାସୀଙ୍କ ଦୃଷ୍ଟିରେ ସେ ଅମରୀର ସ୍ଥାନ ଅଧିକାର କରିଅଛନ୍ତି । ଅନ୍ୟାୟ ଯୁଦ୍ଧ କରିଥିଲେ ମାଲ୍‌ସନ୍‌ଙ୍କ ପରି ଐତିହାସିକ ଲକ୍ଷ୍ମୀଚରିତ୍ରର ମହତ୍ତ୍ୱ ପ୍ରମାଣ କରି ନ ଥାନ୍ତେ । ଲର୍ଡ଼ କର୍ଜନ ଏହି ଅସାଧାରଣ ବୀରରମଣୀର ସ୍ମୃତିରକ୍ଷା ଲାଗି ତାଙ୍କ ନିର୍ମିତ ଭିକ୍ଟୋରିୟା ସ୍ମୃତି ସୌଧରେ ସ୍ଥାନ ନିର୍ଦ୍ଦେଶ କରିଦେଇଥିଲେ । ବୈଦେଶିକ ଯେ ଶତ୍ରୁର ଗରିମା ପ୍ରଚାର କଲେ, ତାକୁ ଭାରତୀୟମାନେ ଅନୁସରଣ କରିପାରିଲେ ନାହିଁ । ଦାମିନୀର ଆକସ୍ମିକ ଚମକରେ ଅନ୍ଧକାରମୟ ଭାରତଆକାଶ କ୍ଷଣିକ ଦୀପ୍ତି ପ୍ରକାଶ କରି ପୁଣି ସ୍ତବ୍ଧ ହୋଇଗଲା । ବୀର-ପ୍ରସବିନୀ ଭାରତଭୂମି ଅସମ୍ଭାଳ ଶୋକାବେଗରେ ନିଜର ମୁଖକୁ ଆବୃତ କରି ରଖିଲା । କିଏ କହିବ, ତାର ଅସହ୍ୟ ଦୁଃଖ ଅପନୋଦନ କରିବା ପାଇଁ ଉପଯୁକ୍ତ ସନ୍ତାନମାନେ ପୁଣି ଆବିର୍ଭୂତ ନ ହେବେ ! !

# ଅତୀତର ଉଦ୍‌ବୋଧନ

କାଳସ୍ରୋତ ଅବିଚ୍ଛିନ୍ନ ଭାବରେ ଭବିଷ୍ୟତ ଗର୍ଭରୁ ଆସି ଅନନ୍ତ ଅତୀତ ଗର୍ଭରେ ଲୀନ ହୋଇଯାଏ । ବ୍ୟଥିତ ହୃଦୟର ନୀରବ ସାକ୍ଷୀ ତପ୍ତ ଅଶ୍ରୁକଣାଟି ପୃଥିବୀ-ବକ୍ଷରେ ପଡ଼ି ଲିଭିଯାଏ; କେହି ତା ପ୍ରତି ଦୃଷ୍ଟି ଦିଅନ୍ତି ନାହିଁ । ଐଶ୍ୱର୍ଯ୍ୟ ଗର୍ବରେ ମାନବ ତାର ବିଜୟ-ବୈଜୟନ୍ତୀ ମୁହୂର୍ତ୍ତିକ ପାଇଁ ଦେଖାଇଦିଏ; ପୁଣି ପର ମୁହୂର୍ତ୍ତରେ ସର୍ବଗ୍ରାସୀ କାଳ ଅତୀତରେ ସବୁ ସମାନ କରିଦିଏ । ଦୁଃଖ ଓ ସୁଖ ଗୋଟିଏ ଗୋଟିଏ ଛାୟା ମାତ୍ର । ଅସ୍ଥାୟୀ ସଂସାରବାସୀ ଦୁଇ ଦିଗରେ କାଳର ଦୁଇଟି ପ୍ରତିମୂର୍ତ୍ତି ଦେଖେ—ଅତୀତ ଓ ଭବିଷ୍ୟତ । ବର୍ତ୍ତମାନର ଦୁଃଖକୁ ଅତୀତରେ ମିଶାଇ, ଭାବୀ ସୁଖକୁ ଭବିଷ୍ୟତରେ କଳ୍ପନା କରି ତାର ଜୀବନ ଅତିବାହିତ କରେ । ବାଲ୍ୟର ଅସ୍ପଷ୍ଟ ମନୋଭାବ ଯୌବନରେ ବିକଶିତ ହୁଏ; ସରଳ ପ୍ରାଣରେ ଉଦ୍ଦାମ ଭାବ ଦେଖାଦିଏ । ଅତୀତସ୍ମୃତିରେ ଉଦ୍‌ବୁଦ୍ଧ ଯୁବକ ସ୍ୱତନ୍ତ୍ର ପ୍ରେରଣାର ଅଧୀନ ହୁଏ । ସେ ଦେଖେ, ତାର ବାଲ୍ୟକ୍ରୀଡ଼ାକ୍ଷେତ୍ର ଉଭେଇ ଯାଇଛି; ପୂର୍ବ ସାଥୀମାନଙ୍କର ସରସ ସମ୍ପର୍କ ଆଉ ନାହିଁ; ଘଟଣାଚକ୍ରର ମୁହୁର୍ମୁହୁଃ ପରିବର୍ତ୍ତନରେ ଯୌବନ ଚଞ୍ଚଳ ହୋଇପଡ଼ିଛି । ଅତୀତର ଗୋଟାଏ ଗୋଟାଏ ଭାବ ତା ଆଖି ଆଗରେ କେତେ ରଙ୍ଗରେ ଚିତ୍ରିତ ହୋଇଯାଏ । ରଙ୍ଗାଳୟର ଅଭିନୟ ପରି ତା ଜୀବନର କାର୍ଯ୍ୟଗୁଡ଼ିକ ଅନୁମିତ ହୁଏ । ଶାନ୍ତ ବାଲ୍ୟାବସ୍ଥା ପ୍ରତି ଲକ୍ଷ୍ୟ ନ ରଖି ଯୁବକ ନୂତନ ଆଲୋକ ପାଇବା ଆଶାରେ ବ୍ୟାକୁଳ ହୋଇଉଠେ । ସେତେବେଳେ ତାର ଦୃଷ୍ଟି ଥାଏ ବେଶି ଭବିଷ୍ୟତ୍ ଉପରେ । ସମୟ ବିଶେଷରେ ସେ ଅତୀତ ଜୀବନକୁ ସମ୍ପୂର୍ଣ୍ଣରୂପେ ଭୁଲି କେବଳ ବର୍ତ୍ତମାନ ଉପରେ ନିର୍ଭର କରି ଅଗ୍ରସର ହୁଏ । ହଠାତ୍ କୌଣସି ବାଧା ଆସିଲେ ନିଜର ଜ୍ଞାନ ହରାଇବା ତା ପକ୍ଷରେ ସମ୍ଭବପର ହୁଏ । ଇତର ସାଧାରଣ ଏହି ଅବସ୍ଥାର ଅଧୀନ ଥିବାର ଜଣାଯାଏ ।

ଭବିଷ୍ୟତର ଅନ୍ଧକାରରେ ଆଶାର କଳ୍ପନାକୁସୁମଟି ସର୍ବଦା ଫୁଟିଥାଏ । ନିର୍ଜିତ କ୍ଷିପ୍ତ ପ୍ରାଣ ସେହି କୁସୁମର ଆଘ୍ରାଣ ଲୋଭରେ ଶତବାସନା ପୋଷଣ କରେ । ବଞ୍ଚନାର ଉପଦ୍ରବକୁ ମନୁଷ୍ୟ ସହଜରେ ଉପେକ୍ଷା କରେ । ମାୟାବିନୀ ମାୟାର ଖେଳ ତାକୁ ଭୁଲାଇ ରଖେ । ଘୋର ଅନ୍ଧକାର ଗର୍ଭରେ ଗୋଟିଏ କ୍ଷୀଣ ଆଲୋକରେଖା ତାକୁ ଇଙ୍ଗିତ କରେ । ସେ ଅନୁସରଣ କରେ; କିନ୍ତୁ କେତେବେଳେ ତାହା ଲୁଚିଯାଏ, ତାକୁ ସବୁ ଶୂନ୍ୟ ଦେଖାଯାଏ । କ୍ଳାନ୍ତ ପଥିକ ଦୁରୂହ ପଥ ଅତିକ୍ରମ କରି, ଲକ୍ଷ୍ୟ ସ୍ଥଳରେ ପହଞ୍ଚିବା ପାଇଁ ଅନାଇ ରହେ । ସେ ଗୋଟିଏ ଆଶାରେ ଅବିଶ୍ରାନ୍ତ ଗତିରେ ଚାଲିଥାଏ । ଲକ୍ଷ୍ୟ ସ୍ଥଳ ଭୁଲିଗଲେ କିମ୍ବା ବୃଥା ଭିନ୍ନ ମାର୍ଗାବଲମ୍ବୀ ହେଲେ ପଥିକର ହୃଦୟ ଯେପରି ସ୍ୱତଃ ଅବଶ ହୋଇପଡ଼େ, ସେହିପରି ଭବିଷ୍ୟତ୍ ଫଳପ୍ରାପ୍ତି ଆଶାରେ ସବୁ କାର୍ଯ୍ୟ କରି ଈପ୍ସିତ ଫଳଟି ନ ପାଇଲେ ସଂସାରର କାର୍ଯ୍ୟକାରୀ ଶକ୍ତି ଦୁର୍ବଳ ହୁଏ । ଏହି ସନ୍ଧିସ୍ଥଳରେ ଅତୀତର ପ୍ରେରଣା ମନୁଷ୍ୟଠାରେ ନୂତନ ବଳ ସଞ୍ଚାର କରିପାରେ । ସ୍ମୃତିଚିତ୍ର କେତେ ଭଗ୍ନହୃଦୟକୁ ଅନିବାର୍ଯ୍ୟ ପତନମୁଖରୁ ରକ୍ଷାକରେ । ନୈରାଶ୍ୟଜଡ଼ିତ କାମନାରୁ କ୍ଷାନ୍ତ ହୋଇ ମନୁଷ୍ୟ ତାର ଅତୀତ ଜୀବନକୁ ତନ୍ନ ତନ୍ନ କରି ଦେଖେ—କେତେ ଭ୍ରମ ପ୍ରମାଦକୁ ସେ ଏଡ଼ାଇ ଆସିଛି ଓ କେତେ ଦୁର୍ବଳତାକୁ ବାଧା ଦେଇ ସେ ତାର ଭବିଷ୍ୟତ୍ ଜୀବନର ଭିତ୍ତି ସ୍ଥାପନ କରିଛି । କର୍ମକ୍ଷେତ୍ରରେ ସେ ଦେଖିଆସିଛି—କେତେ ଲୋକଙ୍କର ଜୟ-ପରାଜୟ, କେତେ ହାସ୍ୟକୌତୁକର ଅବସାନରେ କ୍ରନ୍ଦନର ମର୍ମସ୍ପର୍ଶୀ ଚିତ୍ର ! ସବୁ ଅତୀତରେ ଲୁଚି ଯାଇଛି; କିନ୍ତୁ ରହିଛି କେବଳ ଗୋଟାଏ ଅନୁଭୂତି ।

ଅତୀତର ସହସ୍ର ନିର୍ଯ୍ୟାତନ ଓ ନିଷ୍ପୀଡ଼ନ ମଧ୍ୟରେ ପ୍ରାଣର ସ୍ପନ୍ଦନ ଖେଳୁଥାଏ । ପ୍ରବଳ ଶକ୍ତି ଦୁର୍ବଳ ଜାତି ଉପରେ ଅକୁଣ୍ଠିତଭାବରେ ଅତ୍ୟାଚାର କରି ଚାଲିଯାଏ । ଲୁଣ୍ଠନ ଓ ଅଗଣିତ ନରହତ୍ୟାରେ ବିଜୟୀ ତାର ପରାକ୍ରମ ବିସ୍ତାର କରେ ।

ବିଜାତିର ସଞ୍ଚିତ ଯଶ ଓ କୀର୍ତ୍ତି ନଷ୍ଟ ହୁଏ । ପ୍ରଚଳିତ ଧର୍ମର ଅଧଃପତନ ଘଟେ । ଅସଂଖ୍ୟ କୁପ୍ରଥା ଦେଶରେ ବ୍ୟାପିଯାଏ । ଜାତୀୟ ଜୀବନ କ୍ରମଶଃ ଶିଥିଳ ହୋଇପଡ଼େ । ଐତିହାସିକ ଏହି ଘଟଣାଗୁଡ଼ିକ ଲିପିବଦ୍ଧ କରେ । ସମସ୍ତ ସମୟରେ ତାର ଲେଖନୀ ଅତିରଞ୍ଜନ ଦୋଷରେ ଦୂଷିତ ହୁଏ । ସୁତରାଂ ଗୋଟିଏ ଜାତିର ପତନ କିମ୍ବା ଉତ୍‌ଥାନକୁ ନିରପେକ୍ଷ ଭାବରେ ବିଗ୍ଭର କରି ଜାତୀୟ ଇତିହାସର ସଂରକ୍ଷଣ ପ୍ରତି ଦୃଷ୍ଟି ଦେବା ସର୍ବାଦୌ କର୍ତ୍ତବ୍ୟ । ମନୁଷ୍ୟର ସ୍ୱାଭାବିକ ଦୁର୍ବଳତା ଅନେକ ସମୟରେ ଯେଉଁ ଉତ୍ତେଜନା ଦିଏ, ସେଥିରେ ଚ୍ଳିତ ହୋଇ ଐତିହାସିକ ସତ୍ୟର ଅପଲାପ ଘଟାଇଥାଏ; ସେଥିଯୋଗୁଁ ପୃଥିବୀର ଇତିହାସରେ କୌଣସି ଜାତିର ପ୍ରକୃତ ମହତ୍ତ୍ୱ ଖୁବ୍ କମ୍ ପରିମାଣରେ ପ୍ରକାଶିତ ହୁଏ । ବିଜୟୀର ଗର୍ବିତ କାହାଣୀରେ ଇତିହାସର ପୃଷ୍ଠା ପୂର୍ଣ୍ଣ ହୁଏ । ପ୍ରାଚୀନ ସଭ୍ୟତା ଶତ ବାଧା ଅତିକ୍ରମ କରି ଆତ୍ମପ୍ରକାଶ କଲାବେଳେ ବାହ୍ୟ ଆଡ଼ମ୍ବର ସ୍ୱତଃ ଅପସାରିତ ହୁଏ । ପତିତ ଜାତି ତାର ଅତୀତଗୌରବ ସ୍ମରଣ କରି ବିଜାତୀୟ ଭାବ କ୍ରମଶଃ ଦୂର କରେ । ଜାତୀୟ ଇତିହାସ ଜାତିର ପ୍ରଧାନ ଅବଲମ୍ବନ । ସେଥିରେ ଅତୀତର ଚିତ୍ର ଅସ୍ପଷ୍ଟ ହେଲେ ଦେଶର ଭବିଷ୍ୟତ୍ ବଂଶଧରମାନେ ତହିଁରୁ କୌଣସି ପ୍ରେରଣା ପାଆନ୍ତି ନାହିଁ ।

ନିଜତ୍ୱ ରକ୍ଷା କରି ମହତ୍ତ୍ୱର ପରିଚୟ ଦେବାକୁ ହେଲେ ଅତୀତର ଘଟଣାଗୁଡ଼ିକୁ ସ୍ପଷ୍ଟଭାବରେ ଲେଖି ରଖିବା ନିତାନ୍ତ ଦରକାର । ବ୍ୟକ୍ତିବିଶେଷର ଭ୍ରମପ୍ରମାଦ ଯେପରି ମାର୍ଜନୀୟ, ସେହିପରି କୌଣସି ଜାତିର ପତନକୁ ଉପେକ୍ଷା କରାଯାଇ-ପାରେ । ରୋଗାକ୍ରାନ୍ତ ବ୍ୟକ୍ତିକୁ ସମ୍ପୂର୍ଣ୍ଣ ଶକ୍ତିହୀନ ମନେ କରିବା ଉଚିତ ନୁହେଁ; କାରଣ ସେ ତାର ପୂର୍ବଶକ୍ତି ପାଇପାରେ । ସେହିପରି ଦେଶର ଦୁର୍ଦ୍ଦିନରେ ନିର୍ଜିତ ଜାତିକୁ ମୃତ କିମ୍ବା ନିତାନ୍ତ ଅଧମ ବୋଲି ସ୍ଥିର କରିନେବା ସମୀଚୀନ ନୁହେଁ ।

ଅତୀତର ଆଲୋଚନାରେ କିଛି ମଙ୍ଗଳ ନାହିଁ ବୋଲି କେହି କେହି କହି ପାରନ୍ତି; କିନ୍ତୁ ପୁରାତନଦ୍ୱାରା ନୂତନତ୍ୱର ଯେଉଁ ଭିତ୍ତି ନିର୍ମିତ ହୁଏ, ସେଥି ସକାଶେ ଅତୀତକୁ ଆଦୌ ବାଦ୍ ଦିଆଯାଇପାରେ ନାହିଁ । ଅତୀତକୁ ଚିର ନୂତନ କରିବାକୁ ହେବ । ଉଦୀୟମାନ ରବିର କିରଣଜାଲ ତମସାବୃତ ଜଗତକୁ ଆଲୋକମୟ କରିଦିଏ । ଜଗଦ୍‌ବାସୀ ଜଡ଼ତା ଗ୍ଭଡ଼ି ସତେଜ ହୁଅନ୍ତି । ଦିବ୍ୟ ଉଷାର ମାଙ୍ଗଳିକ ଗାନ ଶୁଣି ମନୁଷ୍ୟ ମନରେ ନୂତନ ବଳ ସଞ୍ଚାରିତ ହୁଏ । ଅଜ୍ଞାନତା ଓ କୁସଂସ୍କାର ଲୋପ କରିବାପାଇଁ ଦେଶ ଅତୀତର ଯେଉଁ ଆଲୋକ ଆବଶ୍ୟକ କରେ, ତଦ୍ୱାରା ଗୋଟାଏ ଉଦ୍‌ବୋଧନ ଶକ୍ତି ଫୁଟି ଉଠେ ଓ ସେଥିରେ ଯୁଗାନ୍ତର ଉପସ୍ଥିତ ହୁଏ । ଏହି ଶକ୍ତି ଗ୍ରହଣ କରିବା ପାଇଁ ଦେଶର ଯୁବକମାନଙ୍କର ସର୍ବଦା ଜାଗ୍ରତ ହେବା ଉଚିତ୍ । ସେମାନେ ଅତୀତକୁ ବର୍ତ୍ତମାନ ସହିତ ସଂଯୋଗ କରି ସମ୍ପୂର୍ଣ୍ଣ ପରିବର୍ତ୍ତନର ଭାବ ଓ କାର୍ଯ୍ୟ ସମାଜରେ ପ୍ରବର୍ତ୍ତିତ କରିପାରନ୍ତି । ଅତୀତ ଆଦର୍ଶରେ ପ୍ରଭାବିତ ଯୁବକ ତାର ନିଜତ୍ୱ ସହଜରେ ରକ୍ଷା କରିପାରେ । ଦେଶ ସକାଶେ ତାର ତ୍ୟାଗ ଚରମସୀମାକୁ ସ୍ପର୍ଶ କରେ । ସେ ଦେଖେ—ମାତୃଭୂମିର ମଙ୍ଗଳରେ ତାର ଆତ୍ମୋନ୍ନତି ନିହିତ । ସ୍ୱାଧୀନ ଜୀବନର ଆକାଙ୍‌କ୍ଷା ପୂରଣ ପାଇଁ ଯଥେଷ୍ଟ ପଥ ତା ସକାଶେ ଉନ୍ମୁକ୍ତ; କେବଳ ଲକ୍ଷ୍ୟ ସ୍ଥିର କରିନେବା ପାଇଁ ଉପଯୁକ୍ତ ଶିକ୍ଷା ଆବଶ୍ୟକ । ପତିତ ଜାତିର ପୁନର୍ଗଠନ ସମୟରେ ଉପର୍ଯ୍ୟୁକ୍ତ ବିଷୟ ପ୍ରତି ଉଦାସୀନ ହୋଇ ଉନ୍ନତି ପଥରେ ଅଗ୍ରସର ହେବା କୌଣସି ଦେଶବାସୀ ପକ୍ଷରେ ସମ୍ଭବପର ନୁହେଁ । ବିଜାତୀୟ ଭାବରେ ପ୍ରଣୋଦିତ ହୋଇ ଜାତିର ମୌଳିକତା ରକ୍ଷା କରିବା ଦୁଃସାଧ୍ୟ । ଯେଉଁମାନେ ସାମୟିକ ଉତ୍ତେଜନାବଶତଃ ନିଜର କୌଳୀନ୍ୟ ଭୁଲି କେବଳ ବାହ୍ୟ ଅନୁକରଣରେ ଅପରକୁ ଅନୁସରଣ କରନ୍ତି, ସେମାନଙ୍କର ଦଶା ଶେଷରେ ଭିତ୍ତିହୀନ ଅଟ୍ଟାଳିକା ସଦୃଶ ।

ପ୍ରଥମରେ ମନୁଷ୍ୟର ବହିର୍ମୁଖ-ଭାବ ପ୍ରବଳ ଥାଏ । ସେଥିଯୋଗୁଁ ସାଧାରଣ ଯୁବକର କର୍ତ୍ତବ୍ୟଜ୍ଞାନ ସହଜରେ ଜନ୍ମେ ନାହିଁ । ବିଷୟସୌନ୍ଦର୍ଯ୍ୟରେ ଆକୃଷ୍ଟ ହୋଇ ଯୁବକପ୍ରାଣ କ୍ଷିପ୍ରତାର ପରିଚୟ ଦିଏ । ଯେଉଁ ଦେଶର ଯୁବକ ଯେତେ ଆଡ଼ମ୍ବରଶୂନ୍ୟ, ସେହି ଦେଶର କର୍ମନିପୁଣତା ସେତେ ବେଶି ।

ଭାରତର ଭବିଷ୍ୟତକୁ ଉଜ୍ଜ୍ୱଳ ଦେଖିବା ପ୍ରତ୍ୟେକ ଭାରତୀୟର ଆକାଙ୍‌କ୍ଷା । ଅତୀତର ଆଦର୍ଶରେ ଭବିଷ୍ୟତ ଭାରତ ଗଠିତ ହେବ ବୋଲି ସମସ୍ତଙ୍କର ବିଶ୍ୱାସ । ନିଜର ମୁକ୍ତି ପାଇଁ ଭାରତ ଅନ୍ୟ ଦେଶର ଅପେକ୍ଷା ରଖିବ ନାହିଁ । ତାର ସୌଭାଗ୍ୟ-ରବି ଅସ୍ତମିତ ହୋଇ ଯାଇଥିଲେ ସୁଦ୍ଧା ଆଜି ପୂର୍ବ ଆକାଶ ଭିନ୍ନ ସୂଚନା ଦେଲାଣି; ତାର ଆତ୍ମୋନ୍ନତି ପାଇଁ ସେ ଜାଗ୍ରତ ହେଲାଣି । ଅତୀତର ଆଦର୍ଶ ଲୁଚି ଯାଇ ନାହିଁ; ବରଂ ଆମ୍ଭେମାନେ ତାକୁ ଭୁଲି ଯାଇଥିଲୁ । ସେହି ଆଦର୍ଶ ପ୍ରତି ଦୃଢ଼ ଲକ୍ଷ୍ୟ ରଖି ଭାରତୀୟ ତାର କର୍ମକ୍ଷେତ୍ରରେ ଅଗ୍ରସର ହେଲେ, ଜଗତ ଗୋଟାଏ ମହତ ଶିକ୍ଷା ପାଇବ । ନବଯୁଗର ଆବିର୍ଭାବରେ ଭାରତ

ଯୁଗପ୍ରବର୍ତ୍ତକର ସ୍ଥାନ ଅଧିକାର କରିବ । ଭାରତରୁ ଯେଉଁ ଆଲୋକ ବିକୀର୍ଣ୍ଣ ହେବ, ସେଥିରେ ଜଗଦ୍‌ବାସୀର ଜଡ଼ତା ଭାଙ୍ଗିଯିବ । ସେ ଦେଖିବ—ଭୋଗ ଓ ଐଶ୍ୱର୍ଯ୍ୟପ୍ରଦାୟକ ସଭ୍ୟତାରେ ମନୁଷ୍ୟର ଈପ୍‌ସିତ ସୁଖ ନାହିଁ । ସ୍ୱାର୍ଥପର ଧନବାନର ଅପରିମିତ ଧନ ସଞ୍ଚୟରେ ମନୁଷ୍ୟୋଚିତ ସଦ୍‌ଗୁଣଗୁଡ଼ିକ ଆସ୍ତେ ଆସ୍ତେ ଅନ୍ତର୍ହିତ ହୋଇ ତତ୍‌ପରିବର୍ତ୍ତିରେ ଗୋଟାଏ ଦାନବୀ ଆକାଙ୍‌କ୍ଷା ମନକୁ ଗ୍ରାସକରି ଯାଉଛି । ଅଳ୍ପର ତୃପ୍ତିସାଧନ ପାଇଁ ସମସ୍ତ ଜଗତକୁ ଅସହ୍ୟ କଷ୍ଟ ଭୋଗ କରିବାକୁ ପଡ଼ୁଛି । ରାଜନୀତିର ପ୍ରଧାନ ଅବଲମ୍ବନ ଧର୍ମକୁ ଉପେକ୍ଷା କରି କେବଳ ଯୁଗୋଚିତ କୂଟନୀତିର ଆଶ୍ରୟରେ ପ୍ରବଳ ଦୁର୍ବଳ ଉପରେ ଅକଥ୍ୟ ଅତ୍ୟାଚାର କରି ଆସିଛି । ସାମ୍ୟଭାବର ପ୍ରଚାର ତୁଳନାରେ ପ୍ରଭୁତ୍ୱର ମାତ୍ରା ଅନେକ ପରିମାଣରେ ବ୍ୟାପି ଯାଇଛି ଏବଂ ଦୁର୍ବଳ ତାକୁ ଅକାତରରେ ସହି ଆସିଛି । ତ୍ୟାଗବଳରେ ମନୁଷ୍ୟର ଶକ୍ତି କେତେ ଦୂର ବିସ୍ତୃତ ଲାଭ କରିପାରେ ତାକୁ ପ୍ରମାଣ କରିବା ପାଇଁ ଭାରତ ଏକା କ୍ଷମ । ସ୍ୱାର୍ଥସାଧନରେ ଯେଉଁମାନେ ଆଜି ପର୍ଯ୍ୟନ୍ତ ବ୍ୟାପୃତ ଥିଲେ, ସେମାନଙ୍କୁ ଭାରତର ଅତୀତ ଓ ବର୍ତ୍ତମାନ ଆଦର୍ଶରେ ଗଢ଼ି ହେବାକୁ ଅନେକ ଦିନ ଲାଗିପାରେ ଏବଂ କେହି କେହି ସେଥିରେ ସମ୍ପୂର୍ଣ୍ଣ ଅକ୍ଷମ ହୋଇପାରନ୍ତି । ଭାରତର ଲକ୍ଷ୍ୟ ସବୁ ଦିନେ ସମାନ ରହିଛି; କେବଳ ଦୃଷ୍ଟିର ସଂପ୍ରସାରଣ ପାଇଁ ଉପଯୁକ୍ତ ଶିକ୍ଷା ଆବଶ୍ୟକ ହେଲାଣି ।

ପାଶ୍ଚାତ୍ୟ ଭୂଖଣ୍ଡ ଗତ ମହାସମରର ପ୍ରଳୟସଙ୍କାଶ ବାତ୍ୟା ଦ୍ୱାରା ଯେପରି ବିକ୍ଷୋଭିତ ହୋଇଯାଇଛି, ସେଥିରେ ଆଶୁକଲ୍ୟାଣ ପ୍ରସବ କରାଇବା ପାଇଁ ନୂତନ ଶକ୍ତି ପ୍ରୟୋଗ କରିବାକୁ ହେବ । ପାଶ୍ଚାତ୍ୟ ଜାତିମାନେ ସେମାନଙ୍କର ପ୍ରଚଳିତ ସଭ୍ୟତାର ମୋହ ଏଡ଼ାଇବାକୁ କୁଣ୍ଠିତ ନୁହନ୍ତି । ବଡ଼ ବିବ୍ରତ ଚିତ୍ତରେ ପ୍ରାଚ୍ୟର ଜ୍ଞାନ-ତତ୍ତ୍ୱକୁ ଆଶ୍ରା କରିବାକୁ ସେମାନେ ବ୍ୟଗ୍ର ଭାବରେ ଅନାଇ ରହିଲେଣି । ସେମାନେ ଭାବିଲେଣି—ପ୍ରାଚ୍ୟର ଜ୍ଞାନାଲୋକରେ ସେମାନଙ୍କର ଦୁର୍ଗତି କଥଞ୍ଚିତ୍ ଦୂର ହୋଇ-ପାରେ । ଗୋଟିଏ ସାଧନାରେ ଶୀର୍ଷସ୍ଥାନ ଅଧିକାର କରି, ତାର ନିଷ୍ଫଳତା ହୃଦୟଙ୍ଗମ କଲେ ମନୁଷ୍ୟର ଆଗ୍ରହ ସ୍ୱତଃ ଅନ୍ୟଆଡ଼େ ଗତି କରେ ପାଶ୍ଚାତ୍ୟ ଦେଶବାସୀମାନଙ୍କ ମଧ୍ୟରୁ ଅନେକେ ଭାରତର ବର୍ତ୍ତମାନ ଓ ଅତୀତ ଯୁଗ ସମ୍ବନ୍ଧରେ ପ୍ରକୃତ ଜ୍ଞାନ ଲାଭ କରିପାରି ନାହାନ୍ତି; ତଥାପି ସେମାନଙ୍କର ଏକ ଦୃଢ଼ ବିଶ୍ୱାସ ଜନ୍ମିଲାଣି ଯେ, ଶାନ୍ତି ପ୍ରତିଷ୍ଠା ପାଇଁ ସମସ୍ତଙ୍କୁ ପ୍ରାଚ୍ୟ ଆଦର୍ଶ ଅବଲମ୍ବନ କରିବାକୁ ପଡ଼ିବ । ଆଜି ଦଳ ଦଳ ହୋଇ ବିଦେଶୀ ପର୍ଯ୍ୟଟକମାନେ ଗୋଟାଏ ନୂତନ ଆଗ୍ରହରେ ଭାରତରେ ଦେଖା ଦେଲେଣି । ଶତ ଶତ ବର୍ଷ ଅତୀତ ହେଲାଣି, ଭାରତର ସୁଦିନରେ ଚୀନ ଓ ଜାପାନ ପ୍ରଭୃତି ଦେଶମାନଙ୍କରୁ ଏହିପରି ପରିବ୍ରାଜକମାନେ ଆସି ଯେଉଁ ବାର୍ତ୍ତା ନେଇ ସ୍ୱଦେଶକୁ ଫେରୁଥିଲେ, ତାହା ଇତିହାସ ପୃଷ୍ଠାରୁ ଲିଭି ନାହିଁ । ଭାରତର ଅତୀତ ଇତିହାସ ସେମାନଙ୍କର ବିବୃତିକୁ ପ୍ରଧାନ ଅବଲମ୍ବନ ରୂପେ ସାଇତି ରଖିଛି । ସ୍ୱତଃପ୍ରବୃତ୍ତ ହୋଇ ସେମାନେ ଭାରତର ଅତୀତ ଗୌରବକୁ ଯେପରି ନିରପେକ୍ଷ ଭାବରେ ବର୍ଣ୍ଣନା କରିଯାଇଛନ୍ତି, ସେଥିରେ ଆଧୁନିକ ଭାରତ-ବିଦ୍ୱେଷୀର ହସ୍ତକ୍ଷେପ କରିବାକୁ ସାହସ ହେଉନାହିଁ । ଜଣେ ଫରାସୀ ଲେଖକ ଉପର୍ଯ୍ୟୁକ୍ତ ବିଷୟକୁ ଲକ୍ଷ୍ୟ କରି ଯାହା ପ୍ରକାଶ କରିଛନ୍ତି, ସେଥିର କିୟଦଂଶ ନିମ୍ନରେ ଉଦ୍ଧାର କରାଗଲା—"About modern India, the information given by the press is scanty, manipulated, second-hand; it issues from agencies whose chief object is not the spreading of truth. As for the description given by the tourists, novelists, missionaries, etc, they most often impart a very onesided and prejudiced impression. And yet India is for most continental Europeans, whether literate or illiterate a kind of realm of the spirit, a motherland of God, a Christ among the nations. India is, now-a-days, in the imagination of the western peoples, what Palestine was for the Christians at the time of Crusades."

ସଙ୍କୁଚିତ ଦୃଷ୍ଟି ଓ ପକ୍ଷପାତିତା ଦୋଷରେ ଅନୁପ୍ରାଣିତ ହୋଇ ବିଜାତୀୟ ଲେଖକମାନଙ୍କରୁ ଭାରତର ଯେଉଁ ଅତ୍ୟଳ୍ପ ବିବରଣୀ ପ୍ରକାଶ ପାଇଛି, ସେଥିରେ ସତ୍ୟର ପୂର୍ଣ୍ଣତା ମିଳିବା କଷ୍ଟକର । ଭାରତକୁ କଦର୍ଯ୍ୟ ଚିତ୍ରରେ ଚିତ୍ରିତ କଲେ ମଧ ତାର ଅତୀତ ଗରିମାର ପ୍ରମାଣ ପାଇଁ ସମସ୍ତ ଇଉରୋପ ଆକୃଷ୍ଟ ହୋଇପଡ଼ିଲାଣି । ପ୍ରାଚୀନ ଭଗ୍ନ ମନ୍ଦିର କମ୍ବା ଗୁମ୍ଫା ପ୍ରଭୃତି ନିବିଡ଼ ଜଙ୍ଗଲ ମଧ୍ୟରେ ଥାଇ ଇଉରୋପୀୟ ଦର୍ଶକକୁ ଦେଖାଇ ଦେଉଛି—ଭାରତୀୟ ଜ୍ଞାନ ନୁହେଁ, ତାର ଯୁଗଯୁଗବ୍ୟାପୀ ଅସାଧାରଣ ସାଧନା କାଳଗର୍ଭରେ ବିଲୀନ ହେବ ନାହିଁ; ପୁଣି ତାହା ଆତ୍ମପ୍ରକାଶ କରି ନିର୍ଜୀବ ଜାତିର ଧମନୀରେ ନୂତନ ବଳ ସଞ୍ଚାର କରିବ ।

ଇଟାଲୀର ସୁବିଖ୍ୟାତ ରାଜନୀତିଜ୍ଞ **Francesco Nittie** ବର୍ତ୍ତମାନ ଇଉରୋପର ଦୁର୍ଦ୍ଦଶା ଦେଖି ବଡ଼ ବ୍ୟଥିତ ଅନ୍ତରରେ ଯାହା କହିଛନ୍ତି, ତାହା ଯଦି ସତ୍ୟ ହୁଏ, ତାହା ହେଲେ ଅଳ୍ପ ଦିନ ମଧ୍ୟରେ ଇଉରୋପ ପତନର ଚରମ ସୀମାରେ ପହଞ୍ଚିବ । ଇଉରୋପର ବାହ୍ୟ ଚାକଚକ୍ୟ କିମ୍ବା ଜଡ଼ବିଜ୍ଞାନର ପ୍ରକୃଷ୍ଟ ଉନ୍ନତି, କେହି ତାକୁ ପତନମୁଖରୁ ରକ୍ଷା କରିପାରିବେ ନାହିଁ । ଧ୍ୱଂସର ବହ୍ନି ଥରେ ଜଳି ଉଠିଲେ ଆଉ ତାକୁ ସମ୍ଭାଳି ରଖିବା ସହଜ ନୁହେଁ । ଭାରତର ସେହି ଦୁର୍ଦ୍ଦିନ କଥା ମନେ କଲେ ଅନ୍ତରରେ ଗୋଟିଏ ସ୍ତବ୍ଧତା ପ୍ରକାଶିତ ହୁଏ । ଗୌରବ-ରବି ଭାରତ-ଆକାଶରୁ ଅସ୍ତମିତ ହେବା ସମୟରେ କେତେ ଝଡ଼ ତୋଫାନ ବହିଯାଇଛି । ଆଜି ସେହି ଅବସ୍ଥା ଇଉରୋପରେ ଉପସ୍ଥିତ ପ୍ରାୟ । ଦିନୁ ଦିନ ଇଉରୋପ ନିମ୍ନଗାମୀ ହେଉଛି ହେଉଛି ବୋଲି ଉପର୍ଯ୍ୟୁକ୍ତ ମନୀଷୀଙ୍କର ବିଶ୍ୱାସ । ଏ ବିଷୟରେ ଯେତେ ମନୋନିବେଶ କରାଯାଏ, ସେତେ ଭାରତୀୟ ସଭ୍ୟତା ପ୍ରତି ଆକର୍ଷଣ ବଢ଼େ । ମନେ ହୁଏ, ଇଉରୋପୀୟ ସଭ୍ୟତାର ମାର୍ଗ ବଦଳାଇବାକୁ ହେବ ।

ଭାରତର ପ୍ରାଚୀନ ସଭ୍ୟତା ଅନେକାଂଶରେ ଆଧ୍ୟାତ୍ମିକ ଉତ୍କର୍ଷ ଉପରେ ନିର୍ଭର କରିଆସିଛି । ପାଶ୍ଚାତ୍ୟ ଶିକ୍ଷା ପାଇ ଆଧୁନିକ ଭାରତୀୟର ସେଥିପ୍ରତି ବିଶେଷ ଲକ୍ଷ୍ୟ ଥିବାର ଜଣାପଡ଼େ ନାହିଁ । ପାଶ୍ଚାତ୍ୟ ବିଜ୍ଞାନ ଓ ସାହିତ୍ୟ ଭାରତ ପକ୍ଷରେ ଉପଯୋଗୀ ହୋଇପାରେ; କିନ୍ତୁ ପାଶ୍ଚାତ୍ୟ ରୀତିରେ ଜୀବନ କଟାଇବା ଦ୍ୱାରା ଆମ୍ଭମାନଙ୍କର ସାମାଜିକ ଅବନତି ଘଟେ । ଅନୁକରଣପ୍ରବୃତ୍ତି ମନୁଷ୍ୟର ବଡ଼ ପ୍ରବଳ । ହିତାହିତ ବିଚାର ନ କରି ବାହ୍ୟ ଦୃଷ୍ଟିରେ ଆକୃଷ୍ଟ ହେଲେ ମନର ସ୍ଥିରତା ନଷ୍ଟ ହୁଏ । ଗୋଟାଏ ମୋହରେ ମନୁଷ୍ୟ ସର୍ବଦା ଅଗ୍ରସର ହୁଏ । ଦିନ ଥିଲା, ଯେତେବେଳେ ଭାରତୀୟ ଶିକ୍ଷିତ ଯୁବକ କୌଣସି ବିଷୟ ପ୍ରତି ଦୃଷ୍ଟି ନ ଦେଇ କେବଳ ପାଶ୍ଚାତ୍ୟ ଧରଣରେ ଗଢ଼ି ହେବାକୁ ଜୀବନର ବ୍ରତ କରିଥିଲେ । ସେ ଦୁର୍ଦ୍ଦିନ କଥଞ୍ଚିତ୍ ଘୁଞ୍ଚିଗଲାଣି । ପ୍ରାଚ୍ୟ ସଭ୍ୟତାକୁ ଭାରତୀୟ ଆଉ ହୀନ ଦୃଷ୍ଟିରେ ଦେଖୁ ନାହିଁ କିମ୍ବା ବିଜାତୀୟର କଥା ଅନୁମୋଦନ କରି ନିଜର ପୂର୍ବପୁରୁଷମାନଙ୍କୁ ଅନୁନ୍ନତ ଆଖ୍ୟା ଦେଇ ନିଶ୍ଚିନ୍ତ ରହୁ ନାହିଁ । ପ୍ରାଚ୍ୟ ଓ ପାଶ୍ଚାତ୍ୟର ସମ୍ମିଶ୍ରଣରେ ବସ୍ତୁଜ୍ଞାନର ପ୍ରଭାବ ଭାରତୀୟର ପ୍ରାଣକୁ ବେଶି ପରିମାଣରେ ଅଧିକାର କରିଥିଲା । ହିଂସାମୂଳକ ପାଶ୍ଚାତ୍ୟ ରାଜନୀତିରେ ବିଷୟ-ମୋହ ଯେଉଁ ଅଜ୍ଞାନତା ଜନ୍ମାଇଛି, ତାକୁ ଦୂର କରିବା ପାଇଁ ଭାରତର ପୂର୍ଣ୍ଣ କ୍ଷମତା ବର୍ତ୍ତମାନ ଆସି ନାହିଁ । ବୈଷୟିକ ସମୃଦ୍ଧି ପାଶ୍ଚାତ୍ୟ ସଭ୍ୟତାର ମାପକାଠି । ହତ୍ୟା କୌଶଳ ଓ ଦୁର୍ବଳ ଉପରେ ଅତ୍ୟାଚାରର ପନ୍ଥା ଯେଉଁ ଜାତି ଯେତେ ସୁଗମ କରିପାରେ, ତାର ସ୍ଥାନ ପାଶ୍ଚାତ୍ୟ ଜଗତ୍‌ରେ ସେତେ ଉଚ୍ଚରେ, କିନ୍ତୁ ପ୍ରାଚୀନ ଭାରତର ଲକ୍ଷ୍ୟ ସମ୍ପୂର୍ଣ୍ଣ ବିପରୀତ ଥିଲା । ଜୀବନର ଉଦ୍ଦେଶ୍ୟକୁ ଭାରତୀୟ ଭିନ୍ନ ମାର୍ଗରେ ବୁଝିଥିଲା । କାଳକ୍ରମେ ଅଧଃପତନ ହେବାରୁ ସେ ଗୋଟାଏ କର୍ମଶୂନ୍ୟ ଅବସ୍ଥାରେ ପଡ଼ିରହି ନିଜର ଲକ୍ଷ୍ୟରୁ ଭ୍ରଷ୍ଟ ହେଲା; ସେଥିଯୋଗୁଁ ତାର ଏତେ ଦୁର୍ଗତି !

ଏକ ପକ୍ଷରେ ପାଶ୍ଚାତ୍ୟ ଶିକ୍ଷା ଆମ୍ଭମାନଙ୍କର ଉପକାର କରିବାର ମଧ୍ୟ ଜଣାଯାଏ । ଭାରତୀୟ ଜୀବନକୁ ଯେଉଁ ଶିଥିଳତା ଏତେ ଦିନଯାଏ ଗ୍ରାସିଥିଲା, ତାହା ପାଶ୍ଚାତ୍ୟ ଶିକ୍ଷାପ୍ରଭାବରୁ କିୟତ୍ ପରିମାଣରେ ଅପସାରିତ ହୋଇଅଛି । କେବଳ ଆଦର୍ଶ ନିର୍ଣ୍ଣୟରେ ଭାରତର ସ୍ୱତନ୍ତ୍ରତା ପୂର୍ଣ୍ଣରୂପେ ପ୍ରକାଶିତ ହୋଇ ନାହିଁ ।

ଲୁପ୍ତ ଗୌରବର ପ୍ରକାଶରେ ଜାତିର ମହତ୍ତ୍ୱ ଜଣାଗଲେ ସୁଦ୍ଧା ଆଦର୍ଶ ଅଭାବରୁ ତାର ସମୟୋଚିତ ଉନ୍ନତିସାଧନ ପକ୍ଷରେ ବାଧା ଘଟେ । ଅଜ୍ଞାନତା-ଅନ୍ଧକାରର ବାହାରକୁ ଆସି ଆମ୍ଭମାନଙ୍କୁ ଆଉ ଗୋଟାଏ ବିପଦରେ ପଡ଼ିବାକୁ ହେଲା । ଶିକ୍ଷା ଓ ଦୀକ୍ଷା ସବୁ ଲୋପ ପାଇଥିଲା; କିନ୍ତୁ ନୂତନ ପାଶ୍ଚାତ୍ୟ ସଭ୍ୟତାର ଅନୁକରଣ ପ୍ରଚେଷ୍ଟା ବଡ଼ ପ୍ରବଳ ହୋଇ ଆମ୍ଭମାନଙ୍କର ଜାତୀୟ ଜୀବନକୁ ଅନ୍ୟ ଦିଗରେ ଦୁର୍ବଳ କରିଦେଲା । ଏହା ଆମ୍ଭମାନଙ୍କୁ ଅର୍ଥ ଓ ବିଳାସିତା ମୋହରେ ଟାଣି ରଖିବାକୁ ସର୍ବଦା ଚେଷ୍ଟା କଲା । କଳ କାରଖାନା ନିର୍ମାଣ ଓ ଧନ ଆହରଣରେ ପାଶ୍ଚାତ୍ୟ ସଭ୍ୟତା ପ୍ରତିଫଳିତ କରୁଛି । ଭାରତର ଅନ୍ତର୍ଦୃଷ୍ଟି ସେହି ପ୍ରଭାବରେ ମଳିନ ହୋଇପଡ଼ୁଛି । ଅନୁକରଣକୁ ଏକମାତ୍ର ଅବଲମ୍ବନ କରିବା ଜାତୀୟ ଜୀବନର ଲକ୍ଷ୍ୟ ନୁହେଁ । ଥରେ ଅତୀତ ଆଡ଼କୁ ଦୃଷ୍ଟି ଦେଲେ ଯେଉଁ ପ୍ରେରଣା ଓ ଶକ୍ତି ମିଳେ, ତାହା ଆଜି ପର୍ଯ୍ୟନ୍ତ ଭାରତୀୟର ଉପଲବ୍ଧିରେ ଆସି ନାହିଁ । ଦିନ ଆସୁଛି, ଯେତେବେଳେ ସେ ତାର ଲୁପ୍ତରତ୍ନ ଉଦ୍ଧାର କରି ନିଜର ଗନ୍ତବ୍ୟ ପଥରେ ଅଗ୍ରସର ହେବ । ଆତ୍ମନିର୍ଭରଶୀଳତା ଭାରତର କର୍ମକ୍ଷେତ୍ରରେ ଦେଖା ଦେଲାଣି । ଆଉ ବେଶି ଦିନ ଅପେକ୍ଷା କରିବାକୁ ପଡ଼ିବ ନାହିଁ ।

# ରୂପର ପୂଜା

କଲ୍ଲୋଳିନୀ କଳ କଳ ତାନରେ ଗୋଟାଏ ମୂର୍ଚ୍ଛନା ଦେଇ ବହିଯାଏ, ଶ୍ରେଷ୍ଠ ବସନ୍ତର ମୃଦୁ ଝଙ୍କାର ବିଶ୍ୱର ଅମିୟ ବାଣୀ ଅବ୍ୟକ୍ତ ଭାବରେ ଗାଇ ଚାଲିଯାଏ, ପବିତ୍ର ପ୍ରଣୟ ସ୍ପର୍ଶରେ ହୃଦୟର ଶୁଷ୍କତା ଦୂର ହୋଇଯାଏ; କିନ୍ତୁ ମାନବିକତାର ଚରମ ବିକାଶ ହୁଏ ନାହିଁ । ମନେ ହୁଏ, ଅତୁଳ ନୈସର୍ଗିକ ଶୋଭାସମ୍ପଦ ମଧ୍ୟରେ ସ୍ୱାଭାବିକ ଦୁର୍ବଳତା ଓ ସଙ୍କୁଚିତ ଦୃଷ୍ଟି ମାନବୀୟ ଭାବକୁ ଜଡ଼ରାଜ୍ୟରେ ଆବଦ୍ଧ କରି ରଖିଅଛି । ଦିଗନ୍ତବିସ୍ତାରୀ ଅପରୂପ ସୌନ୍ଦର୍ଯ୍ୟରେ ମାନବ ପ୍ରାଣ ମୁହୂର୍ତ୍ତିକ ପାଇଁ ଆନନ୍ଦ ଲାଭ କରେ । ତାକୁ ଭ୍ରୂକ୍ଷେପ ନ କରି ଗୋଟାଏ ନିର୍ଦ୍ଦିଷ୍ଟ ପଥରେ ଚାଳିତ ହେବା ପାଇଁ ଓ ଅସୀମରେ ଦୃଷ୍ଟି ନିବଦ୍ଧ ରଖିବାକୁ ମାନବର ସମସ୍ତ ସାଧନା ନିୟୋଜିତ ହୋଇଥାଏ । ବିଜ୍ଞାନର ସୂକ୍ଷ୍ମ ଓ ଦୁରୂହ ଆବିଷ୍କ୍ରିୟା ପ୍ରତିନିୟତ ଯାହା ଜଗତରେ ସମ୍ପାଦନ କରୁଛି, ସେଥିରେ ବିସ୍ମୟ ଥାଇପାରେ; କିନ୍ତୁ ଭାବରାଜ୍ୟର ସମୁଚ୍ଚ ପ୍ରଦେଶରେ ଯେ ଅମଳ ଆନନ୍ଦ ଉପଭୋଗ କରାଯାଏ, ତାକୁ ପାଇବାପାଇଁ ବିଜ୍ଞାନର କୌଶଳ ଯଥେଷ୍ଟ ନୁହେଁ । ଶରୀରୀ ପକ୍ଷରେ ଜଡ଼ ବସ୍ତୁ ବର୍ଜନ ସମ୍ଭବପର ନୁହେଁ । ଭୂମିଷ୍ଠ ହେବା ଦିନଠାରୁ ଅବିରାମ ଗତିରେ ସେ ଗୋଟାଏ ମାର୍ଗ ଅନୁସରଣ କରି ଚାଲେ । ସହସ୍ର ବାଧା ଆସେ, ନିର୍ଯ୍ୟାତନାର ମାତ୍ରା ଅତିକ୍ରାନ୍ତ ହୋଇଉଠେ; କିନ୍ତୁ ଦୁର୍ବଳ ଜୀବ ବସ୍ତୁଜଗତକୁ ତ୍ୟାଗ କରିପାରେ ନାହିଁ । ଏହି ଧାରାବାହିକ ପ୍ରତିରୋଧ କ୍ରିୟାରେ ଜୀବର ଜୀବତ୍ୱ ଦିନେ ଲୋପ ପାଇଯାଏ । ପ୍ରତି ମୁହୂର୍ତ୍ତରେ ସଂଖ୍ୟାତୀତ ପ୍ରାଣୀ ଜୀବନଲୀଳା ସାଙ୍ଗ କଲେ ସୁଦ୍ଧା ପ୍ରାଣୀଜଗତରୁ ଜୀବର ସ୍ୱାଭାବିକ ଗୁଣଗୁଡ଼ିକ ତିରୋହିତ ହେଉ ନାହିଁ । ଗୁଣ ଯେନ କର୍ମସମସ୍ୟା ଏତେ ଜଟିଳ ଓ ବିଶାଳ । କର୍ମର ସ୍ଥାୟିତ୍ୱ ଅଳ୍ପକାଳ ସ୍ଥାୟୀ; କିନ୍ତୁ ତାର ତୀବ୍ରତା ପ୍ରାଣି ଜଗତକୁ ସର୍ବଦା ମୁହ୍ୟମାନ କରୁଛି । ହିନ୍ଦୁ ଦର୍ଶନର ମତକୁ ଉପେକ୍ଷା କରି କେତେକ ପଣ୍ଡିତ ଗୁଣର ବର୍ତ୍ତମାନତା ସ୍ୱୀକାର କରନ୍ତି ନାହିଁ । ଏପରି କଠିନ ବିଷୟର ସୁବିଚାର କରିବା ସାଧାରଣ ମନୁଷ୍ୟ ପକ୍ଷରେ ସମ୍ଭବପର ନୁହେଁ । ସହଜ ଦୃଷ୍ଟିରେ ଏତିକି ମାତ୍ର ଲକ୍ଷ୍ୟ କରାଯାଇପାରେ ଯେ, ସମଜାତୀୟ ଜୀବସୃଷ୍ଟିରେ ଯେଉଁ ଅସାମଞ୍ଜସ୍ୟ ଦେଖାଯାଏ, ତାହାର ସମାଧାନ ସକାଶେ ସଭ୍ୟ ମାନବ ଆଜିପର୍ଯ୍ୟନ୍ତ କ୍ଷମ ହୋଇ ନାହିଁ । ଏହି ଭିନ୍ନତା ଯୋଗୁଁ ସମାଜନୀତି, ରାଜନୀତି ଓ ଧର୍ମନୀତି କୌଣସି ସାଧାରଣ ମାର୍ଗ ଅନୁସରଣ କରିପାରୁନାହିଁ । ଦେଶ ଓ ସମାଜ ଛାଡ଼ିଦେଲେ ମନୁଷ୍ୟ ନିଜର ପରିବାରବର୍ଗ ମଧ୍ୟରେ ସୁଦ୍ଧା ସାମ୍ୟଭାବ ଦେଖିପାରେ ନାହିଁ । ଏହି ସ୍ୱଭାବଗତ ବୈଷମ୍ୟ ସକାଶେ ହିନ୍ଦୁ ଦାର୍ଶନିକମାନେ ଗୁଣକୁ ସର୍ବୋଚ୍ଚ ସ୍ଥାନ ଦେଇଅଛନ୍ତି । ଗୁଣର ତାରତମ୍ୟ ଅନୁସାରେ ରୂପର ଆକର୍ଷଣ ମାନବ ପ୍ରାଣକୁ ପ୍ରଭାବିତ କରିପାରେ । ସାଧାରଣତଃ ସୌନ୍ଦର୍ଯ୍ୟର ଗୋଟାଏ ବିଶିଷ୍ଟତା ଅଛି । ଏହା ନିକଟରେ ମାନବ ଚିରଦିନ ନତମସ୍ତକ ହୋଇଆସିଛି । ପ୍ରକୃତିବିଶେଷରେ ସୌନ୍ଦର୍ଯ୍ୟର ବିକାଶ ପାଇଁ ବିଭିନ୍ନ ଆଧାର ଆବଶ୍ୟକ ହୁଏ । ଗୋଟାଏ ଆକର୍ଷଣ ଅନୁଭବ ନ କରିବା ଯାଏ ମନୁଷ୍ୟ କୌଣସି ଦିଗରେ ଗତି କରିପାରେ ନାହିଁ । ଶରୀର ଧାରଣ କରି ଅରୂପ ସୌନ୍ଦର୍ଯ୍ୟ ଉପଲବ୍ଧି କରିବା ସାଧାରଣଙ୍କ ଧାରଣାର ଅତୀତ ହୁଏ; ତେଣୁ ରୂପର ମହତ୍ତ୍ୱ ମାନବ ସମାଜକୁ ଆଦିମ କାଳରୁ ଆଜିପର୍ଯ୍ୟନ୍ତ ଆବଦ୍ଧ କରି ରଖିଅଛି । ଧର୍ମ ଉପରେ ରୂପର ପ୍ରଭାବ କମ୍ ନୁହେଁ । ଉଦ୍‌ବେଳ ହୃଦୟରେ ମନୁଷ୍ୟର ଭୋଗଲିପ୍ସା ଯେତେବେଳେ ଅତ୍ୟଧିକ ହୋଇଉଠେ, ସେତେବେଳେ ସେ ରୂପର ମୋହରେ ବେଶି ଆକୃଷ୍ଟ ହୋଇପଡ଼େ । ବିଷର ମାରାତ୍ମକତା ହ୍ରାସ କରାଇବା ପାଇଁ ବିଷ ପ୍ରୟୋଗ କରାଯାଏ । ରୂପର ମାଦକତା କମାଇବା ପାଇଁ ରୂପର ଆଶ୍ରୟ ନେବା ଉପଯୁକ୍ତ ମନେ ହୁଏ । ବିଶ୍ୱର ସୌନ୍ଦର୍ଯ୍ୟସମ୍ପଦରେ ରୂପର ଉପାଦାନ ସ୍ୱତନ୍ତ୍ର ନୁହେଁ । ସେଥିଯୋଗୁଁ ରୂପକୁ ପୂଜା କଲେ ଆତ୍ମୋନ୍ନତିର ପଥ ସୁଗମ ହୋଇପାରେ ବୋଲି ଅନେକଙ୍କର ବିଶ୍ୱାସ ।

ଅପ୍ରକଟିତ ସୌନ୍ଦର୍ଯ୍ୟ ଆଧାରବିଶେଷରେ ଯେଉଁ ମହତ୍ତ୍ୱ ପ୍ରକଟିତ କରେ, ତାର ରମଣୀୟତା ହୃଦୟରେ ସ୍ୱତଃ ଅଙ୍କିତ ହୋଇଯାଏ । କୃତ୍ରିମ ସୌନ୍ଦର୍ଯ୍ୟ କ୍ଷଣିକ ଉନ୍ମାଦନା ଆଣି ଗୋଟାଏ ଅବଶ ଅବସ୍ଥା ସୃଷ୍ଟି କରେ । ରୂପର ମହନୀୟତାରେ ଭାବର ପୁଷ୍ଟି ସାଧିତ ହୋଇଥାଏ; କିନ୍ତୁ ରୂପଜ ମୋହକୁ ଏଠାରେ ବାଦ୍ ଦେବା ନିତାନ୍ତ ଆବଶ୍ୟକ । ଭାବରାଜ୍ୟରେ ପ୍ରଥମ ସ୍ପନ୍ଦନ ରୂପ-ସଂସ୍ପର୍ଶରେ ସଂଘଟିତ ହୁଏ । କ୍ୱଚିତ୍ ରୂପହୀନ ସୌନ୍ଦର୍ଯ୍ୟ ମାନବପ୍ରାଣକୁ ଆଲୋଡ଼ନ କରିଥାଏ । ତରୁଣୀର ଅସ୍ଫୁଟ ହାସ୍ୟଟିକେ ଯୁବକ ମନରେ କେତେ ଉଦ୍ଦୀପନା ଆଣେ । ଯୁବକ ଜଡ଼-ଜଗତକୁ ଭୁଲିଯାଇ ଅମୂର୍ତ୍ତ ସୌନ୍ଦର୍ଯ୍ୟ ସନ୍ଧାନରେ ଆତ୍ମବିସ୍ମୃତ ହୋଇପଡ଼େ, ତାର ଭାବରାଜ୍ୟ ଉଦ୍‌ବେଳିତ ହୁଏ । ସେ ଦେଖେ—ଗୋଟାଏ ସ୍ୱପ୍ନ, ଯାହାର ବିସ୍ମୃତ ମୁହୂର୍ତ୍ତିକ ସକାଶେ ସୁଦ୍ଧା ଅସହ୍ୟ ବୋଧହୁଏ । ସନ୍ଧ୍ୟାରାଗ-ରଞ୍ଜିତ ପଶ୍ଚିମ ଆକାଶରେ ସୁନ୍ଦରୀର ଅପଲକ ଦୃଷ୍ଟି ପ୍ରତିଫଳିତ ହୁଏ, ମଳୟର ମୃଦୁ ଝଙ୍କାରରେ ଯୁବତୀର କୋମଳ କଣ୍ଠଧ୍ୱନି ଶୁଣିବାକୁ ପାଏ । ଜଡ଼ଜଗତରେ ପ୍ରକଟିତ ମନୋରମ ଦୃଶ୍ୟସବୁ ଅଭିନବ ଆକାରରେ ତରୁଣ ଭାବୁକ ମନକୁ ପ୍ରଭାବିତ କରେ । ରୂପର ସନ୍ଧାନରେ ସେ ଗୋଟାଏ ସ୍ରୋତରେ ଭାସିଯାଏ; କିନ୍ତୁ ତାର ଲକ୍ଷ୍ୟ ଥାଏ ସୌନ୍ଦର୍ଯ୍ୟକୁ ନିଜର କରି ଉପଭୋଗ କରିବା ପାଇଁ । କେହି କେହି କହିପାରନ୍ତି, ଭୋଗରେ ଆତ୍ମପ୍ରସାଦ ମିଳେ ନାହିଁ । ପ୍ରକୃତରେ ଅଧୀର ପ୍ରାଣରେ ଯେ ଉନ୍ମାଦନା ଆସେ, ତାହା ଭୋଗର ସ୍ପୃହା ମାତ୍ର । ଅନାହାର-କ୍ଲିଷ୍ଟ ଲୋକ ସାମାନ୍ୟ ଅନ୍ନମୁଠାକ ସକାଶେ ଅତି ବ୍ୟଗ୍ର ହୋଇପଡ଼େ; କିନ୍ତୁ ସେତକ ପାଇବା ମାତ୍ରେ ହୁଏ ତ ଉଦରାମୟ ରୋଗରେ ଆକ୍ରାନ୍ତ ହୋଇ ଇହଲୀଳା ସାଙ୍ଗ କରେ । ଯୌବନରେ ଗୋଟାଏ ସ୍ୱାଭାବିକ ପିପାସା ଆସେ । ତାକୁ ଦୂର କରିବା ଖୁବ୍ କମ୍ ଲୋକଙ୍କ ପକ୍ଷରେ ସମ୍ଭବପର ହୋଇପାରେ । ପିପାସାର ମାତ୍ରା ଅତିରିକ୍ତ ହେଲେ ପାନୀୟ ଜଳର ଦୋଷ କିମ୍ବା ଗୁଣ ପ୍ରତି ପିପାସୁର ଲକ୍ଷ୍ୟ ରହେ ନାହିଁ । ଅନ୍ନକ୍ଲିଷ୍ଟ କିମ୍ବା ତୃଷାର୍ତ୍ତ ଲୋକର ତୃପ୍ତିକୁ ଭୋଗର ଆଖ୍ୟା ଦେବା ସମୀଚୀନ ନୁହେଁ । ସୁନ୍ଦରୀର ସୌନ୍ଦର୍ଯ୍ୟକୁ ନଷ୍ଟ କରି ଯୌବନର ଉନ୍ମାଦନା ମେଣ୍ଟାଇଲେ ଯୁବକର ଲକ୍ଷ୍ୟ ସାର୍ଥକ ହୁଏ ନାହିଁ । ମୋଗଲ ସମ୍ରାଟ ଐଶ୍ୱର୍ଯ୍ୟ ମଦରେ ମତ୍ତ ହୋଇ ଦିନେ ଭାରତର କାମିନୀକୁଳକୁ ଯେ ଚକ୍ଷୁରେ ଦେଖିଥିଲେ ଓ ଯେଉଁ ରମଣୀ ରତ୍ନମାନଙ୍କର ସମାବେଶ ସକାଶେ ତାଙ୍କର ଅନ୍ତଃପୁର ନନ୍ଦନ-କାନନରେ ପରିଣତ ହୋଇଥିଲା, ତାର ଅସ୍ତିତ୍ୱ ଆଜି ଦର୍ଶକକୁ କେବଳ ଗୋଟାଏ ଉତ୍କଟ ବିଳାସିତାର ନିଦର୍ଶନ ଦେଖାଇ ଦେଉ ନାହିଁ କି ? କାମ-ପିପାସାର ନିବୃତ୍ତି ନାହିଁ । ଭୋଗ ବିଳାସର ଅଙ୍ଗ ହୋଇପାରେ; କିନ୍ତୁ ପ୍ରକାରଭେଦରେ ଭୋଗକୁ ଉଚ୍ଚ କିମ୍ବା ନୀଚ ଆଶୟରେ ଗ୍ରହଣ କରାଯାଇପାରେ । ଗ୍ରାହକର ମନୋବୃତ୍ତି ଓ ସାଧନା ଉପରେ ଭୋଗର ତାରତମ୍ୟ ଦେଖାଯାଏ ଏବଂ ସେହି ଅନୁସାରେ ରୂପର ମର୍ଯ୍ୟାଦା ଗୃହୀତ ହୁଏ ।

ରୂପ ଓ ମନର ମିଳନ ହେତୁ ଯେ ଆକର୍ଷଣ ଅନୁଭୂତ ହୁଏ, ତାକୁ ଛିନ୍ନ କରି ମନୁଷ୍ୟ ସଂସାରରେ ସୁଖୀ ହୋଇପାରେ ନାହିଁ । ମନର ସରଳ ଭାବ ମୁଖରେ ପ୍ରତିଫଳିତ ହୋଇଥାଏ । କ୍ରୂର ଦୃଷ୍ଟିରେ ମନର ଅସ୍ୱଚ୍ଛତା ପ୍ରକାଶିତ ହୁଏ । ମନ୍ଦିରରେ ଦେବତାଙ୍କ ଦର୍ଶନ ଲାଭ କରିବା ପୂର୍ବରୁ ମୁଖଶାଳାର ମଧ ଦେଇ ଯିବାକୁ ପଡ଼େ । ମୁଖଶାଳାର କାରୁକାର୍ଯ୍ୟ ଦର୍ଶକର ମନକୁ ମନ୍ଦିରସ୍ଥିତ ଦେବତାଙ୍କ ଆଡ଼କୁ ଆକୃଷ୍ଟ କରାଏ; କିନ୍ତୁ ଅନେକ ସମୟରେ ଦର୍ଶକ ଭକ୍ତିପୂତ ହୃଦୟରେ ଦେବତାଙ୍କ ପୂଜାକରି ଫେରିଆସେ; ତାର ଦୃଷ୍ଟି ବାହ୍ୟ ବେଷ୍ଟନୀରେ ପଡ଼େ ନାହିଁ । ଉପର୍ଯ୍ୟୁକ୍ତ ପୂଜକଙ୍କର ସଂଖ୍ୟା ଖୁବ୍ କମ୍ । ଅନ୍ତରର ଭାବ ଯେଉଁ ଅନ୍ତରଦେବତାଙ୍କ ପୂଜା କରିବା ପୂଜକ ମନ୍ଦିରର ଅପେକ୍ଷା ସୁଦ୍ଧା ରଖନ୍ତି ନାହିଁ । କେବଳ ସାଧନା ବଳରେ ମନୁଷ୍ୟ ଏତେ ଉଚ୍ଚଦରର ପୂଜକ ହେବା ସମ୍ଭବପର ନୁହେଁ । ପୁଷ୍ପିତା ଲତା ଆଶ୍ରୟ ଲୋଡ଼େ । ଫୁଲଟି ତାର ଫୁଟେ ଚୌଦିଗରେ ସୌରଭ ବିତରଣ କରିବାପାଇଁ । ଅଳିକୁଳ ମଧୁ ଗ୍ରହଣ କରି ଚାଲିଯାନ୍ତି, ଫୁଲଟି ବୃନ୍ତଚ୍ୟୁତ ହୁଏ । ଲତାର କ୍ଷଣସ୍ଥାୟୀ ସୌନ୍ଦର୍ଯ୍ୟ ହୁଏ ତ ନିବିଡ଼ ଅରଣ୍ୟରେ ନିଭୃତରେ ରହିଯାଏ । ଭାବୁକର ଦୃଷ୍ଟି ପଡ଼ିଥିଲେ ଅବା ତାର ସୌନ୍ଦର୍ଯ୍ୟକୁ ତୂଳିକାରେ ଆଙ୍କି ଦେଇ ପାରିଥାନ୍ତା । ଜଗତଟା ଗୋଟାଏ ରୂପର ହାଟ । ବିପଣୀରେ ସଜ୍ଜିତ ଯାବତୀୟ ବସ୍ତୁ ଦ୍ରଷ୍ଟାର ଦୃଷ୍ଟିକୁ ଆକର୍ଷଣ କରେ ନାହିଁ । ଗୋଟିଏ କିମ୍ବା ଦୁଇଟି ଜିନିଷ ଦେଖୁ ଦେଖୁ ସମୟ ଅତୀତ ହୁଏ । ଜୀବନରେ ଜଣେ ଯଦି ଗୋଟିକୁ ଭଲ ଭାବରେ ଦେଖିପାରିଲା, ତାହା ହେଲେ ଯଥେଷ୍ଟ ହେବ । ଅତ୍ୟଳ୍ପ ଲୋକ ଏହି ପନ୍ଥା ଅନୁସରଣ କରନ୍ତି । ଅଧିକାଂଶ ଲୋକ ରୂପର ହାଟରେ ବଡ଼ ଚଞ୍ଚଳ ହୋଇପଡ଼ନ୍ତି । ଶିଶୁ କ୍ରୀଡ଼ା-ପୁତ୍ତଳୀ କିଣିବାବେଳେ ବଡ଼ କ୍ଷିପ୍ତ ହୋଇଉଠେ । ମନେକରେ ସମୁଦାୟ ଦୋକାନଟା ଯଦି ତାର ହୋଇଯାନ୍ତା ! ସେତେବେଳେ ସେ କୌଣସି ପଦାର୍ଥର ମୂଲ୍ୟ ବୁଝି ନ ଥାଏ; କେବଳ ଗୋଟାଏ ବାହ୍ୟ

ଶୁକବାକ୍ୟରେ ଆତ୍ମବିସ୍ମୃତ ହୋଇପଡ଼େ । ସାଧାରଣ ଲୋକର ଜୀବନରେ ମଧ୍ୟ ଏହି ମୋହ ବିଶେଷ ଭାବରେ କାର୍ଯ୍ୟ କରିଥାଏ । ସଂଖ୍ୟାତୀତ ବୃନ୍ତଚ୍ୟୁତ ପୁଷ୍ପ ତପ୍ତ ପ୍ରଖର ବାୟୁରେ ଲୋପ ପାଉଛନ୍ତି । ସେମାନଙ୍କର ଗଣନା କେହି ରଖନ୍ତି ନାହିଁ । କେତେ ସୁକୁମାରୀର କୋମଳ ଅଙ୍ଗ କାମୁକର କରାଳ କବଳରେ ପଡ଼ି ଅକାଳରେ ମଉଳି ଯାଉଛି । କନକପ୍ରତିମାର ଆଭା ଅନ୍ଧକାର ଗହ୍ୱରରେ ନିବଦ୍ଧ ରହୁଛି । ସେ ଦିଗରେ ଦର୍ଶକର ଦୃଷ୍ଟି ସଞ୍ଚାଳନର ସୁଦ୍ଧା ଆବୃତ୍ତି ନାହିଁ । ରୂପ ଦେଖି ତନ୍ମୟ ହେଲେ ଭାବ ଗ୍ରହଣ କରିବାର ଖୁବ୍ କମ୍ ଅବକାଶ ଥାଏ । ଦୂଷିତ ଦୃଷ୍ଟିରେ ରୂପକୁ ଦେଖିଲେ ମନର ଅବସ୍ଥା ବଡ଼ ଉତ୍କଟ ହୁଏ; ସବୁବେଳେ ତାକୁ ଶରୀର-ସାଥୀ କରିବାକୁ ମନ ଦୌଡ଼େ । ପଶୁର ଭାବ ମନୁଷ୍ୟଠାରେ ଅଧିକାଂଶ ସମୟରେ କାର୍ଯ୍ୟ କରୁଥାଏ; ସେଥିଯୋଗୁ ଯାବତୀୟ ଅନିଷ୍ଟ କରି ସୁଦ୍ଧା ସେ ନିଜକୁ ହୀନ ମନେ କରେ ନାହିଁ । ଏହି ଭାବରେ ସୌନ୍ଦର୍ଯ୍ୟର ମହନୀୟତା ଅବଧାରଣ କରିବା ମନୁଷ୍ୟ ପକ୍ଷରେ ସମ୍ଭବପରେ ନୁହେଁ । ଯଦି କୌଣସି ଲୋକ ପ୍ରବଳ ଆସକ୍ତିର ଅଧୀନ ହୋଇ ରୂପବତୀ ରମଣୀକୁ ହୃଦୟରେ ସ୍ଥାନ ଦେଇଥାଏ, ତାହା ହେଲେ ସେହି ରମଣୀର ବିଚ୍ୟୁତି ଘଟିବା ଅଧିକାଂଶ ସ୍ଥଳରେ ସମ୍ଭବପର ହୁଏ । ରୂପର ଆକର୍ଷଣ ବାହ୍ୟିକ; ମନର ମିଳନ ନ ହେବା ଯାଏ ଜଣେ ଜଣକୁ ଅନ୍ତର ସହିତ ଭଲ ପାଇପାରେ ନାହିଁ । ରୂପର ଆକର୍ଷଣ ଘେନି ଅନେକ ସମୟରେ ମନର ସରସତା ପ୍ରକଟିତ ହୁଏ ଓ ପ୍ରେମର ବନ୍ଧନ ଦୁଇଟି ପ୍ରାଣୀଙ୍କ ମଧ୍ୟରେ ଅଚ୍ଛେଦ୍ୟ ହୋଇଉଠେ । ରୂପର ମୋହ ସହଜରେ ମନକୁ ଭୁଲାଇ ଦେଇପାରେ; କିନ୍ତୁ ମନ ଯେତେବେଳେ ପରୀକ୍ଷା କରି ଦେଖେ ଆକାଙ୍କ୍ଷିତ-ବିଷୟ ଶରୀର ଉପରେ ନିର୍ଭର କରୁନାହିଁ, ସେତେବେଳେ ଚଞ୍ଚଳ ହୋଇଉଠିବା ମନ ପକ୍ଷରେ ଖୁବ୍ ସ୍ୱାଭାବିକ ବୋଧହୁଏ । ରୂପର ମୋହ ମନକୁ କୌଣସି ନିର୍ଦ୍ଦିଷ୍ଟ ଆଧାରରେ ରଖାଇଦିଏ ନାହିଁ । ଏପରି ଅସ୍ଥିର ଅବସ୍ଥାରେ ସୌନ୍ଦର୍ଯ୍ୟର ମହତ୍ତ୍ୱ ଉପଲବ୍ଧି କରିବା କିମ୍ବା ରୂପକୁ ଅବଲମ୍ବନ କରି ମାନସିକ ଉତ୍କର୍ଷ ଲାଭ କରିବା ସମ୍ଭବପର ନୁହେଁ । କେବଳ ସୌନ୍ଦର୍ଯ୍ୟପିପାସୁ ହେଲେ ମନକୁ ନିର୍ଦ୍ଦିଷ୍ଟ ଆଶ୍ରୟରେ ଆବଦ୍ଧ ନ ରଖି ସ୍ୱଚ୍ଛନ୍ଦଗତିରେ ଛାଡ଼ିଦେବା ଉଚିତ । ଭୋଗ ସମ୍ପର୍କରେ ମନର ଏପରି ସ୍ୱାଧୀନ ଅବସ୍ଥା ରହିବା ବାଞ୍ଛନୀୟ ନୁହେଁ । ବିଶ୍ୱପ୍ରେମରେ ହୃଦୟ ପୂରିଉଠିଲେ ମନୁଷ୍ୟ ସାମାନ୍ୟ ଲତାଟିରେ ଶିରୀଷାଙ୍ଗର କୋମଳତା ଅନୁଭବ କରିପାରେ ।

ରୂପ ଗୋଟାଏ ଇଙ୍ଗିତ ମାତ୍ର । ଜଗତର ସମସ୍ତ ନରନାରୀ ଗୋଟାଏ ଚିରନୂତନ ଅଭିଯାନରେ ଚାଲିଛନ୍ତି । କେହି କାହାର ଲକ୍ଷ୍ୟ ପ୍ରତି ଦୃଷ୍ଟି ଦେଉନାହିଁ । ଅଧିକାଂଶଙ୍କର ଯାତ୍ରା ସମସ୍ତ ବିଭ୍ରାଟରେ କଟିଯାଉଛି । ସ୍ୱକୃତ କର୍ମର ପରିଣାମ ମନୁଷ୍ୟ ବୁଝିବାକୁ କ୍ଷମ ହେଉ ନାହିଁ । କିଛି ସମୟ ଜଣକୁ ଅନୁସରଣ କରି ତାଠାରୁ ଆଶାନୁରୂପ ସାହାଯ୍ୟ ନ ପାଇଲେ ମନୁଷ୍ୟର ଗୋଟାଏ ନୈରାଶ୍ୟ ଆସେ । ସେ ମନେ କରେ ଜଗତଟା ତା ପକ୍ଷରେ ମରୀଚିକା । ହୃଦୟର ନିସ୍ତରଙ୍ଗ ଭାବଗୁଡ଼ିକ ନିଶ୍ଚୟ କୌଣସି ଅପରିଚିତ ଆଗନ୍ତୁକ ଅପେକ୍ଷାରେ ରହିଥାଏ । ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ମନୁଷ୍ୟ ଦୌଡ଼େ ତାର ହୃଦୟର ଗୋପନ ଦ୍ୱାରଟି ଖୋଲିଦେବା ପାଇଁ । ଅନେକ ସମୟରେ ବିଭ୍ରାନ୍ତି ଆସେ, ସେ ବୁଝିପାରେ ନାହିଁ, ଅନ୍ତରରେ କାହାର ସ୍ପନ୍ଦନ ଅନୁଭବ କରୁଛି । କେତେ ସହଯାତ୍ରୀ ଆସନ୍ତି, ମନୁଷ୍ୟ ସଂସାର-ପଥରେ ସେମାନଙ୍କର ସାହଚର୍ଯ୍ୟ ପାଇଥାଏ; କିନ୍ତୁ ପ୍ରକୃତ ବ୍ୟଥାର ସାଥୀ କେହି ଆସନ୍ତି ନାହିଁ । ତେଣୁ ଗୋପନ ଦ୍ୱାରଟି ଚିରଦିନ ଗୋପନରେ ରହିଯାଏ । ମନୁଷ୍ୟ ଉପଯୁକ୍ତ ସାଧନା ଉପରେ ନିର୍ଭର କଲେ ପ୍ରକୃତ ବନ୍ଧୁ ଆସି ସନ୍ଧାନ ଦିଅନ୍ତି । ଗୋପନ-ଦ୍ୱାରରେ ସେହି ଚିରସ୍ମରଣୀୟ ବନ୍ଧୁଟି ଆସି ଆଘାତ ଦିଅନ୍ତି, ତାଙ୍କରି ରୂପରେ ହୃଦୟ ଆଲୋକିତ ହୋଇଉଠେ । ତାଙ୍କରି ପୂଜାରେ ମନୁଷ୍ୟ ସର୍ବସ୍ୱ ନିୟୋଜିତ କରିଦିଏ । ଆଉ ସେ ରୂପର କାଙ୍ଗାଳ ହୁଏ ନାହିଁ । ସୀମାହୀନ କକ୍ଷରେ ବୁଲି ବୁଲି ମନୁଷ୍ୟ ତାର ଅନ୍ତରର ଆରାଧ୍ୟ ବିଗ୍ରହଟିକୁ ପାଇଲେ ଆଉ କାହାର ଅପେକ୍ଷା ରଖେ ନାହିଁ । ଦୁଇଟି ଜୀବର ହୃଦୟତନ୍ତ୍ରୀ ଏକ ରାଗିଣୀରେ ବାଜିଉଠେ । ଦୁହେଁ ଦୁହିଁଙ୍କର ରୂପ ସନ୍ଦର୍ଶନରେ ବିଶ୍ୱର ସୌନ୍ଦର୍ଯ୍ୟକୁ ଦେଖିପାରନ୍ତି । ଜଣକର ଆନନ୍ଦ ଅପର ଅନୁଭବ କରେ । ହୃଦୟରେ ଯଦି ସାମାନ୍ୟ ଆବିଳତା ଥାଏ, ତାହା ହେଲେ ସେହି ଅପୂର୍ବ ମିଳନରେ ସବୁ କ୍ଷାଳିତ ହୋଇଯାଏ । ସଂସାରର ନଶ୍ୱରତା ମଧ୍ୟରେ ସ୍ତ୍ରୀ ଓ ପୁରୁଷର ମିଳନ ଯେ ଉଦ୍ଦେଶ୍ୟ ସାଧନ କରିବ, ତାହା ବିଧି-ନିର୍ଦ୍ଦିଷ୍ଟ ବୋଲି ଅନୁମିତ ହୁଏ; ତଥାପି ଦୁହିଁଙ୍କ ମଧ୍ୟରେ ସମସ୍ତ ମମୟରେ ଗୋଟାଏ ଅସାମଞ୍ଜସ୍ୟ ଯାବଜ୍ଜୀବନ ରହିଯାଏ । ଯୌବନ ବଡ଼ ବିଷମ କାଳ । ରୂପ ଉପରେ ତୀବ୍ର ଦୃଷ୍ଟି ଦେଇ ମନୁଷ୍ୟ ଉତ୍କଟ ଲିପ୍ସାର ଅଧୀନ ହୋଇପଡ଼େ । ଅନ୍ତରର ଭାବ ନ ମିଶିବା ଯାଏ ଦୁଇଟି ପ୍ରାଣୀ ଗୋଟାଏ ଦିଗରେ ଗତି କରିପାରନ୍ତି ନାହିଁ ।

ରୂପର ଛଟା ଆଲୋକର ସ୍ଫୁରଣ ସଙ୍ଗେ ସମାନ । ଯେ ରୂପରେ ଜଣେ ମୋହିତ, ଅପର ତାକୁ ଉପେକ୍ଷା କରି ଚାଲିଯାଏ । ବନର ମାଳତୀ ପରି ରୂପର କମନୀୟତା ଅନେକ ସମୟରେ ଲୋକଲୋଚନ ଅନ୍ତରାଳରେ ଲୁଚିଯାଇଥାଏ । ଘଟନା-ଚକ୍ରର ଆବର୍ତ୍ତନରେ ମନୁଷ୍ୟ ଆକସ୍ମିକ ଭାବରେ ଯେ ରୂପର ସନ୍ଧାନ ପାଏ, ତାକୁ ଅନୁସରଣ କରି ଜୀବନର ସରସତା ସୃଷ୍ଟି କରେ । ରୂପର ବିଶିଷ୍ଟତା ମନ କେବଳ ଗ୍ରହଣ କରେ । ରୂପଜଗତର ଅସାମଞ୍ଜସ୍ୟ ଭାବରାଜ୍ୟରେ ଭିନ୍ନତା ଆଣିଥାଏ । ରୂପର ଆକର୍ଷଣରେ ଜଣେ ଜଣକ ଆଡ଼କୁ ଟାଣି ହୋଇଯାଏ । ପାରିପାର୍ଶ୍ୱିକ ଅବସ୍ଥା ଦୁହିଁଙ୍କୁ ସମଭାବନାର ବଶବର୍ତ୍ତୀ କରାଏ ନାହିଁ । ଜଣେ ଚାହେଁ ଉନ୍ମୁକ୍ତ ବିହଙ୍ଗ ପରି ନୀଳ ନଭରେ ବିଚରଣ କରି ସେହି ଅନନ୍ତ ନୀଳିମା ସଙ୍ଗେ ମିଶିଯାଇ ନିଜର କ୍ଷୁଦ୍ରତ୍ୱ ଲୋପ କରିଦେବ; କିନ୍ତୁ ସାଥୀଟି ତାର କ୍ଲିଷ୍ଟ ସଂସାର ପଥରେ ସର୍ବଦା ଦୈନ୍ୟର କଷାଘାତ ଅନୁଭବ କରୁଥିବ । ବାହ୍ୟ ଦୃଷ୍ଟିରେ ଏହି ଦୁଇ ପ୍ରାଣୀଙ୍କର ମିଳନ ଅସମ୍ଭବ ବୋଧ ହୋଇପାରେ; କିନ୍ତୁ ପ୍ରକୃତରେ ତାହା ହୋଇଥିଲେ କବିମାନେ ରବି ଓ କମଳର ସମ୍ପର୍କକୁ ଏତେ ବଡ଼ ବୋଲି ଧରି ନ ଥାନ୍ତେ । ବିରୁଦ୍ଧ ଭାବରେ ହୃଦୟର ମିଳନ ଘଟି ନ ପାରେ । ବ୍ୟବଧାନ ସଙ୍ଗେ ମନର ସମ୍ବନ୍ଧ ନାହିଁ । ରୂପ ଥରେ ଯଦି ଭାବକୁ ଅବଲମ୍ବନ କରି ମନରେ ଅଙ୍କି ହୋଇଯାଏ, ତାହା ହେଲେ ବିସ୍ମୃତି ତାକୁ ସହଜରେ ପୋଛିପାରେ ନାହିଁ । ଆଲୋକ ଓ ଛାୟାର ସମ୍ମିଶ୍ରଣ ପ୍ରାକୃତିକ ସୌନ୍ଦର୍ଯ୍ୟର ଗୋଟିଏ ସୁନ୍ଦର ଉପାଦାନ । ରୂପାଶ୍ରୟୀର ବିଚ୍ଛେଦ ଓ ମିଳନ ପବିତ୍ର ପ୍ରେମର ପରାକାଷ୍ଠା ଜ୍ଞାପନ କରେ । ହୃଦୟର ଆବେଗରେ ଯେ ଆଶା ନିହିତ ଥାଏ, ବାସ୍ତବତା ତାକୁ ବହୁ ଦୂରରେ ତ୍ୟାଗ କରିଥାଏ । ରୂପକୁ ଦୂରରେ ରଖି ଯେ ଆନନ୍ଦ ଅନୁଭବ କରାଯାଏ, ତାର ସଂସ୍ପର୍ଶରେ ଆସିଲେ ଆନନ୍ଦର ମାତ୍ରାଟା କମି ଆସେ; ଗୋଟାଏ ସ୍ୱାଭାବିକ ଶିଥିଳତା ମନର ଆବେଗକୁ ଦୂର କରିଦିଏ । ସୁଖର ସ୍ୱପ୍ନଟା ଭାଙ୍ଗି ଗଲେ ମନରେ ଗୋଟାଏ ପ୍ରତିକ୍ରିୟାର ଆରମ୍ଭ ହୁଏ । ନିର୍ଝରିଣୀର କଳତାନରେ ପ୍ରେମଶୀଳା ନାୟିକାର କଣ୍ଠଧ୍ୱନି ଆଉ ଶୁଣିବାକୁ ମିଳେ ନାହିଁ । ଭ୍ରମରର ଆକୁଳ ଗୁଞ୍ଜନରେ ବିଜନବିହାରିଣୀଙ୍କୁ ଅପେକ୍ଷା କରିବାକୁ ପଡ଼େ ନାହିଁ । ଯାହା ଲାଗି ସବୁ କଳ୍ପନା, ତାକୁ ନିକଟରେ ପାଇଲେ ମନୁଷ୍ୟ ସ୍ୱପ୍ନ ଦେଖିବାକୁ ମନ ବଳାଏ ନାହିଁ । ଏହି ସମୟରେ ଗୋଟାଏ ଅଭିସନ୍ଧି ଆସି ପହଞ୍ଚିଯାଏ । ହୁଏତ ରୂପର ମୋହରେ ଦୁଇଟା ପ୍ରାଣୀ ଅନ୍ଧ ହୋଇଯାଇପାରନ୍ତି କିମ୍ବା ହୃଦୟର ନିଭୃତ ଦ୍ୱାର ଖୋଲି କେତେ ଯୁଗର ଅବ୍ୟକ୍ତ ମନୋଭାବ ପରସ୍ପର ନିକଟରେ ବ୍ୟକ୍ତ କରନ୍ତି । ଚଞ୍ଚଳତାବଶତଃ ଶରୀର ସୁଖ ଅନୁଭବ କଲେ ରୂପର ଯଥେଷ୍ଟ ଅବମାନନା ହୁଏ ଓ ସେଥି ସଙ୍ଗେ ଗୋଟାଏ ସଙ୍କୁଚିତ ଅବସ୍ଥା ମନକୁ ଗ୍ରାସ କରେ । ଯେଉଁ ସୁନ୍ଦରୀର ସ୍ୱରୂପ ଦର୍ଶନରେ ପୁରୁଷ ବିମଳ ଆନନ୍ଦ ଅନୁଭବ କରେ, ତାର ସ୍ପର୍ଶ ଆନନ୍ଦର ମାତ୍ରା ଦ୍ୱିଗୁଣିତ କରିପାରେ; କିନ୍ତୁ ମନେ ରଖିବାକୁ ହେବ, ଆକଣ୍ଠ ଭୋଜନରେ ଭୁକ୍ତଦ୍ରବ୍ୟ ଦୂଷିତ ହୋଇ ସମସ୍ତ ଶରୀରକୁ ନଷ୍ଟ କରିଦିଏ । ବିଦ୍ୟୁତର ଚମକ ନୟନ ରଞ୍ଜନ କରେ; କିନ୍ତୁ ସ୍ପର୍ଶ ମୃତ୍ୟୁର ଲୀଳା ଦେଖାଇ-ଦିଏ । ଉପର୍ଯ୍ୟୁକ୍ତ ଉକ୍ତିକୁ ଆଧୁନିକ ବୈଜ୍ଞାନିକମାନେ ଭିନ୍ନଭାବରେ ଗ୍ରହଣ କରିପାରନ୍ତି । ଏ ନବଯୁଗରେ ବିଦ୍ୟୁତର କ୍ରିୟା ଘରେ ଘରେ ଦେଖିବାକୁ ମିଳୁଛି । ଏପରି ସ୍ଥଳେ ରୂପଟାକୁ ଏତେ ଭୟ କରିବା କଣ ଉଚିତ ? ରୂପକୁ ଅନ୍ତର ସହିତ ମିଳାଇ ନେଲେ ଭବିଷ୍ୟତ୍ ବିଚ୍ଛେଦର ସମ୍ଭାବନା ନ ଥାଏ । ରୂପର ଆସକ୍ତିରେ ଜଣେ ଜଣକୁ ଖୁବ୍ ଉଚ୍ଚ ଆସନ ଦେଇଥାଏ । ବାହ୍ୟଦୃଷ୍ଟିରେ ରୂପକୁ ପୂଜା କଲା ପରି ଜଣାପଡ଼େ, କିନ୍ତୁ ପ୍ରକୃତରେ ସେଇଟା ଗୋଟାଏ ପ୍ରତାରଣା । ସଂସାରରେ ଏହି ପ୍ରତାରଣା ଚିରଦିନ ଲାଗି ରହିଛି; ସେଥିଯୋଗୁଁ ରୂପର ପଜାରେ ବିକାଶର ପଥ ଅନୁସରଣ କରିବାକୁ କେହି ସାହସୀ ହୁଅନ୍ତି ନାହିଁ ।

ରୂପସୃଷ୍ଟିରେ ପ୍ରେମର ଚିତ୍ର ପ୍ରଥମେ ବିକଶିତ ହୁଏ । ସୌନ୍ଦର୍ଯ୍ୟପିପାସୁ ରୂପ-ଜଗତରୁ ତାର ପ୍ରାରମ୍ଭିକ କଳ୍ପନା-ସମ୍ପଦ ଆହରଣ କରିଥାଏ । ସୌନ୍ଦର୍ଯ୍ୟରେ ପ୍ରେମର ପୂର୍ଣ୍ଣତାପ୍ରାପ୍ତି ସମ୍ଭବପର ହୁଏ । ଜଡ଼ଜଗତର ଆଧାରଗୁଡ଼ିକରେ ସୌନ୍ଦର୍ଯ୍ୟର ନିର୍ମଳତା ପୂର୍ଣ୍ଣମାତ୍ରାରେ ପ୍ରକାଶିତ ନ ହେଲେ ସୁଦ୍ଧା ସୌନ୍ଦର୍ଯ୍ୟର ଯେଉଁ ସେତୁସବୁ ନିର୍ମିତ ହୋଇଥାଏ, ସେହିଗୁଡ଼ିକ ସାହାଯ୍ୟରେ ଦୁସ୍ତର ସଂସାରବର୍ତ୍ତି ପାର ହୋଇ ମନୁଷ୍ୟ ପ୍ରେମରାଜ୍ୟର ଦ୍ୱାର ଉନ୍ମୋଚନ କରିବାକୁ କ୍ଷମ ହୁଏ । ରୂପର ମାଧୁର୍ଯ୍ୟ ନିକଟରେ ତାର ଆତ୍ମବିସ୍ମୃତି ମଧ୍ୟ ଆସିପାରେ; କିନ୍ତୁ ଏହି ଦର୍ଶନର ପରିଣାମ ଯଦି ଘୋର ଆସକ୍ତି ଜନ୍ମାଏ, ତାହା ହେଲେ ଗୋଟାଏ ଦାସତ୍ୱ ବୃତ୍ତିରେ ମାନବିକତା ଆଚ୍ଛନ୍ନ ହୋଇପଡ଼େ । ପକ୍ଷାନ୍ତରରେ ଆସଙ୍ଗଲିପ୍ସାକୁ ବାଦ୍ ଦେଇ ଭାବୁକ କଳ୍ପନାର ସମୁଚ୍ଚ ଶିଖରରେ ଆରୋହଣ କଲାବେଳେ ଗୋଟିଏ ସରସ ସମ୍ପର୍କର ଅଭାବ ଅନୁଭବ କରେ । ଯେ ରୂପ ସମ୍ପର୍କରେ ଜଡ଼ତା

ଘନୀଭୂତ ହୋଇଆସେ, ତାର ଅବଲମ୍ବନରେ ପୁଣି ପ୍ରେମର ସ୍ୱର୍ଗୀୟ ଆନନ୍ଦ ଅନୁଭୂତ ହୁଏ । ବୈଚିତ୍ର୍ୟମୟ ଜଗତରେ ଆଲେଖ୍ୟର ସମସ୍ୟା ଦୁର୍ବଳ ମାନବକୁ ଅଧିକାଂଶ ସମୟରେ ବିବ୍ରତ କରିଥାଏ । ଦୁର୍ବଳତାକୁ ଦୂର କରି ମନୁଷ୍ୟ ନିଜର ଲକ୍ଷ୍ୟ ପଥରେ ଅଗ୍ରସର ହୁଏ । ରୂପର ପ୍ରତିଷ୍ଠାରେ ମାନବୀୟ ଶକ୍ତି ଅପଚିତ ହୁଏ ନାହିଁ; କେବଳ ଲୋଲୁପତାରେ ତାର ଶ୍ରୀ ନଷ୍ଟ ହୁଏ । ପ୍ରେମର ଅସୀମତା ମଧ୍ୟରେ ରୂପ ଯେଉଁ ସୀମା ନିର୍ଦ୍ଦେଶ କରିଦିଏ, ତାକୁ ଅନୁସରଣ କରି ମନୁଷ୍ୟ କୃତାର୍ଥ ହୁଏ । ରୂପ ଅନ୍ତରର ବେଷ୍ଟନୀ; ସେହି ବେଷ୍ଟନୀକୁ ଭେଦ କଲେ ମିଳନାନନ୍ଦର ସନ୍ଧାନ ମିଳେ । ପ୍ରେମିକ ଓ ପ୍ରେମିକାର ମିଳନ-ମନ୍ଦିରରେ ରୂପ ମୁଖଶାଳାର କାର୍ଯ୍ୟ କରେ । ସତ୍ତ୍ୱପୂଜକ ମୁଖଶାଳାଠାରୁ ନିଜର ମସ୍ତକ ଅବନତ କରିଦିଏ । ଜଗତରେ ନମ୍ରତାର ସ୍ଥାନ ଅତି ଉଚ୍ଚରେ; ବିନମ୍ର ହେଲେ ରୂପର ପୂଜା ସାର୍ଥକ ହୁଏ ।

# ଜାତୀୟ ଶିକ୍ଷା

ଜଗତ୍ ଗୋଟାଏ ଶିକ୍ଷାକ୍ଷେତ୍ର । ଅପୂର୍ଣ୍ଣ ମାନବଜାତି ଆଦିମ ଯୁଗରୁ ସଂଖ୍ୟାତୀତ ଘଟଣାବଳୀପର୍ଯ୍ୟାୟରେ ଭିନ୍ନ ଭିନ୍ନ କର୍ମପନ୍ଥା ଅବଲମ୍ବନ କରି ଗୋଟାଏ ସର୍ବବାଦିସମ୍ମତ ମାର୍ଗ ଆଜିପର୍ଯ୍ୟନ୍ତ ସ୍ଥିର କରି ପାରିନାହିଁ । କେତେ ସଭ୍ୟତାର ଅଭ୍ୟୁଦୟ ହୋଇଛି, କେତେ ଜାତିର କ୍ରିୟା-କୌଶଳ ଓ ଧର୍ମରେ ମାନବୀୟ ଦୁର୍ବଳତା ଅନେକ ପରିମାଣରେ ଅପସାରିତ ହୋଇଛି; କିନ୍ତୁ ଜଗତ୍ ସମକ୍ଷରୁ ଅଜ୍ଞାନାନ୍ଧକାର ସମ୍ପୂର୍ଣ୍ଣରୂପେ ଲୋପ ପାଇନାହିଁ । ମନୁଷ୍ୟର ଶିକ୍ଷା ଓ ସଭ୍ୟତା ସୀମାବଦ୍ଧ ବୋଲି ପୃଥିବୀରେ ସାମ୍ୟଭାବ ସ୍ଥାପନ କରିବା ଦୁର୍ଘଟ ହୋଇଅଛି । ଜଣେ ଯେଉଁ ଜ୍ଞାନବଳରେ ଅପରକୁ ହୀନ ମନେ କରୁଛି, ସେହି ଜ୍ଞାନ କେତେ ଦୂର ପରିପକ୍ୱ ଓ ଅଭ୍ରାନ୍ତ, ତାହା ନିର୍ଣ୍ଣୟ କରିବା ସହଜ ନୁହେଁ । ତା ହୋଇଥିଲେ, ସୁଧୀମାନଙ୍କର ମତ ଉପର୍ଯ୍ୟୁପରି ଖଣ୍ଡିତ ହୁଅନ୍ତା ନାହିଁ । ଅଧିକାଂଶ ସମୟରେ କୌଣସି ବିଷୟ ସମ୍ୟକ୍ ଉପଲବ୍ଧ ନ ହେଲେ ସୁଦ୍ଧା ପ୍ରବଳ ଜନମତ ପ୍ରତିଷ୍ଠିତ ହୁଏ ଓ ତଦ୍ଦ୍ୱାରା ଗୋଟିଏ ଜାତି ଅନ୍ୟ ଜାତିର ମହତ୍ତ୍ୱ ପରୀକ୍ଷା କରେ । ଆଜି ଏ ବୈଜ୍ଞାନିକ ଯୁଗରେ ଯେଉଁମାନେ ସଭ୍ୟତା ଓ ଶିକ୍ଷାର ଗୁରୁ ବୋଲି ନିଜକୁ ମନେ କରନ୍ତି, ସେମାନଙ୍କର ପ୍ରଚ୍ଛନ୍ନ ଦୁର୍ବଳତା ଦେଖିଲେ ଅନ୍ୟମାନଙ୍କର ସ୍ୱତଃ ଅନୁଦାର ଭାବ ଜାଗରିତ ହୁଏ । ପ୍ରାକୃତିକ ଗୁଣ ଓ ପାରିପାର୍ଶ୍ୱିକ ଅବସ୍ଥାଭେଦରେ ମନୁଷ୍ୟମାନଙ୍କୁ ଗୋଟିଏ ଜାତିରେ ଆବଦ୍ଧ ରଖାଯାଇ ପାରିବ ନାହିଁ । ଯେ ଜାତି ଅନେକ ଦିନରୁ ଗୋଟାଏ ମାର୍ଗ ଅନୁସରଣ କରି ଆସିଲାଣି, ତାକୁ ସମ୍ପୂର୍ଣ୍ଣରୂପେ ବଦଳାଇବା ଅସମ୍ଭବ କହିଲେ ଚଳେ । ଏଥିରେ ବେଶି ଅନିଷ୍ଟ ଘଟିପାରେ । ମାର୍ଜିତ ନୀତି ପ୍ରୟୋଗ କଲେ ଜାତୀୟତା ନଷ୍ଟ ହୁଏ ନାହିଁ; ବରଂ କୁସଂସ୍କାର ଦୂରୀକରଣରେ ଏହା ଗୋଟିଏ ଉତ୍କୃଷ୍ଟ ଉପାୟ । ପରସ୍ପର ବିରୋଧୀ ଜାତିମାନେ ସମାଲୋଚନା ଆଶ୍ରୟରେ ସେମାନଙ୍କର ଭ୍ରମ ଜାଣିପାରନ୍ତି । ଅଗଣିତ ଜାତି, ଧର୍ମ, ସଭ୍ୟତା ପ୍ରଭୃତିରୁ ମନୁଷ୍ୟକୁ ଅସଂପୃକ୍ତ ରଖି ଗୋଟାଏ ସାର୍ବଜନୀନ ଶିକ୍ଷାପ୍ରଭାବରେ ତା ଜୀବନକୁ ନିୟନ୍ତ୍ରିତ କରିବା ଶ୍ରୁତିସୁଖକର ବିଷୟ ହୋଇପାରେ; କିନ୍ତୁ କାର୍ଯ୍ୟୋପଯୋଗୀ ହେବା ସମ୍ଭବପର ନୁହେଁ ।

ଶିକ୍ଷା ଓ ଜ୍ଞାନର ସମ୍ପର୍କ ସବୁ ସମୟରେ ସମାନ ରହେ ନାହିଁ । ସ୍ଥଳବିଶେଷରେ ଜ୍ଞାନୀ ଯେଉଁ ଢଙ୍ଗରେ ଚିନ୍ତା କରେ, ତାହା ସାଂସାରିକ ଜୀବନ କଟାଇବାପାଇଁ ଅନୁପଯୋଗୀ ହୋଇପାରେ । ଏହା ବୋଲି ନୀତିକୁ ବାଦ୍ ଦେଇ କୌଣସି ଶିକ୍ଷା ପ୍ରବର୍ତ୍ତନ କରାଇବା ଉଚିତ ନୁହେଁ । ଶିକ୍ଷାର ପ୍ରଥମ ସୋପାନରେ କେତେଗୁଡ଼ିଏ ଉଦାର ଓ ମହତ୍ ନୀତି ପାଳନ କରିବା ଆବଶ୍ୟକ ହୁଏ, ଯଦ୍ଦ୍ୱାରା କ୍ରିୟାବହୁଳ ମନୁଷ୍ୟ ଜୀବନରେ ଗୋଟାଏ ସମତା ଅଣାଯାଇପାରେ । ପ୍ରାଥମିକ ଅବସ୍ଥାରେ ଜାତି କିମ୍ବା ଧର୍ମର ପ୍ରଭାବ ଆଣି ଶିକ୍ଷାକୁ ସଂକୀର୍ଣ୍ଣ କରିବା ଉଚିତ ନୁହେଁ । ସତ୍ୟାନୁରାଗକୁ ଯେ କୌଣସି ଶିକ୍ଷାର ପ୍ରଧାନ ଅଙ୍ଗସ୍ୱରୂପ ଗ୍ରହଣ କରାଯାଇପାରେ । ମାନସିକ ଉତ୍କର୍ଷରେ ଏହା ଯଥେଷ୍ଟ ସାହାଯ୍ୟ କରେ । ଶିକ୍ଷାକୁ କେବଳ ବ୍ୟବସାୟଗତ କରି ଜାତୀୟ ସୁଖର ପରିମାଣ ବର୍ଦ୍ଧିତ କରାଯାଇପାରେ; ଏଥିରେ ସୁଦ୍ଧା ସତ୍ୟ ପ୍ରତି ବିଶେଷ ଆସ୍ଥା ରଖିବା ଉଚିତ । ଆଧୁନିକ ଆନ୍ତର୍ଜାତିକ ଋଣ ଓ ବାଣିଜ୍ୟ ବିଷୟ ଆଲୋଚନା କଲେ ଏ ସମ୍ବନ୍ଧରେ କୌଣସି ସନ୍ଦେହ ରହେ ନାହିଁ । ସୁଦୂର ଆମେରିକାରୁ ବ୍ୟବସାୟୀ ଆସି ଭାରତରେ ନିଜର ପଣ୍ୟଦ୍ରବ୍ୟ ବିକ୍ରି କରି Bill of Exchange ସାହାଯ୍ୟରେ କୋଟି କୋଟି ଟଙ୍କାର ବ୍ୟବସାୟ ନିଷ୍ପତ୍ତି କରିବା ସହଜ ନୁହେଁ । ଜାତୀୟ ମହତ୍ତ୍ୱ ନ ଥିଲେ ଏପରି ବିଶ୍ୱାସ ଜନ୍ମିବା ସମ୍ଭବପର ହୁଅନ୍ତା ନାହିଁ । ଗତ ମହାଯୁଦ୍ଧର ଋଣ ପରିଶୋଧ କରିବା ପାଇଁ ପାଶ୍ଚାତ୍ୟମାନେ ବଡ଼ ବ୍ୟସ୍ତ ହୋଇପଡ଼ିଲେଣି । ବର୍ତ୍ତମାନ ପୃଥିବୀର ଅର୍ଥ ସଙ୍କଟ ସକାଶେ ଏହି ବିପୁଳ ଋଣଭାର ପ୍ରଧାନ କାରଣ ବୋଲି ମନେ ହୁଏ; କିନ୍ତୁ ସ୍ୱାର୍ଥପରତାର ବିକଟ ବିଷ ପାଶ୍ଚାତ୍ୟ ଜାତିମାନଙ୍କର ମହତ୍ତ୍ୱ ନଷ୍ଟ କରିବାକୁ ବସିଲାଣି ।

ବିଳାସିତା ଓ ଐଶ୍ୱର୍ଯ୍ୟକୁ ମୂଳମନ୍ତ୍ର କରି ଯେ ଜାତି ଅଗ୍ରସର ହୁଏ, ତାର ପତନ ଅନିବାର୍ଯ୍ୟ । ଅନେକ ପ୍ରାଚୀନ ଜାତିର ଧ୍ୱଂସ ଏହିପରି ସଂଘଟିତ ହୋଇଅଛି । ଜାତୀୟ ଜୀବନରେ କର୍ମକୁଣ୍ଠତା ଥରେ ପ୍ରବେଶ କଲେ ତାକୁ ଦୂର କରିବା ସହଜ ହୁଏ ନାହିଁ । ଗୁରୁତର ଜ୍ଞାନତତ୍ତ୍ୱ ପ୍ରକାଶ କରିବାପାଇଁ ଉନ୍ନତ ଶକ୍ତି ଲୋଡ଼ା ହୁଏ; କିନ୍ତୁ ସାଧାରଣ ଶିକ୍ଷାପଦ୍ଧତିରେ ଏ ବିଷୟର ଆଲୋଚନା କରିବା ଅନାବଶ୍ୟକ । ଦେଶର ସମୃଦ୍ଧି-ଉନ୍ନତି କଲେ ଅନେକ ବିଷୟ ଶିକ୍ଷା କରିବାକୁ ପଡ଼େ, ଯାହା ଜ୍ଞାନୀର ଉପେକ୍ଷଣୀୟ ହୋଇପାରେ । ରାଜ୍ୟ-ଶାସନ ଓ ଜାତୀୟ ଗୌରବ ରକ୍ଷାଲାଗି ମାରାତ୍ମକ ନୀତିର ଆଶ୍ରୟ ଗ୍ରହଣ କରାଯାଏ । ଦେଶବ୍ୟାପୀ ଅତ୍ୟାଚାର ଓ ନିପୀଡ଼ନଦ୍ୱାରା ଯେ ଆତଙ୍କ ସୃଷ୍ଟି କରାଯାଏ, ତାହା ବିଜୟୀର ଗୋଟାଏ ଉତ୍କୃଷ୍ଟ ନୀତି ହୋଇପାରେ; କିନ୍ତୁ ଜ୍ଞାନୀ ଏଥିରେ ପୋଷକତା କରିବାକୁ ପଶ୍ଚାତ୍‌ପଦ ହୁଏ ।

ଦେଶର ଅବସ୍ଥିତି ଅନୁସାରେ ଉପଯୋଗୀ ଶିକ୍ଷାଦାନ କର୍ତ୍ତବ୍ୟ । ଶିକ୍ଷା ଯୋଗୁ ସଭ୍ୟତାର ତାରତମ୍ୟ ଦେଖାଯାଏ । ଇଂଲଣ୍ଡ ପକ୍ଷରେ ଯେ ଶିକ୍ଷା ଆବଶ୍ୟକ, ଭାରତ ପକ୍ଷରେ ତାହା ଗ୍ରହଣୀୟ ହୋଇ ନ ପାରେ । ମନୁଷ୍ୟ ଶୈଶବରୁ କେତେଗୁଡ଼ିଏ ଶାସନ-ପଦ୍ଧତିର ଅଧୀନ ହୁଏ ଓ ପ୍ରାଥମିକ ଶିକ୍ଷାରୁ ଏହି ଅବସ୍ଥାର ସୂତ୍ରପାତ କରାଯାଏ । ଅନ୍ଧ ଅନୁସରଣର ବଶବର୍ତ୍ତୀ ହୋଇ ଅନେକ ପାଶ୍ଚାତ୍ୟ-ଶିକ୍ଷାମୁଗ୍ଧ ଭାରତୀୟ ସେମାନଙ୍କର ସନ୍ତାନମାନଙ୍କୁ ପଶ୍ଚାତ୍ୟ ଭାବରେ ପ୍ରଣୋଦିତ ହେବାକୁ ଇଚ୍ଛା କରନ୍ତି । ମୌଳିକତାର ଏକାନ୍ତ ଅଭାବବଶତଃ ଏପରି ଶୋଚନୀୟ ଅବସ୍ଥା ଘଟିବାର ଅନୁମାନ କରାଯାଏ । ଇଂରେଜୀ ଲେଖାପଢ଼ା ଶିଖିଲେ ଭାରତୀୟଙ୍କୁ ପ୍ରକୃତ ଶିକ୍ଷା ମିଳେ ନାହିଁ; ବରଂ ଏହାଦ୍ୱାରା ଜାତୀୟତାର ଅବନତି ଘଟିପାରେ । ଦୀର୍ଘ ଇଂରେଜ ଶାସନ ଫଳରେ ଆମ ଦେଶରେ ଦୁଇ ଶ୍ରେଣୀର ଲୋକ ସାଧାରଣତଃ ଦେଖାଯାନ୍ତି । ଯେଉଁମାନେ ଇଂରେଜୀ ଶିକ୍ଷା ପାଇଥାନ୍ତି, ସେମାନେ ଦେଶୀୟ ଭାଷାଭିଜ୍ଞମାନଙ୍କଠାରୁ ଅନେକ ବିଷୟରେ ପୃଥକ୍ ଦେଖାଯାନ୍ତି । ଇଂରେଜୀ ଶିକ୍ଷା ପ୍ରଭାବରେ ସଂକୀର୍ଣ୍ଣତା ଭିନ୍ନ ଆକାରରେ ଦେଶରେ ପ୍ରବେଶ କରୁଛି । ଦେଶର କୃଷି ଓ ଶିଳ୍ପ ଉପଯୁକ୍ତ କର୍ମୀ ଅଭାବରୁ ଆଶାନୁରୂପ ଉନ୍ନତି ସାଧନ କରିପାରୁ-ନାହିଁ । ଇଂରେଜୀ ଶିକ୍ଷାଭିମାନୀ ଶାରୀରିକ ଶ୍ରମ ସ୍ୱୀକାର କରିବାକୁ ହୀନ ମନେ କରୁଛି; ଅଥଚ ଆଇନ-ବ୍ୟବସାୟରେ କୂଟବୁଦ୍ଧିର ଆଶ୍ରୟ ନେବା ଦୋଷାବହ ନୁହେଁ ବୋଲି ତାର ଦୃଢ଼ ବିଶ୍ୱାସ । ଆଜିକାଲି ଦେଶର ଅବସ୍ଥାଦୃଷ୍ଟିରେ ଆଇନ ବ୍ୟବସାୟୀମାନଙ୍କର ସଂଖ୍ୟା କମିଯିବା ଉଚିତ । ଭାରତର ଉନ୍ନତିପଥରେ ସେମାନଙ୍କର ବ୍ୟବସାୟ କିପରି ଅନ୍ତରାୟ ହେଉଅଛି, ତାହା ସେମାନେ ବୁଝିବାକୁ ଚେଷ୍ଟା କରନ୍ତି ନାହିଁ । ବର୍ତ୍ତମାନ ଦୁରବସ୍ଥା କିଛିଦିନ ସ୍ଥାୟୀ ହୋଇ ରହିଲେ ସେମାନେ ବାଧ୍ୟ ହୋଇ ସେମାନଙ୍କର ଲୀଳାଭୂମିରୁ ଅପସାରିତ ହେବେ । ଅନେକ ଦେଶପ୍ରେମିକ ଆଇନ ବ୍ୟବସାୟ କରନ୍ତି । ସେମାନେ କିପରି ଭାବରେ ଦେଶର ମଙ୍ଗଳ ବିଧାନ କରନ୍ତି, ତାହା ଆମ୍ଭମାନଙ୍କ ବୁଦ୍ଧିର ଅଗମ୍ୟ । ସେମାନଙ୍କର ଧର୍ମ ସ୍ୱାର୍ଥତ୍ୟାଗ କି ସ୍ୱାର୍ଥରକ୍ଷା, ତାହା ସହଜେ ଜଣାପଡ଼େ ନାହିଁ । କେବଳ ସଭାମଣ୍ଡପରେ ବକ୍ତୃତା ଦେବାଦ୍ୱାରା ଦେଶସେବା ହୁଏ ନାହିଁ ।

ଆମ୍ଭମାନଙ୍କ ଦେଶର ପ୍ରଚଳିତ ଶିକ୍ଷା ଅନେକାଂଶରେ ମାର୍ଜିତ ଓ ପରିବର୍ତ୍ତିତ ହେବା ଏକାନ୍ତ ବାଞ୍ଛନୀୟ । ଜାତୀୟ ଚରିତ୍ରଗଠନ ଶିକ୍ଷା ଉପରେ ନିର୍ଭର କରେ । ଭାରତରେ ଧର୍ମକୁ ବାଦ୍ ଦେଇ କୌଣସି କର୍ମପନ୍ଥା ନିର୍ଦ୍ଦେଶ କରିବା ଉଚିତ ନୁହେଁ । ସେଥିଲାଗି ଧର୍ମଶିକ୍ଷା ପ୍ରତି ମୂଳରୁ ମନୋନିବେଶ କରିବା ଆବଶ୍ୟକ । ଦେଶର ବିଶେଷତ୍ୱ ଦେଖି ସଂଗଠନ କାର୍ଯ୍ୟରେ ଅଗ୍ରସର ହେବା ବୁଦ୍ଧିମାନର କାର୍ଯ୍ୟ । କେବଳ କେତେଗୁଡ଼ିଏ ପାଶ୍ଚାତ୍ୟ କାର୍ଯ୍ୟନିର୍ଘଣ୍ଟ ଅନୁସରଣ କଲେ ଭାରତୀୟ କୌଣସି ଲାଭ ପାଏ ନାହିଁ । ଶେଷରେ ସବୁ ପ୍ରୟାସ ବୃଥା ଜଣାପଡ଼େ । ବିଷୟ-ଜ୍ଞାନ ଲାଭ କଲେ ଚରିତ୍ର ଗଠିତ ହୁଏ ନାହିଁ ।

ପାଶ୍ଚାତ୍ୟମାନେ କେବଳ ବିଷୟ ବୁଦ୍ଧିରେ ଚାଳିତ ହୁଅନ୍ତି ଏବଂ ସେମାନଙ୍କର ଯାବତୀୟ କାର୍ଯ୍ୟ କୌଣସି ନୀତି ଅନୁଯାୟୀ ସମ୍ପାଦିତ ହେଲେ ସୁଦ୍ଧା ତହିଁରୁ ଧର୍ମାନୁରାଗ ଜଣାପଡ଼େ ନାହିଁ । ଧର୍ମଶିକ୍ଷାଦ୍ୱାରା ସାଂସାରିକ କାର୍ଯ୍ୟଗତିରେ ନିର୍ମଳତା ଆସେ । ମନୁଷ୍ୟର ଭେଦବୁଦ୍ଧି ଆସ୍ତେ ଆସ୍ତେ ଲୋପ ପାଏ । ଦେଶସେବା ସକାଶେ ଯେ ଉଦାରତା ଆବଶ୍ୟକ ହୁଏ, ତାର ମୂଳଭିତ୍ତି ଧର୍ମରେ ନିହିତ ଥାଏ । ଆଧୁନିକ ୟୁରୋପୀୟର ଜାତୀୟତା ଯେ ଢଙ୍ଗରେ ଗଢ଼ି କରୁଛି, ସେଥିରେ ଧର୍ମବିଶ୍ୱାସର ସ୍ଥାନ ନାହିଁ କହିଲେ ଚଳେ । ଭାରତ ସେ ଢଙ୍ଗରେ ଗଢ଼ି କଲେ ଭଲ ହୁଅନ୍ତା ବୋଲି କେହି କେହି କହିପାରନ୍ତି; କିନ୍ତୁ ଭାରତ ଓ ୟୁରୋପ ମଧ୍ୟରେ ଯେ ପ୍ରକୃତିଗତ ବିଶିଷ୍ଟତା ଦେଖାଯାଏ, ତାହାକୁ ଦୂର ନ କରି ସମଜାତୀୟ ଶିକ୍ଷାପଦ୍ଧତିର ଆଶ୍ରୟ ନେବା

ସମୀଚୀନ ନୁହେଁ । ପ୍ରାକୃତିକ ବୈଶିଷ୍ଟ୍ୟ ମନୁଷ୍ୟକୃତ ନୁହେଁ; ସୁତରାଂ ସେ ସବୁ କେହି ଘୁଞ୍ଚାଇ ପାରିବେ ନାହିଁ । ଅନେକେ କହିପାରନ୍ତି, ବୃଥା ଧର୍ମଆଡ଼ମ୍ବର କରି ଭାରତର ସର୍ବନାଶ ଘଟିଛି; କିନ୍ତୁ ପ୍ରକୃତରେ ତାହା ନୁହେଁ । ହିନ୍ଦୁଧର୍ମ ପ୍ରକୃତ କର୍ମର ବିରୋଧୀ ନୁହେଁ । କର୍ମରୁ ମୁକ୍ତିପଥ ନିର୍ଦ୍ଦେଶ କରିବା ଏକା ହିନ୍ଦୁ ପକ୍ଷରେ ସମ୍ଭବପର ହୋଇଅଛି । ଅନ୍ୟାନ୍ୟ ଧର୍ମାବଲମ୍ବୀମାନେ ହିନ୍ଦୁମାନଙ୍କ ପରି ଉଦାର ହୃଦୟ ପୋଷଣ କରିପାରିବେ ନାହିଁ । ହିନ୍ଦୁ କହେ, ପ୍ରତ୍ୟେକ ପ୍ରତ୍ୟେକର ଧର୍ମ ପାଳନ କରିବେ । ଅନ୍ୟ ଧର୍ମାବଲମ୍ବୀଙ୍କୁ ହୀନ ମନେକରିବା ତାର ଧର୍ମ ନୁହେଁ । ଯେଉଁ ଧର୍ମ ଉଦାରତା ବିଷୟରେ ପୃଥିବୀରେ ସର୍ବୋଚ୍ଚ ସ୍ଥାନ ଅଧିକାର କରିଥିଲା ଆଜି ସେହି ଧର୍ମର କି ଭୟଙ୍କର ଅବନତି ଘଟିଛି ! ଧର୍ମର ଅବନତି ସଙ୍ଗେ ହିନ୍ଦୁର ଜାତୀୟତା ଲୁପ୍ତପ୍ରାୟ ହୋଇଆସିଥିଲା । ସେ ବୁଝିଲା—ଧର୍ମର ସଂସ୍କାର ନ ଆଣି ଭାରତର ପୂର୍ବ ଶକ୍ତି ଫେରି ପାଇବା ବିଡ଼ମ୍ବନା ମାତ୍ର । ଜାତୀୟତା ଉପରେ ଧର୍ମର ଦୃଢ଼ ଭିତ୍ତି ସ୍ଥାପିତ ହେବା ଉଚିତ । ଭାରତୀୟ ଶିକ୍ଷାରେ ବର୍ତ୍ତମାନ ସ୍ୱତନ୍ତ୍ରତା ଆବଶ୍ୟକ ହେଲାଣି ।

ବିଦେଶୀ ଭାଷାକୁ ଶିକ୍ଷାର ପ୍ରଧାନ ଅଙ୍ଗ କଲେ ଜାତୀୟତାର ବିକାଶରେ ବାଧା ପଡ଼େ । ବହୁ ଆୟାସରେ ଇଂରେଜୀ ଅଧ୍ୟୟନ କରି ଯେ ପ୍ରତିପତ୍ତି ଜନ୍ମେ, ତଦ୍ୱାରା ଭାରତବାସୀ ନିଜର ଜୀବିକାନିର୍ବାହ ପନ୍ଥା ସ୍ଥିର କରିପାରେ ନାହିଁ । ଇଉରୋପୀୟମାନେ ଅନେକ ଦିନ ଭାରତରେ ରହି ସୁଦ୍ଧା କୌଣସି ଦେଶୀୟ ଭାଷାରେ ଅଭିଜ୍ଞତା ଅର୍ଜନ ନ କଲେ ହେଁ ଦେଶ-ଶାସନ କାର୍ଯ୍ୟରେ ସେମାନଙ୍କୁ କୌଣସି ଅସୁବିଧା ଭୋଗ କରିବାକୁ ପଡ଼େ ନାହିଁ କିମ୍ବା ସେମାନଙ୍କ ଶିକ୍ଷାର ଗୌରବ ନଷ୍ଟ ହୁଏ ନାହିଁ । ତେବେ ଭାରତବାସୀର ଇଂରେଜୀ ଭାଷାଶିକ୍ଷା ନ କରିବା ଗୋଟାଏ ଦୋଷ ହେବ କାହିଁକି ? ଆଜିକାଲି ଶିକ୍ଷିତ ଅର୍ଥରେ ସାଧାରଣତଃ ଇଂରେଜୀ ଲେଖାପଢ଼ା ଲୋକମାନଙ୍କୁ ଗ୍ରହଣ କରାଯାଏ । ଇଂରେଜୀ ନ ଜାଣିଲେ ଭାରତୀୟଙ୍କୁ ଶିକ୍ଷିତ ଶ୍ରେଣୀଭୁକ୍ତ ନ କରିବା କେବଳ ଭାରତ ଛଡ଼ା ପୃଥିବୀର ଅନ୍ୟତ୍ର ଦୃଷ୍ଟ ହୁଏ ନାହିଁ । ୧୦ । ୧୫ ବର୍ଷ ପରିଶ୍ରମ କରି ଆମ୍ଭେମାନେ ଇଂରେଜୀ ଭାଷା ସାହାଯ୍ୟରେ ଯେ ଶିକ୍ଷା ଅର୍ଜନ କରୁ, ତାକୁ ୭ । ୮ ବର୍ଷ ମଧ୍ୟରେ ମାତୃଭାଷା ସାହାଯ୍ୟରେ ଶିକ୍ଷା କରିପାରନ୍ତୁ । ଇଂରେଜୀ ପୃଥିବୀର ପ୍ରଧାନ ଭାଷା ହୋଇପାରେ; କିନ୍ତୁ ତଦ୍ୱାରା ଗୋଟାଏ ଅପର ଜାତିର ଜାଗରଣ ଆସିବା ସହଜ ନୁହେଁ । ଉନ୍ନତ ଭାଷା ହିସାବରେ ଇଂରେଜୀ ଶିକ୍ଷା କରିବା ଆମ୍ଭମାନଙ୍କର ଆକାଙ୍କ୍ଷା ହେଲେ କିଛି କ୍ଷତି ନାହିଁ; କିନ୍ତୁ କର୍ମ ଜୀବନରେ ଗୋଟାଏ ବିଦେଶୀ ଭାଷାକୁ ଏପରି ଅତ୍ୟୁଚ୍ଚ ସ୍ଥାନ ଦେବା ନିତାନ୍ତ ଗର୍ହିତ । ଆଜିକାଲି ବନ୍ଧୁମାନଙ୍କ ନିକଟକୁ ପତ୍ର ଦେଲାବେଳେ ଆମ୍ଭେମାନେ ଇଂରେଜୀ ଭାଷା ବ୍ୟବହାର କରିଥାଉଁ । ଏଥିରେ ମାତୃଭାଷା ଓ ସମାଜର ଯଥେଷ୍ଟ ଅକଲ୍ୟାଣ ଘଟେ । ଇଂରେଜମାନଙ୍କୁ ଅନୁକରଣ କରିବାର ଏହା ଗୋଟାଏ ବିକୃତ ମାର୍ଗ ।

ପୋଷାକପରିଚ୍ଛଦ, ଖାଦ୍ୟପେୟ ପ୍ରଭୃତିଠାରୁ ଆରମ୍ଭ କରି ଭାଷା ପର୍ଯ୍ୟନ୍ତ ବିଦେଶୀଠାରୁ ଆମଦାନୀ କଲେ ଜାତୀୟତା ରକ୍ଷା ଅସମ୍ଭବ ହେବ ।

ଶିଳ୍ପ, ବାଣିଜ୍ୟ ପ୍ରଭୃତି ଜାତୀୟ ଶିକ୍ଷାର ଅଙ୍ଗୀଭୂତ ହେବା ସର୍ବାଦୌ ଉଚିତ । ପ୍ରତ୍ୟେକ ବିଦ୍ୟାଳୟରେ ଛାତ୍ର-ମାନଙ୍କର ସ୍ୱାଭାବିକ ସ୍ପୃହା ଅନୁଯାୟୀ ଏ ବିଷୟରେ ଶିକ୍ଷାଦାନ ପ୍ରଣାଳୀ ସ୍ଥିର କରିଦେବା ଦେଶବାସୀଙ୍କର କର୍ତ୍ତବ୍ୟ । ଅନେକ ଦିନ ତଳେ ଜର୍ମାନୀ ଓ ଇଂଲଣ୍ଡ ମଧ୍ୟରେ ବ୍ୟବସାୟ ସମ୍ପର୍କରେ ପ୍ରତିଯୋଗିତା ହୋଇଥିଲା । ଜର୍ମାନୀ ବିଫଳପ୍ରଯତ୍ନ ହୋଇ ନୂତନଭାବରେ ଶିକ୍ଷାପଦ୍ଧତି ଚଳାଇଲା । ବୈଜ୍ଞାନିକ ରୀତିରେ ଯେଉଁ ଦେଶବ୍ୟାପୀ ଶିକ୍ଷା ପ୍ରଚାର କରାଗଲା, ସେଥିରେ ଜର୍ମାନୀର ବାଣିଜ୍ୟ ପ୍ରବଳ ହୋଇଉଠିଲା । ସମସ୍ତ ପୃଥିବୀ ତା ସପକ୍ଷରେ ପ୍ରତିଯୋଗିତା କରିବାକୁ ସାହସ କଲା ନାହିଁ । ଏସବୁ କାର୍ଯ୍ୟ ସମ୍ପାଦନ କରିବା ପାଇଁ ଶାସକମାନଙ୍କର ଦୃଷ୍ଟି ରହିବା ଆବଶ୍ୟକ । ଭାରତର ଦୁର୍ଦ୍ଦଶା ଦେଖିଲେ କିଏ ବିଶ୍ୱାସ କରିବ ଯେ, ତାର ସନ୍ତାନମାନେ ଉପଯୁକ୍ତ ଶିକ୍ଷା ପାଆନ୍ତି ? ସାମାନ୍ୟ ଦିଆସିଲି କାଠିଟିଏ ତିଆରି କରିବାକୁ ଭାରତୀୟ କ୍ଷମ ନୁହେଁ । ଆଖୁ ଚାଷ କଲେ ସୁଦ୍ଧା ଚିନି ତିଆରି କରିବାର ସୁବିଧା ତାର ନାହିଁ କହିଲେ ଚଳେ । ସୁବିଧା ଦିଆଗଲେ ଭାରତ ମରିସସ୍ ପରି ସୁନ୍ଦର ଚିନି କରିପାରନ୍ତା । ବାର୍ଷିକ ପ୍ରାୟ ଛଅ କୋଟି ଟଙ୍କା ଚିନି ଖରିଦ ସକାଶେ ଭାରତରୁ ଚାଲିଯାଏ । ତାକୁ ବନ୍ଦ କରି ରଖିବା କଅଣ ଦେଶର ମଙ୍ଗଳ ନୁହେଁ ? ଅନ୍ୟାନ୍ୟ ସ୍ୱାଧୀନ ଦେଶରେ କେଉଁ ବ୍ୟବସାୟ କିପରି ଭାବରେ ଉନ୍ନତ ହେବ ଓ ସେଥିପାଇଁ ଦେଶବାସୀମାନଙ୍କୁ କିପରି ଶିକ୍ଷା ଦିଆଯିବ, ତହିଁର ବିହିତ ଶିକ୍ଷା ଦେବାର ବ୍ୟବସ୍ଥା ଅଛି । ଭାରତର ଯୁବକମାନଙ୍କୁ ବର୍ତ୍ତମାନ

ଶିଳ୍ପବାଣିଜ୍ୟ ପ୍ରଭୃତିରେ ମନୋଯୋଗୀ କରାଇବା ଅତ୍ୟନ୍ତ ଆବଶ୍ୟକ ହେଲାଣି । ତା ନ ହେଲେ ଅନ୍ନସମସ୍ୟା ଭୀଷଣ ହୋଇଉଠିବ ।

ରାଜନୀତି ଶିକ୍ଷାକୁ ଦେଶର ପ୍ରକୃତ ଅବସ୍ଥା ନିର୍ଣ୍ଣୀତ ହେବା ଆବଶ୍ୟକ । ଅଧିକାଂଶ ଛାତ୍ର ସ୍କୁଲ ଓ କଲେଜ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଆସନ୍ତି, ଅଥଚ ରାଜନୀତିର ସୀମା ମାଡ଼ନ୍ତି ନାହିଁ । ଅନେକେ ମନେ କରନ୍ତି; ରାଜନୀତି ଚର୍ଚ୍ଚା ଗୋଟାଏ ଦୋଷ । ରାଜନୀତିଜ୍ଞ ରାଜଦ୍ରୋହୀ ହେବା କୌଣସି ଶାସ୍ତ୍ରରେ ଲେଖା ନାହିଁ, ସୁତରାଂ ବୃଥା ଭୟ ହୃଦୟରେ ପୋଷଣ କରିବା ମୂର୍ଖତାର ପରିଚାୟକ । ଯେପରି ଭାବରେ ଶିକ୍ଷାର ପ୍ରଚଳନ ହେଉଛି, ସେଥିରେ ରାଜନୀତିକୁ ଏକ ପ୍ରକାର ବାଦ୍ ଦିଆଯାଇଛି କହିଲେ ଚଳେ । କେତେଗୁଡ଼ିଏ କିରାଣି କିମ୍ବା ହାକିମ ଗଢ଼ିଲେ ଶିକ୍ଷାର ଉଦ୍ଦେଶ୍ୟ ସାଧିତ ହୁଏ ନାହିଁ କିମ୍ବା ଜାତୀୟ ଜୀବନର ଲେଶମାତ୍ର ବିକାଶ ଜଣାପଡ଼େ ନାହିଁ । ଯେ କେତେ ଜଣ ରାଜନୀତିଜ୍ଞ ବର୍ତ୍ତମାନ ଭାରତର ସ୍ୱାର୍ଥ ଲାଗି ଚେଷ୍ଟିତ ଅଛନ୍ତି, ସେମାନେ ବୋଧହୁଏ ପଠଦ୍ଦଶାରେ ରାଜନୀତି ଶିକ୍ଷା କରି ନ ଥିଲେ । ମାତୃଭୂମିସେବାରେ ଜୀବନ ଉତ୍ସର୍ଗ କରିବା ଫଳୁ ସେ ଦିଗରେ ସେମାନଙ୍କ ଜ୍ଞାନର ପରିଚୟ ମିଳୁଛି । ସରକାରଙ୍କର ଏ ଶିକ୍ଷା ପ୍ରତି ଆସ୍ଥା ନ ଥାଇପାରେ; କିନ୍ତୁ ଦେଶବାସୀଙ୍କ କର୍ତ୍ତବ୍ୟ ତଦ୍ଦ୍ୱାରା ହାନି ହେବା ଉଚିତ ନୁହେଁ । କର୍ତ୍ତବ୍ୟସାଧନ ପଥରେ ଯାବତୀୟ କଷ୍ଟ ସ୍ୱୀକାର କରିବାକୁ ପଡ଼େ । କଷ୍ଟକୁ ଭୟ କରିବା ପୁରୁଷତ୍ୱର ଲକ୍ଷଣ ନୁହେଁ । ଯେ ଜାତି କଷ୍ଟ ସହିବାକୁ ଶିଖି ନାହିଁ, ତାର ଶିକ୍ଷା ନୀଚଶ୍ରେଣୀୟ । କଷ୍ଟ ଅତିକ୍ରମ କରି ଜାତୀୟ ଜୀବନର ପରାକାଷ୍ଠା ଦେଖାଇବାକୁ ହୁଏ । ଦୁର୍ଭାଗ୍ୟବଶତଃ ଭାରତୀୟଙ୍କୁ ସମୟୋପଯୋଗୀ ଶିକ୍ଷା ମିଳୁ ନାହିଁ । ଭାବୀ ବଂଶଧରମାନଙ୍କୁ ନୂତନ ପ୍ରେରଣା ଦେବାପାଇଁ ପ୍ରଚଳିତ ଶିକ୍ଷାର ଗତିକୁ ଅନେକାଂଶରେ ବଦଳାଇବାକୁ ହେବ ।

# ଜ୍ଞାନ ଓ କର୍ମ

ସାଧାରଣ ମାନବ ଘଟନା-ଚକ୍ର ପ୍ରତି କଦାଚିତ୍ ଦୃଷ୍ଟି ଦେଇଥାଏ । ଅନେକ ସମୟରେ ଲକ୍ଷ୍ୟହୀନ ହୋଇ ସେ ଜୀବନ କଟାଇଦିଏ । ଦୁଃଖରେ ମ୍ରିୟମାଣ କିମ୍ବା ସୁଖରେ ଉତ୍‌ଫୁଲ୍ଲ ହେବା ତାର ସ୍ୱଭାବ ହୋଇପଡ଼େ । ଏପରି ଜୀବନ ଯାପନ କରିବାରେ କୌଣସି ବିଶେଷତ୍ୱ ଦେଖାଯାଏ ନାହିଁ । ପ୍ରାଣିଜଗତ୍‌ରେ ମନୁଷ୍ୟର ସ୍ଥିତି ଗୋଟାଏ ମହତ୍ ଉଦ୍ଦେଶ୍ୟ ଜ୍ଞାପନ କରେ ବୋଲି ଏଥିରୁ ପ୍ରମାଣିତ ହେବା ଅସମ୍ଭବ । ଉପଯୁକ୍ତ ଶିକ୍ଷା ଓ ସଂସ୍କାର ଅଭାବରେ ପ୍ରକୃତ ମନୁଷ୍ୟତ୍ୱର ବିକାଶ ହୁଏ ନାହିଁ । ଜ୍ଞାନର ସମ୍ୟକ୍ ଉତ୍କର୍ଷ ସାଧନ ପାଇଁ ମନୁଷ୍ୟ ପ୍ରଥମେ ନିଜର ଚରିତ୍ରକୁ ବିଶ୍ଳେଷଣ କରି ଯେଉଁ ସୁଗମ ପଥଗୁଡ଼ିକ ଆବିଷ୍କାର କରେ, ତଦ୍ଦ୍ୱାରା ସାଧନମାର୍ଗ ପ୍ରଶସ୍ତ ହୁଏ ଓ ତାର ଅନ୍ତର୍ନିହିତ ଶକ୍ତି ଜଡ଼ଭାବାପନ୍ନ ପଶୁତ୍ୱକୁ ଦୂର କରେ । ଯନ୍ତ୍ରବତ୍ ଚାଳିତ ହୋଇ କେବଳ କେତେଗୁଡ଼ାଏ କାର୍ଯ୍ୟ ସମ୍ପାଦନ କରିଗଲେ ଜୀବନର ଗତି ନିର୍ଦ୍ଧାରିତ ହୋଇପାରେ ନାହିଁ । ଜୀବନର ରହସ୍ୟ ଭେଦ କରିବା ପାଇଁ ମନୁଷ୍ୟକୁ ପ୍ରସ୍ତୁତ ହେବାକୁ ପଡ଼େ । ଜୀବସୃଷ୍ଟିରେ ଚୈତନ୍ୟର ଉନ୍ମେଷ ସ୍ପଷ୍ଟଭାବରେ ଉପଲବ୍ଧି କରାଯାଇ-ପାରେ; କିନ୍ତୁ ସ୍ତରବିଶେଷରେ ତାର ତାରତମ୍ୟ ଯଥେଷ୍ଟ ଦେଖାଯାଏ । ଅନ୍ୟାନ୍ୟ ପ୍ରାଣୀମାନଙ୍କ ପରି ମନୁଷ୍ୟ ଆହାର, ନିଦ୍ରା, ମୈଥୁନ ଓ ଭୟ ପ୍ରଭୃତିର ଅଧୀନ ହୋଇ ସୁଦ୍ଧା କେତେକ ବିଶେଷ ଗୁଣର ଅଧିକାରୀ ହୋଇଥିବାରୁ ସେ ଚେତନା ଶକ୍ତିକୁ ବେଶି ପରିମାଣରେ ଅନୁଭବ କରେ । ଅନୁଭୂତିରୁ ଭାବନାର ସ୍ରୋତ କ୍ରମଶଃ ବିସ୍ତାରିତ ହୋଇ ଜ୍ଞାନରାଜ୍ୟର ଦ୍ୱାର ଉଦ୍‌ଘାଟନ କରେ । କେହି କେହି କହିପାରନ୍ତି, ଦୈନନ୍ଦିନ ଜୀବନଯାପନରେ ମନୁଷ୍ୟକୁ କାହିଁକି ଏତେ ଶ୍ରମସ୍ୱୀକାର କରି ଜ୍ଞାନଲାଭର ପ୍ରୟାସୀ ହେବାକୁ ହେବ ? ଜୀବନର ପ୍ରତି ମୁହୂର୍ତ୍ତର ମୂଲ୍ୟ ଅଛି । ଯେ ପରିମାଣରେ ଏଥିପ୍ରତି ଆସ୍ଥା ପ୍ରଦର୍ଶିତ ହୁଏ, ସେହି ପରିମାଣରେ ଜୀବନର ମହତ୍ତ୍ୱ ଉପଲବ୍ଧି କରାଯାଏ । ମନୀଷୀମାନଙ୍କର ଜୀବନକାଳରେ ଏହା ପ୍ରମାଣିତ ହୋଇଥାଏ । ଜୀବନର ସାରବସ୍ତୁକୁ ଜ୍ଞାନାନ୍ୱେଷଣଠାରୁ ପୃଥକ୍ ରଖାଯାଇ ନ ପାରେ । ଜ୍ଞାନାନୁଶୀଳନରେ ମନୁଷ୍ୟ ଅଗ୍ରଗତିର ପରିଚୟ ଦିଏ । ଏହାକୁ ବାଦ୍ ଦେଲେ କ୍ରମୋନ୍ନତିର ପଥ ରୁଦ୍ଧ ହୋଇଯାଏ । କେବଳ ପଶୁଭାବର ପ୍ରାବଲ୍ୟ ଜୀବନର ଗତିକୁ ନିୟନ୍ତ୍ରିତ କରେ । ବିଶ୍ୱବ୍ୟାପୀ ଗୋଟାଏ ଆଲୋଡ଼ନ କିମ୍ବା ଯେଉଁ ମହୀୟସୀ ଶକ୍ତିର ବିଶାଳତା ଘୋଷଣା କରୁଅଛି, ତାକୁ ମନୁଷ୍ୟର କର୍ମକ୍ଷେତ୍ରରୁ ପୃଥକ୍ କରିବାଦ୍ୱାରା ଅଜ୍ଞତାର ପରିଚୟ ମିଳେ ।

ପ୍ରାଚୀନ କାଳରୁ ଆଜିପର୍ଯ୍ୟନ୍ତ ଯେତେ ସଭ୍ୟତାର ଅଭ୍ୟୁଦୟ ହେଲାଣି, ସମସ୍ତଙ୍କର ବିକାଶରେ ଜ୍ଞାନ ହିଁ ମୂଳ । ପୃଥିବୀର ଯାବତୀୟ ସଭ୍ୟଜାତି ଗୋଟାଏ ଅନନ୍ତ ଶକ୍ତିର ବର୍ତ୍ତମାନତା ସ୍ୱୀକାର କରିବାକୁ ବାଧ୍ୟ ହୋଇଅଛନ୍ତି । ସୁତରାଂ ଜ୍ଞାନର ଉନ୍ମେଷ ସଙ୍ଗେ ସେହି ଭୂମାଶକ୍ତିର ଘନିଷ୍ଠ ସମ୍ପର୍କକୁ ଅନୁଭବ କରିବା ମନୁଷ୍ୟର ପ୍ରକୃତିସିଦ୍ଧ ବୋଲି ମନେ ହୁଏ । ମନୁଷ୍ୟ ଜୀବନ କ୍ରିୟାବହୁଳ । ପ୍ରତ୍ୟେକ କ୍ରିୟାର ପ୍ରତିକ୍ରିୟା ଅଛି । ପରିଣାମ ପ୍ରତି ଦୃଷ୍ଟି ନ ରଖି ଯଥେଚ୍ଛାଚାରିତା ଆଚରଣ କଲେ ଜୀବନର ଉପାଦେୟତା ନଷ୍ଟ ହୋଇଯାଏ ଓ ସଙ୍ଗେ ସଙ୍ଗେ ଉଚ୍ଛୃଙ୍ଖଳତାର ପ୍ରଭାବ ପୂର୍ଣ୍ଣମାତ୍ରାରେ ଦେଖାଦିଏ ।

ଯୌବନ-ସୁଲଭ ଚପଳତାରେ ଅଧିକାଂଶଙ୍କର ଅବଧାରଣ-କ୍ଷମତା ପ୍ରକାଶ ପାଏ ନାହିଁ; ତେଣୁ ଭବିଷ୍ୟତ ଜୀବନର ମାର୍ଗ ଅନୁସରଣ କରିବାର ସ୍ପୃହା ମଧ୍ୟ ଖୁବ୍ କମ୍ ଥାଏ । କେବଳ ଉତ୍ତେଜନାର ବଶବର୍ତ୍ତୀ ହୋଇ ମନୁଷ୍ୟ କାର୍ଯ୍ୟକ୍ଷେତ୍ରରେ ପ୍ରବେଶ କରେ । ଏପରି ଅବସ୍ଥାରେ କୌଣସି ବାଧା ଆସିବା ସ୍ୱାଭାବିକ । ଯେ ପର୍ଯ୍ୟନ୍ତ ମନୁଷ୍ୟ ନିର୍ବିଘ୍ନରେ ଗୋଟାଏ ଦିଗରେ

ଗତ କରୁଥାଏ, ସେତେଦିନଯାଏ ତାର ଶକ୍ତି ପରୀକ୍ଷିତ ହୋଇ ନ ଥାଏ; କିନ୍ତୁ କୌଣସି ବିପର୍ଯ୍ୟସ୍ତ ଅବସ୍ଥାର ସମ୍ମୁଖୀନ ହେଲେ ପ୍ରକୃତ ମନୁଷ୍ୟତ୍ୱର ପରିଚୟ ମିଳେ । ଜୀବନର ଜଟିଳତା ଦୂର କରିବାପାଇଁ ଯେ ଶିକ୍ଷା ଆବଶ୍ୟକ ହୁଏ, ତାହା ମନୁଷ୍ୟ ଚରିତ୍ରକୁ ସ୍ପଷ୍ଟାକାରରେ ପ୍ରତିପନ୍ନ କରାଏ ଓ ସେଥିରୁ ମନୁଷ୍ୟ ବୁଝେ, କେଉଁ ବାଟରେ ଗତି କରି ସେ ଇପ୍‌ସିତ ସ୍ଥାନର ଅଧିକାରୀ ହୋଇପାରେ । ଅନେକ ସମୟରେ ଭ୍ରମପ୍ରମାଦରୁ ପରିତ୍ରାଣ ପାଇ ମନୁଷ୍ୟ ସୁପଥରେ ଅଗ୍ରସର ହୁଏ । ଏପରି ଘଟିବା ପୂର୍ବରୁ ଯଦି ସେ କେତେଗୁଡ଼ିଏ ନିୟମ ଓ ଶୃଙ୍ଖଳାର ବଶବର୍ତ୍ତୀ ହୁଅନ୍ତା, ତାହାହେଲେ ଜୀବନର ଦୈନ୍ୟ ଅନେକ ପରିମାଣରେ ଅପନୋଦିତ ହୋଇପାରନ୍ତା । ସାଧାରଣତଃ ଜଗଦ୍‌ବାସୀ ଏଥିପ୍ରତି ଲକ୍ଷ୍ୟ ରଖେ ନାହିଁ । ସେ ଦେଖେ—ଆପାତମଧୁର ବିଷୟଭୋଗଲିପ୍‌ସା ସଙ୍ଗେ ପ୍ରାଣିଜଗତର ସମ୍ପର୍କ ବଡ଼ ଘନିଷ୍ଠ । ମନୁଷ୍ୟ ମଧ୍ୟ ସେଥିରୁ ନିସ୍କୃତ ନୁହେଁ, ବରଂ ଲାଲସାମୋହରେ ସେ ଜଗତରେ ଘୋର ଅଶାନ୍ତି ଓ ଉପଦ୍ରବ ସୃଷ୍ଟି କରେ । ସାଧାରଣ ଦୃଷ୍ଟିରେ ଯେ ବିଷୟର ସତ୍ୟ ଅନୁଭବ କରାଯାଏ, ତାକୁ କାର୍ଯ୍ୟରେ ପରିଣତ କରିବା ପାଇଁ ମନୁଷ୍ୟ କାହିଁକି ପରାଙ୍ମୁଖ ହୁଏ ? କାର୍ଯ୍ୟବହୁଳ ସଂସାରରେ ସଦର୍ଶକର ସଂଖ୍ୟା ଅତ୍ୟଳ୍ପ କହିଲେ ଚଳେ । ଯେତେ ଘଟନାବଳୀର ବର୍ଣ୍ଣନା ସଚରାଚର ଦେଖାଯାଏ, ସେ ସମସ୍ତ ଅତିରଞ୍ଜନ ଦୋଷରେ ପ୍ରାୟ ଦୂଷିତ ଥାଏ ।

ବର୍ଣ୍ଣନାଗୁଡ଼ିକ ବିଶେଷତଃ ଅନୁମାନ ଉପରେ ନିର୍ଭର କରିଥାଏ । ସମର କାହାଣୀମାନଙ୍କରେ ଉପର୍ଯ୍ୟୁକ୍ତ ପ୍ରଭାବ ଲକ୍ଷିତ ହୁଏ । ମନୁଷ୍ୟ ଯୁଦ୍ଧକ୍ଷେତ୍ରରେ ଯାହା ଦେଖେ, ତାହା ଛଡ଼ା ଭୟପ୍ରସୂତ ଅନେକ କଳ୍ପିତ ବିଷୟମାନଙ୍କର ଅବତାରଣା କରି ପ୍ରକୃତ ଘଟଣାକୁ ଭିନ୍ନ ଆକାରରେ ପ୍ରକାଶ କରେ । ଭାବନା ଓ ଦୃଶ୍ୟର ଅସାମଞ୍ଜସ୍ୟକୁ ଲଘୁ କଲେ ବିବୃତିର ମହତ୍ତ୍ୱ ବଢ଼େ ନାହିଁ; ବରଂ ମନୁଷ୍ୟର କର୍ମସମ୍ପାଦନ କ୍ଷମତା ଅନେକ ପରିମାଣରେ ସଙ୍କୁଚିତ ହୋଇପାରେ । ସେ ଯାହା ଦେଖେ ଓ ଶୁଣେ, ତଦ୍ଦ୍ୱାରା ତାର କର୍ମମାର୍ଗ ସରଳ ଥିଲେ ସୁଦ୍ଧା ବକ୍ରାକାର ଧାରଣ କରିବା ଅସମ୍ଭବ ନୁହେଁ । ଗୋଟାଏ ନିର୍ଦ୍ଦିଷ୍ଟ ପଥର ଅନୁବର୍ତ୍ତୀ ହୋଇ ସୁଚାରୁରୂପେ ସାଂସାରିକ କାର୍ଯ୍ୟସବୁ ନିର୍ବାହ କରିବା ଶ୍ଳାଘ୍ୟ ବିଷୟ ହୋଇପାରେ; କିନ୍ତୁ ବସ୍ତୁ ଜଗତର ସ୍ଥିତି ଓ ପରିଚାଳନାକୁ ସେଥି ସହିତ ସମ୍ପୃକ୍ତ ରଖି କୌଣସି ଉଦାର ପନ୍ଥା ଉଦ୍ଭାବନ କରିବା ସହଜ ନୁହେଁ ।

ବାସ୍ତବ ଜୀବନ ସହିତ ଚିନ୍ତାଧାରାର ସମନ୍ୱୟ ଆଣିଲେ ସବୁ ସମୟରେ ସୁଫଳ ମିଳେ ନାହିଁ । ସେଥିଯୋଗୁଁ କର୍ମକୁଶଳତା ଭିତରେ ଗୋଟାଏ ସ୍ୱତନ୍ତ୍ର କର୍ତ୍ତବ୍ୟଜ୍ଞାନ ଜନ୍ମେ ବୋଲି ଆମ୍ଭେମାନେ ବିଶ୍ୱାସ କରୁଁ । ମାଧ୍ୟାକର୍ଷଣ ଯେପରି ଜଡ଼ଜଗତକୁ ଗୋଟାଏ ଆକର୍ଷଣ ପ୍ରଭାବରେ ସୁସ୍ଥିର କରି ରଖିଅଛି, ତଦ୍ରୂପ ବ୍ୟାବହାରିକ ଜ୍ଞାନସାହାଯ୍ୟରେ ମନର ସଂଯମ ଅଣାଯାଇ ସାଂସାରିକ କ୍ରିୟାଗୁଡ଼ିକ ଯଥାଯଥ ଭାବରେ ନିଷ୍ପନ୍ନ କରାଯାଇପାରେ । ଏହି ଜ୍ଞାନର ଅଧିକାରୀ ହେଲେ ମନୁଷ୍ୟ ନିଜର ସ୍ଥିତିପ୍ରତି ଲକ୍ଷ୍ୟ ରଖି ଅଗ୍ରସର ହୁଏ । କଳ୍ପନା-ରାଜ୍ୟରେ ବିଚରଣ କରି ସେ କୌଣସି ଅଶ୍ରୁତ ଉଚ୍ଚ ଆଦର୍ଶ ସୃଷ୍ଟି କରିବ ବୋଲି ଆକାଙ୍‌କ୍ଷିତ ହୁଏ ନାହିଁ । ସମ୍ମୁଖରେ ଯେଉଁ କାର୍ଯ୍ୟ ତାହାର ହସ୍ତଗତ ହୁଏ, ତାକୁ ତ୍ୟାଗ କରି କାଳ୍ପନିକ ବସ୍ତୁ ଆହରଣ କରିବାକୁ ସେ ପ୍ରୟାସ କରେ ନାହିଁ । କାର୍ଯ୍ୟଗତିରେ ଯାହା ଆସେ, ତାକୁ ଅବହେଳା କରି ଗୋଟାଏ ଅନାଗତ କର୍ମପନ୍ଥା ଉପରେ ନିଜର ଭାବନାକୁ ସଂଶ୍ଳିଷ୍ଟ ରଖିବାକୁ ସେ ସର୍ବଦା ପଶ୍ଚାତ୍‌ପଦ ହୁଏ । ବୃଥା ଆକ୍ଷେପରେ ଉତ୍ସାହ ନଷ୍ଟ କରିବାକୁ ଏହି ଜ୍ଞାନ ଶିଖାଏ ନାହିଁ । ସମ୍ମୁଖଭାଗରେ ଦୃଷ୍ଟିକୁ ରଖି ଅଗ୍ରସର ହେଲେ ମନୁଷ୍ୟ ନିଜର ତ୍ରୁଟିକୁ ଦେଖିପାରେ ନାହିଁ । କର୍ତ୍ତବ୍ୟ ସମ୍ପାଦନ କଲାବେଳେ ସେହିପରି ତା ଦୃଷ୍ଟି ସମ୍ମୁଖକୁ ଥାଏ, ଅତୀତର ବୃଥା ଶୋଚନାରେ ସେ କାଳକ୍ଷେପଣ କରେ ନାହିଁ । କାର୍ଯ୍ୟସମାପ୍ତି ପାଇଁ ସେ କୌଣସି ମହନୀୟ ସୁନ୍ଦର ଓ ଉତ୍କୃଷ୍ଟ ଆଧାରର ଅପେକ୍ଷା ରଖେ ନାହିଁ । ସେ ଯାହାକୁ ନିଜର ଅଧୀନତାରେ ପାଏ, ତହିଁର ସଦ୍‌ବ୍ୟବହାର କରେ ।

ବ୍ୟାବହାରିକ ଜ୍ଞାନ ସମ୍ବନ୍ଧରେ ଅଧିକାଂଶ ସ୍ଥଳରେ ପ୍ରକୃତ ଧାରଣା ଲୋକମାନଙ୍କର ଜନ୍ମେ ନାହିଁ । ସେମାନେ ଭ୍ରମବଶତଃ ଯେଉଁ ମାର୍ଗ ଅବଲମ୍ବନ କରନ୍ତି, ତାକୁ ତ୍ୟାଗ କରିବା ପାଇଁ ସେମାନଙ୍କର ଯଥେଷ୍ଟ ଶକ୍ତି ଓ ଶିକ୍ଷା ପ୍ରାୟ ନ ଥାଏ । ଗୋଟିଏ ଗୁଣର ପ୍ରାବଲ୍ୟ ଥିଲେ କିମ୍ବା କୌଣସି ବିଶିଷ୍ଟ ଶକ୍ତିର ଉନ୍ମେଷ ଘଟିଲେ ଏହାର ବିକାଶ ଜଣାପଡ଼େ ନାହିଁ । ମନୁଷ୍ୟ ମାନସିକ ଓ ଶାରୀରିକ ଶକ୍ତିମାନଙ୍କୁ ସୁନିୟନ୍ତ୍ରିତ କରି କାର୍ଯ୍ୟକାରୀ ଅବସ୍ଥା ସୃଷ୍ଟି କରେ । ଏହାଦ୍ୱାରା ବୈଷୟିକ ସମସ୍ୟାର ଜଟିଳତା କର୍ମୀକୁ ବିଶେଷ ବାଧା ଦେଇପାରେ ନାହିଁ । କୌଣସି ଅସାଧାରଣ ଜ୍ଞାନର ପରିଚୟ ଦେଖାଇ ମନୁଷ୍ୟ ପ୍ରତିଷ୍ଠାବାନ୍

ହୋଇପାରେ; କିନ୍ତୁ ବିଷୟଜାଲକୁ ଛିନ୍ନ କରିବା ତା ପକ୍ଷରେ ଅତ୍ୟନ୍ତ କଷ୍ଟକର । ଅନେକ ମନୀଷୀଙ୍କର ଜୀବଦ୍ଦଶାରେ ଏହା ପ୍ରମାଣିତ ହୋଇଯାଇଅଛି । ଜ୍ଞାନ ଓ ଶକ୍ତିର ସମତା ଆଣିଲେ ମନୁଷ୍ୟ ସହଜରେ ନିଜର କର୍ମପନ୍ଥା ସ୍ଥିର କରିପାରେ । ସ୍ଥଳବିଶେଷରେ ଶକ୍ତିଶାଳୀ ବିଶିଷ୍ଟ ବ୍ୟକ୍ତିଙ୍କର ସାଂସାରିକ ଅବନତି ଦେଖି ସାଧାରଣ ମାନବର ଭ୍ରମ ଘଟିଥାଏ । ସେ ମନେ କରେ, ସେହି ମହାନୁଭବ ବ୍ୟକ୍ତିଙ୍କର କ୍ରିୟାକଳାପରେ ଯେଉଁ ଦୋଷ ପରିଲକ୍ଷିତ ହେଲା, ତାକୁ ନିରାକୃତ କରିପାରିଥିଲେ ବ୍ୟାବହାରିକ ଜ୍ଞାନର ଉଦ୍ଦେଶ୍ୟ ସାଧିତ ହୋଇପାରିଥାନ୍ତା । ଆହୁରି ମଧ୍ୟ ଅନେକଙ୍କର ଧାରଣା ଯେ ଗୋଟାଏ ନିର୍ଦ୍ଦିଷ୍ଟ ଲକ୍ଷ୍ୟର ଅନୁବର୍ତ୍ତୀ ହୋଇ ଅଗ୍ରସର ହେଲେ ଏହି ଜ୍ଞାନର ପରାକାଷ୍ଠା ଜଣାପଡ଼େ । ଉପର୍ଯ୍ୟୁକ୍ତ ଧାରଣା ସମୀଚୀନ ନୁହେଁ ବୋଲି ନିଃସନ୍ଦେହରେ କୁହାଯାଇପାରେ; କାରଣ ସ୍ୱାର୍ଥପରତାକୁ ପୂର୍ଣ୍ଣମାତ୍ରାରେ ଆଶ୍ରୟ କରି ଲୋକ ନିର୍ଦ୍ଦିଷ୍ଟ ଲକ୍ଷ୍ୟର ଅନୁବର୍ତ୍ତିତା ଜ୍ଞାପନ କଲେ ସୁଦ୍ଧା ବ୍ୟାବହାରିକ ଜ୍ଞାନର ସୂଚନା ମିଳେ ନାହିଁ । ଅତ୍ୟଧିକ କାମନା ପୋଷଣରେ ଯେଉଁ ବିଷୟମୋହ ଜନ୍ମେ, ସେଥିରେ ଏହି ଜ୍ଞାନର ପରିକଳ୍ପନା ମଧ୍ୟ ହୁଏ ନାହିଁ । ସ୍ୱାର୍ଥପରର ଅବଲମ୍ବନ ଗୋଟିଏ ସଂକୀର୍ଣ୍ଣ କ୍ଷେତ୍ରରେ ଆବଦ୍ଧ ରହିଥାଏ । କେବଳ ଏତିକି ନୁହେଁ, ସେ ସେହି ଅବଲମ୍ବନଟିରେ ମନଃପ୍ରାଣ ଢାଳି ଦେଇଥାଏ ଏବଂ ସମୟବିଶେଷରେ ଏପରି ସ୍ୱାର୍ଥାନ୍ଧ ହୋଇପଡ଼େ ଯେ, ତାହା ଛଡ଼ା ଅନ୍ୟ ବିଷୟର ଭାବନା କିମ୍ବା ଦର୍ଶନ ତାର ପ୍ରକୃତିବିରୁଦ୍ଧ ହୋଇଉଠେ । ଏହି ଏକଦେଶଦର୍ଶିତା ହେତୁ ସ୍ୱାର୍ଥପରର ବ୍ୟାବହାରିକ ଜ୍ଞାନଲାଭ ହୁଏ ନାହିଁ ।

ଅତିମାତ୍ରାରେ କଳ୍ପନାର ଅଧୀନ ହେଲେ ଉକ୍ତ ଜ୍ଞାନ ସାଧନ ପକ୍ଷେ ବାଧା ଜନ୍ମେ । ମନ ଓ ଶରୀରର ସମ୍ପର୍କ ବଡ଼ ଘନିଷ୍ଠ । ଶରୀରର ବିକାରକୃତ ଅଙ୍ଗବିଶେଷର ଅସ୍ୱାଭାବିକ ବର୍ଦ୍ଧନରେ ପ୍ରକାଶିତ ହୋଇଥାଏ । ବାମନର ହସ୍ତ ଓ ପଦ ସାଧାରଣତଃ ତାହାର ଶରୀର ତୁଳନାରେ ବଡ଼ ହୋଇଥାଏ ।

ଏହିପରି ମନର ଅବସ୍ଥା କୌଣସି ଦିଗରେ ଗତି କରି ଅସାଧାରଣ ବୋଧ ହୋଇପାରେ । କଳ୍ପନାକୁ ମଧ୍ୟ ବ୍ୟାବହାରିକ ଜ୍ଞାନର ବିରୋଧୀ ବୋଲି ସ୍ଥିର କରିନେବା ଉଚିତ ନୁହେଁ । ବରଂ ଅଭିଜ୍ଞତାରୁ ଜଣାଯାଇଅଛି ଯେ, ଏହା ତଦ୍‌ବିପରୀତ । ଜଗତରେ ଯେତେ ମହତ୍ତ୍ୱ କାର୍ଯ୍ୟ ସମ୍ପାଦନ କରାଯାଇଛି, ସେଥିରେ କଳ୍ପନାର ପ୍ରଭାବ ଯଥେଷ୍ଟ ଥାଏ । କର୍ମୀ କଳ୍ପନା ସାହାଯ୍ୟରେ ତାହାର କର୍ମମାର୍ଗଟି ଅଙ୍କନ କରିନେଲେ କୌଣସି କ୍ଷତି ନାହିଁ; କିନ୍ତୁ ସେହି ଅଙ୍କନରେ ଗୋଟାଏ ଅସ୍ୱାଭାବିକ ଗ୍ରନ୍ଥି ପଡ଼ିଲେ ସବୁ ନଷ୍ଟ ହୋଇଯାଏ । କର୍ମକୁ ଲକ୍ଷ୍ୟ ନ ରଖି କେବଳ ଭାବ-ରାଜ୍ୟରେ ବିଚରଣ କଲେ କର୍ମୀର ଆକାଙ୍‌କ୍ଷା ଭିତ୍ତିହୀନ ହୋଇପଡ଼େ । ଏଠାରେ ସଂଯମର ଆଶ୍ରୟ ନେବା ଏକାନ୍ତ ଆବଶ୍ୟକ । ବିଶେଷତଃ ସଂସାରୀ ଗୋଟାଏ ଦିଗରେ ଦୃଷ୍ଟି ରଖିଲେ ଅନ୍ୟ ଦିଗମାନଙ୍କରୁ ତାର ବିପଦ ଆସିବାର ସମ୍ଭାବନା ଥାଏ ।

ସୁପ୍ରସିଦ୍ଧ ଇଂରେଜ ଲେଖକ ବେକନ୍ କହିଛନ୍ତି, "ମନୁଷ୍ୟ ଜୀବନ ନୀରବତାରେ ଅତିବାହିତ ହେବ ନାହିଁ; ଭାବ ଓ କର୍ମର ମିଶ୍ରଣ ପ୍ରତି ଦୃଷ୍ଟି ଦେବା ଆବଶ୍ୟକ ।" ପ୍ରାଚୀନ ଦାର୍ଶନିକ ପଣ୍ଡିତମାନଙ୍କ ମତରେ ଭାବର ଶୁଦ୍ଧତା ଓ ସଂପ୍ରସାରିତାରେ କର୍ମକୁ ସଂଯୋଗ କଲେ ଭାବୁକର ମନ କ୍ଷୁବ୍‌ଧ ହୋଇଉଠେ । ସେ ଭାବନାର ଉନ୍ମତ୍ତକଳ୍ପେ କର୍ମକୁଣ୍ଠତାର ଆଶ୍ରୟ ନେଇ କର୍ମକ୍ଷେତ୍ରର ଦୂରରେ ରହେ । ବେକନ୍ ଏହି ମତର ପୋଷକତା କରିନାହାନ୍ତି । ସଂସାରଠାରୁ ଅସଂପୃକ୍ତ ରହିବା ଜ୍ଞାନୀଙ୍କ ପକ୍ଷରେ ଶୋଭନୀୟ ନୁହେଁ । ସେ ଯେଉଁ କ୍ଷମତା ପରିଚାଳନ କରନ୍ତି, ତାହା ଅଜ୍ଞଦ୍ୱାରା କଦାପି ସମ୍ଭବପର ନୁହେଁ । ରାଷ୍ଟ୍ରବିପ୍ଳବ ପ୍ରଭୃତି ଅଶାନ୍ତି ଉପସ୍ଥିତ ହେଲେ ଅନୁସୃତ କର୍ମପନ୍ଥାଗୁଡ଼ିକ ବିପର୍ଯ୍ୟସ୍ତ ହୋଇପଡ଼େ; ଜ୍ଞାନାର୍ଜନକୁ ଉପେକ୍ଷା କରିବା ସ୍ୱାଭାବିକ ହୁଏ । ଏପରି ଅବସ୍ଥାରେ ଜ୍ଞାନୀଙ୍କର କଣ ଦୂରରେ ରହିବା ଉଚିତ ? ଅନେକେ କହିପାରନ୍ତି, ଅଶାନ୍ତି ଓ ଉପଦ୍ରବ ଦେଶରେ ବ୍ୟାପିଗଲେ ସେ ନୀରବରେ ରହି ଜ୍ଞାନସାଧନ କରିବେ । ତଦ୍ଦ୍ୱାରା ତାଙ୍କ ମନର ସ୍ଥିରତା ନଷ୍ଟ ହେବାର ଆଶଙ୍କା ନ ଥାଏ; କିନ୍ତୁ ଏପରି ଭାବନା ଠିକ୍ ନୁହେଁ । ଦୁର୍ଦ୍ଦିନରେ ଦେଶକୁ ଅଧମମାନଙ୍କ ହସ୍ତରେ ଅର୍ପଣ କଲେ ଅଶାନ୍ତିର କାଳିମା ଦୂର ହେବାର ସମ୍ଭାବନା ନ ଥାଏ । ଯଥେଚ୍ଛାଚାରିତାରେ ଦେଶ ଉତ୍ତପ୍ତ ହୋଇଉଠେ; ବିଦ୍ରୋହର ବହ୍ନି ସହସ୍ରମୁଖରେ ଦେଶକୁ ଗ୍ରାସ କରେ । ବ୍ୟାବହାରିକ ଜ୍ଞାନର ପ୍ରକୃତ ମର୍ମ ଯେଉଁମାନେ ବୁଝନ୍ତି ନାହିଁ, ସେମାନେ ଜ୍ଞାନକୁ କର୍ମଠାରୁ ସମ୍ପୂର୍ଣ୍ଣ ପୃଥକ୍ ରଖିବା ଶ୍ରେୟସ୍କର ମନେକରିପାରନ୍ତି । ଯଥାର୍ଥ ଭାବରେ ବିଚାର କଲେ ଜଣାଯିବ ଯେ, ଜ୍ଞାନ କର୍ମର ପ୍ରଧାନ ଅବଲମ୍ବନ ।

ଉପଯୁକ୍ତ ପ୍ରଣାଳୀରେ ଭାବନା-ସ୍ରୋତକୁ ଚାଳିତ କରି ଯେ ଜ୍ଞାନଲାଭ କରାଯାଏ, ତାକୁ କାର୍ଯ୍ୟୋପଯୋଗୀ କରିବା ପ୍ରକୃତ ଜ୍ଞାନୀର ଲକ୍ଷଣ । ଜ୍ଞାନୀ ଓ କର୍ମୀ ମଧ୍ୟରେ ଯେ ପାର୍ଥକ୍ୟ ଦେଖାଯାଏ, ତାକୁ ବହିର୍ଦ୍ଦୃଷ୍ଟିସମ୍ପନ୍ନ ଲୋକ ଭିନ୍ନ ଭାବରେ ଅବଲୋକନ କରେ ।

ବ୍ୟାବହାରିକ ଜ୍ଞାନର ନିଷ୍କୃତ ସାଧନା ସହିତ ସମ୍ବନ୍ଧ ନ ରହିବାରୁ ଅନେକେ ତାକୁ ଜ୍ଞାନଠାରୁ ଭିନ୍ନ ଦେଖନ୍ତି; କିନ୍ତୁ ସେମାନଙ୍କର ଭାବିବା ଉଚିତ ଯେ, ସଂସାରରେ କେବଳ ଦର୍ଶକର ସ୍ଥାନ ଅଧିକାର କଲେ ଚଳିବ ନାହିଁ । ସଂସାର-ସମ୍ବନ୍ଧକୁ ସେମାନେ ଘୃଣାଚକ୍ଷୁରେ ଦେଖନ୍ତି ବୋଲି ଏହାକୁ ହେୟ ମନେକରିବା ସେମାନଙ୍କର ପ୍ରକୃତିଗତ ହୋଇପଡ଼େ । ବ୍ୟାବହାରିକ ଜ୍ଞାନର ପ୍ରକୃତ ଅର୍ଥ ସେମାନେ ବୁଝି ନ ଥାନ୍ତି । ସାଂସାରିକ କାର୍ଯ୍ୟ-ସମ୍ପାଦନରେ ଏହି ଜ୍ଞାନ ଲୋଡ଼ା ହୁଏ ବୋଲି ନୀତିବିରୁଦ୍ଧ ମାର୍ଗରେ ଯାଇ ନିଜର ଅଭିଲଷିତ ବିଷୟ ଲାଭ କରିବା ଏହାର ଲକ୍ଷ୍ୟ ହୋଇ ନ ପାରେ । ଅନ୍ୟ ପକ୍ଷରେ ଏହାକୁ କେବଳ ଗୋଟିଏ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟସାଧନରେ ପ୍ରୟୋଗ କରି ସାଂସାରିକ ଯାବତୀୟ ବିଷୟମାନଙ୍କ ପ୍ରତି ଉଦାସୀନ ହେବାଦ୍ୱାରା ଏହାର ମୂଲ୍ୟ ନିରୂପିତ ହୋଇପାରେ ନାହିଁ । ବାସ୍ତବ ଜୀବନରେ ମନୁଷ୍ୟ ଏକଦେଶଦର୍ଶୀ ହେଲେ ସାମାଜିକ ଅନ୍ତରାୟ ତାକୁ ବାଧାଦେବ । ସମାଜର ଶାନ୍ତିପାଇଁ ପ୍ରତ୍ୟେକ ମନୁଷ୍ୟ ସ୍ୱେଚ୍ଛାଚାରିତାକୁ ତ୍ୟାଗ କରିବେ । ସମୟବିଶେଷରେ ସମାଜ ଭୟରେ ଅନେକେ ନିଜର ଅନୁସୃତ ମାର୍ଗକୁ ବଦଳାଇଥାନ୍ତି । ଏ ସବୁ ଦେଖି ନୀତିବାଦୀମାନେ ବ୍ୟାବହାରିକ ଜ୍ଞାନକୁ ହୀନ ମନେ କରିବା ସ୍ୱାଭାବିକ; କିନ୍ତୁ ଏପରି ମନେ କରିବାର କୌଣସି ଯୁକ୍ତିସଙ୍ଗତ କାରଣ ନାହିଁ । ସାମାଜିକ ଜୀବନ ଯାପନରେ ମନୁଷ୍ୟ ନୀତିବିରୁଦ୍ଧ କାର୍ଯ୍ୟ କରିବାକୁ ବାଧ୍ୟ ନୁହେଁ କିମ୍ବା ତାର ଉଦ୍ଦେଶ୍ୟସାଧନ ସକାଶେ ସେ ଯେ କୌଣସି ପନ୍ଥା ଅବଲମ୍ବନ କରିବ, ଏପରି ଭାବିବା ମଧ୍ୟ ଠିକ୍ ନୁହେଁ । ପରସ୍ପରର ସୁବିଧାକୁ ଲକ୍ଷ୍ୟ ରଖି ଯେଉଁ କାର୍ଯ୍ୟସବୁ ସମ୍ପାଦିତ ହୁଏ, ତଦ୍ଦ୍ୱାରା ସମାଜର କଲ୍ୟାଣ ସାଧିତ ହୋଇଥାଏ । ଏଥିରେ ବ୍ୟାବହାରିକ ଜ୍ଞାନ ଯଥେଷ୍ଟ ସାହାଯ୍ୟ କରେ । କୌଣସି ପ୍ରଲୋଭନ ଏଡ଼ାଇଲାବେଳେ କିମ୍ବା ସମାଜରେ ବ୍ୟକ୍ତିବିଶେଷଙ୍କ ସହିତ କିଛି ବୈଷୟିକ ସମ୍ବନ୍ଧ ସ୍ଥାପନ କଲାବେଳେ ମନୁଷ୍ୟ ଯେଉଁ ଜ୍ଞାନ ସାହାଯ୍ୟରେ ଗୋଟିଏ ନିର୍ଦ୍ଦୋଷ ଅବସ୍ଥାର ଭିତ୍ତି ସ୍ଥାପନ କରେ ଓ ନିଜକୁ ଆଦର୍ଶ ସଂସାରବାସୀ ବୋଲି ପରିଚୟ ଦିଏ, ତାର ବ୍ୟାବହାରିକ ଜ୍ଞାନ ସହିତ ପ୍ରଭେଦ ନାହିଁ । କେହି କେହି କହି ପାରନ୍ତି ଯେ, ସାଂସାରିକ କର୍ମ-ସଂସ୍ପର୍ଶରେ ମନୁଷ୍ୟର ଜ୍ଞାନ ହୀନପ୍ରଭ ହୋଇପାରେ; ସୁତରାଂ ଏହାର ସମ୍ୟକ୍ ଉତ୍କର୍ଷସାଧନ ପାଇଁ ନିର୍ଜନତା ଏକାନ୍ତ ଆବଶ୍ୟକ । ପ୍ରତ୍ୟେକ କର୍ମରେ ଦୋଷ ନିହିତ ଥାଏ । ମନୁଷ୍ୟ ପକ୍ଷରେ କର୍ମତ୍ୟାଗ କରିବା ଅସମ୍ଭବ । ଗୀତା କହିଛନ୍ତି—"ନହି ଦେହଭୃତା ଶକ୍ୟଂ ତ୍ୟକ୍ତୁଂ କର୍ମାଣ୍ୟଶେଷତଃ ।" ଅତଏବ ଏପରି ସ୍ଥଳରେ ଜ୍ଞାନର ଆଶ୍ରୟ ନେଇ କର୍ମକ୍ଷେତ୍ରରେ ଅଗ୍ରସର ହେବା ଉଚିତ ନୁହେଁ କି ? ପୁନଶ୍ଚ ଉଚ୍ଚ ଅଙ୍ଗର ଜ୍ଞାନ-ସାଧନ ସକାଶେ ସାଂସାରିକ କର୍ମକୁ ଅବହେଳା କରିବା ଉଚିତ ନୁହେଁ । ଦୈନନ୍ଦିନ ଜୀବନରେ ଆଦର୍ଶ-ନୀତି ପ୍ରଚଳନ କରିବା କଷ୍ଟସାଧ୍ୟ ବୋଲି କେହି କହିପାରନ୍ତି; କିନ୍ତୁ ଏହା ସେମାନଙ୍କର ସମ୍ପୂର୍ଣ୍ଣ ଭ୍ରମ ଧାରଣା । ସଂସାର ଯଦି କ୍ରମୋନ୍ନତି ମାର୍ଗରେ ଅଗ୍ରସର ହେଉଥାଏ, ତାହାହେଲେ ଜ୍ଞାନଚର୍ଚ୍ଚାରୁ ବିରତ ହେଲେ ସେହି ମହତ୍ ଉଦ୍ଦେଶ୍ୟ କଦାପି ପୂର୍ଣ୍ଣ ହେବ ନାହିଁ । ନୀଚ କର୍ମପନ୍ଥା ପ୍ରଚଳନରେ କିମ୍ବା ଗୋଟିଏ ଦୋଷାବହ କର୍ମର ଉଚ୍ଛେଦସାଧନ କରିବାକୁ ଯାଇ ଅନ୍ୟ ଦୋଷର ସୃଷ୍ଟି କରିବା-ଦ୍ୱାରା ଜଗତରେ କୌଣସି କଲ୍ୟାଣ ସାଧିତ ହୁଏ ନାହିଁ । ଗୋଟିଏ ରୋଗରୁ ନିଷ୍କୃତି ପାଇବାକୁ ଯାଇ ଚିକିତ୍ସାଦୋଷରୁ ଅନ୍ୟ ରୋଗରେ ଆକ୍ରାନ୍ତ ହେଲେ ଶରୀରର ଯେ କ୍ଷତି ହୁଏ, ଉପର୍ଯ୍ୟୁକ୍ତ କାର୍ଯ୍ୟପ୍ରଣାଳୀରେ ସମାଜର ସେହିପରି ଅନିଷ୍ଟ ଘଟିଥାଏ । ଜ୍ଞାନାଲୋଚନାରୁ ଯେଉଁ ଉନ୍ନତ ନୀତି ସବୁ ପ୍ରକାଶିତ ହୁଏ, ସେମାନଙ୍କୁ ପ୍ରଥମେ ସାମାଜିକ ଜୀବନରେ ପ୍ରଚଳନ କରିବା ସହଜ ବୋଧ ହୁଏ ନାହିଁ; କିନ୍ତୁ ସମୟ ଆସେ, ଯେତେବେଳେ ସେଗୁଡ଼ିକ ନିର୍ବିରୋଧରେ ସାଧାରଣ ସତ୍ୟରୂପେ ଗୃହୀତ ହୋଇଥାଏ । ନୂତନ ନୀତିପ୍ରବର୍ତ୍ତକମାନଙ୍କ ଜୀବଦ୍ଦଶାରେ ପ୍ରଚଳିତ କର୍ମମାର୍ଗରେ କୌଣସି ପରିବର୍ତ୍ତନ ଆସି ନ ପାରେ; କିନ୍ତୁ ସେଥିରେ ସେମାନଙ୍କର ଆକ୍ଷେପ କରିବା ଆଦୌ ଉଚିତ ନୁହେଁ ।

# କର୍ମ ଓ ସ୍ୱାତନ୍ତ୍ର୍ୟ

କର୍ମଜଗତରେ ସ୍ୱାତନ୍ତ୍ର୍ୟର ସ୍ଥାନ ନିରୂପଣ କରି ପ୍ରୟୋଜନୀୟ କାର୍ଯ୍ୟସମ୍ପାଦନକୁ ପୃଥକ୍ ଦୃଷ୍ଟିରେ ନିରୀକ୍ଷଣ କରିବାଦ୍ୱାରା ସମ୍ୟକ୍ ଆଲୋଚନାର ଉଦ୍ଦେଶ୍ୟ ସାଧିତ ହୁଏ ନାହିଁ । କାର୍ଯ୍ୟର ସ୍ୱଚ୍ଛନ୍ଦ ଗତି ସହିତ ପ୍ରୟୋଜନୀୟତା ସଂପୃକ୍ତ ଥାଏ । ଅବସ୍ଥାଭେଦରେ ଲୋକମତାନୁଯାୟୀ କର୍ମମାର୍ଗରେ ଭିନ୍ନତା ସୃଷ୍ଟି କରାଗଲେ ସୁଦ୍ଧା ସ୍ୱାତନ୍ତ୍ର୍ୟସ୍ଥାନ ଅତ୍ୟାବଶ୍ୟକ କାର୍ଯ୍ୟର ସ୍ୱରୂପ ସ୍ଥିର କରିବା ଅସମ୍ଭବ । ଧର୍ମ ଓ ନୀତି ପ୍ରଭୃତିରେ କର୍ମମାର୍ଗର ଅବିଚ୍ଛିନ୍ନ ଧାରା ଯେପରି ଘନିଷ୍ଠଭାବରେ ସଂଶ୍ଳିଷ୍ଟ ଥାଏ, ସେଥିରେ ଗୋଟାଏ ଅତି ସ୍ପଷ୍ଟ ବ୍ୟବଧାନ-ରେଖା ନିର୍ଦ୍ଦେଶ କରିବା ସହଜ ନୁହେଁ । ବହିର୍ଜଗତରେ ମାନବର କ୍ରିୟା, କାଳ ଓ କାରଣରେ ସମ୍ବନ୍ଧ ଯେନ ସ୍ୱାତନ୍ତ୍ର୍ୟର ପରିମାଣ ଅଳ୍ପ କିମ୍ବା ବେଶି ବିବେଚିତ ହୋଇପାରେ । ମନୁଷ୍ୟ ଯେ ପରିମାଣରେ ସ୍ୱାଧୀନତା ପାଏ, ସେହି ଅନୁସାରେ ତାର କାର୍ଯ୍ୟଗତି ସରଳ କିମ୍ବା ବକ୍ରଗତିରେ ସାଧିତ ହୁଏ । ଜଟିଳ ସମାଜ-ବନ୍ଧନ ଓ ପାରିବାରିକ ସମ୍ପର୍କରେ ମନୁଷ୍ୟ ଯେପରି ସଙ୍କୁଚିତ ଭାବରେ କାର୍ଯ୍ୟ କରେ, ସମ୍ବନ୍ଧହୀନ ଲୋକ ନିର୍ଜନ-ବାସରେ ସେପରି କୌଣସି ବାଧା ଅନୁଭବ କରେ ନାହିଁ । ମନୁଷ୍ୟକୁ ସ୍ୱାଧୀନତା ଦେଇ ତାର ପାରିପାର୍ଶ୍ୱିକ ବନ୍ଧନକୁ ସମ୍ପୂର୍ଣ୍ଣଭାବରେ ଶିଥିଳ କରିଦେଲେ ସେ ଯେଉଁ ମୁକ୍ତ ଅବସ୍ଥା ପାଏ, ସେଥିରେ କର୍ମଚକ୍ର ନୂତନ ଆକାର ଧାରଣ କରେ । ତ୍ୟାଗୀ ସାଧକର ସାଧନା ଓ ସଂସାରଯାତ୍ରୀ କର୍ମୀର କାର୍ଯ୍ୟ-ସମ୍ପାଦନ-ପନ୍ଥା ବିଭିନ୍ନ ହେଲେ ସୁଦ୍ଧା ମୁକ୍ତ ଅବସ୍ଥାରେ ଆନନ୍ଦ ପାଇବା ପାଇଁ ଉଭୟଙ୍କୁ ଏକ ଅନାସକ୍ତ କର୍ମମାର୍ଗରେ ଗତି କରିବାକୁ ପଡ଼େ । ଅନେକେ ମନୁଷ୍ୟକୁ ସ୍ୱାଧୀନ ଜୀବ କହନ୍ତି; କିନ୍ତୁ ବୈଷୟିକ ସମ୍ବନ୍ଧ ତା ଉପରେ ଧୀରେ ଧୀରେ ଯେପରି କାର୍ଯ୍ୟ କରେ, ତାହା ସହଜରେ ଧାରଣା କରି ହୁଏ ନାହିଁ ଏବଂ ତାର ଶକ୍ତିଚାଳନାରେ ଯେଉଁ ବାଧା ଆସେ, ତାକୁ କେହି ଲକ୍ଷ୍ୟ କରନ୍ତି ନାହିଁ । ସାମାନ୍ୟ ବାକ୍ୟବ୍ୟୟରେ ଯେଉଁ ଉତ୍ସାହଶକ୍ତି ନଷ୍ଟ ହୁଏ, ତାକୁ ରକ୍ଷା କରିବା ପାଇଁ କେତେ ଜଣ ଚେଷ୍ଟିତ ଥାଆନ୍ତି ? ସୂର୍ଯ୍ୟରଶ୍ମିରେ ଶରୀରର ଯେଉଁ ପରିବର୍ତ୍ତନ ଘଟେ, ତାକୁ ବାଧା ଦେବା ପାଇଁ କେତେ ଜଣ ମନୋଯୋଗୀ ହୁଅନ୍ତି ? ଉପର୍ଯ୍ୟୁକ୍ତ ସାମାନ୍ୟ ଘଟଣାମାନଙ୍କରୁ ସ୍ପଷ୍ଟ ପ୍ରମାଣିତ ହୋଇପାରେ ଯେ, ମନୁଷ୍ୟର ଅଜ୍ଞାତରେ ଯେଉଁ ସବୁ ଶକ୍ତି ତା ଉପରେ କାର୍ଯ୍ୟ କରେ, ସେମାନଙ୍କର ଗତିରୋଧ କରି ନିଜକୁ ସମ୍ପୂର୍ଣ୍ଣ ସ୍ୱାଧୀନ ବୋଲି ଭାବିବା ମନୁଷ୍ୟ ପକ୍ଷରେ ଅସମ୍ଭବ ।

ସମୟ ଓ ଅବସ୍ଥାବିଶେଷରେ ମନୁଷ୍ୟର କାର୍ଯ୍ୟ ଉତ୍କୃଷ୍ଟ କିମ୍ବା ନିକୃଷ୍ଟ ବିବେଚିତ ହୋଇଥାଏ । ବର୍ତ୍ତମାନ ଯୁଗର ସମାଲୋଚକ ଅତୀତ ଯୁଗର କର୍ମୀକୁ ସାଧନାକ୍ଷେତ୍ରରେ ଯେଉଁ ଆସନ ଦିଅନ୍ତି, ତାହା ସବୁ ସମୟରେ ଉପଯୁକ୍ତ ବୋଲି କୁହାଯାଇ ନ ପାରେ । ଆଜି ଯାହା ଜଣକ ପକ୍ଷରେ ସୁସାଧ୍ୟ ଦେଖାଯାଉଛି, ସମୟର ପରିବର୍ତ୍ତନ ଆସିଲେ ଭବିଷ୍ୟତରେ ତାହା କଷ୍ଟସାଧ୍ୟ ହୋଇପାରେ । ଜାତୀୟ ଜୀବନରେ ମଧ୍ୟ ଏହିପରି ବୈଷମ୍ୟ ଦେଖାଯାଏ । ଯେଉଁ ଜାତିମାନେ ସଭ୍ୟତାର ଜନ୍ମଦାତା ଥିଲେ, ସେମାନେ ଯେ ଦିନେ ଅସଭ୍ୟ ବୋଲି ବିବେଚିତ ହେବେ, ତାହା କିଏ ଭାବିଥିଲା ? କେଉଁ ନିୟମ ଅଧୀନରେ ଜଣେ ମନୁଷ୍ୟ ସମଗ୍ର ମାନବ ଜାତି ମଧ୍ୟରେ ଗୋଟାଏ ବିପ୍ଳବ ଆଣେ ? ଇତିହାସ ଏହାର ସଠିକ ଉତ୍ତର ଦେଇପାରେ ନାହିଁ । କେବଳ ଅସାଧାରଣ ଶକ୍ତି ଓ ପ୍ରଭୁତ୍ୱଦ୍ୱାରା ମନୁଷ୍ୟ କର୍ମକ୍ଷେତ୍ରରେ ସ୍ୱାଧୀନତା ଆଣେ କିମ୍ବା କୌଣସି ବିଶିଷ୍ଟ ଜାତିର ଭାଗ୍ୟନିୟନ୍ତା ହୋଇପାରେ, ଏପରି ଭାବିବା ଉଚିତ ନୁହେଁ । ଘଟଣାଚକ୍ରକୁ ବାଦ୍ ଦେଇ କାର୍ଯ୍ୟ ଓ କର୍ମୀର ଗତି ନିରୂପଣ କରିବା ସମୀଚୀନ ନୁହେଁ । ଅତୀତ ଐତିହାସିକ ଘଟଣାମାନଙ୍କର ଯେତେ ଅନୁସନ୍ଧାନ କରାଯାଏ, କର୍ମମାର୍ଗର ସ୍ୱଚ୍ଛନ୍ଦ ଗତି ସେତେ ଅସ୍ପଷ୍ଟ ବୋଧ ହୁଏ । ଆଜି ଜାତୀୟ ଆନ୍ଦୋଳନରେ କର୍ମୀମାନଙ୍କର ଯେ ବିଶେଷତ୍ୱ ଦେଖାଯାଉଛି ଓ ସେମାନଙ୍କର ସମୂହକର୍ମ ଯେଉଁ ଭାବୀ ପରିବର୍ତ୍ତନର ସୂଚନା ଦେଉଛି, ତାହା କାଳକ୍ରମେ କ୍ଷୀଣ ହୋଇ ଆସିବା ଆଶ୍ଚର୍ଯ୍ୟ ନୁହେଁ ।

କାରଣର ସମ୍ବନ୍ଧ ଯେଉଁ ମଧ୍ୟ କର୍ମର ଭଲ ଓ ମନ୍ଦ ଭାବ ସ୍ଥିର କରାଯାଏ । କାରଣ ଓ ଅବସ୍ଥା ଜ୍ଞାନର ଅଭାବରୁ ଆମ୍ଭେମାନେ ଅନେକ ସମୟରେ କର୍ମର ଗତି ସ୍ଥିର କରିପାରୁ ନାହିଁ । ବିଚାରକ ଦୋଷୀକୁ ଦଣ୍ଡ ଦେବା ସମୟରେ ଦୋଷାବହ କର୍ମର କାରଣ ଓ କିପରି ଅବସ୍ଥାରେ ତାର ଉତ୍ପତ୍ତି ହୁଏ, ସେ ସବୁ ସମ୍ୟକ୍ ଭାବରେ ଆଲୋଚନା କରନ୍ତି ନାହିଁ । ଆଜନ୍ମ ନୀଚ-ସଂସର୍ଗରେ ରହି ଜଣେ ଯଦି କୌଣସି ଦୋଷ କରେ, ତାହା ହେଲେ ତାକୁ ନିତାନ୍ତ ହେୟ ମନେ କରିବା ଉଚିତ ନୁହେଁ । ସାଧାରଣତଃ ଦୋଷୀ ଦଣ୍ଡ ଭୋଗ କରିବା ପରେ ତାର ଅଭ୍ୟସ୍ତ ପାପକର୍ମରେ ପୁଣି ଲିପ୍ତ ରହେ । ଦଣ୍ଡ ଦେବା ସମୟରେ ଆଧୁନିକ ପ୍ରତିଷ୍ଠିତ ବିଚାରାଳୟମାନଙ୍କରେ ଏଥିପ୍ରତି ବିଶେଷ ଲକ୍ଷ୍ୟ ଥିବାର ଜଣାଯାଏ ନାହିଁ ।

ପରିବର୍ତ୍ତନ ଜଗତର ନିୟମ । ଏଥିପ୍ରତି ଦୃଷ୍ଟି ନ ଦେଇ ସ୍ୱାଧୀନ କର୍ମର ଚିତ୍ର ସମାଜ ଆଗରେ ଆଙ୍କି ଦେବା ସୂକ୍ଷ୍ମଦୃଷ୍ଟିର ପରିଚୟ ଦିଏ ନାହିଁ । କାଳ ଉପରେ କାହାର ଅଧିକାର ନାହିଁ । ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ମଧ୍ୟ ଦେଇ କର୍ମସ୍ରୋତ ବହିଯାଉଛି । ବିଭିନ୍ନ ଅବସ୍ଥା ଏହି ସ୍ରୋତର ଅନୁକୂଳ କିମ୍ବା ପ୍ରତିକୂଳରେ ଆସି ପରିବର୍ତ୍ତନ ଆଣିପାରେ; କିନ୍ତୁ କାଳଗତିରେ କୌଣସି ପ୍ରତିବନ୍ଧକ ଜନ୍ମେ ନାହିଁ । କାଳ ଓ ଅବସ୍ଥାନୁରୂପୀ କାର୍ଯ୍ୟର ସଂମିଶ୍ରଣରେ ଯେ ବିଶେଷତ୍ୱ ଦେଖାଯାଏ, ତାକୁ ସ୍ୱତନ୍ତ୍ରତାପ୍ରୟାସୀ ଲୋକ ନୂତନ ପ୍ରଥାର ଆଖ୍ୟା ଦେଇ ସମାଜରେ ପ୍ରଚାର କରେ । ବୈଷୟିକ ପରିବର୍ତ୍ତନ ଉପରେ ନୂତନତ୍ୱର ଭିତ୍ତିକୁ ସେ ଭିନ୍ନ ଆକାରରେ ଗଢ଼େ । ପ୍ରାଚୀନତା ପ୍ରତି ବୀତସ୍ପୃହ ହେବା ଓ ନୂତନତ୍ୱକୁ ଏକମାତ୍ର ଅବଲମ୍ବନ କରି ଧରିବାଦ୍ୱାରା ସାମାଜିକ ରୂପରେ ସେ ସମ୍ପୂର୍ଣ୍ଣ ପରିବର୍ତ୍ତନ ଆଣିପାରେ ନାହିଁ; କେବଳ ସ୍ୱାଧୀନ ଭାବର ପ୍ରେରଣା କର୍ମଜଗତରେ ମାନବ ଜାତିକୁ ଅଗ୍ରସର କରାଇପାରେ ନାହିଁ ।

ସାମାଜିକ ଅଭାବ ଓ ଅସୁବିଧାମାନଙ୍କୁ ଦୂର କରିବା ମଧ୍ୟ ପରିବର୍ତ୍ତନ ଆକାଂକ୍ଷୀର ଉଦ୍ଦେଶ୍ୟ ହେବା ଉଚିତ । ବହିର୍ଜଗତଠାରୁ ବିଚ୍ଛିନ୍ନ ମନୁଷ୍ୟର କର୍ମକୁ କାରଣହୀନ ବୋଲି କୁହାଯାଇ ନ ପାରେ । କାରଣକୁ ଅନୁସନ୍ଧାନ କରି ନ ପାରିଲେ ସୁଦ୍ଧା କାଳକୁ ଉପେକ୍ଷା କରି କର୍ମର ସ୍ୱାଧୀନ ଚିତ୍ର ପ୍ରକାଶ କରିବା ଅସମ୍ଭବ । ସମୟଦୃଷ୍ଟିରେ ସାମାଜିକ ଅବସ୍ଥା ସ୍ୱତଃ ଭିନ୍ନ ଆକାର ଧାରଣ କରେ ବୋଲି ଅନେକଙ୍କର ବିଶ୍ୱାସ । କର୍ମର ଉତ୍ପତ୍ତି ସମ୍ବନ୍ଧରେ ପ୍ରକୃତ ଜ୍ଞାନ ନ ଜନ୍ମିବାର କାରଣ, କାଳ ଓ ଅବସ୍ଥା ପ୍ରଭୃତିର ଉପଯୁକ୍ତ ମୂଲ୍ୟ ନିରୂପଣ କରିବା କଠିନ ।

କର୍ମକ୍ଷେତ୍ରରେ ଜଣକର ଇଙ୍ଗିତରେ ଅସଂଖ୍ୟ ଲୋକ ଚାଳିତ ହୁଅନ୍ତି । ପ୍ରତ୍ୟେକ ମନୁଷ୍ୟଠାରେ ଏପରି ଶକ୍ତି ଥିବାର ପ୍ରକାଶ ପାଏ ନାହିଁ । ନେପୋଲିୟନ୍‌ଙ୍କର ଆଦେଶକୁ ଗୋଟାଏ ଜାତି ନତମସ୍ତକରେ ପାଳନ କରିଥିଲା । ତାଙ୍କର ପଦେ କଥାରେ ଲକ୍ଷ ଲକ୍ଷ ସୈନ୍ୟ ପ୍ରାଣ ଦେବା ପାଇଁ ଉଦ୍‌ଗ୍ରୀବ ହୋଇପଡ଼ୁଥିଲେ । ନେପୋଲିୟନଙ୍କ ବୀର-ଦର୍ପରେ ସମଗ୍ର ପୃଥିବୀ କମ୍ପିତ ହେବାର କାରଣ କଅଣ ? ସେ ଯେଉଁ ଶକ୍ତିର ଅଧିକାରୀ ଥିଲେ, ତାକୁ ଯଦି ଈଶ୍ୱରଦତ୍ତ ବୋଲି କୁହାଯାଏ, ତାହା ହେଲେ ସେ ବିଷୟରେ ଆଉ ବିଶେଷ ଆଲୋଚନା କରିବାର ଆବଶ୍ୟକତା ନାହିଁ; କିନ୍ତୁ ବର୍ତ୍ତମାନ ଯୁଗରେ ଏପରି ବିଶ୍ୱାସର ଅଧୀନ ହେବାକୁ ସାଧାରଣତଃ କେହି ସମ୍ମତ ହେବେ ନାହିଁ । ଅସାଧାରଣ ଶାରୀରିକ କିମ୍ବା ନୈତିକ ବଳର ଉତ୍କର୍ଷ ଉପରେ ଶାସନ-ଶକ୍ତି ସମ୍ପୂର୍ଣ୍ଣ ନିର୍ଭର କରେ ନାହିଁ । ନେପୋଲିୟନ୍‌ଙ୍କଠାରୁ ସହସ୍ର ଗୁଣ ନିକୃଷ୍ଟ ରାଜ୍ୟାଧିକାରୀମାନଙ୍କର ଆଦେଶ ନିର୍ବିଘ୍ନରେ ପାଳିତ ହୋଇଅଛି । ଶାସିତମାନେ ସେମାନଙ୍କଠାରୁ ସବଳ ଥାଇ ସୁଦ୍ଧା ଅନୀତିର ପ୍ରତିବାଦ କରିବାକୁ ସାହସ କରି-ନାହାନ୍ତି । ପ୍ରଜାମଣ୍ଡଳୀର ସମୂହ-ଇଚ୍ଛା ଯଦି ରାଜଶକ୍ତିର ନିୟାମକ ହୁଏ, ତାହା ହେଲେ ଅତ୍ୟାଚାରୀ ଶାସକ ତିଷ୍ଠିବାର କାରଣ କଅଣ ? ପୀଡ଼ିତ ପ୍ରଜାବର୍ଗ ଉପଯୁକ୍ତ ସମୟରେ ଅତ୍ୟାଚାରର ପ୍ରତିକାର ନ କରି ନିର୍ବାହ ଶାସକଙ୍କର ଧ୍ୱଂସସାଧନ କରନ୍ତି । ଜଣକର କର୍ମଫଳ ଅନ୍ୟକୁ ଭୋଗ କରିବାକୁ ପଡ଼େ; ସୁତରାଂ ସମୂହ-ଇଚ୍ଛାକୁ ଶାସନ-ଶକ୍ତିର ଭିତ୍ତିସ୍ୱରୂପ ଧରିବା ଉଚିତ ନୁହେଁ ।

ଅଧିକାଂଶ ପାଶ୍ଚାତ୍ୟ ପଣ୍ଡିତମାନେ ବ୍ୟକ୍ତିବିଶେଷଙ୍କର ଅସାଧାରଣ କ୍ଷମତା ଉପରେ ଜାତୀୟ ଗୌରବର ନିଦର୍ଶନ ଦେଖନ୍ତି । ଯେ ଶକ୍ତିପ୍ରଭାବରେ ଦେଶନାୟକ ଅତୁଳନୀୟ କର୍ମ ସମ୍ପାଦନ କରି ନୂତନ ଯୁଗର ପ୍ରବର୍ତ୍ତକ ହୁଅନ୍ତି, ତାକୁ ଐତିହାସିକମାନେ ବିଭିନ୍ନ ରଙ୍ଗରେ ଚିତ୍ରିତ କରନ୍ତି । ଏହି ଅସାଧାରଣ ପୁରୁଷଙ୍କର ଚରିତ୍ର-ଚିତ୍ରଣରେ ଐତିହାସିକମାନଙ୍କର ଏକମତ ନ ହେବାର କାରଣ କଣ ? ସମଗ୍ର ପୃଥିବୀର ଜାତୀୟ ଇତିହାସ ଆଲୋଚନା କଲେ ଦେଖାଯିବ ଯେ ଜଣକର ବିଶିଷ୍ଟ

କାର୍ଯ୍ୟରେ କୌଣସି ପରିବର୍ତ୍ତନ ଆସେ ନାହିଁ । ଭିନ୍ନ ଭିନ୍ନ ଦିଗରେ ଚାଳିତ ଶକ୍ତିରୁ କେତେଗୁଡ଼ିଏ ଘଟନା ସୃଷ୍ଟି ହୋଇ ଗୋଟିଏ ଉପଯୋଗୀ ପରିବର୍ତ୍ତନର ସୂଚନା ଦିଅନ୍ତି । କେବଳ ବ୍ୟକ୍ତିଗତ କ୍ଷମତା ଉପରେ ନିର୍ଭର କରି ଗୋଟିଏ ଜାତିର ମହତ୍ତ୍ୱ କିମ୍ବା ଗୋଟିଏ ନୂତନ ଯୁଗର ବିକାଶ ଦେଖାଇବା ସହଜ ନୁହେଁ । ଅନେକେ କହି ପାରନ୍ତି, ଫରାସି ରାଷ୍ଟ୍ର-ବିପ୍ଳବ ଯୋଗୁଁ ନେପୋଲିୟନଙ୍କର ଅପ୍ରତିହତ ତେଜ ଜଗତରେ ପ୍ରକାଶ ପାଇଲା ଓ ସେହି ପ୍ରଭାବରେ ବିପ୍ଳବର ବହ୍ନି ନିର୍ବାପିତ ହେଲା । ବିପ୍ଳବ ପରେ ଯଦି ଫରାସି ଜାତିର ଜୀବନ ଅବଶ ହୋଇପଡ଼ିଲା, ତାହା ହେଲେ ନେପୋଲିୟନଙ୍କ ଦ୍ୱାରା ଜାତିର କି କଲ୍ୟାଣ ସାଧିତ ହେଲା ? ଗୋଟିଏ ଶକ୍ତି ଦୁଇ ବିପରୀତ ଦିଗରେ କାର୍ଯ୍ୟ କଲେ ଲକ୍ଷ୍ୟସ୍ଥଳ ଜଣାପଡ଼େ ନାହିଁ କିମ୍ବା କର୍ମୀର ସ୍ୱାତନ୍ତ୍ର୍ୟ ପ୍ରକାଶ ପାଏ ନାହିଁ ।

ପ୍ରତ୍ୟେକ ଜୀବନର ସାର୍ଥକତା ଅଛି । ଜଣକର ପ୍ରଭାବରେ କେତେ ଶ୍ରେଣୀ ଲୋକ ଚାଳିତ ହୋଇ କୌଣସି ନିର୍ଦ୍ଦିଷ୍ଟ କାର୍ଯ୍ୟ କଲେ, ବ୍ୟକ୍ତିଗତ ଶକ୍ତିର ଭିନ୍ନତା ଜଣାଯାଏ ନାହିଁ । ଜୀବନର ବୈଚିତ୍ର୍ୟ ସଙ୍ଗେ କର୍ମସାଦୃଶ୍ୟ ମନୁଷ୍ୟମାନଙ୍କୁ ଏକତା-ବନ୍ଧନରେ ବାନ୍ଧି ରଖେ । ଲକ୍ଷ୍ୟ ସମାନ ନ ହେଲେ ମଧ୍ୟ ଅଭାବ କବଳରୁ ରକ୍ଷା ପାଇବା ପାଇଁ ମିଳିତ ଶକ୍ତିର ସୃଷ୍ଟି ହୁଏ । ଏଠାରେ ନୈତିକ ବଳ ବିଶେଷ କାର୍ଯ୍ୟ କରେ ନାହିଁ । ସାଧାରଣ ଅଭାବମାନଙ୍କୁ ଦୂର କରିବାକୁ ଯାଇ ଜୀବନର ସାର୍ଥକତା ଭୁଲିଯିବା ସାଧାରଣ ମନୁଷ୍ୟ ପକ୍ଷରେ ସମ୍ଭବ ହୁଏ । ଭୃତ୍ୟ ପ୍ରଭୁର ନୀତିବିରୁଦ୍ଧ ଆଦେଶ ପାଳନ କରେ । ରାଜାଜ୍ଞା ପାଳନରେ ଯଥେଚ୍ଛାଚାରର ଶାସନ କ୍ରମଶଃ ପ୍ରବଳ ହୋଇପାରେ । ଦୁର୍ବଳ ଅତ୍ୟାଚାରିତ ହେଲେ, ସମସ୍ତେ ଅନ୍ୟାୟର ପ୍ରଭାବ ଅନୁଭବ କରନ୍ତି; କିନ୍ତୁ କ୍ଷୁଦ୍ର ସ୍ୱାର୍ଥକୁ ଉପେକ୍ଷା କରି ମନୁଷ୍ୟତ୍ୱ ପ୍ରକାଶ କରିବା ଖୁବ୍ କମ୍ ଲୋକର ଭାଗ୍ୟରେ ଘଟେ । ପଶୁବଳ ସଙ୍ଗେ ସହାନୁଭୂତି କରି ସଂଖ୍ୟାତୀତ ମନୁଷ୍ୟ ଜୀବନର ଲକ୍ଷ୍ୟ ଭୁଲି ଯାଆନ୍ତି । କର୍ମଜଗତରେ ଏମାନେ ଏକଶ୍ରେଣୀଭୁକ୍ତ ହୁଅନ୍ତି । ଜଣକର ଆଦେଶ ପାଳନ କରିବାରେ ଏମାନଙ୍କର କୃତିତ୍ୱ ପ୍ରକାଶ ପାଏ ।

ମାନସିକ ଭାବନା ଓ ସଙ୍କଳ୍ପ ଉପରେ ବାହ୍ୟ କର୍ମର ମହତ୍ତ୍ୱ ଅନେକ ପରିମାଣରେ ନିର୍ଭର କରେ । ଯାବତୀୟ କାର୍ଯ୍ୟ ସମ୍ପାଦନରେ କର୍ମୀ କୌଣସି ପ୍ରେରଣାର ଅଧୀନ ଥାଏ । ସ୍ୱାଧୀନ ଭାବରୁ ଯେଉଁ ପ୍ରେରଣା ମିଳେ, ତାକୁ କାର୍ଯ୍ୟରେ ପରିଣତ କଲାବେଳେ ଅନେକ ବାଧା ଜନ୍ମିଥାଏ । ବୈଷୟିକ ତୃପ୍ତିରେ ଜଗତ୍ ମୁଗ୍ଧ । ସାମାନ୍ୟ ସ୍ୱାର୍ଥର ମାୟା ତ୍ୟାଗ କରି ମୁକ୍ତିମାର୍ଗରେ ସ୍ୱାଧୀନ ବାଣୀ ଶୁଣିବାକୁ ଅତ୍ୟଳ୍ପ ଲୋକେ ପ୍ରୟାସୀ ହୁଅନ୍ତି । ଯୁଗଯୁଗବ୍ୟାପୀ ଗୋଟିଏ କୁସଂସ୍କାର ସମାଜର ଘୋର ଅନିଷ୍ଟ କରୁଥାଏ; ଅଥଚ କେହି ସାହସ କରି ତା ବିରୁଦ୍ଧାଚରଣ କରନ୍ତି ନାହିଁ । ବିବେକୀର ଆତ୍ମଗ୍ଲାନିରେ ସମାଜ ଅଶାନ୍ତି ଭୋଗ କରେ ନାହିଁ; ବରଂ କୁସଂସ୍କାର ଅନ୍ଧକାରକୁ ଅକୁଣ୍ଠିତରେ ପ୍ରଶ୍ରୟ ଦିଏ । ସମାଜରେ ଏକତା ସୃଷ୍ଟି ବଶ୍ୟତାମୂଳକ ବୋଲି କୁହାଯାଇପାରେ ; କାରଣ ନିଜ ଇଚ୍ଛା ବିରୁଦ୍ଧରେ ସୁଦ୍ଧା ଜଣେ ସମାଜର ନିୟମ ପାଳନ କରିବ ।

ଆଧ୍ୟାତ୍ମିକ କ୍ରମବିକାଶରେ କର୍ମର ସରଳ ଚିତ୍ର ଦେଖାଯାଇପାରେ । ଐହିକ ସୁଖରେ ଲିପ୍ତ ରହି କର୍ମକ୍ଷେତ୍ରରେ ସ୍ୱାଧୀନତା ଲୋଡ଼ିବା ମନୁଷ୍ୟର ଉଚିତ ନୁହେଁ । ଅଳ୍ପ ଜୀବନକାଳ ମଧ୍ୟରେ ଜଗତର ସମସ୍ତ ରହସ୍ୟ ଭେଦ କରିବା ତା ପକ୍ଷରେ ଅସମ୍ଭବ । ବିଜ୍ଞାନ ଯାହା ଆବିଷ୍କାର କରୁଛି, ତଦ୍ଦ୍ୱାରା ସାଂସାରିକ ସୁଖପ୍ରାପ୍ତି ସହଜରେ ହୋଇପାରେ ; କିନ୍ତୁ ମନୁଷ୍ୟର ଚରମ ଲକ୍ଷ୍ୟ ତାହା ନୁହେଁ । ତ୍ୟାଗ ଉପରେ ଆଧ୍ୟାତ୍ମିକ ଜୀବନର ଭିତ୍ତି ନିର୍ମିତ ହେଲେ କର୍ମୀର ମନ ଉଦ୍‌ବେଗଶୂନ୍ୟ ହୁଏ; କର୍ମଫଳ ପ୍ରତି ତାର ଲକ୍ଷ୍ୟ ରହେ ନାହିଁ । ସେ ଦେଖେ, ଜୀବର ଉନ୍ମୁକ୍ତ ଅବସ୍ଥା । କ୍ଷଣିକ ସୁଖ-ଆଶାରୁ ମନ ନ ଫେରାଇ, ତ୍ୟାଗର ପ୍ରକୃତ ମହତ୍ତ୍ୱ ଉପଲବ୍‌ଧି କରିବା ସହଜ ନୁହେଁ । ବିଜ୍ଞାନ ଚାହେଁ, ବସ୍ତୁଜଗତରେ ବିପ୍ଳବ ଆଣିବାକୁ, ଯାହା ଦେଖି ମନୁଷ୍ୟର ମନ ସର୍ବଦା ପାର୍ଥିବ ବିଷୟରେ ମୁଗ୍‌ଧ ରହିବ । ବିଜ୍ଞାନର ଉନ୍ନତି ହେବା ସଙ୍ଗେ ଅଭାବର ମାତ୍ରା ମଧ୍ୟ ବଢ଼ି ଯାଇଛି । ବୈଦ୍ୟୁତିକ କିମ୍ବା ବାଷ୍ପୀୟ କଳ ସାହାଯ୍ୟରେ ବଡ଼ ବଡ଼ ନଗରମାନଙ୍କର ଶ୍ରୀ ସାଧିତ ହେଲେ ସୁଦ୍ଧା ମନୁଷ୍ୟ ନିଜକୁ ପୂର୍ବାପେକ୍ଷା ଅସହାୟ ମନେ କରୁଛି । ଆଜି ଯଦି କୌଣସି କାରଣବଶତଃ ବୈଜ୍ଞାନିକ ଯନ୍ତ୍ରମାନଙ୍କର ସାହାଯ୍ୟ ବନ୍ଦ କରାଯାଏ, ତାହା ହେଲେ ବିଳାସପ୍ରିୟ ନଗରବାସୀଙ୍କର ଅବସ୍ଥା ବର୍ଣ୍ଣନାତୀତ ଶୋଚନୀୟ ହେବ । ଶାରୀରିକ ଉତ୍କର୍ଷ ଦୂରରେ ଥାଉ, କୃତ୍ରିମ ଉପାୟମାନ ଅବଲମ୍ବନ କରି ସେମାନେ ସ୍ୱାଭାବିକ ବଳର ପରିଚୟ ଦେଇପାରୁ ନାହାନ୍ତି ।

ପ୍ରତିକୂଳ ଅବସ୍ଥାରେ କର୍ମୀର ଚରିତ୍ର ଓ କ୍ଷମତା ପ୍ରମାଣିତ ହୁଏ । ଅଭାବମାନଙ୍କୁ ଦୂର କରି ସେ ଯେ ପରିମାଣରେ ନିଜର ସ୍ୱାଧୀନତା ବଜାୟ ରଖେ, ତଦ୍ଦ୍ୱାରା ତାହାର ଶକ୍ତିର ପରିଚୟ ମିଳେ । ସମ୍ପର୍କହୀନ ଆଳସ୍ୟପରାୟଣ ବ୍ୟକ୍ତି କର୍ମର ଗୁରୁତ୍ୱ ବୁଝେ ନାହିଁ । ସେ ନିଜକୁ ସ୍ୱାଧୀନ ବୋଲି ଭାବେ; କିନ୍ତୁ କର୍ମପରାଙ୍ମୁଖ ଭାବ ମନର ଯେଉଁ ସଙ୍କୀର୍ଣ୍ଣତା ଆଣେ, ସେଥିରେ ସେ ଦୁର୍ବଳ ବୋଲି ବିବେଚିତ ହୁଏ । କର୍ମର ଜଟିଳ ସମସ୍ୟା ଭେଦ କରି ମୁକ୍ତଭାବ ଦେଖାଇବାକୁ ହେଲେ ଯାବତୀୟ କର୍ମ-ସମ୍ପାଦନରେ ନିଜତ୍ୱ ରକ୍ଷା କରିବା ଆବଶ୍ୟକ । ଦର୍ଶକ ଚକ୍ଷୁରେ ଅଭିନୟକାରୀ ଯେପରି ଦେଖାଯାଏ, ଜଗତ୍ ଚକ୍ଷୁରେ କର୍ମୀ ସେହିପରି ଦେଖାଯିବା ବାଞ୍ଛନୀୟ । ଅନେକେ ନିତାନ୍ତ ସ୍ୱାର୍ଥଜଡ଼ିତ ହୋଇ କର୍ମର ପ୍ରକୃତ ସୀମା ନିରୂପଣ କରିପାରନ୍ତି ନାହିଁ । ସେମାନେ ସବୁବେଳେ ଗୋଟାଏ ଆସକ୍ତିପୂର୍ଣ୍ଣ ଚିତ୍ର ଦେଖୁଥାନ୍ତି । କର୍ମ ସହିତ ଜୀବନର ଉପାଦେୟତା ବୁଝିବା ସେମାନଙ୍କ ପକ୍ଷରେ କଠିନ ହୋଇଉଠେ । ବିଚ୍ଛିନ୍ନ କର୍ମପନ୍ଥା ଦେଖି ମନୁଷ୍ୟକୁ ସ୍ୱାଧୀନ ବୋଲି ଭାବିବା ଉଚିତ ନୁହେଁ । ଜୀବନରେ ସ୍ୱାଧୀନତା କଳ୍ପନା କରାଯାଇପାରେ; କିନ୍ତୁ ଏପରି ଜୀବନ ଅତିବାହିତ କରିବା ସଂସାରୀ ପକ୍ଷରେ ଅସମ୍ଭବ ।

# କର୍ମୀ ମଧୁସୂଦନ

କର୍ମଗୁରୁ ମଧୁସୂଦନ ଆଉ ଇହଧାମରେ ନାହାନ୍ତି । ଉତ୍କଳମାତାର ଯୋଗ୍ୟତମ ସୁତ ତାର କୋଡ଼ ଶୂନ୍ୟ କରି ଚାଲିଗଲେଣି । ଯେ ରତ୍ନଟି ହଜିଗଲା ତାର ଅଭାବରେ ଉତ୍କଳୀୟ ହୃଦୟ ଆଜି ଦାରୁଣ ଶୋକରେ ଆକୁଳ । ଉତ୍କଳର କର୍ମକ୍ଷେତ୍ରରେ ଅର୍ଦ୍ଧଶତାବ୍ଦୀ ହେଲା ଯେଉଁ ଶ୍ରେଷ୍ଠ ପୁରୋଧା କର୍ମମନ୍ତ୍ର ଉଚ୍ଚାରଣ କରୁଥିଲେ, ତାଙ୍କର ଅବିରାମ ଅଭୟ ବାଣୀ ଚିରଦିନପାଇଁ ରୁଦ୍ଧ ହୋଇଗଲା । ଉତ୍କଳ-ଆକାଶରେ ଯେଉଁ ଜ୍ୟୋତିଷ୍କ ଏତେ ଦିନ ଯାଏ ଦୀପ୍ତି ପ୍ରଦାନ କରୁଥିଲେ ଓ ଯାହାଙ୍କ ଆବିର୍ଭାବରେ ଦୀନ ଉତ୍କଳର ଜଡ଼ତା କିଞ୍ଚିତ୍ ଅପସାରିତ ହୋଇଥିଲା, ସେ ଏବେ ମୃତ୍ୟୁଅନ୍ତରାଳରେ ଆଶ୍ରୟ ନେଲେଣି ! ଅମା ନିଶୀଥିନୀରେ ଯାହାଙ୍କର କିରଣ ପାଇ ଜନନୀ ଉତ୍କଳ ମସ୍ତକ ଉତ୍ତୋଳନ କରିଥିଲା, ତାଙ୍କର ଅଭାବରେ ଶୋକର ବିରାଟ ଛାୟା ସମଗ୍ର ଜନ୍ମଭୂମିକୁ ଗ୍ରାସିଗଲାଣି । ମାତାର ନୀରବ ଅଶ୍ରୁପାତରେ ମଧୁସୂଦନଙ୍କ ହୃଦୟ ଆଉ ଉଦ୍ବେଳିତ ହେବ ନାହିଁ । ସିନ୍ଧୁ ସୈକତରେ, ନିବିଡ଼ ଅରଣ୍ୟରେ, ପର୍ବତ ଗହ୍ବରରେ ଆଉ ମା'କୁ କିଏ ଅନ୍ୱେଷଣ କରିବ ? ପୁତ୍ରଶୋକରେ ଅଧୀରା ଜନନୀର କଷ୍ଟ ଦେଖିବାକୁ ମଧୁସୂଦନ ଆଉ ଫେରିବେ ନାହିଁ । ଜନନୀର ଅଙ୍ଗଚ୍ଛେଦରେ ଯେ ଆଜୀବନ ମର୍ମାନ୍ତିକ ଯାତନା ଅନୁଭବ କରିଥିଲେ ଓ ଯାହାଙ୍କ ପ୍ରଗାଢ଼ ଚେଷ୍ଟା ଫଳରେ ନିଶ୍ଚେଷ୍ଟ ଓଡ଼ିଆ ଜାତି ଜନ୍ମଭୂମିର ଦୁଃଖ ଅପନୋଦନ କରିବାକୁ ଜାଗ୍ରତ ହୋଇଥିଲା, ସେହି କର୍ମବୀର ଜାତିକୁ ଗୋଟାଏ ସନ୍ଧିସ୍ଥଳରେ ପକାଇ ଦେଇ ଚାଲିଗଲେ । ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଯେ ସ୍ପନ୍ଦନ ମଧୁସୂଦନଙ୍କ ହୃଦୟ-ତନ୍ତ୍ରୀରେ ବାଜିଥିଲା, ତାକୁ ଅସହାୟା ଉତ୍କଳମାତା ଭୁଲିବ କିପରି ? ମା'ର କୋଟିଏ ସନ୍ତାନ କିନ୍ତୁ ଆଜି ଗୋଟିକ ଅଭାବରେ ତାର ମର୍ମେ ମର୍ମେ ଯେ ଅବ୍ୟକ୍ତ ଶୋକାବେଗ ଉଚ୍ଛୁଳି ଉଠିଛି, ତାକୁ ଭାଷାରେ ପ୍ରକାଶ କରିବା ଅସମ୍ଭବ ।

ଜଗତ୍ କର୍ମସୂତ୍ରରେ ଆବଦ୍ଧ । ମନୁଷ୍ୟର ଜୀବନଟା କେତେଗୁଡ଼ାଏ କର୍ମର ସମଷ୍ଟି ମାତ୍ର । ଜୀବନର ସାରବତ୍ତା ଉପଯୁକ୍ତ କର୍ମଦ୍ୱାରା ନିରୂପିତ ହୋଇଥାଏ । ସମସ୍ତେ କର୍ମ କରନ୍ତି; କିନ୍ତୁ ଜଣେ ଜଣେ କର୍ମମାର୍ଗରେ ଯେ ରୀତି ଅନୁସରଣ କରନ୍ତି, ସେଥିରେ ଅନେକ ଶିକ୍ଷଣୀୟ ବିଷୟ ଥାଏ । ପୃଥିବୀର ମନୀଷୀମାନଙ୍କର ଜୀବନୀ ଆଲୋଚନା କଲେ ଏହାର ସତ୍ୟତା ଯଥେଷ୍ଟ ଉପଲବ୍ଧ ହେବ । ଅନ୍ଧକାର ବର୍ତ୍ମରେ ଆଲୋକରେଖା ପରି ଏହି ମହାପୁରୁଷମାନଙ୍କର କ୍ରିୟାକୌଶଳ ସାଧାରଣ ଜଗଦ୍ବାସୀଙ୍କୁ ଗୋଟାଏ ମାର୍ଗ ଅନୁସରଣ କରିବାକୁ ଇଙ୍ଗିତ ଦିଏ । ବିଶେଷତଃ ଯେତେବେଳେ ଅଜ୍ଞାନ-ଅନ୍ଧକାରରେ ମନୁଷ୍ୟ ମୁହ୍ୟମାନ ହୋଇପଡ଼େ, ଚାରିଆଡ଼େ ନୈରାଶ୍ୟର ଛାୟା ପ୍ରକଟିତ ହୁଏ, ସେତେବେଳେ ମଙ୍ଗଳମୟଙ୍କ ମଙ୍ଗଳମୟ ନିର୍ଦ୍ଦେଶରେ କୌଣସି ମହାପୁରୁଷଙ୍କ ଆବିର୍ଭାବ ହୋଇଥାଏ ।

କାଳର ଅନନ୍ତ ସ୍ରୋତରେ ଜଗତର ଧାରାବାହିକ କ୍ରିୟା ପର୍ଯ୍ୟାୟକ୍ରମେ ଆସି ଚାଲିଯାଏ । କେହି ସେଥିପ୍ରତି ଆକୃଷ୍ଟ ହୁଏ ନାହିଁ । ମନୁଷ୍ୟ ସବୁବେଳେ ଚାହେଁ କିଛି ଅସାଧାରଣ ବିଷୟ ଦେଖିବାକୁ, ଯାହାକୁ ସମ୍ବଳ କରି ସେ ନିଜର ଜୀର୍ଣ୍ଣ ଜୀବନ-ତରୀକୁ ଅକୂଳ ସଂସାର-ସାଗରରେ ମେଲିଦିଏ । ତା ଯାତ୍ରାପଥରେ ପ୍ରବଳ ଆବର୍ତ୍ତସବୁ ଶୀଘ୍ର ସଞ୍ଚାର କରନ୍ତି; କିନ୍ତୁ ସେ ଲକ୍ଷ୍ୟ ରଖିଥାଏ ଜଣକର ଭସ୍ୱରଦୀପ୍ତ ଅଗ୍ରଗତି ଉପରେ । ଯେ ଚୁମ୍ବକର ଆକର୍ଷଣରେ ସହସ୍ର ନରନାରୀ ଅଜାଣତରେ ଜଣକର ଅନୁବର୍ତ୍ତୀ ହୁଅନ୍ତି ଓ ଯାହାଙ୍କର ସ୍ୱାର୍ଥାହୁତିରେ ବିସ୍ମୟ ଜନ୍ମେ, ସେହି ପୁରୁଷଶ୍ରେଷ୍ଠଙ୍କୁ ପୂଜା କରିବାକୁ ମନୁଷ୍ୟ ସ୍ୱତଃ ଧାବିତ ହୁଏ । ଆଜି ମଧୁସୂଦନଙ୍କ ତିରୋଧାନରେ ଯେ କରୁଣ ଧ୍ୱନି ପ୍ରକାଶିତ ହେଲା, ତାହା ଓଡ଼ିଆ ଜାତିର ପ୍ରାଣର ଅମୂଲ୍ୟ ନିବେଦନ ।

ମଧୁସୂଦନଙ୍କ ପରି କର୍ମୀ କେହି ଉତ୍କଳରେ ଆଜି ପର୍ଯ୍ୟନ୍ତ ଜନ୍ମଗ୍ରହଣ କରି ନ ଥିଲେ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ସୁପ୍ତ ଓଡ଼ିଆର ଜାଗରଣ ସକାଶେ ସେ ସମସ୍ତ ଜୀବନ କଟାଇ ଦେଇଛନ୍ତି । ସେ ବୁଝିଥିଲେ, ତାଙ୍କ ଜାତିର ମହତ୍ତ୍ୱ; 'ଭଗ୍ନ ବାରବାଟୀ'ରେ ସେ ଦେଖିଥିଲେ, ତାଙ୍କ ପୂର୍ବପୁରୁଷର ଶୋଣିତରେଖା; ନିଜ ଧମନୀରେ ମଧ୍ୟ ଅନୁଭବ କରିଥିଲେ, ସେହି ଶୋଣିତର ପ୍ରବାହ ! କୋଣାର୍କର ମହୀୟସୀ କୀର୍ତ୍ତିରେ ତାଙ୍କ ହୃଦୟ ଉଚ୍ଛ୍ୱସିତ ହୋଇଉଠିଲା । ଓଡ଼ିଆର ଅତୀତ ସଗୌରବରେ ଆସି ତାଙ୍କ ନିକଟରେ ଆତ୍ମପ୍ରକାଶ କଲା । ଆଦର୍ଶ ସନ୍ତାନ ପୂର୍ବପୁରୁଷର ଅମର ଖ୍ୟାତିକୁ ଉଜ୍ଜୀବିତ କରିବାକୁ ଅଗ୍ରସର ହେଲେ । ଯେ ଜାତି ଦୈବବଶରୁ ଜଗତ୍‌ର ସମକ୍ଷରେ ଦୀନହୀନ ବୋଲି ବିବେଚିତ ହେଉଥିଲା, ମଧୁସୂଦନ ସଗର୍ବରେ ଜଗଦ୍‌ବାସୀଙ୍କୁ ଶୁଣାଇ ଦେଲେ ଯେ, ସେ ଜାତିର ସତ୍ତ୍ୱା ଅଛି । ତଥାପି ଯେଉଁମାନେ ତାକୁ ଚିହ୍ନି ନାହାନ୍ତି, ସେହିମାନେ କେବଳ ତା ପ୍ରତି ଅନାସ୍ଥା ପ୍ରଦର୍ଶନ କରନ୍ତି । ଓଡ଼ିଆର ଶକ୍ତି ନ ଥିଲେ ମଧୁସୂଦନ ନିର୍ଭୀକ ଭାବରେ ଏକାକୀ ଜାତିର ସ୍ୱାର୍ଥରକ୍ଷା ଲାଗି ଛିଡ଼ା ହୋଇ ପାରିଥାନ୍ତେ କି ? କେତେ ନିର୍ଯ୍ୟାତନା ସହିଛନ୍ତି, କେତେ ନୈରାଶ୍ୟ ମଧ୍ୟ ଦେଇ ତାଙ୍କୁ କାର୍ଯ୍ୟ କରିବାକୁ ପଡ଼ିଛି; କିନ୍ତୁ ତାଙ୍କ ଅଦମ୍ୟ ଉତ୍ସାହ କେବେ ସଙ୍କୁଚିତ ହୋଇ ନାହିଁ । ଇଂରେଜ ଶାସକମାନେ ତାଙ୍କ ପ୍ରତି ଯେଉଁ ଭକ୍ତି ପ୍ରଦର୍ଶନ କରନ୍ତି, ତାହା ଓଡ଼ିଆ ଜାତିର ବୋଲି ବୁଝିବାକୁ ହେବ; କାରଣ ସେ କଦାପି ନିଜ ସ୍ୱାର୍ଥ ପାଇଁ କୌଣସି ଶ୍ୱେତାଙ୍ଗ କର୍ମଚାରୀଙ୍କ ଦ୍ୱାରସ୍ଥ ହୋଇ ନ ଥିଲେ । ଯେଉଁ ଇଂରେଜମାନେ ତାଙ୍କ ସଂସ୍ପର୍ଶରେ ଆସିଥିବେ, ସେମାନେ ବୁଝିଥିବେ ତାଙ୍କ ଅନ୍ତରରେ କି ଶକ୍ତି କାର୍ଯ୍ୟ କରୁଥିଲା । ବର୍ତ୍ତମାନ ଦାସତ୍ୱଜୀବୀ ଓଡ଼ିଆ ପକ୍ଷରେ ମଧୁସୂଦନଙ୍କ ଆଦର୍ଶ ଅତି ଉଚ୍ଚ । ସେ ଯେଉଁ ଦିଗରେ ଗତି କରୁଥିଲେ, ତାକୁ ଅଧିକାଂଶ ଗ୍ରହଣୀୟ ବୋଲି କହିବେ; କିନ୍ତୁ ଗ୍ରାହକ କାହାନ୍ତି ? ନିସ୍ତେଜ ଓଡ଼ିଆଠାରେ ସେ ଯଥେଷ୍ଟ ବଳସଞ୍ଚାର କରିଦେଇ ଯାଇଛନ୍ତି । ଆଜି ଓଡ଼ିଆକୁ କେହି ହୀନ ବୋଲି ସାହସ କରି କହିପାରିବେ ନାହିଁ । ଦେଶବିଦେଶରେ ଓଡ଼ିଆର ସେ ଯେଉଁ ପରିଚୟ ଦେଇଯାଇଛନ୍ତି, କେବଳ ତାକୁ ଘୋଷି ହେଲେ ବିଶେଷ କିଛି ଲାଭ ନାହିଁ; ତାଙ୍କ ପ୍ରଦର୍ଶିତ ପଥକୁ ହିଁ ଅନୁସରଣ କରିବାକୁ ହେବ ।

ପ୍ରତିଭାର ବିକାଶକ୍ଷେତ୍ର ସର୍ବତ୍ର । ତା ପାଇଁ ବିଶିଷ୍ଟ କ୍ଷେତ୍ର ଆବଶ୍ୟକ ହୁଏ ନାହିଁ ବୋଲି ମନେ ହୁଏ । ମଧୁସୂଦନଙ୍କ ବାଲ୍ୟଜୀବନ ଗୋଟିଏ ସାମାନ୍ୟ ଗ୍ରାମରେ ଅତିବାହିତ ହୋଇଥିଲା । ଇଂରେଜୀ ଶିକ୍ଷାକୁ ଲୋକେ ସେତେବେଳେ ଭୟ କରୁଥିଲେ । କୁସଂସ୍କାର ଅତିମାତ୍ରାରେ ଓଡ଼ିଆ ସମାଜକୁ ପ୍ରଭାବିତ କରିଥିଲା । ସତେ ଯେପରି ମଧୁସୂଦନଙ୍କଠାରୁ ଆଲୋକ ପାଇବ ବୋଲି ବର୍ତ୍ତମାନ ଉତ୍କଳ ଅପେକ୍ଷା କରି ରହିଥିଲା । ତାଙ୍କ ପାଠପଢ଼ାର ବିବୃତି ଶୁଣିଲେ ଆଧୁନିକ ଯୁବକମାନେ ବିସ୍ମିତ ହେବେ । ସେ ଧନୀର ସନ୍ତାନ ନ ଥିଲେ; ତଥାପି ଅତିକଷ୍ଟରେ ହେଉ ପଛକେ, ସୁଦୂର କଲିକତା ନଗରୀରେ ତାଙ୍କର ଉଚ୍ଚଶିକ୍ଷା ଲାଭ ହୋଇଥିଲା । ପ୍ରଥମେ କଲିକତାରେ ପହଞ୍ଚି ଅପରିଚିତ ଅବସ୍ଥାରେ ସେ ଅନାହାରରେ ଦିନ କଟାଇଥିବାର ଆମ୍ଭେମାନେ ତାଙ୍କଠାରୁ ଶୁଣିଅଛୁଁ । ପ୍ରବଳ ଆକାଙ୍‌କ୍ଷା ଥିଲେ ଯେ ମନୁଷ୍ୟ ଯାବତୀୟ ବିଘ୍ନ ଅତିକ୍ରମ କରିପାରେ, ଏହା ତାଙ୍କର ଜୀବନରେ ପ୍ରମାଣିତ ହୋଇଛି । ଛାତ୍ରାବସ୍ଥା ପରେ ତାଙ୍କୁ କିଛିଦିନ କଷ୍ଟରେ ଜୀବିକା ନିର୍ବାହ କରିବାକୁ ପଡ଼ିଥିଲା । ଆଇନ-ବ୍ୟବସାୟରେ ପ୍ରବେଶ କଲାପରେ ଭାଗ୍ୟଲକ୍ଷ୍ମୀ ତାଙ୍କ ପ୍ରତି ସୁପ୍ରସନ୍ନା ହେଲେ । ସେ ଏହି ବ୍ୟବସାୟରେ ବାର୍ଷିକ ୫୦୦୦୦ଙ୍କା ପର୍ଯ୍ୟନ୍ତ ଉପାର୍ଜନ କରୁଥିଲେ । ଓଡ଼ିଶା ଗଡ଼ଜାତର ରାଜାମାନେ ଅନେକ ବିଷୟରେ ତାଙ୍କଠାରେ ଋଣୀ । ଆଇନ-ବ୍ୟବସାୟ ସଙ୍ଗେ ସଙ୍ଗେ ଉତ୍କଳୀୟ ଶିଳ୍ପର ଉନ୍ନତି ଉଦ୍ଦେଶ୍ୟରେ ମଧ୍ୟ ସେ ବିଶେଷ ବିଶିଷ୍ଟତା ପ୍ରଚୁର ତଥା ସାଧାରଣ ଶିଳ୍ପର ଉନ୍ନତିକଳ୍ପେ ଆଜୀବନ ବ୍ରତୀ ଥିଲେ । ତାଙ୍କ ପ୍ରତିଷ୍ଠିତ ଯୋତା ଓ ଅଳଙ୍କାର କାରଖାନା କାହାରିକୁ ଅବିଦିତ ନାହିଁ । ତାଙ୍କ କାରଖାନାର ଯୋତା ଆମେରିକା, ଜର୍ମାନୀ ପ୍ରଭୃତି ଦେଶରେ ବିକି ହେଉଥିଲା । ବିଦେଶୀମାନେ ମଧୁସୂଦନଙ୍କୁ ଜଣେ ଉଚ୍ଚ ଦରର ବ୍ୟବସାୟୀ ଓ କାରିଗର ବୋଲି ଜାଣିଥିଲେ । ଓଡ଼ିଶା ଯେ ଶିଳ୍ପୀର ଦେଶ, ଏଥିର ଦୃଷ୍ଟାନ୍ତ ଦେବାକୁ ସେ ଆଉ କାହାରି ପାଇଁ ରଖିଯାଇ ନାହାନ୍ତି । ଆଧୁନିକ ଶିକ୍ଷାପ୍ରଣାଳୀକୁ ସେ ପସନ୍ଦ କରୁ ନ ଥିଲେ । ତାଙ୍କ ମତରେ, ଶିକ୍ଷା ପାଇ ଲୋକେ ଜୀବିକା ନିର୍ବାହ କରି ନ ପାରିଲେ ଶିକ୍ଷାର ମୂଲ୍ୟ ନାହିଁ । ତାଙ୍କ ସୁରକ୍ଷିତ ଉଦ୍ୟାନ ତାଙ୍କୁ ଜଣେ ବିଚକ୍ଷଣ ଉଦ୍ଭିଦତତ୍ତ୍ୱବିତ୍‌ରୂପେ ପରିଚୟ ଦିଏ । ଶରୀର ବିଜ୍ଞାନରେ ମଧ୍ୟ ସେ ବିଶେଷ ପାରଦର୍ଶୀ ଥିଲେ । ନିଜ ଔଷଧର ବ୍ୟବସ୍ଥା ସେ ନିଜେ କରୁଥିଲେ । ଏପରି ନିୟମିତ ଜୀବନ ଯାପନ କରିବା ବ୍ୟକ୍ତି ଆମ୍ଭମାନଙ୍କ ମଧ୍ୟରେ ବିରଳ କହିଲେ ଚଳେ । ସଂକ୍ଷେପରେ କହିବାକୁ ଗଲେ,

ମଧୁସୂଦନ ଏକାଧାରରେ କବି, ଶିଳ୍ପୀ, କୃଷକ ଓ ଆଇନଜ୍ଞ ଥିଲେ । ପ୍ରତିଭା ନ ଥିଲେ ବିଭିନ୍ନ ଦିଗରେ ଏପରି ବିଚକ୍ଷଣ ଭାବରେ ବିକାଶ ସାଧିତ ହେବା ଅସମ୍ଭବ ।

କର୍ମୀଙ୍କର ସାଧନା ସମାପ୍ତ ହୁଏ ନାହିଁ । ତାଙ୍କର ଚିନ୍ତାସ୍ରୋତ ଅବିରତ ଗତି କରୁଥାଏ । ସେ ନିଜର ଆଦର୍ଶ ନିକେ ସୃଷ୍ଟି କରନ୍ତି । ଲୋକେ ତାଙ୍କୁ ଅନୁସରଣ କରନ୍ତି ; କିନ୍ତୁ ସମସ୍ତ ସମୟରେ ବିଭ୍ରାଟ ଜନ୍ମିବା ଅସମ୍ଭବ ନୁହେଁ । ଦୃଷ୍ଟି-ବୈଷମ୍ୟରେ ମତଦ୍ୱୈଧ ଘଟେ । ମଧୁସୂଦନଙ୍କ ଜୀବନରେ ଏପରି ଘଟନା ଘଟିଯାଇଛି । ସେ ଓଡ଼ିଆ ଜାତୀୟ ଜୀବନର ଭିତ୍ତି ସ୍ଥାପନ କରି ଉତ୍କଳ କନ୍‌ଫରେନ୍‌ସକୁ ଯେ ଗ୍ରୁପରେ ଗଢ଼ିଥିଲେ ଓ ତାର ଲକ୍ଷ୍ୟ ଯାହା ଥିଲା, ସେଥିପ୍ରତି ପରବର୍ତ୍ତୀ ଦେଶନାୟକମାନେ ଉଦାସୀନ ହେଲେ । ଶେଷରେ ଏହି କନ୍‌ଫରେନ୍‌ସର ବାର୍ଷିକ ଅଧିବେଶନ ସୁଦ୍ଧା ହୋଇପାରିଲା ନାହିଁ । ଦେଶରେ ସେ ଥିଲେ ଜଣେ ନାୟକ; କିନ୍ତୁ ତାଙ୍କୁ ଅନୁସରଣ କରି ଯେଉଁମାନେ ନାୟକ ବୋଲି ଗଣ୍ୟ ହେଲେ, ସେମାନଙ୍କ ଦୃଷ୍ଟି ଗଲା ଭିନ୍ନ ଦିଗରେ । ଏହା ଉତ୍କଳ ପକ୍ଷରେ ଗୌରବର ବିଷୟ କି ନା, ସେହି ଦେଶନାୟକମାନେ ଜାଣନ୍ତି । ଜଣଙ୍କର ଦେଶପ୍ରେମ ଅନ୍ୟମାନଙ୍କଠାରେ ଭିନ୍ନ ଆକାରରେ ପ୍ରକାଶ ପାଇଲା । ବିଶେଷତଃ ରାଜନୀତି କ୍ଷେତ୍ରରେ ବେଶି ଦିନ ଜାତୀୟ ସ୍ୱାର୍ଥ ନିୟନ୍ତ୍ରିତ କରିବା ଖୁବ୍ କମ୍ ଲୋକଙ୍କ ପକ୍ଷରେ ସମ୍ଭବପର ହୋଇଥାଏ । ରାଜନୀତି ଯୋଗୁଁ ଅବଶ୍ୟ ପ୍ରତି ଦେଶରେ ବିଭିନ୍ନ ମତାବଲମ୍ବୀ କର୍ମୀମାନେ ଥାଆନ୍ତି । ତେଣୁ ମଧୁସୂଦନଙ୍କ ସହିତ ରାଜନୈତିକ ବିଷୟରେ ଏକମତ ନ ହେବାଦ୍ୱାରା ଓଡ଼ିଆ ଜାତି ତାଙ୍କୁ କୌଣସି ଅବମାନନା ଦେଖାଇ ନାହିଁ ବୋଲି ମନେ ହୁଏ । ସେ ଯାହା ହେଉ, ଶେଷ ଜୀବନରେ ସେ ରାଜନୀତି କ୍ଷେତ୍ରରୁ ଅବ୍ୟାହତି ନେଇଥିଲେ । ଅସହଯୋଗ ଆନ୍ଦୋଳନରେ ତାଙ୍କର ଆଦୌ ବିଶ୍ୱାସ ନ ଥିଲା । ଏହି ଆନ୍ଦୋଳନ ଫଳରେ ଭାରତର ଅନିଷ୍ଟ ହେବ ବୋଲି ସେ ଆଶଙ୍କା କରିଥିଲେ । ଅସହଯୋଗ ଆନ୍ଦୋଳନରେ ଯୋଗ ନ ଦେବାଦ୍ୱାରା କେହି କେହି ଭାବିଥିବେ, ସେ ସରକାରଙ୍କୁ ଭୟ କରି ଏପରି ନୀରବ ରହିଲେ; କିନ୍ତୁ ବ୍ୟକ୍ତିଗତ ଭାବରେ ଯେ ତାଙ୍କ ସମ୍ପର୍କରେ ନ ଆସିଛନ୍ତି, ସେ ତାଙ୍କ ସାହସର ପରିଚୟ ପାଇ ନ ଥିବେ । ଓଡ଼ିଆ ଯେ ନିର୍ଭୀକ, ଏହା ମଧୁସୂଦନ ସର୍ବ ପ୍ରଥମେ ଇଂରେଜମାନଙ୍କୁ ଜଣେଇ ଦେଇଛନ୍ତି । ଏଥିରେ ତାଙ୍କ ଚରିତ୍ରର ମହନୀୟତା ସୁସ୍ପଷ୍ଟଭାବେ ପ୍ରମାଣିତ ହୋଇଅଛି । ମଧୁସୂଦନ ଅସାଧାରଣ ଥିଲେ ; ସମୟର ସ୍ରୋତରେ ସେ ଭାସି ଯାଉ ନ ଥିଲେ । ଉତ୍କଳର କଲ୍ୟାଣସାଧନ ତାଙ୍କ ଜୀବନର ବ୍ରତ ଥିଲା । ହବାକ୍ କମିଟିରେ ଭାଷା ଉତ୍କଳ ପ୍ରଦେଶର କାର୍ଯ୍ୟ ସମାପନ କରି ସେ ପ୍ରଥମେ ଉତ୍କଳର ସ୍ୱତନ୍ତ୍ରୀକରଣ ପାଇଁ ଯେଉଁ ସୂଚନା ଦେଇଥିଲେ, ଉତ୍କଳୀୟମାନଙ୍କ ଦୁର୍ଭାଗ୍ୟରୁ ସେ ଆଜି ସେଥିରୁ ମଧ୍ୟ ଅବସର ନେଲେଣି ।

ମଧୁସୂଦନ ଆମ୍ଭମାନଙ୍କୁ ଯାହା ଦେଇଯାଇଅଛନ୍ତି, ସେହି ଅମୂଲ୍ୟ ସମ୍ପଦକୁ ସମ୍ବଳ କରି ଆମ୍ଭେମାନେ ବର୍ତ୍ତମାନ ଉତ୍କଳର ଗଠନକ୍ରିୟାରେ ଅଗ୍ରସର ହେବା । ନଶ୍ୱର ଜୀବନରେ ନିଃସ୍ୱାର୍ଥ କର୍ମ କିପରି କରିବାକୁ ହୁଏ, ତାର ଜ୍ୱଳନ୍ତ ଉଦାହରଣ ସେ ଦେଖାଇଦେଇ ଗଲେ । ତାଙ୍କର ବିଦାୟ ସଙ୍କେତ ଆଗରୁ ନୀଳାଚଳପତି ଜଣାଇ ଦେଲେ— ବଡ଼ ଦେଉଳର ବଡ଼ଠାକୁର ଚକ୍ର ପଡ଼ିବାବେଳେ ଉତ୍କଳମାତାର ଶ୍ରେଷ୍ଠ ମୁକୁଟମଣି ଖସି ପଡ଼ିଲା !!

# ତିନି

ପ୍ରଭାତର ମୃଦୁ ମନ୍ଦ ହିଲ୍ଲୋଳରେ କେତେ ମାନବର ଶାନ୍ତ ହୃଦୟ ଜୀବନର ଅତୀତ ଦୁଃଖରାଶିକୁ ପାସୋରିଦିଏ । କ୍ଷୁବ୍ଧ ଯୌବନର ଅତୃପ୍ତ ବାସନା କାଳଚକ୍ରର ପରିବର୍ତ୍ତନରେ ନୂତନ ମାର୍ଗ ଅନୁସରଣ କରେ; ସ୍ନେହର ବନ୍ଧନ ନିର୍ମମତାରେ ପରିଣତ ହୁଏ । ଅପଲକ ଦୃଷ୍ଟିରେ ଯେ ସୌନ୍ଦର୍ଯ୍ୟର ମହନୀୟତା ଉପଲବ୍ଧ ହୋଇଥାଏ, ତାକୁ ପୁଣି ଦୃଷ୍ଟି ଅନ୍ତରାଳରେ ରଖିବାକୁ ମନୁଷ୍ୟ ଚେଷ୍ଟିତ ହୁଏ । ନିଭୃତରେ ଯାହାର ଆରାଧନା କ୍ଷିପ୍ତ ପ୍ରାଣର ଏକମାତ୍ର ଆଶ୍ୱାସନା ହୋଇଥାଏ; ତାକୁ ପୁଣି ଭୁଲିଯିବା ମନୁଷ୍ୟର କେଉଁ ଧର୍ମ ? ବିଶ୍ୱପ୍ରକୃତିରେ ଯେଉଁ ଅମର ରାଗିଣୀ ଅସୀମ ଛନ୍ଦରେ ବିଷୟାକୃଷ୍ଟ ମନକୁ ଅତୀନ୍ଦ୍ରିୟ ରାଜ୍ୟକୁ ଟାଣିନିଏ ଓ ଯେଉଁ କମନୀୟ-କାନ୍ତ ଲଲନାର ଲଳିତ ସ୍ୱରରେ ମୁଗ୍ଧ ପ୍ରାଣ କେତେ ଆଶାର ସ୍ୱପ୍ନ ଦେଖେ—ସେ ଦୁହିଁଙ୍କୁ ଉପେକ୍ଷା କରି ମନୁଷ୍ୟ କାହାର ନିର୍ଦ୍ଦେଶରେ କୋଳାହଳମୟ ଜଗତକୁ ସୁଖର ଆକର ମନେ କରେ ? ଯେ ସୌନ୍ଦର୍ଯ୍ୟର ପୂଜାରେ ଆତ୍ମବିକାଶର ପଥ ସୁଗମ ହୋଇଉଠେ, ସେଥିରେ ପାପ-ପଙ୍କ ଲେପନ କରି ମନୁଷ୍ୟ କେଉଁ ସୁଖ ଅନୁଭବ କରେ ? ଯେ ସୁନ୍ଦରୀର ସରସ ସମ୍ପର୍କରେ ପୁରୁଷ ଅଲକ୍ଷିତରେ କେତେ ପ୍ରେରଣା ପାଇ ଜୀବନର ଗତିକୁ ମାର୍ଜିତ କରିନିଏ ଓ ଯାହାର ଅମଳ ଆକର୍ଷଣରେ ମନୁଷ୍ୟ ଦେବତ୍ୱ ଲଭ କରେ, ତାକୁ ଘୃଣ୍ୟ ଚିତ୍ରରେ ଚିତ୍ରିତ କରି ସଂସାରବାସୀ କାହିଁକି ଜଡ଼ତାର ପରିଚୟ ଦିଅନ୍ତି ? ହୃଦୟ-ତନ୍ତ୍ରୀରେ ଯେ ରାଗିଣୀ ସୁସ୍ୱରରେ ବାଜିଉଠେ, ତାକୁ କାହାର ପ୍ରଭାବ କ୍ଷୀଣ କରି ନୈରାଶ୍ୟର ଗ୍ରନ୍ଥିକୁ ସମ୍ମୁଖରେ ଆଙ୍କିଦିଏ ? ଯେ ଭାବ ଜୀବନର ଦୈନ୍ୟକୁ ଦୂର କରି କଳ୍ପନାରଚିତ ଗୋଟାଏ ଅପାର୍ଥିବ ଉପଭୋଗ୍ୟ ବସ୍ତୁ ସୃଷ୍ଟି କରିଥାଏ, ତାକୁ ସହସା ଭିନ୍ନ ଆଲୋକରେ କିଏ ରଞ୍ଜିତ କରେ? ଯାହାକୁ ଅବଲମ୍ବନ କରି ମନୁଷ୍ୟ ଶତ ବାଧା ଅତିକ୍ରମ କରିଥାଏ, ତାକୁ କାହା ଆଦେଶରେ ଅକାତରରେ ତ୍ୟାଗ କରେ ? ସୁଖର ସଂସାର ଚିତ୍ର କରି ନିଃସ୍ୱାର୍ଥ ପ୍ରେମ ବିନିମୟରେ କାଳଫଣିନୀର ବଶ୍ୟତା ସ୍ୱୀକାର କରିବାକୁ କିଏ ପ୍ରେରଣା ଦିଏ ? ଏହିସବୁ ଅବିରାମ ପରିବର୍ତ୍ତନ ଦେଖି ମାନବ-ଚରିତ୍ରକୁ ବିଶ୍ଳେଷଣ କଲେ ଗୋଟାଏ ଭୀଷଣ ଜଟିଳତା ପ୍ରକଟିତ ହୁଏ ।

ମନ ଓ ଚରିତ୍ର ଘନିଷ୍ଠଭାବରେ ସଂପୃକ୍ତ । ମାନସିକ ସଂଯମ ପ୍ରତି ଦୃଷ୍ଟି ନ ରଖି ଚରିତ୍ରର ଶୁଦ୍ଧତା ପ୍ରମାଣ କରିବା ବାତୁଳତା ମାତ୍ର । ମନ ହିଁ ଯାବତୀୟ ଶିକ୍ଷାର କେନ୍ଦ୍ର । ଅନ୍ତରର ଭାବ ଯେନ କର୍ମଜଗତର ସ୍ଥିତି ଓ ପରିଚାଳନା । ସଞ୍ଚିତ ବାସନାରେ କର୍ମସୂତ୍ର କ୍ରମଶଃ ଦୀର୍ଘ ହୋଇଥାଏ । ଅନେକ ସମୟରେ କର୍ମକ୍ଷେତ୍ର ବଡ଼ ବିଭ୍ରାଟ ଆକାର ଧାରଣ କରେ । ମନୁଷ୍ୟ ଯାହାକୁ ପାଇବାକୁ ଅଜସ୍ର ସାଧନା କରିଥାଏ, ତାକୁ ପାଏ ନାହିଁ । ସେ ମନେ କରେ, ଜୀବନରେ ଲକ୍ଷ୍ୟ ନାହିଁ; ଗୋଟାଏ ଉଦ୍ଦେଶ୍ୟହୀନ ବିଫଳ କର୍ମସ୍ରୋତ ତାକୁ ଟାଣି ନେଉଛି । ଆତ୍ମନିର୍ଭରଶୀଳତା ଉପରେ ବିଶ୍ୱାସ ରଖିବାକୁ ସେ କୁଣ୍ଠିତ ହୁଏ । ବାସ୍ତବରେ କର୍ମଜଗତର ଗତି ଅଗଣିତ; କିନ୍ତୁ ସେହି ଅଗଣିତତା ମଧ୍ୟରେ ଗୋଟାଏ ଧାରା ଅନ୍ତଃସଲିଳା ଫଲ୍ଗୁପରି ସର୍ବଦା ବହମାନା । ମନୁଷ୍ୟ ତାକୁ ଦେଖିପାରେ ନାହିଁ । ନିଜର ଭାଗ୍ୟକୁ କେତେ ଧିକ୍କାର ଦିଏ । ସମସ୍ତ ଜୀବନଟାକୁ ତୁଚ୍ଛ ମନେ କରି କଟାଇ ଦେବା ମଧ୍ୟ ତା ପକ୍ଷରେ ଅସମ୍ଭବ ହୁଏ ନାହିଁ । ଉପସ୍ଥିତ ଜୀବନଦଶାରେ ମନୁଷ୍ୟ ଯେତେବେଳେ ସାମାନ୍ୟ ଶିଶୁପରି ଚଞ୍ଚଳ ହୋଇଉଠୁଛି ଏବଂ ପ୍ରତି ଘଟଣାର ସଂଘର୍ଷରେ ନିଜର ନିଜତ୍ୱ ରକ୍ଷା ପ୍ରତି ଦୃଷ୍ଟି ଦେଉ ନାହିଁ, ସେତେବେଳେ ତାର ଅତୀତ ଜୀବନର କର୍ମ ଓ ଭାବନାର ସୁନିୟନ୍ତ୍ରଣରେ ଗୋଟାଏ ସରଳ ଅଦୃଷ୍ଟ ସୃଷ୍ଟି ହେବା ଅସମ୍ଭବ । ସୂକ୍ଷ୍ମଦୃଷ୍ଟିରେ ଆଲୋଚନା କଲେ ଦେଖାଯିବ ଯେ, ମାନସିକ ଚଞ୍ଚଳତା ଓ ବିକୃତି ଏସବୁ ବିଭ୍ରାନ୍ତିର ମୂଳକାରଣ । ମନକୁ ବାଦ୍ ଦେଇ ମନୁଷ୍ୟକୁ ସଂସାର କ୍ଷେତ୍ରରେ ଛାଡ଼ିଦେଲେ ସଂସାରଟା ବୈଚିତ୍ର୍ୟହୀନ ହୋଇପଡ଼ନ୍ତା; ସଂସାରଟା ଯେ ଗୋଟାଏ ପ୍ରକାଣ୍ଡ ଜୀବଶାଳା

(ଚଢ଼ୁଆଖାନା), ଏହା କେହି ହୃଦୟଙ୍ଗମ କରିପାରନ୍ତି ନାହିଁ । ଆଜି ଏହି ସାମଞ୍ଜସ୍ୟହୀନ ସଂସାରରେ ନୂତନତ୍ୱ ବୋଲି ଗୋଟାଏ ଜିନିଷ ଦେଖିବାକୁ ମିଳନ୍ତା ନାହିଁ । ପୁନଶ୍ଚ ଏହି ପ୍ରସଙ୍ଗରେ କୁହାଯାଇପାରେ ଯେ, ଆତ୍ମବଞ୍ଚନା ଛଡ଼ା ମାନସିକ ବିକୃତି କିମ୍ବା ଚଞ୍ଚଳତାର ଅନ୍ୟ କୌଣସି କାରଣ ନାହିଁ । ମୂଳରେ ଆତ୍ମବଞ୍ଚନା ଥାଇ ଯଦି ଗୋଟାଏ ବିଚିତ୍ର ସଂସାର ଗଢ଼ି ଯାଇଛି, ତାହା ହେଲେ ଦୋଷ କିମ୍ବା ଗୁଣକୁ ସମାନ ଚକ୍ଷୁରେ ଦେଖିନେବା ଉଚିତ ନୁହେଁ କି ?

ଯେ ନିୟମର ଅଧୀନତାରେ ବିଶ୍ୱପ୍ରକୃତିର ଆଲୋଡ଼ନ ସମ୍ଭବପର ହୋଇଅଛି, ତାହାର ଅଧୀନତାରେ କ୍ଷୁଦ୍ର ମାନବର କର୍ମଗ୍ରନ୍ଥି ନିତ୍ୟ ନୂତନ ଆକାରରେ ପ୍ରକାଶିତ ହେବା କଣ ସମ୍ଭବପର ନୁହେଁ ? ଏହି ରୀତି ଅନୁସରଣ କରି ଯଦି ଜଣେ ସୌନ୍ଦର୍ଯ୍ୟପିପାସା ମେଣ୍ଟାଇବା ପାଇଁ ଭ୍ରମରର ଆକୁଳ ଗୁଞ୍ଜନରେ ମନପ୍ରାଣ ଢାଳିଦେଲି ଓ ଭ୍ରମର ପରି ଆଚରଣ କରି କେତେ ସୁନ୍ଦରୀର ସୁକୋମଳ ଅନ୍ତରକୁ ନଷ୍ଟ କରିଦେଲି, ତାହା ହେଲେ ଦୋଷ କାହାର ? ନୀରସ ଜୀବନରେ ସରସତା ଆଣି ପୁଣି ଗୋଟାଏ ବିକ୍ଷୁବ୍ଧ ଭାବ ସୃଷ୍ଟି କଲେ ସ୍ରଷ୍ଟାର ଉଦ୍ଦେଶ୍ୟ କେତେ ଦୂର ସାଧିତ ହୋଇପାରେ ? ସବୁ ଯଦି ଲୀଳାମୟଙ୍କର ଅସୀମ ଲୀଳାରୂପେ ଗୃହୀତ ହୁଏ, ତାହା ହେଲେ ଜଗତରେ କାହାକୁ ଧରି ହେବ ନାହିଁ । ଯେଉଁ ସୌନ୍ଦର୍ଯ୍ୟପୂଜାରେ ମନୁଷ୍ୟର ସମସ୍ତ ସାଧନା ନିୟୋଜିତ ହୋଇଥାଏ, ତାକୁ ଅଲକ୍ଷିତରେ ଅନ୍ତର କରିଦେଲେ କିମ୍ବା ପୂଜାର ବିଗ୍ରହଟିକୁ ବିକଳାଙ୍ଗ କରିଦେଲେ ସେ ଅବଲମ୍ବନଶୂନ୍ୟ ହୋଇପଡ଼େ । ଯଦି ପୂଜକ ସାଧାରଣ ଶ୍ରେଣୀର ହୋଇଥାଏ, ତାହା ହେଲେ ତାକୁ ଭୁଲାଇଦେବା ପାଇଁ ଅନ୍ୟ ବିଗ୍ରହର ପ୍ରତିଷ୍ଠା କରାଯାଇପାରେ । ଶିଶୁର ମନ ଭୁଲାଇବା ପାଇଁ ପିତାମାତା ବିଭିନ୍ନ ଖେଳନାର ସାହାଯ୍ୟ ନିଅନ୍ତି; କିନ୍ତୁ ଶିଶୁଟି ଏକଜିଦିଆ ହେଲେ ସବୁ ପ୍ରଯତ୍ନ ବୃଥା ହୋଇଥାଏ । କେହି କେହି କହି ପାରନ୍ତି ଭଗବାନ ପରି ମନୁଷ୍ୟ ନିଜର ଭାଗ୍ୟଡ଼ୋରି ସୃଷ୍ଟି କରେ ଏବଂ ସେଥିରେ ଅନନ୍ତ କାଳ ପର୍ଯ୍ୟନ୍ତ ଝୁଲୁଥାଏ । ତାର ସୁଖ ଓ ଦୁଃଖ ଭୋଗରେ ବିଧାତାଙ୍କର କୌଣସି ସମ୍ପର୍କ ନାହିଁ । ଏପରି ସ୍ଥଳରେ ଏତିକି ମାତ୍ର କୁହାଯାଇପାରେ ଯେ, ନିୟାମକଙ୍କୁ ବାଦ୍ ଦେଇ ନିୟମକୁ ସ୍ୱୀକାର କରିବା ସମ୍ଭବପର ନୁହେଁ । ନିୟମର ଲଙ୍ଘନ କିମ୍ବା ପାଳନରେ ଧାତା ଅସଂପୃକ୍ତ ରହିପାରନ୍ତି; କିନ୍ତୁ ନିୟମଟିକୁ ପ୍ରଚଳନ କରିବା ପାଇଁ ତାଙ୍କୁ ଦାୟିତ୍ୱ ନେବାକୁ ପଡ଼ିଥିଲା ।

ବଞ୍ଚନାକୁ ଅନ୍ୟ ପକ୍ଷରେ ମାୟାର ଖେଳ ବୋଲି ଧରିଗଲେ ବଞ୍ଚକର ସ୍ୱରୂପ ନିର୍ଦ୍ଦେଶ ନ କରି ଚୁପ୍ ରହିବା ଭଲ । ଏହି ସମ୍ପର୍କରେ ସମସ୍ତ ଜଗତଟା ବଞ୍ଚିତ ହେବା ପାଇଁ ସୃଷ୍ଟ ବୋଲି ଅନୁମିତ ହୋଇପାରେ । ରୂପର ମୋହରେ ଦର୍ଶକ ଯେ ରୂପ ଦେଖେ, ତା କଅଣ ଠିକ୍ ? ସ୍ତାବକର ସ୍ତୁତିଗାନରେ ଯେ କର୍ଣ୍ଣତୃପ୍ତିକର ଆଶ୍ୱାସନା ଆସେ, ସେଥିର ପ୍ରକୃତ ମୂଲ୍ୟ କେତେ ? ହୃଦୟର ଆବେଗରେ ଯେ ପ୍ରଣୟବାଣୀ ନିଃସୃତ ହୁଏ, ତାହା କଅଣ ଅନ୍ତରର ସତ୍‌ପରିଚୟ ଦିଏ, ନା ମୁହୂର୍ତ୍ତିକର ଉତ୍ତେଜନାରେ ଗୋଟାଏ ସ୍ୱପ୍ନରଚିତ ନିସର୍ଗପୁରୀ ସୃଷ୍ଟି କରେ ? ଜ୍ୟୋତ୍ସ୍ନା-ପ୍ଲାବିତ ବସନ୍ତ ଯାମିନୀର ମୃଦୁ ହିଲ୍ଲୋଳ ସ୍ପର୍ଶରେ କେତେ ଶୀର୍ଣ୍ଣ ହୃଦୟ ପଲ୍ଲବିତ ହୋଇଉଠେ; କିନ୍ତୁ କିଏ କହିପାରେ ଅକସ୍ମାତ୍ ଗୋଟାଏ ବିପର୍ଯ୍ୟୟ ଆସି ନିଦାଘର ଗ୍ରୀଷ୍ମଜ୍ୱାଳା ମଧ୍ୟରେ ସବୁ ଆଶାଭରସା ପୁଣି ଲୋପ କରି ଦେଇପାରେ ! ପଲକେ ପଲକେ କେତେ ରଙ୍ଗର ଚିତ୍ର ସଂସାରର ସମ୍ମୁଖରେ ଦେଖା ଦେଇ ଲୁଚି ଯାଉଛି । ଗୋଟାଏ ଗୋଟାଏ ଅସାଧାରଣ ଦୃଶ୍ୟ ଦର୍ଶନରେ ତାର ମନ ଓ ପ୍ରାଣ ଏକାବେଳକେ ନିସ୍ତେଜ ହୋଇପଡ଼ୁଛି । ଏଥିରେ ମଧ୍ୟ କୌଣସି ସାମଞ୍ଜସ୍ୟ ଦେଖାଯାଉ ନାହିଁ । ପ୍ରକୃତିଗତ ଆକର୍ଷଣ ପ୍ରଭାବରେ ଜଣେ ଯାହାକୁ ଏକମାତ୍ର ଅବଲମ୍ବନ କରି ଧରିଛି ଏବଂ ଯାହାର ତିରୋଧାନରେ ସମସ୍ତ ଜଗତକୁ ଅନ୍ଧକାରମୟ ଦେଖୁଛି, ଅନ୍ୟ ଜଣେ ସେହି ବିଶିଷ୍ଟ ଦର୍ଶନର ଅଭାବରେ ଲେଶମାତ୍ର ନିରାନନ୍ଦତା ଅନୁଭବ କରୁ ନାହିଁ । କେବଳ ଏତିକି ନୁହେଁ, ସମୟଭେଦରେ ଦ୍ରଷ୍ଟାର ମାନସିକ ଅନୁଭୂତି ଅନୁସାରେ ବିଶେଷ ପରିବର୍ତ୍ତନ ଦେଖାଯାଏ । ଯେ ହୃଦୟ କ୍ଷୁବ୍ଧ ହୋଇ ଉଠିଥାଏ, ତାହା ପୁଣି କାହିଁକି ପ୍ରଶାନ୍ତ ଭାବ ଧାରଣ କରେ ? ଜୀବଜଗତରେ ମନୁଷ୍ୟ ଛଡ଼ା ଅନ୍ୟ ପ୍ରାଣୀ ଉପର୍ଯ୍ୟୁକ୍ତ ପ୍ରଭାବର ଅନୁବର୍ତ୍ତୀ ନୁହନ୍ତି ।

ମନୁଷ୍ୟ ମନେ ମନେ କେତେ ଆଶାର ସ୍ୱପ୍ନ ଦେଖେ, ଯୌବନର ଉନ୍ମାଦନାରେ ସେ କେତେ କୁହୁକମୟୀ ଶକ୍ତି ଅନୁଭବ କରେ । କଳ୍ପନାଚକ୍ଷୁରେ କେତେ ସୁଖର ସୌଧ ନିର୍ମାଣ କରିଯାଏ । କେତେ ଅସାମାନ୍ୟା ଲଲନାର ମାନସୀ ପ୍ରତିମା ସୃଷ୍ଟି କରି ଅପରିସୀମ ଆନନ୍ଦ ପାଏ । ଦୁର୍ଦ୍ଦିନର ଝଞ୍ଜାକୁ ସମ୍ପୂର୍ଣ୍ଣରୂପେ ପାସୋରି ପକାଏ । ମନେ କରେ, ସଂସାରଟା ତା

ପକ୍ଷରେ ଗୋଟାଏ ବିଳାସଭବନ । ଏହି ପର୍ଯ୍ୟାୟରେ ଆସେ ଗୋଟାଏ ଉନ୍ମୂଳ ବାତ୍ୟା—ଯାହାର ଅସ୍ଥିର ପ୍ରକମ୍ପନରେ ଦୁର୍ବଳ ମାନବ ଧୈର୍ଯ୍ୟର ଅଚଳକୁ ଚାଲିଯାଏ, ପ୍ରକୃତିର ସୌମ୍ୟଭାବ କେଉଁଆଡେ଼ ଲୋପ ପାଇଯାଏ, ବିଳାସର ରଙ୍ଗଭୂମି ମଶାଣିକାରେ ପରିଣତ ହୁଏ । ଗୋଟାଏ ବିକଳ ଦୃଶ୍ୟରେ ହୃଦୟ ବିଦୀର୍ଣ୍ଣ ହେବାକୁ ବସେ । ଏ ସମସ୍ତ ମୂଳରେ ମନର କାର୍ଯ୍ୟକାରୀ ଶକ୍ତି ନିବିଡ଼ ଜାଗ୍ରତ ରହିଥାଏ । ଭାଗବତକାର ଲେଖିଗଲେ—"ମନର ମୂଳେ ଏ ଜଗତ ।" ଜଗତର ସ୍ଥିତି ପାଇଁ ସେ ମନକୁ କାହିଁକି ନିର୍ଦ୍ଦେଶ କରିଦେଇ ଗଲେ ? ଜଗତରେ ଯେତେ ପରିବର୍ତ୍ତନ ଘଟୁଛି କିମ୍ବା ଯେତେ ନୂତନତ୍ୱର ସୂତ୍ରପାତ ହେଉଛି, ସେ ସମସ୍ତର ଉତ୍ପତ୍ତି ମାନସ-ରାଜ୍ୟରେ ଅବଶ୍ୟ ହୋଇଥାଏ । କେତେବେଳେ ଓ କିପରି ଭାବରେ ମାନସିକ କ୍ରିୟା ବାହ୍ୟ ସାଂସାରିକ କ୍ଷେତ୍ରରେ ପ୍ରକାଶ ପାଏ, ତାହା ସ୍ଥିର କରିବା ସହଜ ନୁହେଁ । ଜଗତର ଯାବତୀୟ ଜଟିଳତା ଭେଦ କରି ଭାଗବତକାର ଦେଖିଲେ, ମନ ଛଡ଼ା ଅନ୍ୟ କାର୍ଯ୍ୟକାରୀ ଶକ୍ତି ନାହିଁ । ତେବେ ଏପରି ବୈଷମ୍ୟ ଦୃଷ୍ଟ ହେବାର କାରଣ କଣ ? ଏକ ଶକ୍ତିର ଭିନ୍ନ ଭିନ୍ନ କ୍ରିୟା-କୌଶଳରେ ଏପରି ଅସାମଞ୍ଜସ୍ୟ ସୃଷ୍ଟ ହେବା କିଛି ବିଚିତ୍ର ନୁହେଁ । କେବଳ ମନକୁ ନ ଧରି ପ୍ରକୃତିକୁ ତା ସହିତ ସଂଯୋଗ କଲେ ଜଗତର ଜଟିଳତା ସ୍ପଷ୍ଟ ଭାବରେ ପ୍ରତୀୟମାନ ହୁଏ ।

ପ୍ରସ୍ଫୁଟିତ କଳିକାର ସ୍ନିଗ୍ଧ ସୌରଭରେ ଚଞ୍ଚଳ ଯୌବନ ଯେତେବେଳେ ଉଚ୍ଛ୍ୱଳ ହୋଇଉଠେ ଓ ଆକାଶରେ କେତେ ଅଙ୍ଗଲତା ସ୍ୱର୍ଗୀୟ ଚାଲିଯାଏ, ସେତେବେଳେ ଗୋଟାଏ ଉନ୍ମାଦନାରେ ଜୀବନର ସହସ୍ର ନିର୍ଯ୍ୟାତନା ଓ ଯନ୍ତ୍ରଣା କେଉଁଆଡ଼େ ଉଭେଇଯାଏ । ଫାଲ୍‌ଗୁନ ସନ୍ଧ୍ୟାର ସ୍ୱାଗତ ଅଭିବାଦନରେ ପ୍ରେମର ବନ୍ୟା ପ୍ରବଳ ହୋଇଉଠେ, ବିଶ୍ୱର ମୋହନ ରାଗିଣୀ ପ୍ରାଣିଜଗତକୁ ସତେଜ କରିଦିଏ । ଉନ୍ମୁକ୍ତ ହୃଦୟରେ ଜଣେ ଜଣକୁ ଅପେକ୍ଷା କରେ ତାର ସର୍ବସ୍ୱ ଦେଇ ନିଜର କରି ନେବାକୁ; କିନ୍ତୁ ପରିଣାମ କଣ ହୁଏ ? ଗାନର ସୁମଧୁର ଲହରୀ ଉଠିଲାବେଳେ ବୀଣାତନ୍ତ୍ରୀ ହଠାତ୍ ଛିଣ୍ଡିଗଲେ ଗୋଟାଏ ଯେପରି ବେସୁରା ରାଗିଣୀ ବାଜି ଉଠି ସବୁ ନୀରବ ହୋଇଯାଏ, ସେହିପରି କ୍ଷିପ୍ର ଯୌବନର ଉଦ୍ଦାମ ଭାବ କୌଣସି ଗୋଟାଏ ଆଘାତ ପାଇଲେ ସମ୍ପୂର୍ଣ୍ଣରୂପେ ଭିନ୍ନ ଆକାର ଧାରଣ କରେ । ମୁହୂର୍ତ୍ତିକର ଅବକାଶରେ ମନୁଷ୍ୟ କେତେ ସୁଖସ୍ୱପ୍ନ ଦେଖି ପୁଣି ନୈରାଶ୍ୟ ଭାରକୁ ହୃଦୟରେ ବହନ କରି ଅଗ୍ରସର ହୁଏ । ଯଦି କୌଣସି ବିଷୟ କିମ୍ବା ଅବସ୍ଥାର ସ୍ଥିରତା ନାହିଁ, ତାହାହେଲେ ଜଗତର ହାହାକାର ଓ ଆନନ୍ଦ-କୋଳାହଳ ମଧ୍ୟରେ ପ୍ରଭେଦ କଣ ? ଏସବୁ ନିରର୍ଥକ ହେଲେ ପୂଜକ କାହିଁକି ତାର ନୈବେଦ୍ୟ ଘେନି ପୂଜା ପାଇଁ ପ୍ରସ୍ତୁତ ହେବ ? ସୃଷ୍ଟିଲୀଳା ଦେଖି ମାନବ କାହିଁକି ବିଶ୍ୱର ଅସୀମ ଶକ୍ତି ଅନୁଭବ କରିବ ? ବାଳକଙ୍କର ମତଟି ହୃଦୟଙ୍ଗମ କରି ସେ ନୀରବ ହୋଇ ରହିବ । ଅଗଣିତ ଉଚ୍ଛ୍ୱଳ ତରଙ୍ଗ ଜାଲ ମଧ୍ୟରେ ସ୍ରୋତର ଗତି ନିର୍ଣ୍ଣୟ କରିବା କଷ୍ଟକର । ବିଶେଷତଃ ବହିର୍ଦୃଷ୍ଟିରେ ଏହାର ଚିତ୍ର ଅନ୍ୟ ପ୍ରକାର ଦେଖାଯାଏ । ସାଧାରଣ ପୂଜକ ହୃଦୟର ଚପଳତାବଶତଃ ଗୋଟିକ ପରେ ଗୋଟିଏ ଆଧାରକୁ ଅନୁସରଣ କରି ଅନେକ ଥର ଅର୍ଘ୍ୟ ଅର୍ପଣ କରେ; କିନ୍ତୁ କୌଣସି ସମୟରେ ଆତ୍ମତୃପ୍ତି ଅନୁଭବ କରିପାରେ ନାହିଁ । ଜଗତ୍ ତାହା ପାଇଁ ନାନା ଭାବରେ ପ୍ରତିପନ୍ନ ହୁଏ । ସେ ଦେଖେ—ରମଣୀର ମୁଖମଣ୍ଡଳରେ ଯେ ଉନ୍ମାଦନା ଅଛି, ପୁଷ୍ପର ଅନିନ୍ଦ୍ୟ ଆଘ୍ରାଣରେ ତାହା ନାହିଁ; ସମୀରଣର ମୃଦୁସ୍ପର୍ଶ ଓ ପ୍ରେମିକାର ଅଞ୍ଚଳର ହିର, ଜବାପୁଷ୍ପ ଓ ଯୁବତୀର ରକ୍ତିମ ଓଷ୍ଠାଧାର, ସୁନ୍ଦରୀର ସରଳ ହାସ୍ୟ ଓ ଉନ୍ମୁକ୍ତ କଳିକା ମଧ୍ୟରେ କେତେ ପାର୍ଥକ୍ୟ ରହିଛି । ପାର୍ଥକ୍ୟ ଜ୍ଞାନରେ ହୃଦୟର ଉନ୍ନତ ସୋପାନ ଆରୋହଣ କରାଯାଇପାରେ ନାହିଁ । ଭେଦଭାବ ଘେନି ଜଗତରେ ଯାବତୀୟ ଅଶାନ୍ତି ସୃଷ୍ଟ ହୋଇଅଛି । କେହି କ୍ୱଚିତ୍ ଏହାକୁ ଲକ୍ଷ୍ୟ କରନ୍ତି; ସେଥିଯୋଗୁଁ ଅଧିକାଂଶ ସମୟରେ ବଡ଼ ବିଷମ ଅବସ୍ଥା ଆସି ପଡ଼ିଯାଏ । ଗୋଟାଏ ବାହ୍ୟ ପ୍ରେରଣାର ଅଧୀନ ହୋଇ ସମସ୍ତଙ୍କୁ ନିଜର କରିନେବା କିମ୍ବା ସେହି ଜ୍ଞାନରେ ସମସ୍ତଙ୍କୁ ପ୍ରେମ ବିତରଣ କରିବା ସାଧାରଣ ମାନବ ପକ୍ଷରେ ଉଚିତ ହୋଇ ନ ପାରେ । ପୂଜକ ନିଭୃତରେ କାହିଁକି ନିଜର ଆରାଧ୍ୟ ଦେବତାଙ୍କୁ ପୂଜା କରେ ? ବିଭିନ୍ନ ଅବଲମ୍ବନରେ ମାନବର ଲକ୍ଷ୍ୟ ସାଧନ ହୁଏ ନାହିଁ । ମନର ଗତି ସ୍ୱତଃ ଚଞ୍ଚଳ; ସେଥିରେ ପୁଣି ଭିନ୍ନ ଭିନ୍ନ ଦିଗରୁ ଆକର୍ଷଣ ପଡ଼ିଲେ ଆତ୍ମବଳ କ୍ଷୀଣ ହୋଇ ତାକୁ ଗୋଟାଏ ଦୋଳାୟମାନ ଅବସ୍ଥାରେ ଉପନୀତ କରାଏ । ଜଗତର ଅଧିକାଂଶ ମନୁଷ୍ୟ ଏହି ପତନଶୀଳ ଅବସ୍ଥାର ଅଧୀନ । ଆଜି ଜଣେ ଜଣକୁ ହୃଦୟର ଅମୂଲ୍ୟ ସିଂହାସନରେ ବସାଇ ପୂଜା କରୁଛି; କିନ୍ତୁ କିଛିକ୍ଷଣ ପରେ ସାମାନ୍ୟ ମାନସିକ ପରିବର୍ତ୍ତନ ଆସିଲେ ସେହି ଆରାଧ୍ୟ ଦେବତାକୁ ସହଜରେ ଉପେକ୍ଷା କରି ଚାଲିଯାଉଛି । କେହି ପୁଣି ପାର୍ଥିବ ବିଷୟ ବିନିମୟରେ ଅପାର୍ଥିବ ପ୍ରେମକୁ ପ୍ରତ୍ୟାଖ୍ୟାନ କରୁଛି । ଯେ ଶରୀରସୌନ୍ଦର୍ଯ୍ୟ-ମୋହରେ

ମନୁଷ୍ୟ ଉତ୍‌କ୍ଷିପ୍ତ ହୋଇଉଠେ ଏବଂ ଯାହାକୁ ପାଇବା ପାଇଁ ସେ ଅସାଧ୍ୟ ସାଧନ କରେ, ତାର ପୁଣି କେତେ ତୁଚ୍ଛ ହିସାବରେ ଉପଯୁକ୍ତ ମୂଲ୍ୟ ନିରୂପଣ କରିଦିଏ; ସୁତରାଂ ବୁଝିବାକୁ ହେବ ଯେ ଜଗତର ଘଟଣା ସାଧାରଣଙ୍କ ନିମ୍ନ ଆଡ଼କୁ ।

ଚୁମ୍ବକ ଓ ଲୌହର ଆକର୍ଷଣ ସଙ୍ଗେ ମନୁଷ୍ୟର ଅନ୍ତର୍ନିହିତ ଆକର୍ଷଣର ସାମଞ୍ଜସ୍ୟ ଅଛି । ଦୁଇଟି ସମ୍ପୂର୍ଣ୍ଣ ଅପରିଚିତ ପ୍ରାଣୀ କେଉଁ ଅଜ୍ଞାତ ନିୟାମକର ଆଦେଶରେ ଆବଦ୍ଧ ହୋଇରହନ୍ତି ? ସହସ୍ର ଚଞ୍ଚଳତା ଓ ଜଟିଳତା ମଧ୍ୟରେ ସେହି ଦୁଇ ହୃଦୟର ବନ୍ଧନ କାହିଁକି ଶିଥିଳ ହୁଏ ନାହିଁ ? ପାର୍ଥିବ ବିଚ୍ଛିନ୍ନତାରେ ସେମାନେ ବିଚ୍ଛିନ୍ନ ହୁଅନ୍ତି ନାହିଁ । ମନେ ହୁଏ, ଯେପରି ଦୁଇଟି ଜୀବ ଅନନ୍ତ କାଳରୁ ପରସ୍ପରକୁ ଅନୁସରଣ କରି ଚାଲିଛନ୍ତି । ଗୋଟିଏ ଅବିରାମ ଗତିରେ ଦୁହିଁଙ୍କର ଜୀବନସ୍ରୋତ ପ୍ରବାହିତ ହୋଇଯାଉଛି । କେତେ ବାଧାବିଘ୍ନ ଆସୁଛି—ସମୟ ସମୟରେ ସେମାନଙ୍କୁ ପୃଥକ୍ କରିଦେଉଛି; କିନ୍ତୁ ଯେଉଁ ବନ୍ଧନରେ ସେମାନେ ଆବଦ୍ଧ, ତାକୁ ଉନ୍ମୋଚନ କରିବା ବାହ୍ୟ ଜଗତର କର୍ମ ନୁହେଁ ।

ଲୋକଚକ୍ଷୁରେ ଏହାର ସ୍ୱରୂପ ଅବଧାରିତ ହୋଇପାରେ ନାହିଁ । ନେତ୍ର ଜଗତ୍ ପ୍ରେମର ସ୍ଥାନ ନିର୍ଦ୍ଦେଶ କରିବାକୁ ଅକ୍ଷମ ହୁଏ । ସଂଖ୍ୟାତୀତ ସମଜାତୀୟ ସୁଲଭ ଚିତ୍ର ଦେଖି କୌଣସି ଅସାଧାରଣ ଦର୍ଶନରେ ସାଧାରଣ ମନୁଷ୍ୟର ମନ ମଜ୍ଜି ରହିବାକୁ ଆକାଙ୍‌କ୍ଷା କରେ ନାହିଁ । ନିଭୃତ୍ତ ଗୁମ୍ଫୀ ଶିଳ୍ପୀର ପ୍ରାକୃତିକ ଶୋଭାସମ୍ପଦକୁ କେତେ ଜଣ ଗ୍ରହଣ କରିପାରନ୍ତି ? ଶରତ୍ ଚନ୍ଦ୍ରିକାର ବିମଳ ପ୍ଲାବନରେ କେଉଁଟା ହୃଦୟ ନୈସର୍ଗିକ ଦୃଶ୍ୟ ସନ୍ଦର୍ଶନ କରେ ? ସିକତାଶଯ୍ୟାରେ ଅନନ୍ତ ଆକାଶକୁ ନିରୀକ୍ଷଣ କରି ଭାବାବେଶରେ ନିଜର ଆତ୍ମସତ୍ତାକୁ କେତେ ଜଣ ସେହି ଅନନ୍ତ ସତ୍ତା ସଙ୍ଗେ ମିଶାଇ ଦେଇପାରନ୍ତି ? ଚିତ୍ର ସମସ୍ତେ ଦେଖନ୍ତି; କିନ୍ତୁ ତାର ବିଶିଷ୍ଟତା ଅନୁଭବ କରନ୍ତି ଖୁବ୍ କମ୍ ଲୋକ ।

ଅନ୍ତରର ଭାବ ଯେପରି ବହିର୍ଜଗତରେ ଅସୀମ ଚିତ୍ର ସମ୍ପଦର ସମାବେଶ ହୋଇଥାଏ । ଗ୍ରାହକ ଅନୁସାରେ ଚିତ୍ରମାନଙ୍କର ମୂଲ୍ୟ ନିରୂପିତ ହୁଏ । ବିପଣୀରେ ଅସଂଖ୍ୟ ପଦାର୍ଥ ସଜ୍ଜିତ ହୋଇ ରହିଥାଏ; କିନ୍ତୁ ଏକାବେଳକେ ସମସ୍ତ ପଦାର୍ଥ ଗ୍ରହଣ କରିବାକୁ କେହି ଆସନ୍ତି ନାହିଁ । ସମୟ ଓ ରୁଚିଭେଦରେ ଚିତ୍ରଗୁଡ଼ିକ ଗୃହୀତ ହୁଏ । ଜଣକ ଚକ୍ଷୁରେ ଯାହା ଆଦରଣୀୟ ଅପର ଚକ୍ଷୁରେ ତାହା ହେୟ ବିବେଚିତ ହେବା ଅସମ୍ଭବ ନୁହେଁ । ଇତର ଶ୍ରେଣୀର ଗ୍ରାହକମାନେ ସବୁବେଳେ ଚିତ୍ରର ଚାକଚକ୍ୟରେ ମନଃପ୍ରାଣ ଢାଳିଦିଅନ୍ତି । ସେମାନଙ୍କର ଅନ୍ତର ଗୋଟିକରେ ମଜ୍ଜି ରହିବାକୁ ଚାହେଁ ନାହିଁ । ଗୋଟିକ ପରେ ଗୋଟିଏ ଦେଖି ସେମାନେ ବାସନାର ମାତ୍ରାକୁ ବଢ଼ାଉଥାନ୍ତି । କୁସୁମର ଆଘ୍ରାଣ କିମ୍ବା ଦର୍ଶନରେ ଆନନ୍ଦ ପାଇବା ଦୂରେ ଥାଉ, ତାର ପାଖୁଡ଼ାଗୁଡ଼ିକ ଛିନ୍ନ କରି ବିକଳାଙ୍ଗ କୁସୁମରାଶି ପକାଇଦେଇ ଗଲେ ସେମାନଙ୍କର ଗୋଟାଏ ଦାନବୀ ତୃପ୍ତି ଆସେ । ମାନବ-ଇତିହାସରେ ଏହାର ଦୃଷ୍ଟାନ୍ତ ଯଥେଷ୍ଟ ମିଳେ । ଦର୍ଶକର ଆବିଳ ଦୃଷ୍ଟିରେ ଚିତ୍ରର ମହତ୍ତ୍ୱ ନଷ୍ଟ ହେଲେ ଦାୟୀ କାହାକୁ କରିବାକୁ ହେବ ? ଭୋଗ-ଲାଲସା-ଅଧୀର ମନୁଷ୍ୟ ଅସଙ୍କୁଚିତ ଚିତ୍ତରେ ଚିତ୍ରଟି ପାଇବାପାଇଁ ବ୍ୟଗ୍ର ହୋଇଉଠେ; କିନ୍ତୁ ପାଇଲାକ୍ଷଣି ତାକୁ ରକ୍ଷା କରିପାରେ ନାହିଁ । ମାୟାକୁ ଚିତ୍ରକରର ସ୍ଥାନ ଦେଇ ତାର ସୃଷ୍ଟ ଚିତ୍ରଗୁଡ଼ିକୁ ଏପରି ବିପର୍ଯ୍ୟସ୍ତ ଅବସ୍ଥାରେ ପକାଇବା ଗୋଟାଏ ଛଳନା ମାତ୍ର । ମନୁଷ୍ୟର ଦୁର୍ବଳ ମନ ଏଥି ସକାଶେ ସମ୍ପୂର୍ଣ୍ଣରୂପେ ଦାୟୀ ।

ସୌନ୍ଦର୍ଯ୍ୟ ଉପଭୋଗରେ ଆତ୍ମପ୍ରସାଦ ମିଳେ । ଅରୂପ ସୌନ୍ଦର୍ଯ୍ୟକୁ ମାନସପଟରେ ଆଙ୍କିନେବା ସହଜ ନୁହେଁ । ଭାବର ଆଦାନପ୍ରଦାନରେ ହୃଦୟର ମହତ୍ତ୍ୱ ଓ ଉଦାର ଅବସ୍ଥା ପ୍ରକାଶିତ ହେଲେ ସୁଦ୍ଧା ସୌନ୍ଦର୍ଯ୍ୟ ଝଲକାରେ ରଞ୍ଜିତ ଆଧାର ମନୁଷ୍ୟର ଅନ୍ତର୍ନିହିତ ଆନନ୍ଦ-ସ୍ରୋତକୁ ଖୋଲିଦିଏ । ଚିତ୍ରକରର ମହତ୍ତ୍ୱ ସୌନ୍ଦର୍ଯ୍ୟ-ଦ୍ୱାରା ବେଶି ପରିମାଣରେ ନିର୍ଣ୍ଣୀତ ହୋଇଥାଏ । ସୌନ୍ଦର୍ଯ୍ୟକୁ ଛାଡ଼ି ଭାବର ଉଦ୍ରେକ ହେବା ଅସମ୍ଭବ ବୋଧ ହୁଏ । ଅନେକ ସମୟରେ ଦୃଷ୍ଟ ରୁଚି ଓ ଦୃଷ୍ଟି ଯୋଗୁଁ ସୌନ୍ଦର୍ଯ୍ୟର ପ୍ରକୃତ ମୂଲ୍ୟ ବୁଝାଯାଏ ନାହିଁ । ଏପରି ଅବସ୍ଥାରେ ଭାବନାର ଶାନ୍ତଗତିରେ ବାଧା ଆସିବା ସ୍ୱାଭାବିକ ହୁଏ । ସୌନ୍ଦର୍ଯ୍ୟର ଉପାସନାରେ ଚିତ୍ର ଉପଲକ୍ଷ ସ୍ୱରୂପ କାର୍ଯ୍ୟ କରେ । ମନରେ ଆସକ୍ତି ଆସିଲେ ଚିତ୍ର ପ୍ରତି ଗୋଟାଏ ବୁଭୁକ୍ଷା ଆସେ । ଏହିଠାରୁ ମନୁଷ୍ୟର ପତନ ଆରମ୍ଭ ହୁଏ । ଯାହାକୁ ଅବଲମ୍ବନ କରି ସେ ସେହି ଚିରସୁନ୍ଦରଙ୍କୁ ପାଇପାରିଥାନ୍ତା, ତାକୁ ଦେଖି ପୁଣି ମାୟାବିନୀର ମାୟାଜାଲରେ ଆବଦ୍ଧ ହେବା ମନୁଷ୍ୟର ଦୁର୍ବଳତା ଛଡ଼ା ଅନ୍ୟ

କିଛି ନୁହେଁ । ମୁହୂର୍ତ୍ତିକର ଉନ୍ମାଦନାରେ ମନୁଷ୍ୟ ଲାଳସାର ସ୍ରୋତକୁ ଅସଂଯତ ଭାବରେ ଛାଡ଼ିଦିଏ । ଚନ୍ଦ୍ରର ସୌନ୍ଦର୍ଯ୍ୟକୁ ମଦିରା ପରି ପାନ କରି ଉନ୍ମତ୍ତ ହୋଇ ଉଠେ । ଚାରିଆଡ଼େ ସେ ଲାଳସାର ପ୍ରତିମୂର୍ତ୍ତି ଦେଖେ । ସେ ଭାବେ ନାହିଁ ଯେ, ତାହାରି ପାଇଁ ମାୟାର ଲାସ୍ୟ ସୃଷ୍ଟି ହୋଇଅଛି । ଆତ୍ମବଞ୍ଚନା ଫଳରେ ମନୁଷ୍ୟର ନିଜତ୍ୱ ଥରେ ହଜିଗଲେ ପୁଣି ଫେରି ପାଇବା ସହଜ ନୁହେଁ । ଅନ୍ତର୍ଦର୍ଶନ ପୂର୍ବରୁ ସ୍ୱରୂପଜ୍ଞାନ ନ ଜନ୍ମିଲେ ଭ୍ରମପ୍ରମାଦର ବଶବର୍ତ୍ତୀ ହୋଇ ଗୋଟାଏ ତମସାଚ୍ଛନ୍ନ ରାଜ୍ୟରେ ବୁଲିବା ସାର ହୁଏ । ଗୋଟିଏ ଛବି ହୃଦୟରେ ଥରେ ଆଙ୍କି ହୋଇଗଲେ ତାକୁ ଲିଭାଇବା ସହଜ ନୁହେଁ । ସେଥିଯୋଗୁଁ ପ୍ରତ୍ୟେକ ଦର୍ଶକର ଛବିକୁ ଅନାବିଳ ଦୃଷ୍ଟିରେ ଦେଖି ହୃଦୟଙ୍ଗମ କରିବା ବାଞ୍ଛନୀୟ । ଏହି ଛବି ଅଙ୍କନକୌଶଳଟି ମନୁଷ୍ୟର ମୋହ କିମ୍ବା ମୁକ୍ତିର ପଥ ନିର୍ଦ୍ଦେଶ କରିବାରେ ସାହାଯ୍ୟ କରେ । ଜଗତକୁ ଅନୁସରଣ କଲେ ଏହାର ରହସ୍ୟ ଜଣାଯିବ ନାହିଁ; ନିଜର ଆତ୍ମନିହିତ ଶକ୍ତିର ପରିଚୟ ଦେବାକୁ ପଡ଼ିବ ।

# ପରିଣୟ-ପ୍ରଭାବ

ଆଦିମ କାଳରୁ ପୁରୁଷ ଓ ସ୍ତ୍ରୀ ପରିଣୟ-ସୂତ୍ରରେ ଆବଦ୍ଧ । ଦେଶ ଓ କାଳ ଭେଦରେ ତାରତମ୍ୟ ପରିଦୃଷ୍ଟ ହେଲେ ସୁଦ୍ଧା ଏହି ଚିରନ୍ତନ ପ୍ରଥା ମାନବ ସମାଜକୁ ନିତ୍ୟ ନୂତନ ପ୍ରେରଣା ଦେଇଆସିଛି । ମାନବର ହୃଦୟତନ୍ତ୍ରୀରେ ଏହାର ଅମୃତ ରାଗିଣୀ ବାଜି ପ୍ରତିଧ୍ୱନି ଛଳରେ ପୃଥିବୀର ଶ୍ରେଷ୍ଠତମ କାବ୍ୟମାନଙ୍କୁ ଲିପିବଦ୍ଧ କରିଯାଇଛି । ବାଲ୍ମୀକି ଓ ହୋମର୍ ଆଜି ସୁଦୂର ଅତୀତରୁ ସେହି ବୀଣାଜିଣା ରାଗିଣୀର ଝଙ୍କାର ଦେଇ ନଶ୍ୱର ମାନବ ଜୀବନରେ ପ୍ରେମର ଉତ୍ସ ଫିଟାଇ ଦେଇଅଛନ୍ତି । କାଳିଦାସ ଓ ସେକ୍ସପିୟର ପ୍ରଭୃତି କବିମାନେ ପବିତ୍ର ପ୍ରଣୟରେ ମାନବର ଦେବତ୍ୱଚିତ୍ର ଫୁଟାଇ ବିଶ୍ୱ-ବରେଣ୍ୟ ହୋଇଅଛନ୍ତି । ଉଚ୍ଚ ଓ ନୀଚ, ସୁନ୍ଦର ଓ କୁତ୍ସିତ, ଧନୀ ଓ ନିର୍ଦ୍ଧନ ସମସ୍ତେ ଜୀବନର ବୈଚିତ୍ର୍ୟ ସଙ୍ଗେ ନ୍ୟୂନାଧିକ ପରିମାଣରେ ଏହାର ପ୍ରଭାବ ସ୍ୱୀକାର କରିବାକୁ ବାଧ ।

ସାଧାରଣତଃ ମନୁଷ୍ୟ ଜୀବନର ତିନୋଟି ବିଭାଗ କରାଯାଇପାରେ, ଜନ୍ମ, ବିବାହ ଓ ମୃତ୍ୟୁ । ଜନ୍ମଠାରୁ ବିବାହ ପର୍ଯ୍ୟନ୍ତ ମନୁଷ୍ୟ-ଜୀବନ ଧାରାବାହିକରୂପେ ଅଧିକାଂଶ ସମୟରେ ଗଢ଼ା ହୋଇଥାଏ; କିନ୍ତୁ ବିବାହ ପରେ ଯେଉଁ ପରିବର୍ତ୍ତନ ଆସେ, ତଦ୍ଦ୍ୱାରା ସେ କ୍ରମଶଃ ଉନ୍ନତ କିମ୍ବା ଅବନତ ମାର୍ଗରେ ଯାଇ ମୃତ୍ୟୁରେ ଶେଷ-ଯବନିକା ପକାଏ । ପ୍ରଥମ ଓ ଶେଷ ଅବସ୍ଥା ଦୁଇଟି ବାଦ୍ ଦେଇ ବର୍ତ୍ତମାନ ଆମ୍ଭେମାନେ ମଧ୍ୟମ ଅବସ୍ଥାଟି ଆଲୋଚନା କରିବୁଁ । ପାରିବାରିକ ଜୀବନରେ ଯେତେ-ବେଳେ ଝଡ଼, ତୋଫାନ ପ୍ରବଳ ହୋଇଉଠେ, ଦୁର୍ଦ୍ଦିନର ଦାଉ ଅସମ୍ଭାଳ ହୁଏ ଓ ଯନ୍ତ୍ରଣା ଅସହ୍ୟ ବୋଧହୁଏ, ସେତେବେଳେ ସ୍ୱାମୀ ଓ ସ୍ତ୍ରୀ ମଧ୍ୟରେ ପରସ୍ପର ସାହଚର୍ଯ୍ୟ ବଡ଼ ଶାନ୍ତିପ୍ରଦ । ସରଳତା ଓ ପବିତ୍ରତା ଉପରେ ଯେଉଁ ପ୍ରଣୟର ଭିତ୍ତି, ତାର ପରିଣାମ ଏପରି ହେବା ସ୍ୱାଭାବିକ; କିନ୍ତୁ ଜଗତରେ ସମସ୍ତେ କଣ ଏପରି ଜୀବନ ଗଢ଼ିବାକୁ ସମର୍ଥ ହୋଇପାରନ୍ତି ? କାମ ଲୋଲୁପର ଆଶା ଏ ଦିଗରେ ବୃଥା ପ୍ରୟାସ ପରି ଜଣାଯାଏ । ପବିତ୍ର ଗାର୍ହସ୍ଥ୍ୟଜୀବନରେ ସ୍ୱାମୀ ଓ ସ୍ତ୍ରୀ ପରସ୍ପରର ଅବଲମ୍ବନ । ବିପଦ ଆସିଲେ ଜଣକର ସାହାଯ୍ୟ ଓ ଆତ୍ମବଳରେ ଅନ୍ୟର ରକ୍ଷା ହୋଇପାରେ । ପ୍ରଥମେ ତ୍ୟାଗରୁ ବୈବାହିକ ଜୀବନର ପବିତ୍ରତା ସମ୍ପାଦନ କରିବାକୁ ହୁଏ । ତ୍ୟାଗ ଅର୍ଥରେ ସଂସାରବିରାଗୀ, କୁଟୀରବାସୀ ଓ ଜଟାବଲ୍କଳଧାରୀ ବୁଝିବାକୁ ହେବ ନାହିଁ । ତ୍ୟାଗର ଆକ୍ଷରିକ ଅର୍ଥରେ ସ୍ୱାମୀ ଓ ସ୍ତ୍ରୀ ମଧ୍ୟରେ ସମ୍ପର୍କଟା ଜଟିଳ ବୋଧ ହୋଇପାରେ; ସୁତରାଂ ଆମ୍ଭେମାନେ ପ୍ରଥମରୁ ସେଥିପ୍ରତି ଦୃଷ୍ଟି ଦେବା ସମୀଚୀନ ବୋଧକରୁଁ ।

ପୁରାଣ-ବର୍ଣ୍ଣିତ ହର-ପାର୍ବତୀ ମିଳନରେ ହିନ୍ଦୁମାନେ ପାରିବାରିକ ଜୀବନରେ ତ୍ୟାଗର ନିଦର୍ଶନ ଦେଖାଇଛନ୍ତି । ଅହଂଭାବବିମୁକ୍ତ ଓ ଆସକ୍ତିଶୂନ୍ୟ ହେଲେ ତ୍ୟାଗର ବିକାଶ ହୁଏ । ଯେ ଶକ୍ତିଦ୍ୱାରା ନେପୋଲିୟନ, ଆଲେକ୍‌ଜେଣ୍ଡାର୍ ଓ ସିଜାର ପ୍ରଭୃତି ବୀରମାନେ ଅସାଧାରଣ ଓ ଦୁର୍ଜ୍ଜୟ ସମରରେ ଜୟଲାଭ କରୁଥିଲେ, ତାହା ସେମାନଙ୍କ ଶାରୀରିକ ଶକ୍ତିରୁ ପ୍ରକାଶ ପାଏ ନାହିଁ । ପାରିପାର୍ଶ୍ୱିକ ଅବସ୍ଥାରେ ଅବିଚଳିତ ଓ ନିର୍ଲିପ୍ତ ଥିବାବେଳେ ଯେଉଁ ଅପାର୍ଥିବ ଶକ୍ତି ଅଜ୍ଞାତରେ ଏହି ସବୁ ବିସ୍ମୟକର କାର୍ଯ୍ୟସମ୍ପାଦନରେ ସେମାନଙ୍କୁ ପ୍ରେରଣା ଦେଇଥିଲା, ତାହା ଏହି ତ୍ୟାଗ ଓ ଆତ୍ମଶକ୍ତି ଉପରେ ପ୍ରତିଷ୍ଠିତ । ମନୀଷୀମାନେ ଏହାରି ପ୍ରଭାବରେ ଜଗତ୍‌ବ୍ୟାପୀ ଯଶୋଲାଭ କରିବାକୁ କ୍ଷମ ହୋଇଥାନ୍ତି । ପାର୍ଥିବ ବସ୍ତୁକୁ ଉପଲକ୍ଷ ସ୍ୱରୂପ ଧରି ଅନ୍ତର୍ନିହିତ ଆତ୍ମଶକ୍ତି ଉପରେ ବିଶ୍ୱାସ ରଖି କର୍ମମାର୍ଗରେ ଅଗ୍ରସର ହେବା ପ୍ରତ୍ୟେକ ମହାପୁରୁଷଙ୍କ ଜୀବନୀରୁ ପ୍ରତିପାଦିତ ହୋଇପାରେ । ନିର୍ବିକଳ୍ପାବସ୍ଥା ତ୍ୟାଗର ଚରମ ଲକ୍ଷ୍ୟ । ଜଗତରେ ଯେତେ ଅଲୌକିକ କାର୍ଯ୍ୟ ସଂଘଟିତ ହୋଇଅଛି ଓ ଯେ ମହତ୍ ଆଦର୍ଶ ସବୁ

ଆଜି ପୃଥିବୀରେ ମାନବ ସମାଜକୁ ଉଦ୍‌ବୁଦ୍ଧ କରି ରଖିଛି, ସେହି ସବୁର ମୂଳରେ ତ୍ୟାଗର ଚିହ୍ନ ହିଁ ପରିସ୍ଫୁଟ । ପଦାର୍ଥଜ୍ଞାନକୁ କ୍ରମଶଃ ଲୋପ କରି ତ୍ୟାଗର ଉତ୍କର୍ଷ ସାଧନ କରିବାକୁ ହୁଏ । ପ୍ରଥମାବସ୍ଥାରେ ନିଭୃତ ବାସ ତା କରେ ଓ ପରେ ତ୍ୟାଗ ଉପରେ ଭିତ୍ତି ସ୍ଥାପନ କରି ପାରିଲେ ଆତ୍ମବଳ କାର୍ଯ୍ୟକାରୀ ହୁଏ ।

ଦାମ୍ପତ୍ୟ ଜୀବନରେ ଏହାର ଅନୁସରଣ କିପରି କରାଯାଇପାରେ ? କ୍ଷଣକ ପାଇଁ ଇନ୍ଦ୍ରିୟଚଞ୍ଚଳତାରୁ ବିରତ ହୋଇ ସ୍ଥିରଭାବ ଧାରଣ କଲେ ସଂସାରର ଅସାରତା ବୁଝାଯାଏ; କିନ୍ତୁ ପରମୁହୂର୍ତ୍ତରେ ଅହଂଭାବ ଜାଗ୍ରତ ହେଲେ ପୂର୍ବାବସ୍ଥା ଫେରିଆସେ । ଆଧ୍ୟାତ୍ମିକ ଭାବ ଉଦିତ ହେଲେ ମନୁଷ୍ୟ ଭଗବାନଙ୍କ ନିକଟରେ ଆତ୍ମସମର୍ପଣ କରିପାରେ; କିନ୍ତୁ ସ୍ତ୍ରୀ, ପୁତ୍ର ଓ କନ୍ୟା ପ୍ରଭୃତିଙ୍କ ସଂସ୍ପର୍ଶରେ ଆସି ସେ ପୁଣି ଭଗବତ୍ ସତ୍ତାକୁ ଭୁଲିଯାଏ । ସାଧାରଣତଃ ଏହିପରି ଅବସ୍ଥାରେ ଆମ୍ଭମାନଙ୍କର ସାମାଜିକ ଜୀବନ ଗଠିତ । ଆଧ୍ୟାତ୍ମିକ ଉନ୍ନତି ପଥରେ ଏହା ଯେ କିଦୃଶ ଅନ୍ତରାୟ, ତାହା ଆମ୍ଭେମାନେ ବୁଝିପାରୁ ନାହୁଁ । ଦେବାଳୟରେ ଯେଉଁ ପୁଣ୍ୟଭାବଟି ସ୍ୱତଃ ମନୁଷ୍ୟ ମନରେ ଫୁଟି ଉଠିଥାଏ, ଗୃହକୁ ଆସି ତାହା ବିଲୁପ୍ତ ହେବା ସାଧାରଣ ମନୁଷ୍ୟର ସ୍ୱଭାବ ।

ଆତ୍ମୋନ୍ନତି ପଥରେ ବାଧା ଅତିକ୍ରମ କରିବାକୁ ହେଲେ ଗୃହକୁ ତଦନୁଯାୟୀ ନିର୍ମାଣ କରିବା ଆବଶ୍ୟକ । ଅଧିକାଂଶ ସମୟରେ ନବଦମ୍ପତି ଯେଉଁ ପ୍ରେମବିଭୋର-ଭାବ ଦେଖାନ୍ତି, ସେଥିରେ ନିଃସ୍ୱାର୍ଥତାର ପରିଚୟ ମିଳେ କି ? ସ୍ୱାମୀ ଓ ସ୍ତ୍ରୀର ସାଧାରଣ ପ୍ରେମ କେବଳ ପ୍ରତ୍ୟେକର ତୃପ୍ତିସାଧନ ବ୍ୟତୀତ ଅନ୍ୟ କିଛି ହୋଇ ନ ପାରେ । ପରସ୍ପର ମଧ୍ୟରେ ପରତନ୍ତ୍ର ଭାବ ଜନ୍ମିଲେ ଯଥେଷ୍ଟ ହେଲା ବୋଲି ସେମାନେ ଭାବନ୍ତି । ସ୍ୱାମୀ ଓ ସ୍ତ୍ରୀ ମଧ୍ୟରେ ସୁଖବିଧାନ ପନ୍ଥା ଏତେ ସହଜ ନୁହେଁ ।

ପ୍ରେମରାଜ ଭଗବାନ ଶ୍ରୀକୃଷ୍ଣ କାଳୀୟ ଦମନରେ ସ୍ୱୟଂ ପାର୍ଥିବ ପ୍ରେମର ପରିଣାମ ଦେଖାଇଅଛନ୍ତି । ଭୋଗଲିପ୍ସା-ଅଧୀର ମନୁଷ୍ୟ ମୋହ-ବିଭ୍ରାନ୍ତ ହୋଇ ଯେତେବେଳେ ଜଡ଼ବସ୍ତୁରେ ସମସ୍ତ ସୁଖକୁ ଆରୋପ କରେ, ସେତେବେଳେ ସେହି ରମଣୀୟ ବସ୍ତୁଟି ତା ନିକଟରୁ ଅନ୍ତର ହୋଇଯାଏ । ଅନ୍ତରର ଦେବତା ଶିକ୍ଷା ପ୍ରଦାନ ଛଳରେ ହୃଦୟକୁ କ୍ଷତବିକ୍ଷତ କରିଦେଇ ବିଭୀଷିକାମୟ କରିଦିଏ ।

ମନୁଷ୍ୟ, ବ୍ୟକ୍ତି କିମ୍ବା ପଦାର୍ଥବିଶେଷରେ ଅତ୍ୟଧିକ ଆସକ୍ତ ହେଲେ ପ୍ରକୃତ ସୁଖ ପାଇବା ଦୂରେ ଥାଉ, ମନୋବେଦନା ସାର ହୁଏ । ଶାରୀରିକ ସୌନ୍ଦର୍ଯ୍ୟରେ ଆସକ୍ତ ବାଳକର ସାମାନ୍ୟ ପ୍ରତିକୃତି ବିଶେଷରେ ଆକୃଷ୍ଟ ହେଲା ପରି ବୋଧହୁଏ । ପ୍ରେମ-ଭାବବିଭୋର ମନୁଷ୍ୟ ଯଦି ଅନ୍ତରର ଦେବତାକୁ ବାଦ୍ ଦେଇ ବାହ୍ୟ ସୌନ୍ଦର୍ଯ୍ୟ ଉପରେ ନିର୍ଭର କରେ, ତାହା ହେଲେ ମୃତ୍ୟୁ ପରେ ଉକ୍ତ ଜଡ଼ପିଣ୍ଡ କାହିଁକି ତାକୁ ତୁଚ୍ଛ ବୋଧହୁଏ ? ମନରେ ପବିତ୍ର ଭାବର ଉଦ୍ରେକ ନ ହେବାଯାଏ ମନୁଷ୍ୟ ଏଥିର ତଥ୍ୟ ନିର୍ଣ୍ଣୟ କରିବାକୁ ସମର୍ଥ ହୁଏ ନାହିଁ । ସୁତରାଂ ସ୍ୱାମୀ, ସ୍ତ୍ରୀ ଉଭୟଙ୍କର ଏ ବିଷୟଟି ଅନୁଶୀଳନ କରିବା ନିତାନ୍ତ ଆବଶ୍ୟକ ।

ବିଶେଷତଃ ଅବିବାହିତ ଅବସ୍ଥାରେ ପୁରୁଷର ନାନା ପ୍ରଲୋଭନ ଥାଏ । ବିବାହ ପରେ ସ୍ତ୍ରୀର ସେଥିପ୍ରତି ଲକ୍ଷ୍ୟ ରଖିବା ଉଚିତ; କିନ୍ତୁ ସେ ଏଥିର ପ୍ରକୃତ ମର୍ମ ବୁଝିପାରେ ନାହିଁ । ପ୍ରଲୋଭନରୁ ରକ୍ଷା କରିବା ଦୂରେ ଥାଉ, ସେ ନିଜେ ସ୍ୱାମୀର ଆତ୍ମୋନ୍ନତି ପଥରେ ପ୍ରଧାନ ଅନ୍ତରାୟ ହୁଏ । ସ୍ୱାମୀର ମନକୁ ଅନ୍ୟ ଦିଗରୁ ଆକର୍ଷଣ କରି ନିଜ ଉପରେ ନ୍ୟସ୍ତ କରିବା ତାର ଚରମ ଆକାଙ୍‌କ୍ଷା ହୁଏ । ସ୍ୱାମୀକୁ ଅଧୀନ କରି ପାରିଲେ ତା ଜୀବନ ସାର୍ଥକ ହେଲା ବୋଲି ସେ ମନେ କରେ । ଦୁର୍ବଳ ପୁରୁଷ ସ୍ତ୍ରୀର ସ୍ନେହାତିଶଯ୍ୟରେ ନିଜତ୍ୱ ରକ୍ଷା କରିପାରେ ନାହିଁ । ଗୋଟିଏ ସ୍ତ୍ରୀର ପ୍ରଲୋଭନ ତା ପକ୍ଷରେ ଦୁର୍ବହ ହୋଇଉଠେ । ଏଠାରେ ଗୋଟିଏ ଗଳ୍ପର ସଂକ୍ଷିପ୍ତ ବିବରଣ ଦେଲେ ବିଷୟଟି ଆହୁରି ସରଳ ବୋଧହେବ ।

ଥରେ ଗୋଟିଏ ଅଶ୍ୱ ଗୋଟିଏ ହରିଣ ସହିତ ଯୁଦ୍ଧରେ ପରାସ୍ତ ହୋଇ ତା ଶରୀରର କ୍ଷତାଂଶଗୁଡ଼ିକ ଦେଖାଇ ଜଣେ ମନୁଷ୍ୟର ସାହାଯ୍ୟ ପ୍ରାର୍ଥୀ ହେଲା । ମନୁଷ୍ୟ ଅଶ୍ୱପୃଷ୍ଠରେ ଆରୋହଣ କରି ଅରଣ୍ୟରେ ହରିଣକୁ ହତ୍ୟା କଲା । ଅଶ୍ୱ ଆନନ୍ଦିତ ମନରେ କୃତଜ୍ଞତା ଜଣାଇ ଫେରିଯିବା ପାଇଁ ମନୁଷ୍ୟର ଅନୁମତି ମାଗିଲା; କିନ୍ତୁ ସେତେବେଳେ ମନୁଷ୍ୟ ଆରୋହଣ ସୁଖରୁ

ବଞ୍ଚିତ ହେବ ବୋଲି ଆଉ ତାକୁ ଛାଡ଼ିଲା ନାହିଁ । ବହିଃଶତ୍ରୁ ଆକ୍ରମଣରୁ ରକ୍ଷା ପାଇଲେ ସୁଦ୍ଧା ଅଶ୍ୱ ଚିରଦିନ ପାଇଁ ସ୍ୱାଧୀନତା ହରାଇଲା । ମନୁଷ୍ୟ ସେହିପରି ବିବାହ ପରେ ଅନେକ ପ୍ରଲୋଭନରୁ ରକ୍ଷା ପାଇଲେ ସୁଦ୍ଧା ସ୍ତ୍ରୀର ଅଧୀନତା ସ୍ୱୀକାର କରି ବର୍ଣ୍ଣିତ ଅଶ୍ୱର ଦଶା ଭୋଗ କରେ । ଏପରି ଅବସ୍ଥାରେ କଣ ସ୍ତ୍ରୀ ସ୍ୱାମୀର ଆତ୍ମୋନ୍ନତି ପଥରେ ସହାୟ ହୋଇପାରେ ?

ଗାର୍ହସ୍ଥ୍ୟ ଜୀବନରେ ସତ୍ପ୍ରବୃତ୍ତିମାନଙ୍କର ସମ୍ୟକ୍ ଉନ୍ନତି ସାଧିତ ନ ହେବା ଯାଏ ବାଇବେଲ୍, କୋରାନ୍ ଓ ବେଦ ପ୍ରଭୃତି ମାନବ ସମାଜକୁ ଅଗ୍ରସର କରାଇ ପାରିବେ ନାହିଁ । ବେଦାନ୍ତ ମତରେ ନିର୍ଲିପ୍ତ ଭାବରେ ନିଜ ପରିବାରବର୍ଗଙ୍କ ସହିତ କାଳକ୍ଷେପଣ କରି ପ୍ରକୃତି ସଙ୍ଗେ ସମ୍ବନ୍ଧ ରଖି ସାଂସାରିକ ଘଟଣାମାନଙ୍କୁ ଚିତ୍ର ସଦୃଶ ଜ୍ଞାନ କଲେ ପ୍ରକୃତ ସୁଖ ମିଳେ । ଆତ୍ମୀୟର ଶରୀରକୁ ଦେବତାର ଆଧାର ସ୍ୱରୂପ ଗ୍ରହଣ କଲେ ତ୍ୟାଗର ଉଦ୍ଦେଶ୍ୟ ସାଧିତ ହୁଏ ।

ବର୍ତ୍ତମାନ ଦେଖାଯାଉ; ବିବାହ-ବନ୍ଧନ ଆମ୍ଭମାନଙ୍କୁ କେତେ ଦୂର ଉନ୍ନତ କରାଇପାରେ । ଦୁଃସ୍ଥ ଓ କଷ୍ଟପୂର୍ଣ୍ଣ ପାରିବାରିକ ଅବସ୍ଥାକୁ ନିର୍ଭୟରେ ବରଣ କରାଯାଇପାରେ । ଆତ୍ମପ୍ରସାଦ ଲାଭ ପକ୍ଷରେ ଏ ସବୁ ବାଧା ଦେଇପାରିବ ନାହିଁ; ବରଂ ସଂସାରଯାତ୍ରାରେ କଷ୍ଟ ଅତିକ୍ରମ କରିବା ଦ୍ୱାରା ମନର ବଳ ବେଶି ହୁଏ । ସୁଖ ଓ ଦୁଃଖ ପର୍ଯ୍ୟାୟକ୍ରମେ ଆସି ଚାଲିଯାଏ । ସେଥିରେ ଚିତ୍ତର ବିକ୍ଷେପ ଜନ୍ମାଇବା ଉଚିତ ନୁହେଁ । ବିଖ୍ୟାତ ଦାର୍ଶନିକ ସକ୍ରେଟିସ୍‌ଙ୍କ ଜୀବନୀରୁ ଗୋଟିଏ ରହସ୍ୟଜନକ ଘଟଣା ଏହା ପ୍ରମାଣ କରିପାରେ । ଦିନେ ସକ୍ରେଟିସ୍ ଜଟିଳ ଦର୍ଶନ ତତ୍ତ୍ୱ ସମାଧାନ କଲାବେଳେ, ତାଙ୍କର ଦୁଷ୍ଟା ସ୍ତ୍ରୀ ସାଂସାରିକ କାର୍ଯ୍ୟରେ ସକ୍ରେଟିସ୍‌ଙ୍କର ସର୍ବଦା ଔଦାସୀନ୍ୟ ଦେଖି ତାଙ୍କୁ ଉପଯୁକ୍ତ ଶିକ୍ଷା ଦେବା ଉଦ୍ଦେଶ୍ୟରେ ଅପରିଷ୍କୃତ ଜଳପାତ୍ରଟିଏ ନେଇ ତାଙ୍କ ଶିରରେ ନିକ୍ଷେପ କଲେ । ତଥାପି ସକ୍ରେଟିସ୍ ତଥ୍ୟ ଆଲୋଚନାରୁ ନିବୃତ୍ତ ହେଲେ ନାହିଁ; କେବଳ ଉପହାସ କରି କହିଲେ—"ଏତେ ଦିନେ ଗର୍ଜିଲା ମେଘ ବର୍ଷିଲା !" ସାଂସାରିକ ସୁଖ ଓ ଦୁଃଖକୁ ଯେ ଏହିପରି ସରଳ ଓ କୌତୁହଳବ୍ୟଞ୍ଜକ ଭାବରେ ଗ୍ରହଣ କରେ, ସେ ପ୍ରକୃତ ସୁଖୀ ।

ଉନ୍ନତି-ପଥରେ ଅଗ୍ରସର ହେବାବେଳେ ସ୍ତ୍ରୀ ଓ ସନ୍ତାନମାନେ ସହାୟ ହୋଇପାରନ୍ତି । ସେମାନଙ୍କୁ ଅନ୍ତର କରିବା ଉଚିତ ନୁହେଁ । ବିବର୍ତ୍ତନବାଦ ଅନୁଯାୟୀ ସମସ୍ତଙ୍କୁ ଦୁଃଖ ଓ କଷ୍ଟ ଭୋଗ କରି ଲକ୍ଷ୍ୟ ସ୍ଥାନରେ ପହଞ୍ଚିବାକୁ ହେବ । ପୃଥିବୀ ଯେପରି ଚନ୍ଦ୍ରକୁ ନେଇ ସୂର୍ଯ୍ୟର ଚତୁର୍ଦ୍ଦିଗରେ ଭ୍ରମଣ କରି ବିଶ୍ୱସ୍ରଷ୍ଟାଙ୍କ ଉଦ୍ଦେଶ୍ୟ ସାଧନ କରେ, ସେହିପରି ପୁରୁଷ ତାର ଅର୍ଦ୍ଧାଙ୍ଗିନୀକୁ ନେଇ ପୂର୍ଣ୍ଣତା ଲାଭ କରିପାରେ । ଦୁଇଟି ସ୍ରୋତସ୍ୱତୀର ଜଳ ଭିନ୍ନ ଦିଗରେ ନ ଯାଇ ଏକତ୍ରିତ ହୋଇ ଅନନ୍ତ ସମୁଦ୍ର ସଙ୍ଗେ ମିଶିବା କିଣ ଅସମ୍ଭବ ହୋଇପାରେ ? ପ୍ରଥମେ ପ୍ରଣୟିନୀ ସହିତ ଆତ୍ମା ଅଭେଦ କରିପାରିଲେ ବିଶ୍ୱଜନୀନ ଭାବ ହୃଦୟରେ କ୍ରମଶଃ ସଞ୍ଚାରିତ ହୋଇ ଶେଷରେ ମାୟାପ୍ରପଞ୍ଚର ଜଟିଳତା ଦୂର ହୁଏ ଏବଂ ମାନବକୁ ଚିର ଉନ୍ମୁକ୍ତ ଅବସ୍ଥାରେ ପହଞ୍ଚାଏ । ବାହ୍ୟ ସୌନ୍ଦର୍ଯ୍ୟରୁ ବିକଶିତ ସ୍ନେହ କାଳକ୍ରମେ ବର୍ଦ୍ଧିତ ହୋଇ ଆକାର-ଆଶୟକୁ ପରିତ୍ୟାଗ କରି ତନ୍ନିହିତ ଆତ୍ମାର ପୂଜା କରେ । ଏ ଅବସ୍ଥାରେ ଆଉ ସୁନ୍ଦର ଓ କୁତ୍ସିତର ଭେଦାଭେଦ ନ ଥାଏ । ପ୍ରଣୟୀ କିମ୍ବା ପ୍ରଣୟିନୀର ବାର୍ଦ୍ଧକ୍ୟ-ବଶତଃ ଲୋଳ ଚର୍ମ ଓ ଜୀର୍ଣ୍ଣ ଅଙ୍ଗ ମନରେ ବିଷାଦ ଆଣିପାରେ ନାହିଁ । ଅପାର୍ଥିବଭାବରେ ହୃଦୟ ପୂର୍ଣ୍ଣ ହୋଇଉଠେ । ଜୀବନର ଦେବତାକୁ ସେମାନେ ଅଭେଦ ଭାବରେ ବରଣ କରିବାକୁ ସମର୍ଥ ହୁଅନ୍ତି । ମିଳନ ଆରମ୍ଭରୁ ସ୍ୱାମୀ, ସ୍ତ୍ରୀ କେହି କାହା ସଙ୍ଗ ତ୍ୟାଗ କରେ ନାହିଁ; ଅଥଚ ଦେହାଭିମାନ ଛାଡ଼ିବା ଦ୍ୱାରା ସେମାନେ ତ୍ୟାଗର ଚରମ ଉତ୍କର୍ଷ ଦେଖାନ୍ତି । ଭାରତୀୟ ଆର୍ଯ୍ୟର ଚିରନ୍ତନ ପ୍ରଥାନୁଯାୟୀ ସ୍ୱାମୀ ଯେ ସ୍ତ୍ରୀର ଦେବତା ଓ ସ୍ତ୍ରୀ ଯେ ସ୍ୱାମୀର ଚତୁର୍ବର୍ଗପ୍ରାପ୍ତିର ହେତୁଭୂତା, ତାହା ଏଥିରୁ ସହଜରେ ଅନୁମିତ ହୋଇପାରେ ।

ଆଜିକାଲି କେତେକ ନବ୍ୟଶିକ୍ଷିତ ଯୌବନର ଉନ୍ମାଦନାରେ ଜାତିଧର୍ମନିର୍ବିଶେଷରେ ଓ କ୍ଷଣିକ ତୃପ୍ତି ଆଶାରେ ଯାହାକୁ ଇଚ୍ଛା ତାକୁ ନିଜର ଅର୍ଦ୍ଧାଙ୍ଗିନୀ କରିବାକୁ ପଶ୍ଚାତ୍ପଦ ନୁହନ୍ତି । ସମାଜ ଓ ଜାତିର ଭିତ୍ତି ଧର୍ମ ଉପରେ ପ୍ରତିଷ୍ଠିତ । ସେଥିପ୍ରତି ଯେ ଅନାସ୍ଥା ପ୍ରଦର୍ଶନ କରେ, ତାକୁ ଇତର ଶ୍ରେଣୀଭୁକ୍ତ କରିବା ଉଚିତ । ଧର୍ମପତ୍ନୀ ବିଳାସର ସାମଗ୍ରୀ ହେଲେ ପବିତ୍ର ଭାବର ଅସ୍ତିତ୍ୱ ଅସମ୍ଭବ । ଅଜ୍ଞତାବଶତଃ ସ୍ୱାମୀ ସ୍ତ୍ରୀର କାମନା ପୂରଣ କରି ତାର ଅଭାବ ଦୂର ହେଲା ବୋଲି ଆନନ୍ଦ ଅନୁଭବ କରେ; କିନ୍ତୁ ପ୍ରକୃତରେ ତାହା ନୁହେଁ । ପ୍ରାକୃତିକ ନିୟମାନୁଯାୟୀ ଜଣକର ସୁଖରେ ଅନ୍ୟକୁ ଅନୁପ୍ରାଣିତ କରି

ଶାନ୍ତବିଧାନ କରିବା ଉଚିତ । ସ୍ୱାର୍ଥପରତାକୁ ନଷ୍ଟ କରି ଆତ୍ମୋନ୍ନତିର ସୂତ୍ରପାତ କରିବାକୁ ହେବ । ପ୍ରକୃତ ଜ୍ଞାନ ବିଜ୍ଞାନସ୍ଥରେ ସୁନ୍ଦର ପନ୍ଥା ଅନୁସରଣ କରିବା ଉଭୟଙ୍କର କର୍ତ୍ତବ୍ୟ । ସ୍ୱାମୀର ସ୍ତ୍ରୀକୁ ଶିକ୍ଷା ଦେବା ପ୍ରଧାନ କାର୍ଯ୍ୟ ।

ସ୍ୱାମୀ, ସ୍ତ୍ରୀ ପବିତ୍ର ସ୍ୱଭାବାପନ୍ନ ଓ ଶୁଦ୍ଧ ଚରିତ୍ର ହେଲେ ସେମାନଙ୍କଠାରୁ ତେଜସ୍ୱୀ ଓ ଧାର୍ମିକ ସନ୍ତାନମାନଙ୍କର ଉତ୍ପତ୍ତି ସମ୍ଭବପର । ପୃଥିବୀରେ ଯେତେ ମହାପୁରୁଷମାନଙ୍କର ଆବିର୍ଭାବ ହୋଇଅଛି, ସେମାନଙ୍କର ପିତାମାତା ମହତ୍ତ୍ୱଗୁଣର ପରିଚୟ ଦେଇଅଛନ୍ତି । ଆର୍ଯ୍ୟଋଷିମାନେ ସଂସାରର ମଙ୍ଗଳ ଇଚ୍ଛାରେ ବିବାହକୁ ପବିତ୍ର ଧର୍ମରୂପେ ଗ୍ରହଣ କରିଅଛନ୍ତି ।

ପୁତ୍ରେଷ୍ଟି ଯଜ୍ଞ କରି ଯେଉଁ ଆର୍ଯ୍ୟମାନେ ସନ୍ତାନେଚ୍ଛୁ ହେଉଥିଲେ, ସେମାନଙ୍କ ବଂଶଧରମାନେ ଆଜି ସ୍ତ୍ରୀକୁ ଆମୋଦପ୍ରମୋଦର ଅଙ୍ଗସ୍ୱରୂପ ଧରି ବିବାହ କାର୍ଯ୍ୟରେ ବ୍ରତୀ ହେଉଛନ୍ତି । ଭାରତ ଅବନତି ସକାଶେ କିଏ ଏପରି ବିବାହ ଦାୟୀ ନୁହେଁ ? ଯେଉଁ ଦେଶରେ ବୁଦ୍ଧ, ଶଙ୍କର ଚୈତନ୍ୟ ପ୍ରଭୃତି ପୁଣ୍ୟାତ୍ମାମାନେ ଜନ୍ମଗ୍ରହଣ କରି ମାତୃଭୂମିକୁ ସ୍ୱର୍ଗରେ ପରିଣତ କରିଥିଲେ, ସେଠାରେ ଆମ୍ଭେମାନେ ସ୍ୱଧର୍ମଚ୍ୟୁତ ହୋଇ ହୀନତାର ଶେଷ ଅବସ୍ଥାରେ ଉପସ୍ଥିତ ହୋଇଅଛୁ । ରାଜପୁତ ନାରୀର 'ଜହର' କପୋଳକଳ୍ପିତ ନୁହେଁ । ବୀରତ୍ୱର ଚିହ୍ନ ଦେଶରୁ ଲୁଚି ଯାଇଛି ବୋଲି ଦେଶ ଆଜି ଅନ୍ଧକାରରେ ପରିଣତ ! ଦେବୋପମ ପତିର ମୃତ୍ୟୁ ପରେ ଚିତାନଳରେ ମରିବାକୁ ଏକା ଭାରତନାରୀ ଶିକ୍ଷା କରିଥିଲା ଓ ପ୍ରକୃତ ସତୀତ୍ୱର ପରିଚୟ ପ୍ରଦାନ କରିଥିଲା । ତାର ତ୍ୟାଗ ଜଗତ୍ ସମ୍ମୁଖରେ ଯେ ଆଦର୍ଶ ସୃଷ୍ଟି କରିଯାଇଛି, ତାହା ଅନ୍ୟ ଦେଶର ସ୍ତ୍ରୀମାନଙ୍କ ଧାରଣାରେ ଆସିପାରିବ ନାହିଁ । ଭାରତମାତା କୋଳରୁ ସେହି ସ୍ତ୍ରୀରତ୍ନମାନେ ଅନ୍ତର୍ହିତ ହୋଇଗଲେଣି; କିନ୍ତୁ ସେମାନଙ୍କର ସତୀତ୍ୱର କାହାଣୀ ଚିରଦିନ ରହିବ । ସ୍ୱର୍ଣ୍ଣପ୍ରସୂ ଭାରତ ଅନ୍ଧକୂଷ୍ଟ ନରନାରୀରେ ପୂର୍ଣ୍ଣ । ଅନ୍ଧକାରକୁ ଅପସାରିତ କରି ଭାରତର ଜୀର୍ଣ୍ଣ କୁଟୀରରୁ ପୁଣି ସତୀତ୍ୱ ଓ ବୀରତ୍ୱର ପ୍ରମାଣ ଦେଖାଇବା ପ୍ରତ୍ୟେକ ଭାରତବାସୀର କର୍ତ୍ତବ୍ୟ ।

ବର୍ତ୍ତମାନ ପ୍ରଚଳିତ ବିବାହ-ପ୍ରଥାକୁ ଟିକିଏ ପରିବର୍ତ୍ତିତ ଓ ମାର୍ଜିତ କଲେ ସୁଫଳ ମିଳିପାରେ । ଚରିତ୍ର ପ୍ରତି ବିଶେଷ ଲକ୍ଷ୍ୟ ଦେବା ଆବଶ୍ୟକ । ହୀନଚରିତ୍ର ଲୋକକୁ ସୁକନ୍ୟା ଦାନ କରିବା ଉଚିତ ନୁହେଁ । ପୂର୍ବେ ରାଜକନ୍ୟାମାନେ ଅରଣ୍ୟବାସୀ ଋଷିକୁମାରମାନଙ୍କୁ ସେମାନଙ୍କ ପତିରୂପେ ବରଣ କରୁଥିଲେ । ଉଦ୍ଦେଶ୍ୟ ବଡ଼ ମହତ୍ତ୍ୱ ଥିଲା—ଚରିତ୍ରବାନ୍‌କୁ ଭାରତ-ରମଣୀ ନିଜର ସ୍ୱାମୀ କରିପାରୁଥିଲେ ବୋଲି ଜୀବନକୁ ଧନ୍ୟ ମନେ କରୁଥିଲେ । ସେ ଶ୍ରେଣୀର ସ୍ତ୍ରୀ ଓ ପୁରୁଷ ବର୍ତ୍ତମାନ ସମାଜରେ ବିରଳ । ସେଥିଯୋଗୁଁ ଦେଶରେ ଆଉ ନିର୍ଭୀକ ସନ୍ତାନର ଜନ୍ମ ସମ୍ଭବ ହେଉ ନାହିଁ । ସତୀ ସାବିତ୍ରୀଙ୍କର ବନବାସୀ ସତ୍ୟବାନଙ୍କୁ ସ୍ୱାମୀ ରୂପେ ଗ୍ରହଣ କରିବା ଅଲୌକିକ ବୋଧହୁଏ । ଏ ଆଦର୍ଶରେ ଅନୁପ୍ରାଣିତ ହେବାକୁ ଆଜିକାଲି ଶିକ୍ଷିତା ନାରୀ କୁଣ୍ଠିତ । ପାଶ୍ଚାତ୍ୟ ମତରେ ଜୀବନ ଗଢ଼ିବା ତାର ଉଦ୍ଦେଶ୍ୟ । ସେଥିରେ ମଧ୍ୟ ସେ ଆଶାନୁରୂପ କୃତକାର୍ଯ୍ୟ ହୋଇପାରୁ ନାହିଁ । ସହଜ ସୁଖ-କାମନା ଉଭୟ ପୁରୁଷ ଓ ସ୍ତ୍ରୀ ମନକୁ ବଶୀଭୂତ କରିପକାଇଛି । ଏପରି ଅବସ୍ଥାରେ ସଂଯମୀ, କଷ୍ଟସହିଷ୍ଣୁ ଓ ସାହସୀ କର୍ମୀର ଅଭାବ ହେବା ଆଶ୍ଚର୍ଯ୍ୟ ନୁହେଁ । ଦେଶର ଜନସଂଖ୍ୟା ତୁଳନାରେ ଗୁଣବାନ୍ ଲୋକମାନଙ୍କ ସଂଖ୍ୟା ଅତି ଅଳ୍ପ କହିଲେ ଚଳେ ।

ପ୍ରଜନନ କ୍ରିୟାକୁ ସଂଯତ କରି ପବିତ୍ର ପ୍ରଣୟ-ବନ୍ଧନକୁ ସୁଦୃଢ଼ କରିବା ଆବଶ୍ୟକ । ଅନେକ ସମୟରେ ପିତାମାତା ଦେଶର କିମ୍ବା ନିଜର ଅବସ୍ଥା ପ୍ରତି ଦୃଷ୍ଟି ନ ରଖି ସନ୍ତାନମାନଙ୍କର ସଂଖ୍ୟାବୃଦ୍ଧିରେ ଆନନ୍ଦ ଅନୁଭବ କରନ୍ତି; କିନ୍ତୁ ବାର୍ଦ୍ଧକ୍ୟରେ ଯାହା କଷ୍ଟ ପାଆନ୍ତି, ତାହା କାହାରିକୁ ଅବିଦିତ ନାହିଁ । ବିପଥଗାମୀ ଓ ଅସଚ୍ଚରିତ୍ର ସନ୍ତାନର କୁକାର୍ଯ୍ୟ ବୃଦ୍ଧ ପିତାମାତାଙ୍କର ଚିତ୍ତବିକ୍ଷେପରେ କାରଣ ହୋଇଥାଏ । ଅନେକଗୁଡ଼ିଏ ସନ୍ତାନ ଭାରତ ପରି ଜନବହୁଳ ଦେଶରେ ଜନ୍ମ ହେଲେ ପିତାମାତାଙ୍କର ଆତ୍ମୋନ୍ନତି ଦୂରେ ଥାଉ, ସନ୍ତାନମାନଙ୍କର ଭରଣପୋଷଣ ଓ ଶିକ୍ଷା ସହଜରେ ମିଳେ ନାହିଁ; କେବଳ ବୁଭୁକ୍ଷୁମାନଙ୍କର ସଂଖ୍ୟା ବଢ଼େ ।

ସୁଖଲାଳସା ଜୀବର ଧର୍ମ । ସାଂସାରିକ ସୁଖ ଆଶା କାହାରି ପୂର୍ଣ୍ଣ ହୁଏ ନାହିଁ । ପ୍ରବଳ-ପ୍ରତାପ ଦିଲ୍ଲୀର ମୋଗଲ ସମ୍ରାଟ ଜ୍ୟୋତ୍ସ୍ନାପ୍ଲାବିତ ବସନ୍ତ ଯାମିନୀରେ ପୁଷ୍ପକାଶଯ୍ୟାରେ ଶାୟିତ ହୋଇ ସୁଦ୍ଧା ସୁଖୀ ହୋଇପାରି ନାହାନ୍ତି । ଯଥାର୍ଥ ସୁଖରେ ଆକାଙ୍କ୍ଷାର କ୍ଷୁବ୍ଧତା କିମ୍ବା ଅନଳମୟୀ ଝଟିକାର ଆଶଙ୍କା ନାହିଁ । ସେ ସୁଖ ସର୍ବଦା ଶାନ୍ତ ଓ ଅନାବିଳ କାଳ ବିରାଜିତ । ଧର୍ମାଚରଣଦ୍ୱାରା ପ୍ରକୃତ ସୁଖ ଓ ଆନନ୍ଦ ସମ୍ଭୋଗ କରାଯାଏ ବୋଲି ଜ୍ଞାନୀମାନେ ଧର୍ମସାଧନର ପ୍ରୟୋଜନୀୟତା ସ୍ୱୀକାର କରି ଅଛନ୍ତି ।

# ସୁଖର ସନ୍ଧାନ

ମେଘାଚ୍ଛନ୍ନ ନୈଶ ଆକାଶରେ କ୍ଷଣପ୍ରଭାର ଚପଳ ଆଲୋକ ନିର୍ଜନ ପ୍ରାନ୍ତର-ବିହାରୀ ସନ୍ଧରୁଦ୍ଧ ପଥିକର ବିବ୍ରତ ଦୃଷ୍ଟିରୁ ଅନ୍ଧକାରକୁ କଥଞ୍ଚିତ୍ ଅପସାରିତ କରି ଯେଉଁ ଆଶାର ସଞ୍ଚାର କରେ, ତାହା ପୁଣି ନୈରାଶ୍ୟରେ ପରିଣତ ହୁଏ । କୋମଳ କଳିକାଟି ଫୁଟି ମଉଳିଯାଏ । ଯୁବତୀର ସରସ ସରଳ ହାସ୍ୟଟି ଫୁଟିଉଠେ କ୍ଷଣକ ପାଇଁ ଯୁବକର ହୃଦୟକୁ ଟାଣିନେବାକୁ । ଯୁବକ ଚଞ୍ଚଳ ହୋଇଉଠେ ନିଜକୁ ରୂପବତୀର ସୌନ୍ଦର୍ଯ୍ୟରେ ଭସାଇ ଦେବାପାଇଁ ! ସେ ନିଜକୁ ଭୁଲି ଯେତେବେଳେ ତାର ସର୍ବସ୍ୱ ଅର୍ପଣ କରେ, ସେତେବେଳେ ସେହି ରମଣୀର ଅଭିସନ୍ଧିପୂର୍ଣ୍ଣ ଦୁଇଟି ନୀରସ କଥା ତା ଜୀବନକୁ ବ୍ୟର୍ଥ କରିଦିଏ । ଦୁଇଟି ହୃଦୟ ଉନ୍ମୁକ୍ତ ହୁଏ, ସରଳ ଭାବ ଫୁଟି ଉଠେ; କିନ୍ତୁ ଅପ୍ରତ୍ୟାଶିତ ବିଚ୍ଛେଦ ଆସି ବାଧାଦିଏ, ମନ କଥା ମନରେ ରହେ । ଜଣେ ଜଣକୁ ଅନୁସରଣ କରେ ନିଃସ୍ୱାର୍ଥ ସ୍ନେହ ଓ ପ୍ରେମ ଦେବାପାଇଁ; କିନ୍ତୁ ପ୍ରତ୍ୟାଖ୍ୟାନରେ ମର୍ମଦାହ ପାଏ । ସୁନ୍ଦରୀକୁ ଦେଖି ଯୁବକ ଆକୃଷ୍ଟ ହୁଏ; ମୁହୂର୍ତ୍ତକେ କେତେ ଯୁଗାନ୍ତର ପାଇ ବିଫଳ ବାସନା ପୋଷଣ କରେ । ମଳୟ ସ୍ପର୍ଶରେ ଯୌବନ-ବୀଣା ବାଜି ଉଠେ; ପୁଣି ଜଗତର କର୍କଶତା ମଧ୍ୟରେ ନୀରବ ରହେ । ପ୍ରସ୍ଫୁଟିତ କୁସୁମର ସୌରଭ ଓ ମଧୁପର ଗୁଞ୍ଜନ ଆକୁଳତା ସୃଷ୍ଟି କରେ । ସୁଖର ଢେଉଟି ଆସେ ଶୂନ୍ୟତା ରଖି ଚାଲି ଯିବାପାଇଁ । ସୁଖର ସଂସାର ବିପର୍ଯ୍ୟସ୍ତ ହେବା ଯଦି ବିଧିର ବିଧାନ ହୁଏ, ତାହା ହେଲେ ସୁଖପ୍ରୟାସରେ ଲାଭ କଣ ? କ୍ଷଣିକ ମାନସିକ ଉଲ୍ଲାସରେ ଜଗତର ଅସ୍ଥାୟୀ ସୌନ୍ଦର୍ଯ୍ୟରୁ ଯେଉଁ ସୁଖ ମିଳେ, ତାହା ଗୋଟାଏ ତୃଷ୍ଣା ମାତ୍ର । ପ୍ରକୃତ ସୁଖ ପାଇବା ପ୍ରତ୍ୟେକ ମନୁଷ୍ୟର କାର୍ଯ୍ୟାଧୀନ, ଏଥିରେ ବିଧିକୃତ କୌଣସି ପ୍ରତିବନ୍ଧକ ନାହିଁ । ଜୀବନର ଉପାଦେୟତା ବୁଝିବା ଖୁବ୍ ସହଜ ନୁହେଁ ।

ଅନେକେ ଭାବନ୍ତି, ଅନ୍ୟର ସୁଖବିଧାନ କରି ମନର ତୃପ୍ତି ଆଣିବା ପ୍ରଶସ୍ତ ଉପାୟ । ସେମାନଙ୍କ ମତରେ, ସ୍ୱାର୍ଥଜଡ଼ିତ ସୁଖ ପାଇଁ ବ୍ୟସ୍ତ ହେଲେ ମଧ୍ୟ ତାହା ମିଳିବା ଅସମ୍ଭବ । ଜୀବନରେ ଅନେକ ପ୍ରକାର ସାଂସାରିକ ସୁଖ ଥାଇପାରେ; କିନ୍ତୁ ମନୁଷ୍ୟ ଉପରେ ସେମାନଙ୍କର ପ୍ରଭୁତ୍ୱ ଜନ୍ମିଲେ ପରିଣାମ ଦୁଃଖପୂର୍ଣ୍ଣ ହୁଏ । ସିନେକାଙ୍କ ମତରେ, ଯେ ପର୍ଯ୍ୟାୟକ୍ରମେ ସୁଖ ଓ ଦୁଃଖର ଅଧୀନ ହୁଏ, ତାର ଦୁର୍ଦ୍ଦଶାର ସୀମା ରହେ ନାହିଁ । ସ୍ୱାର୍ଥ-ସଂଶ୍ଳିଷ୍ଟ କ୍ଷୁବ୍‌ଧତା ଓ କଳ୍ପିତ ଦୁଃଖାନୁଦର୍ଶନରେ କାହାରି ଉପକାର ହୁଏ ନାହିଁ । ସବୁ ସମୟରେ ପ୍ରସନ୍ନ ଓ ସ୍ନିଗ୍ଧ ଭାବରେ ଅନ୍ୟକୁ ଅନୁପ୍ରାଣିତ କରିବା ମନୁଷ୍ୟର ଉଦାର ସାଧନା ଉପରେ ନିର୍ଭର କରେ । ଭଲରୂପେ ଜୀବନଯାପନ କରିବାଦ୍ୱାରା ଜୀବନର ମହତ୍ତ୍ୱ ଜଣାପଡ଼େ । ଅନେକ ଲୋକଙ୍କ ଜୀବନରେ କୌଣସି ଲକ୍ଷ୍ୟ ନ ଥାଏ । ଭାସମାନ ତୃଣ ସଙ୍ଗେ ସେମାନଙ୍କ ଅକର୍ମକ ଜୀବନକୁ ତୁଳନା କରାଯାଇପାରେ ଓ ଆଳସ୍ୟରେ ସେମାନଙ୍କର କେବଳ ପ୍ରାଣଧାରଣର ଲକ୍ଷଣ ମିଳେ । ଚିନ୍ତା ଓ କାର୍ଯ୍ୟ ଜୀବନର ପରିମାପକ । ଜ୍ଞାନ, କାର୍ଯ୍ୟ-ସାଧନ କଷ୍ଟ-ସହିଷ୍ଣୁତା ଓ ବିଧିଦତ୍ତ ବିଷୟମାନଙ୍କରେ ଆନନ୍ଦ ଉପଲବ୍‌ଧି କରିବାଦ୍ୱାରା ଦୁଃଖନିବୃତ୍ତି ହୋଇଥାଏ । ଅତ୍ୟଳ୍ପ ଲୋକ ବିଶ୍ୱର ବୈଚିତ୍ର୍ୟ ଦର୍ଶନରେ ଜୀବନର ମାଧୁରୀ ଅନୁଭବ କରନ୍ତି । ତାର ଗତି ସଙ୍ଗେ ପ୍ରକୃତିଜାତ ବସ୍ତୁମାନଙ୍କର ସମ୍ବନ୍ଧକୁ କାର୍ଯ୍ୟୋପଯୋଗୀ କରିନେବା ଉଚିତ । ବାହ୍ୟ ଜଗତର ସଂସ୍ପର୍ଶରେ ଆସି କୌଣସି ଦୁଃଖ ଅନୁଭବ କଲେ ଦୋଷ ନିଜ ଉପରେ ଆରୋପ କରିବା ଆବଶ୍ୟକ; କାରଣ ସ୍ୱକୃତ ଅନିଷ୍ଟ ମନୁଷ୍ୟର ସାଂସାରିକ ଜୀବନକୁ କ୍ଲେଶପୂର୍ଣ୍ଣ କରିଥାଏ । ଆକାଙ୍‌କ୍ଷାର ଅନୁକୂଳରେ ଘଟନା-ସ୍ରୋତ ପ୍ରବାହିତ ହେବା ଏହାର ଲକ୍ଷ୍ୟ ନୁହେଁ; ବରଂ ତାହା ସହିତ ସାମ୍ୟଭାବ ସ୍ଥାପନରେ ଶାନ୍ତି ଆସିପାରେ । ଅପରର ଅଧିକୃତ ବିଷୟରେ ଈର୍ଷାନ୍ୱିତ ହେଲେ ନିଜସ୍ୱ କିଛି ରହେ ନାହିଁ; କ୍ଷୁଣ୍ଣତା ସାର ହୁଏ । ଅଧିକାଂଶ

ସମୟରେ ଆମ୍ଭେମାନେ ଏଥିପ୍ରତି ଦୃଷ୍ଟି ନ ଦେଇ ଉଦ୍‌ବେଗ, କଷ୍ଟ ଓ ଦୁଃଖରେ ଜୀବନ କଟାଇଥାଉ । ବିରକ୍ତିପୂର୍ଣ୍ଣ ସାମାନ୍ୟ କଥାପଦକରେ ଜୀବନର ଯେଉଁ ସରସତା ନଷ୍ଟ ହୁଏ, ତାକୁ ଫେରି ପାଇବାକୁ ଅନେକ ଦିନ ଲାଗିଯାଏ ।

ସମ୍ପର୍କ-ଶୂନ୍ୟ ଭାବରେ କର୍ତ୍ତବ୍ୟ ପାଳନ କଲେ ମନୁଷ୍ୟ ସୁଖୀ ହୋଇପାରେ ନାହିଁ । ଏପରି ଅବସ୍ଥା କଷ୍ଟକର ବୋଧହୁଏ । ସମ୍ପର୍କୀୟମାନଙ୍କଠାରୁ ସ୍ୱତନ୍ତ୍ର ରହିଲେ, ସହାନୁଭୂତି ଶିଥିଳ ହେବାଦ୍ୱାରା ସେମାନଙ୍କର ସୁଖ ଓ ଦୁଃଖରେ ଆସ୍ଥା ରହେ ନାହିଁ । ଏଥିରେ ସ୍ନେହର ଉତ୍ସଟି ଅନେକ ପରିମାଣରେ ସଙ୍କୁଚିତ ହୋଇ ଜୀବନର ସୁଖଧାରାଟିକୁ କ୍ଷୀଣ କରିଦିଏ । କଷ୍ଟ ଓ ଦୁଃଖଭୟରେ ଅନୁଭବ କରିବାର କ୍ଷମତା ଲୋପ କରିଦେଲେ, ସୁଖଭୋଗର ଆଶାକୁ ମଧ୍ୟ ଚିରକାଳ ପାଇଁ ବିସର୍ଜନ ଦେବାକୁ ହୁଏ । ଅଧିକାଂଶ ସ୍ଥଳରେ ଦୁଃଖ ବୋଲି ଆମ୍ଭେମାନେ ଯାହାକୁ କହୁଁ, ସେଥିରେ ସୁଖ ପ୍ରଚ୍ଛନ୍ନ ଭାବରେ ଥାଏ । ନିର୍ବିରୋଧରେ ଅନିବାର୍ଯ୍ୟ ବିପଦର ସମ୍ମୁଖୀନ ହେବା ସୁପୁରୁଷର କାର୍ଯ୍ୟ । ମନ୍ଦିରୁ ଭଲ ନିର୍ଣ୍ଣୟ ନ କରି କିମ୍ବା ଦୁଃଖର ପ୍ରଥମ ଦର୍ଶନରେ ଭଗବାନଙ୍କର ଦୟାକୁ ଉପେକ୍ଷା କରି ଅଗ୍ରସର ହେବା ଉଚିତ ନୁହେଁ । ଦୁଃଖ ବିପଦର ସୂଚନା ଦିଏ । ଜୀବଜଗତର ସ୍ଥିତିପକ୍ଷରେ ଏହା ନିତାନ୍ତ ଆବଶ୍ୟକ । ସୁଖର ପୂର୍ଣ୍ଣ ବ୍ୟାପ୍ତି ଯଦି ଜୀବ ଅସ୍ୱୀକାର କରାଯାଏ, ତାହାହେଲେ ଦୁଃଖର ମାତ୍ରାକୁ ଅତିରଞ୍ଜିତ କରିବା ମଧ୍ୟ ଅନୁଚିତ । ସିନେକାଙ୍କ ମତରେ ଦୁର୍ଦ୍ଦଶା ଓ ଧ୍ୱଂସରୁ ସମୃଦ୍ଧିର ଉତ୍ପତ୍ତି ହୋଇପାରେ । ଏଥିରେ ଦୃଷ୍ଟାନ୍ତ ମଧ୍ୟ ଜଗତରେ ବିରଳ ନୁହେଁ । ଦୁଃଖର ବର୍ତ୍ତମାନତା ସୁଖଭୋଗର ଅନ୍ତରାୟ ହୋଇପାରେ; କିନ୍ତୁ ମନୁଷ୍ୟ ସେହି ପ୍ରତିବନ୍ଧକଟି ନିଜ ଶକ୍ତିରେ ଦୂର କରିପାରେ । ସମୟ-ସ୍ରୋତରେ ଭାସି ଭାସି ମୂର୍ଖ ଲୋକ ଦୁଃଖରୁ ନିଷ୍କୃତି ପାଏ; କିନ୍ତୁ ଜ୍ଞାନୀ ବିଚାରଶକ୍ତିରେ ନିଜକୁ ରକ୍ଷା କରେ । ମନ ଦୁର୍ବଳ ହେଲେ ବିପଦର ଘୂର୍ଣ୍ଣନରେ ମନୁଷ୍ୟ ନିତାନ୍ତ ଅସହାୟ ହୋଇପଡ଼େ ।

ମୃତ୍ୟୁ ଓ ଅନ୍ୟାନ୍ୟ ମର୍ମବିଦାରକ ଶୋକ ଅପେକ୍ଷା ଦୈନନ୍ଦିନ ଜୀବନର ବିରକ୍ତିକର ଘଟଣାଗୁଡ଼ିକ ବେଶି ପରିମାଣରେ ମନୁଷ୍ୟର ସୁଖପଥରେ ବାଧା ଜନ୍ମାନ୍ତି । ଏହି ବାଧାସବୁ ମନୁଷ୍ୟ ଅକ୍ଳେଶରେ ଅତିକ୍ରମ କରିପାରେ । କଳହ ଓ ମନୋମାଳିନ୍ୟରେ କେତେ ସୁଖର ସଂସାର ଛାରଖାର ହୁଏ । ଏଥିରେ କାହାକୁ ଦାୟୀ କରାଯିବ ? ନିଜର ଅଜ୍ଞତାବଶତଃ ମନୁଷ୍ୟ ବେଶି କଷ୍ଟଭୋଗୀ ହୁଏ । ମୁହୂର୍ତ୍ତକର ମତ୍ତତା ଯୁଗାବଧିର ଅନୁତାପ ସଞ୍ଚୟ କରେ । ଜୀବନର ବେଶି ଭାଗ ଅପବ୍ୟୟିତ ହେଲେ ଅବଶିଷ୍ଟ ଭାଗରେ ସୁଖାନ୍ୱେଷଣ ବୃଥା ପ୍ରୟାସ ପରି ଜଣାଯାଏ । ବିପଦ ଆସିବା ପୂର୍ବରୁ ତାର ପ୍ରତୀକ୍ଷାରେ ରହିଲେ ଦୁଃଖର ମାତ୍ରା ବଢ଼ିଯାଏ । ଏହା ଅପେକ୍ଷା କେବଳ ଆଶଙ୍କାରୁ ବେଶି ମନସ୍ତାପ ମିଳେ; କାରଣ ଆଶଙ୍କା ଅମୂଳକ ହୋଇପାରେ । କୌଣସି ଉଦ୍ଦେଶ୍ୟରେ ଯଥାସାଧ୍ୟ ଚେଷ୍ଟା କଲା ପରେ, ଧୀର ଭାବ ଅବଲମ୍ବନ କରିବା ଉଚିତ । ଏଥିପ୍ରତି ଲକ୍ଷ୍ୟ ନ ରଖିଲେ ଫଳାଫଳ ଜାଣିବା ପୂର୍ବରୁ ମନୁଷ୍ୟ ଉଦ୍‌ବିଗ୍ନ ଓ ଉତ୍ସାହହୀନ ହୁଏ । କଳ୍ପିତ କିମ୍ବା ଅନିର୍ଦ୍ଦିଷ୍ଟ ବିପଦରୁ ରକ୍ଷା ପାଇବାକୁ ଯାଇ ସେ ପ୍ରକୃତ ବିପଦକୁ ଆହ୍ୱାନ କରିଥାଏ । ଯେ ସାମାନ୍ୟ ପ୍ରାପ୍ତିରେ ତୃପ୍ତ ହୁଏ ନାହିଁ, ତାର ସନ୍ତୋଷ ଜନ୍ମିବା ସହଜ ନୁହେଁ । ବୃଥା ଆଡ଼ମ୍ବରପ୍ରିୟ ମନୁଷ୍ୟର ଜୀବନ-ଯାତ୍ରା ନିର୍ବିଘ୍ନରେ ନିର୍ବାହିତ ହୁଏ ନାହିଁ । ସୁଖ ପାଇବା ଆଶାରେ ସେ ଅଯଥା ବାଧାସବୁ ସୃଷ୍ଟି କରେ ଓ ତଦ୍ଦ୍ୱାରା ତାର ସରଳ ପଥ କଣ୍ଟକିତ ହୁଏ । ଦୁର୍ଦ୍ଦଶାରେ କ୍ଷୁବ୍ଧ ନ ହେଲେ ଅଶାନ୍ତି ଆପେ ଦୂର ହୁଏ । କୌଣସି କର୍ମଦ୍ୱାରା ନିନ୍ଦିତ ହେଲେ, ସେହି ନିନ୍ଦାକୁ ନ୍ୟାୟସଙ୍ଗତ କିମ୍ବା ଅଯଥା ବୋଲି ମନେ କରିବା ଉଚିତ । ଅସ୍ଥିରତା ସବୁ ସମୟରେ ଅନିଷ୍ଟକାରକ ।

ମନୁଷ୍ୟକୁ ସବୁ ବିଷୟରୁ ବଞ୍ଚିତ କରାଯାଇପାରେ । ସେ ଗୃହ, ପରିବାର ଓ ଧନଶୂନ୍ୟ ହୋଇ ନିର୍ବାସିତ ଦଣ୍ଡ ଭୋଗ କରିପାରେ । ମୃତ୍ୟୁ ଦଣ୍ଡରେ ଦଣ୍ଡିତ ହୋଇପାରେ; କିନ୍ତୁ ତାର ଅନ୍ତର୍ନିହିତ ମନୋବଳ ଉପରେ କାହାର ଅଧିକାର ନାହିଁ । ନିଜ ଉପରେ ଯାହାର ଯେତେ ବେଶି ବିଶ୍ୱାସ, ସେ ସେତିକି ବଳୀୟାନ୍ । ସୁଖସାଧନରେ ଏହାର ଆଶ୍ରୟ ନେବା ପ୍ରତ୍ୟେକଙ୍କର କର୍ତ୍ତବ୍ୟ । ପୃଥିବୀର ସଭ୍ୟତମ ଜାତି ଏହା ଉପରେ ନିର୍ଭର କରି ଯେ ପରିମାଣରେ ସୁଖୀ ହୋଇଅଛି, ଭାରତବାସୀର ଆପେକ୍ଷିକ ଅପକର୍ଷ ହେତୁ ତେତିକ ଦୈନ୍ୟ ଘୋଟି ଆସିଛି ।

ମନୁଷ୍ୟ କ୍ଷୁଦ୍ର ବିଷୟମାନଙ୍କରେ ବିଶ୍ୱସ୍ରଷ୍ଟାଙ୍କର ଶୁଭଇଚ୍ଛା ଦେଖି ନ ପାରି ପ୍ରକୃତ ସୁଖରେ ସୁଦ୍ଧା ହେୟ ଭାବ ପ୍ରକାଶ କରେ । ବିପୁଳ ଐଶ୍ୱର୍ଯ୍ୟରେ ତଥା ଆଡ଼ମ୍ବରପୂର୍ଣ୍ଣ ଜୀବନରେ ସୁଖ ମିଳେ ନାହିଁ; ବରଂ ଅଭାବଗୁଡ଼ିକୁ ସଂଯତ କଲେ

ଉଦ୍ଦେଶ୍ୟ ସାଧିତ ହୁଏ । ମନୁଷ୍ୟର ଅପରିହାର୍ଯ୍ୟ ଅଭାବକୁ ପ୍ରକୃତି ଅପୂର୍ଣ୍ଣ ରଖେ ନାହିଁ । ସେ ନିଜେ ଅନାବଶ୍ୟକ ଅଭାବ ସୃଷ୍ଟି କରି ଦୁଃଖ ଭୋଗ କରେ । 'ରସ୍କିନ୍' ଶାରୀରିକ ପରିଶ୍ରମ, ଅଧ୍ୟୟନ, ସୁଚିନ୍ତା, ପ୍ରେମ ଓ ପ୍ରାର୍ଥନାଦ୍ୱାରା ସୁଖର ପଥ ନିର୍ଣ୍ଣୟ କରିଅଛନ୍ତି ।

ଜଗତର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ 'ଲୁଥର୍' ସ୍ୱର୍ଗସୁଖର ସ୍ୱାତନ୍ତ୍ର୍ୟ ସ୍ୱୀକାର କରିନାହାନ୍ତି । ଚତୁର୍ଦ୍ଦିଗରେ ପରିବ୍ୟାପ୍ତ ଅଶେଷ ଉପଭୋଗ୍ୟ ବିଷୟର ଉପାଦେୟତା ବୁଦ୍ଧିମାନ ଓ ଚିନ୍ତାଶୀଳ ବ୍ୟକ୍ତି ପକ୍ଷରେ ଅନୁଭୂତ ହେବା ସହଜ । ଯେଉଁମାନେ କେବଳ ଇନ୍ଦ୍ରିୟପରତନ୍ତ୍ର ହୋଇ ରହିବାକୁ ଚାହାନ୍ତି, ସେମାନଙ୍କ ପାଇଁ ମଧ୍ୟ କୌଣସି ବସ୍ତୁର ଅଭାବ ନାହିଁ । ସମୟୋପଯୋଗୀ ଅଭିଳଷିତ ପଦାର୍ଥର ଅପ୍ରାପ୍ତିରେ ମନର କ୍ଷୁବ୍ଧତା ଦୁଃଖର କାରଣ ହୁଏ । କେବଳ ବିଷୟ ବାସନାରେ ଆବଦ୍ଧ ହୋଇ ଜୀବନ ଅତିବାହିତ କଲେ, ସଙ୍କୀର୍ଣ୍ଣତା ସ୍ୱତଃ ହୃଦୟକୁ ଅଧିକାର କରେ ଏବଂ ବିଷୟଭୋଗବାଧା ଦୁଃଖ ଆଣେ । ପାର୍ଥିବ ବିଷୟମାନଙ୍କରେ ଅତ୍ୟନ୍ତ ଲିପ୍ତ ରହିଲେ ଭଗବାନଙ୍କ ଅନନ୍ତ ଶକ୍ତିରେ ବିଶ୍ୱାସ କ୍ଷୀଣ ହୁଏ । ଦୁର୍ବିପାକଗ୍ରସ୍ତ ହେଲେ ମାନବ ପାର୍ଥିବ ଅବଲମ୍ବନକୁ ଦୃଢ଼ଭାବରେ ଧାରଣ କରେ । ସେତେବେଳେ ତାର ଅବଲମ୍ବନ କେତେ ଦୂର ଅସ୍ଥାୟୀ ଓ ଦୁର୍ବଳ, ତାହା ସେ ସହଜରେ ବୁଝିପାରେ ନାହିଁ । ଅନେକ ବଡ଼ଲୋକ ସୁଖର ପନ୍ଥା ନିର୍ଣ୍ଣୟ କରି ନ ପାରି ସମସ୍ତ ଜୀବନକୁ ବ୍ୟର୍ଥତାରେ କଟାଇ ଦିଅନ୍ତି । 'ଆଣ୍ଟନି' ରମଣୀର ପ୍ରେମରେ, 'ବ୍ରୁଟସ୍' ଖ୍ୟାତିଲିପ୍ସାରେ ଓ 'ସିଜାର' ସାମ୍ରାଜ୍ୟ ସଂସ୍ଥାପନରେ ସୁଖୀ ହେବାକୁ ଯାଇ ଶେଷରେ ଲାଞ୍ଛନା, ବିରକ୍ତି ଓ ଅକୃତଜ୍ଞତା ଭୋଗ କରିଅଛନ୍ତି । ଅନାତ୍ୟତାର ପୂର୍ଣ୍ଣ ଆସକ୍ତିରେ ଯେଉଁ ଧ୍ୱଂସ ସାଧିତ ହୁଏ, ସେଥିର ସେମାନେ ଜ୍ୱଳନ୍ତ ଦୃଷ୍ଟାନ୍ତ । ଅନେକେ କହିପାରନ୍ତି, ମୃତ୍ୟୁର ଭାବନା ମନୁଷ୍ୟକୁ ପୂର୍ଣ୍ଣମାତ୍ରାରେ ସୁଖୀ କରିଦିଏ ନାହିଁ । ଏ କଥା ଠିକ୍ ନୁହେଁ । ବେକନ୍ କହିଛନ୍ତି, ମନୁଷ୍ୟର ଯେଉଁ ସବୁ ପ୍ରବୃତ୍ତି ଅଛି, ତଦ୍ଦ୍ୱାରା ସେ ମୃତ୍ୟୁଭୟକୁ ହୃଦୟରେ ସ୍ଥାନ ସୁଦ୍ଧା ଦିଏ ନାହିଁ । ପ୍ରେମ, ଯଶ ଓ ତୀବ୍ର ପ୍ରତିହିଂସା ମୃତ୍ୟୁରେ ପ୍ରତିଷ୍ଠା ଲାଭ କରନ୍ତି । ସୁନିୟନ୍ତ୍ରିତ ଜୀବନ-ଯାପନରେ ମୃତ୍ୟୁଭୟ ନ ଥାଏ । ବିଷୟ-ଭୋଗ-ଲମ୍ପଟ କେବଳ ସେଥିରେ ତ୍ରସ୍ତ ହୁଏ ।

ନିଜ ଶକ୍ତି ଅନୁସାରେ ଜଗତର କଲ୍ୟାଣ ସାଧନ କରି ମନରେ ତୃପ୍ତି ଆଣିବା ସୁଖ-ସାଧନର ଗୋଟିଏ ପ୍ରକୃଷ୍ଟ ଉପାୟ । ସମସ୍ତଙ୍କର ଶକ୍ତି ସମାନ ନୁହେଁ । ଜଣକର ସାଧ୍ୟାତୀତ କାର୍ଯ୍ୟ ଅନ୍ୟର ସହଜସାଧ୍ୟ ହୋଇପାରେ । ସାଧୁ ଉଦ୍ଦେଶ୍ୟରେ ନିୟୋଜିତ ସାମାନ୍ୟ ଶକ୍ତି ଜଗତର ପ୍ରଭୂତ ମଙ୍ଗଳ କରେ । ଭୀରୁତା, ଈର୍ଷା, ଲୋଭ ପ୍ରଭୃତି ତ୍ୟାଗ କରି ନିଜ ଚରିତ୍ର ଗଠନ କରିବାଦ୍ୱାରା ମନୁଷ୍ୟ ଜଗତକୁ ଯଥେଷ୍ଟ ଦାନ କରେ । ଏ ଦିଗରେ ଗତି କରିବାକୁ ହେଲେ ଐଣୀ ଶକ୍ତିର ମହତ୍ତ୍ୱ ପ୍ରଥମରୁ ଅନୁଭବ କରିବା ଉଚିତ ।

କେହି କେହି କହିପାରନ୍ତି, ଭୋଗ-ବିଳାସରେ ଲିପ୍ତ ରହିଲେ, ମନୁଷ୍ୟ ସୁଖୀ ହୋଇପାରିବ । ବାସ୍ତବିକ ତାହା ନୁହେଁ । ଥରେ ସ୍ୱେଚ୍ଛାଗ୍ରସ୍ତ ହୋଇ ମଦିରାର ଆଶ୍ରୟ ନେଲେ, ସେ ପଥରୁ ନିଷ୍କୃତି ଲଭିବା ସହଜ ନୁହେଁ । ମନୁଷ୍ୟ ଥରେ ମନର ଉଲ୍ଲାସରେ ମଦ୍ୟପାନରେ ଯେଉଁ ମାଦକତା ପାଏ, ତାକୁ ପୁଣି ଉଦ୍ଦୀପିତ କରିବାକୁ ଯାଇ ସେ ମଦ୍ୟପାନରେ ଅଭ୍ୟସ୍ତ ହୁଏ । ସୁଖ ପାଇବା ଦୂରେ ଥାଉ, ଶେଷକୁ ଏପରି ଗୋଟାଏ ଦୁରାକାଂକ୍ଷା ଆସେ, ଯଦ୍ଦ୍ୱାରା ସେ ପୁନଃ ପୁନଃ ମଦ୍ୟପାନ କରି ସୁଦ୍ଧା ତୃପ୍ତିଲାଭ କରିପାରେ ନାହିଁ । ଏହି ଅଭ୍ୟାସର ବଶ୍ୟତା ତଥା ତ୍ୟାଗ ତା ପକ୍ଷରେ କଷ୍ଟକର ହୁଏ । ଜୀବନରେ ଯେଉଁ ପତନ ଆରମ୍ଭ ହୁଏ, ତାହା କ୍ରମଶଃ ଖରତର ହୋଇଆସେ । ଯାବତୀୟ କୁପ୍ରବୃତ୍ତିମାନଙ୍କର ଅଧୀନ ହେଲେ, ମନୁଷ୍ୟ ଏହି ଦଶା ଭୋଗ କରେ । ସୁଖର ସ୍ଥାନ ନୈରାଶ୍ୟ ଅଧିକାର କରେ । ଅନ୍ୟ ପକ୍ଷରେ ଆତ୍ମସଂଯମ ପ୍ରଥମେ କଷ୍ଟକର ବୋଧ ହୁଏ; କିନ୍ତୁ ସାଧନାଦ୍ୱାରା ଜୀବନ କ୍ରମଶଃ ସରଳ ଓ ସୁଖକର ହୁଏ । ମନୁଷ୍ୟର ସ୍ୱଭାବ ଦୁଇ ବିପରୀତ ଦିଗରେ ଗତି କରିପାରେ । ନିଜ ଉପରେ ପୂର୍ଣ୍ଣ ପ୍ରଭୁତ୍ୱ ଲାଭ କଲେ ଏହି ଗତିକୁ ସୁନିୟନ୍ତ୍ରିତ କରିବା ସହଜ ହୁଏ । ସଂଯମରେ ଆତ୍ମବଳ ସଞ୍ଚିତ ହୋଇ ମହତ୍ତ୍ୱ ପ୍ରକାଶ କରେ । କୁଟୀରବାସୀ ଦରିଦ୍ର ଏହି ବଳରେ ମୁକୁଟମଣ୍ଡିତ ରାଜାଧିରାଜ ନିକଟରେ ସୁଦ୍ଧା ନତମସ୍ତକ ହେବାକୁ ଚାହେଁ ନାହିଁ । ସଂସାରରେ କିଏ ବଡ଼ ? ମନୁଷ୍ୟର ଆତ୍ମବଳ ଆଧିକ୍ୟରେ ଏଥିର ପରିଚୟ ମିଳେ । କ୍ଷମତା ଓ ପଦମର୍ଯ୍ୟାଦା ସହିତ ମହତ୍ତ୍ୱର ଅଳ୍ପ ସମ୍ପର୍କ ଥାଏ । ଅପରିମିତ ବ୍ୟକ୍ତିଗତ ଆଶା ଓ ଆକାଂକ୍ଷା ଦମନ କରିବାକୁ ହେଲେ ବିଶ୍ୱର ଅସୀମ ଶୋକ ପ୍ରତି ଦୃଷ୍ଟି ଦେବା ଆବଶ୍ୟକ ।

ରାଜକୀୟ ଉଚ୍ଚପଦବୀ-ଲାଭରେ ଲୋକ ନିଜକୁ ଧନ୍ୟ ଓ ସୁଖୀ ମନେ କରିବା ମଧ୍ୟ ଗୋଟାଏ ମୋହ । ରାଜ୍ୟାଧିପତି ରାଜ୍ୟଶାସନରେ ଯେଉଁ ସୁଖ ପାଏ, ଇନ୍ଦ୍ରିୟ-ଜୟୀ ତା'ଠାରୁ ସହସ୍ର ଗୁଣରେ ବେଶୀ ସୁଖୀ । କୃଷି ଓ ବାଣିଜ୍ୟ ପ୍ରଭୃତି ବିଷୟମାନଙ୍କର ଉନ୍ନତି ଆତ୍ମବଳ ସାଧନ ପକ୍ଷରେ କୌଣସି ବାଧା ଜନ୍ମାଏ ନାହିଁ; ବରଂ ଦେଶର ଆର୍ଥିକ ଦୁରବସ୍ଥା ମୋଚନ କରିବା ପାଇଁ ପ୍ରତ୍ୟେକ ବିବେକୀ ଲୋକର ଦୃଷ୍ଟି ଦେବା ନିତାନ୍ତ ଆବଶ୍ୟକ । ଶ୍ରେଷ୍ଠ କିମ୍ବା ବଡ଼ ଜୀବିକା ଉପରେ ଜୀବନର ଶ୍ରୀ ନିର୍ଭର କରେ ନାହିଁ । ଜଣେ ସାଧାରଣ ଲୋକର ଜୀବନ ପ୍ରବଳପ୍ରତାପ ମହାରାଜାଙ୍କର ଜୀବନଠାରୁ ଉତ୍କୃଷ୍ଟ ହୋଇପାରେ । 'ରସ୍କିନ୍' ଶିଳ୍ପ-ନୈପୁଣ୍ୟ ବିଷୟରେ ଯାହା କହିଛନ୍ତି, ତାହା ଜୀବନର ଶ୍ରେଷ୍ଠତ୍ୱ ସମ୍ବନ୍ଧରେ ମଧ୍ୟ ଆରୋପ କରାଯାଇପାରେ । ଶିଳ୍ପୀର ଜ୍ଞାନ ବିଷୟ କିମ୍ବା ପଦାର୍ଥବିଶେଷର ଚମତ୍କାରିତାରେ ପ୍ରମାଣିତ ହୁଏ ନାହିଁ । ଅଙ୍କନକୌଶଳ ଉପରେ ଏହା ସମ୍ପୂର୍ଣ୍ଣ ନିର୍ଭର କରେ । ଜୀବନର ଅବଲମ୍ବନ ଦେଖି କାହାକୁ ସୁଖୀ କିମ୍ବା ଦୁଃଖୀ ମନେ କରିବା ଉଚିତ ନୁହେଁ ।

ପ୍ରତ୍ୟେକ ଲୋକକୁ ଜୀବନ-ସଂଗ୍ରାମରେ ଯୋଗ ଦେବାକୁ ହେବ; ପାପ, ପୁଣ୍ୟ, ଭଲ ଓ ମନ୍ଦ ମଧ୍ୟରେ ନିଜର କର୍ମମାର୍ଗ ସ୍ଥିର କରିବାକୁ ସମସ୍ତଙ୍କୁ ପଡ଼ିବ ।

ବର୍ତ୍ତମାନ ଯୁଗର କର୍ମ-ନିର୍ବାହ-ପନ୍ଥା ସୁଗମ ନ ଦେଖି କିମ୍ବା ବହୁ ଆୟାସରେ ଜୀବିକା ଅର୍ଜନ କରି କେହି କେହି ସମୟର ଦୋଷ ଦେଇ ପାରନ୍ତି । ପ୍ରକୃତରେ ଦେଖିବାକୁ ଗଲେ, ମନୁଷ୍ୟ ଆଜିକାଲି ବେଶି କଷ୍ଟକର କାର୍ଯ୍ୟମାନ ସାଧନ କରି ଜୀବନର ମୂଲ୍ୟ ପୂର୍ବାପେକ୍ଷା ବଢ଼ାଇ ଦେଇଛି । କର୍ମ ସୁଖପ୍ରଦ । ଆଜି ଜଗଦ୍‌ବାସୀର ଚିନ୍ତା-ସ୍ରୋତ ଓ ଅଧିକୃତ ବ୍ୟବସାୟ ଯେପରି ସ୍ୱାଧୀନ ଆକାର ଧାରଣ କରିଛି, ସେଥିରେ କର୍ମର ମହତ୍ତ୍ୱ ସୁସ୍ପଷ୍ଟ । କର୍ମ-ସିଦ୍ଧି ଶୀଘ୍ର କିମ୍ବା ବିଳମ୍ବରେ ହୋଇପାରେ; ସେଥିପାଇଁ ମନରେ ଶୃଙ୍ଖଳା ଆଣିବା ଉଚିତ ନୁହେଁ । ସାଧାରଣତଃ ଆମ୍ଭେମାନେ ନିଜର ଦୋଷ ନ ଦେଖି କୌଣସି ବିଶିଷ୍ଟ ଅବସ୍ଥାକୁ ଦାୟୀ କରୁଁ ।

କର୍ମଜୀବନର ପରିଣାମ କୌଣସି ଗୋଟିଏ ନିର୍ଦ୍ଧାରିତ କିମ୍ବା ବିଶିଷ୍ଟ କାର୍ଯ୍ୟସମ୍ପାଦନରେ ସ୍ଥିର କରାଯାଏ ନାହିଁ । ଦୈନନ୍ଦିନ ଜୀବନର ଘଟଣା ଉପରେ ଏହା ନିର୍ଭର କରେ । ଜଗତରେ କାହାକୁ ହଠାତ୍ ସାମାନ୍ୟ ମନେ କରିବା ଉଚିତ ନୁହେଁ । କ୍ଷୁଦ୍ରତ୍ୱରେ ବିଶାଳତାର ବୀଜ ନିହିତ ଥାଏ । ଧୂଳିକଣାରୁ ଗିରିରାଜର ଉତ୍ପତ୍ତି ହୁଏ । ସଂସାରର କୋଲାହଳ ମଧ୍ୟରେ ନିର୍ଜନତାର ମାଧୁରୀ ଓ ସ୍ନିଗ୍ଧତା ଅନୁଭବ କରିବା କେବଳ ମହତ୍ ଲୋକ ପକ୍ଷରେ ସମ୍ଭବ ହୁଏ । ସେ କାହାର ଉଚ୍ଚ ଓ ନୀଚ ପ୍ରଭାବରେ ଆକୃଷ୍ଟ ହୁଏ ନାହିଁ । ମନ ଶାନ୍ତିରେ ସେ ପ୍ରକୃତ ସୁଖ ଅନୁଭବ କରେ । ସାଧାରଣ ମନୁଷ୍ୟ ସମୁଦ୍ର ଉପକୂଳ କିମ୍ବା ପାର୍ବତ୍ୟ ଅଞ୍ଚଳରେ ବିଶ୍ରାମ ଭୂମି ଲୋଡ଼େ । ସୁଖ ପାଇବା ତାର ଉଦ୍ଦେଶ୍ୟ । ନିଜ ଉପରେ ବିଶ୍ୱାସ ନ ଜନ୍ମିବା ଯାଏ ଏ ସବୁ ବାହ୍ୟ ଆକର୍ଷଣ ତାକୁ ପ୍ରକୃତ ସୁଖ ଦେଇ ପାରେ ନାହିଁ । ଶାନ୍ତିର ପବିତ୍ର କୁଟୀରଟି ମନୋରାଜ୍ୟରେ ସ୍ଥାପିତ ହେବା ବାଞ୍ଛନୀୟ । ଧର୍ମ ଜୀବନରୁ ଜ୍ଞାନ ଓ ସତ୍‌ପ୍ରବୃତ୍ତିଗୁଡ଼ିକର ବିକାଶ ହୁଏ । ଏଗୁଡ଼ିକ ବିକଶିତ ହେଲେ ମନୁଷ୍ୟ ଅକ୍ଲେଶରେ ସୁଖୀ ହୁଏ । ଜୀବନର ପବିତ୍ରତା ନଷ୍ଟ କରି ସୁଖ ଆଶା କରିବା ବିଡ଼ମ୍ବନା ମାତ୍ର । ଗତ ଜୀବନର ମଧୁମୟ ସ୍ମୃତି ଓ ଭବିଷ୍ୟତର ସୁଖ ଆଶା ପୋଷଣ କରିବା ମନ୍ଦ ନୁହେଁ । ଦୁଶ୍ଚିନ୍ତା, ଆତ୍ମଗ୍ଲାନି ଓ କୁଚିନ୍ତାଗୁଡ଼ିକରୁ ନିରସ୍ତ ହେଲେ ଅସତ୍ ପ୍ରବୃତ୍ତି ଲୋପ ପାଏ । ମନରେ ଯେପରି ଭାବ ପୋଷିତ ହୁଏ, କାର୍ଯ୍ୟର ଗତି ତଦନୁଯାୟୀ ହୁଏ । କୁଭାବ ଦ୍ୱାରା ମନର ସ୍ଥିରତା ନଷ୍ଟ ହୁଏ । ପଙ୍କିଳ ବନ୍ୟାଜଳ ସରୋବରରେ ପ୍ରବେଶ କରେ, କିଛିଦିନ ପରେ ସ୍ୱଚ୍ଛ ହୁଏ । ସେହିପରି କାଳକ୍ରମେ ମନର ନିଶ୍ଚଳତାରୁ ଶାନ୍ତ ଭାବ ଫୁଟି ଉଠେ । ଥରେ ସୁସ୍ଥିର ହେଲେ ସୁଖର ପଥ ସନ୍ଧାନ କରିବା କଷ୍ଟକର ହୁଏ ନାହିଁ ।

# ଆକାଙ୍‌କ୍ଷା ଓ ସମ୍ମାନ

ଚଞ୍ଚଳ ମନ ଓ ଉଦ୍ଦୀପନା ଆଶା ଯେପରି ଜୀବନସ୍ରୋତ ନିରନ୍ତର ଗତିରେ ଚାଳିତ । ଅଜସ୍ର ବାଧାବିଘ୍ନ ଆସୁଛି, ସେଥିପ୍ରତି କାହାର ଦୃକ୍‌ପାତ ନାହିଁ । ଗୋଟିଏ ଆଶ୍ୱାସନା ସୁଦୂର ଭବିଷ୍ୟତ୍ ଗର୍ଭରେ ଥାଇ ମାନବୀୟ ଭାବନାରାଶିକୁ ସର୍ବଦା ତାର ଇଙ୍ଗିତରେ ଚାଳିତ କରୁଛି । ସମସ୍ତଙ୍କର ଲକ୍ଷ୍ୟ ସମାନ ନୁହେଁ । ଜୀବର ଧର୍ମ ଉପରେ ସ୍ୱଭାବର କ୍ରିୟାବୈଷମ୍ୟ ସୃଷ୍ଟି କରି ସେହି ଆଶ୍ୱାସନାକୁ ବିଭିନ୍ନ ଆକାରରେ କଳ୍ପନା-ତୂଳିକାରେ ଚିତ୍ରିତ କରେ । ଅବଲମ୍ବନ ଓ ଆକାଙ୍‌କ୍ଷାଶୂନ୍ୟ ଜୀବନରେ ଏପରି ଚିତ୍ରର ଛାୟାପାତ ହୁଏ ନାହିଁ । ସ୍ୱଭାବାନୁଯାୟୀ ଆକାଙ୍‌କ୍ଷାର ଉତ୍ପତ୍ତି ହେଲେ ସାଧାରଣ ମନୁଷ୍ୟ ନିରନ୍ତର କର୍ମମାର୍ଗରେ ଅଭିନିବିଷ୍ଟ ଥାଇ ଗୋଟିଏ ସ୍ୱତନ୍ତ୍ରତା ସ୍ଥାପନ କରେ । ପ୍ରବୃତ୍ତିମାନଙ୍କର ବିକାଶ, କର୍ମନିପୁଣତା ଓ ଉତ୍ସାହ ଅଧିକାଂଶ ସମୟରେ ମନୁଷ୍ୟର ଆକାଙ୍‌କ୍ଷା ଉପରେ ନିର୍ଭର କରିଥାଏ ।

ଆକାଙ୍‌କ୍ଷାର ଗତିରୋଧ କରିଦେଲେ ଗୋଟିଏ ଆବିଳ ଧାରା ମନୋରାଜ୍ୟରେ ଆଧିପତ୍ୟ ବିସ୍ତାର କରେ ଓ ତତ୍‌ସଙ୍ଗେ କର୍ମପନ୍ଥା ଦୁର୍ଗମ ହୋଇଉଠେ । ବିଫଳମନୋରଥରେ ଯେଉଁ ବିରକ୍ତି ଜନ୍ମେ, ତାହା ପାରିପାର୍ଶ୍ୱିକ ଅବସ୍ଥାମାନଙ୍କରେ ପ୍ରତିଘାତ କରେ । ଯନ୍ତ୍ରର କୌଣସି ଅଙ୍ଗ ଅକର୍ମଣ୍ୟ ହେଲେ ଯନ୍ତ୍ର-ଚାଳନ ପକ୍ଷରେ ବାଧା ଘଟେ । ସେହିପରି ସମାଜ ଓ ଦେଶର କୌଣସି ସମ୍ପ୍ରଦାୟ କିମ୍ବା ଜାତିଗତ ଆକାଙ୍‌କ୍ଷାରେ ଆଘାତ ଆସିଲେ, ଗୋଟିଏ ବିରୁଦ୍ଧ ଭାବ ସର୍ବଦା ବିପରୀତ ଦିଗରେ କାର୍ଯ୍ୟ କରିବାକୁ ଚେଷ୍ଟା କରେ । ତଦ୍ଦ୍ୱାରା ଅଶାନ୍ତିର ବିଷ ସର୍ବତ୍ର ବ୍ୟାପିଯାଏ । ବ୍ୟକ୍ତିଗତ ଆକାଙ୍‌କ୍ଷାର ଅସାମଞ୍ଜସ୍ୟ ଦୂର କରିବା ସହଜ ନୁହେଁ । ସ୍ୱତଃପ୍ରଣୋଦିତ ହୋଇ ମନୁଷ୍ୟମାନେ ବିଭିନ୍ନ ଶ୍ରେଣୀରେ ଆବଦ୍ଧ ରହନ୍ତି; କାରଣ ଆକାଙ୍‌କ୍ଷାର ସାମ୍ୟାବସ୍ଥା ଅନେକ ସମୟରେ ସେମାନଙ୍କୁ ଏପରି ଶ୍ରେଣୀବଦ୍ଧ ହେବାକୁ ଉତ୍ତେଜନା ଦିଏ । ସମୂହ ମଙ୍ଗଳ କାମନା ଦେଶ ଓ ଜାତି ପକ୍ଷରେ କଲ୍ୟାଣକର; ସୁତରାଂ କୌଣସି ସମ୍ପ୍ରଦାୟର ଅନୁସୃତ ଆକାଙ୍‌କ୍ଷାକୁ ଉପେକ୍ଷା କରିବା ସମୀଚୀନ ନୁହେଁ । ଜାତୀୟ ଜୀବନର ଚିନ୍ତାସ୍ରୋତରୁ ଭାବୀ କର୍ମପନ୍ଥା ସ୍ଥିର କରାଯାଇପାରେ; କିନ୍ତୁ ବାହ୍ୟ ଚଞ୍ଚଳତା ଏହାର ପ୍ରଧାନ ପ୍ରତିବନ୍ଧକ । ହଠାତ୍ ଭାବାବେଗରେ ଯେଉଁ ସ୍ଫୂର୍ତ୍ତି ଦେଖାଯାଏ, ତାହା ଅଳ୍ପ ସମୟ ସ୍ଥାୟୀ ହେବା ପରେ ପୁଣି ଲୋପ ପାଏ । କ୍ଷୁଦ୍ର ଅଙ୍କୁର ଆଲୋକ, ବାୟୁ ଓ ଜଳସେଚନରେ କ୍ରମଶଃ ବୃଦ୍ଧି ପାଇ ଶେଷରେ ସୁବିଶାଳ ମହୀରୁହ ଆକାର ଧାରଣ କରେ । ସେହିପରି ଜାତୀୟ ଆକାଙ୍‌କ୍ଷାକୁ ପୁଷ୍ଟ କରିବାକୁ ହେଲେ ବିରୁଦ୍ଧ ଭାବ ଲୋପ କରି ପ୍ରଥମେ ଉଦାରତା ଜନ୍ମାଇବା ଆବଶ୍ୟକ । ସ୍ୱାର୍ଥପର ପ୍ରବଳର ଆକାଙ୍‌କ୍ଷା ଦୁର୍ବଳର ଅଭାବ ଆଣି । ପ୍ରତି ଦୃଷ୍ଟି ଦିଏ ନାହିଁ । ଦୁର୍ବଳ ନିଜକୁ ଅଭିଶପ୍ତ ମନେ କରେ ଓ ଭେଦଭାବ ଧୀରେ ଧୀରେ ବିସ୍ତାରିତ ହୋଇ ଜାତୀୟ ଜୀବନକୁ ଗ୍ରାସ କରେ । ଉଚ୍ଚନୀଚ ଭାବ ଯେପରି ଗୋଟିଏ ଆକାଙ୍‌କ୍ଷାର ଅଧୀନ ହୋଇ କାର୍ଯ୍ୟ କରିବା ଅସମ୍ଭବ ।

ବ୍ୟକ୍ତିବିଶେଷର ଉଚ୍ଚାକାଙ୍‌କ୍ଷା ବିଷୟ ଆଲୋଚନା କଲେ ଜଣାଯାଏ ଯେ, ସାମାନ୍ୟ ବିଷୟରେ ତାହା ଆବଦ୍ଧ ରହିପାରେ ନାହିଁ । ପଦୋନ୍ନତି କିମ୍ବା ଈପ୍‌ସିତ ବିଷୟ ସମ୍ପର୍କରେ ଏହା କି କାର୍ଯ୍ୟୋପଯୋଗୀ କରାଯାଇପାରେ । ଅବସ୍ଥାଭେଦରେ ଏପରି ଆକାଙ୍‌କ୍ଷାର ଅନୁକୂଳରେ ଥିବା ଉଚିତ । ରାଜକାର୍ଯ୍ୟ ପରିଚାଳନାରେ ଉଚ୍ଚାକାଙ୍‌କ୍ଷା-ବଶବର୍ତ୍ତୀ ଲୋକଠାରୁ ଯଥେଷ୍ଟ ସାହାଯ୍ୟ ମିଳେ । ଦାମ୍ଭିକ ପାରିଷଦ ଗର୍ବିତ ପ୍ରଜାକୁ ରାଜଶକ୍ତି ବିରୁଦ୍ଧରେ ମସ୍ତକ ଉତ୍ତୋଳନ କରିବାକୁ ସୁବିଧା ଦିଏ ନାହିଁ । କାଳର ପ୍ରାଦୁର୍ଭାବ ଅନୁସାରେ ଅକପଟ ପ୍ରଜାରଞ୍ଜନ ପରିବର୍ତ୍ତେ କୂଟ ରାଜନୀତିର ଆଶ୍ରୟ ନେବାକୁ ହୁଏ । ଶାସନଯନ୍ତ୍ରରେ ଶକ୍ତି ପ୍ରୟୋଗ କରିବା ରାଜାଙ୍କର କାର୍ଯ୍ୟ । ଯନ୍ତ୍ରର ଗୋଟିଏ ବିଶିଷ୍ଟ ଅଙ୍ଗରେ ବଳସଞ୍ଚାର କରି ଅନ୍ୟ ସବୁକୁ ଦୁର୍ବଳ ରଖିବା

ତାଙ୍କର କର୍ତ୍ତବ୍ୟ ନୁହେଁ । ରାଜକର୍ମଚାରୀମାନଙ୍କୁ ସବୁବେଳେ ଅତ୍ୟଧିକ କ୍ଷମତା ଦେଲେ, ତାର ଅପବ୍ୟବହାର ଘଟି ପ୍ରଜାବର୍ଗର ଅନିଷ୍ଟ ହୋଇପାରେ । ପାରିଷଦମାନଙ୍କର ଆକାଙ୍‌କ୍ଷାକୁ ସର୍ବଦା ସଯତ୍ନ ରଖିବାକୁ ହେଲେ, ସେମାନଙ୍କର ବଂଶମର୍ଯ୍ୟାଦା ପ୍ରତି ଉଦାସୀନ ହେବା ଆବଶ୍ୟକ । ଅଧସ୍ତନ କର୍ମଚାରୀମାନଙ୍କୁ ଉଚ୍ଚପଦ ଦାନ କଲେ ସେମାନେ ସେଥିରେ ଗୌରବ ଅନୁଭବ କରନ୍ତି ଓ ଅବିଶ୍ୱାସର ମାତ୍ରା ଅନେକ ପରିମାଣରେ ଦୂରୀଭୂତ ହୁଏ । ଦମ୍ଭର ଅପକାରିତା ନିବାରଣ କରିବା ପାଇଁ ଏହା ଗୋଟିଏ ସୁଗମ ଉପାୟ ।

ନିର୍ଦ୍ଦିଷ୍ଟ ଆକାଙ୍‌କ୍ଷାର ଅଧୀନ ହୋଇ ଯେଉଁମାନେ ମହତ୍‌ କାର୍ଯ୍ୟ ସାଧନରେ ବ୍ରତୀ ହୁଅନ୍ତି, ସେମାନଙ୍କଠାରୁ ଅନିଷ୍ଟର ଆଶଙ୍କା ନ ଥାଏ । ଶକ୍ତିଶାଳୀ ଲୋକମାନଙ୍କ ମଧ୍ୟରେ ପ୍ରଭାବ ବିସ୍ତାର କରିବା ସେମାନଙ୍କର ଅଭିପ୍ରାୟ । କେବଳ ମହତ୍‌ ଲୋକମାନଙ୍କ ସହିତ ସମ୍ପର୍କ ସ୍ଥାପନ କଲେ ଏ ଆକାଙ୍‌କ୍ଷା ପୂର୍ଣ୍ଣ ହୁଏ ନାହିଁ । ସ୍ୱଭାବଗତ ଗୁଣର ଉତ୍କର୍ଷ ଉପରେ ଏହାର ସାଫଲ୍ୟ ନିର୍ଭର କରେ ।

ସମ୍ମାନ ଓ ଆକାଙ୍‌କ୍ଷାର ସମ୍ପର୍କ ବଡ଼ ଘନିଷ୍ଠ । ସମ୍ମାନର ପ୍ରତିଷ୍ଠା ପାଇଁ ଉଚ୍ଚ ପଦବୀ, ସତ୍କାର୍ଯ୍ୟ ଓ ଐଶ୍ୱର୍ଯ୍ୟ ପ୍ରଭୃତି ଆବଶ୍ୟକ ହୁଅନ୍ତି । କେବଳ ଆତ୍ମସମ୍ମାନ ପ୍ରତି ଲକ୍ଷ୍ୟ ରଖିଲେ ସାଧାରଣ ହିତକର କାର୍ଯ୍ୟସାଧନରେ ଔଦାସୀନ୍ୟ ଜନ୍ମିପାରେ । ସମାଜ କିମ୍ବା ଦେଶର ମଙ୍ଗଳପ୍ରତି ଯେଉଁମାନେ ଉଦାସୀନ, ସେମାନଙ୍କର ସମ୍ମାନ ସ୍ଥାୟୀ ହୁଏ ନାହିଁ । ନିଜ ସ୍ୱାର୍ଥରେ ସର୍ବଦା ବ୍ୟାପୃତ ରହିଲେ କ୍ଷୁଦ୍ରତ୍ୱ ପ୍ରକାଶିତ ହୁଏ ଓ ତତ୍‌ସଙ୍ଗେ ଆକାଙ୍‌କ୍ଷା ମଧ୍ୟ ସଙ୍କୁଚିତ ହୁଏ । ସାମାନ୍ୟ ସ୍ୱାର୍ଥ ସକାଶେ ସାଧାରଣଙ୍କର କ୍ଷତି କରିବା ପ୍ରବୃତ୍ତି ସ୍ୱାର୍ଥପର ପକ୍ଷରେ ଅସମ୍ଭବ ନୁହେଁ । ରାଜକାର୍ଯ୍ୟରେ ଏପରି ଲୋକଙ୍କୁ ନିଯୁକ୍ତ କରିବା ଉଚିତ ନୁହେଁ । ସ୍ୱାର୍ଥପରତା ଅନେକ ସମୟରେ ସାଧାରଣ ଅଶାନ୍ତିର କାରଣ ହୁଏ । କେହି କେହି କେବଳ କାର୍ଯ୍ୟଦ୍ୱାରା ସମ୍ମାନ ଲାଭର ଆକାଙ୍‌କ୍ଷା ଦେଖାନ୍ତି । ଲୋକମୁଖରେ ସାଧାରଣତଃ ଏମାନଙ୍କର ପ୍ରଶଂସା ଶୁଣାଯାଏ; କିନ୍ତୁ ଆନ୍ତରିକ ସ୍ନେହ ଓ ଭକ୍ତିର ଅଧିକାରୀ ହେବା ଏମାନଙ୍କ ପକ୍ଷରେ ଦୁର୍ଲ୍ଲଭ । ଉତ୍କଣ୍ଠାବଶତଃ କେତେକ ଲୋକ ସମ୍ମାନ ଆଶାୟୀ ହୋଇ ସ୍ୱଗୁଣର ଅପବ୍ୟବହାର କରନ୍ତି । କାର୍ଯ୍ୟନିୟନ୍ତ୍ରଣରେ ଯେ ଅନ୍ୟମାନଙ୍କର ବିବାଦ କିମ୍ବା ମନୋମାଳିନ୍ୟ ଦୂର କରି ସାମ୍ୟଭାବ ପ୍ରଚାର କରନ୍ତି, ତାଙ୍କଠାରେ ସମସ୍ତେ ଋଣୀ ହୁଅନ୍ତି । ଯେ କୌଣସି କାର୍ଯ୍ୟରେ ହସ୍ତକ୍ଷେପ କରିବା ସମ୍ମାନାର୍ହ ଲୋକର ଲକ୍ଷଣ ନୁହେଁ । ଈର୍ଷା ଅଧିକାଂଶ ସମୟରେ ସମ୍ମାନର ଅନୁସରଣ କରେ । ମନୁଷ୍ୟର ଆକାଙ୍‌କ୍ଷା ଓ ଲକ୍ଷ୍ୟ ମହତ୍‌ ଥିଲେ ଏବଂ ସାଧାରଣଙ୍କ ହିତାର୍ଥ ସେହି ଉଦ୍ଦେଶ୍ୟରେ କାର୍ଯ୍ୟ କଲେ ଈର୍ଷା କୌଣସି ଅନିଷ୍ଟ ସାଧନ କରି ପାରେ ନାହିଁ । କାର୍ଯ୍ୟରେ ସିଦ୍ଧିଲାଭ କଲେ ନିଜ ଉପରେ ପ୍ରଶଂସା ଆରୋପ ନ କରି ଭଗବାନଙ୍କ ଉଦ୍ଦେଶ୍ୟରେ ସେହି କର୍ମଫଳକୁ ଉତ୍ସର୍ଗ କରିବା ସମ୍ମାନିତ ବ୍ୟକ୍ତିର ପ୍ରଧାନ କର୍ତ୍ତବ୍ୟ ।

ଗୁଣର ପ୍ରତିବିମ୍ବ ପ୍ରଶଂସାରେ ପ୍ରତିଫଳିତ ହୋଇଥାଏ । ସାଧାରଣ ଲୋକମାନଙ୍କର ପ୍ରଶଂସାରେ ଆସ୍ଥା ପ୍ରଦର୍ଶନ ବାଞ୍ଛନୀୟ ନୁହେଁ; କାରଣ ସେମାନେ ଗୁଣର ମହତ୍ତ୍ୱ ଉପଲବ୍ଧି କରି ପାରନ୍ତି ନାହିଁ । ସାମାନ୍ୟ କାର୍ଯ୍ୟ ସମ୍ପାଦନରେ ବିସ୍ମୟାପନ୍ନ ହୋଇ ବୃଥା ପ୍ରଶଂସାରେ ମନୁଷ୍ୟର ମନକୁ ସେମାନେ ଆକର୍ଷଣ କରନ୍ତି । ଚାଟୁବାଦ ଓ ପ୍ରଶଂସା ମଧ୍ୟରେ ପାର୍ଥକ୍ୟ ଅନୁଭବ କରିବା ସମସ୍ତଙ୍କ ପକ୍ଷରେ ସହଜ ନୁହେଁ । ସତ୍ୟ ଓ ଅପ୍ରିୟ କଥା ଶୁଣିବାରେ ଯେଉଁମାନେ ଅଭ୍ୟସ୍ତ, ସେମାନେ ବୃଥା ପ୍ରଶଂସାରେ ପୁଲକିତ ହୁଅନ୍ତି ନାହିଁ । ବିଶେଷତଃ କ୍ଷମତାପନ୍ନ ଓ ବିଭବଶାଳୀ ଲୋକମାନେ ଚାଟୁକାରମାନଙ୍କୁ ପ୍ରଶ୍ରୟ ଦେବା-ଦ୍ୱାରା ଜନସାଧାରଣଙ୍କର କ୍ଷତି ହୁଏ । ହିତସାଧନ ଯାହାର ଜୀବନର ବ୍ରତ, ଉପଯୁକ୍ତ ଶକ୍ତିର ଅଧିକାରୀ ହେବା ତା ପକ୍ଷରେ କିଛି ଅସଙ୍ଗତ ନୁହେଁ । ଏଥିପ୍ରତି ଲକ୍ଷ୍ୟ ନ ରଖି ଅନେକେ ସେମାନଙ୍କ ପ୍ରାପ୍ତ କ୍ଷମତାର ଅପବ୍ୟବହାର କରନ୍ତି । ତଦ୍ଦ୍ୱାରା ସେମାନଙ୍କର ସମ୍ମାନ ଓ ଖ୍ୟାତି ନଷ୍ଟ ହୁଏ । ସାଧୁ ଉଦ୍ଦେଶ୍ୟରେ ମଧ୍ୟ ଶକ୍ତିସମ୍ପନ୍ନ ଲୋକମାନଙ୍କୁ ପ୍ରଶଂସା କରାଯାଏ । ସେଥିରେ ଲୋକର କର୍ତ୍ତବ୍ୟ ବୋଧ ହେବାର ଆଶା ଥାଏ । ଘୃଣାମିଶ୍ରିତ ପ୍ରଶଂସାରେ ପ୍ରଶଂସିତ ବ୍ୟକ୍ତି ଲୋକଚକ୍ଷୁରେ ହେୟ ବିବେଚିତ ହୁଏ । ଯେ ଯେଉଁ ସମ୍ମାନର ଅଧିକାରୀ, ତା ଠାରୁ ବେଶି ସମାଜରେ ପ୍ରତିପନ୍ନ କରାଇବା ଦ୍ୱାରା ଈର୍ଷାର ଉଦ୍ଦେଶ୍ୟ

ସାଧିତ ହୁଏ । କେହି କେହି ଏଥିରେ ମଧ୍ୟ ନିଜକୁ ଗୌରବାନ୍ୱିତ ମନେ କରନ୍ତି; କିନ୍ତୁ ସେମାନଙ୍କର ସ୍ମରଣ ରଖିବା ଉଚିତ ଯେ, ପ୍ରକୃତ ଗୌରବଲାଭ ସହଜସାଧ୍ୟ ନୁହେଁ । ଅପ୍ରତିଦ୍ୱନ୍ଦ୍ୱୀ ହୋଇ କେହି କେବେ ଯଶଃ ଲାଭ କରି ନାହିଁ । ଅହଙ୍କାର ତାର ନିଦର୍ଶନ ନୁହେଁ । ସମୟବିଶେଷରେ ଅଯଥା ପ୍ରଶଂସାଦ୍ୱାରା ଲୋକ-ମନରେ ସମ୍ମାନ ଆଶା ଜାଗ୍ରତ କରାଯାଏ ଓ ତଦ୍ଦ୍ୱାରା ସେ ଉତ୍ସାହିତ ହୋଇ ମହତ୍ କାର୍ଯ୍ୟରେ ବ୍ରତୀ ହୁଏ ।

ମହତ୍ତ୍ୱରେ ଦେବତ୍ୱ ନିହିତ ଥାଏ । ମନୁଷ୍ୟ ତାକୁ ବାଦ୍ ଦେଇ ପଶୁତ୍ୱର ପରିଚୟ ଦିଏ । ନିର୍ବିରୋଧରେ ଯେଉଁମାନେ ଅପରିସୀମ କ୍ଷମତା ଦ୍ୱାରା ଜଗତରେ ପ୍ରଭୁତ୍ୱ ବିସ୍ତାର କରିବାକୁ ଚାହାନ୍ତି, ସେମାନଙ୍କର ଆକାଙ୍କ୍ଷା ପୂର୍ଣ୍ଣ ହୁଏ ନାହିଁ । ମନୁଷ୍ୟର ଅନ୍ତର୍ନିହିତ ଶକ୍ତି ଉନ୍ମେଷିତ ହେଲେ ସାଂସାରିକ ଗୌରବପ୍ରାପ୍ତିର ଆଶା କ୍ରମଶଃ ହ୍ରାସ ପାଏ । ପ୍ରଚ୍ଛନ୍ନ ଭାବରେ ଏ ଶକ୍ତି ସମସ୍ତଙ୍କ ହୃଦୟରେ କାର୍ଯ୍ୟ କରେ । ନିର୍ଦ୍ଦୟ ହିଂସ୍ରକ ସୁଦ୍ଧା ଏଥିରୁ ବଞ୍ଚିତ ନୁହେଁ । ସ୍ୱଭାବର ସାମ୍ୟାବସ୍ଥା ପ୍ରାୟ ଦେଖାଯାଏ ନାହିଁ । କେହି ଭଲ କାର୍ଯ୍ୟ ପ୍ରତି ଓ କେହି ମନ୍ଦ କାର୍ଯ୍ୟ ପ୍ରତି ସ୍ୱଭାବର ଅଧୀନ ହୋଇ ଆକୃଷ୍ଟ ହୁଅନ୍ତି । ମହତ୍ ସ୍ୱଭାବର ପରିଚୟ ଅନେକ ବିଷୟରୁ ଜଣାଯାଇପାରେ । ସେବା, ସହାନୁଭୂତି, କ୍ଷମା ଓ କୃତଜ୍ଞତା ପ୍ରଭୃତି ସଦ୍‌ଗୁଣଗୁଡ଼ିକ ସ୍ୱତଃ ବିକଶିତ ହୁଅନ୍ତି ।

କ୍ଷମତା ଓ ସମୟ ପ୍ରଭାବରେ ଉଚ୍ଚ ସମ୍ମାନ ବିଭିନ୍ନ ବୋଧ ହୋଇପାରେ; କିନ୍ତୁ ସତ୍କାର୍ଯ୍ୟରେ ସମସ୍ତ ଜୀବନ ଅତିବାହିତ କଲେ ମନରେ ଆଦୌ ଗ୍ଲାନି ଆସେ ନାହିଁ । କେବଳ ସମ୍ମାନ-ଆଶାୟୀ ହେଲେ ଭଲ ଓ ମନ୍ଦର ସମ୍ମିଶ୍ରଣରେ ନିଜର କର୍ମପନ୍ଥା ସ୍ଥିର କରିବାକୁ ହୁଏ ।

କାଳକ୍ରମେ ଯଶସ୍ୱୀ ଲୋକର ଭଲ ଗୁଣଗୁଡ଼ିକ ସମାଜରେ ପ୍ରସିଦ୍ଧି ଲାଭ କରିଥାଏ । ବଂଶମର୍ଯ୍ୟାଦା ଅନେକଙ୍କୁ ଆଳସ୍ୟପରାୟଣ କରାଏ; କାରଣ ସେମାନେ କୌଣସି କାର୍ଯ୍ୟସାଧନ ସମୟରେ ସର୍ବଦା ନିଜ ସମ୍ମାନହାନି ଉପରେ ଚିନ୍ତସ୍ତତଃ ହୁଅନ୍ତି । କର୍ମବିମୁଖ ହୋଇ ଅନ୍ୟର କର୍ମତତ୍ପରତା ଦେଖିଲେ କାତରତା ପ୍ରକାଶ କରିବା ସେମାନଙ୍କର ସ୍ୱଭାବ । ଅପରର ସମୃଦ୍ଧିରେ ସେମାନଙ୍କର ଈର୍ଷା ଜାତ ହୁଏ । ବୃଥା ସମ୍ମାନ-ଦମ୍ଭରେ ଗୁଣହୀନ ଲୋକ କର୍ମୀକୁ ତୁଚ୍ଛ ମନେକରେ । ଆଳସ୍ୟ-ପରାୟଣ ଓ ପରଶ୍ରୀକାତର ଜୀବନର ଆକାଙ୍କ୍ଷା ଚରିତାର୍ଥ କରିବା ପାଇଁ ଅସଦୁପାୟ ଅବଲମ୍ବନ କରେ ।

ପଦସ୍ଥ ବ୍ୟକ୍ତିମାନଙ୍କର ସ୍ୱତନ୍ତ୍ରତା ରକ୍ଷା କରିବା ସହଜ ନୁହେଁ । ସେମାନେ ସର୍ବଦା ଦେଶକର୍ମ ଓ ଖ୍ୟାତିର ଅଧୀନ ହୋଇଥାନ୍ତି । କାର୍ଯ୍ୟ ଓ ସମୟ ନିରୂପଣର ବ୍ୟବସ୍ଥା ଅଧିକାଂଶ ସମୟରେ ସେମାନଙ୍କର ସ୍ୱାଧୀନ ଭାବର ପରିଚୟ ଦିଏ ନାହିଁ । କ୍ଷମତା ଓ ସମ୍ମାନ ଆଶାରେ କିମ୍ବା ଅପର ଉପରେ ପ୍ରଭୁତ୍ୱ ବିସ୍ତାର କରିବା ଉଦ୍ଦେଶ୍ୟରେ ନିଜର ସ୍ୱାଧୀନତା ହରାଇବା ସ୍ୱଭାବବିରୁଦ୍ଧ ହେଲେ ସୁଦ୍ଧା ପ୍ରବଳ ଆକାଙ୍କ୍ଷା ସେଥିପ୍ରତି ଲକ୍ଷ୍ୟ ରଖେ ନାହିଁ । ବହୁ ସାଧନାରେ ଲୋକ ଉଚ୍ଚପଦ ଅଧିକାର କରେ ଓ ଅନେକ ସମୟରେ ଆତ୍ମସମ୍ମାନ ବିନିମୟରେ ଲୋକ-ସମ୍ମାନ ଲାଭ କରିବା ତା ପକ୍ଷରେ ଗୌରବଜନକ ବୋଧ ହୁଏ । କେବଳ ସାଧାରଣଙ୍କ ପ୍ରଶଂସା ଉପରେ ଯାହାର ସୁଖ ନିର୍ଭର କରେ, ତାର ଆତ୍ମବୃତ୍ତି ମଳିନ ହେବା ଆଶ୍ଚର୍ଯ୍ୟ ନୁହେଁ । ସମ୍ମାନଜନକ କାର୍ଯ୍ୟସମ୍ପାଦନରେ ସମୁଦାୟ ଉତ୍ସାହ ଓ ଶକ୍ତି ବ୍ୟୟ କରି ଶରୀର ଓ ମନର ଉତ୍କର୍ଷ ପ୍ରତି ଉଦାସ ନ ହେବା ତା ପକ୍ଷରେ ଅସମ୍ଭବ ନୁହେଁ । ଗୁଣଲଭ୍ୟ ସମ୍ମାନର ଉପଲକ୍ଷ ହେଲେ ଆତ୍ମପ୍ରସାଦ ଜନ୍ମିପାରେ ଓ ସେଥି ସଙ୍ଗେ ସମସ୍ତ ଦୁର୍ବଳତା ଅନ୍ତର କରାଯାଇପାରେ । ପ୍ରକୃତି-ଜାତ ବସ୍ତୁ ସ୍ୱଭାବସିଦ୍ଧ ଅବସ୍ଥା ଲାଭ କରିବା ପାଇଁ ସର୍ବଦା ବ୍ୟଗ୍ରଭାବରେ ଗତି କରିଥାଏ; କିନ୍ତୁ ଯେତେବେଳେ ଉପଯୁକ୍ତ ଅବସ୍ଥାର ଅଧୀନ ହୁଏ, ସେତେବେଳେ ଆଉ କୌଣସି ଚଞ୍ଚଳତା ଦୃଷ୍ଟ ହୁଏ ନାହିଁ । ସମ୍ମାନ-ଶିଖର-ଆରୋହୀକୁ ସର୍ବଦା ଧୀର ଓ ମନ୍ଥର ଗତିରେ ଯିବାକୁ ପଡ଼େ ।

ମନୁଷ୍ୟର ଆକାଙ୍କ୍ଷା ଓ ସାଧନା ଉପରେ ତାର ସୌଭାଗ୍ୟ ନିର୍ଭର କରେ । ସୁଗୁଣ ପ୍ରକାଶ କରି ପ୍ରଶଂସାଭାଜନ ହେବା କିମ୍ବା ଖ୍ୟାତିଲାଭ କରିବାଦ୍ୱାରା ଐଶ୍ୱର୍ଯ୍ୟପ୍ରାପ୍ତି ପକ୍ଷରେ ବିଶେଷ ସହାୟତା ମିଳେ ନାହିଁ । ଅନେକେ ଆତ୍ମଗୋପନ କରି

କେବଳ ନିଭୃତ ସାଧନାଦ୍ୱାରା ଆତ୍ମତୃପ୍ତି ଲାଭ କରନ୍ତି । ଦେଶପ୍ରୀତିରେ ଯାହାର ହୃଦୟ ସର୍ବଦା ଉଦ୍‌ବେଳିତ, ତାର ଲକ୍ଷ୍ୟ ସ୍ୱାର୍ଥ-ସାଧନରେ ନିୟୋଜିତ ହୁଏ ନାହିଁ ଏବଂ ସେ ଐଶ୍ୱର୍ଯ୍ୟ ଲକ୍ଷ୍ମୀଙ୍କର କୃପା ଲାଭ କରିବାରେ ଅସମର୍ଥ ହୁଏ । ବିଜ୍ଞଲୋକ ଈର୍ଷା-ହସ୍ତରୁ ରକ୍ଷା ପାଇବା ପାଇଁ ନିଜର ଶ୍ରୀକୁ ବିଷ୍ଣୁପଦରେ ଅର୍ପଣ କରେ । ପ୍ରକୃତ ମହତ୍ତ୍ୱ ଐଶୀ ଶକ୍ତିରୁ ଭିନ୍ନତା ଜନ୍ମାଏ ନାହିଁ । ସାଧାରଣତଃ ଯେଉଁମାନେ ଆପଣାର ଜ୍ଞାନ ଓ କୌଶଳ ଉପରେ ନିର୍ଭର କରି ପ୍ରତିଷ୍ଠା ସ୍ଥାପନ କରିବାକୁ ଇଚ୍ଛା କରନ୍ତି, ସେମାନଙ୍କର ଶେଷ ଦଶା ନୈରାଶ୍ୟରେ ପରିଣତ ହୋଇଥାଏ । ଯଶୋଲିପ୍‌ସା ମହତ୍ତ୍ୱର ବିରୋଧୀ ହେବା ବାଞ୍ଛନୀୟ ନୁହେଁ । ବର୍ତ୍ତମାନର କାର୍ଯ୍ୟ ଓ ଭବିଷ୍ୟତର ଆଶା ମଧ୍ୟରେ ବାଧା ଆସିପାରେ; କିନ୍ତୁ ଆତ୍ମନିର୍ଭରଶୀଳ ପକ୍ଷରେ ତାକୁ ଅତିକ୍ରମ କରିବା କଷ୍ଟକର ନୁହେଁ । ମାନସିକ ସଂଯମରେ ଆକାଙ୍‌କ୍ଷା ସ୍ୱଭାବର ବଶବର୍ତ୍ତୀ ହୁଏ ଏବଂ ଶକ୍ତିର ଅପଚୟ ନ ଘଟି ଲକ୍ଷ୍ୟସ୍ଥଳରେ ପହଞ୍ଚିବା ସହଜ ହୁଏ ।

# ବିଶ୍ୱବିଦ୍ୟାଳୟ ଶିକ୍ଷା

ଆଧୁନିକ ପ୍ରଚଳିତ ବିଶ୍ୱବିଦ୍ୟାଳୟ ଶିକ୍ଷା ଗୋଟାଏ ନୂତନ ଦିଗରେ ଗତି କରୁଅଛି । ବିଶେଷଜ୍ଞଙ୍କର ଉନ୍ନତ ମାନସିକ ବିକାଶ, ବିଷୟ-ଜ୍ଞାନ ଲାଭ ଓ ବିଦ୍ୟାର୍ଥୀମାନଙ୍କର ପରୀକ୍ଷା-ପ୍ରଣାଳୀରେ ଏହାର ବିଶେଷତ୍ୱ ଦେଖାଯାଏ । ସବୁ ଯୁଗରେ ମାନସିକ ବୃତ୍ତିର ଉତ୍କର୍ଷ ପାଇଁ ଏହାର ସୃଷ୍ଟି; କିନ୍ତୁ ଗତ ୧୫୦ ବର୍ଷ ଧରି ଏହାର ଧାରାବାହିକ ନିୟମ-ପଦ୍ଧତିରେ ବ୍ୟତିକ୍ରମ ଦେଖାଯାଏ । ପୂର୍ବେ ଏକାଧିକ ବିଷୟରେ ପାରଦର୍ଶିତା ଲାଭ କରିପାରୁଥିଲେ ବିଶ୍ୱବିଦ୍ୟାଳୟ ଶିକ୍ଷାର ଉଦ୍ଦେଶ୍ୟ ସାଧିତ ହେଉଥିଲା; କିନ୍ତୁ ବର୍ତ୍ତମାନ କୌଣସି ନିର୍ଦ୍ଦିଷ୍ଟ ବିଷୟରେ ବିଶିଷ୍ଟ ଜ୍ଞାନ ଲାଭ କଲେ ଉଚ୍ଚଶିକ୍ଷା ପୂର୍ଣ୍ଣାଙ୍ଗ ହୁଏ ବୋଲି ଅଧିକାଂଶଙ୍କର ବିଶ୍ୱାସ । ଇଉରୋପୀୟ ବିଶ୍ୱବିଦ୍ୟାଳୟମାନଙ୍କର ବିଗତ ଇତିହାସ ଆଲୋଚନା କଲେ ଜଣାଯାଏ ଯେ, ମଧ୍ୟଯୁଗରେ ଉଚ୍ଚ ଶିକ୍ଷା ନୂତନତ୍ୱର ପକ୍ଷପାତୀ ନ ଥିଲା । କେବଳ କେତେଗୁଡ଼ିଏ ନିର୍ଦ୍ଦିଷ୍ଟ ବିଷୟମାନଙ୍କରେ ଶିକ୍ଷାଦାନ ଓ ଆବିଷ୍କ୍ରିୟାକୁ ସମୂଳେ ବାଦ୍ ଦେବା ଏହାର ଚରମ ଲକ୍ଷ୍ୟ ଥିଲା । ବର୍ତ୍ତମାନ ଯୁଗରେ ନୂତନ ଆବିଷ୍କ୍ରିୟାମାନଙ୍କର ଯଥେଷ୍ଟ ଆଦର ଦେଖାଯାଏ ଓ ସେଥିଯୋଗୁଁ ଅନୁସନ୍ଧିତ୍ସୁ ଅଧ୍ୟାୟୀମାନଙ୍କ ଜ୍ଞାନବୃତ୍ତିର ପରିସର କୌଣସି ନିର୍ଣ୍ଣୀତ ସୀମା ମଧ୍ୟରେ ଆବଦ୍ଧ ରହେ ନାହିଁ । ବିଶ୍ୱବିଦ୍ୟାଳୟଗୁଡ଼ିକ ନୂତନ ମାର୍ଗରେ ଗତି କରିବା ଦ୍ୱାରା ପରୀକ୍ଷା ପ୍ରଣାଳୀର ସ୍ଥାୟିତ୍ୱ ବୃଦ୍ଧି ପାଇଅଛି । କୌଣସି ଉପାଧି ନ ପାଇବା ଯାଏ ଗ୍ରହୀତାର କୃତିତ୍ୱ ଜଣାଯାଏ ନାହିଁ ।

ଗୋଟିଏ ନିର୍ଦ୍ଦିଷ୍ଟ ବିଷୟରେ ମନୋନିବେଶ କରି ମାନସିକ ଉନ୍ନତି କରାଯାଇପାରେ; କିନ୍ତୁ ତଦ୍ଦ୍ୱାରା ଶିକ୍ଷାର ଉଦ୍ଦେଶ୍ୟ ପୂର୍ଣ୍ଣ ହୁଏ ନାହିଁ । ଆଜିକାଲି ବିଜ୍ଞାନର ପରାକାଷ୍ଠା ଦେଖି ଯଦି ତାକୁ ଶିକ୍ଷାର ଏକମାତ୍ର ଅଙ୍ଗ ସ୍ୱରୂପ ଧରାଯାଏ, ତାହା ହେଲେ ଅନ୍ୟାନ୍ୟ ସୁରୁଚି କଳା ଅଚିରେ ଲୋପ ପାଇବ । ଶିକ୍ଷାଦ୍ୱାରା ମନୁଷ୍ୟର ଅନ୍ତର୍ନିହିତ ଶକ୍ତିମାନ ବିକଶିତ ହୁଅନ୍ତି । କେବଳ ମାନସିକ ତୀକ୍ଷ୍ଣତା ଓ ବିଷୟବୁଦ୍ଧି ଜନ୍ମିଲେ ମାନବିକତାର ସମ୍ପୂର୍ଣ୍ଣ ବିକାଶ ଜଣାପଡ଼େ ନାହିଁ । ମନୁଷ୍ୟ ଜୀବନରୁ ଆଧ୍ୟାତ୍ମିକତା ଓ ଭାବପ୍ରବଣତାକୁ ବାଦ୍ ଦେଇ ଯେ ଉତ୍କର୍ଷର ଚେଷ୍ଟା କରାଯାଏ, ତାହା ଏକଦେଶଦର୍ଶୀ ଓ ତଦ୍ଦ୍ୱାରା ଜୀବନର ସମତା ନଷ୍ଟ ହେବାର ଯଥେଷ୍ଟ ସମ୍ଭାବନା ଅଛି । ଉପର୍ଯ୍ୟୁକ୍ତ ଶିକ୍ଷାପ୍ରଭାବରେ ମନୁଷ୍ୟର କ୍ଷମତା ବୃଦ୍ଧି ଲାଭ କରିପାରେ ଓ ତଦ୍ଦ୍ୱାରା ସାଂସାରିକ ସୁଖଭୋଗରେ କୌଣସି ବାଧା ଜନ୍ମି ନ ପାରେ; କିନ୍ତୁ କେବଳ ଏହି ସୁଖର ଅବଲମ୍ବନରେ ଜୀବନ ଅତିବାହିତ ହେବା ବାଞ୍ଛନୀୟ ନୁହେଁ । ଜୀବିକା ନିର୍ବାହର ପନ୍ଥାକୁ ସରଳ କରିବା ପାଇଁ ଉପଯୁକ୍ତ ଶକ୍ତି ଲୋଡ଼ା ହୁଏ । ଶିକ୍ଷାକୁ ସେହି ଶକ୍ତି ଅର୍ଜନ ଦିଗରେ ନିୟୋଜିତ କରିବା ସର୍ବାଦୌ କର୍ତ୍ତବ୍ୟ; କିନ୍ତୁ ଏହା ବୋଲି ତାକୁ ସର୍ବଦା ଗୋଟାଏ ବିଶିଷ୍ଟ ସୀମା ମଧ୍ୟରେ ଆବଦ୍ଧ ରଖିବା ଉଚିତ ନୁହେଁ । ବୈଷୟିକ ତୃପ୍ତିରେ ମନର ଉଦାରତା ଆଣି ଜ୍ଞାନରାଜ୍ୟର ଦ୍ୱାର ଉନ୍ମୁକ୍ତ ରଖିବା ଶିକ୍ଷାର ପ୍ରଧାନ ଲକ୍ଷ୍ୟ ବୋଲି ଧରାଯାଇପାରେ । ବିଷୟ ଜଞ୍ଜାଳରେ ମନୁଷ୍ୟ ସାଧାରଣତଃ ଜ୍ଞାନ-ସାଧନରୁ ନିବୃତ୍ତ ହୋଇଥାଏ । ଟିକିଏ ବିଶ୍ରାମ ନ ପାଇଲେ କିମ୍ବା ମନର ସ୍ୱାଧୀନ ଅବସ୍ଥା ନ ଆସିଲେ ମନୁଷ୍ୟ ପ୍ରକୃତ ଜ୍ଞାନର ଅଧିକାରୀ ହୋଇପାରେ ନାହିଁ । ସାଂସାରିକ ଅବସ୍ଥାକୁ ବିପର୍ଯ୍ୟସ୍ତ ନ କରି, କେବଳ ତାକୁ ଉପଲକ୍ଷ ସ୍ୱରୂପ ଧରି ଜ୍ଞାନ-ଶିଖରରେ ଆରୋହଣ କରିବା ଶିକ୍ଷିତର ସତ୍ ଆକାଙ୍‌କ୍ଷା ହୋଇପାରେ । ଆଧୁନିକ ବୈଜ୍ଞାନିକ ଶିକ୍ଷାପ୍ରଭାବରେ ମନୁଷ୍ୟ ଜୀବନର ସ୍ୱାଚ୍ଛନ୍ଦ୍ୟ ବଢ଼ାଇଦେଲେ ସୁଦ୍ଧା ପ୍ରକୃତ ଉଦ୍ଦେଶ୍ୟ ସାଧନ କରିପାରୁ ନାହିଁ । ବିଷୟ-ମୋହରେ ସେ ବଡ଼ ବିବ୍ରତ । ଇଉରୋପୀୟ ଶିକ୍ଷାପ୍ରଣାଳୀ ତାକୁ ବେଶି ପରିମାଣରେ ଏହି ଦିଗରେ ଗତି କରାଉଅଛି ଓ ଗୋଟାଏ ଏପରି ବୈଷମ୍ୟ ସୃଷ୍ଟି କଲାଣି, ଯଦ୍ଦ୍ୱାରା ଜଗତର ଶାନ୍ତି ପକ୍ଷରେ ଶୀଘ୍ର ବାଧା ଆସିବ । ପ୍ରାଚୀନ ଭାରତର ଶିକ୍ଷାଗୁରୁମାନେ ଏହି ଆଶଙ୍କା ପୋଷଣ କରି ଜ୍ଞାନାର୍ଜିତ କ୍ଷମତାକୁ ବିଶେଷ ଭାବରେ ସୀମାବଦ୍ଧ

କରୁଥିଲେ । ସେମାନଙ୍କ ମତରେ ଆଧ୍ୟାତ୍ମିକ ଉନ୍ନତି ଓ ଚରିତ୍ରର ପ୍ରଶସ୍ତତା ନ ଆଣି କୌଣସି ବିଶିଷ୍ଟ କାର୍ଯ୍ୟରେ ଅଗ୍ରସର ହେବା ଆଦୌ ଉଚିତ ନୁହେଁ; କାରଣ ତଦ୍ଦ୍ୱାରା ଶକ୍ତିର ଅପଚୟ ଘଟେ । ସେମାନେ ଜ୍ଞାନକୁ ଗୋପନ କରି ରଖୁଥିଲେ । କେବଳ ଯେଉଁମାନେ ଉପଯୁକ୍ତ ଶିକ୍ଷାଦ୍ୱାରା ନିଜର ସ୍ୱଭାବକୁ ସଂଯତ କରିପାରୁଥିଲେ ଓ ଆଧ୍ୟାତ୍ମିକ ଶକ୍ତିର ପରିଚୟ ଦେଉଥିଲେ, ସେହିମାନଙ୍କୁ ଜ୍ଞାନଦାନ କରାଯାଉଥିଲା । ସ୍ଥୂଳଦୃଷ୍ଟିରେ ଦେଖିଲେ ବର୍ତ୍ତମାନ ଜ୍ଞାନାର୍ଜନରେ ସମସ୍ତଙ୍କର ସମାନ ଅଧିକାର ଅଛି ବୋଲି ଜଣାଯାଏ; କିନ୍ତୁ ତାର ବିଷମୟ ପରିଣାମଟି ଟିକିଏ ଆଲୋଚନା କରିବା ସମୀଚୀନ ବୋଧ ହୁଏ । ଜଗତର ଅଧିକାଂଶ ଅହିତ ସକାଶେ ବର୍ତ୍ତମାନ କାହାକୁ ଦାୟୀ କରାଯିବ ? ପାତ୍ରାପାତ୍ରନିର୍ବିଶେଷରେ ଜ୍ଞାନାର୍ଜନ କରିବାଦ୍ୱାରା ଜୀବନସଂଗ୍ରାମରେ ଗୋଟାଏ ଉତ୍କଟ ଅବସ୍ଥାର ସୂଚନା ମିଳୁ ନାହିଁ କି ? କ୍ଷିପ୍ରଗତିରେ ଜ୍ଞାନର ପ୍ରଚାର ସଙ୍ଗେ ସଙ୍ଗେ ଜୀବନର ଦୈନ୍ୟ ବଢ଼ିଯାଉ ନାହିଁ କି ? ଗତ ମହାସମରରେ ଯେ ପ୍ରଳୟ କାଣ୍ଡ ଘଟିଗଲା, ସେଥି ସକାଶେ ବୈଜ୍ଞାନିକମାନଙ୍କୁ ଅନେକାଂଶରେ ଦାୟୀ କରାଯିବ । ପାଶ୍ଚାତ୍ତ୍ୟମାନେ ନିଜର ସଭ୍ୟତା ଓ ଶିକ୍ଷାରେ ଗୌରବ ଅନୁଭବ କରନ୍ତି, ଏହା ଗୋଟାଏ ବାହ୍ୟ ଆଡ଼ମ୍ବର ମାତ୍ର । ଉପସ୍ଥିତ ବେକାର ସମସ୍ୟାରେ ସମସ୍ତଙ୍କର କଣ୍ଠ ଶୁଷ୍କ ହୋଇଆସିଲାଣି । କେତେଗୁଡ଼ାଏ ଆକାଶଯାନ, ରଣପୋତ ପ୍ରଭୃତି ନିର୍ମାଣ କରି ଦୁର୍ବଳକୁ ସଦର୍ପରେ ଅବନତ କରି ରଖିଲେ କିମ୍ବା କୌଶଳରେ ତାର ସର୍ବସ୍ୱ ଅପହରଣ କଲେ କାହିଁକି ଶିକ୍ଷାର ସାର୍ଥକତା ସମ୍ପାଦିତ ହୁଏ ନାହିଁ । ଆଜି ପାଶ୍ଚାତ୍ୟ ଶିକ୍ଷା ମନୁଷ୍ୟକୁ ଯେପରି ଭାବରେ ଗଢ଼ୁଛି, ସେଥିରେ ଗୋଟିଏ ମର୍ମନ୍ତୁଦ ହାହାକାର ଶବ୍ଦ ଆତ୍ମଗୋପନ କରି ପରି ଜଣାପଡ଼େ । ଧର୍ମ, ଅର୍ଥ, କାମ ଓ ମୋକ୍ଷ ଚତୁର୍ବର୍ଗ ଫଳପ୍ରାପ୍ତି ପାଇଁ ହିନ୍ଦୁର ସାଧନା ନିୟୋଜିତ ହେଉଥିଲା; କିନ୍ତୁ ଆଧୁନିକ ଜ୍ଞାନପିପାସୁମାନେ ସେଥିପ୍ରତି ବିଶେଷ ଲକ୍ଷ୍ୟ ରଖନ୍ତି ନାହିଁ । ଧର୍ମ ଓ ମୋକ୍ଷକୁ ବାଦ୍ ଦେଇ ସେମାନେ ଯଥେଷ୍ଟ ଜ୍ଞାନାର୍ଜନ କଲେଣି । ଏପରି କରିବାଦ୍ୱାରା ଜୀବନର ମହତ୍ତ୍ୱ ଉପଲବ୍ଧି ପକ୍ଷରେ ବାଧା ଆସେ ବୋଲି ସେମାନେ ଭାବନ୍ତି ନାହିଁ । ମାନବିକତାର ପୂର୍ଣ୍ଣ ବିକାଶ ସକାଶେ ଆଧୁନିକ ଶିକ୍ଷାପଦ୍ଧତି ପ୍ରଯୋଜ୍ୟ ନୁହେଁ । ପାଶ୍ଚାତ୍ୟମାନଙ୍କର ଜ୍ଞାନାନୁଶୀଳନକୁ ଅନୁସରଣ କଲେ ପ୍ରଭୂତ ଶକ୍ତି ଜନ୍ମେ; କିନ୍ତୁ ସେ ଶକ୍ତି ସର୍ବଥା ହିତୋପଯୋଗୀ ନୁହେଁ ।

ଶିକ୍ଷା ସଙ୍ଗେ ଅନୁଭୂତିକୁ ସଂଯୁକ୍ତ ରଖିବା ଉଚିତ; ତାର ସ୍ୱାଧୀନ ଗତିରେ କିପରି ବାଧା ଜନ୍ମିଥାଏ, ତାହା ମଧ୍ୟ ଆଲୋଚ୍ୟ । ସାଧାରଣତଃ ବାହ୍ୟଦୃଷ୍ଟିରେ ପ୍ରଣୋଦିତ ହୋଇ ମନୁଷ୍ୟ ଧର୍ମଭାବାପନ୍ନ ହୁଏ । ଗୋଟାଏ ଉନ୍ମାଦନା କିମ୍ବା ଇନ୍ଦ୍ରିୟବିଶୃଙ୍ଖଳବଶତଃ ଯେଉଁ ଭାବର ଉଦ୍ରେକ ହୁଏ, ତାକୁ ଧର୍ମର ଦୋହାଇ ଦେଇ ଗ୍ରହଣ କରିବା ମନୁଷ୍ୟ ପକ୍ଷରେ ବିଷମ ଭ୍ରମ ବୋଲି କୁହାଯାଇପାରେ । ଏହି ଭ୍ରମାତ୍ମକ ଧାରଣାର ବଶବର୍ତ୍ତୀ ହୋଇ ସେ ତାର କାର୍ଯ୍ୟ ସମ୍ପାଦନ କରେ । ବାହ୍ୟ ଉତ୍ତେଜନାର ଅଧୀନ ହୋଇ ମନୁଷ୍ୟ ବେଶି ଦିନ ରହିପାରେ ନାହିଁ । ତା ଅନ୍ତରର ସତ୍ ଧାରଣା ସ୍ୱାଧୀନ କାର୍ଯ୍ୟଗତିରେ ଆସି ସମ୍ମୁଖରେ ଦେଖା ଦିଏ—ସେ ବୁଝେ, ଧର୍ମ ନାମରେ ଏତେ ଦିନ ଯାଏ ସେ ଗୋଟାଏ ଭ୍ରାନ୍ତି ଅନୁସରଣ କରିଥିଲା । ଏପରି ଅବସ୍ଥାରେ ଉପନୀତ କରାଇବା ପାଇଁ ଶିକ୍ଷା ଏକମାତ୍ର ଆଶ୍ରୟ । ଶିକ୍ଷାଦ୍ୱାରା ମନୁଷ୍ୟ ଗୋଟାଏ କ୍ଷମତା ଲାଭ କରେ; କିନ୍ତୁ ଯେଉଁ ଭ୍ରମ ଧାରଣାସବୁ ଶିକ୍ଷାଲାଭ ପୂର୍ବରୁ ତା ହୃଦୟକୁ ଦୁର୍ବଳ କରି ଉଚ୍ଛୃଙ୍ଖଳତା ଆଣିଥାଏ, ସେଗୁଡ଼ିକୁ ତ୍ୟାଗ କରିବା ବଡ଼ କଷ୍ଟକର ହୁଏ । ସାମାଜିକ ମତ ଅନୁବର୍ତ୍ତିନ କରି ହୁଏ ତ ସେ ଗୋଟାଏ ଭ୍ରମପୂର୍ଣ୍ଣ ମାର୍ଗରେ ଅଗ୍ରସର ହେଉଥିଲା ଓ ତଦ୍ଦ୍ୱାରା ତାର ବ୍ୟକ୍ତିଗତ ସ୍ୱାତନ୍ତ୍ର୍ୟ ନଷ୍ଟ ହୋଇଥିଲା; କିନ୍ତୁ ଉପଯୁକ୍ତ ପ୍ରେରଣା ପାଇବା ମାତ୍ରେ ତାର ନିଜତ୍ୱ ରକ୍ଷା ପାଇଲା ।

ଭାବନାର ସୁନିୟନ୍ତ୍ରଣରେ ନୈତିକ ଉନ୍ନତି ବିଧାନର ପନ୍ଥା ନିର୍ଦ୍ଧାରିତ ହୋଇପାରେ । କେତେଗୁଡ଼ିଏ ଧାରାବାହିକ ପ୍ରଚଳିତ ନିୟମ ପାଳନ କଲେ ନୀତିରକ୍ଷା ହୁଏ ନାହିଁ । ସମାଜ ପ୍ରତି ନିତାନ୍ତ ଅବହେଳା ପ୍ରଦର୍ଶନ କରି କୌଣସି ବିରୁଦ୍ଧ ଭାବ ପୋଷଣ କଲେ ମଧ୍ୟ ପ୍ରକୃତ ମାର୍ଗର ସନ୍ଧାନ ମିଳେ ନାହିଁ । ବିଶ୍ୱବିଦ୍ୟାଳୟର ଶିକ୍ଷାର୍ଥୀମାନଙ୍କର କାର୍ଯ୍ୟକଳାପରେ ଉପର୍ଯ୍ୟୁକ୍ତ ଦୋଷ ସାଧାରଣତଃ ଲକ୍ଷିତ ହୁଏ ବୋଲି ଅନେକଙ୍କର ବିଶ୍ୱାସ । ନୀତିଶିକ୍ଷାରେ କୌଣସି ଦୋଷ ନାହିଁ; କିନ୍ତୁ ଜୀବନର କାର୍ଯ୍ୟାବଳି ସହିତ ସେଗୁଡ଼ିକର କିପରି ସମ୍ପର୍କ ରହିବ, ସେଥିପ୍ରତି ମନୋଯୋଗୀ ହେବା ଆବଶ୍ୟକ । ପଠଦଶାରେ ଛାତ୍ରମାନେ ଯେ ଅଭ୍ୟାସର ବଶବର୍ତ୍ତୀ ହୁଅନ୍ତି ଭବିଷ୍ୟତ୍ କର୍ମକ୍ଷେତ୍ରରେ ସେହିପରି ଆଚରଣ କରନ୍ତି । ଅନେକେ କେବଳ ପୁସ୍ତକଗତ ଜ୍ଞାନ ଅର୍ଜନ କରି ବାସ୍ତବ କାର୍ଯ୍ୟ ସମ୍ପାଦନରେ ପରାଙ୍ମୁଖ ହୁଅନ୍ତି । ବାଳକବାଳିକାମାନେ ବିଶ୍ୱବିଦ୍ୟାଳୟରେ ସୁସଂଯତ ସାମାଜିକ ଜୀବନ ଯାପନ କରିବାର ଉପାୟ ଶିକ୍ଷା କରିପାରନ୍ତି ନାହିଁ । ସେଠାରେ ସେମାନେ ଚରିତ୍ରଗଠନର ଯେ ସୁବିଧା ଓ ସ୍ୱାତନ୍ତ୍ର୍ୟ

ପାଇଥାନ୍ତି, ଅନ୍ୟତ୍ର ସେପରି ପାଆନ୍ତି ନାହିଁ । ଅତଏବ ସଂସାରକ୍ଷେତ୍ରରେ ପ୍ରବେଶ କଲେ ସାଧନାର କ୍ଷେତ୍ର ଅନେକ ପରିମାଣରେ ସଙ୍କୁଚିତ ହୋଇଯାଏ । ବିଶ୍ୱବିଦ୍ୟାଳୟ ଶିକ୍ଷା ଶେଷ କରି ସଂସାର-ଯାତ୍ରାରେ ଅଗ୍ରସର ହେଲାବେଳେ କେହି କେହି ଶିକ୍ଷିତ ଯୁବକ ପୁସ୍ତକ-ଗତ ବିଦ୍ୟାକୁ ସାର କରି ଗୋଟାଏ ସ୍ୱପ୍ନ-ରଚିତ ବିଷୟର ଅନୁସରଣ କରନ୍ତି । ଜୀବିକା-ନିର୍ବାହର ପ୍ରାଥମିକ ନିୟମମାନଙ୍କୁ ଅବଜ୍ଞା କରିବା ସେମାନଙ୍କ ପକ୍ଷରେ ଅସମ୍ଭବ ହୁଏ ନାହିଁ । କର୍ମ-କୁଶଳତା ଲାଭ ନ କରି ନିଜ ଜ୍ଞାନର ପରିଚୟ ଦେବା ଅଭିପ୍ରାୟରେ ଅନଭିଜ୍ଞ ଶିକ୍ଷାଭିମାନୀ କେତେଗୁଡ଼ାଏ ବିଷମ ସମସ୍ୟା ଉପସ୍ଥାପିତ କରି ସାମାଜିକ ଗତିକୁ ଇତସ୍ତତଃ କରିଦିଏ । ନିଜର ବ୍ୟକ୍ତିଗତ ସୁବିଧାକୁ ସମାଜର ଜୀବନରେ ପ୍ରତିଫଳିତ କରି ସଂସ୍କାରପ୍ରୟାସୀ ହେବା ଉଚିତ୍ ନୁହେଁ ।

ଏହାଦ୍ୱାରା ସ୍ୱାର୍ଥ-ଜଡ଼ିତ ସମାଜ-ବିଦ୍ୱେଷ ପରିସ୍ଫୁଟ ହୋଇଉଠେ । ପଠଦ୍ଦଶାରେ ସାମାଜିକ ଅନୁଷ୍ଠାନମାନଙ୍କରେ ଯୋଗଦାନ କଲେ ପଠିତ ନୀତିମାନଙ୍କୁ ଅବସ୍ଥାନୁରୂପୀ କାର୍ଯ୍ୟରେ ଲଗାଯାଇପାରେ । ଅଧ୍ୟୟନାବସ୍ଥାରେ ବୁଦ୍ଧିର ପ୍ରାଖର୍ଯ୍ୟ ଯେପରି ଲୋଡ଼ା ହୁଏ, ସମାଜର ଅନୁଷ୍ଠାନମାନଙ୍କୁ ଅନୁସରଣ କରି ଭବିଷ୍ୟତ୍ ଜୀବନର ଭିତ୍ତିସ୍ଥାପନ କରିବା ତଦ୍ରୂପ ଆବଶ୍ୟକ ହୁଏ ।

ଆଧ୍ୟାତ୍ମିକ ଉନ୍ନତିକଳ୍ପେ କୌଣସି ପ୍ରତିଷ୍ଠିତ ଧର୍ମ ଅବଲମ୍ବନ କଲେ ଅନେକ ସମୟରେ ବ୍ୟକ୍ତିଗତ ସ୍ୱାଧୀନ ବିଚାର-କ୍ଷମତା ଲୋପ ପାଇଥାଏ । କିଛି ଦିନ ମନକୁ ପରାଧୀନ ଭାବରେ ରଖିଲେ, ତାର ସ୍ୱାଭାବିକ ଶକ୍ତି ନଷ୍ଟ ହୋଇଥାଏ । ସ୍ୱାଧୀନ ମତପୋଷଣରେ ଧର୍ମବିରୋଧୀ ହେବାର ଯଥେଷ୍ଟ କାରଣ ଅଛି । ବୁଦ୍ଧିର ବିକାଶ ସଙ୍ଗେ ଧର୍ମର କୌଣସି ସମ୍ପର୍କ ନାହିଁ । ବିଚାରଜ୍ଞାନ ଜନ୍ମିଲେ ବୁଦ୍ଧି ସ୍ୱତଃ ପ୍ରସାରିତ ହୁଏ; କିନ୍ତୁ ପ୍ରାଚୀନ ଧର୍ମଗ୍ରନ୍ଥ ସଙ୍ଗେ ସ୍ୱାଧୀନ ଭାବକୁ ସଂଶ୍ଳିଷ୍ଟ ରଖିବାଦ୍ୱାରା ସ୍ୱତନ୍ତ୍ର ବିଚାରର ପଥ ଅନେକ ପରିମାଣରେ ଖର୍ବ ହୋଇଯାଏ । ସେଥିଯୋଗୁଁ ଆଧ୍ୟାତ୍ମିକ ଜ୍ଞାନର ପ୍ରକୃତ କର୍ଷଣ ହୋଇପାରେ ନାହିଁ । କୌଣସି ପ୍ରଚଳିତ ଧର୍ମର ମାର୍ଗ ଅନୁସରଣ ନ କରି ମଧ୍ୟ ମନୁଷ୍ୟର ଆଧ୍ୟାତ୍ମିକ ଭାବ ଜନ୍ମି ପାରିବ । ବିବେକ ଶକ୍ତି ଯଦି ଅନ୍ୟାନ୍ୟ ସାଧାରଣ ପ୍ରବୃତ୍ତିମାନଙ୍କର ସହଯୋଗ କରେ, ତାହା ହେଲେ ଗୋଟାଏ ସମତା ସହଜରେ ଆସେ ଓ ଦୁଷ୍ପ୍ରବୃତ୍ତିମାନଙ୍କର ଲୁକ୍ଷି ସ୍ଥାରେ ବାଧା ଦିଏ । ଶିକ୍ଷିତ ଲୋକ ଏ ତଥ୍ୟର ସମାଧାନ କରି ନ ପାରିଲେ ସମାଜର ଅମଙ୍ଗଳ ଘଟିବ । ସମାଜ ସବୁବେଳେ ଶିକ୍ଷିତଙ୍କର ମତକୁ ଆଗ୍ରହ ସହିତ ଗ୍ରହଣ କରେ ନାହିଁ । ଶିକ୍ଷାପ୍ରଭାବରେ ଯେଉଁ ମତମାନ ସମାଜରେ ପ୍ରବର୍ତ୍ତିତ ହୁଏ, ସେଗୁଡ଼ିକ ଖୁବ୍ ଶକ୍ତିଶାଳୀ ହେଲେ ସୁଦ୍ଧା ଉପଯୁକ୍ତ ଲକ୍ଷ୍ୟ ଅଭାବରେ କୌଣସି ଦୁର୍ଘଟଣା ଅସମ୍ଭବ ନୁହେଁ ।

ବୁଦ୍ଧିର ବିକାଶ ପାଇଁ ଉଚ୍ଚ ଶିକ୍ଷା ଯଥେଷ୍ଟ ସହାୟତା କରେ; କିନ୍ତୁ ନୂତନତ୍ୱ ପ୍ରକାଶରେ ମନୁଷ୍ୟ ସେପରି ସାହାଯ୍ୟ ପାଏ ନାହିଁ ବୋଲି ଆଜିକାଲି ବିଶ୍ୱବିଦ୍ୟାଳୟ ସେ ଦିଗରେ ବିଶେଷ ଦୃଷ୍ଟି ଦେଇଅଛି । ନିମ୍ନ ସୋପାନରେ ଶିକ୍ଷାର୍ଥୀ ନିଜର ମୌଳିକତା ଜ୍ଞାପନ କରିବାକୁ ଉପଯୁକ୍ତ ସୁବିଧା ପାଏ ନାହିଁ; ବରଂ ନିର୍ଦ୍ଦିଷ୍ଟ ପାଠ୍ୟ ଅଧ୍ୟୟନ କରି ମାନସିକ ବୃତ୍ତିମାନଙ୍କୁ ସଂଯତ କରିବାର ଏହା ଗୋଟାଏ ଉତ୍କୃଷ୍ଟ ପନ୍ଥା । ମନୋବୃତ୍ତିଗୁଡ଼ିକର ସ୍ୱାଧୀନ ଚାଳନାକୁ ଗୋଟାଏ ନିୟମର ଅଧୀନ ରଖିଲେ ମୌଳିକତା ନଷ୍ଟ ହୋଇପାରେ; କିନ୍ତୁ ଏହା ବୋଲି ସାଧାରଣ ଶିକ୍ଷାପଦ୍ଧତିରେ ହଠାତ୍ ପରିବର୍ତ୍ତନ ଆଣିବା ଅନାବଶ୍ୟକ । ସାମାଜିକ ଉନ୍ନତି ଦୃଷ୍ଟିରେ ମାନସିକ ସଂଯମକୁ ପ୍ରଥମ ସ୍ଥାନ ଦିଆଯାଇପାରେ । ସତ୍ୟାନୁସନ୍ଧାନ ଯଦି ଶିକ୍ଷାର ଉଦ୍ଦେଶ୍ୟ ହୁଏ, ତାହାହେଲେ ବିଭିନ୍ନ ମାର୍ଗରେ ସତ୍ୟର ପଥ ଉଦ୍‌ଘାଟନ କରିବା ପାଇଁ ଭିନ୍ନ ଭିନ୍ନ କର୍ମୀମାନଙ୍କୁ ସ୍ୱାଧୀନ କର୍ମପନ୍ଥା ଛାଡ଼ିଦେବା ଆବଶ୍ୟକ । ସତ୍ୟର ସ୍ୱରୂପ ଏକ ନୁହେଁ । ସାଧକର କ୍ରିୟାକୌଶଳ ଉପରେ ତାର ପ୍ରକାଶ ପ୍ରଣାଳୀ ନିର୍ଭର କରେ । ଗୋଟିଏ ତଥ୍ୟ ଜଣେ ଆବିଷ୍କାର କରେ; କିନ୍ତୁ ପୁନଃ ପୁନଃ ବିଚାରଦ୍ୱାରା ତାର ମହତ୍ତ୍ୱ ବୃଦ୍ଧି ପାଏ । ସାଧାରଣ ଜ୍ଞାନର ସୀମା ମଧ୍ୟରେ ଯାବତୀୟ ତତ୍ତ୍ୱ ଆଲୋଚନାକୁ ଆବଦ୍ଧ ରଖିଲେ ସତ୍ୟର ଅପଲାପ ଘଟେ । ବହୁଯୁଗବ୍ୟାପୀ ଜ୍ଞାନ-ସାଧନାର ସଞ୍ଚିତ ଫଳକୁ ଜୀବନରେ ଲଗାଯାଇପାରେ; କିନ୍ତୁ ବିଚାର ନ କରି ତାକୁ ସମ୍ପୂର୍ଣ୍ଣ ନିର୍ଦ୍ଦୋଷ ବୋଲି ଗ୍ରହଣ କରିବା ଉଚିତ ନୁହେଁ । ଜୀବନର ବୈଚିତ୍ର୍ୟ ଓ ପରିବର୍ତ୍ତନ ସଙ୍ଗେ ମନୋବୃତ୍ତିର ପାର୍ଥକ୍ୟ ଘଟିଥାଏ । ଏହି ପାର୍ଥକ୍ୟ ଦୃଷ୍ଟିରେ ବିଶ୍ୱବିଦ୍ୟାଳୟର ଶିକ୍ଷା-ପଦ୍ଧତି କେତେକାଂଶରେ ନିୟନ୍ତ୍ରିତ ହେବା ବାଞ୍ଛନୀୟ । ତା ନ ହେଲେ ଅତୀତ ଓ ବର୍ତ୍ତମାନର ଚିନ୍ତାଧାରା ମଧ୍ୟରେ କୌଣସି ବୈଷମ୍ୟ ରହିବ ନାହିଁ । ବିଖ୍ୟାତ ଦାର୍ଶନିକ ଜନ୍ ଷ୍ଟୁଆର୍ଟ ମିଲ୍ ଅନେକ ଦିନ ତଳେ ବ୍ୟକ୍ତିଗତ ଚିନ୍ତାର ସ୍ୱାଧୀନତା ନ ଦେଖି ଆକ୍ଷେପ କରିଥିଲେ ।

ଆଧୁନିକ ସୁଲେଖକ ବାର୍ଣ୍ଣାଡ଼୍ ଶ' ବିଶ୍ୱବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ହେଉଥିବା ସାଧାରଣ ଶ୍ରେଣୀର ଶିକ୍ଷିତ ଲୋକମାନଙ୍କୁ ଗ୍ରାହ୍ୟ କରି ନାହାନ୍ତି । ଚିନ୍ତାଧାରାକୁ ନିୟନ୍ତ୍ରିତ କରିବା ପାଇଁ ନିର୍ଦ୍ଦିଷ୍ଟ ପାଠ୍ୟ ବିଷୟରେ ମନୋନିବେଶ କରିବା ଉଚିତ; କିନ୍ତୁ କିଛି ନୂତନତ୍ୱ ଉତ୍ପାଦନ କରିବାକୁ ହେଲେ ଜୀବନର ପ୍ରସାର ପ୍ରତି ଲକ୍ଷ୍ୟ ଦେବା ଆବଶ୍ୟକ । ନୂତନତ୍ୱପ୍ରୟାସୀ ସାଧାରଣ ଭାବରେ ଜୀବନ ଯାପନ କରିବାକୁ ଉପେକ୍ଷା କରି ଗୋଟାଏ ସ୍ୱତନ୍ତ୍ର ମାର୍ଗରେ ଅଗ୍ରସର ହୁଏ । ଧାରାବାହିକ ନିୟମ ପ୍ରଣାଳୀର ଅନୁବର୍ତ୍ତୀ ଲୋକ ଜୀବନର ଅଧିକାଂଶ ଭାଗ ଏକ ଭାଗରେ କଟାଇଦିଏ । ମୌଳିକତା ଦେଖାଇବା ତା ପକ୍ଷରେ ସହଜ ହୁଏ ନାହିଁ ।

ବିଶିଷ୍ଟ ବିଷୟମାନଙ୍କର ଅଧ୍ୟୟନ ଲାଗି ବିଶ୍ୱବିଦ୍ୟାଳୟର ଉଚ୍ଚଶିକ୍ଷାବିଭାଗ ଖୋଲାଯାଇଛି । ଜ୍ଞାନର ସୀମା ଏତେ ବିସ୍ତୃତ ଓ ବିଭିନ୍ନ ହେଲାଣି ଯେ, ଆଜିକାଲି ସମୂହ ଜ୍ଞାନ ଅର୍ଜନ କରିବା ସମ୍ପୂର୍ଣ୍ଣ ଅସମ୍ଭବ । ପୃଥକ୍ ପୃଥକ୍ ବିଷୟମାନଙ୍କର ସ୍ୱତନ୍ତ୍ରୀକରଣ ଓ ଉନ୍ନତ ଆଲୋଚନାଦ୍ୱାରା ପ୍ରଚଳିତ ଉଚ୍ଚଶିକ୍ଷାର ବିଶେଷ ଉତ୍କର୍ଷ ଦେଖାଯାଏ; କିନ୍ତୁ ଉପର୍ଯ୍ୟୁକ୍ତ ବିଷୟମାନଙ୍କର ପରସ୍ପର ସମ୍ପର୍କ ଦୁରୂହ ହେଲେ ସୁଦ୍ଧା କୌଣସି ସମୂହ ଆଲୋଚନା ପ୍ରଣାଳୀର ଉଦ୍ଭାବନ ଏ ପର୍ଯ୍ୟନ୍ତ କରାଯାଇ ନାହିଁ । କେତେକ ପ୍ରତିଭାଶାଳୀ ଲୋକ ସେମାନଙ୍କର ଶକ୍ତି, ଅବସ୍ଥା ଓ ରୁଚି ଅନୁଯାୟୀ ଏ ଦିଗରେ ଚେଷ୍ଟା କରି ବିଭିନ୍ନ ଭାବରେ କୃତିତ୍ୱ ପ୍ରକାଶ କରିଛନ୍ତି; କିନ୍ତୁ ଏପରି ଅତ୍ୟାବଶ୍ୟକ ବିଷୟକୁ ଘଟଣାକ୍ରମରେ ଛାଡ଼ିଦେଇ ନୀରବ ରହିବା ଉଚିତ ନୁହେଁ । ଏହି ସମ୍ପର୍କ ବିଷୟକୁ ଉଚ୍ଚ ଅଧ୍ୟୟନ ପ୍ରଣାଳୀର ଅନ୍ତର୍ଭୁକ୍ତ କଲେ ବିଶ୍ୱବିଦ୍ୟାଳୟର ମହତ ଲକ୍ଷ୍ୟ ଅନେକାଂଶରେ ସାଧିତ ହୁଅନ୍ତା ।

ପ୍ରାଥମିକ ଅବସ୍ଥାରେ ମନୋବୃତ୍ତିର ବିକାଶ ସକାଶେ ବାସ୍ତବ ଘଟଣାମାନଙ୍କ ବିଷୟରେ ଶିକ୍ଷା ଦିଆଯାଇପାରେ; କିନ୍ତୁ ଉଚ୍ଚଶିକ୍ଷାରେ ସେ ଦିଗକୁ ଲକ୍ଷ୍ୟ କଲେ ମୌଳିକତା ପ୍ରକାଶରେ ବାଧା ଆସିବ । ବାସ୍ତବ ଘଟଣାମାନଙ୍କୁ ଅନୁସରଣ କରି ଯେଉଁ ଶିକ୍ଷା ଦିଆଯାଏ, ତଦ୍ଦ୍ୱାରା ମନର ଗୋଟାଏ ଅଭିଜ୍ଞତା ଜନ୍ମେ । ଏହି ଅଭିଜ୍ଞତା ବଳରେ ମନୁଷ୍ୟ ପ୍ରଚଳିତ ସାମାଜିକ ମତମାନଙ୍କୁ ପରୀକ୍ଷା କରି ଗ୍ରହଣ କିମ୍ବା ତ୍ୟାଗ କରେ । ଲୋକମତ ସାଧାରଣତଃ ମନରେ ଗୋଟାଏ ଭୌତିକ ବିକାର ଜନ୍ମାଇ ଥାଏ । ଭିତ୍ତିହୀନ କଥାର ପ୍ରସାର ସାମାଜିକ ଜୀବନରେ ସଚରାଚର ଦେଖାଯାଏ । ଅଗ୍ରଗତିକୁ ଲକ୍ଷ୍ୟ ରଖିଲେ ପରିବର୍ତ୍ତନ ଅବଶ୍ୟମ୍ଭାବୀ ହୁଏ । ପରିବର୍ତ୍ତନ ପଥରେ ଏହି ଭୌତିକ ବିକାର ମନରୁ ଦୂର ହୋଇଗଲେ ଯେଉଁ ସ୍ୱଚ୍ଛନ୍ଦ ଅବସ୍ଥା ଆସେ, ସେଥିରେ ମନୁଷ୍ୟ ଦୃଢ଼ ହୁଏ ଓ ସରଳ ବିଶ୍ୱାସରେ କୌଣସି ମତର ଅଧୀନ ହେବାକୁ ଇଚ୍ଛା କରେ ନାହିଁ । ଏହି ହିସାବରେ ଦେଖିଲେ ଜଣାଯାଏ ଯେ, ମନୁଷ୍ୟ ଜୀବନ ଗୋଟାଏ ପରୀକ୍ଷାକ୍ଷେତ୍ର । ଭ୍ରମପ୍ରମାଦକୁ ପରୀକ୍ଷା କରି ଯେଉଁ ପଥ ନିର୍ଣ୍ଣୟ କରାଯାଏ, ସେଥିରେ ପୁଣି ଉପଦ୍ରବ ଲୁକ୍କାୟିତ ହୋଇ ରହିପାରେ । ଗୋଟାଏ ଅଭ୍ରାନ୍ତ ମତର ପ୍ରତିଷ୍ଠା କରି ଅନୁସରଣ କରିବା ସମସ୍ତଙ୍କ ପକ୍ଷରେ ସହଜ ନୁହେଁ । ବିଶ୍ୱବିଦ୍ୟାଳୟରେ ଯେଉଁ ବିଷୟମାନଙ୍କର ଶିକ୍ଷା ହୋଇଥାଏ, କାଳକ୍ରମେ ତାହା ବିସ୍ମୃତ ହେଲେ ସୁଦ୍ଧା ମାନସିକ ଅବସ୍ଥାର ବିକାଶ ଜୀବନବ୍ୟାପୀ ରହେ । କେବଳ ସ୍ୱାଧୀନ ଶିକ୍ଷାକ୍ଷେତ୍ରରେ ଏହି ବିକାଶ ସମ୍ଭବପର ହୋଇଥାଏ । କାର୍ଯ୍ୟବିଧିରେ ଅଧୀତ ବିଷୟମାନଙ୍କୁ ଲଗାଇ ପ୍ରକୃତ ମାର୍ଗାବଲମ୍ବନ କରାଯାଇପାରେ ।

ଏହି ସମ୍ପର୍କରେ ବିଶ୍ୱବିଦ୍ୟାଳୟର ଛାତ୍ରମାନଙ୍କୁ ଦୁଇ ଶ୍ରେଣୀରେ ବିଭକ୍ତ କରାଯାଇପାରେ । ପ୍ରଥମାବସ୍ଥାରେ କୌଣସି ଶ୍ରେଣୀବିଭାଗ ଆବଶ୍ୟକ ହୁଏ ନାହିଁ; କେବଳ ଜ୍ଞାନାର୍ଜନ କରିବା ପାଇଁ କେତେକ ଛାତ୍ର ବିଶ୍ୱବିଦ୍ୟାଳୟର ଆଶ୍ରୟ ନିଅନ୍ତି । ଅନ୍ୟମାନେ କିଛି ଶିକ୍ଷା ଲାଭ କରିବା ପରେ ଜୀବିକା-ନିର୍ବାହର ପନ୍ଥା ପାଇବେ ବୋଲି ସେଠାରେ ପ୍ରବେଶ କରନ୍ତି । ଏହି ଦୁଇ ଜାତି ଛାତ୍ରମାନଙ୍କ ମଧ୍ୟରେ ବିଭିନ୍ନ ଶିକ୍ଷାପ୍ରଣାଳୀ ପ୍ରବର୍ତ୍ତାଇବା ଖୁବ୍ ଆବଶ୍ୟକ ବୋଲି କେହି କେହି ଭାବିପାରନ୍ତି; କିନ୍ତୁ ପ୍ରକୃତରେ ତାହା ନୁହେଁ । ଉଭୟ ଶ୍ରେଣୀ ଛାତ୍ରମାନଙ୍କର ମନୋବୃତ୍ତି ଏକଭାବରେ ଗଢ଼ କରିବା ଉଚିତ । ସତ୍ୟସନ୍ଧାନ, ନୂତନ ଭାବ-ଗ୍ରହଣ ଓ ଅଭିଜ୍ଞତା ଲାଭ କଲେ ସେମାନଙ୍କର ପୃଥକ୍ ପୃଥକ୍ ଉଦ୍ଦେଶ୍ୟ ସାଧିତ ହୁଏ । ଜଣେ ଜ୍ଞାନାନୁଶୀଳନ କରି ଜ୍ଞାନର ପରାକାଷ୍ଠା ପ୍ରକାଶ କରେ ଓ ଅନ୍ୟ ଜଣେ ଜୀବନର ବିଭିନ୍ନ ଉପାଦେୟତା ପ୍ରମାଣ କରେ । ଜଣକର ଜ୍ଞାନ ଅପରର କର୍ମ ସହିତ ମିଳିତ ନ ହେଲେ ସୁଦ୍ଧା ଦୁହିଁଙ୍କୁ ସମକାଳୀୟ ସାଧନାର ବଶବର୍ତ୍ତୀ ହେବାକୁ ପଡ଼େ । ଏକ ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କରି ଦୁଇଟି ଛାତ୍ର ବିଭିନ୍ନ ପଥ ଅନୁସରଣ କଲେ ଶିକ୍ଷାର ମହତ୍ତ୍ୱ କ । ପଡ଼େ ।

# ଭାବୁକର ଦୃଷ୍ଟି

ବିଶ୍ୱଜଗତ୍ ଅସୀମ ଶୋଭାସମ୍ପଦରେ ପୂର୍ଣ୍ଣ । ଅବିରାମ ପରିବର୍ତ୍ତନରେ ବିଶ୍ୱବାସୀର ମନ ସର୍ବଦା ଆଲୋଡ଼ିତ । ଉତ୍ତୁଙ୍ଗ ପର୍ବତଶିଖର ଲୋପ ପାଇ ଅତଳସ୍ପର୍ଶୀ ଭୀଷଣ ଜଳଧିରେ ପରିଣତ ହୁଏ; ପୁଣି ନୀଳାମ୍ବୁ ସାଗରଗର୍ଭ ଦାରୁଣ ମରୁଭୂମି ସୃଷ୍ଟି କରେ । ମାରାତ୍ମକ ଆଗ୍ନେୟଗିରିର ପ୍ରଚଣ୍ଡ ଅଗ୍ନିବର୍ଷଣରେ ମାନବର ଅସଂଖ୍ୟ ସୁଖସୌଧ ମୁହୂର୍ତ୍ତକେ ବିଚୂର୍ଣ୍ଣ ହୁଏ । ପ୍ରକୃତିର ତାଣ୍ଡବଲୀଳା ଦର୍ଶନରେ ବିକ୍ଷୁବ୍ଧଚିତ୍ତ ମାନବ ବିଶ୍ୱ-ସଂହାର ମୂର୍ତ୍ତିକୁ ଠିକ୍‌ରୂପେ ଚିହ୍ନିପାରେ ନାହିଁ । ମନୁଷ୍ୟ କ୍ଷୁଦ୍ର ଜୀବ । ତାର ଦୃଷ୍ଟିଶକ୍ତି ଗୋଟାଏ ସୀମା ମଧ୍ୟରେ ଆବଦ୍ଧ । ଅନନ୍ତ ଶକ୍ତିର ଆଲୋଡ଼ନ ନିରୀକ୍ଷଣ କରିବା ତା ପକ୍ଷରେ ଅସମ୍ଭବ କହିଲେ ଚଳେ । ଆଧାର ଘେନି ଚିତ୍ରର ମହତ୍ତ୍ୱ ପ୍ରତିପନ୍ନ କରାଯାଏ । ସେଥିଯୋଗୁଁ ବାଲ୍ମୀକି, କାଳିଦାସ ଓ ସେକ୍‌ସପିୟର ପ୍ରଭୃତି ମହାକବିମାନେ ପ୍ରକୃତିର ଧ୍ୱଂସଚିହ୍ନିସ୍ୱା ଅନୁସରଣ ନ କରି ମାନବୀୟ ଉତ୍କର୍ଷ କିମ୍ବା ଅପକର୍ଷ ଉପରେ ଦୃଷ୍ଟି ଦେଇଛନ୍ତି । କବି, ଚିତ୍ରକର ଓ ଶିଳ୍ପୀର ଭାବନା ବିଭିନ୍ନ ଦିଗରେ ଗତି କରି ଯେଉଁ ନୈପୁଣ୍ୟର ପରିଚୟ ଦିଏ, ତାକୁ ମନୁଷ୍ୟର କଳ୍ପନା-ଚକ୍ଷୁ ଭେଦ କରିପାରେ । ଧାରଣାର ଅତୀତ ବିଷୟ ବର୍ଣ୍ଣନାରେ ସାଧାରଣ ଲୋକ-ଚରିତ୍ର ପୁଷ୍ଟି ଲାଭ କରେ ନାହିଁ । ଆଦର୍ଶ କାବ୍ୟ ଓ ନାଟକ ପ୍ରଭୃତିରେ ଅକଳଙ୍କ ଚରିତ୍ର ଚିତ୍ରଣଦ୍ୱାରା ଯେଉଁ ବିଶେଷତ୍ୱ ଦେଖାଯାଏ, ତାହା ଚିତ୍ରକର ପକ୍ଷରେ ଗ୍ରହଣୀୟ ହୋଇ ନ ପାରେ । ଶାନ୍ତ ପ୍ରକୃତିର କମନୀୟ ଶୋଭା ତୂଳିକା ସାହାଯ୍ୟରେ ଉନ୍ମେଷିତ ହେଲେ ଚିତ୍ରକର ବିଶେଷ ଖ୍ୟାତି ଅର୍ଜନ କରେ । କବି ଓ ଚିତ୍ରକରର ପ୍ରକୃତି-ଚିତ୍ରଣ ଶ୍ରେଣୀଭେଦରେ ବିଭିନ୍ନ ହେଲେ ମଧ୍ୟ ଦୃଷ୍ଟି ସଞ୍ଚାଳନରେ ଉଭୟଙ୍କୁ ସମଆଦର୍ଶର ବଶବର୍ତ୍ତୀ ହେବାକୁ ପଡ଼େ । କୌଣସି ନୀରବ, ଗମ୍ଭୀର ଓ ମହୀୟାନ୍ ଛବି ପ୍ରକାଶ କରିବାରେ ଭାବରାଜ୍ୟ ଉଦ୍‌ବେଳିତ ହୁଏ ନାହିଁ । ମନର ଉନ୍ନତ ଅବସ୍ଥାରେ ଅହଂଭାବ କ୍ରମଶଃ ଲୁପ୍ତ ହେଲେ ମନୁଷ୍ୟ କେବଳ ଅନନ୍ତ ଶକ୍ତିର ବିକାଶ ଦେଖି ଯେଉଁ ପ୍ରେରଣା ଲାଭ କରେ, ତାକୁ ଲେଖନୀ କିମ୍ବା ତୂଳିକା ସାହାଯ୍ୟରେ ସେ ପ୍ରକାଶ କରେ । ତାର ନିଜତ୍ୱ ଏଥିରେ କିଛି ନ ଥାଏ । ଶାନ୍ତ ପ୍ରକୃତିର ପ୍ରଶାନ୍ତଭାବ ଦେଖିଲେ ମନୁଷ୍ୟର ଏପରି ଉନ୍ନତ ଭାବ ଆସିପାରେ । ସମୟ ଓ ଅବସ୍ଥା ସମ୍ପର୍କରେ ମନୁଷ୍ୟର ଭାବାନ୍ତର ଉପସ୍ଥିତ ହୁଏ । ହଠାତ୍ କୌଣସି ବିସ୍ମୟକର ଘଟଣା ଦେଖି ମନର ଯେ ପରିବର୍ତ୍ତନ ଆସେ, ତାହା ଭାବୁକର ତାରତମ୍ୟ ଅନୁସାରେ ଚିହ୍ନିତ ହୁଏ ।

ଆଷାଢ଼ର ମେଘାଚ୍ଛନ୍ନ ଆକାଶ ସବୁ କବି ଓ ଚିତ୍ରକର ଦେଖୁଛନ୍ତି; କିନ୍ତୁ କାଳିଦାସଙ୍କ ପରି ଗୁରୁ ଗମ୍ଭୀର ଭାବ ପ୍ରକାଶ କରିବା କାହାରି ପକ୍ଷରେ ସମ୍ଭବପର ହେଉ ନାହିଁ । ମନୁଷ୍ୟର ଅନ୍ତର୍ନିହିତ ସଦ୍‌ଗୁଣର ପରିଚୟ ଦେବା ପାଇଁ ଅସଂଖ୍ୟ କାବ୍ୟ ଓ ଉପନ୍ୟାସ ରଚିତ ହେଉଛି; କିନ୍ତୁ ବାଲ୍ମୀକିଙ୍କର ମଧୁମୟ ଲେଖନୀ-ନିଃସୃତ ସୀତାରାମଚରିତ ଜଗତରେ କାହିଁକି ଅଦ୍ୱିତୀୟ ହୋଇ ଆବହମାନ କାଳରୁ ରହିଛି ? ଭାବୁକର ଦୃଷ୍ଟିଭେଦରେ ଚିତ୍ରର ବୈଷମ୍ୟ ଦେଖାଯାଏ । କାଳର ପ୍ରାଦୁର୍ଭାବ ଅନୁସାରେ ସମାଜରେ ଯେଉଁ ସବୁ ପରିବର୍ତ୍ତନ ଆସେ, ତଦ୍ୱାରା ମନୁଷ୍ୟର ରୁଚି କ୍ରମଶଃ ସଙ୍କୁଚିତ କିମ୍ବା ପ୍ରସାରିତ ହୋଇପାରେ; କିନ୍ତୁ ତା ହୃଦୟର ଆକାଙ୍‌କ୍ଷା ଚିରଦିନ ଅପୂର୍ଣ୍ଣ ରହିବ । ସୀତାରାମ ଯୁଗରେ ମାନବର ଯେ ଦୁର୍ବଳତା ଥିଲା, ଆଜି ମଧ୍ୟ ସେଥିରୁ ସେ ନିରାକୃତ ନୁହେଁ; ବରଂ ସେ ଯୁଗରେ ଥରେ ପଦ ସ୍ଖଳନ ହେଲେ ଯେତେ ଅନୁତାପ ମନୁଷ୍ୟ ଭୋଗ କରୁଥିଲା, ଆଜି ସହସ୍ର ପ୍ରମାଦ-ଜନକ କାର୍ଯ୍ୟ କରିବାକୁ ସେ ଥରେ ହେଲେ କୁଣ୍ଠା ବୋଧକରୁ ନାହିଁ । ପ୍ରଚଳିତ ରୁଚି ପ୍ରଭାବରେ କବି ଓ ଶିଳ୍ପୀମାନେ ଚାଳିତ ହୁଅନ୍ତି; କିନ୍ତୁ ସମସ୍ତ ସମୟରେ କୌଣସି ଅସାଧାରଣ ପ୍ରତିଭାଶାଳୀ ମନୀଷୀଙ୍କର ଲେଖନୀ କିମ୍ବା ତୂଳିକା କଳାରାଜ୍ୟରେ ଯୁଗାନ୍ତର ଆଣେ ।

ଭାବର ବିକାଶରେ ସୌନ୍ଦର୍ଯ୍ୟର ପୂଜା । ସାଧାରଣ ମନୁଷ୍ୟ ସର୍ବଦା ସଂସାର ଚିନ୍ତାରେ ଦିନାତିପାତ କରେ । ତାର ଭାବନା ଦୈନନ୍ଦିନ କାର୍ଯ୍ୟ ନିର୍ବାହରେ ସଂଶ୍ଳିଷ୍ଟ ଥାଏ । ଅର୍ଥ ସଂଗ୍ରହ କରି ଦୈହିକ ସୁଖ ଲାଭ କରିବା ତା ଜୀବନର ମୁଖ୍ୟ ଉଦ୍ଦେଶ୍ୟ । ପ୍ରାକୃତିକ ସୌନ୍ଦର୍ଯ୍ୟରେ ଅଭିନିବିଷ୍ଟ ହେବା ତାର ସ୍ୱଭାବବିରୁଦ୍ଧ ହୋଇପଡ଼େ । ଅନିତ୍ୟ ସଂସାରକୁ ସାର ମନେ କରି ସେ ସାରା ଜୀବନଟା କଟାଇଦିଏ । ମୃତ୍ୟୁର ପୂର୍ବମୁହୂର୍ତ୍ତ ପର୍ଯ୍ୟନ୍ତ ସେ ସଂସାର ବାସନାରେ ଲିପ୍ତ; କିନ୍ତୁ ଭାବୁକ, କବି ଓ ଚିତ୍ରକର ପ୍ରକୃତି ଏମାନଙ୍କଠାରୁ ଖୁବ୍ ଉଚ୍ଚରେ ଅବସ୍ଥିତ । ସେମାନଙ୍କର ସାଂସାରିକ ଅଭାବ ଓ ଅସୁବିଧା ଥାଏ; କିନ୍ତୁ ସେମାନେ ସେ ଦିଗରେ ଉଦାସୀନ ଥାନ୍ତି । ସେମାନଙ୍କର ଦୃଷ୍ଟି କେବଳ ବହିର୍ଜଗତର ସୌନ୍ଦର୍ଯ୍ୟ ଲାଭରେ ନିହିତ । ଅନ୍ତରର ବାସନା ମନୁଷ୍ୟକୁ ଯେ କୌଣସି ବିଷୟରେ ଆବଦ୍ଧ କରିବ । ଜନ୍ମାନ୍ତରୀଣ ସଂସ୍କାର ଏ ସମ୍ପର୍କରେ ବିଶେଷ ପ୍ରଭାବ ବିସ୍ତାର କରେ ବୋଲି ଅନେକଙ୍କର ବିଶ୍ୱାସ । ଅଧିକାଂଶ କବି ଓ ଶିଳ୍ପୀଙ୍କ ଜୀବନୀରୁ ଏହାର ପ୍ରମାଣ ମିଳେ । କେବଳ ସାଧନା ବଳରେ କବି-ପ୍ରତିଭା କିମ୍ବା ଶିଳ୍ପନୈପୁଣ୍ୟ କାହାରି ସୃଷ୍ଟ ହୁଏ ନାହିଁ । ରୁଦ୍ଧ ସ୍ରୋତକୁ ପ୍ରବାହିତ କରିବା ପାଇଁ ଯେପରି ସାମାନ୍ୟ ପରିଶ୍ରମ କରିବାକୁ ପଡ଼େ, ସେହିପରି ପ୍ରଚ୍ଛନ୍ନ ପ୍ରତିଭାର ଉନ୍ମେଷ ପାଇଁ ସାଧନାକୁ ଉପଲକ୍ଷସ୍ୱରୂପ ଧରି ନେବାକୁ ହୁଏ । ନାନା ପ୍ରତିବନ୍ଧକ ଓ ଦୁରବସ୍ଥାରେ ସୁଦ୍ଧା ଭାବୁକ କଳ୍ପନା-ରାଜ୍ୟରେ ବିଚରଣ କରୁଥାଏ । ସାଧାରଣ ସଂସାରର କଷ୍ଟକୁ ସେ ସହଜରେ ଉପେକ୍ଷା କରେ । ଭାବ-ପ୍ରବଣ ଚିତ୍ତ ରସ-ପିପାସୁ ହୁଏ । ଅନେକ ସମୟରେ ପ୍ରାକୃତିକ ଦୃଶ୍ୟ ଦେଖି ଭାବବିଭୋର କବି କିମ୍ବା ଚିତ୍ରକର ଆତ୍ମହରା ହୋଇପଡ଼ନ୍ତି । ଚେଷ୍ଟା କରି ଏପରି ଅବସ୍ଥାର ଅଧୀନ ହେବା ସାଧାରଣଙ୍କ ପକ୍ଷରେ ସମ୍ଭବପର ନୁହେଁ । ଅବଶ୍ୟ କଳ୍ପନା ସାହାଯ୍ୟରେ ଜଣକର ପ୍ରକୃତିଚିତ୍ରଣ ଅନ୍ୟଦ୍ୱାରା ଅନୁସୃତ ହୋଇପାରେ; କିନ୍ତୁ ସେହି ଚିତ୍ରଣଟି ସହଜ ନୁହେଁ । ମହାକବି କାଳିଦାସଙ୍କର ଜାହ୍ନବୀ-ଯମୁନା ସଙ୍ଗମ ଚିତ୍ରଣଟି କେଡ଼େ ମନୋମୋହକର, ତାହା ଯେ କେହି ପାଠକ ହୃଦୟଙ୍ଗମ କରିପାରିବେ; କିନ୍ତୁ ସେହି ମହତ୍ ଭାବର ଉଦ୍ରେକ ବିଷୟ ଆଲୋଚନା କରିବାକୁ ହେଲେ କଳ୍ପନାର ଶିଖର ଦେଶକୁ ଉଠିବାକୁ ପଡ଼ିବ । ସେହି ପବିତ୍ର ସଙ୍ଗମର ଦୃଶ୍ୟକୁ କବି ଶେଷରେ ଯେତେବେଳେ—"କ୍ୱଚିତ୍ କୃଷ୍ଣୋରଗ ଭୂଷଣେବ ଭସ୍ମାଙ୍ଗରାଗା ତନୁରୀଶ୍ୱରସ୍ୟ" ସଙ୍ଗେ ତୁଳନା କରିଛନ୍ତି, ସେତେବେଳେ ସେ ଜଡ଼ ପ୍ରକୃତିର କ୍ରିୟାକୁ ଭେଦ କରି ନିର୍ଲିପ୍ତ ଆତ୍ମା ସହିତ ଅନାତ୍ମ ଭାବର ସଂଯୋଗ ଦେଖାଇଛନ୍ତି ।

ଗୁଣଭେଦରେ ଭାବୁକ ବିଭିନ୍ନ ଶ୍ରେଣୀର ଦେଖାଯାନ୍ତି । ଗୋଟାଏ ଚିତ୍ରକୁ ସମସ୍ତେ ସମାନ ଭାବରେ ଦେଖନ୍ତି ନାହିଁ । ସ୍ୱଭାବଗତ ଆସକ୍ତି ଅନୁସାରେ ଦୃଷ୍ଟିଶକ୍ତି ସଞ୍ଚାଳିତ ହୁଏ । ବର୍ଣ୍ଣିତ କିମ୍ବା ଚିତ୍ରିତ ବିଷୟର ମହତ୍ତ୍ୱ ଉପରେ ରଚୟିତାଙ୍କର ମହତ୍ ଚରିତ୍ରର ନିଦର୍ଶନ ମିଳେ । ଅନେକେ କହି ପାରନ୍ତି ଯେ, ଯୁଗୋଚିତ ରୁଚି ଏ ସମ୍ପର୍କରେ ଯଥେଷ୍ଟ ପ୍ରଭାବ ବିସ୍ତାର କରେ; ସୁତରାଂ କବି କିମ୍ବା ଶିଳ୍ପୀ ପ୍ରକୃତିଙ୍କର କୌଣସି ସ୍ୱାତନ୍ତ୍ର୍ୟ ନାହିଁ । ଏପରି ଧାରଣା କରିବା ପୂର୍ବରୁ ମନେ ରଖିବା ଉଚିତ ଯେ, କଳ୍ପନା-ରାଜ୍ୟରେ କାହାରି ଆଦେଶ ପାଳନ କରିବାକୁ ପଡ଼େ ନାହିଁ; କେବଳ ଲକ୍ଷ୍ୟ ଓ ଦୃଷ୍ଟିର ସାମଞ୍ଜସ୍ୟ ଘେନି ଜଣେ କବି ଓ ଚିତ୍ରକର ଅପର ସହିତ ସମାନ ଆସନରେ ବସି ପାରନ୍ତି । ଭାବାବେଶରେ ମେଳ ହେବା ଖୁବ୍ କମ୍ ସ୍ଥାନରେ ଦେଖାଯାଏ । କେହି କେହି କେବଳ ଅନୁକରଣ ପନ୍ଥା ଅବଲମ୍ବନ କରି ଆଦର୍ଶକୁ ସର୍ବଦା ମାନସପଟରେ ଆଙ୍କି ରଖିଥାନ୍ତି । ଏପରି ସୀମା-ମଧ୍ୟରେ ରହିବାଦ୍ୱାରା ସ୍ୱାଧୀନ ଭାବ ଫୁଟି ଉଠେ ନାହିଁ । ଚିନ୍ତାସ୍ରୋତରେ ଅଯଥା ବାଧା ଦେଇ ତାକୁ ଗୋଟାଏ ନିର୍ଦ୍ଦିଷ୍ଟ ଦିଗରେ ଚାଳିତ କଲେ ପ୍ରତିଭାର ବିକାଶ ଜଣାପଡ଼େ ନାହିଁ । ସମଜାତୀୟ ଭାବୁକ ପରସ୍ପରକୁ ଅନୁସରଣ କରିବାକୁ ଭଲ ପାଆନ୍ତି । ସେଥିଯୋଗୁଁ ଜଣକର ଦୋଷ କିମ୍ବା ସଂକୀର୍ଣ୍ଣତା ଅନ୍ୟଠାରୁ ପୋଷକତା ଲାଭ କରିଥାଏ । କୁରୁଚିପୂର୍ଣ୍ଣ କାବ୍ୟ, ଶିଳ୍ପ ଓ ଚିତ୍ର ଗୋଟାଏ ଶ୍ରେଣୀର ଲୋକମାନଙ୍କଦ୍ୱାରା ବିଶେଷ ଆଦୃତ ହୁଏ । ଯେଉଁମାନେ ସେଗୁଡ଼ିକ ପ୍ରକାଶ କରିଥାନ୍ତି, ସେମାନଙ୍କ ଚରିତ୍ରର ହୀନତା ସ୍ପଷ୍ଟ ଜଣାଗଲେ ସୁଦ୍ଧା ଅନେକେ ସେମାନଙ୍କୁ ଅନୁମୋଦନ କରନ୍ତି । ଭାବନାର ସ୍ରୋତ ଯେତେବେଳେ ନିମ୍ନକୁ ଗତି କରେ, ସେତେବେଳେ ମନୁଷ୍ୟର ନୀଚଭାବ ଫୁଟି ଉଠେ । ସେହି ଭାବରେ ପ୍ରଣୋଦିତ ହୋଇ ସେ ତାର ନୀଚତାର ପ୍ରଶ୍ରୟ ପାଇବା ପାଇଁ ଲୋକମତର ଅପେକ୍ଷା କରେ । ଆଧୁନିକ କେତେକ ଉପନ୍ୟାସ ଦେଖିଲେ ଉପର୍ଯ୍ୟୁକ୍ତ ବିଷୟର ସାର୍ଥକତା ଜଣାପଡ଼େ । ସାମାନ୍ୟ ଉତ୍ସାହ ପାଇଲେ ଏହି ସଂକୀର୍ଣ୍ଣତା ସମସ୍ତଙ୍କ ଦୃଷ୍ଟିକୁ ଆବୃତ କରିବା ପାଇଁ ଚେଷ୍ଟା କରେ । ଲୋକ-ଚରିତ୍ର ବର୍ଣ୍ଣନାରେ ମଧ୍ୟ ଏହି ଦୋଷ ଦେଖିବାକୁ ମିଳେ । ଦେଶର ଦୁର୍ଦ୍ଦିନରେ କୁରୁଚିସମ୍ପନ୍ନ ଲେଖକ, ଚିତ୍ରକର କିମ୍ବା ଶିଳ୍ପୀ ଆଦର ପାଇପାରନ୍ତି; କିନ୍ତୁ ସେମାନଙ୍କର ପ୍ରତିଷ୍ଠା ବେଶି ଦିନ ସ୍ଥାୟୀ ହୁଏ ନାହିଁ ।

ଆନନ୍ଦ ଓ ସୌନ୍ଦର୍ଯ୍ୟର ସମ୍ପର୍କ ବଡ଼ ସରସ । ମନୁଷ୍ୟର ଆନନ୍ଦ ଉପଭୋଗ ପାଇଁ ସୌନ୍ଦର୍ଯ୍ୟର ସୃଷ୍ଟି । ସଂସାର-କ୍ଳିଷ୍ଟ ମନ ସୌନ୍ଦର୍ଯ୍ୟଉପାସନାରେ ଯେଉଁ ମୁକ୍ତ ଭାବ ଅନୁଭବ କରେ, ତାହା ବୈଷୟିକ ତୃପ୍ତିରେ ନାହିଁ । ପାତ୍ରବିଶେଷରେ ଦର୍ଶକର ଦୃଷ୍ଟି ଅଚଞ୍ଚଳ ରହେ ନାହିଁ । ମୋହ ଏହାର ପ୍ରଧାନ କାରଣ । ଯାହାକୁ ଅବଲମ୍ବନ ସ୍ୱରୂପ ଧରି ଶାନ୍ତ ଭାବୁକ ହୃଦୟର ଦ୍ୱାର ଖୋଲିଦିଏ ଏବଂ ଅମୃତର ଆସ୍ୱାଦନ କରେ, ତାର ସାହାଯ୍ୟରେ ପୁଣି ସେ ନରକର ଅତଳ ଗର୍ଭରେ ପଡ଼ି ରହେ । କାମିନୀର ଅକପଟ ଶୋଭା-ସମ୍ଭାରକୁ ସମ୍ବଳ କରି ପ୍ରେମିକ ଯେଉଁ କଳ୍ପନା-ରାଜ୍ୟରେ ବିଚରଣ କରେ, ସେଥିରେ କାମର ଗନ୍ଧ ସୁଦ୍ଧା ରହିବା ବାଞ୍ଛନୀୟ ନୁହେଁ । ସରଳ ପ୍ରାଣରେ ସୁନ୍ଦରୀ-ସମ୍ପର୍କ ମନର ଉଦାରତା ଆଣେ । କେବଳ ବାହ୍ୟ ସୌନ୍ଦର୍ଯ୍ୟରେ ଦୃଷ୍ଟି ଦେବାଦ୍ୱାରା ଅନିଷ୍ଟ ଘଟିପାରେ । ଦେହାତ୍ମବୁଦ୍ଧିରେ ଯେଉଁମାନେ ଗୃହୀତ ହୁଅନ୍ତି, ସେମାନଙ୍କର ସୌନ୍ଦର୍ଯ୍ୟ ପୂଜା ନିଜର ଉପଭୋଗ ପାଇଁ । ରମଣୀର ରକ୍ତାଧରରେ ସେମାନେ ଆସକ୍ତ ଥାନ୍ତି, ତାର ସାମାନ୍ୟ ହାସ୍ୟରେ ସେମାନଙ୍କର ଭାବରାଜ୍ୟ ଉଦ୍‌ବେଳିତ ହୁଏ । ସର୍ବସ୍ୱ ବିନିମୟରେ ସୁନ୍ଦରୀର ସ୍ପର୍ଶ-ସୁଖ ପାଇବାପାଇଁ ସେମାନେ ଚଞ୍ଚଳ ହୋଇଉଠନ୍ତି । ଏପରି ଅବସ୍ଥାରେ ଭାବନାର ବିକାଶ ଅଧୋଗାମୀ ହୁଏ । ଲକ୍ଷ୍ୟରେ ସ୍ଥିରତା ଥିଲେ କେହି କେହି ଏହି ପତିତ ଅବସ୍ଥାରୁ ମଧ୍ୟ ଉପରକୁ ଗତି କରିପାରନ୍ତି । ଅନେକ ପ୍ରେମ କାହାଣୀରେ ଏଥିର ଦୃଷ୍ଟାନ୍ତ ମିଳେ । ଅନାବିଳ ପ୍ରେମ-ଚିତ୍ରରେ ଶରୀର-ସମ୍ପର୍କର ସ୍ଥାନ ନାହିଁ । ଶରୀର-ସୌନ୍ଦର୍ଯ୍ୟକୁ କାମୁକ ସୁଖର ଆଧାର ସ୍ୱରୂପ ଧରିପାରେ; କିନ୍ତୁ ଭାବୁକ ଦୃଷ୍ଟିରେ ତାହା ପ୍ରେମରାଜ୍ୟରେ ବିଚରଣ କରିବା ପାଇଁ ଗୋଟାଏ ସୋପାନ ମାତ୍ର । ଇନ୍ଦ୍ରିୟ-ତୃପ୍ତିରେ ସୌନ୍ଦର୍ଯ୍ୟକୁ ଲଗାଇଲେ କଳ୍ପନା-ଚକ୍ଷୁ କୌଣସି ସୀମା ମଧ୍ୟରେ ଆବଦ୍ଧ ରହେ ଓ ଚିତ୍ତର ଶୃଙ୍ଖଳ ବଢ଼ିବାକୁ ଆରମ୍ଭ କରେ । ମନୁଷ୍ୟର ଏହି ଚଞ୍ଚଳତା ବସ୍ତୁ-ବିଶ୍ୱର ପକ୍ଷେ ବାଧା ଦିଏ ଓ ତାର ସମସ୍ତ ଭାବନା ସୁନ୍ଦରୀର ମୁଖମଣ୍ଡଳଟିକୁ ଆବୃତ କରି ରହେ । ମୋହବଶତଃ ମନୁଷ୍ୟ ତାର ପ୍ରକୃତ ଅବସ୍ଥା ଅବଧାରଣ କରିପାରେ ନାହିଁ ।

ନିମ୍ନ ସ୍ତରରେ ଭାବୁକର ଅନ୍ତର୍ଦୃଷ୍ଟି ଉନ୍ମେଷିତ ହୋଇ ନ ଥାଏ । ଜ୍ଞାନର ବିକାଶ ସଙ୍ଗେ ସେ ସୌନ୍ଦର୍ଯ୍ୟକୁ ମଙ୍ଗଳମୟଙ୍କର ଅନନ୍ତ ସୃଷ୍ଟିର ଶୁଭ ସଙ୍କେତ ବୋଲି ମନେକରେ । ସୁନ୍ଦରୀର କୋମଳ ଭାବରେ ସେ ହୃଦୟର ଉଚ୍ଛ୍ୱାସ ଅନୁଭବ କରେ । ବିଶ୍ୱ ପ୍ରକୃତିରୁ ସୌନ୍ଦର୍ଯ୍ୟର ଉତ୍ପତ୍ତି । ଅସଂଖ୍ୟ ଶୋଭା-ସମ୍ପଦ ମଧ୍ୟରେ ରୂପବତୀ ନାରୀ ଗୋଟିଏ ଉପାଦାନ ମାତ୍ର । ଉଦ୍ଦେଶ୍ୟ ନ ବୁଝି ତାକୁ କେବଳ ଶରୀର ସଙ୍ଗିନୀ କରିବା ମନୁଷ୍ୟର କର୍ତ୍ତବ୍ୟ ନୁହେଁ । ବାହ୍ୟ ଚାକ୍‌ଚକ୍ୟରେ ଲିପ୍ତ ରହିଥିବା ଯାଏ ସୌନ୍ଦର୍ଯ୍ୟର ଯେ କୌଣସି ଉପାଦାନର ମହତ୍ତ୍ୱ ଜଣାପଡ଼େ ନାହିଁ ।

ଭାବୁକର ଦୂରଦୃଷ୍ଟି ଉପରେ କର୍ମଜଗତର ସ୍ଥିତି ଓ ପରିବର୍ତ୍ତନ ନିର୍ଭର କରେ । ଚିନ୍ତାଶୀଳ କର୍ମୀ ଭବିଷ୍ୟତକୁ ଲକ୍ଷ୍ୟ ରଖି କର୍ମମାର୍ଗ ନିୟନ୍ତ୍ରିତ କରେ । ସାଧାରଣ ଦୃଷ୍ଟି ସ୍ୱାର୍ଥସଂଶ୍ଳିଷ୍ଟ ଥାଏ । ସେଥିଯୋଗୁ ସେ ଦେଶ କିମ୍ବା ସମାଜର କଲ୍ୟାଣକର ସଦନୁଷ୍ଠାନମାନଙ୍କରେ ମନୋନିବେଶ କରେ ନାହିଁ । କ୍ଷୁଦ୍ର ସୀମା ମଧ୍ୟରେ ସର୍ବଦା ରହିବାଦ୍ୱାରା ତାର ଦୃଷ୍ଟି ସଂକୀର୍ଣ୍ଣ ହୁଏ । ଉନ୍ନତମନା ଦେଶସେବକ ଓ ସ୍ୱାର୍ଥପର ରାଜକର୍ମଚାରୀର କାର୍ଯ୍ୟ ଆଲୋଚନା କଲେ ଉପର୍ଯ୍ୟୁକ୍ତ ବିଷୟର ସତ୍ୟତା ଜଣାପଡ଼େ । ଆତ୍ମୋନ୍ନତି ପଥରେ ତ୍ୟାଗ ଶ୍ରେଷ୍ଠ ଅବଲମ୍ବନ । ସ୍ଥୂଳଦୃଷ୍ଟିରେ ଏହାର ମହତ୍ତ୍ୱ ଉପଲବ୍‌ଧ ହୁଏ ନାହିଁ । ବିଷୟ-ଲାଳସା ଓ ଶୃଙ୍ଖଳ ମନକୁ ଗ୍ରାସ କଲେ କର୍ମପନ୍ଥା ଦୁର୍ଗମ ହୋଇପଡ଼େ । କର୍ମ-ସମସ୍ୟାର ଜଟିଳତା ଭେଦ କରିବାକୁ ମନୁଷ୍ୟ ଅକ୍ଷମ ହୁଏ । ମହତ୍ ଓ ଉନ୍ନତ ଲକ୍ଷ୍ୟ ରଖି ଅଗ୍ରସର ହେଲେ ଅନ୍ତର୍ଦୃଷ୍ଟି କ୍ରମଶଃ ପ୍ରବଳ ହୁଏ । ନିଜର ସାମାନ୍ୟ ସ୍ୱାର୍ଥରକ୍ଷା ସକାଶେ ମନୁଷ୍ୟର ମନ ବିଚଳିତ ହୁଏ ନାହିଁ । ତ୍ୟାଗୀ କର୍ମୀ ଭବିଷ୍ୟତର ଯେଉଁ ଚିତ୍ର ଦେଖେ, ସେଥିରେ ହୀନ ସ୍ୱାର୍ଥ, ଅନ୍ୟାୟ କିମ୍ବା ପ୍ରବଳର ଦୁର୍ବଳ ଉପରେ ଅତ୍ୟାଚାରର ଚିହ୍ନ ସୁଦ୍ଧା ନ ଥାଏ । ତାର ପବିତ୍ର ଭାବକୁ ଦୁର୍ବଳ ଗ୍ରହଣ କରି ନୂତନ କର୍ମକ୍ଷେତ୍ରରେ ଦୀକ୍ଷିତ ହୁଏ । କର୍କଶତାର ନିର୍ମମ ଆବରଣ ତା ଦୃଷ୍ଟି ସମକ୍ଷରୁ କ୍ରମଶଃ ଲୋପ ପାଏ । ହୃଦୟର ଦୁର୍ବଳତା ତା ସଙ୍ଗେ ମଧ୍ୟ ଅପସାରିତ ହୁଏ ।

ପରାଧୀନ ଭାବ ଜାତୀୟ ଜୀବନରେ ଘୋର ଅନିଷ୍ଟ କରେ । ଜାତୀୟତା ରକ୍ଷାପାଇଁ ସ୍ୱାଧୀନ ଚିନ୍ତା ନିତାନ୍ତ ଆବଶ୍ୟକ ।

ଯେ ଜାତିର ଦୃଷ୍ଟି ସଙ୍କୀର୍ଣ୍ଣ ହୋଇପଡ଼େ, ସେ ଜାତିର ପତନ ଅନିବାର୍ଯ୍ୟ । ଏହି ସଙ୍କଟରେ ବିଚକ୍ଷଣ ତ୍ୟାଗୀ କର୍ମୀ ପ୍ରଚଳିତ କର୍ମପନ୍ଥାକୁ ବଦଳାଇବାକୁ ଚେଷ୍ଟା କରନ୍ତି । ଜାତିର ବିପତ୍ତି-ବିପଦ ଦେଖି ସେ ଜାତିର ଭାବନାସ୍ରୋତକୁ ସମ୍ପୂର୍ଣ୍ଣରୂପେ ପରିବର୍ତ୍ତିତ କରିଦିଅନ୍ତି । ତାଙ୍କର ଇଙ୍ଗିତରେ ପତିତ ଜାତି ବନ୍ଧନର ଜଡ଼ତା ଛାଡ଼ି ସତେଜ ହୁଏ । ଦୃଷ୍ଟି ଆଗରେ ସ୍ୱାଧୀନତାର ଆଲୋକ ଜଳିଉଠେ, ଚରିତ୍ରର ମହତ୍ତ୍ୱ ପ୍ରକାଶିତ ହୁଏ । ସ୍ୱାଧୀନ ଭାବର ସ୍ପନ୍ଦନ ନିର୍ଜିତ ଜାତିର ଶିରାପ୍ରଶିରାରେ ଖେଳିଯାଏ । ସେହି ପ୍ରଭାବରେ ସାହିତ୍ୟ, ସଙ୍ଗୀତ, ଚିତ୍ର, ଶିଳ୍ପ ଓ ଅନ୍ୟାନ୍ୟ ରୁଚିର କଳାସବୁ ବିକଶିତ ହୁଏ । ଜଣକର ଦୃଷ୍ଟି ଅନ୍ଧକାର ଭେଦ କରି ଯେଉଁ ଆଲୋକର ସନ୍ଧାନ ଦିଏ, ତାକୁ ଅକୁଣ୍ଠିତରେ ସମସ୍ତେ ଅନୁସରଣ କରନ୍ତି । ରୁଦ୍ଧ ପଥ ଥରେ ଖୋଲିଗଲେ ଆଉ ବନ୍ଦ ହେବା ସହଜ ନୁହେଁ । ସେହି ପଥରେ ହିଁ ସ୍ୱାଧୀନତାପ୍ରୟାସୀ ଜାତିର ପରବର୍ତ୍ତୀ ଲୋକେ ଗମନ କରି ଉନ୍ନତିର ଉଚ୍ଚ ଶିଖରରେ ଆରୋହଣ କରିଥାନ୍ତି ।

# କଳା-ବିଭବ

ଭାବର ଅଭିବ୍ୟକ୍ତିରେ କଳାର ସୃଷ୍ଟି । ସୌନ୍ଦର୍ଯ୍ୟ ଓ ଐଶ୍ୱର୍ଯ୍ୟରେ ତାର ବିସ୍ତୃତି । ରୁଚି ଓ ସାମାଜିକ ଅବସ୍ଥାଭେଦରେ ତାର ଭିନ୍ନ ଭିନ୍ନ କୌଶଳ ଓ ସୋପାନ । ଜୀବନସ୍ରୋତ ବଡ଼ ଚଞ୍ଚଳ । ତାର ତରଙ୍ଗରାଶି କାଳବକ୍ଷରେ ପ୍ରତିନିୟତ ଆଘାତ କରି ଚାଲିଯାଏ; ସେମାନଙ୍କର ଅସ୍ତିତ୍ୱ ନାହିଁ । ଏହି ଅବିଚ୍ଛିନ୍ନ ଗତିକୁ ଅନୁସରଣ କରି ମାନବର ମନ ଚିରନୂତନ ଆସ୍ୱାଦନା ପାଇବା ଆଶାରେ ଆଦିମ ଯୁଗରୁ ଅପେକ୍ଷା କରି ରହିଛି । ଅନୁଭୂତିର ପରିମାଣ ଅନୁସାରେ ସେ ଯେଉଁ ସ୍ମୃତି-ଚିହ୍ନ ରଖିଯାଇଛି କିମ୍ବା ରଖିଯିବ, ତାହା ସେମାନଙ୍କର ବୈଚିତ୍ର୍ୟ ରକ୍ଷା ଲାଗି କଳାର ମହତ୍ତ୍ୱ ପ୍ରତିପନ୍ନ କରାଏ ।

କ୍ଷଣଭଙ୍ଗୁର ବସନ୍ତ-ସୌନ୍ଦର୍ଯ୍ୟ ବିଦ୍ୟୁତର ଚମକ ପରି ଝଲସି ଉଠି ମିଳିଯାଏ । ଯୁବତୀର ରକ୍ତାଧରର ଅକପଟ ହାସ୍ୟରେ ପୁରୁଷର ଭାବରାଜ୍ୟ ଉଦ୍‌ବେଳିତ ହୋଇଉଠେ । ରମଣୀ ତାର ଅନ୍ତରରେ ଅଲକ୍ଷିତରେ ମୃଦୁ ଆଘାତ ଦିଏ; ଶତ ଘଟଣାଚକ୍ର ଆସି ତାକୁ ବିସ୍ମୃତି ଗର୍ଭରେ ଲୋପ କରିବାକୁ ଚେଷ୍ଟା କରନ୍ତି; କିନ୍ତୁ ଉଦ୍‌ଘାଟିତ ଅର୍ଗଳପରି ତାର ଗୋଟିଏ ନଗ୍ନ ଅବସ୍ଥା ଆତ୍ମଗୋପନ କରେ । ଘନ ଅନ୍ଧକାର ମଧ୍ୟରେ ଅଗ୍ନିଶିଖା ହଠାତ୍ ଜଳି ଉଠିଲା ପରି ମାନବର ନୈରାଶ୍ୟଜଡ଼ିତ ହୃଦୟ-କନ୍ଦରରୁ ଯେଉଁ ରାଗିଣୀ ବାଜିଉଠେ, ସେଥିରେ ଭାବୁକର ଭାବନା ଓ ଚିତ୍ରକରର ତୂଳିକା କେତେ ଯୁଗ ପାଇଁ ବ୍ୟାପୃତ ରହେ ।

କବି ଗାଇଯାଏ; ଚିତ୍ରକର ଆଙ୍କିଦିଏ । ଲକ୍ଷ୍ୟ ଦୁହିଁଙ୍କର ଏକ । ଜଣକର ଭାଷା ଅପରର ଚିତ୍ର ବିଭିନ୍ନ ହେଲେ ସୁଦ୍ଧା ହୃଦୟର ଉପାସ୍ୟ ଦେବତା ଦୁଇ ପୂଜକଙ୍କର ନୈବେଦ୍ୟ ସମଭାବରେ ଗ୍ରହଣ କରନ୍ତି । ତୂଳି ଓ ଲେଖନୀ ସମକାଙ୍କ୍ଷୀ; କିନ୍ତୁ ସେମାନଙ୍କର ପ୍ରକାଶ-ପ୍ରଣାଳୀରେ ପାର୍ଥକ୍ୟ ରହେ । ଗୋଟିଏ ପ୍ରେରଣାର ଅଧୀନରେ କାବ୍ୟ ଓ ଚିତ୍ର ଦୁଇ ବିଭିନ୍ନ ବସ୍ତୁରେ ପ୍ରକଟିତ ହୁଅନ୍ତି । ଚିତ୍ରର ପ୍ରଥମ ଦର୍ଶନରେ କେତେ ଯୁଗର ଗୁପ୍ତ ଭାବନା ମନର ନିଭୃତପଟରେ ଏକ ମୁହୂର୍ତ୍ତରେ ଭାସିଉଠେ; କିନ୍ତୁ କାବ୍ୟର ବାହ୍ୟ ଦୃଷ୍ଟି ସହିତ ଏପରି କୌଣସି ସମ୍ବନ୍ଧ ନାହିଁ । ଚିତ୍ରକର ଇଙ୍ଗିତରେ ଯାହା ଦେଖାଇଦିଏ, କବି ତାକୁ ଭାଷାରେ କହିଦିଏ । ଉଭୟେ ପରସ୍ୱହରଣକାଙ୍କ୍ଷୀ; ସୌନ୍ଦର୍ଯ୍ୟ ଆହରଣ କରିବା ପାଇଁ ଦୁହିଁଙ୍କୁ ଏକ ସାଧନା କରିବାକୁ ପଡ଼େ । ଅଳକ୍ତରଞ୍ଜିତ ଭୀରୁ-ଚପଳ-ଚରଣଚାଳନରେ ଚଞ୍ଚଳା ନାରୀ ଉଭୟ କବି ଓ ଚିତ୍ରକର ହୃଦୟରେ ଯେଉଁ ଭାବ ଖେଳାଇଦିଏ, ତାହା ଅସମ୍ପୂର୍ଣ୍ଣ ବୋଧ ହୋଇପାରେ; କିନ୍ତୁ ଫୁଟନ୍ତ କୋରକ ନିକଟରେ ମଧୁଲୋଭୀ ଅଳିର ଗୁଞ୍ଜନ ବେଶି କ୍ଷଣ ହେବା ଯେପରି ସ୍ୱାଭାବିକ, ସେହିପରି ସୁନ୍ଦରୀ ସମ୍ପର୍କରେ ବେଶି ସମୟ ରହି ତାକୁ ଫୁଲରାଣୀ କରିପାରିଲେ ଦୁହିଁଙ୍କର ଜୀବନ ସାର୍ଥକ ହୁଏ । ଜଣେ ତାର ଭାବ, ଆଉ ଜଣେ ତାର ଭଙ୍ଗୀର ମାଧୁରୀ ଗ୍ରହଣ କରେ । ଗୋଟିଏ ପୁଷ୍ପର ଦୁଇଟି ଅଧିକାରୀ । ଯେ ଯେପରି ନିବିଷ୍ଟ ଚିତ୍ତରେ ରୂପବତୀକୁ ସାଧନା ଅର୍ଘ୍ୟରେ ପୂଜା କରେ, ସେ ସେହି ପରିମାଣରେ ପୂର୍ଣ୍ଣତା ଆଡ଼କୁ ଅଗ୍ରସର ହୁଏ । ଏଥିରେ କୌଣସି ନିର୍ଦ୍ଦିଷ୍ଟ ସୀମା ନାହିଁ । ସରଳା ସୁନ୍ଦରୀର ସ୍ପର୍ଶସୁଖରେ ସାଧନାର ପଥ ନିର୍ଣ୍ଣୟ କଲେ ଲକ୍ଷ୍ୟ ବିନ୍ଦୁ ଦୂରରେ ରହିଯାଏ । ରାଗିଣୀ ଦୋଷଯୁକ୍ତ ହେଲେ ସଙ୍ଗୀତର ମାଧୁରୀ ନଷ୍ଟ ହୁଏ ।

କଳା ଓ ସାହିତ୍ୟ ଜାତିର ମହତ୍ତ୍ୱ-ପ୍ରକାଶକ । ଜୀବନର ଗତି, ସ୍ୱାଭାବିକ ସାଧନା କିମ୍ବା ଚରିତ୍ରର ଉତ୍କର୍ଷ ସେମାନଙ୍କ ସାହାଯ୍ୟରେ ଆତ୍ମପ୍ରକାଶ କରନ୍ତି । ଆଦର୍ଶର ଦ୍ରଷ୍ଟା କାବ୍ୟ କିମ୍ବା ଚିତ୍ରରେ ପ୍ରତିଫଳିତ ହୋଇ କାଳଗର୍ଭରେ ପ୍ରତିଷ୍ଠା ସ୍ଥାପନ କରିବାକୁ ସର୍ବଦା ଚେଷ୍ଟିତ । ପୁଣ୍ୟଶ୍ଳୋକ ପୁରୁଷ କିମ୍ବା ନାରୀର ଚରିତ୍ର ସତ୍‌ସାହିତ୍ୟର ପ୍ରଧାନ ଅବଲମ୍ବନ । ସହସ୍ର-ସହସ୍ର ବର୍ଷ ଅତୀତ ହେଲାଣି; ତଥାପି ନିଭୃତ ପର୍ବତ-ଗାତ୍ରରେ ଶିଳ୍ପୀର ନୈପୁଣ୍ୟ ପ୍ରାଚୀନ ସଭ୍ୟତାର ଶ୍ରେଷ୍ଠ ନିଦର୍ଶନରୂପେ

ବିରାଜିତ ଅଛି । ଧର୍ମ ଓ କୀର୍ତ୍ତିର ଧ୍ୱଜା ନଶ୍ୱର ପ୍ରସ୍ତରସ୍ତୁପରେ ଜୀବନ୍ତ ଭାବ ଧାରଣ କରି ମାନବଜାତିର ଇତିହାସ ଗୌରବରେ ଗାଇଯାଉଛି । ଜାତିର ପ୍ରାଣ, ସାଧନା ଓ ଗୌରବ ଅତୀତରେ ଲୀନ ହୁଏ ନାହିଁ । ପାଷାଣ ମୂର୍ତ୍ତିଗୁଡ଼ିକ ନିଷ୍ପନ୍ଦ ଭାବରେ ଅତୀତ-ଗର୍ଭରୁ ଯେଉଁ ଗମ୍ଭୀର ବାଣୀ ପ୍ରକାଶ କରେ, ତଦ୍ଦ୍ୱାରା ଜାତୀୟ ଜୀବନରେ ଗୋଟାଏ ଉଦ୍‌ବୋଧନ ଆସେ । ଐଶ୍ୱର୍ଯ୍ୟର ମହିମା ଓ ଧର୍ମର ଗରିମା କାଳକ୍ରମେ ମନୁଷ୍ୟର କର୍ମକ୍ଷେତ୍ରରୁ ଅନ୍ତର ହୋଇପାରେ; କିନ୍ତୁ ସେମାନଙ୍କର ଚିହ୍ନ ରହିଯାଏ ଜୀର୍ଣ୍ଣଦଗ୍ଧ ଗ୍ରନ୍ଥ କିମ୍ବା ଭଗ୍ନଶିଳା ଖଣ୍ଡିକରେ । ସାଧାରଣ ମନୁଷ୍ୟ ଉପେକ୍ଷା କରିପାରେ କିମ୍ବା ଅଜ୍ଞାନତା-ଅନ୍ଧକାରରେ ସେମାନଙ୍କ ବିଷୟରେ କିଛି ଧାରଣା କରିପାରେ ନାହିଁ କିମ୍ବା ଅନ୍ଧବିଶ୍ୱାସର ବଶବର୍ତ୍ତୀ ହୋଇ ବହୁସ୍ୱାର୍ଥବିଷ୍ଟ ଚିତ୍ତରେ କୌଣସି ଉପଦେବତାଙ୍କୁ ସନ୍ତୁଷ୍ଟ କରିବା ଛଳରେ କେବଳ ପୂଜାର ଆୟୋଜନ କରେ । ସମୟର ପରିବର୍ତ୍ତନ ଓ ସଭ୍ୟତାର ବିକାଶ ଅନୁସାରେ ପ୍ରତ୍ୟେକ ବିଷୟର ମୂଲ୍ୟ ନିରୂପଣ କରାଯାଇଥାଏ । ସିନ୍ଧୁନଦୀର ଗର୍ଭରେ ପ୍ରୋଥିତ ପ୍ରାଚୀନ ନଗରୀ ଭାରତୀୟ ସଭ୍ୟତାକୁ ଯେ ପ୍ରାଚୀନତମ ସ୍ଥାନ ଦେବ, ଏହା କେହି ଅସ୍ୱୀକାର କରିପାରିବେ କି ? ଭାରତର ଧାରାବାହିକ ଇତିହାସ ନାହିଁ; କିନ୍ତୁ ତାର ଶିଳ୍ପୀର ହସ୍ତ ଅନେକାଂଶରେ ଐତିହାସିକର କାର୍ଯ୍ୟ କରିଛି ।

ବିଶ୍ୱପ୍ରକୃତିର ଉପାସକ ପୁଷ୍ପର ସୌରଭରେ, ବସନ୍ତର ମାଧୁରୀରେ, କୋକିଳର କୂଜନରେ, ସୁଦୂର ବଂଶୀସ୍ୱନରେ କିମ୍ବା ଫେନିଳ ନୀଳାମ୍ବୁରାଶିର ଉଚ୍ଛଳ ତରଙ୍ଗଦର୍ଶନରେ ଯେଉଁ ଅନିର୍ବଚନୀୟ ଆନନ୍ଦ ଅନୁଭବ କରନ୍ତି, ତାକୁ ଶ୍ରେଣୀବିଭାଗ କରି ନିର୍ଦ୍ଦିଷ୍ଟ ସୀମା ମଧ୍ୟରେ ରଖିବା କଷ୍ଟକର । ଭିନ୍ନ ଭିନ୍ନ ପ୍ରାକୃତିକ ବିଷୟ ପର୍ଯ୍ୟବେକ୍ଷଣ କଲାବେଳେ ଭିନ୍ନ ଭିନ୍ନ ଭାବ ଉଦିତ ହୋଇପାରେ; କିନ୍ତୁ ସେ ସବୁ ଗୋଟିଏ ଆନନ୍ଦ ଉତ୍ସରୁ ଉତ୍ପନ୍ନ । ଆତ୍ମାର ମୁକ୍ତ ଅବସ୍ଥା ସଙ୍ଗେ ଏହାର ଘନିଷ୍ଠ ସମ୍ବନ୍ଧ । ଯେ ଯେତେ ଉପରକୁ ଉଠିଛି, ତାର ଦୃଷ୍ଟି ସେହି ପରିମାଣରେ ପ୍ରତିବନ୍ଧକଶୂନ୍ୟ । ଏହି ବ୍ୟବଧାନ ଅନୁସାରେ ଜଣେ ସାଧାରଣ କବି, ଚିତ୍ରକର କିମ୍ବା ଶିଳ୍ପୀ ତାଙ୍କର ସମଜାତୀୟ ଅସାଧାରଣ ପୁରୁଷଙ୍କଠାରୁ ନିମ୍ନ ସୋପାନରେ ଅବସ୍ଥିତ ।

ସତ୍ୟ ଓ ସୌନ୍ଦର୍ଯ୍ୟ ଅନୁଭବ କରିବା କୌଣସି ବିଶିଷ୍ଟ ଜାତିର ଅଧିକାରର ବିଷୟ ନୁହେଁ । ଅତ୍ୟଳ୍ପ ଲୋକ ଜୀବନର ଚଞ୍ଚଳତା ସଙ୍ଗେ ସଙ୍ଗେ ଶାନ୍ତିପ୍ରଦ ସୌନ୍ଦର୍ଯ୍ୟର ଆଧାରକୁ ନିର୍ଦ୍ଦିଷ୍ଟରୂପେ ଧରି ପାରନ୍ତି । ଯେଉଁମାନେ ଏ ପଥରେ ନିର୍ବିଘ୍ନରେ ଅଗ୍ରସର ହୁଅନ୍ତି, ସେମାନେ କେବଳ ସାଂସାରିକ ବୈଚିତ୍ର୍ୟରେ ଲିପ୍ତ ନ ଥାନ୍ତି । ଅନନ୍ତ ଜୀବନ-ସ୍ରୋତ ସଙ୍ଗେ ଚଞ୍ଚଳ ପାର୍ଥିବ ଗତିକୁ ମିଶାଇଦେବା ସେମାନଙ୍କର ଲକ୍ଷ୍ୟ । ସେମାନେ ବିଶ୍ୱଠାରୁ କୌଣସି ବିଷୟର ଭିନ୍ନତା ଦେଖନ୍ତି ନାହିଁ । କ୍ଷୁଦ୍ର ସ୍ୱାର୍ଥ କିମ୍ବା ଜାତିଗତ ବିଦ୍ୱେଷ ସେମାନଙ୍କ ହୃଦୟରେ ସଙ୍କୀର୍ଣ୍ଣତାର ଛାୟା ସୁଦ୍ଧା ପକାଇ ପାରେ ନାହିଁ । ସମଗ୍ର ପୃଥିବୀ ସେମାନଙ୍କ ପାଇଁ ବିଶିଷ୍ଟ ସ୍ଥାନ ନିରୂପଣ କରିଦିଏ । ମୁକ୍ତ ହୃଦୟର ସ୍ୱାଧୀନ ପ୍ରେରଣା ବାଲ୍ମୀକି ଓ ବ୍ୟାସ ପ୍ରଭୃତି ମହାକବି-ମାନଙ୍କୁ ଜଗତ୍‌ପୂଜ୍ୟ କରିଛି । ମାନବଠାରେ ସେମାନେ ଯେଉଁ ଦେବତ୍ୱର ବିକାଶ ଦେଖିଲେ, ତାହା ଅନ୍ୟଦ୍ୱାରା ସହଜରେ ଅନୁସନ୍ଧେୟ ନୁହେଁ । ଯାହାର ହୃଦୟ ଯେତେ ଉଦାର, ତାର ପୂର୍ଣ୍ଣତା ଆଡ଼କୁ ସେତେ ଗତି । ବିଶ୍ୱକବିଙ୍କ ଆଦର୍ଶ ଜନ୍ମଭୂମିର ଆକର୍ଷଣ ଅନୁସାରେ ପ୍ରଭାବିତ ହୋଇପାରେ; କିନ୍ତୁ ତାଙ୍କର ଅନ୍ତର-ସ୍ପନ୍ଦନରେ ସମସ୍ତ ମାନବଜାତି ସ୍ପନ୍ଦନ ଅନୁଭବ କରେ । ସେ ଗାଆନ୍ତି ବିଶ୍ୱ-ରାଗିଣୀର ଅମର ଛନ୍ଦରେ, ଯାହା ଶୁଣି କ୍ଷୁଦ୍ର ମାନବ ତାର ପାର୍ଥିବ ବିଷୟ ଭୁଲିଯାଇ ସତ୍ୟ ଓ ସୌନ୍ଦର୍ଯ୍ୟର ଉପାସନା କରେ । ତାଙ୍କର ପ୍ରେମ ସାଧାରଣ ମନୁଷ୍ୟର ଖାଦମିଶା ପ୍ରେମ ନୁହେଁ । ତାଙ୍କର ଐଶ୍ୱର୍ଯ୍ୟ-ବର୍ଣ୍ଣନା ତ୍ୟାଗର ଚରମ ନିଦର୍ଶନ । ସେ ଦେଖନ୍ତି, ମାନବ ଜୀବନର ପୂର୍ଣ୍ଣ ସାର୍ଥକତା । ଦୁର୍ବଳ ମନୁଷ୍ୟ ସଂସାର-ଆବର୍ତ୍ତରେ ପଡ଼ି ନିବିଡ଼ ଅନ୍ଧକାରରେ ଆଶାର ଆଲୋକ ଲୋଡ଼ିଲାବେଳେ ତାଙ୍କର ଅମର ରାଗିଣୀ ଭାସି ଆସେ ଅମୃତର ସନ୍ଧାନ ଦେବା ପାଇଁ । ମାନବର ଅପୂର୍ଣ୍ଣତାରେ ତାଙ୍କର କ୍ଷୁବ୍‌ଧତା ନାହିଁ । ମନୁଷ୍ୟର ସୁଖ ଦୁଃଖରେ ସେ ସର୍ବଦା ଅଚଞ୍ଚଳ । ତାଙ୍କୁ ବାଦ୍ ଦେଇ ସାଧାରଣ ସାଧକର କାର୍ଯ୍ୟାବଳୀ ଦେଖିଲେ ମନେ ହୁଏ ଯେ, ରୁଚିର ପରିବର୍ତ୍ତନ ସଙ୍ଗେ କାବ୍ୟ ଓ ଶିଳ୍ପ ପ୍ରଭୃତିର ଉତ୍କର୍ଷ କିମ୍ବା ଅପକର୍ଷ ଘଟିଥାଏ । ସମାଜର ଆଦର ଦେଖି କବି ଓ ଶିଳ୍ପୀମାନେ ଉପଯୋଗୀ ବିଷୟମାନ ପ୍ରକାଶ କରନ୍ତି ।

ଜୀବନର ସ୍ୱଚ୍ଛନ୍ଦ ଗତିରେ କଳାବିଦ୍ୟାର ଉନ୍ନତି ସାଧିତ ହୁଏ । ସାମାଜିକ ଅବସ୍ଥା ଶୋଚନୀୟ ହେଲେ କିମ୍ବା ସାଧାରଣ ଲୋକ-ଚରିତ୍ରରେ ଅବନତି ଘଟିଲେ କୁରୁଚିପୂର୍ଣ୍ଣ କାବ୍ୟ, ଚିତ୍ର ଓ ଶିଳ୍ପ ପ୍ରକାଶିତ ହୁଏ । ପ୍ରତ୍ୟେକ ଦେଶର ଇତିହାସ ପାଠ କଲେ ଏ ସମ୍ବନ୍ଧରେ ବିଶେଷ ଜ୍ଞାନ ଜନ୍ମିପାରେ; କିନ୍ତୁ ଭାରତବର୍ଷରେ ଏ ବିଷୟରେ କିଛି ପାର୍ଥକ୍ୟ ଲକ୍ଷିତ ହୁଏ ।

ଭାରତର ସାଧାରଣ ଶିଳ୍ପୀମାନେ ବଂଶପରମ୍ପରା ରୀତିକୁ ଅନୁସରଣ କରି ଯେଉଁ ଖ୍ୟାତି ଅର୍ଜନ କରନ୍ତି, ତାହା କେବଳ ରକ୍ଷଣଶୀଳ ଦେଶବାସୀଙ୍କ ପ୍ରଶଂସା ଉପରେ ଆରୋପ କରାଯାଇପାରେ । ପ୍ରାଚୀନତା ପକ୍ଷପାତୀ, କୁସଂସ୍କାର-ଆଶ୍ରୟୀ ମନ ସଂକୀର୍ଣ୍ଣ ସୀମା ମଧ୍ୟରେ ଆବଦ୍ଧ । ପୌରାଣିକ ବିଷୟମାନଙ୍କୁ ସର୍ବଦା ଆଶ୍ରୟ କରିବାଦ୍ୱାରା ଲୋକମାନଙ୍କର ରୁଚି ଓ ଶିଳ୍ପୀମାନଙ୍କର ନୈପୁଣ୍ୟରେ କିଛି ନୂତନତ୍ୱ ଦେଖାଯାଏ ନାହିଁ । ସେଥି ଯୋଗୁଁ ଆଧୁନିକ ଶିକ୍ଷିତ ସମାଜର ରୁଚି ପୌରାଣିକ ବିଷୟମାନଙ୍କରେ ବୀତସ୍ପୃହ ଦେଖାଯାଏ । କୌଣସି ବିଷୟକୁ ସମୂଳେ ବାଦ୍ ଦେଇ କିମ୍ବା ରକ୍ଷଣଶୀଳତାକୁ ଏକମାତ୍ର ଅବଲମ୍ବନ କରି କଳାର ଉତ୍କର୍ଷ ସାଧନ କରିବା ଉଚିତ ନୁହେଁ । ଆଜିକାଲି ଯେଉଁ ସବୁ ଦେବମନ୍ଦିର ନିର୍ମିତ ହୁଏ, ସେଥିରେ କୌଣସି ବିଶେଷତ୍ୱ ଦେଖାଯାଏ ନାହିଁ । ଗୋଟାଏ ଅତୀତ ଯୁଗର ଶିଳ୍ପଗ୍ରନ୍ଥଦ୍ୱାରା ଆଧୁନିକ ସାଧାରଣ ଭାରତୀୟ ଶିଳ୍ପୀ ପ୍ରଭାବିତ ହେବାର ଜଣାଯାଏ । ପ୍ରଚଳିତ ପ୍ରାଦେଶିକ ସୀମା ଲଙ୍ଘନ କରିବା ପାଇଁ ସୁଦ୍ଧା ସେମାନେ କୁଣ୍ଠାବୋଧ କରନ୍ତି । ଧାରାବାହିକ ଗୋଟିଏ ବିଶିଷ୍ଟ ପ୍ରଣାଳୀରେ କାର୍ଯ୍ୟ କରିବା ଦ୍ୱାରା ଉନ୍ନତ ଶିଳ୍ପର ମୁକ୍ତ ଅବସ୍ଥା ସେମାନଙ୍କର ସହଜରେ ଧାରଣା ହୁଏ ନାହିଁ । ରକ୍ଷଣଶୀଳ ଶିଳ୍ପୀ ଜାତୀୟତା ବଜାୟ ରଖିବା ଉଦ୍ଦେଶ୍ୟରେ ଦୃଷ୍ଟି ସଙ୍କୁଚିତ କରି ସୌନ୍ଦର୍ଯ୍ୟର ମହତ୍ତ୍ୱ ନଷ୍ଟ କରେ । କଳାର ପ୍ରକୃତ ବିଭବ ସତ୍ୟ ଓ ସୌନ୍ଦର୍ଯ୍ୟ ଉପରେ ସଂରକ୍ଷିତ । ଏପରି ଅବସ୍ଥାରେ ସମଗ୍ର ଜଗତ ସମକ୍ଷରେ କବି ଓ ଶିଳ୍ପୀର କିଛି ନିଜସ୍ୱ କରି ରଖିବାର ଜିନିଷ ନାହିଁ । ସେମାନଙ୍କର ସମସ୍ତ ଆହରଣ ସମୂହ ମାନବ ଜାତିର ଉପଭୋଗ ପାଇଁ । ଅବଶ୍ୟ ଭିନ୍ନ ଭିନ୍ନ ଦେଶରେ ଯୁଗର ପ୍ରଭାବାନୁଯାୟୀ କାବ୍ୟ ଓ ଶିଳ୍ପ ରଚନା-ପ୍ରଣାଳୀରେ ପାର୍ଥକ୍ୟ ଦେଖାଯାଏ, ଯଦ୍ଦ୍ୱାରା ସଭ୍ୟତାର ପରିମାଣ ସ୍ଥିର କରାଯାଇପାରେ । ପ୍ରାଚୀନତା ପ୍ରତି ଦୃଷ୍ଟି ରଖି ସଂକୀର୍ଣ୍ଣ ହେବା କଳାବିତ୍ ପକ୍ଷରେ ଶୋଭନୀୟ ନୁହେଁ । କଳାର ବିକାଶ ପାଇଁ କୌଣସି ପ୍ରତିଷ୍ଠିତ ନିୟମର ଅଙ୍ଗହାନି ହୁଏ ନାହିଁ । ସତ୍ୟ ଓ ସୌନ୍ଦର୍ଯ୍ୟର ଅନୁସରଣରେ ନୂତନ ପଥ ଆବିଷ୍କାର କଲେ ପରିବର୍ତ୍ତନପ୍ରୟାସୀ ମନୁଷ୍ୟ କିଛି ଦିନ ସେହି ନବାବିଷ୍କୃତ ପଥରେ ଅଗ୍ରସର ହୁଏ । ନବ୍ୟପ୍ରବର୍ତ୍ତକର କ୍ରିୟାରେ ପ୍ରାଣର ଉନ୍ମେଷ ସ୍ପଷ୍ଟ ପ୍ରତିଭାତ ହେଲେ ସମସ୍ତ ମନୁଷ୍ୟ-ଜାତି ଗୋଟାଏ ଉଦ୍ଦାମ ପ୍ରେରଣାରେ ମାତି ଉଠନ୍ତି । ସେ ଜଗଦ୍‌ବାସୀଙ୍କଠାରୁ କିଛି ପ୍ରତିଦାନ ପାଇବା ପାଇଁ ଆଶା କରେ ନାହିଁ । ନିଜକୁ ପ୍ରକାଶ କରିବାରେ ସେ ସୁଖ ଅନୁଭବ କରିଥାଏ । ଅନ୍ତରର ନିଭୃତ ଭାବନା ଖେଳି ପାରିଲେ ଆତ୍ମତୃପ୍ତି ପକ୍ଷରେ କୌଣସି ବାଧା ଆସେ ନାହିଁ । ବିଶ୍ୱବନ୍ଦନୀୟ କବି ଓ ଶିଳ୍ପୀ ସ୍ୱାର୍ଥ ଆଶାରେ ପ୍ରଣୋଦିତ ହୁଅନ୍ତି ନାହିଁ । ଉନ୍ମୁକ୍ତ ହୃଦୟର ଭାବ ପ୍ରକାଶ କରିବା ସେମାନଙ୍କର ପ୍ରଧାନ ଉଦ୍ଦେଶ୍ୟ ।

ନୂତନ ମାର୍ଗ ଅନୁସରଣ କରି ସ୍ୱତନ୍ତ୍ର ରୁଚି ଓ କଳା-ବୈଚିତ୍ର୍ୟର ସୂଚନା ଦେବା ଅତ୍ୟଳ୍ପ ଲୋକଙ୍କ ଭାଗ୍ୟରେ ଘଟିଥାଏ । ଯେଉଁମାନେ ଏ ଦିଗରେ ଅଗ୍ରସର ହୁଅନ୍ତି, ସେମାନେ ପ୍ରତି ପଦରେ ବାଧା ପାଆନ୍ତି । ଅନେକେ ସେମାନଙ୍କର ଅନୁସୃତ ମାର୍ଗକୁ ତୁଚ୍ଛ ବୋଧ କରନ୍ତି । ପ୍ରତ୍ୟେକ ନୂତନପନ୍ଥୀ ସମାଲୋଚନାର ମାନଦଣ୍ଡରେ ପରିମିତ ହୁଅନ୍ତି । ସମୟ ବିଶେଷରେ ଭୀଷଣ ସଙ୍ଘର୍ଷ ତାଙ୍କ ସ୍ୱାଧୀନତା ନଷ୍ଟ କରିବାକୁ ପ୍ରବଳ ଚେଷ୍ଟା କରିପାରେ; କିନ୍ତୁ ସମସ୍ତ କଠିନ ପରୀକ୍ଷାରୁ ଉତ୍ତୀର୍ଣ୍ଣ ହେଲେ ତାଙ୍କର କୃତିତ୍ୱ ଜଣାପଡ଼େ । ପୁରାତନ ଉପରେ ନୂତନତ୍ୱ ପ୍ରକାଶ କଳାର ବୈଷମ୍ୟ ଓ ଅଗ୍ରଗତିର ପରିଚାୟକ । ରୁଦ୍ଧଭାବ ତାର ଉନ୍ନତି-ପ୍ରତିରୋଧକ । ଅନୁକରଣ କିମ୍ବା କଳାର ସ୍ୱାଧୀନ ଅବସ୍ଥା ଦେଖାଇପାରେ ନାହିଁ । ଜୀବନର ଗତି ସଙ୍ଗେ ସଙ୍ଗେ ରୁଚିର ପରିବର୍ତ୍ତନ ଲାଗିରହିଛି । ସେଥିପ୍ରତି ଲକ୍ଷ୍ୟହୀନ ହେବା କଳାବିତ୍‌ର ସଙ୍କୁଚିତ ଦୃଷ୍ଟିର ପ୍ରମାଣ ଦିଏ । ଯେଉଁମାନେ ପ୍ରାଚୀନ କଳାରେ ପୂର୍ଣ୍ଣତା ଦେଖନ୍ତି, ସେମାନଙ୍କୁ ଭ୍ରାନ୍ତ ବୋଲି ଅନୁମାନ କରାଯାଏ; କାରଣ କଳାର ପୂର୍ଣ୍ଣ-ବିକାଶ ଆଣିବା ମନୁଷ୍ୟ ପକ୍ଷରେ ସମ୍ଭବପର ନୁହେଁ, କେବଳ ପୂର୍ଣ୍ଣତା ଦିଗରେ ଗତି କରାଯାଇପାରେ । କୌଣସି ପଦାର୍ଥରେ କଳାର ପୂର୍ଣ୍ଣବିକାଶ ଦେଖିବାଦ୍ୱାରା ଦ୍ରଷ୍ଟାର ପ୍ରତିଭା ପରାଜୟ ସ୍ୱୀକାର କରେ । ଅତୀତ ଓ ବର୍ତ୍ତମାନ ମଧ୍ୟରେ କଳାର କ୍ରମୋନ୍ନତି ଯେଉଁ ବ୍ୟବଧାନ ଆଣେ, ତାହା ସଭ୍ୟତା ପରିମାପର ଗୋଟିଏ ପ୍ରଧାନ ନିଦର୍ଶନ । ନୂତନ ପନ୍ଥାରେ ରକ୍ଷଣଶୀଳ-ମାନଙ୍କର ସୀମା ଅତିକ୍ରମ କଲାବେଳେ ଯେଉଁ ସୂକ୍ଷ୍ମ ବିଚାରର ଆଶ୍ରୟ କରାଯାଏ, ତଦ୍ଦ୍ୱାରା କଳାର ସମ୍ୟକ୍ ଉନ୍ନତି ସାଧିତ ହୁଏ ।

ସ୍ୱପ୍ନରଚିତ ନିସର୍ଗ ପୁରୀରେ ସୌନ୍ଦର୍ଯ୍ୟର ଉପାଦାନଗୁଡ଼ିକ ଅଲକ୍ଷିତରେ ଥାଏ । କଳାବିତ୍ ସେ ପୁରୀର ଦ୍ୱାର ଉନ୍ମୋଚନ କରି ସୁଷମାର ଧାରା ବୁହାଇଦିଏ । ତାର ଏହି କାର୍ଯ୍ୟରେ ସ୍ୱାର୍ଥ-ସଂଶ୍ଲିଷ୍ଟ ପାର୍ଥକ୍ୟ ଉପଲକ୍ଷିତ ହେବା ବାଞ୍ଛନୀୟ ନୁହେଁ । ଜନ୍ମଭୂମିରୁ ତାର ପ୍ରଥମ ପ୍ରେରଣା ମିଳିପାରେ । ସୁନୀଳ ଆକାଶରେ ଚାତକ ସୁସ୍ୱରରେ ଗାନ ଗାଇ ଉପରକୁ ଉଠିଯାଏ ।

ଅନନ୍ତ ନୀଳିମା ସଙ୍ଗେ ମିଶିଯାଇ ସୌନ୍ଦର୍ଯ୍ୟମଦିରା ପାନ କରିବା ତାର ପ୍ରାଣର ଆକାଙ୍କ୍ଷା; ତଥାପି ନିଜର ସାମାନ୍ୟ ନୀଡ଼ଟି ମାୟାର ବନ୍ଧନରେ ତାକୁ ପୁଣି ପୃଥିବୀକୁ ଟାଣିଆଣେ । କବି, ଚିତ୍ରକର କିମ୍ବା ଶିଳ୍ପୀ କଳ୍ପନାବିମାନରେ ଯେତେ ଦୂରକୁ ଯାଆନ୍ତୁ, ସୌନ୍ଦର୍ଯ୍ୟର ଉପାଦାନ ଯେ କୌଣସିଠାରୁ ଗ୍ରହଣ କରନ୍ତୁ, ପ୍ରେମରସରେ ସମସ୍ତ ଜଗତକୁ ଭସାଇ ଦିଅନ୍ତୁ; ତଥାପି ଜନ୍ମଭୂମିର ମଧୁମୟ ସ୍ମୃତି ସର୍ବଦା ସେମାନଙ୍କ ହୃଦୟରେ ଗୋଟିଏ ପବିତ୍ର ସ୍ଥାନ ଅଧିକାର କରିବ । ଆଜୀବନ ସେହି ସ୍ମୃତିଟି ଗୃହକର ନୀଡ଼ ପରି ତାଙ୍କୁ ଗୋଟାଏ ଆକର୍ଷଣରେ ଟାଣିରଖେ । ଆକାଶର ଅନ୍ତ ନାହିଁ, ସୌନ୍ଦର୍ଯ୍ୟର ସୀମା ନାହିଁ ଓ ସତ୍ୟର ବିନାଶ ନାହିଁ । ଏମାନଙ୍କର ପୂର୍ଣ୍ଣ ମହତ୍ତ୍ୱ ପ୍ରକାଶ କରିବା ଭାଷା, ଚିତ୍ର କିମ୍ବା ଶିଳ୍ପ ପକ୍ଷରେ ସମ୍ଭବପର ନୁହେଁ ।

# ଶକ୍ତିର ବିକାଶ

ସୃଷ୍ଟିର ଅସୀମ କୌଶଳ ମଧ୍ୟରେ ପ୍ରବାହିତ ସଞ୍ଜୀବନୀ ଧାରାକୁ ବିଶ୍ୱକର୍ତ୍ତାଙ୍କ ଅନନ୍ତ ଶକ୍ତିର ପୂର୍ଣ୍ଣ କିମ୍ବା ଆଂଶିକ ବିକାଶ ବୋଲି ଧରା ଯାଇପାରେ । ସାଧାରଣ ଚକ୍ଷୁରେ ଭିନ୍ନ ଭିନ୍ନ କ୍ରିୟା ଓ ଘଟଣାମାନଙ୍କରୁ ଶକ୍ତିବୈଷମ୍ୟ ଦେଖାଯାଏ । ସୂର୍ଯ୍ୟାଲୋକରେ ସମସ୍ତ ଜଗତ ଆଲୋକିତ ହୁଏ । ଚନ୍ଦ୍ରଜ୍ୟୋସ୍ନାଠାରୁ ସାମାନ୍ୟ ଦୀପଶିଖା ପର୍ଯ୍ୟନ୍ତ ସୂର୍ଯ୍ୟ ସମସ୍ତଙ୍କର ପ୍ରକାଶକ । ଯଦି ଯାବତୀୟ ଦାହିକା ଶକ୍ତିର ପ୍ରବର୍ତ୍ତକ ସୂର୍ଯ୍ୟଙ୍କୁ ମୁହୂର୍ତ୍ତିକ ପାଇଁ ବିଶ୍ୱରୁ ଅନ୍ତର କରାଯାଏ, ତାହାହେଲେ ପ୍ରଳୟ ଅବଶ୍ୟମ୍ଭାବୀ । ଆଲୋକ, ଜଳ, ବାୟୁ ପ୍ରଭୃତି ଭିନ୍ନ ଭାବରେ ପ୍ରତୀୟମାନ ହେଲେ ସୁଦ୍ଧା ସେମାନେ ଏକ ଶକ୍ତିର ପରିଚାୟକ ଓ ଅନନ୍ତ କାଳ ବିରାଜିତ । ପ୍ରକୃତିକୁ ସ୍ୱୀକାର କରି ତାର ନିୟାମକକୁ ବାଦ୍ ଦିଆ ଯାଇ ନ ପାରେ । କାର୍ଯ୍ୟ ଓ କାରଣର ସମ୍ବନ୍ଧ ପରି ପ୍ରକୃତି ଓ ପୁରୁଷଙ୍କ ସମ୍ପର୍କ ଅପରିଚ୍ଛେଦ୍ୟ ।

ଜୀବ ଶରୀର କିମ୍ବା ବସ୍ତୁ-ନିର୍ମାଣରେ ପଞ୍ଚଭୂତ ବିଦ୍ୟମାନ । ଏମାନଙ୍କୁ ଗ୍ରହି ପ୍ରକୃତିର ଭିନ୍ନତା ସ୍ୱୀକାର କରିବା କଠିନ । ସେଥିଯୋଗୁଁ ଜ୍ଞାନୀମାନେ ଅନ୍ତର୍ଯ୍ୟାମୀ ପୁରୁଷଙ୍କ ସତ୍ତା ଧୂଳିକଣାରେ ସୁଦ୍ଧା ଦେଖିପାରନ୍ତି । ଅନନ୍ତ-ଶକ୍ତି-ପ୍ରବାହ ସର୍ବଦା ଉନ୍ମୁକ୍ତ । ଅଗଣିତ ଆଧାରରେ ସଂଯୁକ୍ତ ଥାଇ ଏକତ୍ୱ ପ୍ରତିପାଦନ କରିବା ଏହାର ବିଶିଷ୍ଟତା । ପ୍ରକୃତିର କ୍ରିୟା ଅନୁଧ୍ୟାନ କରିବାର ଶକ୍ତି ମନୁଷ୍ୟ-ହୃଦୟରେ ନିହିତ ଥାଏ । ଯେ ପରିମାଣରେ ସେ ସେଥିରେ ମନୋନିବେଶ କରେ, ତଦନୁଯାୟୀ ଶକ୍ତିର ବିକାଶ ହୁଏ । ପ୍ରାଚୀନ ହିନ୍ଦୁମାନେ ଶକ୍ତିର ମାହାତ୍ମ୍ୟ ଉପଲବ୍ଧି କରି ଦଶଭୁଜାଙ୍କ ପୂଜା ସୃଷ୍ଟି କରିଥିଲେ । ଜୀବର ଉନ୍ନତିପକ୍ଷରେ ପ୍ରବୃତ୍ତିମାନେ ପ୍ରଧାନ ଅନ୍ତରାୟ । ଉପଯୁକ୍ତ ଶକ୍ତିର ଅଧିକାର ନ ଜନ୍ମିଲେ ମନୁଷ୍ୟ ଜୀବଭାବ ଲୋପ କରି ଅଗ୍ରସର ହୋଇପାରେ ନାହିଁ । କୁପ୍ରବୃତ୍ତିମାନଙ୍କୁ ଛେଦନ କରିବା ପାଇଁ ଐଶୀ ଶକ୍ତିକୁ ହିନ୍ଦୁମାନେ ଦେବୀରୂପରେ ଆରାଧନା କରନ୍ତି । ପ୍ରକୃତିର କ୍ରିୟାକୁ ପ୍ରକୃତି ଲୋପ କରେ । ଜନନୀ-କୋଡ଼ ସନ୍ତାନର ଆନନ୍ଦ ଓ ସୁଖର ସ୍ଥାନ । ବିଶ୍ୱପ୍ରକୃତିର କୋଡ଼ରେ ମାନବ-ଶିଶୁ ଶାୟିତ ହୋଇ ଯେତେବେଳେ ନିଜକୁ ଅନନ୍ତ ସ୍ରୋତ ସଙ୍ଗେ ମିଶାଇଦିଏ, ସେତେବେଳେ ତାର ସବୁ ଦୁଃଖ ଓ ଯନ୍ତ୍ରଣା ଚାଲିଯାଏ । ବ୍ୟଥିତ ହୃଦୟର କାତର କ୍ରନ୍ଦନରେ ଜନ୍ମଦାତ୍ରୀ ପରି ଦ୍ରବୀଭୂତ ହେବା ଅନ୍ୟ ପକ୍ଷରେ ସମ୍ଭବପର ନୁହେଁ । ଶିଶୁକୁ ସ୍ତନ୍ୟପାନ କରାଇ ବଳଶାଳୀ କରାଇବା ତାର କର୍ତ୍ତବ୍ୟ । ସନ୍ତାନର ଶକ୍ତି ଓ ସୁଖ ଯଦି ମାତାଠାରେ ନିହିତ, ତାହାହେଲେ ମାତୃଶକ୍ତିକୁ ଅବହେଳା କରିବା କଅଣ ତାର କର୍ତ୍ତବ୍ୟ ?

ମାତାଠାରୁ ବିଚ୍ଛିନ୍ନ ସନ୍ତାନର ତିଷ୍ଠିବା ଯେପରି କଷ୍ଟକର, ସେହିପରି ଅନନ୍ତ ଶକ୍ତି ସହିତ ସମ୍ପର୍କହୀନ ମାନବ-ଜୀବନ ଅସାର୍ଥକ । ଶକ୍ତିବିସ୍ତାର କରିବା ପାଇଁ ମନୁଷ୍ୟ ବୃଥାରେ ନାନା ପାର୍ଥିବ କ୍ରିୟାରେ ବ୍ୟସ୍ତ ରହେ । ପର୍ବତ ଶିଖର ଆରୋହଣ କରିବା ସ୍ଥଳେ ସେ ଉପତ୍ୟକାରେ ବିଚରଣ କରେ । ଶାରୀରିକ ଶକ୍ତିବିକାଶ ତାର ଲକ୍ଷ୍ୟ ନୁହେଁ । ଅସାଧାରଣ ଶକ୍ତିର ପରିଚୟ ଦେଇ ଯେଉଁମାନେ ଜଗତରେ ବନ୍ଦନୀୟ ହୁଅନ୍ତି, ସେମାନେ ଅଧ୍ୟାତ୍ମ ଶକ୍ତିରେ ବଳୀୟାନ୍ । ଅରଣ୍ୟର ହିଂସ୍ର ପଶୁମାନେ ବୁଦ୍ଧି ବଳରେ ମନୁଷ୍ୟର ଅଧୀନତା ସ୍ୱୀକାର କରନ୍ତି । ଶାରୀରିକ ବଳପ୍ରୟୋଗରେ ଯାହା ସାଧନ କରାଯାଇପାରେ ନାହିଁ, ଅଧ୍ୟାତ୍ମ-ଶକ୍ତି ସାହାଯ୍ୟରେ ତା ଅପେକ୍ଷା ସହସ୍ର ଗୁଣ କାର୍ଯ୍ୟ ଅକ୍ଳେଶରେ ସମ୍ପାଦିତ ହୋଇପାରେ । ପୃଥିବୀରେ ଯେତେ ଅଲୌକିକ କାର୍ଯ୍ୟ ହୋଇଯାଇଛି, ସେ ସବୁର ପୁନଃପ୍ରକାଶ ହୋଇପାରେ । କେବଳ ଶକ୍ତି ଆବଶ୍ୟକ । ସମୟର କିଛି ମାତ୍ର ପରିବର୍ତ୍ତନ ଘଟିନାହିଁ । ଯଦି ଅବନତି ଘଟିଥାଏ, ତାହା ମନୁଷ୍ୟ ସ୍ୱଭାବ-ଜନିତ ବୋଲି କୁହାଯାଇପାରେ । ମନକୁ ବିପଥମାର୍ଗରେ ସର୍ବଦା ଚାଳିତ

କଲେ ଅସାଧାରଣ ଶକ୍ତିର ଅଧିକାର ଲାଭ ହୁଏ ନାହିଁ । ଯେ ପରିମାଣରେ ଅନନ୍ତ-ଶକ୍ତି ସହିତ ଆତ୍ମଶକ୍ତିର ସମ୍ବନ୍ଧ ସ୍ଥାପିତ ହୁଏ, ସେହି ପରିମାଣରେ ବାହ୍ୟ ଶକ୍ତିର ସାଧନକ୍ରିୟା ଜଣାପଡ଼େ । ଜଣକ ପକ୍ଷରେ ଯେଉଁ କାର୍ଯ୍ୟ-ସାଧନ ସମ୍ଭବ ହୋଇଥିଲା, ଅନ୍ୟ ପକ୍ଷରେ କାହିଁକି ତାହା ଆଜି ଅସମ୍ଭବ ବୋଧ ହେବ ? କାଳକ୍ରମେ ନିମ୍ନରୁ ଉଚ୍ଚକୁ ଉତ୍ତରୋତ୍ତର ଗତି କରିବା ସଙ୍ଗେ ସଙ୍ଗେ ଗତ ଯୁଗମାନଙ୍କର ବହୁ ଯୁଗର କାର୍ଯ୍ୟ ସହଜସାଧ୍ୟ ହୋଇପାରେ । ଐଶୀ-ଶକ୍ତି-ସମ୍ପନ୍ନ ବ୍ୟକ୍ତି ସବୁକାଳରେ ଅସାଧାରଣ କାର୍ଯ୍ୟ କରିବାକୁ ସମର୍ଥ ହୋଇଥାଏ । ପ୍ରତ୍ୟେକ ମନୁଷ୍ୟ ଗୋଟିଏ ପ୍ରାକୃତିକ ନିୟମର ଅଧୀନ । କେବଳ ଉତ୍କର୍ଷ ଓ ଅପକର୍ଷ ଯୋଗୁଁ ଜଣେ ଜଣକଠାରୁ ଉଚ୍ଚ କିମ୍ବା ନୀଚ ବିବେଚିତ ହୁଏ ।

ଯେ ମୁହୂର୍ତ୍ତରେ ମନୁଷ୍ୟର ଆତ୍ମବୋଧ ହୁଏ ଏବଂ ସେ ଦୃଢ଼ତାର ସହିତ କୌଣସି ମହତ୍ କାର୍ଯ୍ୟରେ ପ୍ରୟାସୀ ହୁଏ, ସେହି ମୁହୂର୍ତ୍ତରୁ ସବୁ ବାଧା ଓ ଭୟ ତା ସମ୍ମୁଖରୁ ଅପସାରିତ ହୋଇ ଜୀବନର ଅମୃତତ୍ୱ ଉପଲବ୍ଧ ହୁଏ । ଅନନ୍ତର ଅଂଶ ହୋଇ ସ୍ୱକୃତ କ୍ଷୁଦ୍ର ସୀମା ମଧ୍ୟରେ ଆବଦ୍ଧ ରହିବାଦ୍ୱାରା ହିଁ ମନୁଷ୍ୟର ସ୍ୱାଭାବିକ ଶକ୍ତିର ଅପଚୟ ଘଟେ ।

ଏହି ସୀମା ଲଙ୍ଘନ କରିବା ମନୁଷ୍ୟର ସାଧନା ଉପରେ ନିର୍ଭର କରେ । ପାରିପାର୍ଶ୍ୱିକ ଅବସ୍ଥାମାନଙ୍କ ଦ୍ୱାରା ମନୁଷ୍ୟ ପ୍ରଭାବିତ ନ ହୋଇ ତାର ସ୍ୱାଧୀନ ଭାବାନୁଯାୟୀ କାର୍ଯ୍ୟରେ ପ୍ରବୃତ୍ତ ହେଲେ ହୃଦୟରେ ସଙ୍କୀର୍ଣ୍ଣତା ପ୍ରବେଶ କରିପାରେ ନାହିଁ । ଅନୁକୂଳ ଅବସ୍ଥା ସୃଷ୍ଟି କରିବା ଉନ୍ନତିକାମୀର ପ୍ରଧାନ କର୍ତ୍ତବ୍ୟ । ବଂଶପରମ୍ପରାଗତ ରୀତିନୀତି ଯଦି ପ୍ରଶସ୍ତ ବୋଧ ନ ହୁଏ କିମ୍ବା ଶକ୍ତିବିକାଶରେ ଅଯଥା ବାଧା ଘଟାଏ, ତାହାହେଲେ ସେଗୁଡ଼ିକୁ ବାଦ୍ ଦିଆଯାଇପାରେ । ଅନେକେ ନିଜ ଉପରେ ବିଶ୍ୱାସ ନ କରି ଅପର କଥାରେ ସର୍ବଦା ଚାଳିତ ହୁଅନ୍ତି । ଜଗତରେ ଯଦି କିଛି ସାଧନ କରିବାର ଲକ୍ଷ୍ୟ ଥାଏ, ତାହାହେଲେ କାହାରି ମତ ଉପରେ ନିର୍ଭର କରି ନିଜର ସ୍ୱତନ୍ତ୍ରତା ହରାଇବା ଉଚିତ ନୁହେଁ । ସାଧାରଣ ମନୁଷ୍ୟକୃତ ବିଧାନରେ ଭ୍ରମ ଥାଏ ବୋଲି ଆତ୍ମଦର୍ଶୀମାନଙ୍କର ଅନୁସୃତ ମାର୍ଗାବଲମ୍ବନବିଧି ସର୍ବତ୍ର ପ୍ରଶଂସନୀୟ । ବଂଶଗତ କୁପ୍ରଥାରେ ଗଠିତ ଜୀବନ ଅନିଶ୍ଚିତ ବୋଧ ହୋଇପାରେ; କିନ୍ତୁ ଚିନ୍ମୟ ଶକ୍ତିରେ ସଂଯୁକ୍ତ ଆତ୍ମଶକ୍ତିକୁ ରୋଧ କରିବାର ଏହା ଗୋଟିଏ ଛଳନା ମାତ୍ର । ମନୁଷ୍ୟର ସ୍ୱଭାବଗତ ଦୋଷ ଥାଇପାରେ । ସେଥିପ୍ରତି ଭ୍ରୂକ୍ଷେପ ନ କରି ଭଗବତ୍ କୃପାରେ ନିର୍ଭର କରି କ୍ରମଶଃ ଅଗ୍ରସର ହେବା ଉଚିତ । ସନ୍ଦିହାନ ହୋଇ ନୀରବ ରହିବା ଲୋକର ଜୀବନରେ ମଙ୍ଗଳ ହୁଏ ନାହିଁ ।

ସ୍ୱାଧୀନ ଭାବ ଶକ୍ତିପ୍ରକାଶର ଉତ୍କୃଷ୍ଟ ଉପାୟ । କୌଣସି ଧାରଣା କିମ୍ବା ଭିତ୍ତିହୀନ ଲୌକିକ ମତରୁ ଯେଉଁ ପ୍ରେରଣା ମିଳେ, ତାହା ମୌଳିକତା ଅଭାବରୁ ମନୁଷ୍ୟର ସ୍ୱାଧୀନ ଗତିକୁ ରୋଧ କରେ । ନିଜର ପ୍ରତିଷ୍ଠା ଲାଭ କରିବାକୁ ହେଲେ ଗଡ୍ଡଳିକା ପ୍ରବାହରେ ଯୋଗ ନ ଦେଇ କର୍ତ୍ତବ୍ୟ ସ୍ଥିର କରିବା ଉଚିତ । କେବଳ ଲୋକମତରେ ଚାଳିତ ହେଲେ ଆତ୍ମସମ୍ମାନ ରକ୍ଷା ପକ୍ଷରେ ଅଧିକାଂଶ ସମୟରେ ବାଧା ଜନ୍ମିପାରେ । ଆଦର୍ଶକର୍ମୀ ଆତ୍ମବଳ ପ୍ରଭାବରେ ଭ୍ରମାତ୍ମକ ଜନମତକୁ ଉପେକ୍ଷା କରି ନିଜର ସ୍ୱାତନ୍ତ୍ର୍ୟ ସର୍ବଦା ବଜାୟ ରଖେ ଓ ତଦ୍ଦ୍ୱାରା ସମାଜରେ ଗୋଟିଏ ନୂତନତ୍ୱ ଫୁଟିଉଠେ ।

ଭଗବତ୍‌ଶକ୍ତି ନିକଟରେ ଆତ୍ମସମର୍ପଣ କଲା ପରେ ଯେଉଁ ଶକ୍ତି ସଞ୍ଚାରିତ ହୁଏ, ତାହା ଜୀବନକୁ ସମ୍ପୂର୍ଣ୍ଣରୂପେ ପରିବର୍ତ୍ତିତ କରିଦିଏ ଓ ନିନ୍ଦା କିମ୍ବା ପ୍ରଶଂସାରେ ମନୁଷ୍ୟ ମନର ସ୍ଥିରତା ନଷ୍ଟ କରେ ନାହିଁ । ଲୋକଙ୍କର ତୁଷ୍ଟିସାଧନକୁ ଲକ୍ଷ୍ୟ ରଖି କର୍ମମାର୍ଗକୁ ନିୟନ୍ତ୍ରିତ କଲେ ପ୍ରକୃତ ଶକ୍ତିର ବିକାଶ ହୁଏ ନାହିଁ । ସାଧାରଣ ଅସଂଯତ ହୃଦୟମାନଙ୍କରେ ଆନନ୍ଦ ଜନ୍ମାଇ ପ୍ରଶଂସାଭାଜନ ହେବାଦ୍ୱାରା ଗୋଟିଏ ବୁଭୁକ୍ଷିତ ଶକ୍ତି ନିକଟରେ ନିଜତ୍ୱ ହରାଇବାକୁ ପଡ଼େ । ଅସ୍ଥାୟୀ ସମ୍ବନ୍ଧରେ ମୁଗ୍ଧ ହୋଇ ଯେଉଁ ମାର୍ଗ ଅନୁସରଣ କରାଯାଏ, ତାହା ଦୁର୍ବଳତାପୂର୍ଣ୍ଣ । ଏହି ଦୁର୍ବଳତା ଉପଲବ୍ଧି କରିବା ଲୋକ ସଂସାରର ମାୟା ଦୂର କରି ମାନବ ଜାତିକୁ ଉନ୍ନତ ଆଦର୍ଶରେ ଗଢ଼ିବାକୁ ସର୍ବଦା ଚେଷ୍ଟିତ । ତାଙ୍କ ଶକ୍ତି ଗୋଟାଏ ନିର୍ଦ୍ଦିଷ୍ଟ କ୍ଷୁଦ୍ର ସୀମା ମଧ୍ୟରେ ନ ଥାଏ । ଏହା କାମନାଶୂନ୍ୟ ଉନ୍ମୁକ୍ତ ହୃଦୟର ବିଶେଷତ୍ୱ । ଆତ୍ମଜ୍ଞାନୀ ଲୋକଚକ୍ଷୁରେ କିଛି କାର୍ଯ୍ୟ କଲା ପରି ଜଣାଯାଏ ନାହିଁ । ଅନନ୍ତ ଶକ୍ତି ସହିତ ତାଙ୍କର ଦୃଢ଼ ସମ୍ବନ୍ଧ ହେତୁ ସାଂସାରିକ ଦାୟିତ୍ୱ ଜ୍ଞାନ ତାଙ୍କ ନିକଟରେ ତୁଚ୍ଛ ବୋଧ ହେବା ସ୍ୱାଭାବିକ । କୋଟି କୋଟି ବ୍ରହ୍ମାଣ୍ଡର ସ୍ଥିତି ଓ ପ୍ରଳୟ ଯେଉଁ ମହତ୍ ନିୟମର ଅଧୀନ, ଅସ୍ଥାୟୀ ସାଂସାରିକ ବିଷୟର ସତ୍ତା ସେଠାରେ ଉପସ୍ଥାପିତ କରିବା କ୍ଷୁଦ୍ର ସଂସାରୀ ପକ୍ଷରେ ସମ୍ଭବ । ବହିର୍ଜଗତର ପ୍ରକାଶିକା ଶକ୍ତି ସହିତ ମାନବର ଅନ୍ତର୍ନିହିତ ଶକ୍ତି ସଂଯୁକ୍ତ ହେଲେ ଆତ୍ମବୋଧ ହୋଇପାରେ ।

ଚିତ୍ରକର ପ୍ରାକୃତିକ ଶୋଭା ସନ୍ଦର୍ଶନରେ ନିଜର ବ୍ୟକ୍ତିତ୍ୱ ଭୁଲିଯାଇ ଭାବାବେଶରେ ତୂଳିକା ସାହାଯ୍ୟରେ ଯେଉଁ ପ୍ରାଣସ୍ପର୍ଶୀ ଛବି ଆଙ୍କିଦିଏ, ତାହା ତାର ଆନନ୍ଦ ଅନୁଭୂତିର ପରିଚୟ ଦିଏ ।

ଭାବନାର ଗଭୀର ଉଚ୍ଛ୍ୱାସରେ ପରିଣତ ହେଲେ ଭାଷା ସ୍ୱତଃ ପ୍ରକାଶିତ ହୁଏ । ବାଣବିଦ୍ଧ କ୍ରୌଞ୍ଚର ମୃତ୍ୟୁ ଯନ୍ତ୍ରଣା ଅମର କବି ବାଲ୍ମୀକିଙ୍କ ହୃଦୟକୁ ଦ୍ରବୀଭୂତ କରି ତାଙ୍କ ମୁଖରୁ ଯେଉଁ ଅମର କବିତା ନିଃସୃତ କରାଇଥିଲା, ତାହା ସାଧାରଣ କବିର ପଦଯୋଜନା ନୁହେଁ । ଅପାର୍ଥିବ ଶକ୍ତି ଋଷିଙ୍କର ଚିତ୍ତଜଗତରେ ମହା ପରିବର୍ତ୍ତନ ଆଣିଥିଲା ଏବଂ ତାହାରି ପ୍ରଭାବରେ ସେ ଅମୃତ ରାଗିଣୀର ସୂଚନା ଦେଲେ ।

ମନୁଷ୍ୟ ମାତ୍ରେ ଏହି ଶକ୍ତିର ଅଧିକାରୀ; କିନ୍ତୁ ସେପରି ଅସାଧାରଣ ପବିତ୍ରତା ଥିବା ଆବଶ୍ୟକ । ମନୁଷ୍ୟ ହୃଦୟ ପଶୁତ୍ୱ ଓ ଦେବତ୍ୱରେ ଗଠିତ । ଏକର ଉତ୍କର୍ଷରେ ଅପରର ଅପକର୍ଷ ହୁଏ । ପଶୁଭାବ ପ୍ରବଳ ହେଲେ ଇନ୍ଦ୍ରିୟତୃପ୍ତିରେ ମନ ଅବଶ ହୋଇପଡ଼େ । ମନୁଷ୍ୟତ୍ୱ ପ୍ରକାଶ ସୁଦ୍ଧା ସମ୍ଭବ ହୁଏ ନାହିଁ ।

ଜାତୀୟ ଜୀବନର ଉଦ୍‌ବୋଧିନୀ ଶକ୍ତି ଗରିମାମୟ ଐତିହାସିକ ଘଟଣାମାନଙ୍କରୁ ସଂଗୃହୀତ ହୋଇଥାଏ । ବୀର-ରକ୍ତରେ ରଞ୍ଜିତ ସମରକ୍ଷେତ୍ର ସ୍ୱର୍ଗର ଦ୍ୱାର ବୋଲି ମନୀଷୀମାନେ ନିର୍ଦ୍ଦେଶ କରିଅଛନ୍ତି । ତ୍ୟାଗ ସବୁ ସମୟରେ ମନୁଷ୍ୟକୁ ଉନ୍ନତି ମାର୍ଗରେ ଅଗ୍ରସର କରାଇଥାଏ । ଦେଶ ଓ ଜାତିର ମଙ୍ଗଳ ଉଦ୍ଦେଶ୍ୟରେ ଉତ୍ସୃଷ୍ଟ ଶରୀର ମନୁଷ୍ୟର ଶ୍ରେଷ୍ଠ ଦାନ । ପୃଥିବୀର ସଭ୍ୟତମ ଜାତିମାନେ ଏହା ବହୁବାର ପ୍ରମାଣ କରିଛନ୍ତି । ସଭ୍ୟତାର ଉନ୍ନତ ଶିଖର ପଶୁବିଚରଣ କରିବାର ସ୍ଥଳ ନୁହେଁ । ଆଦର୍ଶ ସମାଜନୀତି କିମ୍ବା ରାଜନୀତି ଧର୍ମ ଉପରେ ପ୍ରତିଷ୍ଠିତ । ଅତ୍ୟାଚାରୀକୁ ପ୍ରଶ୍ରୟ ଦେବାଦ୍ୱାରା ଧର୍ମ ଓ ସଭ୍ୟତାର ଭିତ୍ତି ଦୁର୍ବଳ ହୁଏ; ପଶୁବଳ ପୃଥିବୀକୁ ଅଧିକାର କରିବାକୁ ଚେଷ୍ଟା କରେ । ତାହା ଐଶ୍ୱର୍ଯ୍ୟ ମଦରେ ମତ୍ତ ହୋଇ ନାନା ବିଶୃଙ୍ଖଳା ଜାତ କରାଏ; କିନ୍ତୁ କାଳକ୍ରମେ ତାହାର ବିପୁଳ ଐଶ୍ୱର୍ଯ୍ୟ କ୍ଷୀଣ ହୁଏ ଏବଂ ସେ ତାର ସମ୍ମାନ ଓ ପ୍ରତିଷ୍ଠା ଚିରକାଳ ପାଇଁ ହରାଇ ବସେ ।

ଜାତୀୟ ଜୀବନ ଗଠନରେ ଯେଉଁ ଶକ୍ତି ଆବଶ୍ୟକ ହୁଏ, ତାହା କୌଣସି ମହତ୍ ବ୍ୟକ୍ତିଙ୍କ ଜୀବନରୁ ଆଭାସ ମିଳିବା ଅସମ୍ଭବ ନୁହେଁ । ଜଣକର ପ୍ରେରଣା ଓ ସାଧନା ନୂତନ ପଥ ଉଦ୍‌ଘାଟନ କରିପାରେ; ଉଚ୍ଚ ଆଦର୍ଶ ନିକଟରେ ନୀଚ ସ୍ୱାର୍ଥପରତା କ୍ରମଶଃ ଲୋପ ପାଇ ଏକତାର ସୂତ୍ରପାତ କରେ । ଅବିରତ ଗତିରେ ଚିନ୍ତାସ୍ରୋତ ଚାଲିଛି । ଏହି ସ୍ରୋତକୁ ଗୋଟାଏ ଉନ୍ନତ ଲକ୍ଷ୍ୟ ଆଡ଼କୁ ନିର୍ଦ୍ଦେଶ କରି ପାରିଲେ ମାନବ ଜାତିର ପ୍ରକୃତ କଲ୍ୟାଣ ସାଧିତ ହୁଏ । ପୁରୁଷାର୍ଥ ସାଧନ ଦ୍ୱାରା କାର୍ଯ୍ୟ ସିଦ୍ଧି ହୁଏ । ଭିନ୍ନ ଭିନ୍ନ ସୋପାନରେ ମନୁଷ୍ୟମାନେ ଶ୍ରେଣୀବଦ୍ଧ ଥାନ୍ତି । ପ୍ରତ୍ୟେକର କ୍ଷମତା ଥିଲେ ସୁଦ୍ଧା ଏକ ସମୟରେ ଗୋଟାଏ କାର୍ଯ୍ୟର ଅଧୀନ ହୋଇ ଲକ୍ଷ୍ୟସ୍ଥଳରେ ପହଞ୍ଚିବା ସମସ୍ତଙ୍କ ପକ୍ଷେ ସମ୍ଭବପର ନୁହେଁ । ସେଥିଯୋଗୁଁ ପ୍ରଥମେ କେତେଗୁଡ଼ିଏ ନିୟମ ସଙ୍କଳନ କରି ଗୋଟାଏ ସାଧାରଣ ସୀମା ସୃଷ୍ଟି କରିବାକୁ ହୁଏ ଓ ତାକୁ ଲଙ୍ଘନ କଲେ ଦଣ୍ଡଭୋଗ କରିବାର ବ୍ୟବସ୍ଥା କରାଯାଏ । ମନୁଷ୍ୟ ଜନ୍ମଗ୍ରହଣ କରି, ସେହି ଶୁଭ ପ୍ରାରବ୍ଧରୁ ବଞ୍ଚିତ ହୁଏ ନାହିଁ । ବହୁ ପୁଣ୍ୟଫଳରୁ ପୁରୁଷାର୍ଥ ସାଧନୋପଯୋଗୀ ମନୁଷ୍ୟ ଜନ୍ମଲାଭ କରି ସତ୍ୟର ବିସ୍ମୃତିବଶତଃ ଲକ୍ଷ୍ୟଭ୍ରଷ୍ଟ ହେବା ଅନେକଙ୍କ ଭାଗ୍ୟରେ ଘଟେ । ଜଣେ ସେ ଦୁଃଖକୁ ଦୂର କରିବାର ଚେଷ୍ଟା କରେ, ଅନ୍ୟ ଜଣେ ତାକୁ ବରଣ କରେ । କ୍ଷେତ୍ରର ତାରତମ୍ୟ ଅନୁସାରେ ଶକ୍ତିର ପାର୍ଥକ୍ୟ ଦେଖାଯାଏ; କିନ୍ତୁ ସମୂହ ଶକ୍ତିର ଅବଚ୍ଛେଦ ନାହିଁ । ଜାତିନୀତି ନିର୍ବିଶେଷରେ ଏକ ମହତ୍ ପ୍ରେରଣାର ଅଧୀନ ହୋଇ ଯେଉଁ ଜାତି ଯେତେ ବେଶି ଅଗ୍ରସର ହୁଏ, ସେ ଜାତି ସେତେ ଉନ୍ନତ ଓ ପରାକ୍ରମଶାଳୀ । ସତ୍ୟର ଅନୁଶୀଳନରେ ଶକ୍ତିର ବିକାଶ ଓ ମହତ୍ତ୍ୱ ଜଣାଯାଏ ।

# ସଂଘର୍ଷ

ଶକ୍ତିର ସମବାୟ-ସାଧନ-କ୍ରିୟାରେ ସଙ୍ଘର୍ଷର ଉତ୍ପତ୍ତି । ନୂତନତ୍ୱର ଆକର୍ଷଣୀ ଶକ୍ତିରେ ପରିବର୍ତ୍ତନର ବିରାମ ନାହିଁ । ଆଜି ଯାହା ଜଗତର ବିସ୍ମୟ ଜନ୍ମାଉଛି, କାଲି ବିସ୍ମୃତିଗର୍ଭରେ ତାହା ଲୋପ ପାଇବା ଅସମ୍ଭବ ନୁହେଁ । ଜଣକର ଆବିଷ୍କ୍ରିୟାରେ କେତେ ଲୋକଙ୍କର ଦୁଃଖ କଷ୍ଟ ବା ଅବ୍ୟକ୍ତ ପରିବେଦନା ଅପସାରିତ ହେଉଅଛି । କେତେ ଆକୁଳତା ବିନିମୟରେ କ୍ଷଣସ୍ଥାୟୀ ଶାନ୍ତିଚନ୍ଦ୍ରର ପ୍ରତିଷ୍ଠା କରି ପୁଣି ବିପ୍ଳବର ବହ୍ନିକୁ ବରଣ କରିନେବାକୁ କିଏ ପ୍ରେରଣା ଦେଉଛି ? ଏକ ଅଖଣ୍ଡ ଶକ୍ତିର ବିଭିନ୍ନ ଅଭିବ୍ୟକ୍ତିରେ ଯେ ବିରୁଦ୍ଧତାର ସୂତ୍ରପାତ ହୁଏ, ତାକୁ ଭୟବିହ୍ୱଳ ଚିତ୍ତରେ ବିପ୍ଳବ ବୋଲି ଗ୍ରହଣ କଲେ ମାନବର କ୍ଷୁଦ୍ରତା ସହଜରେ ପ୍ରତିପନ୍ନ କରାଯାଇପାରେ; କିନ୍ତୁ ସେହି କ୍ଷୁଦ୍ରତାରେ ଗୋଟାଏ ବିଶାଳତାର ପୂର୍ବନିବେଦନ ପାଇଁ ଲାଗି ରହିଥାଏ । ଜଡ଼-ଜଗତରୁ ଆରମ୍ଭ କରି ଭାବନାର ଚରମ ଶିଖର ପର୍ଯ୍ୟନ୍ତ ମନୁଷ୍ୟ ପ୍ରତିନିୟତ ଘାତପ୍ରତିଘାତର କ୍ରିୟା ଅନୁଭବ କରୁଥାଏ, କେବଳ ମାତ୍ରାର ତାରତମ୍ୟ ଥାଇପାରେ । ଏହି ଆନ୍ଦୋଳନ ଭିତରେ ଚିତ୍ତଶକ୍ତି କ୍ରମଶଃ ବିସ୍ତୃତି ଲାଭ କରି ସତ୍ୟ ଓ ଆନନ୍ଦର ସନ୍ଧାନରେ ଅଭିମୁଖୀ ହୁଏ । ସାମାନ୍ୟ ଉପଲଖଣ୍ଡ ନିକ୍ଷେପଦ୍ୱାରା ଯେ କ୍ଷୁଦ୍ର ତରଙ୍ଗର ସୃଷ୍ଟି ହୁଏ, ତାହା ବିସ୍ତୀର୍ଣ୍ଣ ଜଳରାଶିରେ ପରିବ୍ୟାପ୍ତ ହୋଇଯାଏ । ଉତ୍ତାଳ ତରଙ୍ଗ ସମ୍ମୁଖରେ କ୍ଷୁଦ୍ର ବୁଦ୍‌ବୁଦର ଅସ୍ତିତ୍ୱ ସ୍ୱୀକାର କରିବା ଅସମ୍ଭବ ହେଲେ ସୁଦ୍ଧା ବିଶାଳତାରେ ଆତ୍ମଗୋପନ କରିବା ପୂର୍ବରୁ କ୍ଷୁଦ୍ରତାର ସେହି ଅକିଞ୍ଚିତ୍କର ସ୍ୱାଭାବିକ ବାଧାକୁ ଉପସ୍ଥାପିତ କରି ଦେଖେ, ପାର୍ଥକ୍ୟର ମୂଲ୍ୟ କେତେ ? ଉଚ୍ଚ-ନୀଚ-ଭେଦଜ୍ଞାନରେ ଏହାର ମୂଲ୍ୟ ନିରୂପଣ କଲେ କୌଣସି ଦୋଷ କିମ୍ବା ଯାଥାର୍ଥ୍ୟ ଉପଲକ୍ଷିତ ହେବା ପୂର୍ବରୁ ମାନବର ସଙ୍କୁଚିତ ଦୃଷ୍ଟି ପ୍ରବଳର ଶକ୍ତିକୁ ସହଜରେ ଗ୍ରହଣ କରିଥାଏ । ନିରପେକ୍ଷ ଭାବରେ ଆଲୋଚନା କଲେ ଜଣାଯିବ, କ୍ଷୁଦ୍ରର କ୍ଷୁଦ୍ରତ୍ୱ ଓ ବିଶାଳର ବିଶାଳତ୍ୱ ଏକ ଉପାଦାନରେ ଗଠିତ ଏବଂ ସେହି ଅଖଣ୍ଡ ଶକ୍ତିର ଅଧୀନ । ନିଦାଘର ତପ୍ତ ବାୟୁମଣ୍ଡଳକୁ ଶାନ୍ତ କରିବାକୁ ଗାଢ଼ ଶୀତଳ ସମୀରଣ ଆବଶ୍ୟକ ହୁଏ । ଉତ୍‌କ୍ଷିପ୍ତ ଯୁବକର ମନୋଭାବ କୋମଳପ୍ରାଣା ସୁନ୍ଦରୀ ସଂସ୍ପର୍ଶରେ ଉଦ୍ଦାମତା ଛାଡ଼ି ଯେ ପ୍ରାକୃତିକ ଗତି ଅନୁସରଣ କରେ, ତାହା ସାଂସାରିକ ସୁଖସମୃଦ୍ଧିର ମୂଳକାରଣ ବୋଲି ଧରାଯାଇପାରେ । ସଂସାରର ଯାବତୀୟ ଜଟିଳତା ମଧ୍ୟରେ କୋମଳତାର ଉତ୍ସ ଅପ୍ରକଟିତ ଅବସ୍ଥାରେ ରହିଥାଏ । ସେହିପରି ଶାନ୍ତ ଅବସ୍ଥାରୁ ଗାମ୍ଭୀର୍ଯ୍ୟର ଭିତ୍ତି ସ୍ଥାପନ କଲେ କୌଣସି ଆଶଙ୍କା ରହେ ନାହିଁ । ଦୃଶ୍ୟମାନ ଜଗତର କମନୀୟ ଛବିଗୁଡ଼ିକ ଶତ ବିଭୀଷିକା ମଧ୍ୟରେ ଅବସ୍ଥାପିତ ହୋଇ ମଧ୍ୟ ସୌନ୍ଦର୍ଯ୍ୟର ଗରିମା ଦେଖାଇବାକୁ ସମର୍ଥ ହୋଇଥାନ୍ତି । ଗୁରୁଗମ୍ଭୀର ବାରିଦପଟଳ ଆକାଶର ନୀଳିମା ଉପରେ ଆଧିପତ୍ୟ ବିସ୍ତାର କରି ଅଜସ୍ର ବାରି ବର୍ଷଣ କଲାବେଳେ ଯେ ଦୃଶ୍ୟ ପ୍ରକଟିତ ହୁଏ, ତାହା ପୁଣି ସନ୍ଧ୍ୟାକାଳୀନ ଅସ୍ତରାଗରଞ୍ଜିତ ଛିନ୍ନ ମେଘମାଳାରେ ପ୍ରକାଶ ପାଏ ନାହିଁ । ସ୍ଥାନବିଶେଷରେ ସ୍ୱାର୍ଥପରତା ଓ କାମନାମୟତାର ବିନିମୟଭାବ ପ୍ରକୃତିବିରୁଦ୍ଧ ନିୟମ ନୁହେଁ । ସଂସାରରେ ବୈପରୀତ୍ୟ ପାଇଁ ଗୋଟାଏ ସ୍ଥାନ ଅଛି । ବୈପରୀତ୍ୟରେ ସୁଦ୍ଧା ଜଗତର ଶାନ୍ତି ସ୍ଥାପନ ପ୍ରଚେଷ୍ଟା ରହିବା ଆବଶ୍ୟକ । ବିରୁଦ୍ଧଗୁଣସମ୍ପନ୍ନ ଦୁଇଟି ବସ୍ତୁର ପରସ୍ପର ମିଳନ ସ୍ୱାଭାବିକ ବୋଧ ହେଲେ ସୁଦ୍ଧା ଗୋଟିଏ ଅନ୍ୟକୁ ବଶୀଭୂତ କରିବାକୁ ସର୍ବଦା ଉତ୍ତେଜିତ ହୋଇରହିଥାଏ । ଉପର୍ଯ୍ୟୁକ୍ତ କାରଣ ଦୃଷ୍ଟିରେ ସଙ୍ଘର୍ଷକୁ ନିତ୍ୟ କାର୍ଯ୍ୟପ୍ରଣାଳୀର ଅନ୍ତର୍ଭୁକ୍ତ କରାଯାଇପାରେ । ସଙ୍ଘର୍ଷ ନ ଥିଲେ ଆଜି ସଂସାରର ଗତି ଅନ୍ୟ ଆକାର ଧାରଣ କରିଥାନ୍ତା । ନୀତି ଓ ଅନୀତି, ସତ୍ୟ ଓ ମିଥ୍ୟା, ନ୍ୟାୟ ଓ ଅନ୍ୟାୟ କାହାର ମୂଲ୍ୟ ବୁଝାଯାଆନ୍ତା ନାହିଁ । ସଙ୍ଘର୍ଷରେ ପରିଣାମଟା ଶୀଘ୍ର ଦେଖାଦିଏ । ଯାହା ଅନ୍ଧକାରରେ ପ୍ରଚ୍ଛନ୍ନଭାବ ଧାରଣ କରିଥାଏ, ତାହା ସ୍ୱତଃ ପ୍ରକାଶିତ ହୋଇପଡ଼େ ।

ଭାବରାଜ୍ୟରେ ଯେ ଭିନ୍ନତା ସୃଷ୍ଟି କରାଯାଏ, ତାହା ସଂଘର୍ଷ ପାଇଁ ସ୍ଥାନ ନିର୍ଦ୍ଦେଶ କରିଦିଏ । ମନର ମୁକ୍ତାବସ୍ଥାରେ ଏପରି ସଂକୀର୍ଣ୍ଣତା ଆସେ ନାହିଁ । ମନୁଷ୍ୟ ନିଜକୁ ଗୋଟାଏ ସୀମା ମଧ୍ୟରେ ଆବଦ୍ଧ ରଖି ସ୍ୱତଃପ୍ରଣୋଦିତ ହୋଇ ଯେ ପାରିପାର୍ଶ୍ୱିକ ଅବସ୍ଥାଟି ସୃଷ୍ଟି କରେ, ତହିଁରେ ନିଜର ମାନସିକ ପ୍ରଭାବ ବିସ୍ତାର କରିବାକୁ ସର୍ବଦା ଚେଷ୍ଟା କରେ । ସୀମାର ବହିର୍ଭୂତ ବିଷୟ ଗ୍ରହଣ କରିବାକୁ ସେ ପଶ୍ଚାତ୍ପଦ ହୁଏ; ବରଂ ସମୟ ଓ ସୁବିଧା ଦେଖି ବିପରୀତ ଭାବ କିମ୍ବା ବିଷୟ ଗ୍ରହଣ କରିବା ଦୂରେ ଥାଉ, ବଳପୂର୍ବକ ସୀମା ଅତିକ୍ରମ କରି ନିଜ ମତର ପ୍ରତିଷ୍ଠା କରିବାକୁ ମନୁଷ୍ୟ ଧର୍ମ ବୋଲି ମନେକରେ । ମନୁଷ୍ୟ ମାତ୍ରେ ମନର ବଶ୍ୟତା ସ୍ୱୀକାର କରନ୍ତି; କିନ୍ତୁ ପାର୍ଥକ୍ୟ କାହିଁକି ଲକ୍ଷିତ ହୁଏ ? ସମସ୍ତଙ୍କର ଭାବନା ସମାନ ନୁହେଁ । ଜଣେ ଗୋଟାଏ ବସ୍ତୁକୁ ଯେ ଦୃଷ୍ଟିରେ ଦେଖୁଛି, ଅନ୍ୟ ଜଣେ ତାକୁ ସେପରି ଦେଖିବା ସମ୍ଭବ ନୁହେଁ । ବିକାଶ ଓ କର୍ଷଣ ଉପରେ ମନର ଅବସ୍ଥା ନିର୍ଭର କରେ । ଅନେକ ସମୟରେ ସମଅବସ୍ଥାରେ ସୁଦ୍ଧା ଦୁଇଟି ମନର ମିଳନ ଦେଖାଯାଏ ନାହିଁ । ଏଥି ସକାଶେ ସଂସ୍କାରର ବର୍ତ୍ତମାନତା ସ୍ୱୀକାର କରିବାକୁ ଆମ୍ଭେମାନେ ବାଧ୍ୟ ହୋଇଥାଉ । ଏସବୁ ବିଷୟ ଛଡ଼ା ଭ୍ରମପ୍ରମାଦର ପ୍ରଭାବ କମ୍ ନୁହେଁ । ସମୟବିଶେଷରେ ମନୁଷ୍ୟ ଯାହା ଭାବି ନ ଥାଏ, ତାହା ଆକସ୍ମିକ କାର୍ଯ୍ୟଗତିରେ ସମ୍ପାଦିତ ହୁଏ । ମନରେ ଯେ ଆଘାତ ଲାଗେ, ତାହା ଗୋଟାଏ ସଂଘର୍ଷର ନାମାନ୍ତର ମାତ୍ର । ଉଦ୍‌ବେଗରେ ମନର ଗତି ଧାବିତ ହେଲାବେଳେ ହଠାତ୍ କୌଣସି ବାଧା ଆସି ପହଞ୍ଚି ଯାଇଥାଏ । ଏହି ବାଧା ମନୁଷ୍ୟକୁ ସୁପଥ କିମ୍ବା କୁପଥରେ ଯିବାପାଇଁ ଯଥେଷ୍ଟ ସାହାଯ୍ୟ କରେ । ସାଧୁ ପ୍ରଚେଷ୍ଟା କିମ୍ବା ପ୍ରବଳ ପ୍ରଲୋଭନର ବଶବର୍ତ୍ତୀ ମନୁଷ୍ୟ ତା ଗତିପଥରେ ପ୍ରତିହତ ହେଲାବେଳେ ଦୂରଦୃଷ୍ଟିର ସାହାଯ୍ୟ ନିଏ । ଏହି ସନ୍ଧି ସ୍ଥଳରେ ତାର ଶକ୍ତି ପରୀକ୍ଷିତ ହୁଏ । ସୁସ୍ଥ ଶରୀରରେ ହଠାତ୍ କୌଣସି ବେଦନା ଅନୁଭୂତ ହେଲେ ଯେପରି ଭାବୀ ରୋଗ ଆକ୍ରମଣର ସୂଚନା ମିଳେ, ସେହିପରି ମନର ସ୍ୱଚ୍ଛନ୍ଦ ଗତିରେ ବାଧା ଆସିବାଦ୍ୱାରା ଗୋଟାଏ ଅଲକ୍ଷିତ ବିରୁଦ୍ଧ ଭାବର ସଂମିଶ୍ରଣ ଅନୁଭବ କରାଯାଏ ।

ମନୁଷ୍ୟର ଜୀବନ ଗୋଟାଏ ଧାରାବାହିକ ସଂଘର୍ଷର ଲୀଳାଭୂମି । ଜନନୀ କୋଡ଼ରେ ଶିଶୁ ଓ ବାର୍ଦ୍ଧକ୍ୟକ୍ଲିଷ୍ଟ ଶଯ୍ୟାଶାୟୀ ବୃଦ୍ଧ ଏହାର ଦୁଇ ବିପରୀତ ଦିଗରେ ଅବସ୍ଥାନ କରନ୍ତି । ଜଣକର ଆଗମନ ସହିତ ଅପରର ତିରୋଧାନ ତୁଳନା କଲେ ବାହ୍ୟ ଦୃଷ୍ଟିରେ କିଛି ପ୍ରଭେଦ ଦେଖାଯାଏ ନାହିଁ । ଶିଶୁ ଯେ ସଂଘର୍ଷ ପାଇଁ ପ୍ରସ୍ତୁତ ହେଉଥାଏ, ବୃଦ୍ଧ ସେଥିରୁ ଅବସର ଗ୍ରହଣ କରିଥାଏ; କିନ୍ତୁ ଗୋଟାଏ ବିଶେଷତ୍ୱ ଚିରଦିନ ଅଜ୍ଞାତ ଭାବରେ ମାନବ ପ୍ରାଣକୁ ଏ ସଂସାର ପ୍ରତି ଟାଣି ରଖିଛି । ଜଣେ ଦେଖୁଛି; ତାର ସହଯାତ୍ରୀ ପ୍ରତି ପଦକ୍ଷେପରେ ନାନା ବିପଦର ସମ୍ମୁଖୀନ ହେଉଛି, ଅଥଚ ସେଥିପ୍ରତି ତାର ଦୃକ୍‌ପାତ ନାହିଁ । ସେ ଭାବୁଛି, ତାର ସୁଖର ସଂସାରଟି ଗଢ଼ିନେବା ନିଜର ଆୟତ୍ତ । ସଂସାରରେ ଯଦି ଏତେ ଘାତପ୍ରତିଘାତ ନ ଥାନ୍ତା, ତାହାହେଲେ ମନୁଷ୍ୟ ନିଜ ଇଚ୍ଛାନୁଯାୟୀ ମାର୍ଗ ଅନୁସରଣ କରି ପ୍ରକୃତ ସ୍ୱାଧୀନତା ଓ ସୁଖର ସନ୍ଧାନ ପାଆନ୍ତା ବୋଲି ଅନେକଙ୍କର ବିଶ୍ୱାସ । ଏପରି ସ୍ଥଳରେ ସାଧାରଣତଃ ପ୍ରଶ୍ନ ଉଠିପାରେ ଯେ, ପୃଥିବୀ କଣ ଗୋଟାଏ ଜଟିଳତାପୂର୍ଣ୍ଣ ମାୟାପୁରୀ ? ସଂସାରକୁ ଯଦି ଅସାର ବୋଲି ଗ୍ରହଣ କରାଯାଏ, ତାହାହେଲେ ଜନ୍ମିବାଠାରୁ ଯାବତୀୟ କାର୍ଯ୍ୟର କିଛି ମୂଲ୍ୟ ରହିବ ନାହିଁ କିମ୍ବା କର୍ମସମସ୍ୟା ସାଧନରେ ମନୁଷ୍ୟ ଏତେ ବିବ୍ରତ ହେବ ନାହିଁ । ସାଂସାରିକ କାର୍ଯ୍ୟ-ପ୍ରଣାଳୀମାନଙ୍କରେ ପରସ୍ପର ସମ୍ବନ୍ଧ ରହିଛି । ବିରୁଦ୍ଧ ଭାବ କିମ୍ବା ଚିନ୍ତା ପ୍ରାଥମିକ ଅବସ୍ଥାରେ ବିଭ୍ରାନ୍ତ ସୃଷ୍ଟି କରେ କିନ୍ତୁ ପରେ ଯେ ସାମ୍ୟ ଅବସ୍ଥା ଆସେ, ସେଥିରେ ମନୁଷ୍ୟର ଅନେକ ଶିକ୍ଷଣୀୟ ବିଷୟ ଥାଏ । ସଂଘର୍ଷ ଯେ ଭିତ୍ତି ସ୍ଥାପନ କରେ, ସେଥିରେ ମାନବୀୟ ପ୍ରକର୍ଷ କ୍ରମଶଃ ବର୍ଦ୍ଧିତ ହୁଏ । ଭଲ ଓ ମନ୍ଦ ସଂଘର୍ଷରେ ଜଗତର ସଭ୍ୟତା ଆଜି ପ୍ରାଚୀନତାକୁ ବହୁ ଦୂରରେ ପକାଇ ନୂତନତ୍ୱ ଅନୁସନ୍ଧାନରେ ଅଗ୍ରସର ହେଉଅଛି । କିଏ କହିବ ଆଧୁନିକ ସଭ୍ୟତା ଅତୀତରେ ଲୁଚିଯିବ ଓ ଭବିଷ୍ୟତର ସଭ୍ୟତା ସମ୍ପୂର୍ଣ୍ଣ ଭିନ୍ନ ଆକାରରେ ଦେଖା ଦେବ ? ଯେତେ ପରିବର୍ତ୍ତନ ଆସୁ; ସଂଘର୍ଷକୁ ତ୍ୟାଗ କରି ହେବ ନାହିଁ । ସାଂସାରିକ ଜୀବ ପକ୍ଷରେ ସଂଘର୍ଷ ଗୋଟାଏ ବିଶେଷତ୍ୱ ।

ସତ୍ୟ ଓ ସୌନ୍ଦର୍ଯ୍ୟର ବିକାଶ ପାଇଁ ସଂଘର୍ଷ ଆବଶ୍ୟକ । ଜଗତର ଆବିଳତା ମଧ୍ୟରେ ବିଶ୍ୱପ୍ରକୃତିକୁ ଅନୁସରଣ କରି ଉନ୍ମୁକ୍ତ ପ୍ରାଣର ପରିଚୟ ଦେବା ମନୁଷ୍ୟ ପକ୍ଷରେ ସହଜ ନୁହେଁ । ଜଟିଳ ସାଂସାରିକ କାର୍ଯ୍ୟପର୍ଯ୍ୟାୟରେ ମନୁଷ୍ୟର ସାଧନ-ପଥ ସଙ୍କୁଚିତ ହୋଇଯାଏ । ସେ ସର୍ବଦା ଗୋଟାଏ କ୍ଷୁଦ୍ର ପରିସର ମଧ୍ୟରେ ରହି ଅସ୍ଥାୟୀ ଅଭାବ ମୋଚନରେ ନିଜକୁ ତତ୍ପର ରଖିଥାଏ । ପ୍ରାକୃତିକ ଧର୍ମକୁ ଭୁଲିଯାଇ କୃତ୍ରିମତା ସୃଷ୍ଟି କରିବା ମନୁଷ୍ୟର ସ୍ୱଭାବ-ସିଦ୍ଧ ଗୁଣ ହୋଇପଡ଼େ । ଯେତେବେଳେ

ମନୁଷ୍ୟ ଜାତିଟା କ୍ରମଶଃ ଏହି କ୍ଷୁଦ୍ରତାରେ ମଜ୍ଜି ଯାଇ ନିମ୍ନଗାମୀ ହୁଏ; ସେତେବେଳେ ଗୋଟାଏ ପ୍ରତିକ୍ରିୟାର ଆରମ୍ଭ ହୁଏ, ଯାହାକୁ ଆମ୍ଭେମାନେ ସଙ୍ଘର୍ଷ ବୋଲି ଧାରଣା କରିପାରୁ ନାହିଁ । ସ୍ୱଚ୍ଛସଲିଳା ନିର୍ଝରିଣୀ ଗୋଟାଏ ସହଜ ଢଗରେ ବହି ଯାଉଥାଏ; ପଥରେ ଶିଳାରାଶିଦ୍ୱାରା ରୁଦ୍ଧ ହେଲେ ତାର ଗତି ବକ୍ରାକାର ଧାରଣ କରେ । ଜଗତ୍ତର କାର୍ଯ୍ୟପ୍ରଣାଳୀ ଏହିପରି ଗୋଟାଏ ସ୍ଥିତି କିଛି ଦିନ ଅନୁସରଣ କରି ଭିନ୍ନ ମାର୍ଗାବଲମ୍ବନ କରେ । ପ୍ରଚଳିତ ଧର୍ମ, ସଭ୍ୟତା, ରୁଚି ପ୍ରଭୃତିରେ ଯେ ଅସାମଞ୍ଜସ୍ୟ ଓ ନୂତନତ୍ୱ ଦେଖାଯାଏ, ସେମାନଙ୍କୁ ମାନବ ଜାତି ସ୍ୱତଃପ୍ରଣୋଦିତ ହୋଇ ଗ୍ରହଣ କରିଥାଏ । ପ୍ରତିବନ୍ଧକ କିଛି ସମୟ ପାଇଁ ଚଞ୍ଚଳତା ସୃଷ୍ଟି କରେ; କିନ୍ତୁ ତାର ଅନ୍ତରାଳରେ ଗୋଟାଏ ମାର୍ଗ ନିର୍ଦ୍ଦିଷ୍ଟ ଥିଲାପରି ଜଣାଯାଏ । ସମାଜ ଓ ସମୟର ସ୍ରୋତକୁ ଯେଉଁ ମନୀଷୀମାନେ ପରିବର୍ତ୍ତିତ କରିଦିଅନ୍ତି, ସେମାନଙ୍କର କ୍ରିୟାଗୁଡ଼ିକ ସଙ୍ଘର୍ଷର ନାମାନ୍ତର ମାତ୍ର । ବାହ୍ୟ ଆବରଣରେ ମନୁଷ୍ୟର ଚକ୍ଷୁ ନିବଦ୍ଧ ହେଲେ କାହାରି ପ୍ରକୃତ ମର୍ମ ଜଣାଯାଏ ନାହିଁ । ଅନୁଷ୍ଠିତ ଧର୍ମ, ସଭ୍ୟତା ପ୍ରଭୃତି ଯଥାଯଥ ରୂପେ ଆଚରିତ ହୋଇପାରେ ନାହିଁ । କେବଳ ସେମାନଙ୍କର ଗ୍ରନ୍ଥିଟା ମନୁଷ୍ୟକୁ ଗୋଟାଏ ଦିଗରେ ଟାଣି ନେଉଥାଏ । ଅନ୍ତଃସାରଶୂନ୍ୟ ହୋଇ ସେ ଆତ୍ମୋନ୍ନତିର ପରିକଳ୍ପନା ସୁଦ୍ଧା କରିପାରେ ନାହିଁ ! ଏପରି ଅବସ୍ଥାରେ ସଙ୍ଘର୍ଷ ଆସି ଯଦି କୌଣସି ବିପ୍ଳବ ସୃଷ୍ଟି ନ କରେ, ତାହା ହେଲେ ମନୁଷ୍ୟର ଆତ୍ମବୋଧ ଆସିବା ସହଜ ନୁହେଁ । ଆଲୋଡ଼ନ ପରେ ସରଳ ଭାବ ଆସେ । ସନ୍ଦିଗ୍ଧ ହୋଇ ମନୁଷ୍ୟ ବେଶି ଦିନ ରହିପାରିବ ନାହିଁ । ଦୁଇ ବିପରୀତ ଦିଗର ଆକର୍ଷଣରେ ସେ କିଛି ଦିନ ପାଇଁ ଉଦ୍‌ବିଗ୍ନ ହୋଇପାରେ; କିନ୍ତୁ ଆକର୍ଷଣର ପ୍ରଭାବାନୁସାରେ ସେ ସ୍ୱତଃଚାଳିତ ହୋଇ ନିଜର ଜୀବନ ଗତିକୁ ନିୟନ୍ତ୍ରିତ କରିଦିଏ । କେହି କେହି ସତ୍ୟର ଅନୁରୋଧରେ ହଠାତ୍ ସଙ୍ଘର୍ଷକୁ ଆହ୍ୱାନ କରନ୍ତି । ତଦ୍ଦ୍ୱାରା ସେ ସମାଜ କିମ୍ବା ଜାତିର ବିଦ୍ୱେଷଭାଜନ ହୋଇପାରନ୍ତି । ଅନେକ ମହାପୁରୁଷଙ୍କର ଜୀବନ କାଳରେ ଏଥିର ଯଥେଷ୍ଟ ପ୍ରମାଣ ମିଳିଅଛି । ଅଧର୍ମର ବିନାଶ ସାଧନ ଓ ଶାନ୍ତି ପ୍ରତିଷ୍ଠାକରଣରେ ଏକ ଶକ୍ତି ନିଯୁକ୍ତ ହୋଇଥାଏ; କିନ୍ତୁ ବାହ୍ୟ ଦୃଷ୍ଟିରେ ସାଧାରଣ ମନୁଷ୍ୟ ଏହାକୁ ବୁଝିପାରେ ନାହିଁ । ସେ ଦେଖେ, କେବଳ ଘାତ ଓ ପ୍ରତିଘାତ । ଏପରି ଅବସ୍ଥାରେ ଇତସ୍ତତଃ ହେବା ମନୁଷ୍ୟର ସ୍ୱାଭାବିକ ଦୁର୍ବଳତା ମଧ୍ୟରେ ଗ୍ରହଣ କରାଯାଇପାରେ । ସୌନ୍ଦର୍ଯ୍ୟ-ମୋହର ଚପଳ ଛନ୍ଦରେ ସେ ନିଜକୁ ହଜାଇ ଦେଇପାରେ; କିନ୍ତୁ ସମୟ ଆସେ, ଯେତେବେଳେ ଦୁର୍ଗତିର ପରିମାଣ-ସ୍ମୃତି ତାର ଆତ୍ମସଂଯମର ପଥ ନିର୍ଦ୍ଦେଶ କରି ଅନନ୍ତ କାଳ ପାଇଁ ଏକ ବିରାଟ ସୌନ୍ଦର୍ଯ୍ୟପସରା ଖୋଲିଦିଏ । ସହସ୍ର ଆବରଣ ଭେଦକରି ସତ୍ୟ ଓ ସୌନ୍ଦର୍ଯ୍ୟ ସେମାନଙ୍କର ସ୍ୱରୂପ ପ୍ରକାଶ କରନ୍ତି । ହୃଦୟର ଆବିଳତା ଦୂର କରି ମନୁଷ୍ୟ ଅପେକ୍ଷା କରି ରହିଲେ ଦିନେ ତାର ତୃଷାର ନିବୃତ୍ତି ଆସେ; ଯେ ଲକ୍ଷ୍ୟ ସେ ଭୁଲିଥାଏ, ତାର ପୁଣି ସନ୍ଧାନ ପାଏ ।

ସଙ୍ଘର୍ଷ ଗୋଟାଏ ଦମନ-କ୍ରିୟା । ଏହାର ଅଭାବରେ ପ୍ରବଳ ଦୁର୍ବଳ ଉପରେ ଅତ୍ୟାଚାର କରି ନିଃସଙ୍କୋଚରେ ଜଗତକୁ ପିଶାଚର କ୍ରୀଡ଼ାଭୂମିରେ ପରିଣତ କରିପାରନ୍ତା; ସହସ୍ର ସହସ୍ର ‘ନାଦିର ସାହ’ ଏକ ମୁହୂର୍ତ୍ତରେ ଧରାମୁଖକୁ କଳଙ୍କିତ କରିଦିଅନ୍ତେ; ଗୋଟାଏ ବିକଟ ଅଟ୍ଟହାସରେ ବିଶ୍ୱପ୍ରକୃତି ସ୍ତବ୍ଧ ହୋଇଯାଆନ୍ତା—ଧର୍ମର ମହତ୍ତ୍ୱ ମଧ୍ୟ କେହି ବୁଝିପାରନ୍ତେ ନାହିଁ; ମନୁଷ୍ୟ ବାଧ୍ୟ ହୋଇ ପଶୁତ୍ୱ ଆଚରଣ କରିବାକୁ ଶିଖନ୍ତା । ପକ୍ଷାନ୍ତରରେ ଧର୍ମର ସ୍ୱରୂପ ସମସ୍ତଙ୍କଦ୍ୱାରା ଅବଧାରିତ ହୋଇପାରୁଥିଲେ ଆଜି ଏତେ ବୈଷମ୍ୟ ଦେଖିବାକୁ ମିଳନ୍ତା ନାହିଁ । ଅନ୍ଧକାର ନ ଥିଲେ ଆଲୋକର ଆଦର ହୁଅନ୍ତା ନାହିଁ । ବୈଷମ୍ୟରୁ ବୈଚିତ୍ର୍ୟର ଉତ୍ପତ୍ତି । ଜୀବର ପ୍ରାକୃତିକ ଗୁଣାନୁସାରେ ଯେ ଭିନ୍ନତା ସୃଷ୍ଟି ହୁଏ, ତାହା ଶକ୍ତିଶାଳୀ ହୋଇ ରହିବା କୌଣସି ଜାତି ପକ୍ଷରେ ସମ୍ଭବ ନୁହେଁ । ଜାତିଗତ ସ୍ୱତନ୍ତ୍ରତା ମଧ୍ୟରେ ବିଦ୍ୱେଷ ଭାବ ଥାଏ । ସେଥିଯୋଗୁ ଗୋଟିଏ ଜାତି ଅନ୍ୟ ଜାତିକୁ ସର୍ବଦା ସନ୍ଦେହର ଚକ୍ଷୁରେ ଦେଖୁଥାଏ । ସମୟ ଓ ଅବସ୍ଥା ଭେଦରେ ପରସ୍ପର ମଧ୍ୟରେ ବିଦ୍ରୋହଭାବ ଗାଢ଼ ହୋଇ ଉଠେ । ସମର କ୍ଷେତ୍ରରେ ଦୁଇ ଜାତିର ତୁମୁଳ ଯୁଦ୍ଧ ହୁଏ, ହିଂସାର ତାଣ୍ଡବ ଲୀଳା ଦୁହିଁଙ୍କର ବିବେକକୁ ଲୋପ କରିଦିଏ; କିନ୍ତୁ ଶେଷରେ ଯେ ଅବସାଦ ଆସେ, ସେଥିରେ ଜେତା ଓ ବିଜିତ ମଧ୍ୟରେ ବିରୋଧ ଭାବ କିଛି ଦିନ ପାଇଁ ଲୋପ ପାଏ ।

ଉଭୟ ପକ୍ଷର ଶକ୍ତି କ୍ଷୟିତ ହେଲେ ସଙ୍ଘର୍ଷର ଆଶଙ୍କା ନ ଥାଏ । ମତ୍ତତାର ମାତ୍ରା ଏହିପରି ହ୍ରାସ ପାଇଲେ ଜଗତରେ ସାମୟିକ ଶାନ୍ତି ବିରାଜମାନ କରେ । ହିଂସାଭାବକୁ ଜୀବଜଗତରୁ ସମୂଳେ ଦୂର କଲେ ସଙ୍ଘର୍ଷର ମାରାତ୍ମକତା ଲୋପ ପାଇପାରନ୍ତା; କିନ୍ତୁ ସଭ୍ୟମାନବ ଆଜିପର୍ଯ୍ୟନ୍ତ ଏହାକୁ ତ୍ୟାଗ କରି ନାହିଁ । ବର୍ତ୍ତମାନ ଇଉରୋପ ସଭ୍ୟତା ଶ୍ରେଷ୍ଠ ସ୍ଥାନ

ଅଧିକାର କରିଛି ବୋଲି ବିଶ୍ୱାସ ହୁଏ । ଇଉରୋପର ସଭ୍ୟ ଜାତିମାନେ ଯେ କୌଶଳରେ ଯୁଦ୍ଧ କରନ୍ତି, ତାହା ଅସଭ୍ୟ ଜାତିମାନଙ୍କ ଧାରଣାର ଅତୀତ ଥିଲା; ଅଥଚ ଏମାନଙ୍କ ମଧ୍ୟରେ କିଏ ବଡ଼ କହିବା କଷ୍ଟକର ହେବ ନାହିଁ । ପୂର୍ବକାଳରେ ସ୍ୱାଭାବିକ ହିଂସାଭାବର ବଶବର୍ତ୍ତୀ ହୋଇ ପୃଥିବୀର ଜାତିମାନେ ଯୁଦ୍ଧ କରୁଥିଲେ । ଯୋଦ୍ଧା ପ୍ରତିଯୋଦ୍ଧା ବ୍ୟତୀତ ଅନ୍ୟ ନିରୀହ ପ୍ରାଣୀକୁ ସ୍ପର୍ଶ କରିବାକୁ ଅଭିଳାଷୀ ହେଉ ନ ଥିଲି; କିନ୍ତୁ ଆଜି ଆଉ ସେ ଧର୍ମ ନାହିଁ । ବିଜ୍ଞାନ ବଳରେ ଯେ ଅତ୍ୟାଚାର କରାଯାଉଛି, ତାହା ଅକଥ୍ୟ କହିଲେ ଚଳେ । ସଭ୍ୟତାଭିମାନୀ ଜାତିମାନଙ୍କର ଏହି ହୃଦୟହୀନତା ପୃଥିବୀବକ୍ଷରେ ଯେ ମନ୍ତ୍ର ପ୍ରଚାର କରୁଛି, ତଦ୍ଦ୍ୱାରା କାହାର ଧ୍ୱଂସ ସାଧିତ ହେବ, ସେତିକି କେବଳ ଦେଖିବାକୁ ବାକି ଅଛି । ଦିନେ ଗୋଟାଏ ବିରାଟ ସଂଘର୍ଷରେ ସବୁ ପ୍ରମାଣିତ ହୋଇଯିବ ।

ପ୍ରେମର ପରାକାଷ୍ଠା ପ୍ରକାଶ ପାଇଁ ସଂଘର୍ଷ ଆବଶ୍ୟକ ହୁଏ । ଉଦ୍ଦାମ ଯୌବନରେ ଶରୀର ସୌନ୍ଦର୍ଯ୍ୟକୁ ଉପାସନା କରି ମନୁଷ୍ୟ ନିଜର ତୃପ୍ତି ସାଧନ କରେ । ଏହି ତୃପ୍ତିରେ ଶାନ୍ତିର ପଥ ଉଦ୍‌ଘାଟିତ ହୁଏ ନାହିଁ; ବରଂ କ୍ଷୁବ୍ଧତା କ୍ରମଶଃ ବଢ଼ିଉଠେ । ଶରୀର-ଉପଭୋଗରେ ଯେ ମୋହ ସଞ୍ଚାର ହୁଏ, ତାକୁ ପ୍ରେମ ଆଖ୍ୟା ଦେବା କ୍ଷିପ୍ତତା ମାତ୍ର । ଥରେ ରୂପର ମାଦକତା ମନକୁ ଗ୍ରାସ କଲେ ମନୁଷ୍ୟ ଆଉ ସ୍ଥିର ହୋଇ ରହିପାରେ ନାହିଁ । ସେ ଶରୀରଟାକୁ କେବଳ ଲୋଲୁପ ଦୃଷ୍ଟିରେ ଦେଖେ; ଭୋଗଲିପ୍ସା ତାକୁ ଅଧୀର କରେ । ଏପରି ଅସହାୟ ଅବସ୍ଥାରେ ମନୁଷ୍ୟର ନିଜତ୍ୱରକ୍ଷା ଅସମ୍ଭବ ବୋଲି କୁହାଯାଇ ପାରେ । ପାପକର୍ଦ୍ଦମ-ସିକ୍ତ ପଥ ବଡ଼ ପିଚ୍ଛିଳ । ମନୁଷ୍ୟ ଯେତେବେଳେ ବ୍ୟାକୁଳ ହୋଇ ସେ ପଥରେ ଦୌଡ଼େ, ସେତେବେଳେ ତାର ପତନ ଅନିବାର୍ଯ୍ୟ ହୋଇପଡ଼େ । ପତନରେ ନିରୁତ୍ସାହ ନ ହୋଇ ସେହି ପଥରେ ପୁଣି ଗତି କରିପାରେ; କିନ୍ତୁ ସ୍ରୋତ ଉଜାଣି ଉଠିଲେ ତା ଜୀବନରେ ଘୋର ପରିବର୍ତ୍ତନ ଆସେ । ଗଣିକା କିମ୍ବା ଉପପତ୍ନୀର ବଶ୍ୟତା ସ୍ୱୀକାର କରି ପୁରୁଷ ସବୁ ଭୁଲିଥାଏ । ନିଜର ଧର୍ମପତ୍ନୀକୁ କେତେ ଅବଜ୍ଞା କରେ । ସେ ଜାଣିପାରେ ନାହିଁ ଯେ, ଯୌବନ-ସୁରାର ମାଦକତା କମି ଆସିଲେ ଅନୁତାପ ତାର ସ୍ଥାନ ଅଧିକାର କରିବ । ଯେ ଘାତପ୍ରତିଘାତର କିମ୍ବା ମନୁଷ୍ୟ ଅନୁଭବ କରେ, ତଦ୍ଦ୍ୱାରା ତାର ଅତୀତ ଜୀବନର ଘଟଣାଗୁଡ଼ିକ ବର୍ତ୍ତମାନ ସହିତ ସାମଞ୍ଜସ୍ୟ ରକ୍ଷା କରିପାରେ ନାହିଁ । ବାସ୍ତବତା ନିକଟରେ ସ୍ୱପ୍ନ ଅସାର । ଅସାରକୁ ସାର ମନେ କରି ଜୀବନ ଅତିବାହିତ କଲେ କେହି ପ୍ରକୃତ ଆନନ୍ଦ ପାଆନ୍ତି ନାହିଁ । ବାସ୍ତବତା ସ୍ପର୍ଶରେ ଅଳୀକତା ବେଶି ସମୟ ସ୍ଥାୟୀ ହୋଇ ରହେ ନାହିଁ । ସମୁଦ୍ର ସଙ୍ଗମରେ ସ୍ରୋତା ତଟିନୀ ଯେ ସଂଘର୍ଷ ଅନୁଭବ କରେ, ତାହା ତାକୁ ଅନନ୍ତରେ ମିଶିଯିବା ପାଇଁ ଆହ୍ୱାନ କରେ । କାମୋପଭୋଗୀ ଅତୃପ୍ତ ମାନବ ଥରେ ପୂତ ରମଣୀର ଅମଳ ଆକର୍ଷଣ ଅନୁଭବ କଲେ ଯେ ସ୍ନିଗ୍ଧତା ଓ ପବିତ୍ରତା ତା ହୃଦୟରେ ଫୁଟି ଉଠେ, ତାହା ତାକୁ ସେହି ଚିରବାଞ୍ଛିତ ଧାମ ଆଡ଼କୁ ଘେନିଯାଏ । ଅତୀତର ଆବିଳତା ଅମୃତ ସ୍ପର୍ଶରେ ସ୍ମୃତିମାତ୍ର ରଖି ଚାଲିଯାଏ ।

ନୀରବତାରେ ମଧ୍ୟ ସଂଘର୍ଷର ଶକ୍ତି ପ୍ରୟୋଗ କରାଯାଇଥାଏ । ଭିନ୍ନ ଭିନ୍ନ ବସ୍ତୁ କିମ୍ବା ଗୁଣ ପ୍ରଚ୍ଛନ୍ନାବସ୍ଥାରେ ମିଳିତ ହୋଇଥାନ୍ତି । କିନ୍ତୁ ଯେ ଶକ୍ତି ପ୍ରଭାବରେ ସେମାନଙ୍କୁ ଅନ୍ତର କରାଯାଏ, ତାହା ସଂଘର୍ଷର ରୂପାନ୍ତର ମାତ୍ର । ସୃଷ୍ଟିର ବୈଚିତ୍ର୍ୟ ଓ ସମତା ଆଣିବାକୁ ସଂଘର୍ଷର ଉପକାରିତା ଅସ୍ୱୀକାର କରି ହେବ ନାହିଁ । ସୁପ୍ତ ଜଗତ୍ ତାର ପ୍ରଥମ ସ୍ପନ୍ଦନ ଅନୁଭବ କଲା ବେଳେ ଯେ ଶକ୍ତିର ବିକାଶ ଦେଖିଚି, ସଂଘର୍ଷକୁ ବାଦ୍ ଦେଇ ସେହି ଶକ୍ତିର ପୂର୍ଣ୍ଣତା ପ୍ରମାଣ କରିବା ତା ପକ୍ଷରେ ଅସମ୍ଭବ । ଜଗତର ଅସ୍ତିତ୍ୱ ଥିବା ପର୍ଯ୍ୟନ୍ତ ସଂଘର୍ଷର ବିରାମ ହେବ ନାହିଁ; ବିଭିନ୍ନ ଆକାର ଧାରଣ କରି ସମୟୋପଯୋଗୀ ସଂଘର୍ଷମାନ ସଂଘଟିତ ହେବ । ବିଶେଷତଃ ମାନବ ଜାତିର ଗତି ଚିରଦିନ ସେମାନଙ୍କଦ୍ୱାରା ନିୟନ୍ତ୍ରିତ ହେବ । ଗୋଟାଏ ଗୋଟାଏ ସଂଘର୍ଷ ଫଳରେ ମାନବ ତାର ଅନୁସୃତ ମାର୍ଗକୁ ପରୀକ୍ଷା କରି ନେବ । ଯଦି କୌଣସି ଦୋଷ କିମ୍ବା ବାଧା ଥାଏ, ସେମାନଙ୍କୁ ଦୂର କରି ପୁଣି ଲକ୍ଷ୍ୟ ଆଡ଼କୁ ଅଗ୍ରସର ହେବ । ମନୁଷ୍ୟତ୍ୱ ସଙ୍ଘର୍ଷରେ ପ୍ରମାଣିତ ହୁଏ । ଜୀବନଟାକୁ କେହି ନୀରବରେ କଟାଇ ଦେଇପାରିବ ନାହିଁ ।

# ହିଂସାତ୍ମକ ନୀତି

ମାନବୀୟ କାର୍ଯ୍ୟପ୍ରଣାଳୀରେ ସର୍ବଦା ସାମ୍ୟ ଭାବ ପରିଲକ୍ଷିତ ହୁଏ ନାହିଁ । ଜଳବାୟୁ; ଜୀବିକାନିର୍ବାହର ପନ୍ଥା ସ୍ଥାନବିଶେଷରେ ସଭ୍ୟତା, ଧର୍ମ ପ୍ରଭୃତିଦ୍ୱାରା ପ୍ରଭାବିତ ହୋଇ ଦେଶ କିମ୍ବା ଜାତିଗତ ପାର୍ଥକ୍ୟରୁ ଯେଉଁ ସ୍ୱତନ୍ତ୍ରତାର ସୃଷ୍ଟି କରେ, ସେଥିରେ ସ୍ୱଧର୍ମର ମହତ୍ତ୍ୱ ଉପଲବ୍ଧି କରିବାକୁ ପଡ଼େ । ଜଣକର ଯାହା କରଣୀୟ, ଅନ୍ୟର ତାହା ବର୍ଜନୀୟ ହେବା ସ୍ୱଭାବସିଦ୍ଧ ନିୟମ ଉପରେ ନିର୍ଭର କଲାପରି ଜଣାପଡ଼େ । ମନୁଷ୍ୟ ଜନ୍ମଗ୍ରହଣ କଲାମାତ୍ରେ ପାରିପାର୍ଶ୍ୱିକ ଅବସ୍ଥାମାନଙ୍କର ଆକର୍ଷଣ ଓ ପ୍ରଭାବ ତା ଜୀବନର ଗତିକୁ ନିୟନ୍ତ୍ରିତ କରନ୍ତି ଏବଂ ତଦ୍ଦ୍ୱାରା ମନୁଷ୍ୟର ଯେଉଁ ଉତ୍ଥାନ କିମ୍ବା ପତନ ହୁଏ, ସେଥିରେ କାହାରି ଆୟତ୍ତ ନ ଥାଏ । ଏପରି ଅବସ୍ଥାରେ ଅଧିକାର ଭେଦରେ କାର୍ଯ୍ୟର ନ୍ୟୂନତା କିମ୍ବା ଶ୍ରେଷ୍ଠତା ପ୍ରତିପନ୍ନ କରାଇବା ଉଚିତ ନୁହେଁ । ପ୍ରତ୍ୟେକ କାର୍ଯ୍ୟର ମହତ୍ତ୍ୱ ଅଛି । ଚଣ୍ଡାଳ ସ୍ୱକାର୍ଯ୍ୟ ସାଧନ କରି ଯେଉଁ ଆସନ ଅଧିକାର କରେ, କଦାଚାର ବ୍ରାହ୍ମଣ ସେ ସ୍ଥାନ ପାଇପାରେ ନାହିଁ । ବୈଦେଶିକମାନେ ଭାରତର ଜାତିବିଭାଗ ପ୍ରତି ବିଦ୍ୱେଷ ପ୍ରଦର୍ଶନ କରି ତାର କର୍ମକୁଣ୍ଠତା ପ୍ରମାଣ କରନ୍ତି; କିନ୍ତୁ ସେମାନଙ୍କର ଭାବିବା ଉଚିତ ଯେ, ଭାରତର ପତନ ସକାଶେ ଜାତିବିଭାଗ ଆଦୌ ଦାୟୀ ନୁହେଁ । ସ୍ୱଧର୍ମଚ୍ୟୁତ ଭାରତବାସୀ ସେଥିସକାଶେ ସମ୍ପୂର୍ଣ୍ଣରୂପେ ଦାୟୀ । ଭାରତୀୟ ଧର୍ମ ଅହିଂସା ଉପରେ ପ୍ରତିଷ୍ଠିତ, ହିଂସା କିମ୍ବା ଘୃଣାଭାବ ସୃଷ୍ଟି କରିବା ବର୍ଣ୍ଣାଶ୍ରମ ଧର୍ମର ଉଦ୍ଦେଶ୍ୟ ନୁହେଁ । ପ୍ରାଚୀନ ହିନ୍ଦୁମାନଙ୍କର ସାମାଜିକ ଓ ନୈତିକ ଉନ୍ନତି ଯେଉଁ ଆଦର୍ଶ ଆଡ଼କୁ ଗତି କରୁଥିଲା, ତାହା ପୃଥିବୀର ଅନ୍ୟାନ୍ୟ ଜାତିମାନଙ୍କର ଧାରଣାର ଅତୀତ । ଗୋଟାଏ ଉଚ୍ଚ ସ୍ଥାନରୁ ସ୍ଖଳିତ ହେଲେ ଯେପରି ଭୟାବହ ଅବସ୍ଥାର ଅଧୀନ ହେବାକୁ ପଡ଼େ, ବର୍ତ୍ତମାନ ଭାରତର ସେହି ଅବସ୍ଥା କହିଲେ ଚଳେ । ଭାରତୀୟ ତାର କର୍ମ ଓ ଧର୍ମ ଭୁଲି ଯାଇଛି, ତାର ଲକ୍ଷ୍ୟ ନାହିଁ, ଜାତୀୟତା କଣ, ସେ ଜାଣିପାରୁ ନାହିଁ । ବିଜାତୀୟ ଭାବ ଓ ଆକାଙ୍‌କ୍ଷା ଘେନି ସେ କିଛି ଦିନ ଅଗ୍ରସର ହେଲା; କିନ୍ତୁ ଅନ୍ଧକାରର ମାତ୍ରା କ୍ରମଶଃ ବଢ଼ିବାକୁ ଲାଗିଲା । ନିଜତ୍ୱ ହରାଇ ପରମୁଖାପେକ୍ଷୀ ହେବାଦ୍ୱାରା ଯେଉଁ ବାହ୍ୟ ଚାକ୍‌ଚକ୍ୟ ତା ଦୃଷ୍ଟିକୁ ଘୋଡ଼ାଇ ରଖିଥିଲା, ତାହା ଆସ୍ତେ ଆସ୍ତେ ଅପସାରିତ ହେଲା । ସେ ବୁଝିଲା—ମରୀଚିକା-ଭ୍ରମ ତାକୁ ଏତେ ଦିନ ଦୁର୍ଦ୍ଦଶା ଆଡ଼କୁ ଟାଣି ରଖିଛି । ଚକ୍ଷୁର ଉନ୍ମେଷ ହେଲା ସତ୍ୟ, କିନ୍ତୁ ପୂର୍ବର ଶକ୍ତି ନାହିଁ, ଯାହାର ଅବଲମ୍ବନରେ ସେ ସ୍ୱସ୍ଥାନକୁ ଫେରିଯିବ । ଗୋଟାଏ ନିରାଶ ଭାବ ତା ହୃଦୟକୁ ଗ୍ରାସିଯାଇଛି । ସେ ଦେଖୁଛି— ସମ୍ମୁଖରେ ଗୋଟାଏ ବଡ଼ ସଙ୍କଟ, ସର୍ବତ୍ର ହାହାକାର ଶବ୍ଦ; ପୁଣ୍ୟପୀଠ ଭାରତ ଅଶାନ୍ତ ଓ ଅଶୁଚି ଅବସ୍ଥାରେ ପୂର୍ଣ୍ଣ !

ତୃଷାତୁର ରୋଗୀ ଜଳର ଦୋଷ କିମ୍ବା ଗୁଣ ବୁଝେ ନାହିଁ । ପିପାସା ମେଣ୍ଟାଇବା ତୃଷିତ ପ୍ରାଣର ଏକମାତ୍ର ଅଭିଳାସନା । ସ୍ରୋତସ୍ୱତୀର ପ୍ରବାହ ରୁଦ୍ଧ ହେଲେ ଆବିଳତା ପ୍ରଚ୍ଛନ୍ନରେ କାର୍ଯ୍ୟ କରେ । ପ୍ରଥମେ ସେଥିପ୍ରତି କେହି ଲକ୍ଷ୍ୟ କରି ପାରନ୍ତି ନାହିଁ; କିନ୍ତୁ ପରେ ମାରାତ୍ମକ ଅବସ୍ଥାର ସୂଚନା ମିଳିଲେ ସମସ୍ତେ ସାବଧାନ ହୁଅନ୍ତି । ମହାମାରୀର ସଂକ୍ରମଣକୁ ନିବାରଣ କରିବା ସହଜ ନୁହେଁ । ଥରେ ବିଷ ସଂକ୍ରମିତ ହେଲେ ଉପସର୍ଗ ଦୂର କରି ରୋଗ ନିରାକୃତ କରିବା ବହୁ ଆୟାସସାଧ୍ୟ । ଆଜି ଭାରତର ଜାତୀୟତା ବଡ଼ ଉଦ୍‌ବେଳିତ । ଭିନ୍ନ ଭିନ୍ନ ଦଳ ସୃଷ୍ଟି କରି ଭାରତୀୟ ରାଜନୀତିଜ୍ଞମାନେ ଦେଶର କି କଲ୍ୟାଣ କରୁଛନ୍ତି ତାହା ସହଜରେ କହି ହେବ ନାହିଁ । ଅଧିକାଂଶ ସ୍ଥଳରେ ଜାତୀୟ ସ୍ୱାର୍ଥ ପ୍ରତି ଦୃଷ୍ଟି ନ ଦେଇ କେବଳ ଆତ୍ମଗୌରବ ରକ୍ଷା ଲାଗି ଦଳଗତ ସ୍ୱାର୍ଥର ସମର୍ଥନ କରାଯାଉଛି । ଉଚ୍ଛୃଙ୍ଖଳତାରୁ ଏପରି ଅବସ୍ଥାର ସୃଷ୍ଟି । ଜାତୀୟତା ଗଠନ ସମୟରେ ପରସ୍ପରବିରୋଧୀ କର୍ମୀମାନଙ୍କଦ୍ୱାରା ଦେଶର ଯାହା ଅହିତ ହୁଏ, ତାହା ସ୍ଥୂଳ ଦୃଷ୍ଟିରେ ଜଣାଯାଏ ନାହିଁ; କିନ୍ତୁ ତାର ବିଷମୟ ପରିଣାମ ଭାବୀ ବଂଶଧରମାନଙ୍କୁ ଭୋଗ କରିବାକୁ ପଡ଼େ । କେବଳ ଅଗ୍ରଗତିକୁ ଲକ୍ଷ୍ୟ ରଖି ଚାଲିଲେ ଦୋଷାବହ ବିଷୟମାନଙ୍କୁ

ସାଧାରଣତଃ ଉପେକ୍ଷା କରାଯାଇଥାଏ । ଆକାଙ୍କ୍ଷା କିମ୍ବା ପ୍ରବୃତ୍ତି ହେଲେ ସୁଦ୍ଧା ଉଦ୍ଦେଶ୍ୟ ସାଧିତ ହୁଏ ନାହିଁ । ଜାତୀୟ ଜୀବନରୁ ଶିଥିଳତା, ସଂକୀର୍ଣ୍ଣତା ପ୍ରଭୃତି ଦୂର କରି ଯେଉଁ ସଂସ୍କାର ଭିତ୍ତି ସ୍ଥାପନ କରାଯାଏ, ତାହା ଏକତା ଓ ସମ୍ବନ୍ଧ-ସାଧନା ଉପରେ ଆରୋପ କରାଯାଇପାରେ । ଜାତିର ବିପର୍ଯ୍ୟସ୍ତ ଅବସ୍ଥାରେ କେବଳ ସତ୍‌କର୍ମୀମାନଙ୍କର ଅଗ୍ରଗାମୀ ହେବା ଆବଶ୍ୟକ । ସେମାନଙ୍କର ଏକନିଷ୍ଠ ଭାବ ଜାତିର କଲ୍ୟାଣ ସାଧନ କରେ । ରୁଦ୍ଧ ଜାତୀୟ ଆବେଗକୁ ସେମାନେ ମୁକ୍ତବାୟୁରେ ଖେଳାଇ ଦିଅନ୍ତି । କୁସଂସ୍କାର-ବିଷର ବ୍ୟାପକତାରେ ସେମାନେ ନିଜ ପ୍ରାଣ ବିସର୍ଜନ ଦେଇ ପ୍ରତିରୋଧକ ହୁଅନ୍ତି । ଜାତୀୟ ସଙ୍କଟ ବହ୍ନିରେ ସତ୍‌କର୍ମୀ ଅକାତରରେ ନିଜର ପ୍ରାଣକୁ ଆହୁତି ଦିଏ । ସେ ଜାତିର ଧ୍ୱଂସ ଦେଖିପାରେ ନାହିଁ । ଗୋଟାଏ କରୁଣ ଦୃଶ୍ୟରେ ତାର ପ୍ରାଣ ଆଲୋଡ଼ିତ ହୁଏ । ଜନ୍ମଭୂମିର ଉଦ୍ଧାର ଲାଗି ତା ଅନ୍ତରରୁ ଗୋଟାଏ ସଙ୍କେତ ବାଣୀ ଭାସି ଆସେ । ସେ ସଙ୍କେତ ଦିଏ, ଜାଗ୍ରତ ରହିବା ପାଇଁ । ସଂକ୍ରାମକ ରୋଗର ପ୍ରତିଷେଧକ ଉଦ୍ଭାବନ କଲାପରି ସେ କୌଣସିଠାରୁ ସୁଗମ ପନ୍ଥା ସ୍ଥିର କରିଦିଏ, ଯାହାକୁ ଅନୁସରଣ କରି ଜାତିର ମୌଳିକତା ରକ୍ଷା ପାଇଯାଏ ।

ମହାମତି Helps କହିଛନ୍ତି, "Coercion is but small part of Government." ସ୍ୱାର୍ଥ ପ୍ରତି ଦୃଷ୍ଟି ଦେଇ ଦମନନୀତି ଚଳାଇ ଯେଉଁ ଶାସନର ପ୍ରତିଷ୍ଠା କରାଯାଏ, ତାହା ସମ୍ପୂର୍ଣ୍ଣ ହିଂସାତ୍ମକ । ପୁଣ୍ୟଶ୍ଳୋକ ନରପତି ଅଶୋକ ହିଂସାପ୍ରଣୋଦିତ ତରବାରିକୁ ଅବଜ୍ଞା କରି ଯେଉଁ ଅନୁଶାସନମାନ ଭାରତରେ ଘୋଷଣା କରିଥିଲେ, ସେସବୁ ଅଦ୍ୟାପି ନିବିଡ଼ ଅରଣ୍ୟର ଗୁମ୍ଫାମାନଙ୍କରେ ଦୃଷ୍ଟିଗୋଚର ହୁଏ । ଅଶୋକ ଶାସନର ପରବର୍ତ୍ତୀ ଯୁଗରେ ଭାରତର ଐଶ୍ୱର୍ଯ୍ୟପ୍ରତି ଆକୃଷ୍ଟ ହୋଇ କେତେକ ଲୁଣ୍ଠନକାରୀ ଆସି ଭାରତୀୟଙ୍କୁ ପଦଦଳିତ କଲେ, ସେ ତାକୁ ଅକୁଣ୍ଠିତରେ ସହିଗଲା ।

ପୂର୍ବପୁରୁଷର ଶୌର୍ଯ୍ୟ ତାର ନ ଥିବାରୁ ସେ ଲୁଣ୍ଠନକାରୀଙ୍କୁ ବିନା ଆପତ୍ତିରେ ଦେଶ ଛାଡ଼ିଦେଲା । ଦେଶ ଓ ଜାତିର ମହତ୍ତ୍ୱ ରକ୍ଷା କରିବା ସକାଶେ ବହିଃଶତ୍ରୁ ସଙ୍ଗେ ଯୁଦ୍ଧ କଲେ ଅନ୍ୟାୟ କିମ୍ବା ଅହିଂସାର ପ୍ରମାଣ ମିଳେ ନାହିଁ । ତାହା ହୋଇଥିଲେ, ଭଗବାନ ଶ୍ରୀକୃଷ୍ଣ ପାଣ୍ଡବମାନଙ୍କୁ ସେମାନଙ୍କର ଜ୍ଞାତିମାନଙ୍କ ବିରୁଦ୍ଧରେ ଯୁଦ୍ଧ କରିବା ପାଇଁ ଉତ୍ସାହିତ କରି ନ ଥାନ୍ତେ । ସମରର ଯେଉଁସବୁ ନିୟମ ଯୋଦ୍ଧାମାନଙ୍କୁ ପାଳନ କରିବାକୁ ପଡ଼େ, ସେଥିରେ ଅନ୍ୟାୟ ସମରକୁ କେବଳ ହିଂସାଜନିତ କୁହାଯାଇଥାଏ । ଅନ୍ୟାୟ ଓ ଅତ୍ୟାଚାରର ଦୂରୀକରଣ ପାଇଁ ସମରର ଆବଶ୍ୟକତା ସମସ୍ତେ ସ୍ୱୀକାର କରିବେ । ସଭ୍ୟତାର ଅଭିବୃଦ୍ଧିରେ ଏହାର ସାହାଯ୍ୟ କେତେ ଦୂର ଗ୍ରହଣୀୟ, ତାହା ଆଧୁନିକ ଜାତିମାନଙ୍କର କାର୍ଯ୍ୟକଳାପରୁ ଅନୁମାନ କରାଯାଇପାରେ । ଗତ ମହାସମର ପରେ ଇଉରୋପର ଶ୍ରୀ ନଷ୍ଟ ହୋଇଗଲା । ପାଶ୍ଚାତ୍ୟ ଜାତିମାନେ ଜାତିସଂଘ ଗଠନ କରି ତଦ୍ଦ୍ୱାରା ଆନ୍ତର୍ଜାତିକ ମନୋମାଳିନ୍ୟ ଦୂର କରିବାର ପନ୍ଥା ନିର୍ଦ୍ଦେଶ କଲେ; କିନ୍ତୁ ଉଦ୍ଦେଶ୍ୟ ସାଧିତ ହୋଇପାରିଲା ନାହିଁ । ଆଜି ପୁଣି ଗୋଟାଏ ସନ୍ଦେହର କାଳିମା ସମସ୍ତ ସଭ୍ୟ ଜାତିକୁ ବିବ୍ରତ କରି ପକାଇଲାଣି; ଶକ୍ତିମତ୍ତାରେ ପ୍ରବଳ ଶକ୍ତିମାନେ ସେମାନଙ୍କର ସ୍ୱାର୍ଥରକ୍ଷା ଲାଗି ସତର୍କ ହେଲେଣି । ଯେତେ ଦିନଯାଏ ପ୍ରବଳ ଦୁର୍ବଳ ଉପରେ ଆଧିପତ୍ୟ ବିସ୍ତାର କରିବାକୁ ସୁଖ ଅନୁଭବ କରୁଥିବ, ସେତେ ଦିନଯାଏ ହିଂସା ପ୍ରକାଶ୍ୟ କିମ୍ବା ପ୍ରଚ୍ଛନ୍ନ ଭାବରେ ରକ୍ତପାତ ପାଇଁ ଉତ୍ତେଜନା ଦେବ । ଅନେକ ସମୟରେ ମନୁଷ୍ୟର ଅବଲମ୍ବିତ ଧର୍ମ ଓ ସାମାଜିକ ପ୍ରଥା ଜାତୀୟତାକୁ ସ୍ୱତନ୍ତ୍ର ରୂପରେ ଗଢ଼ିଥାଏ । ଏହି ସ୍ୱତନ୍ତ୍ରତା ଯେନ ଗୋଟାଏ ଜାତିର ଦୃଷ୍ଟି ଅପର ଅପେକ୍ଷା ସଂକୀର୍ଣ୍ଣ କିମ୍ବା ଉଦାର ହୁଏ । ଉପର୍ଯ୍ୟୁକ୍ତ ବ୍ୟବଧାନ ଅନୁସାରେ ଭାରତୀୟର ଯେଉଁ ପାର୍ଥକ୍ୟ ରହିଅଛି, ସେଥିରେ ଅନ୍ୟ ଜାତିମାନଙ୍କର ନିଜସ୍ୱ କରିନେବାର କିଛି ନାହିଁ କହିଲେ ଚଳେ । ଭାରତ ଯେପରି ଅହିଂସା-ବ୍ରତ ପାଳନ କରିବାକୁ ସମର୍ଥ, ତାହା ଅନ୍ୟମାନଙ୍କ ପକ୍ଷରେ ସମ୍ଭବପର ନୁହେଁ । ଧର୍ମର ଅବନତି ଘଟିବାରୁ ଭାରତୀୟ ଗୋଟାଏ ରାସ୍ତା ଅନୁସରଣ କରି ଆଜିଯାଏ ଅଗ୍ରସର ହୋଇଥିଲା; ଅହିଂସା ନାମରେ ଭୀରୁତାକୁ ଆଶ୍ରୟ କରିଥିଲା । ଅହିଂସାକୁ ଜାତୀୟ ଜୀବନର ଲକ୍ଷ୍ୟ ସ୍ୱରୂପ ଧରିବାଦ୍ୱାରା ମାନବିକତାର ଶ୍ରେଷ୍ଠ ନିଦର୍ଶନ ମିଳେ ବୋଲି ସେ ଭୁଲିଯାଇଥିଲା । ପତିତ ଅବସ୍ଥାରୁ ହଠାତ୍ ମହତ୍ ଆଦର୍ଶ ଅନୁସରଣ କରିବା କଷ୍ଟକର ହୁଏ, ଚରିତ୍ରହୀନତା ଏ ପଥରେ ବାଧା ଦିଏ । ଆଦର୍ଶର ଅନୁଭବରେ ଯେଉଁ ଜାଗରଣ ହୁଏ, ତାହା ଶତ ବାଧା ଏଡ଼ି ପୁଣି ପୂର୍ବର ଲୁପ୍ତ ଗୌରବ ଉଦ୍ଧାର କରେ । ଭାରତର ଦିନ ଆସୁଛି, ଯେତେବେଳେ ତାର ଆଦର୍ଶ ଜଗତ ସମକ୍ଷରେ ଆଦରଣୀୟ ହେବ ଏବଂ ବିଶ୍ୱବାସୀ ଭାରତରୁ ଜ୍ଞାନାଲୋକ ପାଇ ନିଜକୁ ଧନ୍ୟ ମନେ କରିବେ ।

ପାର୍ଥିବ ବିଷୟମାନଙ୍କରେ ସର୍ବଦା ଆକୃଷ୍ଟ ହେଲେ ମନୋବୃତ୍ତିଗୁଡ଼ିକ ଗୋଟାଏ ଅସ୍ଥାୟୀ ମାର୍ଗରେ ଧାବିତ ହୁଅନ୍ତି । ସାମୟିକ ସୁଖସ୍ୱାଚ୍ଛନ୍ଦ୍ୟ ଜୀବନର ପ୍ରଧାନ ଉଦ୍ଦେଶ୍ୟ ହୁଏ । ସାଂସାରିକ ଶ୍ରୀବୃଦ୍ଧି ସକାଶେ ପ୍ରାଣର ଆକାଙ୍‌କ୍ଷା ପ୍ରବଳ ବେଗରେ ବଢ଼ିଉଠେ । ବସ୍ତୁ-ମୋହ ମନକୁ ସର୍ବଦା ଟାଣି ରଖେ । ଆଶାପାଶ ନିତ୍ୟ ନୂତନ କଳ୍ପନା-ସୌଧ ସୃଷ୍ଟି କରେ । ମନୁଷ୍ୟତାର ସୁଲଭ ସହଚର ଦୁର୍ବଳତାକୁ ସୁଦୃଢ଼ରୂପେ ଧରିରଖେ । ଗୋଟାଏ କୃତ୍ରିମ ଆକର୍ଷଣ ନିକଟରେ ସେ ନିଜକୁ ହଜାଇଦିଏ । ମନୁଷ୍ୟତ୍ୱର ପରିଣତି କେବଳ ଜୀବତ୍ୱରେ ପର୍ଯ୍ୟବସିତ ହୁଏ, ଏହି ଅବସ୍ଥାରେ ଯେଉଁ ଶକ୍ତିସବୁ ଉନ୍ମେଷିତ ହୁଅନ୍ତି, ସେମାନଙ୍କର ସୀମା କ୍ଷୁଦ୍ର ପରିସର ମଧ୍ୟରେ ଆବଦ୍ଧ ଥାଏ । ପ୍ରାରବ୍ଧ କିମ୍ବା ସଞ୍ଚିତ କର୍ମଫଳ ପ୍ରତି ମନୁଷ୍ୟ ଦୃଷ୍ଟି ଦିଏ ନାହିଁ । ନିଜ ଉପରେ ସମ୍ପୂର୍ଣ୍ଣ ନିର୍ଭର କରି ଏକ ବିଶାଳ ଯଶ ଅର୍ଜନ କରିବି ବୋଲି ସେ ଅଗ୍ରସର ହୁଏ । ଅଧ୍ୟବସାୟ ବଳରେ ସବୁ ବାଧା ଦୂର କରିବା ବିଶ୍ୱାସ ତା ମନରେ ଦୃଢ଼ୀଭୂତ ହୁଏ । ପାର୍ଥିବ କାର୍ଯ୍ୟ ସାଧନଦ୍ୱାରା ଅହଙ୍କାର ଓ ଦର୍ପ ମନରେ ଆବିଳତା ସଞ୍ଚୟ କରି ମାନବର ଦୃଷ୍ଟି ସମ୍ମୁଖରେ କେତେ ମନୋମୋହକାରୀ ଚିତ୍ର ଆଙ୍କି ଦିଏ । ହୃଦୟର ଆବେଗରେ ମନୁଷ୍ୟ ସେମାନଙ୍କୁ ଅନୁସରଣ କରେ ଗୋଟାଏ ବାସ୍ତବ ରାଜ୍ୟ ସୃଷ୍ଟି କରିବା ପାଇଁ । ଏହି ପ୍ରବଳ ଆକାଙ୍‌କ୍ଷା ତାକୁ ସତ୍ୟସନ୍ଧାନ କାର୍ଯ୍ୟରୁ ବିରତ କରାଏ । ନିଜ ଈପ୍ସିତ ମାର୍ଗ ଅବଲମ୍ବନ କରିବାକୁ ଯାଇ ସେ ବଡ଼ ସ୍ୱାର୍ଥପର ହୋଇଯାଏ । ଅନ୍ୟର ଅନିଷ୍ଟ ସାଧନଦ୍ୱାରା ନିଜର ତୃପ୍ତିଲାଭ କରିବା ତା ପକ୍ଷରେ ଗୌରବଜନକ ହୁଏ । ଭାରତର ଅତୀତ ଇତିହାସ ଏହାର ପ୍ରଧାନ ସାକ୍ଷୀ । ଯେତେଥର ଭାରତ ଲୁବ୍‌ଧକର ହିଂସା ପ୍ରଣୋଦିତ କାର୍ଯ୍ୟରେ ବିଚଳିତ ହୋଇଛି, ସେତେଥର ତାର ଆଭ୍ୟନ୍ତରିକ ଅବସ୍ଥାରେ ଘୋର ପରିବର୍ତ୍ତନ ଆସିଛି । ହତ୍ୟା ଓ ଅନ୍ୟାନ୍ୟ ପୈଶାଚିକ କାର୍ଯ୍ୟମାନଙ୍କର ପରିଣତି ମଧ୍ୟ ପ୍ରମାଣିତ ହୋଇଅଛି । ଔରଙ୍ଗଜେବ୍‌ଙ୍କର କୁଟିଳ ଓ ସଂକୀର୍ଣ୍ଣ ନୀତି ପରିବର୍ତ୍ତନରେ ବିଶାଳ ମୋଗଲ ରାଜ୍ୟର ପତନ ଆରବ୍‌ଧ ହେଲା । ତାଙ୍କ ପୂର୍ବବର୍ତ୍ତୀ ସମ୍ରାଟ ଆକବରଙ୍କ ସାମ୍ୟନୀତି ହିନ୍ଦୁ ଓ ମୁସଲମାନମାନଙ୍କ ମଧ୍ୟରେ ଯେଉଁ ମୈତ୍ରୀ ସ୍ଥାପନ କରିଥିଲା, ତାହା ଆସ୍ତେ ଆସ୍ତେ ଦୂର ହୋଇଗଲା । ଭାରତର ଜାତୀୟତା ଭିନ୍ନ ଆକାର ଧାରଣ କଲା । ବିଦ୍ୱେଷ ଭାବ ଉଭୟ ହିନ୍ଦୁ ଓ ମୁସଲମାନ ହୃଦୟକୁ ଆଚ୍ଛନ୍ନ କରି ପକାଇଲା । ଧର୍ମର ଦୋହାଇ ଦେଇ ଯେଉଁପାର୍ଥକ୍ୟ ସୃଷ୍ଟି କରାଗଲା, ତଦ୍ଦ୍ୱାରା ଭାରତ ହୀନବଳ ହୋଇପଡ଼ିଲା । ରାଜଶକ୍ତିକୁ ଅବଜ୍ଞା କରିବା ପାଇଁ ହିନ୍ଦୁ ତିଳେମାତ୍ର କୁଣ୍ଠାବୋଧ କଲା ନାହିଁ । ଅତ୍ୟାଚାର ଓ ଅପମାନ ଭୋଗ କରି ହିନ୍ଦୁ ପ୍ରତିହିଂସାର ଆଶ୍ରୟ ନେଲା । ଯେ ବିଷ ଭାରତ ବକ୍ଷରେ ସଞ୍ଚାରିତ ହେଲା, ତାହାର କ୍ରିୟା ଆଜି ସୁଦ୍ଧା ଦେଖା ଦେଉଛି । ଭାରତ କେବେ ସେ ବିଷରୁ ନିଷ୍କୃତି ପାଇବ, ତାହା ସହଜରେ କହିହେବ ନାହିଁ ।

ଶାସନଯନ୍ତ୍ରର ପରିଚାଳନା ଉପରେ ଦେଶର ସାମାଜିକ ଅବସ୍ଥା ନିର୍ଭର କରେ । ସାମାଜିକ ଉନ୍ନତିରେ ସମସ୍ତ ଦେଶର କଲ୍ୟାଣ ଓ ଶାନ୍ତି ନିହିତ ଥାଏ । ସେଥିପ୍ରତି ଉଦାସୀନ ହେଲେ ଅନୁଦାର ଭାବ କ୍ରମଶଃ ସଞ୍ଚିତ ହୋଇ ସ୍ୱଦେଶ-ପ୍ରୀତିକୁ ମନୁଷ୍ୟ ମନରୁ ଅନ୍ତର କରାଏ । ତେଣୁ ତାର ସ୍ୱାର୍ଥସଂଶ୍ଳିଷ୍ଟ ଅବସନ୍ନ ହୃଦୟ ଜାତୀୟ ବିପାକରେ କଷ୍ଟ ଅନୁଭବ କରେ ନାହିଁ ।

କେବଳ ନିଜର କିମ୍ବା ସମ୍ପର୍କୀୟ କେତେଗୁଡ଼ିଏ ଲୋକଙ୍କର ସ୍ୱାଚ୍ଛନ୍ଦ୍ୟ ଦେଖିଲେ ସେ ଯଥେଷ୍ଟ ଆନନ୍ଦ ପାଏ । ଏହି ଆନନ୍ଦରେ ହିଂସା-ଭାବ ଆତ୍ମଗୋପନ କରିଥାଏ । ସ୍ୱୀୟ ପରିଜନମାନଙ୍କର ମଙ୍ଗଳ କରିବାକୁ ଯାଇ ମନୁଷ୍ୟ ସାଧାରଣତଃ ଯେଉଁ ଉତ୍ତେଜନାର ବଶବର୍ତ୍ତୀ ହୋଇଥାଏ, ତାହା କାମନାର ଗୋଟାଏ ଅଙ୍ଗ । କାମ ଓ ହିଂସାର ସମ୍ବନ୍ଧ ବଡ଼ ଘନିଷ୍ଠ । ଗୋଟିକର ଉଦ୍ରେକ ହେଲେ ଅନ୍ୟଟିର ଆବିର୍ଭାବ ଅବଶ୍ୟମ୍ଭାବୀ ହୋଇପଡ଼େ । ମନୁଷ୍ୟ ହୃଦୟରୁ ଉପର୍ଯ୍ୟୁକ୍ତ ପ୍ରବୃତ୍ତି ଦୁଇଟିଙ୍କୁ ସମୂଳେ ନଷ୍ଟ କରିବା ଯେ କୌଣସି ଉନ୍ନତ ଶାସକ କିମ୍ବା ରାଜନୀତିଜ୍ଞ ପକ୍ଷରେ ସମ୍ଭବପର ନୁହେଁ । ଦେବତାର ଆସନ ନ ପାଇବା ଯାଏ ମନୁଷ୍ୟ ହିଂସା, ଲୋଭ ପ୍ରଭୃତି ପ୍ରବୃତ୍ତିମାନଙ୍କର ଅଧୀନ ରହିବ । ଅବଶ୍ୟ ଉପଯୁକ୍ତ ଶିକ୍ଷାପ୍ରଣାଳୀରେ ପ୍ରବୃତ୍ତିମାନେ ମାର୍ଜିତ ହୋଇପାରନ୍ତି; କିନ୍ତୁ ସେମାନଙ୍କର ସମ୍ପୂର୍ଣ୍ଣ ଲୋପସାଧନ ପାଇଁ ମାନବିକତାକୁ ସ୍ୱତନ୍ତ୍ର ମାର୍ଗରେ ଚାଳିତ କରିବାକୁ ପଡ଼ିବ, ଗୋଟିଏ ଅପାର୍ଥିବ ଆଦର୍ଶରେ ମାନବ ଜାତି ଅନୁପ୍ରାଣିତ ହେବ । ତାର ଚିରପୋଷିତ ଆକାଙ୍‌କ୍ଷା ନୈରାଶ୍ୟରେ ପରିଣତ ହେଲେ ସୁଦ୍ଧା ସେ ସେଥିପ୍ରତି ଦୃକ୍‌ପାତ କରିବ ନାହିଁ । ସହସ୍ର ନିର୍ଯ୍ୟାତନା ଭୋଗ କରି ସେ କୌଣସି ପ୍ରତିକାର ଲୋଡ଼ିବ ନାହିଁ; ଆତ୍ମପର ଜ୍ଞାନ ଲୋପ ହେତୁ ନିଜର କିମ୍ବା ଅପରର ଅନିଷ୍ଟ ସମାନ ମନେ କରିବ । ଏପରି ଅବସ୍ଥା ମନୁଷ୍ୟତ୍ୱର ଚରମ ବିକାଶ ହୋଇପାରେ; କିନ୍ତୁ ସମସ୍ତ ଉପଯୋଗୀ ନ ହେବାଯାଏ ସମସ୍ତ ମାନବ ଜାତିକୁ ଏ ଦିଗରେ ଅଗ୍ରସର କରାଇବାଦ୍ୱାରା କୌଣସି ବିପଦ ଘଟିବା ଅସମ୍ଭବ ନୁହେଁ ।

ଜାତୀୟଭାବବିକାଶର ସମସ୍ତ ନିର୍ଣ୍ଣୟ କରିବା ବିଚକ୍ଷଣ ରାଜନୀତିଜ୍ଞଙ୍କ ପକ୍ଷରେ ସହଜ ହୋଇପାରେ । ସେ ଦେଶର ଅବସ୍ଥା ଦୃଷ୍ଟିରେ ସାମାଜିକ ଜୀବନକୁ ଭିନ୍ନ ମାର୍ଗରେ ଗଢ଼ି ପାରନ୍ତି । କିନ୍ତୁ ଯେଉଁ ଦେଶରେ ବହୁବିଧ ସମାଜ, ଧର୍ମ, ସଭ୍ୟତା ପ୍ରଭୃତି ସର୍ବଦା ସ୍ୱତନ୍ତ୍ରତା-ପ୍ରୟାସୀ ହୋଇ ବିଭିନ୍ନ ପନ୍ଥା ସୃଷ୍ଟି କରନ୍ତି, ସେଠାରେ ଏକତାର ମନ୍ତ୍ର ଜାତୀୟ ପ୍ରାଣରେ ଜାଗରିତ କରିବା ବଡ଼ କଷ୍ଟକର । ରାଜନୀତିଜ୍ଞଙ୍କର ସୁଚିନ୍ତା ଓ ଆଦର୍ଶ କିଛି ଦିନ ଦେଶବାସୀଙ୍କୁ ପ୍ରଭାବିତ କରି ପୂର୍ଣ୍ଣରୂପେ କାର୍ଯ୍ୟକାରୀ ନ ହେଲେ ଗୋଟାଏ ବିକାର ଜନ୍ମେ । ସେଥିରେ ଦେଶର ଉନ୍ନତି ଅପେକ୍ଷା ବେଶି ଅବନତି ଘଟେ; ଅବିଶ୍ୱାସର ଚିହ୍ନ କର୍ମକ୍ଷେତ୍ରରେ ଦେଖାଦିଏ । କେବଳ କେତେଗୁଡ଼ିଏ ନୀତିବାକ୍ୟ କିମ୍ବା ଆଦେଶ ପ୍ରଚାରିତ ହେଲେ ଦେଶର ଅଗ୍ରଗତିର ପରିଚୟ ମିଳେ ନାହିଁ । ଆତ୍ମବୋଧ ନ ଆସିଲେ ବାହ୍ୟ ଶୃଙ୍ଖଳା ସୃଷ୍ଟି କରି ଜାତୀୟ ଜୀବନର ଶକ୍ତି ପରୀକ୍ଷା କରିବା ଉଚିତ ନୁହେଁ । ଅନିଚ୍ଛାପୂର୍ବକ ଯେଉଁ ଆଦର୍ଶର ଅନୁସରଣ କରାଯାଏ, ତାକୁ ବେଶି ଦିନ ସ୍ଥାୟୀ କରିବା ଅସମ୍ଭବ ହୁଏ । ନିର୍ଜୀବ ଶରୀରକୁ କୃତ୍ରିମ ଉପାୟରେ ଚାଳନା କଲା ପରି ଅଜ୍ଞାନତାପୂର୍ଣ୍ଣ ଦେଶର ଜାଗରଣ କ୍ଷଣସ୍ଥାୟୀ । ମନର ସ୍ୱଚ୍ଛନ୍ଦ ଗତି ନ ଜନ୍ମିବା ଯାଏ ମନୁଷ୍ୟ ବନ୍ଧନ ଦଶାକୁ ସୁଦ୍ଧା କ୍ଷତିକର ମନେ କରେ ନାହିଁ । ଏହି ଦଶାର ପରିବର୍ତ୍ତନ ନ ଆଣି ଆଦର୍ଶ ଢଙ୍ଗରେ ଗଢ଼ି କରିବା ଉଚିତ ନୁହେଁ । ପ୍ରବଳ ଝଡ଼ର ବିରାମ ଘଟିଲେ ପ୍ରକୃତିର ଶାନ୍ତ ମୂର୍ତ୍ତି ସ୍ୱତଃ ପ୍ରକାଶିତ ହୁଏ । ହିଂସାଭାବର ଆଧିକ୍ୟବଶତଃ ମନୁଷ୍ୟ ଜାତି ମଧ୍ୟରେ ଯେ ବିଦ୍ରୋହର ବହ୍ନି ଜଳି ଉଠେ, ତାକୁ ନିର୍ବାପିତ କରିବା ସହଜ ନୁହେଁ । ଅଗ୍ନିର ଇନ୍ଧନ ନିଃଶେଷ ହେଲେ ପୁଣି ସାଧାରଣ ଅବସ୍ଥା ଆସେ, ଏହା ପ୍ରାକୃତିକ ନିୟମ ।

ହିଂସା ଅଭୟର ପ୍ରତିଦ୍ୱନ୍ଦ୍ୱୀ । ପଶୁରାଜ ସିଂହ ଓ ଦୁର୍ଦ୍ଦମନୀୟ ଶତ୍ରୁକୁ ମନୁଷ୍ୟ ହିଂସା ପ୍ରଭାବରେ ଅଧୀନ କରେ ନାହିଁ । ହିଂସାତ୍ମକ ନୀତିରେ ଦୁର୍ବଳତା ପ୍ରଚ୍ଛନ୍ନ ଥାଏ । କୌଣସି ଆକସ୍ମିକ ଦୁର୍ଘଟଣାରେ ଆତ୍ମବଳର ଅଭାବ ଏଥିର ପ୍ରମାଣ ଦିଏ । ପିଶାଚ ପୈଶାଚିକ ବୃତ୍ତି ଆଚରଣ କରି ସାମୟିକ ତୃପ୍ତି ଅନୁଭବ କରେ । ନରରକ୍ତରେ ପୃଥିବୀ ରଞ୍ଜିତ ହେଲେ ତାର ବିଜୟୋଲ୍ଲାସ ପ୍ରକାଶିତ ହୁଏ । ଦରିଦ୍ରର ଦୈନ୍ୟ, ମୁମୂର୍ଷୁର ଯନ୍ତ୍ରଣା ଓ ଅସହାୟର ନିର୍ଯ୍ୟାତନାରେ ସେ ଆନନ୍ଦ ପାଏ । ପଶୁବଳ ପ୍ରବଳ ହୋଇ ତାର ଅନ୍ତର୍ନିହିତ ଦୈବୀ ସମ୍ପଦମାନଙ୍କୁ ଆଚ୍ଛନ୍ନ କରିପକାଏ । ସେ ଦେଖେ, ଗୋଟାଏ ଆସୁରୀ ଚିତ୍ର, ଯାହା ନିକଟରେ ନିଜତ୍ୱ ରକ୍ଷା କରିବାକୁ ସେ ସ୍ୱଭାବବିରୁଦ୍ଧ ମନେ କରେ । ଅଦମ୍ୟ ହିଂସାଭାବକୁ ସତେଜ କରି ଗୋଟାଏ ପ୍ରଳୟକାଣ୍ଡ କରିବା ତା ଜୀବନର ଲକ୍ଷ୍ୟ ହୁଏ । ଦିନେ ଚଙ୍ଗିଜ୍‌ଖାଁ ତୈମୁର ନରଶୋଣିତରେ ଭାରତବର୍ଷ ପ୍ଲାବିତ କରି ଯେଉଁ କଳଙ୍କ ରଖିଦେଇ ଗଲେ, ତାହା ଭାରତବାସୀ କଦାପି ବିସ୍ମୃତ ହେବେ ନାହିଁ ।

ହିଂସା ପ୍ରତିହିଂସାର ବୀଜ ରୋପଣ କରେ । ନିଷ୍ପୀଡ଼ିତ ଜାତିର ଭାବୀ ବଂଶଧରମାନେ ଅତୀତର ଅତ୍ୟାଚାରକୁ ସ୍ମରଣ କରି ଯେ ପ୍ରତିକାର ବିଧାନ କରନ୍ତି, ତାହା ରୋପିତ ବୃକ୍ଷର ଫଳ ସ୍ୱରୂପ । ସଂସାରରେ ଅନ୍ୟାୟ ଓ ଅତ୍ୟାଚାର କଲେ ସେହି ଦୁଷ୍କୃତିର ଫଳ ନିଶ୍ଚୟ ଭୋଗ କରିବାକୁ ପଡ଼େ । ନିଜେ ନ ଭୋଗିଲେ ସୁଦ୍ଧା ନିଜର ଭବିଷ୍ୟତ ବଂଶଧରମାନଙ୍କୁ ସେହି ପାପର ପ୍ରାୟଶ୍ଚିତ୍ତ କରିବାକୁ ହୁଏ । ହିଂସାର ବିକଟ ମୂର୍ତ୍ତି ଯେତେବେଳେ ପ୍ରତିହିଂସାରେ ଅନ୍ୟ ଆକାରରେ ଦେଖାଦିଏ, ସେତେବେଳେ ହିଂସ୍ରକର ଗୋଟାଏ କ୍ଷିପ୍ତତା ଆସେ, ଚତୁର୍ଦ୍ଦିଗରୁ ସଙ୍କଟ ମାଡ଼ି ଆସିଲା ପରି ଜଣାଯାଏ । ସେ ମନେ କରେ, ସର୍ବଦା ଯେପରି ଗୋଟାଏ ଲେଲିହମାନ ଜିହ୍ୱା ତା ପ୍ରାଣକୁ ଗ୍ରାସ କରିବାକୁ ଧାଉଁଛି । ନରକଗାମୀ ହେଲେ ସୁଦ୍ଧା ସେ ମୁହୂର୍ତ୍ତକ ପାଇଁ ଶାନ୍ତି ପାଏ ନାହିଁ । ପ୍ରାଚୀନ ଭାରତୀୟମାନେ ଧର୍ମନୀତି ପ୍ରଚଳନ କଲାବେଳେ ହିଂସାର ମାରାତ୍ମକତା ଅନୁଭବ କରି ଯେଉଁ ସାମାଜିକତାର ସୂତ୍ରପାତ କଲେ, ତାହା ଅନ୍ୟ ଜାତିମାନଙ୍କର ଦୁର୍ଜ୍ଞେୟ । ଭାରତର ବର୍ତ୍ତମାନ ପତିତ ଅବସ୍ଥା ପ୍ରତି କଟାକ୍ଷ କରି ଯେଉଁମାନେ ଭାରତୀୟ ଧର୍ମକୁ ଉପହାସ କରନ୍ତି, ସେମାନଙ୍କର ପରୀକ୍ଷାର ଦିନ ଆସୁଛି ।

# ସମର ପ୍ରସଙ୍ଗ

ମନୁଷ୍ୟ ଜୀବନଟା ଗୋଟାଏ ପ୍ରବଳ ସଂଗ୍ରାମର ନାମାନ୍ତର ମାତ୍ର । ଆୟର୍ଲାଣ୍ଡର ସୁନାମଧନ୍ୟ ମନସ୍ୱୀ Mac Swiney ଜୀବନର ଘଟଣାମାନଙ୍କୁ ଯୁଦ୍ଧକ୍ଷେତ୍ରର ଭୀଷଣ ଦୃଶ୍ୟ ସଙ୍ଗେ ସମାନ ଦେଖିଛନ୍ତି । ସେ କହନ୍ତି—"Life is a battlefield—a great battle field and any hour in the day a man's flag may be challenged and he must stand and justify it." କେତେବେଳେ କି ଭାବରେ ଜୀବନର ଗତି ନିୟନ୍ତ୍ରିତ ହୋଇ କର୍ମକ୍ଷେତ୍ରରେ ଗୋଟାଏ ବିପ୍ଳବ ସୃଷ୍ଟି କରେ ଏବଂ ସେଥିରେ ମନୁଷ୍ୟ ସଂଶ୍ଳିଷ୍ଟ ଥାଇ ନିଜର ଜୟ ପରାଜୟ ସ୍ୱୀକାର କରେ, ତାହା ସାଧାରଣ ଲୋକ ସହଜରେ ଧାରଣା କରିପାରେ ନାହିଁ । ପାର୍ଥିବ କାର୍ଯ୍ୟ ସମ୍ପାଦନଦ୍ୱାରା ପ୍ରତ୍ୟେକେ ନିଜ ନିଜର କର୍ତ୍ତବ୍ୟ ପାଳନ କରିଥାନ୍ତି । ବ୍ୟକ୍ତିବିଶେଷଙ୍କର ସ୍ୱାଧୀନ ମତାବଲମ୍ବନରେ କର୍ତ୍ତବ୍ୟର ପଥ ସ୍ଥିରୀକୃତ ହୁଏ ନାହିଁ । ବିବିଧ କର୍ମପନ୍ଥା ଦୃଷ୍ଟିରେ କର୍ତ୍ତବ୍ୟର ଭିନ୍ନତା ବୋଧ ହେଲେ ସୁଦ୍ଧା ତାର ସ୍ୱରୂପ ଗୋଟାଏ ବୋଲି ଧରିବାକୁ ହେବ । ରାଜନୀତିଜ୍ଞ, ଧର୍ମପ୍ରଚାରକ, ସୈନ୍ୟାଧ୍ୟକ୍ଷ, ବୈଜ୍ଞାନିକ ପ୍ରଭୃତିଙ୍କ ଠାରୁ ଆରମ୍ଭ କରି ରାଜମାର୍ଗର ସାମାନ୍ୟ ପ୍ରହରୀ ପର୍ଯ୍ୟନ୍ତ ସମସ୍ତେ ଏକ କର୍ମସୂତ୍ରରେ ଆବଦ୍ଧ । ଜଣକର କର୍ମ-ପରାଙ୍ମୁଖତା ଅନ୍ୟର କର୍ମକୁଶଳତା ଦ୍ୱାରା ଦୂର ହୁଏ ନାହିଁ । ଯନ୍ତ୍ରର ପ୍ରତ୍ୟେକ ଅଙ୍ଗକୁ କାର୍ଯ୍ୟକାରୀ କରିବାକୁ ଯେପରି ଗୋଟିଏ ଶକ୍ତି ଲୋଡ଼ା ହୁଏ, ସେହିପରି ବିଭିନ୍ନ ଶ୍ରେଣୀର କର୍ମୀମାନେ ନିର୍ଦ୍ଦିଷ୍ଟ କର୍ମସମ୍ପାଦନ ଦ୍ୱାରା ଏକ ଶକ୍ତିର ଭିନ୍ନତା ପ୍ରତିପାଦନ କରନ୍ତି । କର୍ମଜଗତରେ ସମସ୍ତଙ୍କର ଆସନ ସମାନ ନୁହେଁ । ଯେଉଁ ବୈଶିଷ୍ଟ୍ୟ ଅଛି, ତଦ୍ଦ୍ୱାରା ଜଗତର ମଙ୍ଗଳ ଓ ଧର୍ମ ପାଳିତ ହୁଏ ।

ହୃଦୟର କୋମଳତା ସାଧାରଣତଃ କର୍ମସମ୍ପାଦନରେ ବାଧା ଦେଇଥାଏ । ସୈନିକ ସମ୍ମୁଖ ସମରରେ ଅଗ୍ରସର ହେଲାବେଳେ ସଂସାରର ସବୁ ମାୟାମମତା ଭୁଲିଯାଇଥାଏ; କିନ୍ତୁ ଗୃହତ୍ୟାଗ କରି ସମରକ୍ଷେତ୍ରକୁ ଆସିଲା ବେଳେ ତାର ସେ ଭାବ ଆସି ନ ଥାଏ । ତାର ପ୍ରତି ପଦକ୍ଷେପରେ ଗୋଟାଏ ମର୍ମନ୍ତୁଦ ଭାବ ଫୁଟି ଉଠୁଥାଏ । ସେ ଦେଖୁଥାଏ ପ୍ରେୟସୀ ଓ ସନ୍ତାନମାନଙ୍କର କରୁଣ ଚିତ୍ର ! କଠୋର କର୍ତ୍ତବ୍ୟ କିଛି ମାନେ ନାହିଁ । ଅନ୍ତରର ଦେବତା ତାକୁ ଇଙ୍ଗିତ ଦିଅନ୍ତି, ସବୁ ଭୁଲିଯିବା ପାଇଁ । ଦିନେ ବୀରାଗ୍ରଣୀ ଅର୍ଜୁନ ଭଗବାନ ଶ୍ରୀକୃଷ୍ଣଙ୍କର ଏହି ବାଣୀ ଶୁଣିଥିଲେ । ମନୁଷ୍ୟର ସ୍ୱାଭାବିକ ସ୍ନେହପ୍ରବଣତା କର୍ତ୍ତବ୍ୟ ନିକଟରେ ନିତାନ୍ତ ତୁଚ୍ଛ ଓ ପରିହାର୍ଯ୍ୟ । କେବଳ ଖ୍ୟାତିଲାଭ ଉଦ୍ଦେଶ୍ୟରେ କର୍ତ୍ତବ୍ୟ ପାଳିବାକୁ ହୁଏ ନାହିଁ । ନିଜର ବିବେକବାଣୀ ଶୁଣି ପାରିଲେ କର୍ତ୍ତବ୍ୟବୋଧ ଜନ୍ମେ । ଶ୍ରୀକୃଷ୍ଣଙ୍କର ଅଜେୟ ଶକ୍ତି ନିକଟରେ କୋମଳତାର ସ୍ଥାନ ନ ଥିଲା । ସେ ପାର୍ଥିବ ବସ୍ତୁକୁ ଶ୍ରେୟଜ୍ଞାନ ନ କରି ସୁଦ୍ଧା ନୀତିରକ୍ଷାକୁ ମାନବଜୀବନର ମୁଖ୍ୟ ଉଦ୍ଦେଶ୍ୟ ବୋଲି ଗ୍ରହଣ କରୁଥିଲେ । ଦୁର୍ଯ୍ୟୋଧନ କୃଷ୍ଣ ସୈନ୍ୟମାନଙ୍କୁ ଓ ଅର୍ଜୁନ ସ୍ୱୟଂ ଶ୍ରୀକୃଷ୍ଣଙ୍କୁ ପରସ୍ପର ପକ୍ଷ ସମର୍ଥନ ପାଇଁ ବରଣ କରିଥିଲେ । ଅର୍ଜୁନ ଶେଷରେ ଜୟୀ ହେଲେ । ନୀତିବଳର ଶ୍ରେଷ୍ଠତ୍ୱ ପ୍ରମାଣିତ ହେଲା । ଫଳାକାଙ୍କ୍ଷା ନ ରଖି ସ୍ୱଧର୍ମ ପାଳନ କରିବା ପାଇଁ ଶ୍ରୀକୃଷ୍ଣଙ୍କର ଯେଉଁ ଆଦେଶ ହେଲା, ତାକୁ ଅର୍ଜୁନ ଗ୍ରହଣ କରି ସୁସ୍ଥିର ହେଲେ । ଯୁଦ୍ଧକ୍ଷେତ୍ରରେ ଗୁରୁଜ୍ଞାତିବଧର ଗ୍ଳାନି ତାଙ୍କ ମନରୁ ବିଦୂରିତ ହେଲା । ଅନେକ ସମୟରେ ମନର ଦୁର୍ବଳତା କର୍ମୀକୁ ଅଭିପ୍ସିତ ମାର୍ଗରୁ ଅନ୍ତର କରାଇଦିଏ । ମନୁଷ୍ୟ ସ୍ଥିର କରି ପାରେ ନାହିଁ, କେଉଁ ଦଗରେ ଗତି କରି ସେ ନିଜ ଗନ୍ତବ୍ୟ ସ୍ଥଳରେ ପହଞ୍ଚିବ । ଗୋଟାଏ ମୋହର ଆବରଣ ତା ମନକୁ ଆଚ୍ଛନ୍ନ କରି ପକାଏ । ଭିନ୍ନ ଚିତ୍ରରେ କର୍ତ୍ତବ୍ୟ ଦେଖାଦିଏ । ଏହି ସନ୍ଧିସ୍ଥଳରେ କର୍ମୀ ସ୍ୱଧର୍ମ ବିଚାର କରିବାପାଇଁ ପ୍ରସ୍ତୁତ ହେବା ଆବଶ୍ୟକ । ଯୁଦ୍ଧର ଅସାରତା ଉପଲବ୍ଧି କରି ଅର୍ଜୁନ ଯେତେବେଳେ ତାଙ୍କ ସ୍ୱଧର୍ମ ଭୁଲିଗଲେ, ସେତେବେଳେ ଶ୍ରୀକୃଷ୍ଣ ତାଙ୍କୁ

ସ୍ୱାଭାବିକ ଗୁଣଭେଦରେ କର୍ମୀର ଭିନ୍ନତା ବୁଝାଇ ଯୁଦ୍ଧରେ ପ୍ରବୃତ୍ତ ହେବା ପାଇଁ ଆଦେଶ ଦେଲେ । ଦୟା ଓ ସ୍ନେହର ନିବନ୍ଧନ ହୃଦୟରେ ଯେଉଁ ଛାୟା ପକାଏ, ତାକୁ ସ୍ପଷ୍ଟଭାବରେ ଦେଖିନେବା ଉଚିତ । ଈଶ୍ୱରଙ୍କ ଅନନ୍ତ ସତ୍ତାରେ ଦୃଢ଼ ବିଶ୍ୱାସ ରଖି ମନୁଷ୍ୟ ଅଗ୍ରସର ହେଲେ କର୍ମପଥର ପ୍ରତିବନ୍ଧକସବୁ ଅତିକ୍ରମ କରିବା ପାଇଁ ସେ କଷ୍ଟ ଅନୁଭବ କରେ ନାହିଁ ।

ଧର୍ମଜ୍ଞାନ ନ ଜନ୍ମିଲେ କର୍ତ୍ତବ୍ୟ ସମ୍ବନ୍ଧରେ ସ୍ଥିର ହୁଏ ନାହିଁ । ଯୁଧିଷ୍ଠିରଙ୍କୁ ଯକ୍ଷ ଅଜ୍ଞାନତା ବିଷୟରେ ପ୍ରଶ୍ନ କଲାବେଳେ ସେ ଉତ୍ତର ଦେଲେ ଯେ, ନିଜର ଧର୍ମ ନ ଜାଣିବା ଲୋକକୁ ଅଜ୍ଞାନ କୁହାଯାଏ । ଆଜି ଭାରତର ଅଧିକାଂଶ ଲୋକ ସ୍ୱଧର୍ମର ମର୍ମ ବୁଝି ନାହାନ୍ତି । ସେଥିଯୋଗୁଁ ଏତେ ଅଶାନ୍ତି ଓ ଉପଦ୍ରବ ଭୋଗ କରିବାକୁ ପଡ଼ୁଛି । ଗୋଟାଏ ଦାସତ୍ୱ ଭାବରେ ଆମ୍ଭେମାନେ ପ୍ରଣୋଦିତ ହୋଇ ନିଜ ଜାତିର ଗୌରବମୟ ଆଦର୍ଶକୁ ଭୁଲିଯାଇଅଛୁଁ । ସ୍ୱାଧୀନ ମତ ଅନୁସରଣ କରି ନିଜତ୍ୱ ରକ୍ଷା କରିବା ଭାରତବାସୀ ପକ୍ଷରେ ବର୍ତ୍ତମାନ ଅସମ୍ଭବ କହିଲେ ଚଳେ । କେବଳ ଯୁଦ୍ଧକ୍ଷେତ୍ରରେ ଅବତୀର୍ଣ୍ଣ ହେଲେ ବୀରତ୍ୱର ପରିଚୟ ମିଳେ ନାହିଁ; ଜାତୀୟ ଜୀବନର ଅବରୁଦ୍ଧ ଗତିକୁ ସ୍ୱଚ୍ଛନ୍ଦ କରିପାରିଲେ ବିଜୟୀ ବୀରର ନିଦର୍ଶନ ମିଳିପାରେ । General Gordon ଏକାଧାରରେ ଋଷି ଓ ସୈନିକ ଥିଲେ । ସେ କହିଛନ୍ତି—"A true soldier can do no more than his duty." ସଂସାର କ୍ଷେତ୍ରରେ ନିଜର ଅଭିପ୍ରେତ କାର୍ଯ୍ୟଟି ସମ୍ପାଦନ କରି ପାରିଲେ ପ୍ରକୃତ ଯୋଦ୍ଧାର ସ୍ଥାନ ଅଧିକାର କରାଯାଏ । ଆର୍ଯ୍ୟଧର୍ମର ପତନ ଦେଖି ଶ୍ରୀକୃଷ୍ଣ ପାଣ୍ଡବମାନଙ୍କୁ ମହାଭାରତ ଯୁଦ୍ଧରେ ସମୁତ୍ସାହିତ କରିଥିଲେ । କେବଳ ସେତିକି ନୁହେଁ, ଯୁଗେ ଯୁଗେ ଧର୍ମର ପତନ ଓ ମନୁଷ୍ୟ ଆଦର୍ଶଭ୍ରଷ୍ଟ ହେଲାବେଳେ ଭଗବାନ ଅବତାର ଗ୍ରହଣ କରିବେ ବୋଲି ଯେଉଁ ଆଶ୍ୱାସନା ଦେଇଛନ୍ତି, ତାକୁ ଭାରତୀୟ ବିଶ୍ୱାସ କରିବାକୁ ଆଜି ପଶ୍ଚାତ୍‌ପଦ ! ଦୁର୍ଗତି ଆସିଲେ ପ୍ରତ୍ୟେକ ଦେଶବାସୀର ଏପରି ଅବସ୍ଥା ହୋଇଥାଏ । ସମସ୍ତେ ଉତ୍‌ଥାନ ପତନ ନିୟମର ଅଧୀନ । ସ୍ୱାର୍ଥପରତା ଓ ଅଧର୍ମାଚରଣତା ବେଶି ଦିନ ତିଷ୍ଠି ପାରେ ନାହିଁ । ଅନ୍ୟାୟର ପୋଷକତା କରି ବେଶି ଦିନ ରାଜଶାସନ କରିବା କୌରବମାନଙ୍କ ପକ୍ଷରେ ଅସମ୍ଭବ ହୋଇଉଠିଥିଲା । ଆଜି ପୁଣି ପୃଥିବୀରେ ଯେଉଁମାନେ ରାଜନୀତି କ୍ଷେତ୍ରରେ ଖୁବ୍ ବିଚକ୍ଷଣତା ଦେଖାଇ ସ୍ୱାର୍ଥକୁ ପ୍ରଚ୍ଛନ୍ନ ରଖି ଦୁର୍ବଳମାନଙ୍କର ସର୍ବସ୍ୱ ଅପହରଣ କରୁଛନ୍ତି, ସେମାନଙ୍କୁ ମଧ୍ୟ କୌରବମାନଙ୍କ ଦଶା ଭୋଗ କରିବାକୁ ହେବ । ଉଭୟେ ଅତ୍ୟାଚାରୀ ଓ ଅତ୍ୟାଚାରିତ ସ୍ୱଧର୍ମ ପାଳନ କରିବାକୁ ଅସମର୍ଥ ହେବାରୁ ପୃଥିବୀରେ ବର୍ତ୍ତମାନ ମହାସଙ୍କଟ ଉପସ୍ଥିତ ହୋଇଅଛି । କୌଣସି ବିପ୍ଳବ ହେଲେ ତାକୁ ଯୁଗୋଚିତ ପରିବର୍ତ୍ତନର ସୂଚନା ବୋଲି ଧରିନେବା ପ୍ରତ୍ୟେକ ଚିନ୍ତାଶୀଳ ବ୍ୟକ୍ତିଙ୍କର କର୍ତ୍ତବ୍ୟ । କର୍ମଜଗତ୍ ଅଚଞ୍ଚଳ ରହିବ ନାହିଁ । ଭଲ ମନ୍ଦର ସମ୍ମିଶ୍ରଣରେ କର୍ମସୃଷ୍ଟି ଗଠିତ । କେବଳ ଗୋଟାଏ ଗୁଣ ଉପରେ ତାର ସ୍ଥାୟିତ୍ୱ ନିର୍ଭର କରେ ନାହିଁ । ବିଶେଷତଃ ମନ୍ଦ ଗୁଣର ପ୍ରାଧାନ୍ୟ ଯୋଗୁଁ ଜଗତର ଅହିତ ହୁଏ । ସେଥିପାଇଁ ସମର, ଦୁର୍ଭିକ୍ଷ ଓ ମଡ଼କଦ୍ୱାରା ଭଗବାନ ଜଗତରେ ଶାନ୍ତିସ୍ଥାପନ କରନ୍ତି । ମନୁଷ୍ୟ କେବଳ ଯନ୍ତ୍ରବିଶେଷ ପରି କାର୍ଯ୍ୟ କରେ । ବିଶ୍ୱନିୟନ୍ତା ସବୁ ନିୟନ୍ତ୍ରିତ କରନ୍ତି । ନୀରବ ରହିଲେ ସୁଦ୍ଧା ମନୁଷ୍ୟ କର୍ମଚକ୍ରରୁ ଅବ୍ୟାହତି ପାଇବ ନାହିଁ । ପ୍ରାକୃତିକ ଗୁଣାନୁସାରେ ତାକୁ ସାଂସାରିକ ଯେ କୌଣସି ମାର୍ଗ ଅବଲମ୍ବନ କରିବାକୁ ପଡ଼ିବ । ନିର୍ଲିପ୍ତ ଭଗବାନ ଲୋକଶିକ୍ଷା ପାଇଁ କର୍ମ କରନ୍ତି ବୋଲି ଗୀତା କହିଛନ୍ତି । Mr. Aldon's Huxley ହିନ୍ଦୁର ଆଧ୍ୟାତ୍ମିକତା ପ୍ରତି ଆକ୍ଷେପ କରି ଲେଖିଛନ୍ତି । ସେ କହନ୍ତି, ଜଳବାୟୁର ବିଶେଷତ୍ୱ ଯୋଗୁଁ ଭାରତବାସୀ ବେଶି ଆଧ୍ୟାତ୍ମିକ ଭାବାପନ୍ନ ହୁଅନ୍ତି ଓ ତଦ୍ଦ୍ୱାରା ଭାରତର ଅବନତି ଘଟିଅଛି । ଯୁଦ୍ଧବିଦ୍ୟାରେ ଭାରତୀୟ ଆଦୌ ମନ ବଳାଏ ନାହିଁ । ପ୍ରକୃତରେ ଦେଖିବାକୁ ଗଲେ ଭାରତର ଧର୍ମହୀନତା ତା ପତନର ମୂଳକାରଣ । ଗୀତା ଏହାର ଜ୍ୱଳନ୍ତ ଦୃଷ୍ଟାନ୍ତ । ସେହି ସର୍ବଶ୍ରେଷ୍ଠ ଧର୍ମଶାସ୍ତ୍ର ଯୁଦ୍ଧ କରିବା ପାଇଁ ଯେଉଁ ପ୍ରେରଣା ଦେଇଛି, ତାହା ପୃଥିବୀର ଅନ୍ୟାନ୍ୟ ଧର୍ମଶାସ୍ତ୍ରରେ ଦେଖିବାକୁ ବିରଳ ।

ଭାରତର ବର୍ତ୍ତମାନ ଦୁରବସ୍ଥା ସଙ୍ଗେ ଅତୀତର ମହିମାମୟ ଘଟଣାସବୁ ତୁଳନା କଲେ ଦେଖାଯାଏ, ଯେ ଭ୍ରମାତ୍ମକ କର୍ମତ୍ୟାଗ ଉପରେ ଧର୍ମର ମହତ୍ତ୍ୱ ସ୍ଥାପନ କରି ହିନ୍ଦୁ ଆଜି ଯେଉଁ ପଥରେ ଅଗ୍ରସର ହେଉଛି, ତାହା ତାର ଅବନତିର ପ୍ରଧାନ କାରଣ । ଗୀତା କହିଛନ୍ତି, ସାଂସାରିକ ବିଷୟରେ ମଗ୍ନ ରହିବାକୁ ହେବ ନାହିଁ । ଜୀବନର କ୍ଷଣଭଙ୍ଗୁରତା ପ୍ରତି ଲକ୍ଷ୍ୟ ନ ରଖି କର୍ମତତ୍ପର ହେବା ପ୍ରତ୍ୟେକ ମନୁଷ୍ୟର କର୍ତ୍ତବ୍ୟ । ଅନ୍ୟାୟୀ ଶତ୍ରୁ ନିକଟରେ ପଶ୍ଚାତ୍‌ପଦ ହେବା ହିନ୍ଦୁର ଧର୍ମ ନୁହେଁ ।

ଲୋକମାନେ ସାଧାରଣତଃ ଯୁଦ୍ଧର ମାରାତ୍ମକତା ଅନୁଭବ କରନ୍ତି । ସେମାନେ ମନେକରନ୍ତି ଯେ, ସମରାଗ୍ନି ଥରେ ଜଳି ଉଠିଲେ, ତାକୁ ନିର୍ବାପିତ କରିବା ସହଜ ନୁହେଁ । କଲ୍ୟାଣପ୍ରସୂ ଯାବତୀୟ ଉଚ୍ଚ କଳାମାନଙ୍କର ବିକାଶ ଦେଶର ସେହି ଅଶାନ୍ତିରେ ଚିରଦିନ ପାଇଁ ଲୁପ୍ତ ହୁଏ; କିନ୍ତୁ ସମରପ୍ରିୟ ଜାତିମାନଙ୍କ ମଧ୍ୟରେ ଏହାର ପ୍ରମାଣ ମିଳେ ନାହିଁ । ବରଂ ଦେଶର ଯୁଦ୍ଧନୈପୁଣ୍ୟ ଓ କଳାକୁଶଳତା ମଧ୍ୟରେ ଘନିଷ୍ଠ ସମ୍ବନ୍ଧ ଥିବାର ଜଣାଯାଏ । ଦେଶର ଲୋକମାନେ ଯଦି କେବଳ କୃଷିଜୀବୀ ହୁଅନ୍ତି, ତାହାହେଲେ କଳାର ଉନ୍ନତି ହେବା ସମ୍ଭବ ନୁହେଁ । ପ୍ରାଚୀନ ଉତ୍କଳ ଏହାର ଶ୍ରେଷ୍ଠ ନିଦର୍ଶନ । ଓଡ଼ିଆ ବୀରର ତେଜ ଯେତେବେଳେ ଅପ୍ରତିହତ ଥିଲା, ସେତେବେଳେ ତା ଦେଶର ଶିଳ୍ପ ଭାରତ ଇତିହାସରେ ଏକ ପ୍ରସିଦ୍ଧ ଯୁଗର ସୂଚନା ଦେଇଥିଲା । ଜାତିର ଜୀବନ-ସ୍ରୋତ ବୀର ଧମନୀରେ ପ୍ରବାହିତ ହେଲାବେଳେ କର୍ମକ୍ଷେତ୍ରରୁ ଜଡ଼ତା ଅନ୍ତର୍ହିତ ହୋଇଯାଏ । ଇଜିପ୍ଟ୍ ଓ ଗ୍ରୀସ୍‌ର ପ୍ରାଚୀନ କାବ୍ୟ, ଶିଳ୍ପ ପ୍ରଭୃତିରେ ସମରକାମୀ ଯୋଦ୍ଧାମାନଙ୍କୁ ବିଶିଷ୍ଟ ଆସନ ଦିଆଯାଇ ଅଛି । ଇଜିପ୍ଟରୁ ଗ୍ରୀସ୍ ସଭ୍ୟତାର ଅଭ୍ୟୁଦୟ ହେଲେ ସୁଦ୍ଧା ଗ୍ରୀକ୍‌ମାନେ ଗ୍ରାମ୍ୟ ଜୀବନ ଓ କୃଷିକୁ ଘୃଣା ଚକ୍ଷୁରେ ଦେଖି ନାହାନ୍ତି ଏବଂ ଆଜି ସୁସଭ୍ୟ ଇଉରୋପୀୟାନ୍‌ମାନେ ସେମାନଙ୍କର ପଦାଙ୍କ ଅନୁସରଣ କରି ପୃଥିବୀରେ ସର୍ବଶ୍ରେଷ୍ଠ ସ୍ଥାନ ଅଧିକାର କରିଅଛନ୍ତି । ସମରକୁଶଳତାକୁ ବାଦ୍ ଦେଇଥିଲେ, ସେମାନେ ଜଗତ୍‌ର ଚକ୍ଷୁରେ ନିତାନ୍ତ ହେୟ ବୋଲି ବିବେଚିତ ହେଉଥାନ୍ତେ ।

ଯଦି କଳାର ଉତ୍କର୍ଷ ରଣନୈପୁଣ୍ୟ ଓ ବୀରତ୍ୱ ଉପରେ ନିର୍ଭର କରେ, ତାହାହେଲେ ତାକୁ ସମୂଳେ ବାଦ୍ ଦେଇ ନିଶ୍ଚିନ୍ତ ହୋଇ ରହିବା କଣ ଆବଶ୍ୟକ ? ସମରର କରାଳ କବଳରୁ ରକ୍ଷା ପାଇ ସରଳ ଗାର୍ହସ୍ଥ୍ୟ ଜୀବନଯାପନ କରିବାଦ୍ୱାରା କଳାର ଅବନତି ଘଟିଲେ ସୁଦ୍ଧା ତଦ୍ଦ୍ୱାରା ଦେଶରେ ଅଶାନ୍ତି ଘଟେ ନାହିଁ । ଯେଉଁମାନେ ଏହି ମତର ପୋଷକତା କରନ୍ତି, ସେମାନଙ୍କର ଦୃଷ୍ଟି ମାନବଜୀବନର କେତେଗୁଡ଼ାଏ ଧାରାବାହିକ ବିଷୟ ଅନୁସନ୍ଧାନରେ ବ୍ୟାପୃତ ଥାଏ । ମାନବିକତାର ସରସ ଓ ଶ୍ରେଷ୍ଠ ପ୍ରକାଶ କଳା ସାହାଯ୍ୟରେ ଦୃଷ୍ଟିପଥାରୂଢ଼ ହୁଏ । କଳାର ମୂଲ୍ୟ କିଛି ନ ଥାଇପାରେ; କିନ୍ତୁ ସଭ୍ୟତାର ମାପକାଠି ହିସାବରେ ତାହା ଦେଶର ଅମୂଲ୍ୟ ରତ୍ନଭଣ୍ଡାର । ମନୁଷ୍ୟତାର ପୂର୍ଣ୍ଣ ବିକାଶ ସକାଶେ କଳା ଏକାନ୍ତ ଆବଶ୍ୟକ । ଯେଉଁ ଦେଶରେ ଏପରି ବିକାଶ ଘଟି ନାହିଁ, ସେ ଦେଶର ମନୁଷ୍ୟତ୍ୱ ବହୁ ନିମ୍ନସ୍ତରରେ ରହିଛି । ଯୁଦ୍ଧଦ୍ୱାରା କେବଳ କଳା ନୁହେଁ, ଅନ୍ୟାନ୍ୟ ମାନବୀୟ ଉତ୍କର୍ଷ ସବୁ ଫୁଟି ଉଠେ । ଧର୍ମର ଦୃଢ଼ତା ମଧ୍ୟ ଏହା ସାହାଯ୍ୟରେ ସ୍ପଷ୍ଟଭାବରେ ପ୍ରମାଣିତ ହୁଏ । ସାଧାରଣ ଗାର୍ହସ୍ଥ୍ୟ ଜୀବନର ଉପାଦେୟତା ଓ ଶାନ୍ତି ପରସ୍ପର ସାପେକ୍ଷ ବୋଲି ଯେଉଁମାନେ କହନ୍ତି, ସେମାନଙ୍କର ଧାରଣା ସବୁ ସମୟରେ ଠିକ୍ ହୁଏ ନାହିଁ । ଦେଶରେ ଶାନ୍ତି ଥିବା ସମୟରେ ସାଧାରଣ ଲୋକଚରିତ୍ରରେ ଅନେକ ଅବନତି ଘଟିଥାଏ । ବିଳାସିତା, ସ୍ୱାର୍ଥପରତା ଓ ଅନ୍ୟାନ୍ୟ ବ୍ୟଭିଚାର ଦେଶର ସର୍ବତ୍ର ବ୍ୟାପିଯାଏ । ପକ୍ଷାନ୍ତରରେ ଦେଖାଯାଏ ଯେ, ପୃଥିବୀର ସମସ୍ତ ପ୍ରସିଦ୍ଧ ଜାତିମାନେ ପ୍ରବଳ ସତ୍ୟାନୁରାଗ ଓ ଚିନ୍ତାଶୀଳତା ଯୁଦ୍ଧକ୍ଷେତ୍ରରୁ ଶିକ୍ଷା କରନ୍ତି । ଯୁଦ୍ଧରେ ସେମାନଙ୍କର ଜାତୀୟତା ପୂର୍ଣ୍ଣମାତ୍ରାରେ ପୁଷ୍ଟି ଲାଭ କରେ । ସମରକ୍ଷେତ୍ରରେ ଯେଉଁ ଜାତି ତେଜସ୍ୱିତା ଓ ବୀରତ୍ୱର ମହତ୍ତ୍ୱ ନିଦର୍ଶନ ଦେଖାଇଥାଏ, ସେ ପୁଣି କାଳକ୍ରମେ ଶାନ୍ତିରେ ରହି ଯୁଦ୍ଧର ନାମ ଶ୍ରବଣମାତ୍ରେ ହୃତ୍‌କମ୍ପ ଅନୁଭବ କରେ । ଯେଉଁ ଭାରତରେ ମନସ୍ୱିନୀ ରମଣୀଗଣ ସମରାନଳରେ ଅକାତରରେ ପଶି ଯାଉଥିଲେ, ସେହି ଦେଶରେ ପୁଣି ଯୁବକ-ପ୍ରାଣ ସ୍ତ୍ରୀ ଅଞ୍ଚଳରେ ବନ୍ଧା ହେଲା ପରି ଜଣାଯାଏ । ଆର୍ଯ୍ୟ-ସନ୍ତାନ ଆର୍ଯ୍ୟଧର୍ମ ପାଳନରୁ କ୍ଷାନ୍ତ ବୋଲି ତାର ଦୁର୍ଦ୍ଦଶା ଆଜି ଏଡ଼େ ବିଷମ ଆକାର ଧାରଣ କରିଅଛି । ସମର ଜାତିର କଷଟି ପଥର । ତାର ବିଭବ ଓ ଶୌର୍ଯ୍ୟ ଏହାଦ୍ୱାରା ପ୍ରମାଣିତ ହୁଏ । ବୀରଜାତିର ସ୍ଥିତି ଓ ବିକାଶ ପାଇଁ ଏହାର ସାର୍ଥକତା ଯଥେଷ୍ଟ ଅଛି । ମୋଟ ଉପରେ କହିବାକୁ ଗଲେ, ଜାତିର ଉତ୍ଥାନ ଓ ପତନ ସମ୍ପୂର୍ଣ୍ଣ ଏହା ଉପରେ ନିର୍ଭର କରେ ।

ସମରର ପ୍ରୟୋଜନୀୟତା ଦୃଷ୍ଟିରେ ଭୀଷଣତାର ସ୍ଥାନ ନାହିଁ କହିଲେ ଚଳେ । ଶତ୍ରୁର ପରାଜୟ, ରାଜ୍ୟବିସ୍ତାର, ରାଜ୍ୟରକ୍ଷା ପ୍ରଭୃତି ସକାଶେ ସମର ନିତାନ୍ତ ଆବଶ୍ୟକ । ଅନେକ ସମୟରେ ଯୁଦ୍ଧ ଜାତୀୟ କ୍ରୀଡ଼ାରୂପେ ଗୃହୀତ ହୋଇଥାଏ । କିନ୍ତୁ ବାଧ୍ୟତାମୂଳକ ଆଇନ ପ୍ରଣୟନଦ୍ୱାରା ସଂଗୃହୀତ ସୈନ୍ୟମାନଙ୍କ ଚକ୍ଷୁରେ ଏହା କ୍ରୀଡ଼ା ନୁହେଁ ।

ଯୁବକପ୍ରାଣ ଉତ୍କ୍ଷିପ୍ତ ହୋଇ ଉଠିଲେ ସ୍ୱତଃପ୍ରବୃତ୍ତ ହୋଇ ଯେଉଁମାନେ ସୈନିକଶ୍ରେଣୀଭୁକ୍ତ ହୁଅନ୍ତି, ସେମାନେ ଅକାତରରେ ସମରାଭିମୁଖୀନ ହୁଅନ୍ତି ଏବଂ ସେମାନଙ୍କ ପ୍ରାଣରେ ଆକାଙ୍କ୍ଷା ସମରାଗ୍ନିରେ ନିର୍ବାପିତ ହୁଏ । ଦେଶର ଆଭ୍ୟନ୍ତରିକ

ଅବସ୍ଥାର ଉନ୍ନତି ସାଧନ କଲାବେଳେ କୌଣସି ରାଜା କିମ୍ବା ଶାସନକର୍ତ୍ତା ଯୁଦ୍ଧ ବିଷୟରେ ମନ ଚଳାନ୍ତି ନାହିଁ । ସେହିପରି ସଂଯତଚିତ୍ତ ଯୁବକ ଗାଢ଼ ଅଧ୍ୟୟନ ପ୍ରଭୃତି ଶାନ୍ତିପୂର୍ଣ୍ଣ ବିଷୟରେ ମନୋନିବେଶ କଲାବେଳେ କଦାଚିତ୍ ସମରଭୂମିରେ ଅବତୀର୍ଣ୍ଣ ହେବା ପାଇଁ ଅଗ୍ରସର ହୁଏ । କୃଷି, ବିଜ୍ଞାନ ଓ ସାହିତ୍ୟର ଚର୍ଚ୍ଚାଦ୍ୱାରା ମନ ଆବଦ୍ଧ ହେଲେ ଯୁଦ୍ଧକୁ ମନୁଷ୍ୟ ଗୋଟାଏ ଆତଙ୍କ ବୋଲି ମନେ କରିପାରେ । ଅବଲମ୍ବନଶୂନ୍ୟ ହେଲେ ମନର ବଳ କ୍ରମଶଃ ପ୍ରବଳ ହୋଇଉଠେ ଏବଂ କୌଣସି କ୍ଷେତ୍ରରେ ନିଯୁକ୍ତ ହେବା ପାଇଁ ମନୁଷ୍ୟ ପ୍ରତୀକ୍ଷା କରି ରହେ । ଏପରି ଅବସ୍ଥାରେ ଯୁଦ୍ଧର ଭୀଷଣତାକୁ ତୁଚ୍ଛ ମନେ କରି ଯୁବକ ସମର-ବିଳାସୀ ହୋଇପଡ଼େ । ସ୍ଥୂଳଦୃଷ୍ଟିରେ ଜଗଦ୍‌ବାସୀ ଦୁଇ ବିଭିନ୍ନ ଶ୍ରେଣୀରେ ଦେଖାଯାନ୍ତି । ଗୋଟିଏ ଶ୍ରେଣୀ ଜଗତର ସୁଖସ୍ୱାଚ୍ଛନ୍ଦ୍ୟ ପାଇଁ ଭୂମିକର୍ଷଣ, ବାଣିଜ୍ୟ, ନଗରଗଠନ ପ୍ରଭୃତିରେ ବ୍ୟସ୍ତ ଥାନ୍ତି ଏବଂ ଅପର ଶ୍ରେଣୀଟି ଏସବୁର ମୂଳୋତ୍ପାଟନ କରି ଧ୍ୱଂସର ତାଣ୍ଡବଲୀଳା ଦେଖାଇ ଦିଅନ୍ତି । ଯୁଦ୍ଧ ଯଦି ବିଳାସର ବିଷୟ ହୁଏ, ତାହା ହେଲେ ବୃଥା ରକ୍ତପାତରେ ଫଳ କଅଣ ? ଦରିଦ୍ରକୁ ନିଃସ୍ୱ କରି କିମ୍ବା ଧନବାନର ଐଶ୍ୱର୍ଯ୍ୟକୁ ପଦାଘାତ କରି ବୀର-ଦର୍ପ ଦେଖାଇବା ଯୋଦ୍ଧାର କର୍ତ୍ତବ୍ୟ ନୁହେଁ । ନିଜର ଶୋଣିତ ବିନିମୟରେ ବିଜୟ-ଶ୍ରୀକୁ ବରଣ କରିବାକୁ ହୁଏ । ନିରୀହ ପ୍ରଜାକୁଳ କ୍ଷୟରେ ସମରର ମହତ୍ତ୍ୱ ଜଣାଯାଏ ନାହିଁ ।

ଆଧୁନିକ ସମରମାନଙ୍କରେ ପ୍ରକୃତ ଯୋଦ୍ଧାମାନଙ୍କର ପରିଚୟ ମିଳେ ନାହିଁ । ସାଧାରଣତଃ ଯେଉଁମାନେ କୃଷି ଓ ବାଣିଜ୍ୟରେ ନିଯୁକ୍ତ ଥାନ୍ତି, ସେହିମାନଙ୍କ ମଧ୍ୟରୁ ଅଧିକାଂଶ ଯୁଦ୍ଧରେ ଯୋଗ ଦିଅନ୍ତି । ବୈଜ୍ଞାନିକ ଯନ୍ତ୍ରଦ୍ୱାରା ଏ ଚଳାଇ ପ୍ରତିଦ୍ୱନ୍ଦୀମାନେ ପରସ୍ପରର କ୍ଷତି ସାଧନ କରନ୍ତି; ଦେଶର ଶ୍ରୀ ମୁହୂର୍ତ୍ତକେ ନଷ୍ଟ ହୋଇଯାଏ । ଯେଉଁମାନେ ଯୁଦ୍ଧର କର୍ତ୍ତା ହୋଇଥାନ୍ତି, ସେମାନଙ୍କୁ ପ୍ରାୟ ସମରକ୍ଷେତ୍ରକୁ ଯିବାକୁ ପଡ଼େ ନାହିଁ; ମନ୍ତ୍ରୀପରିଷଦରେ ଓଜସ୍ୱିନୀ ବକ୍ତୃତାଦ୍ୱାରା ଦେଶବାସୀଙ୍କର ମତିଗତି ବଦଳାଇ ଗୋଟାଏ ପ୍ରଳୟ କାଣ୍ଡ ଘଟାଇ ଦିଅନ୍ତି ।

ଯୁଦ୍ଧର ଅବସାନ ଘଟିଲେ ଅକର୍ମଣ୍ୟ ସୈନ୍ୟମାନଙ୍କ ଦୁର୍ଦ୍ଦଶା ପ୍ରତି ସେହି ବାକ୍ୟବୀରମାନେ ଲକ୍ଷ୍ୟ ରଖନ୍ତି କି ? ସାମାନ୍ୟ କିଛି ଭତ୍ତା ଦେଲେ ବିକଳାଙ୍ଗ ସୈନିକର ସମସ୍ତ ଅଭାବ ଓ ଅସୁବିଧା ଦୂର ହୁଏ ନାହିଁ । ସମରର ବିଭୀଷିକା ଯେଉଁମାନେ ସୃଷ୍ଟି କରନ୍ତି, ସେମାନେ ଯଦି ତାହା ପୂର୍ଣ୍ଣମାତ୍ରାରେ ଭୋଗ କରନ୍ତେ, ତାହାହେଲେ ବୈଜ୍ଞାନିକ ଯୁଦ୍ଧର ସ୍ରୋତଟା ବଦଳି ଯାଆନ୍ତାଣି । ବିଜ୍ଞାନର ଅଭିବୃଦ୍ଧି ସଙ୍ଗେ ଯୁଦ୍ଧକୌଶଳ ନିତ୍ୟ ନୂତନ ଆକାର ଧାରଣ କରୁଛି ଓ ନୃଶଂସତାର ମାତ୍ରା ମଧ୍ୟ ବଢ଼ିବାରେ ଲାଗିଛି । ଅପଦସ୍ଥ ଓ ଅସହାୟ ଶତ୍ରୁର ବିନାଶ ସାଧନ ପାଇଁ ବିଜ୍ଞାନ ଯଥେଷ୍ଟ ସାହାଯ୍ୟ ଦେଉଛି । ପ୍ରାଚୀନ ଗ୍ରୀକ୍ ଓ ଭାରତୀୟ ଯୋଦ୍ଧାମାନଙ୍କର ସମର କୌଶଳ ଓ ଚରିତ୍ରର ମହନୀୟତା ଆଜି ଲୁପ୍ତ ପ୍ରାୟ ହେଲାଣି ।

ରାଜ୍ୟବୃଦ୍ଧି ଲୋଭରେ ପ୍ରବଳ ଜାତି ଦୁର୍ବଳ ଜାତିକୁ ପଦଦଳିତ କରୁଛି ! ପାଶବିକ ପ୍ରବୃତ୍ତି ଉଗ୍ର ନ ହେଲେ କୌଣସି ଜାତି ଦୁର୍ବଳର ସର୍ବସ୍ୱ ଲୁଣ୍ଠନ କରିବାକୁ ପ୍ରୟାସ କରେ ନାହିଁ । ନ୍ୟାୟ ଓ ଧର୍ମର ପକ୍ଷପାତୀ ପ୍ରାଚୀନ ହିନ୍ଦୁମାନେ ଏହାର ପ୍ରମାଣ ଦେଇଛନ୍ତି । ସେମାନେ ଯେଉଁ ଗୌରବର ଚିହ୍ନ ରଖିଯାଇଛନ୍ତି, ତାହା କଦାପି ବିଲୁପ୍ତ ହେବ ନାହିଁ । ଅପରିମିତ କ୍ଷମତା ଚାଳନ କରିବା ପ୍ରକୃତ ପ୍ରଭୁତ୍ୱର ନିଦର୍ଶନ ନୁହେଁ । ଶାସକର କାର୍ଯ୍ୟ ବଡ଼ ଗୁରୁତର । ପ୍ରଜାମଣ୍ଡଳୀର ଦୈନ୍ୟ ଓ ଦୁର୍ବଳତା ଦୂର କରି ଉନ୍ନତ ଆଦର୍ଶରେ ସେମାନଙ୍କୁ ଗଢ଼ି ପାରିଲେ ଶାସନ କ୍ଷମତାର ସଦ୍‌ବ୍ୟବହାର କରାଯାଏ । କେବଳ କେତେଗୁଡ଼ାଏ ରାଜ୍ୟ ଅଧିକାର କଲେ ଜାତୀୟ ଶକ୍ତି ବଢ଼େ ନାହିଁ । ସ୍ୱାର୍ଥପରତା ଏହାର ଭୟଙ୍କର ବିରୋଧୀ ହୁଏ । ଐତିହାସିକମାନେ ନିର୍ବୋଧରେ ପ୍ରବଳ ଅତ୍ୟାଚାରୀ ରାଜାମାନଙ୍କୁ ଉଚ୍ଚ ଆସନ ଦେଇଥାନ୍ତି । ସେମାନେ ରାଜଶକ୍ତିର ପ୍ରକୃତ ମର୍ମ ବୁଝନ୍ତି ନାହିଁ । ଗୋଟାଏ ଦୁର୍ବଳ ଜାତିର ଧ୍ୱଂସସାଧନରେ ପବିତ୍ର କ୍ଷତ୍ରିୟ ଧର୍ମ ପାଳିତ ହୁଏ ନାହିଁ । ଏହା ନୀତିବିରୁଦ୍ଧ । ସାମାନ୍ୟ "ସବ୍‌ମେରିନ୍" ସାହାଯ୍ୟରେ ପ୍ରକାଣ୍ଡ ରଣପୋତ ନଷ୍ଟ କରାଯାଏ । ଗୋଟାଏ ମୁଷ୍ଟିପିଣ୍ଡରୁ ବିଷ ଉଦ୍‌ଗିରିତ ହୋଇ ମହାମାରୀରୂପେ ସମସ୍ତ ଦେଶର ଅନିଷ୍ଟ ସାଧନ କରିପାରେ; କିନ୍ତୁ ଏହା ବୋଲି ଏହି ଭୀଷଣତା ସ୍ୱଜନକାରୀମାନଙ୍କଠାରେ ମହତ୍ତ୍ୱ ଆରୋପ କରାଯାଏ ନାହିଁ ।

ଜାତୀୟ ଉଚ୍ଚାକାଙ୍କ୍ଷାରେ ଅତ୍ୟାଚାର କିମ୍ବା ପରସ୍ୱାପହରଣର ଗନ୍ଧ ରହିବା ଉଚିତ ନୁହେଁ । ଦୁର୍ବଳର ରକ୍ଷାରେ ବୀରତ୍ୱର ପରାକାଷ୍ଠା ମିଳେ । ଗୋଟାଏ ବିଶାଳ ଜାତିର ମନରେ ଏକତା ଓ ଧର୍ମାନୁରାଗ ଆଣି ଉପଯୁକ୍ତ ଆଦର୍ଶରେ ଅଗ୍ରସର ହେବା ସହଜ ନୁହେଁ । ଦେଶବାସୀମାନଙ୍କର ଅନୈକ୍ୟ ଭାବ ଓ ଦୁର୍ବଳତାରେ କର୍ତ୍ତବ୍ୟସାଧନ ଶିଥିଳ ହୋଇପଡ଼େ । ପ୍ରକୃତ ଶକ୍ତି ସଞ୍ଚାର ପାଇଁ କେତେଗୁଡ଼ିଏ ସଙ୍ଘବଦ୍ଧ ଜ୍ଞାନୀଲୋକଙ୍କର ମନ୍ତ୍ରଣା ଉପରେ ନିର୍ଭର କରିବା ଉଚିତ । ସାଧାରଣ ଲୋକମାନଙ୍କ ମତାନ୍ତରର କିଛି ମୂଲ୍ୟ ନାହିଁ କହିଲେ ଚଳେ; କାରଣ ସେମାନଙ୍କର ଧର୍ମ ଜ୍ଞାନ ଓ ବିଚାର ବଡ଼ କମ୍ ।

ମାତୃଭୂମିର ରକ୍ଷା ସକାଶେ ଦେଶର ପ୍ରତ୍ୟେକ ପୁରୁଷ ପ୍ରାଣ ବିସର୍ଜନ କଲେ କୌଣସି କ୍ଷତି ନାହିଁ; କିନ୍ତୁ ଅନ୍ୟାୟ ସମର କରି ଯଶସ୍ୱୀ ହେବା ବାଞ୍ଛନୀୟ ନୁହେଁ । ଅତ୍ୟାଚାରୀ ଜାତିର ପକ୍ଷ ସମର୍ଥନ କଲେ ବରଂ ଧର୍ମ ହାନି ହୁଏ, ଜାତୀୟ ଗୌରବ ଓ ଦେଶରକ୍ଷା ପାଇଁ ସୁସଜ୍ଜିତ ସୈନ୍ୟ ସବୁ ସମୟରେ ସବୁ ଦେଶରେ ଆବଶ୍ୟକ ହେବେ । ଏଥିପ୍ରତି ଉଦାସୀନ ହେବା ଦେଶପ୍ରେମିକର କାର୍ଯ୍ୟ ନୁହେଁ । ସମରକ୍ଷେତ୍ର ସ୍ୱର୍ଗର ଦ୍ୱାର ବୋଲି ଆମ୍ଭମାନଙ୍କ ପୂର୍ବପୁରୁଷମାନେ କହି ଯାଇଛନ୍ତି । ସେମାନଙ୍କ ପଦାଙ୍କ ଅନୁସରଣ କଲେ ଭାରତୀୟ ନବଜୀବନ ଲାଭ କରିପାରିବ । ଯେ ଜାତି ସମର କରିବାକୁ ଜାଣି ନାହିଁ, ସେ ଜାତି ମୃତ; କାରଣ ଜାତୀୟତାର ଶ୍ରେଷ୍ଠ ନିଦର୍ଶନ ସମରକ୍ଷେତ୍ରରେ ପ୍ରମାଣିତ ହୁଏ ।

# ମାନବ-ପ୍ରଗତି

ମନୁଷ୍ୟ ସାମାଜିକ ଜୀବ—ଏପରି କହିବାର ଯଥାର୍ଥ୍ୟ କଅଣ ? ଯୁଗ ଯୁଗ ଧରି ମନୁଷ୍ୟ ଧରିତ୍ରୀବକ୍ଷରେ କେତେ ଅଭିନବ ଧର୍ମ, ସମାଜ ଓ ନୀତି ସଂସ୍ଥାପନ କରି ଆସିଅଛି; କିନ୍ତୁ ସମଗ୍ର ମାନବଜାତି ସେମାନଙ୍କୁ ସମାନ ଭାବରେ ଦେଖିପାରି ନାହିଁ । ହୁଏତ ପୃଥିବୀର ଆଦିମ ଅଧିବାସୀମାନେ ଗୋଟାଏ ସାଧାରଣ ସମାଜ-ବନ୍ଧନରେ ଆବଦ୍ଧ ଥିଲେ ଓ ସେମାନଙ୍କ ସଂଖ୍ୟା କ୍ରମଶଃ ବୃଦ୍ଧି ପାଇବାରୁ ସାମାଜିକ ଓ ଅନ୍ୟାନ୍ୟ ପାରିପାର୍ଶ୍ୱିକ ଅବସ୍ଥାମାନଙ୍କର ଯଥେଷ୍ଟ ପରିବର୍ତ୍ତନ ହେଲା । ମନୁଷ୍ୟର ଉତ୍ତରୋତ୍ତର ବିକାଶ ଯେ ଏଥି ସକାଶେ ଦାୟୀ, ଏହା କହିବା ସମ୍ପୂର୍ଣ୍ଣ ଉପଯୁକ୍ତ ମନେ ହୁଏ । ସମାଜର ସ୍ଥିତି ଉପରେ ଧର୍ମ ଓ ଅନ୍ୟାନ୍ୟ ମାନବୀୟ ଗୁଣମାନଙ୍କର ପ୍ରତିଷ୍ଠା ନିର୍ଭର କରେ । ଆଦିମ ଅବସ୍ଥାରେ ମନୁଷ୍ୟ ପଶୁପରି ଆଚରଣ କରୁଥିଲା; ଆଜି ମଧ୍ୟ ସେଥିରୁ ସେ ସମ୍ପୂର୍ଣ୍ଣ ନିରାକୃତ ନୁହେଁ । କେବଳ ମାର୍ଜିତ ଉପାୟରେ ତାର ଲିପ୍‌ସା ଦୂରୀକୃତ ହେଉଅଛି । ପଶୁମାନେ ମଧ୍ୟ ସଙ୍ଘବଦ୍ଧ ହୋଇ ରହିବାକୁ ଭଲ ପାଆନ୍ତି; କିନ୍ତୁ ସେଥି ସକାଶେ ସେମାନଙ୍କୁ ସାମାଜିକ ଜୀବ ବୋଲି କୁହାଯାଏ ନାହିଁ । ଜୀବମାନଙ୍କର ଗୋଟାଏ ସାଧାରଣ ଧର୍ମ ଅଛି । ମନୁଷ୍ୟ ସେଥିରୁ ବାଦ୍ ଯାଏ ନାହିଁ । କେତେକ ବିଶେଷତ୍ୱ ଅଛି, ଯାହାକୁ ଅଧିକାର କରି ମନୁଷ୍ୟ ଇତର ପ୍ରାଣୀମାନଙ୍କ ଅପେକ୍ଷା ଉଚ୍ଚ ଆସନ ଲାଭ କରିଅଛି । ଏହି ବିଶେଷତ୍ୱ ଘେନି ମାନବ ଆଜି ତାର ସମାଜ, ଧର୍ମ ପ୍ରଭୃତିକୁ ନାନା ଦିଗରେ ବିଭିନ୍ନ ପନ୍ଥା ଆଶ୍ରୟରେ ଜଟିଳ କରି ଦେଇଛି । ଜଟିଳତା ଦୃଷ୍ଟିରେ ମାନବର ଭାବରାଶି ଯେ ସ୍ତରରେ ଉପନୀତ ହୋଇଅଛି, ତାକୁ ତ୍ୟାଗ କରି କୌଣସି ସୁଲଭ ସରଳ ମାର୍ଗାନୁସରଣ କରିବା ଯୁଗୋଚିତ ସଭ୍ୟତା-ବିରୋଧୀ ହୋଇପାରେ । ଯୁଗ ଯୁଗ ବ୍ୟାପୀ ସାଧନା ଫଳରେ ସେ ଯେଉଁ ଅନ୍ତର୍ଦୃଷ୍ଟି ଲାଭ କରିଅଛି; ତାକୁ ବନ୍ଦ ରଖି ଅତି ପ୍ରାଚୀନତା ଆଡ଼କୁ ଦୃଷ୍ଟି ନିକ୍ଷେପ କଲେ ଆଉ ସେ ମାନବର ପ୍ରାଥମିକ ଅବସ୍ଥା ଲାଭ କରିପାରିବ ନାହିଁ । ତାର ଅଗ୍ରଗତିରେ ସମାଜ କେତେ ଆକାରରେ ଦେଖା ଦେଇ ଉଭେଇ ଯାଇଛି; କିନ୍ତୁ ସେ ଯେଉଁ ଲକ୍ଷ୍ୟ ରଖି ପ୍ରଥମେ ଅଗ୍ରସର ହୋଇଥିଲା, ତାକୁ ମନୁଷ୍ୟ ବହୁଦୂରରେ ଛାଡ଼ି ଆସିଲାଣି । ଏଥିରୁ ସ୍ପଷ୍ଟ ବୁଝାଯିବ ଯେ, ସମାଜ ମନୁଷ୍ୟକୁ ଅନୁସରଣ କରୁଛି । ସମୟବିଶେଷରେ ସେ ସାମାଜିକ ନିୟମ ଲଙ୍ଘନ କରି ଯେଉଁ ସ୍ୱାଧୀନତା ପାଳନ କରେ, ତା ଅପରର ସ୍ୱାଧୀନତା ଅପହରଣ ଛଡ଼ା ଅନ୍ୟ କିଛି ନୁହେଁ । ଯେତେ ଦିନ ପର୍ଯ୍ୟନ୍ତ ଜଣକର କାର୍ଯ୍ୟରେ ଅନ୍ୟମାନେ କୌଣସି ବାଧା ପାଆନ୍ତି ନାହିଁ, ସେତେଦିନ ଯାଏ ମନୁଷ୍ୟକୁ କୌଣସି ଦଣ୍ଡଭାଗୀ ହେବାକୁ ପଡ଼େ ନାହିଁ । ସମ-ଭାବାପନ୍ନ ଲୋକମାନଙ୍କୁ ଘେନି ଗୋଟାଏ ନୂତନ ସମାଜ ସହଜରେ ଗଠିତ ହୋଇପାରେ ।

ସମାଜର ନୂତନତ୍ୱରେ ମନୁଷ୍ୟ ସହଜେ ଆକୃଷ୍ଟ ହୁଏ ନାହିଁ । ପରସ୍ପର ଭାବବିନିମୟରେ ଜଣେ ଜଣକ ପ୍ରତି ଆକୃଷ୍ଟ ହୋଇଥାଏ । ଏହିଠାରେ ଭାଷାର ମହତ୍ତ୍ୱ ଉପଲବ୍‌ଧ ହୁଏ । ଭାଷା ନ ଥିଲେ ସମାଜର ଅସ୍ତିତ୍ୱ ନ ଥାନ୍ତା । ଭାଷା ହୃଦୟର ଅଭିବ୍ୟକ୍ତି ମାତ୍ର; ସୁତରାଂ ହୃଦୟର କାର୍ଯ୍ୟକାରୀ ଶକ୍ତି ଉପରେ ଏତେ ବଡ଼ ଜଟିଳ ସମାଜ-ସମସ୍ୟା ନିର୍ଭର କରୁଛି ବୋଲି କୁହାଯାଇପାରେ । ଶିଶୁ ପ୍ରକୃତି-କୋଡ଼ରେ ସମାଜ, ଧର୍ମ କିମ୍ବା ଭାଷାର ଅପେକ୍ଷା ରଖେ ନାହିଁ; କିନ୍ତୁ ଦିନ ଆସେ, ଯେତେବେଳେ ସେହି ଶିଶୁ ପରିଣତବୟସ୍କ ହୋଇ ସମାଜ କିମ୍ବା ଧର୍ମ-ସଂସ୍କାରକର ସ୍ଥାନ ଅଧିକାର କରେ ।

ସମସ୍ତ ବିଶ୍ୱ ଏକ ଗତିର ଅଧୀନରେ ଚାଳିତ । ସୃଷ୍ଟ ଜୀବ ମଧ୍ୟ ଗୋଟାଏ ମାର୍ଗ ଧରି ଚାଲିଛି । ଏହି ମାର୍ଗର ସୀମା ନିରୂପଣ କରିବା ସହଜ ନୁହେଁ । କେତେ ବିପ୍ଲବ ଆସୁଛି, ପୁରାତନର ସ୍ଥାନ ନୂତନ ଅଧିକାର କରୁଛି; ପୁଣି ନୂତନତ୍ୱର ସ୍ଥାୟିତ୍ୱ କିଛି ସମୟ ପରେ ଲୀନ ହୋଇ ଯାଉଛି । ଅନନ୍ତ କାଳ-ସ୍ରୋତରେ ଏଗୁଡ଼ିକ ଜଳ-ବୁଦ୍‌ବୁଦ୍ ପରି କ୍ଷଣସ୍ଥାୟୀ । ଏମାନଙ୍କ-

ଠାରେ ଆବଦ୍ଧ ମନୁଷ୍ୟର କ୍ଷୀଣଦୃଷ୍ଟି ସମ୍ପ୍ରସାରିତ ହୋଇପାରେ ନାହିଁ; ବରଂ ସଙ୍କୁଚିତ ହେବାର ଯଥେଷ୍ଟ ସମ୍ଭାବନା ଅଛି । କେତେ ମହାମନୀଷୀ ମାନବର ତୃଷିତ ପ୍ରାଣରେ ଆଶ୍ୱାସନା ଆଣିବା ପାଇଁ ଉତ୍କୃଷ୍ଟ ପନ୍ଥାସବୁ ଉଦ୍‌ଭାବନ କରିଦେଇ ଗଲେ; କିନ୍ତୁ ଅନ୍ଧକାରର ମାତ୍ର କେତେ ପରିମାଣରେ ଦୂରୀଭୂତ, କେହି କହିପାରିବେ ନାହିଁ । ହୁଏତ ବାହ୍ୟ ଜଗତରୁ କାଳିମା ଅପସାରିତ ହୋଇ ଅନ୍ତର୍ଜଗତକୁ ତମିସ୍ରାଚ୍ଛନ୍ନ କରିବାକୁ ବସିଛି କିମ୍ବା ଆଲୋକର ସୁଦୂର ରଶ୍ମି-ରେଖା ସନ୍ଦେହ-କୁହେଳିକାରେ ଆତ୍ମଗୋପନ କରିଛି । ସ୍ୱଳ୍ପ ଜୀବନକାଳ ମଧ୍ୟରେ ମନୁଷ୍ୟ ନାନା ଦିଗରୁ କାର୍ଯ୍ୟଭାରାକ୍ରାନ୍ତ ହୋଇପଡ଼େ । ସତ୍ୟସନ୍ଧାନରେ ତାର ବଳ କମି ଆସେ, ଜ୍ଞାନଲାଭ କରିବାକୁ ସେ ପ୍ରସ୍ତୁତ ହୁଏ ନାହିଁ—କେବଳ ଉତ୍ତେଜନାର ବଶବର୍ତ୍ତୀ ହୋଇ ଜୀବନର ଅଧିକାଂଶ ସମୟ କଟାଇଦିଏ । ଏପରି ଅବସ୍ଥାରେ ତାର ଗତି ନିର୍ଦ୍ଧାରଣ କରିବା ସହଜ ନୁହେଁ । ଯେ ଦୃଶ୍ୟ ଦେଖି ମନୁଷ୍ୟ ବିଭୋର ହୋଇପଡ଼େ ତାକୁ ସେଥିରୁ ବିରତ କରାଇବା ପାଇଁ ଯୁଗଧର୍ମ ସାହାଯ୍ୟ କରେ ନାହିଁ । ଅନେକେ କହିପାରନ୍ତି, ସନ୍ଦେହ-ଯୁକ୍ତ ଦୃଷ୍ଟିରେ କୌଣସି ବିଷୟକୁ ଦେଖିଲେ ବିଷୟର ସତ୍ୟତା ଉପଲବ୍ଧ ହୋଇପାରେ ନାହିଁ । ଏହା ଠିକ୍ ନୁହେଁ । ସନ୍ଦେହ କରୁ ନ ଥିଲେ ମନୁଷ୍ୟ ଗୋଟାଏ ମାତ୍ର ଧାରାବାହିକ ଦିଗରେ ଗତି କରି ଚାଲିଥାନ୍ତା; କୌଣସି ଭ୍ରମପ୍ରମାଦରେ ତାକୁ ବିକ୍ଷୁବ୍ଧ ହେବାକୁ ପଡ଼ନ୍ତା ନାହିଁ । ସତ୍ୟର ବହିରାବରଣ ଭେଦ କରିବା ପାଇଁ ସନ୍ଦେହ ଆବଶ୍ୟକ । ମନୁଷ୍ୟର ଜଟିଳ ପ୍ରକୃତିରେ ସନ୍ଦେହର ବୀଜ କୌଣସି ଅନିଷ୍ଟ ଉଦ୍ଦେଶ୍ୟରେ ରୋପିତ ହୋଇ ନାହିଁ । ପ୍ରତ୍ୟେକ ବିଷୟର ସଦ୍‌ବ୍ୟବହାର କରି ନ ପାରିଲେ କେବଳ ଦୁଷ୍ଟ ଦୃଷ୍ଟିର ପରିଚୟ ମିଳେ ।

କାଳର ଅନ୍ତ ନାହିଁ । ପ୍ରତି ମୁହୂର୍ତ୍ତରେ ବିଶ୍ୱରେ ଯେ ସବୁ ବସ୍ତୁମାନଙ୍କର ପରିବର୍ତ୍ତନ ଘଟିଯାଉଛି, ସେଥିପ୍ରତି କେହି ଲକ୍ଷ୍ୟ ରଖି ନାହିଁ । ସଂଖ୍ୟାତୀତ ନୀହାରିକା (Nebulae) ଅନନ୍ତ ଆକାଶରେ ବିଲୀନ ହୋଇଯାଉଛି । କିଏ କହିବ, ଅଗଣିତ ସଂସାରର ଧ୍ୱଂସରେ ସ୍ରଷ୍ଟାର କେଉଁ ମହତ୍ତ୍ୱ ଉଦ୍ଦେଶ୍ୟ ସାଧିତ ହେଉଅଛି ? ବୈଜ୍ଞାନିକମାନେ କହନ୍ତି ଯେ, ଆମ୍ଭମାନଙ୍କର ସୌରଜଗତ ଗୋଟାଏ ଅଜ୍ଞାତ ଦିଗରେ ଗତି କରୁଛି । ଏହି ଗତି କେଉଁଠାରୁ ଆରମ୍ଭ ହୋଇଥିଲା ଓ ପୁଣି କେଉଁଠାରେ ଶେଷ ହେବ, ତାହା ମାନବ ଜ୍ଞାନର ଅତୀତ । ହୋଇପାରେ, ଦିନ ଆସିବ—ଯେତେବେଳେ ଏ ସମସ୍ତ ଗ୍ରହଉପଗ୍ରହ ସୂର୍ଯ୍ୟକୁ ଘେନି ମୁହୂର୍ତ୍ତକେ ବିଶ୍ୱର ଅସୀମ ସତ୍ତାରେ ଲୀନ ହୋଇଯିବେ । ଅନନ୍ତର କ୍ରିୟା-କୌଶଳ ଦେଖିବାକୁ କ୍ଷୁଦ୍ର ମାନବ ସମର୍ଥ ନୁହେଁ । ଯେଉଁ ଶକ୍ତି ତାକୁ ପ୍ରଦତ୍ତ ହୋଇଅଛି, ତାକୁ ପ୍ରସାରିତ କରିବାପାଇଁ ସୁବିଧା ଅଛି; କିନ୍ତୁ ସଂସାରର ଜଟିଳତା ମଧ୍ୟରେ ସେ ଏହି ସୁବିଧାକୁ ଖୁବ୍ କମ୍ ପରିମାଣରେ ଅସୀମର ସତ୍ତା ଅନୁଭବରେ ପ୍ରୟୋଗ କରିଥାଏ । ନିଜର କ୍ଷୁଦ୍ରତ୍ୱ ଉପଲବ୍ଧି କରି ସେ କେବଳ ଯୁଗ, ବର୍ଷ, ମାସ ଓ ପକ୍ଷ ପ୍ରଭୃତିରେ କାଳର ଗୋଟାଏ ପରିମାଣ ନିରୂପଣ କରିଅଛି । ବାୟୁର ଗତି ସଙ୍କେତ । କାର୍ଯ୍ୟୋପଲକ୍ଷରେ ତାକୁ ସୀମା ମଧ୍ୟରେ ଆବଦ୍ଧ ରଖାଯାଏ । ସେହିପରି କାଳ ଅନନ୍ତ ହେଲେ ସୁଦ୍ଧା ମାନବୀୟ କାର୍ଯ୍ୟ-ପ୍ରଣାଳୀରେ ତାର ଗୋଟାଏ ସୀମା ନିର୍ଦ୍ଦେଶ କରାଯାଇଥାଏ । କାଳର କଳ୍ପିତ ଶକ୍ତିମଧ୍ୟରେ ମନୁଷ୍ୟର ଉତ୍ଥାନ କିମ୍ବା ପତନ ଦେଖି କୌଣସି ମତ ପ୍ରକାଶ କଲେ ସାଧାରଣ ବୁଦ୍ଧିର ପରିଚୟ ମିଳେ । ସେଦିନ କଟକ "ଶ୍ରୀରାମଚନ୍ଦ୍ର ଭବନ"ରେ "ମଡ଼ର୍ଣ୍ଣ ରିଭିଉ"ର ପ୍ରବୀଣ ସମ୍ପାଦକ ଶ୍ରୀଯୁକ୍ତ ରାମାନନ୍ଦ ଚଟାର୍ଜି "ମାନବ ସଭ୍ୟତାର ପ୍ରଗତି" ବିଷୟରେ ବକ୍ତୃତା ଦେଲା ପରେ ଶ୍ରୀ ନୀଳକଣ୍ଠ ଦାସ ମାନବର ପ୍ରଗତି କିମ୍ବା ଅଧୋଗତି ହେଉଛି—ଠିକ୍ ଜଣାଯାଉ ନାହିଁ ବୋଲି ମତ ପ୍ରକାଶ କଲେ । ବହିରଦୃଷ୍ଟିରେ ସମାଜକୁ ପ୍ରଧାନ ଅବଲମ୍ବନ ସ୍ୱରୂପ ଧରି ପଣ୍ଡିତମାନେ ମତ ପ୍ରକାଶ କରନ୍ତି । ଅତୀତ ଯୁଗରେ ଯେ ରୁଚି ଓ ସଭ୍ୟତା ମାନବପ୍ରାଣକୁ ମୋହିତ କରିଥିଲା, ଆଜି ସେଗୁଡ଼ିକର ସମ୍ପୂର୍ଣ୍ଣ ପରିବର୍ତ୍ତନ ଘଟିଯାଇଛି । ଯେଉଁମାନେ ଆଧୁନିକ ସଭ୍ୟତା ଛାଞ୍ଚରେ ଗଢ଼ି ହୋଇଛନ୍ତି ଓ ଯେଉଁମାନଙ୍କର ଦୃଷ୍ଟି ଗୋଟାଏ ଲକ୍ଷ୍ୟ ଧରି ସଞ୍ଚାଳିତ ହେଲାଣି, ସେମାନଙ୍କର ଅତୀତକୁ ହୀନ ମନେ କରିବା କ୍ଷମଣୀୟ; ପକ୍ଷାନ୍ତରରେ ଅତୀତକୁ ସବୁବେଳେ ନିର୍ଦ୍ଦୋଷ ଦେଖିଲେ ବର୍ତ୍ତମାନର ସଂକୀର୍ଣ୍ଣତା ପ୍ରମାଣିତ ହେବା ସହଜ । ବିଚାରକ ଯେ କୌଣସି ମତାବଲମ୍ବୀ ହେଉନ୍ତୁ, ତାଙ୍କର ମନେ ରଖିବା ଉଚିତ ଯେ, ମନୁଷ୍ୟର ସ୍ୱଭାବ ଯାହା ପ୍ରଧାନତଃ ଦୃଷ୍ଟ ହୋଇଥାଏ, ତାର କିଛି ପରିବର୍ତ୍ତନ ହୋଇ ନାହିଁ । ସୁଦୂର ଅତୀତରେ ଯେଉଁ ଦୁର୍ବଳତା ମନୁଷ୍ୟ ହୃଦୟକୁ ଗ୍ରାସ କରିଥିଲା, ଆଜି ମଧ୍ୟ ସେ ସେଥିରୁ ନିଷ୍କୃତି ପାଇ ନାହିଁ ।

ଯେଉଁଠାରେ ଉପଲବ୍ଧିର ସତ୍ତା ନାହିଁ, ସେଠାରେ ବିକାଶର କୌଣସି ସମ୍ଭାବନା ନ ଥାଏ । ପୁରାତନ ପ୍ରଚଳନକୁ ମାର୍ଜିତ କରି ଆଧୁନିକ ସମାଜବାସୀ ଯାହା ଉପଭୋଗ କରୁଛି, ତାହା କେବଳ ତା ଦୃଷ୍ଟିସୀମା ମଧ୍ୟରେ ଆବଦ୍ଧ । ଅତୀତ ଯଦି

ଫେର ଆସନ୍ତା, ତାହା ହେଲେ ଉପଭୋଗୀ ବୁଝନ୍ତା, ମାର୍ଜିତର ମୂଲ୍ୟ କେତେ ! ଅପର ପକ୍ଷରେ, ମନୁଷ୍ୟ ଛଡ଼ା କୌଣସି ଉନ୍ନତ ଜୀବ ପୃଥିବୀରେ ଜନ୍ମଗ୍ରହଣ କଲେ ଅତୀତକୁ ବର୍ତ୍ତମାନ ସହିତ ମିଳାଇ ଦେଇ ଗୋଟାଏ ଚିତ୍ର ଦେଖାଇ ଦିଅନ୍ତା । ଅନେକ ସମୟରେ ମନୁଷ୍ୟର ଦୃଷ୍ଟି ଠିକ୍ ନ ଥାଏ । ସାଧାରଣତଃ ସେ ଯାହା ନିଜେ ଦେଖେ କିମ୍ବା ଶୁଣେ, ତାକୁ ଅବିସମ୍ବାଦିତ ବୋଲି ଗ୍ରହଣ କରେ । ବିଚାରାଳୟମାନଙ୍କରେ ପ୍ରମାଣ ଆଇନ ଯେଉଁ ସାକ୍ଷ୍ୟ—ବିଧାନକୁ ଅନୁସରଣ କରେ, ତାହା ଦର୍ଶନ ଓ ଶ୍ରବଣେନ୍ଦ୍ରିୟମାନଙ୍କର ଅନୁଭବକୁ ଦୋଷଶୂନ୍ୟ ବୋଲି ବିଚାର କରେ । ଇନ୍ଦ୍ରିୟ ମାନେ ପ୍ରମାଦର ଅଧୀନ ହେବ; ଏଥିର ଦୃଷ୍ଟାନ୍ତ ମଧ୍ୟ ବିରଳ ନୁହେଁ । ଦିଗ୍‌ବଳୟରେ ଚନ୍ଦ୍ରୋଦୟ ହେଲାବେଳେ ଯେ ଆକାର ଦେଖାଯାଏ, କ୍ରମଶଃ ଗତି କରି ଆସିଲେ ତାର ଭିନ୍ନତା ଦୃଷ୍ଟ ହୁଏ । ପୃଥିବୀଠାରୁ ଚନ୍ଦ୍ରର ଦୂରତା ଓ ଆକାର ସମାନ ଥାଏ; କିନ୍ତୁ ଦୃଷ୍ଟିଦୋଷରୁ ଚନ୍ଦ୍ରର ଆକାର କ୍ଷୁଦ୍ର ଦେଖାଯାଏ । ଚଳଚ୍ଚିତ୍ର ଚକ୍ଷୁ ସମକ୍ଷରେ ଯେପରି ପ୍ରକଟିତ ହୋଇଥାଏ, ସେଥିରେ କି ସତ୍ୟର ସ୍ୱରୂପ ନିର୍ଣ୍ଣୀତ ହେବା ସହଜ ? ଗୋଟାଏ ପ୍ରହେଳିକାରେ ସଂସାରର ଅଧିକାଂଶ ବିଷୟ ମନୁଷ୍ୟ ମନକୁ ଟାଣି ରଖିଛି । ପୁରୁଷ ଦେଖେ, ନାରୀଠାରେ ସୌନ୍ଦର୍ଯ୍ୟର ଉତ୍ସ ପୂର୍ଣ୍ଣମାତ୍ରାରେ ଉନ୍ମୁକ୍ତ ହୋଇ ରହିଛି । ଏଥିରେ ମଧ୍ୟ ଦୁର୍ବଳ ଇନ୍ଦ୍ରିୟ ଯଥେଷ୍ଟ ପରିମାଣରେ ମନୁଷ୍ୟର ମନକୁ ଅଭିଭୂତ କରିଥାଏ । ପ୍ରାଣିତତ୍ତ୍ୱବିତ୍‌ମାନେ କହନ୍ତି ଯେ, ଜୀବସୃଷ୍ଟିରେ ପୁରୁଷ ସ୍ତ୍ରୀ ଅପେକ୍ଷା ସାଧାରଣତଃ ସୁନ୍ଦର; କିନ୍ତୁ ମନୁଷ୍ୟପକ୍ଷରେ ଏହି ନିୟମର ବ୍ୟତିକ୍ରମ ଘଟିବାର କୌଣସି କାରଣ ନାହିଁ । ମୋହବଶତଃ ପୁରୁଷ ନାରୀପ୍ରତି ଆକୃଷ୍ଟ ହେବା ଗୋଟାଏ ସ୍ୱାଭାବିକ ଗୁଣ ମଧ୍ୟରେ ପରିଗଣିତ ହେଲାଣି । ସାମାନ୍ୟ ଅନୁକରଣ ଉନ୍ମାଦନାରେ ମନୁଷ୍ୟ ବିଷୟକୁ ଯଥାଯଥ ରୂପେ ବିଚାର କରିପାରେ ନାହିଁ । ଧନୀ ଯେଉଁ ପରିଚ୍ଛଦ ପରିଧାନ କରେ, ଦରିଦ୍ର ଦୃଷ୍ଟି ସେହି ଦିଗକୁ ସଞ୍ଚାଳିତ ହୁଏ । ସେ ମନେ କରେ, ସେହି ପୋଷାକର ପରିପାଟୀ ଆଦର୍ଶ ସ୍ଥାନୀୟ; କିନ୍ତୁ କିଛିଦିନ ପରେ ଧନୀ ନିଜେ ତାକୁ ବୀତସ୍ପୃହ ହୋଇ ତ୍ୟାଗ କରେ । ସମାଜ ଅଧିକାଂଶ ସ୍ଥଳରେ ଲୋକାଚାର ଉପରେ ନିର୍ଭର କରି ଗଠିତ ହୁଏ । ଭିନ୍ନ ଭିନ୍ନ ଦେଶମାନଙ୍କରେ ସାମାଜିକ ଜୀବନର ସାମ୍ୟ ନ ଦେଖାଯିବାର ଯେ ସବୁ କାରଣ ଅଛି, ତନ୍ମଧ୍ୟରେ ଜଳବାୟୁ ଓ ଧର୍ମ ପ୍ରଧାନ । ଶ୍ରବଣଦୋଷରୁ ବିଷୟର ସାରବତ୍ତା ହୃଦୟଙ୍ଗମ ହେବା ପକ୍ଷେ ବାଧା ଜନ୍ମିପାରେ । ଏହାଛଡ଼ା ବିଚାରର ମଧ୍ୟ ତାରତମ୍ୟ ରହିଅଛି । ସବୁ କଥା ବାଦ୍‌ଦେଇ ମନୁଷ୍ୟ ଯଦି ନିଜର ଜୀବନକାଳକୁ ଆଲୋଚନା କରି ଦେଖେ, ତା ହେଲେ ସେ ଅବାକ୍ ହୋଇଯିବ । ଯେଉଁ ପଦାର୍ଥକୁ ସେ ଏକ ସମୟରେ ଅତ୍ୟନ୍ତ ଆଦର କରୁଥିଲା, ତାକୁ ବିପର୍ଯ୍ୟସ୍ତ ଅବସ୍ଥାରେ ପକାଇ ନିଶ୍ଚିନ୍ତ ହୋଇ ରହିପାରେ । କାହାକୁ ସେ କିପରି ଭାବରେ ଦେଖେ, ତାର କିଛି ସ୍ଥିରତା ନାହିଁ ।

ପାର୍ଥକ୍ୟ ଦେଖି ତୁଳନା କରାଯାଏ । ଦେଶବିଶେଷର ଆଚାର ଓ ରୁଚି ଅନ୍ୟ ଦେଶବାସୀଙ୍କୁ କଦର୍ଯ୍ୟ ଦେଖାଯାଇପାରେ । ଇଉରୋପର ସଭ୍ୟତା ସମଗ୍ର ପୃଥିବୀରେ ଯେ ଚଞ୍ଚଳତା ଆଣିଛି, ତାକୁ ପୁଙ୍ଖାନୁପୁଙ୍ଖରୂପେ ବିଚାର କଲେ ଅନେକ ଦୋଷ ପରିଦୃଷ୍ଟ ହୁଏ । ଏହା ବୋଲି ଇଉରୋପବାସୀମାନଙ୍କୁ ହୀନ ବୋଲି ବିବେଚନା କରିବା ଆମ୍ଭମାନଙ୍କର ଉଚିତ ନୁହେଁ । ଗତ ମହାସମରରେ ଇଉରୋପ ଯେଉଁ ଆହୁତି ପ୍ରଦାନ କଲା, ସେଥିରେ ଧ୍ୱଂସର ଅଗ୍ନି ପ୍ରବଳ ଭାବରେ ଜଳି ଉଠିଲା; ଧ୍ୱଂସର ଚିତ୍ର ମନୁଷ୍ୟ ମନରେ ଘୋର ଆତଙ୍କ ଉପସ୍ଥିତ କଲା । ଶାନ୍ତ ଓ ନିରୀହ ଜାତିମାନେ ଇଉରୋପକୁ ଅଭିଶାପ ଦେଲେ; କିନ୍ତୁ ସେ ସେହି ଭୀଷଣ ରଣକ୍ଷେତ୍ରରୁ ସହଜରେ ନିବୃତ୍ତ ହେଲା ନାହିଁ । ଅନ୍ୟାନ୍ୟ ସଭ୍ୟତାଭିମାନୀ ଜାତିମାନେ ଇଉରୋପର ସଭ୍ୟତାକୁ ଅତି ତୁଚ୍ଛ ମନେ କରି ପାରିଥିବେ । ହୁଏ ତ ଇଉରୋପର ନୈତିକ ଦୁର୍ବଳତା ସକାଶେ ଜଗତକୁ ପ୍ରାୟଶ୍ଚିତ୍ତ କରିବାକୁ ପଡ଼ିଲା । ଏଥିରେ କି ମାନବର କିଛି ଶିକ୍ଷା ହୋଇ ନାହିଁ ? ହିଂସା ପ୍ରବୃତ୍ତିକୁ ନିରଙ୍କୁଶ ଭାବରେ ଛାଡ଼ିଦେଲେ ତାହା କିପରି କରାଳ ମୂର୍ତ୍ତି ଧାରଣ କରେ, ତାର ସ୍ପଷ୍ଟ ପ୍ରମାଣ ମିଳିଯାଇଛି । ଭାରତର ଏଥିରେ ଗର୍ବ କରିବାର କିଛି ନାହିଁ । ଶ୍ରୀମଦ୍‌ଭଗବଦ୍‌ଗୀତା ପରି ଅଦ୍ୱିତୀୟ ଗ୍ରନ୍ଥର ପ୍ରକାଶର ଅନତିପୂର୍ବେ ଭ୍ରାତୃବିରୋଧ ଓ ପରସ୍ୱାପହରଣର ଲାଳସା ଭାରତୀୟ ମନକୁ ଗ୍ରାସ କରିଥିଲା । ଯଦି ମାନବର ସଭ୍ୟତା କ୍ରମଶଃ ଉନ୍ନତି ଦିଗରେ ଗତି କରୁଥାନ୍ତା, ତାହାହେଲେ ଅଧର୍ମର ମାତ୍ରା ଆସ୍ତେ ଆସ୍ତେ ପୃଥିବୀରୁ ଲୋପ ପାଉଥାନ୍ତା । ଭଗବାନ ଶ୍ରୀକୃଷ୍ଣଙ୍କୁ "ଯଦା ଯଦା ହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ—ଅଭ୍ୟୁତ୍ଥାନମଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହଂ" କହିବାକୁ ପଡ଼ି ନଥାନ୍ତା । ଜଗତରେ କର୍ତ୍ତବ୍ୟ, ସଦାଚାର ପ୍ରଭୃତିର ବିଭିନ୍ନ କ୍ରମ ଅଛି । ଅବସ୍ଥାନୁରୂପୀ ଦେଶ, କାଳ ଓ ପାତ୍ରାନୁସାରେ ଏମାନଙ୍କର ସୋପାନ ସ୍ଥିର କରାଯାଇପାରେ; କିନ୍ତୁ ଏପରି ସ୍ଥଳରେ

ଗୋଟାଏ ଆଦର୍ଶ ସୃଷ୍ଟି କରି ଜଗତର ସଭ୍ୟତାକୁ ମାପିବା ଯୁକ୍ତିସଙ୍ଗତ ନୁହେଁ । ସ୍ୱାମୀ ବିବେକାନନ୍ଦ କହିଛନ୍ତି—କୌଣସି ବ୍ୟକ୍ତିର କେବଳ ଆଜ୍ଞା ପାଳନରେ କିମ୍ବା ଅନୁସରଣରେ ଆଦର୍ଶରକ୍ଷା ହୁଏ ନାହିଁ । ଗୋଟିଏ ଦେଶର ସଭ୍ୟତା ଯେତେ ଉଚ୍ଚ ଓ ମହତ୍ତ୍ୱ ହେଉ ପଛକେ, ଅନ୍ୟ ଦେଶକୁ ସେହି ଛାଞ୍ଚରେ ଗଢ଼ିଦେବା ଉଚିତ ନୁହେଁ ।

ଆଜି ଭାରତ ଓ ଇଉରୋପ ସଭ୍ୟତାରେ ଯେ ଅସାମଞ୍ଜସ୍ୟ ରହିଛି, ତାକୁ ଦୂର କରି ଗୋଟାଏ ସାଧାରଣ ସଭ୍ୟତାର ଭିତ୍ତି ସ୍ଥାପନ କରିବା ସହଜ ନୁହେଁ । ସାମାନ୍ୟ ଦେଶାଚାରକୁ ବାଦ ଦେଲେ ଏକ ସାର୍ବଭୌମିକ ଆଦର୍ଶ ଦେଖିବାକୁ ମିଳେ । ଏହାର ଉପ୍ପତ୍ତିକୁ ମନୁଷ୍ୟ ଜାତିର ସାଧାରଣ ଧର୍ମ ଉପରେ ଆରୋପ କରାଯାଇପାରେ । ମନୁଷ୍ୟ-ସ୍ୱଭାବରେ ସାମ୍ୟ ଥିଲେ ସୁଦ୍ଧା ତାହାର କାର୍ଯ୍ୟପ୍ରଣାଳୀ ଏପରି ଜଟିଳ ହୋଇଯାଇଚି ଯେ, ଗୋଟାଏ ସରଳମାର୍ଗର ଅନୁବର୍ତ୍ତୀ ହୋଇ ରହିବାକୁ ସେ ପଶ୍ଚାତ୍ପଦ । ସେଥିଯୋଗୁଁ ଏତେ ବିଭିନ୍ନ ସମ୍ପ୍ରଦାୟ ଓ ଜାତିର ଅଭ୍ୟୁଦୟ ହୋଇଅଛି । ପ୍ରକୃତ ସଂସ୍ପର୍ଶରେ ମନୁଷ୍ୟର କାର୍ଯ୍ୟ-ବହୁଳ ଆୟାସ ପ୍ରକାଶିତ ହୁଏ । ପ୍ରକୃତିର ଗତି ନିରୂପଣ କରି ଗୋଟାଏ ସିଦ୍ଧାନ୍ତରେ ପହଞ୍ଚିବା ପାଇଁ ଅନେକ ଚେଷ୍ଟା କରିଥାନ୍ତି; କିନ୍ତୁ ସେଥିରେ ମଧ୍ୟ ବ୍ୟତିକ୍ରମ ଘଟିଥାଏ । ପ୍ରକୃତି-କୋଡ଼ରେ ପାଳିତ ଜୀବର ସ୍ୱତଃ ଉତ୍ଥାନ ଓ ପତନ ହେଲେ ତୁଳନା ପାଇଁ ସ୍ଥାନ ରହେ ନାହିଁ ।

ଜଗତ୍ ଯେ ଶକ୍ତିଦ୍ୱାରା ବ୍ୟକ୍ତ ହୋଇଅଛି, ତାର ବିନାଶ କିମ୍ବା ପରିବର୍ତ୍ତନ ହୁଏ ନାହିଁ । ମନୁଷ୍ୟ ନିଜର ସୁଖର ସଂସାର ଗଢ଼ିନିଏ କ୍ଷଣକ ପାଇଁ । କେତେବେଳେ ଗୋଟାଏ ପ୍ରବଳ ଢେଉ ଆସି ତାର ସୁଖସୌଧକୁ ଚୂର୍ଣ୍ଣ କରି ଦେଇ ଚାଲିଯାଏ । ସହସ୍ର ଚେଷ୍ଟା କଲେ ସୁଦ୍ଧା ନିତ୍ୟ-ଆବର୍ତ୍ତନଶୀଳ ସୁଖଦୁଃଖରାଶିକୁ କେହି ତା ଜୀବନପଥରୁ ଅନ୍ତର କରାଇ ପାରିବେ ନାହିଁ । ସମୁଦ୍ରରେ ଜଳର ପରିମାଣ ସମାନ ଥିଲେ ସୁଦ୍ଧା ଉତ୍ତାଳ ତରଙ୍ଗମାନଙ୍କର ବିରାମ ଆସେ ନାହିଁ । ଜାଗତିକ ନିୟମ ସମାନ ଭାବରେ କାର୍ଯ୍ୟ କରିଯାଉଚି; କିନ୍ତୁ ମାନବର ବ୍ୟକ୍ତିବୈଷମ୍ୟ-ଦ୍ୱାରା ସର୍ବଦା ଉଦ୍‌ଘାଟିତ ହୋଇ ରହିଚି । ବୈଷମ୍ୟ ଯେଭଳି କର୍ତ୍ତବ୍ୟ-ସମ୍ପାଦନରେ ବାଧା ଆସେ ନାହିଁ । ପ୍ରତ୍ୟେକ ନିଜ କର୍ମପଥରେ ସୁଚାରୁରୂପେ ଅଗ୍ରସର ହେଲେ ମାନବ-ଜୀବନ ସାର୍ଥକ ହୁଏ । ରାଜେଶ୍ୱରଠାରୁ ଦୀନ କୁଟୀରବାସୀ ପର୍ଯ୍ୟନ୍ତ ସମସ୍ତେ ନିଜ ନିଜ ଲକ୍ଷ୍ୟପଥରେ ଚାଲିଛନ୍ତି । କାହାରି କାର୍ଯ୍ୟକୁ ଅନାଦର କରିବା ଉଚିତ ନୁହେଁ । ଜଗତର ଭଲ ମନ୍ଦ ବିଚାର କଲେ କିଛି ଲାଭ ନାହିଁ । ମନୁଷ୍ୟ ମନର ଭାବ ସବୁବେଳେ ସମାନ ନ ଥାଏ । ଯେ ଭାବର ଅଧୀନ ହୋଇ ସେ ଜଗତର କାର୍ଯ୍ୟପ୍ରଣାଳୀମାନଙ୍କୁ ଦେଖେ, ସେମାନେ ସେହି ରୂପରେ ତା ଆଗରେ ପ୍ରତୀୟମାନ ହୁଅନ୍ତି । ଅତୀତର ଯାହା ଥିଲା, "ବର୍ତ୍ତମାନ" ସେଥିରୁ ବଞ୍ଚିତ ନୁହେଁ କିମ୍ବା "ବର୍ତ୍ତମାନ" ଯାହା ପ୍ରକାଶ କରିବାକୁ ସମର୍ଥ ହୋଇଅଛି, ତା ଅତୀତ ଗର୍ଭରେ ଆତ୍ମଗୋପନ କରିଥିଲା । ସମୟ ସମୟରେ କେହି ମହାମାନବ ପୃଥିବୀରେ ଅବତୀର୍ଣ୍ଣ ହୋଇ ଯେ ମନ୍ତ୍ର ପ୍ରଚାର କରନ୍ତି, ତଦ୍ଦ୍ୱାରା ମାନବ ଜାତିର ଜଡ଼ତା ଅନେକ ପରିମାଣରେ ଘୁଞ୍ଚିଯାଏ; କିନ୍ତୁ ମନୁଷ୍ୟ ସ୍ୱଭାବର ପରିବର୍ତ୍ତନ ଘଟେ ନାହିଁ ।

ଯୀଶୁ, ବୁଦ୍ଧ ଓ ମହମ୍ମଦ ଧର୍ମଜଗତରେ ଯେତେ ବିପ୍ଲବ ଆଣିଲେ, ତଦ୍ଦ୍ୱାରା ସାମୟିକ ଅଗ୍ରଗତିର ସୂଚନା ମିଳିଲା; କିନ୍ତୁ ଅଜ୍ଞାନତା ଧରାବକ୍ଷରୁ ଅପସାରିତ ହେଲା ନାହିଁ । ଆଜି ସମୟସ୍ରୋତରେ ଖ୍ରୀଷ୍ଟାନ୍, ବୌଦ୍ଧ ଓ ମୁସଲମାନ ଏକ ତରୀରେ ସହଯାତ୍ରୀ । ପୃଥିବୀର ଦୁର୍ଦ୍ଦଶାରେ ସମସ୍ତେ ମୁହ୍ୟମାନ । ଗୋଟାଏ ସଭ୍ୟତାର ପ୍ରେରଣାରେ ସମସ୍ତଙ୍କ ପ୍ରାଣ ଅସ୍ଥିର ପ୍ରକମ୍ପନ ଅନୁଭବ କରୁଚି । ବିଭିନ୍ନତା ମଧ୍ୟରେ ଯେ ସାମ୍ୟଭାବ ଅଛି, ତାକୁ ସେମାନଙ୍କୁ ସମଦଶାର ଅଧୀନ କରାଇଅଛି । ବାହ୍ୟ ଚାକଚକ୍ୟ ଦୃଷ୍ଟିରେ ବିଚାର କଲେ ଆଧୁନିକ ମାନବ ତାର ପୂର୍ବପୁରୁଷମାନଙ୍କ ସଭ୍ୟତାରେ ଅତିକ୍ରମ କରିଚି ବୋଲି ଜଣାଯାଇପାରେ; କିନ୍ତୁ ଖାଣ୍ଟି ଜିନିଷଟି ସର୍ବଦା ଏକ-ଅବସ୍ଥାରେ ରହିଚି । ମନୁଷ୍ୟ ସ୍ୱଭାବର ସମ୍ପୂର୍ଣ୍ଣ ପରିବର୍ତ୍ତନ ନ ହେବା ଯାଏ ଗୋଟାଏ କାଳ୍ପନିକ ମାନଦଣ୍ଡରେ ତା ସଭ୍ୟତାକୁ ନିର୍ଣ୍ଣୟ କରିବା ଠିକ୍ ନୁହେଁ ବୋଲି ଆମ୍ଭମାନଙ୍କର ବିଶ୍ୱାସ ।

# ଶାନ୍ତିର ସୋପାନ

ବିଶ୍ୱପ୍ରକୃତି ସହିତ ଚିତ୍ତ-ଶକ୍ତି-ପ୍ରବାହକୁ ସଂଶ୍ଳିଷ୍ଟ କରିପାରିଲେ ବୈଷୟିକ ବେଷ୍ଟନୀ ମଧ୍ୟରେ ମନ ବେଶି ଆବଦ୍ଧ ରହେ ନାହିଁ । ସୃଷ୍ଟିକର୍ତ୍ତାଙ୍କର ଅଭ୍ରାନ୍ତ ନିୟମର ଅଧୀନ ହୋଇ ସାମାନ୍ୟ ଧୂଳିକଣାଠାରୁ ଗ୍ରହ, ଉପଗ୍ରହ ସୌର ଜଗତ୍ ପ୍ରଭୃତି ନିର୍ଦ୍ଦିଷ୍ଟ କାର୍ଯ୍ୟମାନଙ୍କରେ ନିଯୁକ୍ତ ରହିଛନ୍ତି । ଏହି ଅନନ୍ତ କ୍ରିୟାର ବିରାମ ନାହିଁ । କ୍ଷୁଦ୍ର ମନୁଷ୍ୟ ଯେତେବେଳେ ତାର ଭିନ୍ନତା ଲୋପ କରି ପ୍ରାକୃତିକ ନିୟମ ସହିତ ସାମଞ୍ଜସ୍ୟ ସ୍ଥାପନ କରେ, ସେତେବେଳେ ତାର ଶାନ୍ତିର ପଥ ଉନ୍ମୁକ୍ତ ହୁଏ । ଆଧ୍ୟାତ୍ମିକ ଚିନ୍ତାରେ ମନୁଷ୍ୟଜୀବନର ସାର୍ଥକତା ଓ ଶାନ୍ତି ନିହିତ ଅଛି । ଶରୀର ଜ୍ଞାନକୁ କ୍ରମଶଃ ଲୋପ କରି ଅନ୍ତର୍ନିହିତ ସତ୍ତା ଉପରେ ବିଶ୍ୱାସ କଲେ ମନର ସଙ୍କୀର୍ଣ୍ଣତା ଦୂର ହୁଏ । ସହସ୍ର ସହସ୍ର ନରନାରୀ କ୍ଷୁବ୍ଧ ପ୍ରାଣରେ ଶାନ୍ତି ଆଶାରେ ସର୍ବଦା ଧାବିତ । ବାଷ୍ପୀୟ ପୋତ କିମ୍ବା ଆକାଶବିମାନରେ ସମସ୍ତ ଜଗତ୍ ଭ୍ରମଣ କରି ଶାନ୍ତି ଅନ୍ୱେଷଣ କଲେ ସୁଦ୍ଧା ଶାନ୍ତି ପାଇବା ଦୁଷ୍କର । ବସ୍ତୁଜଗତର ବାହ୍ୟ ଆକର୍ଷଣରେ ମନ ଅତ୍ୟଧିକ ଆକୃଷ୍ଟ ହେଲେ ଏକ ବହିର୍ମୁଖୀ ଭାବ ହୃଦୟରେ ସୃଷ୍ଟି ହୁଏ; ତୃଷାର୍ତ୍ତ ପଥିକର ମରୀଚିକା ଭ୍ରମ ମନୁଷ୍ୟ ମନକୁ ଅଧିକାର କରେ । ସେ ନିଜ ଅନ୍ତରକୁ ଅବଲୋକନ କରିବା ପରିବର୍ତ୍ତେ ବାହାରକୁ ଅନାଇ ରହେ । ସାଂସାରିକ ବିବିଧ କ୍ରିୟା ସମ୍ପାଦନ କରି କେବଳ ଶାରୀରିକ ତୃପ୍ତିସାଧନରେ ରତ ରହିଲେ, ମନର ଆନନ୍ଦ ସ୍ଥାୟୀ ହୋଇପାରେ ନାହିଁ । କାରଣ ଯେଉଁ ବିଷୟବାସନାରେ ମନ ନିବିଷ୍ଟ ଥାଏ, ତାହା ପ୍ରକୃତ ଆନନ୍ଦର ଆଧାର ନୁହେଁ । ଶାନ୍ତିର ବିମଳାଲୋକ ପ୍ରତିଭାତ ହେଲେ ଜୀବନ-ଉତ୍ସ ସ୍ୱଚ୍ଛ କଲ୍ଲୋଳିନୀ ଆକାର ଧାରଣ କରି ସେହି ପବିତ୍ର ଅନନ୍ତ-ସ୍ରୋତରେ ମିଶିବାକୁ ଧାଏଁ; ପାର୍ଥିବ ବାଧା କ୍ଷୁଦ୍ର ଉପଳ ଖଣ୍ଡ ସମ ସ୍ୱତଃ ଅପସାରିତ ହୋଇଯାଏ । ଅସହ୍ୟ ମର୍ମପୀଡ଼ା କିମ୍ବା ବିଷୟ-ଭୋଗର ଅସାରତା ପୂର୍ଣ୍ଣ ଉପଲବ୍ଧି କଲେ ଜୀବନର ହାହାକାର ମଧ୍ୟଦେଇ ଅନେକ ସମୟରେ ଆନନ୍ଦରଶ୍ମିର ରେଖାପାତ ଦୃଷ୍ଟ ହୁଏ । ସେ ଗୋଟାଏ ସଙ୍କେତ ମାତ୍ର । ତାକୁ ଅନୁସରଣ କରି ନ ପାରିଲେ ମନର ପୂର୍ବ ବାସନାସବୁ ପୁଣି ଅନ୍ଧକାର ଓ ମୋହ ସୃଷ୍ଟି କରେ । ଜୀବନରେ ଯେଉଁମାନେ ନିଃସ୍ୱ ଏବଂ ଜଗତ୍-ଚକ୍ଷୁରେ ଯେଉଁମାନେ ଅନାଦୃତ, ସେମାନଙ୍କ ପାଇଁ ଶାନ୍ତିଧନ ଗଚ୍ଛିତ ଥାଏ । କେବଳ ଦ୍ୱାର ଉନ୍ମୁକ୍ତ କରି ଧନ ଆହରଣ କରିବାର ଶକ୍ତି ଥିବା ଆବଶ୍ୟକ । ବାସନାପରତନ୍ତ୍ରର ଶ୍ରୀ ହଠାତ୍ ଲୁଣ୍ଠିତ ହେଲେ, ସେ ମୋହବିଭ୍ରାନ୍ତ ହୋଇ ପ୍ରକୃତ ପଥ ଅବଧାରଣ କରିପାରେ ନାହିଁ ।

ମନର ସ୍ୱଚ୍ଛତା ଅନୁସାରେ ମହତ୍ତର ଅନୁଭୂତିରେ ହୃଦୟ ଦୃଢ଼ଭାବ ଧାରଣ କରେ ଓ ଶରୀରସଂରକ୍ଷଣ ଶକ୍ତି ଉତ୍ତରୋତ୍ତର ବୃଦ୍ଧିଲାଭ କରେ । ସତ୍‌ମାର୍ଗରେ ଗତି କଲାବେଳେ ବିପଦର ଆଶଙ୍କା ଅଳ୍ପ ଥାଏ; ତାକୁ ଅତିକ୍ରମ କରିବା ପାଇଁ ମନର ବଳ ନ୍ୟୂନ ବୋଧହୁଏ ନାହିଁ । ଅନେକଙ୍କ ଜୀବନରେ ଏହା ପ୍ରମାଣିତ ହୋଇଅଛି । ଆମ୍ଭେମାନେ ଭୟକୁ ହୃଦୟରେ ସ୍ଥାନ ଦେବାମାତ୍ରେ ଆଶୁ ବିପଦର ବୀଜ ସଂକ୍ରମିତ ହୋଇ ଗୋଟାଏ ବିପ୍ଳବର ସୂତ୍ରପାତ କରେ । ସାଧାରଣ ଦୃଷ୍ଟାନ୍ତରୁ ଏହାର ସତ୍ୟତା ବୁଝାଯାଇପାରେ । କୁକୁର ଓ ଅନ୍ୟାନ୍ୟ ଗୃହପାଳିତ ପଶୁମାନେ ମନୁଷ୍ୟର ଭୀରୁତା ଜାଣି ପାରନ୍ତି । ଭୟାଳୁ ଆଗନ୍ତୁକ ଦେଖିଲେ କୁକୁର ଉତ୍ତେଜିତ ହୋଇ ଆକ୍ରମଣ କରିବାକୁ ଚେଷ୍ଟା କରେ; କିନ୍ତୁ ଅପରିଚିତ ସାହସୀ ଲୋକ ନିକଟକୁ ଆସେ ନାହିଁ । ଯେ ପରିମାଣରେ ଆମ୍ଭେମାନେ ଆତ୍ମବଳ ସଞ୍ଚୟ କରି ସେହି ଅନନ୍ତ ଶକ୍ତି ସହିତ ସମ୍ବନ୍ଧ ସ୍ଥାପନ କରୁ, ସେହି ପରିମାଣରେ ହୃଦୟର ଦୁର୍ବଳତା କମିଯାଇ ଶାନ୍ତିର ଆଶ୍ରୟ ନିଏ; ପୂର୍ବାବସ୍ଥାର ବିରକ୍ତି ମନରୁ ସ୍ୱତଃ ଅପସାରିତ ହୋଇଯାଏ; ଲୌକିକ ସମ୍ମାନ କିମ୍ବା ନିନ୍ଦାରେ କୌଣସି ବିକାର ଜନ୍ମେ ନାହିଁ । ଅନ୍ତର୍ଦୃଷ୍ଟି ଜାତ ହେବାଦ୍ୱାରା ମନୁଷ୍ୟ ସ୍ୱଭାବ ଅନାବୃତ ଭାବରେ ଦେଖାଯାଏ । ମୁହଁରେ ଗୋଟାଏ କଥା ଶୁଣି ହୃଦୟରେ ତଦ୍‌ବିପରୀତ କାର୍ଯ୍ୟକାରୀ ଭାବକୁ ଅକ୍ଲେଶରେ ଅନୁସରଣ

କରାଯାଇପାରେ । ଆଜକାଲ ସମାଜରେ ସହୃଦୟତା ନାହିଁ କହିଲେ ଚଳେ । କେବଳ ମନ-ଭୁଲାଣିଆ କେତେଗୁଡ଼ାଏ କଥା କହି ପାରିଲେ ଭଦ୍ରତା ଷଜ୍ଞାନୁଯାୟୀ ମାନ ରକ୍ଷା କରାଯାଏ । ଆତ୍ମଗୋପନ ନ କରି କେତୋଟି କଥା ସ୍ପଷ୍ଟ କହିବାର ସାହସ ଯେଉଁମାନଙ୍କର ନାହିଁ; ସେମାନଙ୍କ ପକ୍ଷରେ ଆତ୍ମବଳ ଲାଭ କରିବା ବିଡ଼ମ୍ବନା ମାତ୍ର । ସଂସାରକୁ ଭଲରୂପେ ନ ଚିହ୍ନି ବା ଯାଏ ମନୁଷ୍ୟ ପଦେ ପଦେ ପ୍ରତାରିତ ହେଉଥାଏ । ସମସ୍ତ ଆଶାଭରସା ଆତ୍ମୀୟ ଓ ବନ୍ଧୁମାନଙ୍କ ଉପରେ ନ୍ୟସ୍ତ କଲେ, ଦୁଃଖ ଓ ଶୋକର ଧାରା ଅବିଚ୍ଛିନ୍ନ ଭାବରେ ବହୁଥାଏ; କିନ୍ତୁ ଯେତେବେଳେ ଆମ୍ଭେମାନେ ଜୀବନର ଗତି ଓ ଯାବତୀୟ କର୍ମ-ସମ୍ପାଦନରେ ବିଶ୍ୱ-ଶାସନ-ତନ୍ତ୍ରୀର ମହତ୍ ନିୟମର ବିକାଶ ଅନୁଭବ କରୁ, ସେତେବେଳେ ଶାନ୍ତି-ବାରିର ନିର୍ମଳ ଧାରା ମନର ଆବିଳତା ନଷ୍ଟ କରିବା ପାଇଁ ପ୍ରବଳ ବେଗରେ ଧାବିତ ହୁଏ । ବସ୍ତୁ-ଜଗତର ସାରୂପ୍ୟ, ସମ୍ବନ୍ଧ, ଉତ୍ପତ୍ତି ଓ ବିନାଶ ବିଷୟରେ ସମ୍ୟକ୍ ଜ୍ଞାନ ଲାଭ କଲେ ହୃଦୟର ଦୁର୍ବଳତା ଅନେକାଂଶରେ ଦୂରୀଭୂତ ହୁଏ ।

ବିଷୟ ଲାଳସା ମନରେ ସୁଖ କିମ୍ବା ଦୁଃଖର ଛାୟା ପକାଇ ପାରେ ନାହିଁ । ଆତ୍ମସତ୍ତା ସହିତ ପରମାତ୍ମାଙ୍କର ଅଭିନ୍ନତା ଯେଉଁମାନେ ଉପଲବ୍ଧି କରନ୍ତି, ସେମାନେ ଆତ୍ମୀୟମାନଙ୍କର ମୃତ୍ୟୁରେ ସୁଦ୍ଧା ବିଚଳିତ ହୁଅନ୍ତି ନାହିଁ । କାରଣ ସେମାନେ ଜାଣନ୍ତି ଯେ, ମୃତ୍ୟୁ ଗୋଟାଏ ପରିବର୍ତ୍ତନ ମାତ୍ର । ଏ ପ୍ରସଙ୍ଗରେ ସ୍ୱଜନ-ବିଚ୍ଛେଦ ବିଷୟ ଉତ୍ଥାପିତ ହୋଇପାରେ । ଆତ୍ମଶକ୍ତି ବିକଶିତ ହେଲେ ଭିନ୍ନତା ଜଣାଯାଏ ନାହିଁ । ଶରୀରର ବିନାଶ କିମ୍ବା ବର୍ତ୍ତମାନତା ପବିତ୍ର ପ୍ରଣୟ ନିକଟରେ ତୁଚ୍ଛ ବିବେଚିତ ହୁଏ । ହୃଦୟର ମିଳନ ଶରୀରରୂପୀ ଆବରଣ ଉପରେ ନିର୍ଭର କରେ ନାହିଁ । ପ୍ରବୃତ୍ତିମାନଙ୍କ ଆଶ୍ରୟରେ ଦୁର୍ବଳ ମନ କେବଳ ଶରୀର ଉପରେ ନିର୍ଭର କରିଥାଏ; କିନ୍ତୁ ଥରେ ମାର୍ଜିତ ହୋଇ ପ୍ରେମ ରାଜ୍ୟରେ ବିଚରଣ କରିପାରିଲେ ବିଚ୍ଛେଦ-ଦୁଃଖକୁ ଚିରଦିନ ପାଇଁ ବିଦାୟ ଦେବାକୁ ହୁଏ ।

ଯେ ପଦାର୍ଥ ପ୍ରତି ପୂର୍ଣ୍ଣ ଆଗ୍ରହ ପ୍ରକାଶ କରାଯାଏ, ତାର ଆବିର୍ଭାବ ହେବା ପ୍ରକୃତିର ନିୟମ । ପ୍ରବଳ ଆକାଙ୍କ୍ଷାରେ ମନୁଷ୍ୟର କର୍ମ-ପ୍ରକୃତି ଗଠିତ ହୋଇ ତାକୁ ଜନ୍ମଜନ୍ମାନ୍ତରରୁ ଟାଣି ଧରେ । ଜଗତର ନିୟମରେ କୌଣସି ବ୍ୟତିକ୍ରମ ନାହିଁ । ପ୍ରାଚୀନ ଆର୍ଯ୍ୟମାନେ ଯେଉଁ ଜ୍ଞାନ ଓ ଆନନ୍ଦର ଅଧିକାରୀ ହୋଇପାରିଥିଲେ, ଆଜି ଆମ୍ଭେମାନେ ନୀଚ କାମନାର ଘର୍ଷଣରେ ପଡ଼ି ସେମାନଙ୍କ ଅନୁସୃତ ମାର୍ଗ ବିସ୍ମୃତ ହେଲୁଣି । ସମୟ ଆସିପାରେ, ଯେତେବେଳେ ପୂର୍ବପୁରୁଷର ଲୁପ୍ତ ଗୌରବ ଓ ଶକ୍ତି ଆମ୍ଭମାନଙ୍କୁ କିମ୍ବା ପରବର୍ତ୍ତୀ ବଂଶଧରମାନଙ୍କୁ ସଞ୍ଜୀବିତ କରି ସମସ୍ତ ଜଗତକୁ ଆଶ୍ଚର୍ଯ୍ୟ କରିଦେବ ।

ଯାର ଚିତ୍ତ-ଜଗତରେ ଶାନ୍ତିଧାରା ପ୍ରବାହିତ ହୁଏ, ତାର ସମ୍ପର୍କ ଅନ୍ୟମାନଙ୍କୁ ଅସାମାନ୍ୟ ଆନନ୍ଦୋଚ୍ଛ୍ୱାସରେ ପ୍ରବାହିତ କରେ । ଚୁମ୍ବକ ଲୌହକୁ ଆକର୍ଷଣ କଲା ପରି ସେମାନେ ଜଗତରୁ କେବଳ ଆନନ୍ଦର ଉପାଦାନଗୁଡ଼ିକ ସଂଗ୍ରହ କରି ଉଦ୍‌ବେଳିତ ହୃଦୟରେ ପ୍ରଶାନ୍ତଭାବ ଜନ୍ମାନ୍ତି । ସାଧାରଣତଃ ଏପରି କେତେଗୁଡ଼ିଏ ଶାନ୍ତ ଲୋକ ଥାନ୍ତି, ଯେଉଁମାନେ ସର୍ବଦା ସଂସାରର ହିତସାଧନରେ ଜୀବନ ଅତିବାହିତ କରନ୍ତି । ସେମାନଙ୍କ ଆବିର୍ଭାବରେ ଦୈନ୍ୟ, ନୈରାଶ୍ୟ ଓ ଭୟ ପ୍ରଶମିତ ହୁଏ । ଆତ୍ମଶକ୍ତିର ପରିଚୟ ନ ପାଇବା ଯାଏ ଏପରି ଅପାର୍ଥିବ ଭାବ ବିତରଣ କରିବା ସମ୍ଭବ ନୁହେଁ । ବିଶ୍ୱଶକ୍ତିର ଅଂଶ ପ୍ରତ୍ୟେକ ମନୁଷ୍ୟଠାରେ ସଞ୍ଚାରିତ ହୋଇ ଗୋଟାଏ ପୂର୍ଣ୍ଣତାର ଆଭାସ ଦିଏ ।

ସେହି ପୂର୍ଣ୍ଣତାପ୍ରାପ୍ତି ଜୀବର ଲକ୍ଷ୍ୟ ଓ ଶାନ୍ତିର ପରମ ପଦ । ସମକାଙ୍କ୍ଷୀମାନଙ୍କର ଏକତ୍ର ସମାବେଶ ହୋଇଥାଏ । ଶାନ୍ତିପ୍ରିୟ ନିଜର ଅଭିଳାଷାନୁଯାୟୀ ଲୋକ କିମ୍ବା ପଦାର୍ଥ ବିଶେଷରେ ମନୋନିବେଶ କରି କୃତାର୍ଥ ହୁଏ ।

ସ୍ୱଭାବାନୁବର୍ତ୍ତୀ ଭାବ ଏବଂ କାର୍ଯ୍ୟର ପୁଷ୍ଟିସାଧନରେ ମନର ଏକାଗ୍ରତା ଜନ୍ମେ; ଆକାଙ୍କ୍ଷା ମଧ୍ୟ ଫଳବତୀ ହୁଏ । ଆଦର୍ଶକୁ ଲକ୍ଷ୍ୟ ରଖି ଚିନ୍ତାସ୍ରୋତ ପ୍ରବାହିତ ହେଲେ ଅଦୃଶ୍ୟ ଶକ୍ତି କ୍ରମଶଃ ସଞ୍ଚିତ ହୋଇ ପ୍ରବଳ ଆକାର ଧାରଣ କରି ଶେଷରେ ବାସ୍ତବତାରେ ପରିଣତ ହୁଏ । ପବିତ୍ର ଆଦର୍ଶ ଓ ବଳବତୀ ଆକାଙ୍କ୍ଷା ଯାହାର ହୃଦୟକୁ ଅଧିକାର କରେ, ସେ କଦାପି ଭୟ କିମ୍ବା ନିଷ୍ଫଳ ଆଶାରେ ଉଦ୍‌ବିଗ୍ନ ହୁଏ ନାହିଁ । ଯଦି ସେ ଆକସ୍ମିକ ଘଟଣା-ସ୍ରୋତରେ ଭୟବିହ୍ୱଳ ହୁଏ, ତାହାହେଲେ ପ୍ରକୃତିସ୍ଥ ହେବା ପାଇଁ ତାକୁ ବେଶି ସମୟ ଲାଗେ ନାହିଁ । ଭାବ-ରାଜ୍ୟରେ ବିଭିନ୍ନ ସ୍ତରସବୁ ଅଛି । ଶକ୍ତିମାନ୍, ଦୁର୍ବଳର ହୀନ ଭାବନାରେ ଇତସ୍ତତଃ ହୁଏ ନାହିଁ; ବରଂ ସଙ୍କୁଚିତ-ହୃଦୟ ପ୍ରତ୍ୟେକ ବିଷୟରେ ଭୟ କଳ୍ପନା କରି ଭୀରୁତାର ଅଧୀନ ହୁଏ ।

ଭୟ ସଞ୍ଚାର କରିବାର ପ୍ରବୃତ୍ତି ମନରେ ଜାଗ୍ରତ ହେଲେ ଅବସନ୍ନତା କର୍ମପନ୍ଥାକୁ ନିୟନ୍ତ୍ରିତ କରେ । ଏପରି ଅବସ୍ଥାରେ କୌଣସି ବିଘ୍ନକୁ ଅତିକ୍ରମ କରିବା ମନୁଷ୍ୟର ଆୟତ୍ତାଧୀନ ହୁଏ ନାହିଁ । ଯେପରି ଭାବ ହୃଦୟରେ ପୋଷଣ କରାଯାଏ, ତଦନୁରୂପ ଶକ୍ତିର ବିକାଶ ହୁଏ । ଉତ୍ସାହ ବଳସଞ୍ଚାର କରେ; ଭୟ ଦୁର୍ବଳତା ଆଣେ । ଶକ୍ତିମାନ୍‌ର ଶକ୍ତି ଜଗତରେ ଶୀଘ୍ର ପ୍ରକାଶିତ ହୁଏ; ସେ ଅବସ୍ଥାର ଦାସ ହୋଇ ରହିବାକୁ ଚାହେଁ ନାହିଁ । ଯେଉଁମାନେ ନିଜ ଉପରେ ବିଶ୍ୱାସ କରନ୍ତି ନାହିଁ ଓ ସର୍ବଦା ଭାବୀ ବିପଦ ଆଶଙ୍କାରେ ଲିପ୍ତ ଥାନ୍ତି, ସେମାନେ ପ୍ରତ୍ୟେକ ଘଟଣାରେ ବିପଦର ସୂଚନା ଦେଖନ୍ତି ।

ମନୁଷ୍ୟ ଯାହା ଭୋଗ କରେ, ସେଥିରେ ଅନ୍ୟକୁ ଦାୟୀ କରିବା ଅନୁଚିତ । ନିଜ କର୍ମମାର୍ଗ ସ୍ଥିର କରିବାରେ କେହି ବାଧା ଦିଅନ୍ତି ନାହିଁ । ଦୃଶ୍ୟ ଜଗତର ଯାବତୀୟ କ୍ରିୟା ଓ ସଙ୍କଳନର ବୀଜ ଅଦୃଶ୍ୟ ଭାବରାଜ୍ୟରେ ନିହିତ ଥାଏ । ଏମାନଙ୍କୁ ଆମ୍ଭେମାନେ କାର୍ଯ୍ୟ ଓ କାରଣ ଭେଦରେ ଦୁଇ ବିଭିନ୍ନ ସୀମାରେ ନିର୍ଦ୍ଦେଶ କରୁ । କାର୍ଯ୍ୟ କାରଣର ଅନୁବର୍ତ୍ତୀ । ଭାବାନୁଯାୟୀ କାର୍ଯ୍ୟର ଉତ୍ପତ୍ତିକୁ ଅଧିକାଂଶ ହୃଦୟଙ୍ଗମ କରିପାରନ୍ତି ନାହିଁ । ଚିନ୍ତା-ଧାରାକୁ ନିୟମିତ ଭାବରେ ସଂଯତ କରି ଉପଯୁକ୍ତ ଆଧାରରେ ସଂଯୋଗ କଲେ, ମନୁଷ୍ୟର କୌଣସି ପତନର ଭୟ ଥାଏ ନାହିଁ । ଏପରି କରି ନ ପାରି ଆମ୍ଭମାନଙ୍କ ମଧ୍ୟରୁ ଅନେକେ ନୈରାଶ୍ୟରେ ଜୀବନ କଟାନ୍ତି ।

ଭୟର ବ୍ୟାପ୍ତିକୁ କୌଣସି ନିର୍ଦ୍ଦିଷ୍ଟ ସୀମା ମଧ୍ୟରେ ରଖାଯାଇ ନ ପାରେ । ଅଭାବ, ରୋଗ, ଶୋକ ଓ ମୃତ୍ୟୁ ପ୍ରଭୃତି ଦୁଃଖ ଲାଗି ରହିଛି । ସେଥିରେ ପୁଣି ଲୋକମତାନୁଯାୟୀ କାର୍ଯ୍ୟକରି ସ୍ୱତନ୍ତ୍ରତା ରକ୍ଷା କରିବା ଆଉ ଗୋଟାଏ କଠିନ ବ୍ୟାପାର । ଏ ସବୁ ବିଷୟରେ ଯଦି ଭୟକୁ ପ୍ରଶ୍ରୟ ଦିଆଯାଏ, ତାହାହେଲେ ମନୁଷ୍ୟତ୍ୱ ପ୍ରକାଶ ପାଏ ନାହିଁ । ସଂଖ୍ୟାତୀତ ଲୋକ ଭୟରେ ସର୍ବଦା ଚାଳିତ ହେବାଦ୍ୱାରା ସମାଜରେ ଭୀରୁ ସ୍ୱଭାବର ସଞ୍ଚାର ବେଶି ଦେଖାଯାଏ । ଭୟ ନ କରି ଯାହା ଲାଭ କରାଯାଏ, ତଦପେକ୍ଷା ଶଙ୍କିତ ଚିତ୍ତରେ ବେଶି କ୍ଷତି ହୁଏ । କେହି କେହି କହି ପାରନ୍ତି ଯେ, ଭୟ କରିବା ସେମାନଙ୍କର ସ୍ୱଭାବ । ଏପରି ଉକ୍ତିରେ ସେମାନେ ଆପଣା ସ୍ୱଭାବକୁ ନିରୂପଣ କରିବାର କ୍ଷମତା ଦେଖାନ୍ତି ନାହିଁ । ନିଜକୁ ନ ଚିହ୍ନିଲେ ଉପଯୁକ୍ତ ଶକ୍ତି ପ୍ରୟୋଗ କରି କୌଣସି କାର୍ଯ୍ୟ ସାଧନ କରି ହେବ ନାହିଁ । ସବୁବେଳେ ଯେଉଁମାନେ ଅକ୍ଷମତା ପ୍ରକାଶ କରୁଥାନ୍ତି, ସେମାନଙ୍କ ଉପରେ ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟ ନ୍ୟସ୍ତ କରିବା ଉଚିତ ନୁହେଁ । ସଂସାରରେ ଯେ ଯେତେ ବେଶି ଆତ୍ମନିର୍ଭରଶୀଳ ସେ ତେତେ ଉନ୍ନତି ଲାଭ କରିପାରେ । କର୍ମତତ୍ପର ମନରୁ ନୈରାଶ୍ୟ ଦୂର କରି ସିଦ୍ଧି ଆଶାରେ ଭାବନାର ଗତିକୁ ସର୍ବଦା କାର୍ଯ୍ୟୋପଯୋଗୀ କରେ ଏବଂ ସେଥିରେ ମଧ୍ୟ ସେ ଅନୁକୂଳ ଅବସ୍ଥାର ସାହାଯ୍ୟ ପାଇଥାଏ । ଏକାଗ୍ରତାରେ ମନର ସମସ୍ତ ଶକ୍ତି କେନ୍ଦ୍ରୀଭୂତ ହୁଏ ଏବଂ ଯେ କୌଣସି କାର୍ଯ୍ୟ ସାଧନ ପକ୍ଷରେ ଉତ୍ସାହର ଅଭାବ ହୁଏ ନାହିଁ । ପ୍ରବଳ ଲୋକ ତାର ସମଜାତୀୟ ଲୋକଙ୍କଠାରୁ ସାହସ ଓ ଉତ୍ସାହ ଆକର୍ଷଣ କରିପାରେ । ଏହା ପ୍ରାକୃତିକ ନିୟମ । ଜଣକର ଚିନ୍ତାଧାରା ଦ୍ୱାରା ବିଭିନ୍ନ ସ୍ତରର ସୃଷ୍ଟି ହୁଏ ନାହିଁ । ସମସ୍ୱଭାବବିଶିଷ୍ଟ ଲୋକମାନଙ୍କ ଚିନ୍ତା ସମଦିଗରେ ଗତି କରି ବିଭିନ୍ନତା ସୃଷ୍ଟି କରେ । ଯେଉଁମାନେ ଏକ ଧାରାବାହିକ ଉତ୍ସାହପୂର୍ଣ୍ଣ ପ୍ରାଣରେ ଅଗ୍ରସର ହୁଅନ୍ତି, ସେମାନଙ୍କଠାରେ ଭୟ କିମ୍ବା ଦୁର୍ବଳତା ବେଶି ସମୟ ସ୍ଥାୟୀ ହୋଇପାରେ ନାହିଁ । ସବଳ ହେବା ପୂର୍ବରୁ ମନର ଦୁର୍ବଳତାକୁ ଅନ୍ତର କରିବା ଆବଶ୍ୟକ । ଭଗବତ୍ ଶକ୍ତି ଉପରେ ପୂର୍ଣ୍ଣ ବିଶ୍ୱାସ ରଖି ଦୈନନ୍ଦିନ କାର୍ଯ୍ୟଗୁଡ଼ିକ ସମ୍ପାଦନ କଲେ, ଆତ୍ମ-ପ୍ରକାଶ-ପଥ ଅନୁଭୂତ ହୋଇପାରେ । ଦୁର୍ଦ୍ଦିନର ଅନ୍ଧକାରରେ ବ୍ୟାକୁଳତା ଆସିଲେ, ନିଜକୁ ବିଭୁପଦାଶ୍ରିତ ମନେ କଲେ ବିପଦର ଭୟ ଦୂର ହୁଏ । "ନ ବାସୁଦେବଭକ୍ତାନାଂ ଅଶୁଭଂ ବିଦ୍ୟତେ କ୍ୱଚିତ୍ ।" ସତ୍ୟ ଓ ନ୍ୟାୟ ପଥରେ ଜୀବନ ଅତିବାହିତ କଲେ, ଶାନ୍ତି ସ୍ୱତଃ ହୃଦୟକୁ ଆସି ଅଧିକାର କରେ । ବସ୍ତୁ-ଜଗତର ମୋହ ମନର ଅଶାନ୍ତି ଆଣେ । ଐଶୀଶକ୍ତି ପରମାର୍ଥ ଜ୍ଞାନ ବିକାଶର ସହାୟତା କରି ପୂର୍ଣ୍ଣ ଆନନ୍ଦର ପଥ ନିର୍ଦ୍ଦେଶ କରିଦିଏ । ବୈଷୟିକ ତୃପ୍ତି ଶେଷରେ ଦୁର୍ବଳ ଦଶାର ଅଧୀନ କରାଏ । ସେହିହେତୁ ଶାନ୍ତିପିପାସୁମାନେ ମୂଳରୁ ସାବଧାନ ହୋଇ ନିଜର ଗନ୍ତବ୍ୟ ପଥ ସ୍ଥିର କରିନିଅନ୍ତି ।

# କାଳିମା

ନିଦାଘର ବିଶୁଷ୍କ ଧରଣୀ-ପୃଷ୍ଠ ପ୍ରାବୃଟର ଧାରିତ୍ରୀ ବାରି-ବର୍ଷଣରେ ଉଲ୍ଲସିତ ହୋଇଉଠେ । ବର୍ଷା ଆସେ, ଅମା ନିଶୀଥିନୀର ସାନ୍ଦ୍ର ବାରିଦ-ପଟଳ ଦୁର୍ଭେଦ୍ୟ ଅନ୍ଧକାର ସୃଷ୍ଟି କରି ଗୋଟାଏ ଭୀଷଣ କାଳିମାରେ ଧରିତ୍ରୀମୁଖକୁ ଘୋଡ଼ାଇ ରଖେ । ବିଦ୍ୟୁତ୍ ଚମକେ—ଘନାନ୍ଧକାରରେ କ୍ଷଣକେ ଲିଭିଯାଏ । ଅନ୍ଧକାରର ଗାଢ଼ତା ବଢ଼ିଯାଏ । ଯାହା ଆସେ, ତାହା ପୁଣି ଚାଲିଯାଏ । ଶରତ ଆସେ—ବର୍ଷାସଂଚିତ ପ୍ରାକୃତିକ ବୈଭବରେ ଏକ ଅଭିନବ ସୌନ୍ଦର୍ଯ୍ୟ-ତରଙ୍ଗ ଖେଳିଯାଏ । ତରୁବ୍ରତତୀମାନେ ନବକିଶଳୟମାନଙ୍କର ଉଦ୍ଭାସିତ ଶୋଭାସମ୍ପଦରେ ଅପୂର୍ବ ଶ୍ରୀ ଧାରଣ କରନ୍ତି । ଇନ୍ଦୁପ୍ରଭା ଆକାଶର ନୀଳିମା ସଙ୍ଗେ ବଲ୍ଲରୀ-ପ୍ରକଟିତ ସୁଷମାକୁ ମିଶାଇଦିଏ । ଭାବୁକ ଦେଖେ—ଗୋଟାଏ ଉଚ୍ଛ୍ୱାସରେ ବିଶ୍ୱ ପ୍ରାଣ ବିମୁଗ୍ଧ । ଜୁଆର ଓ ଭଟା ଦୁହେଁ ଏକ ପ୍ରବାହର କାର୍ଯ୍ୟ । ଜଗତର ଚିତ୍ରଶାଳାରେ ନୂତନ ପୁରାତନ, ସୁନ୍ଦର କୁତ୍ସିତ, ଗୁଣ ଦୋଷ ସବୁ ସମାନ କହିଲେ ଚଲେ । କେବଳ ମନୁଷ୍ୟର ସଙ୍କୁଚିତ ଦୃଷ୍ଟି କାହାକୁ ସାନ, କାହାକୁ ବଡ଼ କରି ଦେଖେ । ସୁଦୂର ଅତୀତରେ ଯାହା ଦିନେ ମାନବପ୍ରାଣକୁ ଅତିମାତ୍ରାରେ ଅଭିଭୂତ କରୁଥିଲା, ତାହା ହୁଏତ ଆଜି ନିତାନ୍ତ ଉପେକ୍ଷିତ । ଏହି ଅସାମଞ୍ଜସ୍ୟ ଘେନି ମାନବ ଚିରଦିନ ଗୋଟାଏ ବକ୍ରଗତିରେ ଭ୍ରମଣ କରୁଥିବ । ପୃଥିବୀ ନିଜ କକ୍ଷରେ ବୁଲିଲା ପରି ମନୁଷ୍ୟ କେତେଗୁଡ଼ାଏ ଜୀବଧର୍ମ ପାଳନ କରି ଉତ୍ଥାନ ଓ ପତନ ଦଶାର ଅଧୀନ ହୋଇ ଚାଲିଥାଏ । କ୍ଷୁଦ୍ର ଯଦି ମହତ୍ ହେଉ ନ ଥାନ୍ତା, ସାମାନ୍ୟ ଧୂଳିକଣା ଯଦି ନଭଶ୍ଚୁମ୍ବୀ ପର୍ବତମାଳାର ନିର୍ମାଣରେ ବିଶିଷ୍ଟ ଉପାଦାନ ହେଉ ନ ଥାନ୍ତା, ତାହା ହେଲେ ଗୋଟାଏ ସୀମା ମଧ୍ୟରେ ଆବଦ୍ଧ ରହିଲା ମନୁଷ୍ୟକୁ ନିତାନ୍ତ ଅସହାୟ ବୋଲିଯାନ୍ତା । ତାର ଦୋଷ ଓ ଗୁଣ ବିଚାର କରିବାର କ୍ଷମତାକୁ ମଧ୍ୟ ଅବହେଳା କରାଯାଇ-ପାରନ୍ତା । ଅନ୍ଧକାର ନ ଥିଲେ ଆଲୋକର ମୂଲ୍ୟ କେହି ବୁଝନ୍ତେ ନାହିଁ । ମନୁଷ୍ୟର ମନ ଆବହମାନ କାଳରୁ ଗୋଟାଏ ସରଳ ପଥରେ ଗତି କରୁଥିଲେ କିମ୍ବା ସୃଷ୍ଟି ରହସ୍ୟ ଜାଣିବାକୁ ସେ ପୂର୍ଣ୍ଣରୂପେ ସମର୍ଥ ହୋଇଥିଲେ ଆଜି ଜଗତରେ ଦେଶ, ଜାତି, ଧର୍ମ, ରୁଚି ଓ କାଳଗତ ବୈଷମ୍ୟ ଦେଖିବାକୁ ମିଳନ୍ତା ନାହିଁ । ଜୀବର ଧର୍ମ ଅନେକାଂଶରେ ପ୍ରକୃତିକୁ ଅନୁସରଣ କରୁଥାଏ । ପ୍ରକୃତିର କ୍ରିୟାକଳାପ ସବୁ ସମୟରେ ସମାନ ରହେ ନାହିଁ । ଦୁର୍ବଳର ସବଳ ହେବାପାଇଁ, କ୍ଷୁଦ୍ରର ମହତ୍ ହେବାପାଇଁ, ସଂକୁଚିତର ସଂପ୍ରସାରିତ ହେବାପାଇଁ ଯେ ଚେଷ୍ଟା, ତାହା ପ୍ରାକୃତିକ ଅଟେ । ନିଦାଘତପ୍ତ ବାୟୁମଣ୍ଡଳ ଅଜସ୍ର ବାରିଧାରାର ସୂଚନା ଦିଏ । ଯାହାକୁ ଆଜି ମନୁଷ୍ୟ ଅମଙ୍ଗଳ ବୋଲି ପ୍ରତ୍ୟାଖ୍ୟାନ କରୁଛି, କାଲି ତାହାର ପ୍ରତୀକ୍ଷାରେ ରହିବା କିଛି ଅସ୍ୱାଭାବିକ ନୁହେଁ ।

ସସୀମର ପରିମାପ ଅଛି । ତୂଳିକା ସାହାଯ୍ୟରେ ସୌନ୍ଦର୍ଯ୍ୟର ଯେ ଚିତ୍ରଣ କରାଯାଏ, ତାହା ଅସୀମ ସହିତ ସସୀମର ଗୋଟାଏ ଯୋଜନା ମାତ୍ର । ନଦୀ ଯାଇ ଅନନ୍ତ ସମୁଦ୍ର ଗର୍ଭରେ ମିଶେ; କ୍ଷୁଦ୍ର ଗିରିନିର୍ଝରିଣୀମାନେ ମିଶି ତାର ଜନ୍ମଦାୟୀ ହୁଅନ୍ତି । ଅର୍ଣ୍ଣବପୋତ ଖଣ୍ଡିକରେ ମନୁଷ୍ୟ ଉତ୍ତାଳ ତରଙ୍ଗମୟ ମହାସାଗରର ପରପାରକୁ ଚାଲିଯାଏ । ଦୋଷର ଆକର ସୃଷ୍ଟି କରେ ମନୁଷ୍ୟ; ତାକୁ ପୁଣି ଭିନ୍ନ ଛାଞ୍ଚରେ ଗଢ଼ିନେଇ ସୌନ୍ଦର୍ଯ୍ୟର ଅନିନ୍ଦ୍ୟ ପସରା ଖୋଲିଦିଏ । ଚିତ୍ରକରର ପାରଦର୍ଶିତା ଉପରେ ସବୁ ନିର୍ଭର କରେ । କାଳିଦାସ ଶୃଙ୍ଗାର ରସର ବିଶିଷ୍ଟତା ଦେଖାଇ ଜଗତ୍‌ର ଅମର କବି ହେଲେ; କିନ୍ତୁ ସାଧାରଣ ଲୋକ ଅଶ୍ଳୀଳ କଥା ପଦକରେ କାଣବରଣ କରେ । ବ୍ୟକ୍ତିଗତ ଚରିତ୍ର ଦୂଷିତ ହେଲେ ସମାଜ ଭ୍ରୂକୁଟି କରେ; କିନ୍ତୁ ଚନ୍ଦ୍ରର କଳଙ୍କ ପ୍ରତି କେହି ଲକ୍ଷ୍ୟ ରଖନ୍ତି ନାହିଁ । ଦୋଷ ସ୍ଥଳ ଓ କାଳଭେଦରେ ସୌନ୍ଦର୍ଯ୍ୟର ଗରିମାକୁ କୌଣସି ଅଂଶରେ ନ୍ୟୂନ କରେ ନାହିଁ । ଚିତ୍ରଣର ମାର୍ଗ ସରଳ କରିବା ପାଇଁ ଦୋଷ ଓ ଗୁଣମାନେ ପରିମାପକ ସ୍ୱରୂପ ହୁଅନ୍ତି । ବର୍ଣ୍ଣ

ପରେ ବର୍ଷ ଆସି ଚାଲି ଯାଉଛି । ଅନନ୍ତ ଅତୀତ ସେମାନଙ୍କୁ ଗୌରବରେ ଆବୃତ କରି ରଖିଛି । ମନୁଷ୍ୟ ସବୁ ଦେଖୁଛି; କିନ୍ତୁ ତାର କ୍ଷୁଦ୍ର ବୁଦ୍ଧି ସେହି ଅତୀତ ବକ୍ଷରେ ଗୋଟିଏ ଗୋଟିଏ ରେଖାପାତ କରିବାକୁ ପ୍ରେରଣା ଜନ୍ମାଉଛି । ଐତିହାସିକର ଇତିବୃତ୍ତି ଏହି ରେଖାମାନଙ୍କ ଉପରେ ଭିତ୍ତିଭୂମି ନିରୂପଣ କରେ । ପିପୀଲିକା ସାମାନ୍ୟ କୁଟା ଖଣ୍ଡିକ ଆଶ୍ରା କରି ଅଗାଧ ଜଳସ୍ରୋତରେ ଭାସିଯାଏ । ସେ ଦେଖେ ନାହିଁ ଜଳର ପରିମାଣ—ତାର ଦୃଷ୍ଟି ନିବଦ୍ଧ ଥାଏ ସେହି କୁଟା ଖଣ୍ଡିକରେ । ଯଦି ମନୁଷ୍ୟ ଅତୀତର ସାମାନ୍ୟ କେତୋଟି ବର୍ଷକୁ ଅବଲମ୍ବନ କରି ନିଜର ସୁଖ କିମ୍ବା ଦୁଃଖର ସଂସାରକୁ ସ୍ଥିର କରି ବସେ, ତାହାହେଲେ କ୍ଷତି କଅଣ ?

ଆଶ୍ରୟର ବିଭିନ୍ନତା ସୌନ୍ଦର୍ଯ୍ୟାନୁଭୂତିରେ ସାହାଯ୍ୟ କରେ । ପ୍ରଖର ପବନ ସବୁବେଳେ ବହୁଥିଲେ ସାମୟିକ ମୃଦୁମନ୍ଦ ହିଲ୍ଲୋଳର ଚିତ୍ତ-ଉଲ୍ଲାସକ ସୁଖ କେହି ଅନୁଭବ କରି ପାରନ୍ତେ ନାହିଁ । ପ୍ରଚଣ୍ଡ ଗ୍ରୀଷ୍ମ ଆସେ । ପଥିକ ବିଜନ ପଥରେ ଯାତ୍ରା କରେ । ପ୍ରକୃତିର ବିଭୀଷିକାରେ ସେ ନିସ୍ତେଜ ହୋଇ ପଡ଼େ; କିନ୍ତୁ ଏହି ଅବସରରେ ବୃକ୍ଷ ଅନ୍ତରାଳରୁ କୋକିଳର କୁହୁତାନ ଥରେ ଥରେ ଆସି ଶ୍ରାନ୍ତ ପଥିକକୁ ଯେ ଆସ୍ୱାଦନ ଦେଇଯାଏ, ସେଥିରେ ତାର ଅବସନ୍ନତା ଅନେକାଂଶରେ ଦୂର ହୋଇଯାଏ । ଏହା ଦେଖି ସ୍ୱତଃ ମନେ ହୁଏ, ସୌନ୍ଦର୍ଯ୍ୟ ଉପଭୋଗ କରିବାପାଇଁ ଯେ ସବୁ ଉପକରଣ ସୃଷ୍ଟ ହୋଇଅଛି, ସେମାନଙ୍କ ମଧ୍ୟରେ ଭୀଷଣତାକୁ ସୁଦ୍ଧା ବାଦ ଦିଆଯାଇ ନାହିଁ । କୋକିଳ-ସମାକୀର୍ଣ୍ଣ ଚିରବସନ୍ତସେବିତ ଦେଶ କବିର କଳ୍ପନା ହୋଇପାରେ; କିନ୍ତୁ ପ୍ରକୃତି କଅଣ ଚାହେଁ ଗୋଟିଏ ଭାବରେ ପ୍ରଭାବିତ ହୋଇ ମନୁଷ୍ୟ ତାର ଜୀବନ ଅତିବାହିତ କରୁ ?

ଗୌରବ-ଗରବିଣୀ ଭାରତଭୂମି ଐଶ୍ୱର୍ଯ୍ୟ ଭଣ୍ଡାରକୁ ଅକାତରରେ ଉନ୍ମୁକ୍ତ କରିଦେଲା ବୋଲି ଆଜି ତାର ସନ୍ତାନର ଏଡ଼େ ଦୁର୍ଗତି ! ଭାରତ ରତ୍ନଗର୍ଭା ନ ହୋଇ ଯଦି ସାହାରା ମରୁଭୂମିର ଉତ୍ତପ୍ତ ବାଲୁକାରାଶି ସଞ୍ଚୟ କରି ରଖିଥାନ୍ତା, ତାହାହେଲେ ଭାରତ ସନ୍ତାନ ମେରୁ ପ୍ରଦେଶରେ ଭ୍ରମଣ କରିବାକୁ ସୁଦ୍ଧା କୁଣ୍ଠିତ ହୁଅନ୍ତା ନାହିଁ । ନିଷ୍କାମ ଭାବ ସନ୍ନ୍ୟାସୀର ବାଞ୍ଛନୀୟ । ସଂସାରୀ ମନୁଷ୍ୟ ପକ୍ଷରେ ଏହା ବର୍ଜନୀୟ ନୋହିଲେ ସୁଦ୍ଧା ବର୍ତ୍ତମାନ ଯୁଗ ଦୃଷ୍ଟିରେ ଅଳ୍ପମାତ୍ରାରେ ଗ୍ରହଣୀୟ । ସିଂହର ବିକ୍ରମ ଅରଣ୍ୟର ଭୀଷଣତାରେ ନିତାନ୍ତ ଲୋଡ଼ା । ଆତ୍ମବଳର ସମୃଦ୍ଧି ପାଇଁ ଯଦି ଜଗତର ଦୃଷ୍ଟି ଓ ମନୁଷ୍ୟ ପୂର୍ଣ୍ଣତା ପ୍ରାପ୍ତି ପଥରେ ଜଗତକୁ ଅତିକ୍ରମ କରୁଥାଏ, ତାହାହେଲେ ନିଶ୍ଚୟ ତାକୁ କଳୁଷିତ ହେବାକୁ ପଡ଼ିବ । ପୁରାଣ ଧର୍ମକୁ ଆଚରଣ କରି ଭାରତ ବାସୀ କେବଳ ଦୁର୍ବଳତାର ପରିଚୟ ଦେଉଛି—କୁହେଳିକାକୁ ବାସ୍ତବ ମନେ କରୁଛି । ସନ୍ଧ୍ୟାବେଳେ ଘଣ୍ଟାଏ ପୁରାଣ ପଢ଼ି ରାବଣର ଦଶଟା ମୁଣ୍ଡ ବିଷୟ ଆଲୋଚନା କଲେ ଭାରତର ଦୁର୍ଗତି ମେଣ୍ଟିବ ନାହିଁ । ବର୍ତ୍ତମାନ ଯୁଗ ଚାହିଁଲାଣି—ବଳିଦାନ ।

କଳଙ୍କର କାଳିମା ଗାଢ଼ ହୋଇ ଆସିଲେ ବଳିଦାନର ସମୟ ନିକଟ ହୋଇ ଆସେ । ବଳିଦାନରେ ମଧ୍ୟ ପାର୍ଥକ୍ୟ ରହିଛି । ଦେବୀଙ୍କ ସମୀପରେ ନରବଳିଠାରୁ ଆରମ୍ଭ କରି ଆତ୍ମବଳି ପର୍ଯ୍ୟନ୍ତ ସମାଜ ଦେଖି ଆସିଲାଣି । କଳଙ୍କକ୍ଷାଳନ କରି ଯଦି କିଛି ନୂତନ ଆମଦାନୀ କରାଯାଏ, ତାହାହେଲେ କଳଙ୍କ ନିତାନ୍ତ ଉପେକ୍ଷଣୀୟ ନୁହେଁ । ପଙ୍କିଳ ସରୋବରରୁ ପଦ୍ମର ଉତ୍ପତ୍ତି । ପ୍ରାଚୀନ ଭାରତୀୟ ମନୀଷୀମାନଙ୍କ ମଧ୍ୟରୁ ଯେ କେତେଜଣ ତେଜସ୍ୱୀ ପୁରୁଷ ଜନ୍ମଗତ କଳଙ୍କ ଦୂର କରି ଦେଶର ଗୌରବ ରକ୍ଷା କରିଥିଲେ, ଆଜି ସୁଦ୍ଧା ସେମାନଙ୍କର ଯଶ ଉଦ୍‌ଘୋଷିତ ହେଉଅଛି । ବର୍ତ୍ତମାନ ସମାଜ ନାରୀର ଯେ ତ୍ରୁଟି ଦେଖିଲେ ସହଜରେ କୁଳ-କଳଙ୍କିନୀ ବୋଲି ଘୋଷଣା କରନ୍ତା, ତାକୁ ପ୍ରାଚୀନ ସମାଜ ଉପେକ୍ଷା କରିଛି । ପ୍ରାତଃସ୍ନାନ ସମାପନ କଲାବେଳେ ହିନ୍ଦୁ ଯେଉଁ କୁଳକାମିନୀମାନଙ୍କର ନାମ ନିଜର ଆତ୍ମଶୁଦ୍ଧି ସକାଶେ ଉଚ୍ଚାରଣ କରେ, ସେମାନଙ୍କର ଜୀବନୀ ଆଲୋଚନା କରି ଦେଖିଲେ ଯେ ବାହ୍ୟ-ଚିତ୍ର ପ୍ରକଟିତ ହୁଏ, ତାହା କଅଣ ବର୍ତ୍ତମାନ ନାରୀ ଚରିତ୍ରରେ ପୋଷକତା ପାଇପାରନ୍ତା ? ମହାମାନ୍ୟ ଆଦର୍ଶ ଚରିତ୍ର ମଧ୍ୟ ଦୋଷରୁ ନିଷ୍କୃତି ପାଇ ନାହିଁ । ସୁକଠିନ ରାଜନୀତିରେ ଯେ କୁଟିଳତାର ଆଶ୍ରୟ ଗ୍ରହଣ କରାଯାଏ, ତାହା କଅଣ ରାଜନୀତିଜ୍ଞ ଚରିତ୍ରର ଗୋଟିଏ କାଳିମା ନୁହେଁ ? ଧର୍ମର ସଂସ୍ଥାପନ ପାଇଁ ଗୀତା ଯେଉଁ ଧ୍ୱଂସର ବାଣୀ ଶୁଣାଇ ଅଛନ୍ତି, ସେଥିରେ କାଳିମା କୃତାନ୍ତର ପ୍ରଧାନ ଅସ୍ତ୍ର ପରି ଜଣାପଡ଼େ ।

ସତ୍ୟର ମହିମା କୀର୍ତ୍ତନ ପାଇଁ ଅସତ୍ୟ ଆସି ପ୍ରଥମେ ରଙ୍ଗଭୂମିରେ ଦେଖାଦିଏ । ପବିତ୍ର ରାମାୟଣ ଓ ମହାଭାରତ ସତ୍ୟ ଉପରେ ପ୍ରତିଷ୍ଠିତ; କିନ୍ତୁ ସେମାନଙ୍କର ମହତ୍ତ୍ୱ ଜ୍ଞାପନ କରିବା ପାଇଁ ଅସତ୍ୟ ଓ ଅଧର୍ମକୁ ପୂର୍ଣ୍ଣମାତ୍ରାରେ ପ୍ରକାଶ

କରାଯାଇଅଛି । ସୃଷ୍ଟିର ପ୍ରତିକ୍ରିୟା ଯଦି ଧ୍ୱଂସ ହୁଏ, ତାହାହେଲେ ଜଗତର ଚିତ୍ରଶାଳାରେ କାଳିମା ଗୋଟିଏ ବିଶିଷ୍ଟ ଉପାଦାନ ରୂପେ ପରିଗଣିତ ହୋଇପାରେ । ଅଙ୍ଗାରର କାଳିମା ଆଦୌ ଯାଏ ନାହିଁ । ଅଗ୍ନିର ପ୍ରଚଣ୍ଡ ଶିଖା ସାମାନ୍ୟ କେତେ ଖଣ୍ଡ ଅଙ୍ଗାରରେ ପରିଣତ ହୁଏ । ଏହା ଦେଖି ମନୁଷ୍ୟର ଯଥେଷ୍ଟ ଶିକ୍ଷା ହୋଇପାରେ । ଶାରୀରିକ ରୂପଲବଣ୍ୟ ପ୍ରାଣର ଗୋଟାଏ ଅଦମ୍ୟ ପିପାସା ଜାଗ୍ରତ କରିଦିଏ । ଏହି ପିପାସାର ନିବୃତ୍ତି ପାଇଁ ମନୁଷ୍ୟ ଅନେକ ସମୟରେ କ୍ଷିପ୍ତ ହୋଇ ଉଠେ; କିନ୍ତୁ ଧ୍ୱଂସ ଆସି ଯେ ଚିତ୍ର ଅଙ୍କି ଦେଇଯାଏ, ସେଥିରେ ସେ ସବୁ ଶୂନ୍ୟ ଦେଖେ । ସେହି ମାଧୁର୍ଯ୍ୟ-ମଣ୍ଡିତ ମନୋମୋହକାରୀ ଅଙ୍ଗ ଶ୍ମଶାନରେ କେତେ ଖଣ୍ଡି ଅଙ୍ଗାରରେ ତାର ପରିଣତି ରଖି ଚାଲିଯାଏ ।

କାଳିମାର ସଂସ୍ପର୍ଶରେ ସୌନ୍ଦର୍ଯ୍ୟର ପ୍ରଭା ବିସ୍ତାରିତ ହୁଏ । ଚିତୋରର ରାଣୀ ପଦ୍ମିନୀଙ୍କର ଅସାମାନ୍ୟ ରୂପର ସମ୍ବାଦ ପାଇ ତତ୍କାଳୀନ ଦିଲ୍ଲୀ ସମ୍ରାଟଙ୍କର ଯେ କାମାନଳ ଜଳିଉଠିଲା, ତାହା ଇତିହାସ ପାଠକେ ବିସ୍ମୃତ ନୁହନ୍ତି । ସେହି ଚିରସ୍ମରଣୀୟା ରାଜପୁତ ରମଣୀଙ୍କର ରୂପକାନ୍ତିରେ ସତୀତ୍ୱର ଯେ ଅଦ୍ୱିତୀୟ ଆଭା ଉଜ୍ଜ୍ୱଳ ଉଠିଲା, ତାହା ରାଜପୁତ ବୀର ହୃଦୟକୁ ଜଗତ୍ ଚକ୍ଷୁରେ ସୁମହାନ୍ କରି ଦେଇଅଛି । ଦିଲ୍ଲୀଶ୍ୱର ଶରୀର କାମନା କରି ଦେଖିଲେ—ଧ୍ୱଂସର ଚିତା ଚିତୋର-ଆକାଶକୁ ଧୂମାୟିତ କରି କାମୁକର ଦୂଷିତ ହୃଦୟକୁ ଶତଧିକ୍କାର ଦେଲା । ଅଗ୍ନିର ଦୀପ୍ତି ପାଇଁ ଇନ୍ଧନ ଆବଶ୍ୟକ । କାଳିମାମୟ ବାରୁଦସ୍ତୂପ ସାମାନ୍ୟ ଅଗ୍ନି ସ୍ଫୁଲିଙ୍ଗରେ ଭୀଷଣାକାରରେ ଜଳି ଉଠେ । ଚିତୋର-ରାଣୀଙ୍କର ସୌନ୍ଦର୍ଯ୍ୟଗରିମା ପ୍ରକାଶ ପାଇଁ ଲୋଡ଼ା ହେଲା ଜଣେ ପ୍ରବଳପରାକ୍ରାନ୍ତ ପୁରୁଷର କାମାନଳ । ଐଶ୍ୱର୍ଯ୍ୟ ଓ ସୌନ୍ଦର୍ଯ୍ୟ ଜଗଦ୍‌ବାସୀର ଚକ୍ଷୁରେ ବଡ଼ ଦେଖାଯାଏ । ଏମାନଙ୍କ ଦ୍ୱାରା ସେ ବିଶେଷ ଭାବରେ ଅନୁପ୍ରାଣିତ ହୁଏ । ହୃଦୟର ଯେ ଆକର୍ଷଣ ମନୁଷ୍ୟକୁ ଐଶ୍ୱର୍ଯ୍ୟ ଓ ସୌନ୍ଦର୍ଯ୍ୟ ନିକଟରେ ଆତ୍ମବିସ୍ମୃତ କରାଇଦିଏ, ସେଥିରେ ଦୁର୍ବଳତା ପ୍ରଚ୍ଛନ୍ନରେ ନ ଥାଏ କି ?

ଯୌବନ ତ ଆସେ, ସେଥି ସଙ୍ଗରେ କାହିଁକି ଚଞ୍ଚଳତା ଆସେ ? ଉଦ୍‌ଭ୍ରାନ୍ତ ଯୁବକକୁ ବୟୋଜ୍ୟେଷ୍ଠମାନେ ନିନ୍ଦା କରନ୍ତି; କିନ୍ତୁ କେତେ ଜଣ ସୌନ୍ଦର୍ଯ୍ୟର ଉପଯୁକ୍ତ ଉପାସନା କରି ଆତ୍ମଗ୍ଲାନି ଦୂର କରନ୍ତି ? ସ୍ରୋତର ଅନୁକୂଳରେ ଭାସିଯିବା ପ୍ରାକୃତିକ ଅଟେ; କିନ୍ତୁ ପ୍ରକୃତିସ୍ଥ ହୋଇ ପ୍ରତିକୂଳାଚରଣ କରିବା ପୁରୁଷ ପକ୍ଷରେ ଗୋଟାଏ ବିଶେଷତ୍ୱ । ସୁନ୍ଦରୀର ସୌନ୍ଦର୍ଯ୍ୟ-ପ୍ରଭାକୁ ନିର୍ବିଘ୍ନରେ କାଳିମାଶୂନ୍ୟ ବୋଲି ସମସ୍ତେ କହିପାରନ୍ତି । ଜଣେ ଇତର ଲୋକ ମଧ୍ୟ ଯୌବନର ଉନ୍ମାଦନାରେ କାମିନୀକୁ କାମୋପଭୋଗର ଏକମାତ୍ର ଅବଲମ୍ବନ ବୋଲି ଗ୍ରହଣ କରେ । ତା ଚକ୍ଷୁରେ ନାରୀର ସୌନ୍ଦର୍ଯ୍ୟ କଳଙ୍କ-ବିରହିତ । ପ୍ରକୃତରେ କଅଣ ନାରୀ ସୌନ୍ଦର୍ଯ୍ୟରେ କାଳିମା ନାହିଁ ? ସୁନ୍ଦରୀ କଅଣ କାମୁକ ଓ ଭାବୁକ ଦୁହିଁଙ୍କ ଚକ୍ଷୁରେ ସମାନ ଦେଖାଯାନ୍ତି ? କାମୁକର ଚକ୍ଷୁ ଅତିମାତ୍ରାରେ କାଳିମାଦ୍ୱାରା ଆବୃତ ଥାଏ; ତେଣୁ ସେ ସୁନ୍ଦରୀ ସନ୍ଦର୍ଶନରେ ପ୍ରବଳ ଲିପ୍‌ସାର ଅଧୀନ ହୋଇ ଉପଯୁକ୍ତ ବିଚାର କରିପାରେ ନାହିଁ । ସୌନ୍ଦର୍ଯ୍ୟର କାଳିମାକୁ ଲୋଲୁପ ହୃଦୟର ଦୁର୍ବଳତା ବରଂ ଘୋଡ଼ାଇ ରଖେ । ଏଠାରେ ପୁରୁଷର ବିଚାର ଦୋଷକୁ ଉପେକ୍ଷା କରାଯାଇ ପାରେ । ଆବର୍ତ୍ତର ଭୀଷଣତା ଏଡ଼ିପାରିବା ସମସ୍ତଙ୍କ ପକ୍ଷରେ ସମ୍ଭବପର ନୁହେଁ । ଆକୃଷ୍ଟ ହେବା ଜୀବର ଧର୍ମ । ଏ ତ ଗଲା ସାଧାରଣ କଥା । ବର୍ତ୍ତମାନ ଶାନ୍ତ ଭାବୁକର ବିଚାର ଦୃଷ୍ଟି ବୈଷମ୍ୟକୁ ଅନୁସରଣ କରାଯାଉ । ଭାବୁକ ଦେଖିଲା—ଦୁଇଟି ଲବଣ୍ୟମୟୀ ରମଣୀ ମୂର୍ତ୍ତି । ଉଭୟେ ସୌନ୍ଦର୍ଯ୍ୟ ପ୍ରଭା ପ୍ରାଚୁର୍ଯ୍ୟରେ ନୟନକୁ ମୁଗ୍‌ଧ କରୁଅଛନ୍ତି; କିନ୍ତୁ ସେ ଦୁହିଁଙ୍କ ମଧ୍ୟରେ ଗୋଟାଏ ପାର୍ଥକ୍ୟ ରହିଲା ପରି ପ୍ରତୀୟମାନ ହୁଏ । ଗୋଟିକୁ ଦେଖିଲାମାତ୍ରେ ସ୍ୱତଃ ହୃଦୟର ଚଞ୍ଚଳତା ବଢ଼ିଯାଏ । ବିଷଧର ସର୍ପର ଦଂଶନରୁ ନିସ୍ତାର ପାଇବା ସହଜ ନୁହେଁ । ଆଘାତ ପାଇବା ମାତ୍ରେ ଗରଳର କ୍ରିୟା ସମସ୍ତ ଶରୀରରେ ବ୍ୟାପିଯାଏ । ସୌନ୍ଦର୍ଯ୍ୟରେ ଉନ୍ମାଦନାର ବିଷ ଲୁକ୍‌କାୟିତ ହେଲେ ତାକୁ ସାଧାରଣ ପୁରୁଷହୃଦୟ ଅବଧାରଣ କରିପାରେ ନାହିଁ । ଦର୍ଶନ ମାତ୍ରେ ପୁରୁଷ ମୋହାଚ୍ଛନ୍ନ ହୋଇପଡ଼େ । ସୌନ୍ଦର୍ଯ୍ୟର ଆଧାରରେ ଆବର୍ତ୍ତର ସୃଷ୍ଟି ସ୍ପୃହଣୀୟ ନୁହେଁ । ସୁତରାଂ ରମଣୀ କେବଳ ସୁନ୍ଦରୀ ହେଲେ ଯେ ପୁରୁଷ ଧନ୍ୟ ହେବ, ଏପରି ଭାବିବା ଅନୁଚିତ । ଅନ୍ୟ ପକ୍ଷରେ ଅପର ମୂର୍ତ୍ତିଟିକୁ ଦେଖି ଯଦି ହୃଦୟର କୋମଳତା ଆସେ ଓ ମନୁଷ୍ୟ ଶାନ୍ତି ଅନୁଭବ କରେ, ତାହା ହେଲେ ସେହି ମୂର୍ତ୍ତିଟି ସର୍ବଥା ବରଣୀୟ । ଏ ମୂର୍ତ୍ତି ହୃଦୟରେ ଆଘାତ ଦିଏ ନାହିଁ । ସାନ୍ଧ୍ୟ ସମୀରଣ-କମ୍ପିତା ବସନ୍ତଲତା ପରି ଏହା ହୃତ୍-ମନ୍ଦିରରେ ସର୍ବଦା ଦୋହଲୁଥାଏ । ଏହାରି ସଂସ୍ପର୍ଶରେ ପୁରୁଷ ଦେଖେ—ସୌନ୍ଦର୍ଯ୍ୟର କାଳିମା ।

ଜଗତରେ କାହାକୁ ଅନାଦର କରିବା ଉଚିତ ନୁହେଁ । ଗରଳ ପ୍ରାଣ ସଂହାରକ; କିନ୍ତୁ ସମୟ ବିଶେଷରେ ପୁଣି ପ୍ରାଣରକ୍ଷାର ଏକମାତ୍ର ଉପାଦାନ ହୁଏ । ଫୁଲଧନୁ ଯାହାଙ୍କର ଅବଲମ୍ବନ, ତାଙ୍କ ନିକଟରେ ଯଦି ଦେବତାମାନେ ନତମସ୍ତକ ହେଲେ, ତାହାହେଲେ ପୁରୁଷର ସ୍ଖଳନ ସକାଶେ ନାରୀକୁ ଦାୟୀ କରିବା କିମ୍ବା ନାରୀ ଚରିତ୍ରକୁ ବିଶ୍ଳେଷଣ କରି ନ ପାରିଲେ ସମାଜର ଅଧଃପତନ ଆଶଙ୍କା ପୋଷଣ କରିବା ଉଚିତ ନୁହେଁ । ଯାହା ନଶ୍ୱର ଓ ଦୁର୍ବଳ, ସେଥିରୁ କଳଙ୍କର କାଳିମା ପୂର୍ଣ୍ଣରୂପେ ପୋଛି ହେବ ନାହିଁ । ଯଦି ଜାଗତିକ କିମ୍ବା ସମାଜରେ କାଳିମା ଦୂର ହେଉଥାଏ, ତାହାହେଲେ ଦୋଷ ଦେଖି ଘୃଣା କରିବା କିମ୍ବା ଗୁଣ ଦେଖି ପ୍ରଶଂସା କରିବା ଜୀବଧର୍ମର ବିରୋଧୀ ବୋଲି ମନେ ହୁଏ ।

# ପ୍ରତୀକ୍ଷା

ଜୀବନର ଗତି ସ୍ଖଳିତ । କେତେବେଳେ ଚଞ୍ଚଳ ଓ କେତେବେଳେ ବ୍ୟାହତ ପରି ଏହା ଜଣାପଡ଼େ । ଜନ୍ମରୁ ମୃତ୍ୟୁ ପର୍ଯ୍ୟନ୍ତ ମନୁଷ୍ୟ ଚାଲିଥାଏ, ସୁଖ ଓ ଦୁଃଖ ଦୁହେଁ ଥାନ୍ତି ସହଚର । ସାଂସାରିକ କୋଳାହଳ ମଧ୍ୟରେ ତାର ଥାଏ ଗୋଟାଏ ଅବଲମ୍ବନ ଓ ଗୋଟାଏ ଲକ୍ଷ୍ୟ । ସମୟ ସମୟରେ ଏ ଦୁହିଁଙ୍କର ପରିବର୍ତ୍ତନ ଘଟେ । ଅତ୍ୟନ୍ତ ଆଦରର ବସ୍ତୁକୁ ଉପେକ୍ଷା କରି କିମ୍ବା ଅବହେଳିତ ହୋଇ ସେ ବିଷୟାନ୍ତରକୁ ଅନୁସରଣ କରେ ।

ଫଲ୍‌ଗୁର ପ୍ରଚ୍ଛନ୍ନ ସ୍ରୋତ ପରି ମନୁଷ୍ୟ-ଅନ୍ତରର ଆବେଗଟି ବଡ଼ ଅଲକ୍ଷିତରେ ରହିଥାଏ; କେତେବେଳେ ପୁଣି ଉଚ୍ଛ୍ୱସିତ ହୋଇ ଉଠେ । ଯାହା ଦେଖି ଜଗଦ୍‌ବାସୀ ମନେକରେ ଏହା ଗୋଟାଏ ମତ୍ତତା । ପ୍ରାୟ ସମସ୍ତଙ୍କ ଜୀବନରେ ଏହି ମତ୍ତତା ଆସିଥାଏ । କୈଶୋର ଓ ଯୌବନର ରଙ୍ଗଭୂମିରେ ଏହାର ବିକାଶ ସ୍ପଷ୍ଟ ହୋଇ ପଡ଼େ । ତେଣୁ ତରୁଣ ତାର ଉଚ୍ଛରଳ ଭାବ ଘେନି ଧାଏଁ—ଗୋଟାଏ କିଛି ସୃଷ୍ଟି କରି ଆତ୍ମତୃପ୍ତି ଅନୁଭବ କରିବ । ଆବେଗହୀନ ଅନ୍ତର ଓ ଦେବତାଶୂନ୍ୟ ମନ୍ଦିର ଦୁହେଁ ସମାନ । ଗୋଟାଏ ପ୍ରାଚୀନ ସଭ୍ୟତମ ଜାତି ଯଦି ୩୩ କୋଟି ଦେବତା କଳ୍ପନା କରି ସେମାନଙ୍କର ପୂଜା ବିଧାନ କରିପାରେ, ତାହାହେଲେ ଅଗଣିତ ମାନବର ଆକାଙ୍‌କ୍ଷା ଅଗଣିତ ଆଶୟରେ ଆବଦ୍ଧ ରହିବା ଅସମୀଚୀନ ନୁହେଁ । ଯେ ଯାହା ଲୋଡ଼େ, ସେହିପରି ରୀତି ଅନୁସରଣ କରି ତାର ଜୀବନଧାରାକୁ ମୁକ୍ତ କରିଦିଏ । ଜାତି କିମ୍ବା ବ୍ୟକ୍ତିଗତ ବୈଷମ୍ୟ ଚିରଦିନ ରହିବ । ଯେଉଁମାନେ ଏଥିପ୍ରତି ଲକ୍ଷ୍ୟ ନ ରଖି କେବଳ କେତେଗୁଡ଼ାଏ ବିଜାତୀୟ ଭାବରେ ଅନୁପ୍ରାଣିତ ହେବାକୁ ଚାହାନ୍ତି, ସେମାନଙ୍କର ନିଜସ୍ୱ ଖୁବ୍ କମ୍ ଥାଏ । ଜୀବନର ସ୍ପନ୍ଦନ ହୃଦୟ ଉପରେ ସମ୍ପୂର୍ଣ୍ଣ ନିର୍ଭର କରେ; କିନ୍ତୁ ଗୋଟାଏ ଭାବ ସବୁ ହୃଦୟରେ ସମାନ ଭାବରେ ଖେଳେ ନାହିଁ । କେହି କେହି କହିପାରନ୍ତି, ଉନ୍ନତ ଭାବ ଓ ରୁଚିର ଆକୃତିରେ କାହାର ମନ ନ ଭୁଲେ ? ମନ ଭୁଲିପାରେ; କିନ୍ତୁ ଏହି ମନଭୁଲିରେ ଗୋଟାଏ ପାର୍ଥକ୍ୟ ରହିଯାଏ—ଯାହାକୁ ନିର୍ଣ୍ଣୟ କରିବାକୁ ପ୍ରାୟ କେହି ଚେଷ୍ଟା କରନ୍ତି ନାହିଁ । ସମୀରଣ ବହି ଆସେ, ଶରତର ଶେଫାଳୀରେ ଧୀରେ ଧୀରେ ଖେଳିଯାଏ, ଶାନ୍ତ ସନ୍ଧ୍ୟା ସେହି କମ୍ପନକୁ ଆହୁରି ମନୋମୋହକର କରିଦିଏ । ଶିଶୁଟି ଆସେ ତାର ସାଥୀଟିକୁ ନେଇ, ଜହ୍ନିଫୁଲ ତୋଳି ଉଦାସ-ପ୍ରାଣରେ କ୍ରୀଡ଼ା ରଚନା କରେ । କିଶୋର ଅନୁଭବ କରେ—ହୃଦୟରେ ଗୋଟାଏ ଆବେଗ । ଅଜଣା ରାଜ୍ୟର ବନ୍ଧୁଟି ପାଇଁ ସେ ଅପେକ୍ଷା କରି ରହେ । କେତେ ରଙ୍ଗରେ ତାର ଅଭିନବ ତୂଳିକାକୁ ସଜାଇ ନେଉଥାଏ—ଗୋଟାଏ କିଛି ସୃଷ୍ଟି କରିବ ବୋଲି । ଯୁବକ କୈଶୋରର ରୁଦ୍ଧ ଆବେଗକୁ ମୁକ୍ତିର ସନ୍ଧାନରେ ଛାଡ଼ିଦିଏ । ଶାରଦୀୟ ସୁଷମାରେ ସମସ୍ତେ ଆକୃଷ୍ଟ ହୋଇ ପଡ଼ିଲେ; କିନ୍ତୁ ଗୋଟାଏ ଭାବ ସମସ୍ତଙ୍କ ହୃଦୟରେ ସମାନ ଭାବରେ ସ୍ଥାନ ପାଇଲି ନାହିଁ । ଗୋଟାଏ କ୍ଷେତ୍ରରେ ବିଭିନ୍ନ ଜାତୀୟ ପୁଷ୍ପର ସୌରଭ ବିକଶିତ ହେବାପାଇଁ ଏ ଜଗତର ସୃଷ୍ଟି । ପ୍ରକୃତିର କ୍ରିୟା ଏଥିରେ ସହାୟତା କରେ ।

ଆବେଗର ପଛରେ ଥାଏ ପ୍ରତୀକ୍ଷା । ହୃଦୟ ସବୁବେଳେ ଚାହେଁ ଗୋଟାଏ ଅବଲମ୍ବନ । ମନୁଷ୍ୟ ଜୀବନରେ ଯେଉଁ ପରିବର୍ତ୍ତନ ଦେଖାଯାଏ, ତାହା କେବଳ ଅବଲମ୍ବନର ଭେଦ ମାତ୍ର । ଏପରି ଭେଦ କାହିଁକି ଦେଖାଯାଏ ? ମନୁଷ୍ୟ ଯେପରି ଲୋଡ଼େ, ସେହିପରି ମାର୍ଗାନୁସରଣ କରେ; କିନ୍ତୁ ଆବେଗ ସହିତ ଉତ୍କଣ୍ଠାର ମିଶ୍ରଣରେ ଗୋଟାଏ କ୍ଷିପ୍ରତା ହୃଦୟକୁ ଅତିମାତ୍ରାରେ ଅଭିଭୂତ କରିଦିଏ । ତେଣୁ ମନୁଷ୍ୟ ଅଧିକାଂଶ ସମୟରେ ଗୋଟାଏ ବିଷୟକୁ ସମାନ ଭାବରେ ନିର୍ଣ୍ଣୟ କରିପାରେ ନାହିଁ । ଯାହା ଥରେ ପ୍ରାଣରେ ଆରାମ ଦେଇଥିଲା, ତାହା ସବୁବେଳେ ହୃଦୟକୁ ଅଧିକାର କରେ ନାହିଁ । ଏଥିରେ କିଛି ବିସ୍ମୟ ନାହିଁ । ଏପରି ହୋଇଥିଲେ ଆଜି ମନୁଷ୍ୟ ଜାତି ତାର ଆଦିମ ଅବସ୍ଥାକୁ ତ୍ୟାଗ କରିପାରି ନ ଥାନ୍ତା । ଏତେ

ପରିବର୍ତ୍ତନ ଆସୁଛି, କିନ୍ତୁ କାହାରି ସ୍ଥାୟିତ୍ୱ ଦେଖାଯାଉ ନାହିଁ । ବୀଣାର ସ୍ୱର ବାୟୁମଣ୍ଡଳରେ ହଜିଯାଏ । ଯାହା ହଜିଯାଏ, ତାହା ତ ମିଳେ ନାହିଁ; କିନ୍ତୁ ବୈଜ୍ଞାନିକମାନଙ୍କ ମତରେ ବାୟୁମଣ୍ଡଳ ପ୍ରତ୍ୟେକ ଶବ୍ଦକୁ ସଞ୍ଚିତ କରି ରଖେ । ଏ ବିଷୟର ସତ୍ୟତା ସମ୍ବନ୍ଧରେ ଆଲୋଚନା କରିବାକୁ ଆମ୍ଭେମାନେ ଅକ୍ଷମ । ଭାରତୀୟ ଦର୍ଶନ ମତରେ ସୃଷ୍ଟିର ଉତ୍ପତ୍ତିକୁ ସ୍ପନ୍ଦନ ଉପରେ ନିର୍ଦ୍ଦେଶ କରାଯାଇଅଛି । ଏପରି ଅବସ୍ଥାରେ ଶବ୍ଦ ସେହି ସ୍ପନ୍ଦନର ଗୋଟାଏ କ୍ରିୟା ମାତ୍ର କହିଲେ ଯଥେଷ୍ଟ ହେବ । ଜୀବନର ଅଳୀକତା ଉପଲବ୍‌ଧି କରି ବୁଦ୍ଧଦେବ ଏହାକୁ ବୀଣାଶବ୍ଦ ସଙ୍ଗେ ତୁଳନା କରିଥିଲେ । ସୂକ୍ଷ୍ମ ଭାବରେ ଆଲୋଚନା କଲେ ଜଣାଯିବ ଯେ, ଜୀବନର ବିକାଶ ସଙ୍ଗେ ପ୍ରତୀକ୍ଷା ଗୋଟିଏ କ୍ଷୀଣ ସ୍ପନ୍ଦନ ପରି ସ୍ୱତଃ ହୃଦୟକୁ ଅଧିକାର କରି ବସେ । ଲଳିତ ତାନରେ ବୀଣାସ୍ୱର ବାଜି ଉଠେ—ଶ୍ରୋତା ମନ୍ତ୍ରମୁଗ୍‌ଧ ପରି ଚାଳିତ ହୁଏ । ତାର ପ୍ରାଣରେ ଲୟ ସେହି ଅସ୍ଥାୟୀ ତାନର ମୂର୍ଚ୍ଛନାରେ କିଛି କ୍ଷଣ ପାଇଁ ମିଶିଯାଏ । କିନ୍ତୁ ତାନର ବିରାମ ଆସିଲେ ରହେ କଅଣ ? ପ୍ରାଣର ଲୟ ସଙ୍ଗେ ପ୍ରତୀକ୍ଷା ଆତ୍ମଗୋପନ କରି ଆସେ । ଆବରଣଟି ଲୁଚିଯିବା ସଙ୍ଗେ ତାହା ପୁଣି ଗୋଟାଏ ଅଲକ୍ଷିତ ଅନ୍ତରାଳରେ ମିଶିଯାଏ । ଜୀବନର ଭିତ୍ତିଭୂମିରେ ପ୍ରତୀକ୍ଷା ବୀଣା ପରି ବାଜୁଥାଏ; କିନ୍ତୁ ବୀଣା ସଙ୍ଗେ ଏହାର ପାର୍ଥକ୍ୟ ଥାଏ । ବୀଣାର ସ୍ୱର ହଜିଗଲାବେଳେ ସହଜରେ ଧରି ହୁଏ ନାହିଁ; କିନ୍ତୁ ପ୍ରତୀକ୍ଷା ଅନ୍ତରକୁ ସର୍ବଦା ଆନ୍ଦୋଳିତ କଲେ ସୁଦ୍ଧା ଧରାଦିଏ ନାହିଁ । ବୀଣାସ୍ୱର ଲୋଡ଼େ ମୁକ୍ତି, ହଜିଗଲେ ତାର କାର୍ଯ୍ୟ ଶେଷ ହୋଇଯାଏ; କିନ୍ତୁ ପ୍ରତୀକ୍ଷା ଚାହିଁ ରହେ—ଦୂରଦେଶୀ ପାନ୍ଥ ପରି । ପାନ୍ଥ ଲୋଡ଼େ—ସାଥୀ । କେତେ ଆସନ୍ତି, ତା ବାଟରେ ଚାଲିଯାନ୍ତି, କାହାକୁ ସେ ଠିକ୍‌ରୂପେ ଅନୁସରଣ କରିପାରେ ନାହିଁ । ଆବେଗର ଅଧୀନ ହୋଇ ପ୍ରତୀକ୍ଷା କିଛିଦୂର ଅଗ୍ରସର ହୁଏ; କିନ୍ତୁ ପୁଣି ଫେରି ଆସି ଅନାଇ ରହେ । ଜୀବନ ସାରା ମନୁଷ୍ୟ ଖୋଜିବୁଲେ ସଂସାର ସହିତ ନିଜକୁ ମିଶାଇ ଦେବାପାଇଁ; କିନ୍ତୁ ପ୍ରତୀକ୍ଷାର କ୍ଷୀଣ ସ୍ୱରଟି ଅନ୍ତରରେ ଥରେ ଥରେ ବାଜି ଉଠି କହିଦିଏ—"ମାନବ, କ୍ଷାନ୍ତ ହୁଅ, ଏଥିରେ ପ୍ରାଣର ପିପାସା ମେଣ୍ଟିବ ନାହିଁ ।"

ସ୍ୱରଲହରୀ ସବୁବେଳେ ସମାନ ରହେ ନାହିଁ ବୋଲି ସଙ୍ଗୀତ ହୁଏ ପ୍ରାଣସ୍ପର୍ଶୀ । ପ୍ରତୀକ୍ଷା ପ୍ରାଣର ପିପାସା ମେଣ୍ଟାଏ ନାହିଁ ବୋଲି ଜୀବନରେ ରହିଯାଏ ଗୋଟାଏ ବୈଚିତ୍ର୍ୟ । ପ୍ରତୀକ୍ଷାର ଇଙ୍ଗିତରେ ନୂତନତ୍ୱର ସୃଷ୍ଟି । ସେ ଯାହାକୁ ନୂତନ ବୋଲି ସ୍ଥିର କରେ, ତାକୁ ପୁଣି ପୁରାତନ ଆଖ୍ୟା ଦେଇ ବିଦାୟ ଦିଏ । ସଂସାରର ବେଷ୍ଟନୀ ମଧ୍ୟରୁ ମନୁଷ୍ୟର ମନକୁ ସୀମାତୀତ ଆଡ଼କୁ ଟାଣିନେବା ପ୍ରତୀକ୍ଷାର ଗୋଟାଏ "ଧର୍ମ" । ଯାହାକୁ ଅତୀତରେ ସେ ଛାଡ଼ିଦିଏ, ତାକୁ ପୁଣି ଅନାଇ ରହେ । ସରସ ସମ୍ପର୍କ ହଜିଯାଏ—ରଖି ଦେଇଯାଏ ଯେଉଁ ସ୍ମୃତିଟିକି, ତାକୁ ପ୍ରତୀକ୍ଷା କେତେ ଆଦରରେ ଘୋଡ଼ାଇ ରଖେ । ମନୁଷ୍ୟ ବେଶ୍ ବୁଝିପାରେ ସାଂସାରିକ ବିଷୟ ଥରେ ଲୋପ ପାଇଗଲେ ଆଉ ମିଳେ ନାହିଁ; କିନ୍ତୁ ମନ ତାର ଏଥିରେ ମାନେ ନାହିଁ । ସେ ଗୋଟାଏ ସୀମାତୀତ ରାଜ୍ୟରେ ତାର ଲୁପ୍ତ ଧନ ଉଦ୍ଧାର କରିବ ବୋଲି ମନେ କରିଥାଏ । ଉତ୍କଳର ଭକ୍ତକବି ଦିନେ ଗାଇଥିଲେ—

"ହଜି ନାହିଁ ଯାର କେବେ କିଛି ହିଁ ରତନ,
ଏ ମର୍ତ୍ତ୍ୟ ସଂସାରେ ସେହି ଦୀନ ଅକିଞ୍ଚନ ।"

ଐଶ୍ୱର୍ଯ୍ୟର ଆକର୍ଷଣରେ ମନୁଷ୍ୟ ଜଗତଟାକୁ ଠିକ୍‌ରୂପେ ଦେଖିପାରେ ନାହିଁ । ନୟନରଞ୍ଜନ ଧନଟିଏ ହଜିଗଲେ ହୃଦୟର ଯେ ଶୂନ୍ୟତା ଆସେ, ସେଥିରେ ପ୍ରତୀକ୍ଷାର ପଥ ପ୍ରଶସ୍ତ ହୁଏ । ରିକ୍ତ ହୃଦୟରେ ପ୍ରତୀକ୍ଷା ଗୋଟାଏ ପୂର୍ଣ୍ଣତାର ଛବି ପକାଇଦିଏ । ମନୁଷ୍ୟ ବୁଝିପାରେ ନାହିଁ ଏହି ତୃଷ୍ଣାର ମର୍ମ । ତୃଷ୍ଣା ଯଦି ତୃଷ୍ଣା ରୂପରେ ନ ଆସି ଗୋଟାଏ କାୟା ବିସ୍ତାର କରି ବସନ୍ତା, ତାହାହେଲେ ପ୍ରତୀକ୍ଷାର ମହତ୍ତ୍ୱ ଜୀବନରେ ଆଦୌ ଅନୁଭୂତ ହୁଅନ୍ତା ନାହିଁ କିମ୍ବା ମନୁଷ୍ୟର ମନ ଅସୀମ ଆଡ଼କୁ ଯାଆନ୍ତା ନାହିଁ । ଅନ୍ତର ଯାହାକୁ ଚାହେଁ, ପ୍ରତୀକ୍ଷା ତାକୁ ଅନୁସରଣ କରେ । ପ୍ରମାଦ ଘଟିଲେ ଅନ୍ତରର ଦୁର୍ବଳତାର ପରିଚୟ ମିଳେ । ଚୁମ୍ବକର ଆକର୍ଷଣୀ ପ୍ରଭାବ ଦୋଷାବହ ନୁହେଁ । ଆକର୍ଷଣ ବଳରେ ଚୁମ୍ବକ ତାର ଅସ୍ତିତ୍ୱ ପ୍ରମାଣ କରେ । ପ୍ରତୀକ୍ଷା ମନୁଷ୍ୟର ଅଗ୍ରଗତିରେ ବାଧା ଦେଇପାରେ । ସ୍ଥା ବୋଲି ତାକୁ ହୀନ ଭାବରେ ଗ୍ରହଣ କରିବା ଉଚିତ ନୁହେଁ । ଗତିଶୀଳ ଜୀବ ପକ୍ଷରେ ବାଧା ଅସ୍ୱାଭାବିକ ନୁହେଁ । ପ୍ରତୀକ୍ଷା ଯେତେବେଳେ ଅନ୍ତରରେ ଗୋଟାଏ ବାଧା ଆଣେ, ସେତେବେଳେ ଜୀବନର ଗତି ଭିନ୍ନ ମାର୍ଗରେ ପ୍ରାୟ ଚାଳିତ ହୁଏ । ହୃଦୟର ଚିତ୍ରପଟରେ ଏହା ଗୋଟାଏ ତୀବ୍ର ଅସ୍ପଷ୍ଟ ଛବି । ଏହା ଲିଭିଗଲା ପରି ଦିଶେ; କିନ୍ତୁ

ପ୍ରକୃତରେ ନିଭେ ନାହିଁ । ଏହାର ତୀବ୍ରତା ବଳରେ ହୃଦୟର ଦୁର୍ବଳତା କମି ଆସେ । ଅଗ୍ନି ନିର୍ବାପିତ ହୁଏ । ଉତ୍ସୁକତା ପରିଣତ ଦେଖାଇଦିଏ । ଅନ୍ତର ଅବନତ ହୋଇ ପଡ଼େ । ପ୍ରତୀକ୍ଷା ପ୍ରମାଣ କରିଦିଏ, ତାର ଲଘୁତା କିମ୍ବା ଗୁରୁତ୍ୱ । ଦୋଷ କିମ୍ବା ଗୁଣଟିକୁ ଅନ୍ତରରେ ଆରୋପ କରି ନିଜେ ରହେ ପୃଥକ୍; ତେଣୁ ସେ ବଡ଼ ଅସ୍ପଷ୍ଟ ।

ବ୍ୟର୍ଥ ଲକ୍ଷ୍ୟ ପ୍ରଗତିର ଗୋଟାଏ ସୋପାନ । ସ୍ୱଚ୍ଛ ଧାରାରେ ବାଧା ଆସିଲାକ୍ଷଣି ଗୋଟାଏ ବିପ୍ଳବ ଜନ୍ମେ । ଏହି ବିପ୍ଳବ ଫଳରେ ଶାନ୍ତିର ପଥ ଉଦ୍‌ଘାଟିତ ହୋଇପାରେ । ଯେ ଯେତେ ଥର ଲକ୍ଷ୍ୟଭ୍ରଷ୍ଟ ହେଲାଣି ଓ ଅନାଗ୍ରହରେ ବିପ୍ଳବକୁ ବରଣ କରି ନେଲାଣି, ତାର ପଥ ସେତେ ଆଲୋମୟ ଓ ମୁକ୍ତ-ନିୟନ୍ତ୍ରୀ ହେଲାଣି । ପ୍ରତୀକ୍ଷା ଯେ ବିପ୍ଳବ ସୃଷ୍ଟି କରେ, ସେଥିରେ ଲକ୍ଷ୍ୟ ଦୂରକୁ ଚାଲିଯାଏ । ଯିବାବେଳେ ଜୀବନର ଧାରାକୁ ଟାଣିନିଏ । ପ୍ରତୀକ୍ଷାକୁ ଅନୁସରଣ କରି ଜୀବନର ଧାରାଟି ବହିଯାଏ ।

ପ୍ରତୀକ୍ଷା ଲୋଡ଼େ ପ୍ରଚ୍ଛନ୍ନ ପ୍ରକାଶ । ଶର୍ବରୀର ଶେଷ ପର୍ଦ୍ଦାଟି ଉଠିଯାଏ । ପୂର୍ବାଶା ଈଷତ୍ ଅରୁଣିମା ଦେଖାଇଦିଏ । ଅନ୍ଧକାର ଓ ଆଲୋକର ସନ୍ଧିସ୍ଥଳରେ ଊଷା ଆସି ତାର ଆଗମନୀ ଜଣାଇଦିଏ । ଆଲୋକ ଆସ୍ତେ ଆସ୍ତେ ଲୁଚିଯାଏ । ଗୋଧୂଳି ଗଗନରେ ସନ୍ଧ୍ୟା ତାରାଟି ଜଳିଉଠେ । ଆଲୋକ ଓ ଅନ୍ଧକାରର ଦ୍ୱନ୍ଦ୍ୱ ପ୍ରକାଶ ବା ଭାବରେ ପ୍ରଭେଦ ଅତ୍ୟଳ୍ପ ଥାଏ । ଦୁହିଙ୍କର ନିଗୂଢ଼ ରଚନାରେ ଏହି ପର୍ବ ଭାବମାନେ ଦୂରଦୃଷ୍ଟ ସୁସଜ୍ଜିତ ତୋରଣ ପରି ସୌନ୍ଦର୍ଯ୍ୟର ଗୋଟାଏ ବିକାଶ ଦେଖାଇଥାନ୍ତି, ଯାହା ଅସ୍ପଷ୍ଟ ହେଲେ ମଧ୍ୟ ଅତୀତ କିମ୍ବା ଭବିଷ୍ୟତର କୁହେଳିରେ ଲୁଚିଯାଏ ନାହିଁ । ହର୍ଷ ଓ ବିଷାଦରେ ଜୀବନର ଗତି ଚଞ୍ଚଳ ହୋଇପଡ଼େ; କିନ୍ତୁ ପ୍ରତୀକ୍ଷାର ମୃଦୁ ଓ ଅଲକ୍ଷିତ ଆକର୍ଷଣରେ ଯେ ଶାନ୍ତ ଭାବ ଆସେ, ତାହା ଅସୀମ ଆଡ଼କୁ ଗୋଟାଏ ଇଙ୍ଗିତ ମାତ୍ର । ମନେହୁଏ ଅନନ୍ତ ଗର୍ଭରେ ଅପାର୍ଥିବର ଯେ ଜ୍ୟୋତିପାତ ହୁଏ, ତାହା ପ୍ରତୀକ୍ଷାର ଗୋଟାଏ ଆଭାସ । ମନୁଷ୍ୟ ଯେତେବେଳେ ଏହି ଆଭାସ ପାଇବାପାଇଁ ବ୍ୟଗ୍ର ହୋଇଉଠେ, ସେତେବେଳେ ସେ ପାର୍ଥିବ ବେଷ୍ଟନୀରେ ରହି ସୁଦ୍ଧା ଗୋଟିଏ ଅନାମୟ ରାଜ୍ୟର କଳ୍ପନା କରେ । କଳ୍ପନାରେ ପ୍ରତୀକ୍ଷା ଆତ୍ମଗୋପନ କରି ଜୀବନର ଗତିକୁ ଅଧିକାଂଶ ପରିମାଣରେ ପ୍ରଭାବିତ କରେ । ତେଣୁ ମନୁଷ୍ୟ ଗୋଟାଏ ଅଜଣା ଦିଗକୁ ଯାଉଥିଲେ ସୁଦ୍ଧା ସହଜରେ ନିଜର ଅବସ୍ଥା ବୁଝିପାରେ ନାହିଁ । କାହାର ଆକର୍ଷଣ ସେ କାହିଁକି ଅନୁଭବ କରେ, ଏ କଥା ହୃଦୟ ସ୍ପଷ୍ଟରୂପେ ପ୍ରକାଶ କରେ ନାହିଁ । ଜଣକର ସାମାନ୍ୟ ଇଙ୍ଗିତରେ ଅନ୍ୟ ଜଣେ ଆସି ଜୀବନବ୍ୟାପୀ ସାଧନା କରେ, କେବଳ ତାକୁ ଅନୁସରଣ କରିବ ବୋଲି । ପ୍ରତୀକ୍ଷା ତା ଅନ୍ତରରେ ଗୋଟାଏ ଅଲକ୍ଷିତ ଆଘାତ ଦେଇଯାଏ, ଯାହା ସେହି ଅନୁଭୂତିର ପ୍ରଧାନ କାରଣ ହୁଏ । ଏହି ଅନୁଭୂତିରେ ପ୍ରତୀକ୍ଷା ତାର ପ୍ରଚ୍ଛନ୍ନ ପ୍ରକାଶ ପାଇଁ ଅବସର ପାଇଥାଏ ।

ଅସୀମରୁ ଆସି ସସୀମରେ ଲୁଚି ରହି ପୁଣି ସେହି ଅସୀମ ଆଡ଼କୁ ଯିବା ପ୍ରତୀକ୍ଷାର ଲକ୍ଷ୍ୟ । କଳା ମେଘରେ ବିଜୁଳି ଚମକିଯାଏ; ଦୂରଦେଶୀ ପାନ୍ଥ ମନରେ ଗୋଟାଏ ଅଲକ୍ଷିତ ତରଙ୍ଗ ଖେଳିଉଠେ । ପାନ୍ଥ ଅନାଇ ରହେ, ତା ଅନନ୍ତ ପଥର ସହଯାତ୍ରୀ ପାଇଁ । ନୀରବରେ ସୁନ୍ଦରୀ ଚାଲିଯାଏ—ରଖିଦେଇ ଯାଏ ଗୋଟାଏ ଅସ୍ପଷ୍ଟ ଆଘାତ । ଆବେଗରେ ହୃଦୟ ଚଞ୍ଚଳ ହୋଇଉଠେ । ସୌନ୍ଦର୍ଯ୍ୟ ସଙ୍ଗେ ଚପଳତା ମିଶିଗଲେ ପ୍ରତୀକ୍ଷା ଟିକିଏ ଦୂରକୁ ଚାଲିଯାଏ । ବେଳାଭୂମିବିହାରୀ ସମୁଦ୍ରକୁ ଯେ ଚକ୍ଷୁରେ ଦେଖେ, ସମୁଦ୍ର ବକ୍ଷରେ କ୍ଷେପଣୀବାହୀ ସେପରି ଦେଖିପାରେ ନାହିଁ । ଜଣକର ଦୂରଦୃଷ୍ଟି ଅପରର ସଂକ୍ଷିପ୍ତ ଦୃଷ୍ଟି ସହିତ ସାମଞ୍ଜସ୍ୟ ରକ୍ଷା କରିପାରେ ନାହିଁ । ସୌନ୍ଦର୍ଯ୍ୟରେ ଆସକ୍ତି ଆସିଲେ ମନ ସ୍ୱତଃ ଧାଏଁ ରୂପକୁ ଆଶ୍ରୟ କରି ସଂସାର ପଥ ଅତିକ୍ରମ କରିବ ବୋଲି; କିନ୍ତୁ କେତେ ଜଣ ଏପରି ଭାଗ୍ୟବାନ ହୋଇଛନ୍ତି କହିବା କଠିନ । ପକ୍ଷାନ୍ତରରେ ସୌନ୍ଦର୍ଯ୍ୟର ଆଶ୍ରୟକୁ ଦୂର କରିଦେଲେ ଅନ୍ତର ଗୋଟାଏ ଶୂନ୍ୟତା ବୋଧକରେ । ଏହି ଶୂନ୍ୟତାରେ ପ୍ରତୀକ୍ଷା ତାର ଆତ୍ମ-ପରିଚୟ ଦିଏ । ଯୁବକ ପ୍ରାଣରେ ସୁନ୍ଦରୀ ଯେ ସୌଖୀନ ଭାବ ଖେଳାଇଦିଏ, ତାହା ପ୍ରତୀକ୍ଷାର ବିରୋଧୀ । ବେତାର ବାର୍ତ୍ତା ଶୂନ୍ୟରେ ଭାସିଯାଏ, ରହେଁ କେବଳ ଆଘାତ । ପ୍ରତୀକ୍ଷା ସେହିପରି ଲୋଡ଼େ ଅନ୍ତରରେ ଗୋଟାଏ ଗୋଟାଏ ଆଘାତ । ତରୁଣୀର ତରଳ ଚାହାଣି ଜୀବନରେ ଗୋଟାଏ ମୋହ ଆଣିପାରେ; କିନ୍ତୁ ଯବନିକା ଉଠାଇବା ପାଇଁ ଏହା ଆଦୌ ସାହାଯ୍ୟ କରିପାରେ ନାହିଁ । ସବୁ ଯବନିକା ଭେଦ କରି ପ୍ରତୀକ୍ଷା ଅନାଇ ରହେ । ବ୍ୟାକୁଳତା ଆସେ, ଚାଲିଯାଏ; କିନ୍ତୁ ପ୍ରତୀକ୍ଷା ଯାଏ ନାହିଁ । ବ୍ୟାକୁଳତା ଆଣେ ପ୍ରାଣର କ୍ଷୁବ୍ଧତା; କିନ୍ତୁ ପ୍ରତୀକ୍ଷା ଲୋଡ଼େ ସେହି କ୍ଷୁବ୍ଧତାରେ ଗୋଟାଏ ଶାନ୍ତି । ସୌନ୍ଦର୍ଯ୍ୟକୁ ଦୂରରେ ରଖି ପ୍ରତୀକ୍ଷା ଆନନ୍ଦ ଅନୁଭବ କରେ । ମଳୟର

ଶାନ୍ତ ସ୍ପର୍ଶରେ ପ୍ରେମିକ ଯେ ଅବ୍ୟକ୍ତ ଭାବ ଅନୁଭବ କରେ ଓ ଯାହାର କମନୀୟ କାନ୍ତ ଦୃଷ୍ଟି ଅନ୍ତରାଳରେ ରହି ସୁଦ୍ଧା ତାର ମନକୁ ଅଭିଭୂତ କରୁଥାଏ, ତାହା ପ୍ରତୀକ୍ଷାର ଗୋଟାଏ ଜଡ଼ ଆବରଣ ପରି ମନେହୁଏ । ପ୍ରତୀକ୍ଷା ସବୁବେଳେ ଗୋଟାଏ ଆକର୍ଷଣର ଅଧୀନ ଥାଏ । କିନ୍ତୁ ଆକର୍ଷଣର ସ୍ୱରୂପ ଅନ୍ତରର ଦୃଷ୍ଟି ଶକ୍ତିକୁ କ୍ଷୀଣ କରିଦେଲେ ପ୍ରତୀକ୍ଷାର ଉଦ୍ଦେଶ୍ୟ ବିଫଳ ହୁଏ । ସୌନ୍ଦର୍ଯ୍ୟ ଗୃହେଁ ବିକାଶ । କ୍ଷୁଦ୍ର ଗିରିନଦୀ ଅନନ୍ତ ଜଳଧି ସଙ୍ଗମକୁ ଏକମାତ୍ର ଲକ୍ଷ୍ୟ କରି ପ୍ରବାହିତ ହୁଏ । ବିକାଶ କୌଣସି ସୀମା ମଧ୍ୟରେ ରହିପାରେ ନାହିଁ । ସୌନ୍ଦର୍ଯ୍ୟ ସଙ୍ଗେ ଯାହାର ସମ୍ପର୍କ, ତାକୁ ସୀମାବଦ୍ଧ କରିବା ହୀନତାର ପରିଚୟକ । ସୁନ୍ଦର ଓ ମହତ୍ ହେବାକୁ ବାସନା ଥିଲେ ଗିରିନଦୀ ପରି ବହିଯାଇ ଅନନ୍ତ ସଙ୍ଗେ ମିଶିବାକୁ ହେବ ।

ହୃଦୟର ପ୍ରତି ସ୍ପନ୍ଦନରେ ପ୍ରତୀକ୍ଷାର ଆବେଗ ରହିଚି । ମନୁଷ୍ୟ ଈପ୍ସିତ ବସ୍ତୁଟି ପାଏ ନାହିଁ ବୋଲି ଗୋଟିକ ପରେ ଗୋଟିଏ ଆଶ୍ରୟକୁ ଗ୍ରହଣ କରି ପୁଣି ତ୍ୟାଗ କରେ । ଚିରଦିନ ଯଦି ଗୋଟାଏ ଅବଲମ୍ବନରେ ମନୁଷ୍ୟକୁ ଆବଦ୍ଧ କରିଦିଆଯାନ୍ତା, ତାହାହେଲେ ସେ ଜୀବନର ସରସତା ପାଆନ୍ତା ନାହିଁ । ମନୁଷ୍ୟ ଅନେକ ସମୟରେ ଭଗ୍ନମନୋରଥ ହୁଏ, ସଂସାରର ସବୁ ସୌନ୍ଦର୍ଯ୍ୟ ତା ସମକ୍ଷରୁ ଲିଭିଯାଏ; କାରଣ ତାର ଅନ୍ତରର ଏକମାତ୍ର ଅବଲମ୍ବନଟି ଲୁଚିଯାଇଥାଏ । ଦୁର୍ବଳତା ବିନାଶର ଅଗ୍ରଦୂତ । ସାଧାରଣତଃ ହୃଦୟ ଦୁର୍ବଳ ନ ହେଲେ ଗୋଟିକୁ ଦୀର୍ଘକାଳ ପାଇଁ ଗ୍ରହଣ କରି ସନ୍ତୁଷ୍ଟ ରହନ୍ତା ନାହିଁ । କିନ୍ତୁ ଏହି ଗୋଟିକର ରୂପରେ ଯଦି ବିଶ୍ୱ-ସୌନ୍ଦର୍ଯ୍ୟର ସାମାନ୍ୟ ଆଭା ପ୍ରକଟିତ ହୋଇପାରେ, ତାହାହେଲେ ଦୁର୍ବଳତା ଚାଲିଯାଏ । ପୁଣି ସବଳତା ଆସି ସେହି ହୃଦୟକୁ ଅଧିକାର କରେ । ଏପରି ଅବସ୍ଥାରେ ମନୁଷ୍ୟ ଆଉ ପ୍ରତୀକ୍ଷାର ବଶବର୍ତ୍ତୀ ହୁଏ ନାହିଁ । ଯେଉଁ ଅଭାବପୂରଣ ପାଇଁ ପ୍ରତୀକ୍ଷା ହୃଦୟକୁ ଟାଣି ରଖେ ଓ ଯାହାର ସନ୍ଧାନରେ ଜୀବନର ଗତି କେତେବେଳେ କ୍ଷିପ୍ର ଓ କେତେବେଳେ ମନ୍ଥର ହୋଇପଡ଼େ, ତାକୁ କୌଣସି ନିର୍ଦ୍ଦିଷ୍ଟ ଆଶ୍ରୟରେ ପାଇଲେ ଜୀବନ ଧନ୍ୟ ହୋଇଥାଏ । ବହୁ ଜନ୍ମର ସାଧନା ଫଳରେ ପ୍ରତୀକ୍ଷା-ପ୍ରକଟିତ ମୂର୍ତ୍ତିଟି ଗୋଟାଏ ରୂପ ଧରି ଆସିପାରେ; କିନ୍ତୁ ଶୂନ୍ୟ ମନ୍ଦିରରେ ଦେବତାର ପ୍ରତିଷ୍ଠା ପୂର୍ବରୁ ସାଧକ ଯେପରି ଆତ୍ମତ୍ୟାଗ ଦେଖାଇଥାଏ, ସେହିପରି ପ୍ରତୀକ୍ଷାକୁ ଅନୁସରଣ କରି ଛାଡ଼ିଦେଲେ ମନୁଷ୍ୟ ଶେଷରେ ଦେଖେ—ତାର ସ୍ୱରୂପର ବିକାଶ ।



# ଭୋଗ ଓ ତ୍ୟାଗ

ଜୀବମାତ୍ରେ ସୁଖପ୍ରୟାସୀ । ସୁଖାନୁଭୂତି ପ୍ରକାର ଓ ପରିମାଣ ଭେଦରେ ଯେଉଁ ସବୁ ପୃଥକ୍ ସ୍ତର ସୃଷ୍ଟି କରେ, ସେଗୁଡ଼ିକୁ ପ୍ରାଣିଜଗତର ବିଭିନ୍ନ ଶ୍ରେଣୀ ବିଭାଗର ପରିମାପକ ସ୍ୱରୂପ ଗ୍ରହଣ କଲେ ଜୀବର ଧର୍ମ ସମ୍ବନ୍ଧରେ ଗୋଟାଏ ଧାରଣା ଜନ୍ମିପାରେ । ସୃଷ୍ଟଜୀବ ବ୍ୟାକୁଳତାର ଅଧୀନ । ଜନ୍ମ ହେଲା ମାତ୍ରେ ଜୀବ ଧାଏଁ ତାର ତୃପ୍ତି ସାଧନ ପାଇଁ; ଚେତନାବସ୍ଥା ଏଥିରେ ତାକୁ ବିଶେଷ ସାହାଯ୍ୟ କରେ । ଇତର ପ୍ରାଣୀମାନଙ୍କର ଲାଳସା ଓ ତୃପ୍ତି ବିଷୟ ବର୍ତ୍ତମାନ ଆଲୋଚନାରୁ ବାଦ୍ ଦେଇ କେବଳ ମନୁଷ୍ୟ ସମ୍ବନ୍ଧରେ କେତେକ ବିଷୟ ଉପସ୍ଥାପିତ କରାଯିବ ।

ଆବହମାନ କାଳରୁ ଆଜିପର୍ଯ୍ୟନ୍ତ ମନୁଷ୍ୟ ଜାତି ନାନା ଅନ୍ୱେଷଣରେ ବ୍ୟାପୃତ ହୋଇ ରହିଅଛି । କେବଳ ସୁଖ ଓ ଶାନ୍ତି ଚିନ୍ତନାରେ ସେ ଅସଂଖ୍ୟ ମାର୍ଗରେ ବିଚରଣ କରିଛି । କେତେ ଲୋମ-ହର୍ଷଣ ଓ ଅଦ୍ଭୁତ ଘଟଣା ସମ୍ପର୍କରେ ତା ହୃଦୟର ଗମ୍ଭୀରତମ ଭାବନାରାଶି ସମ୍ପୃକ୍ତ ହୋଇ ରହିଛି । ଉତ୍କଟ ଆକାଂକ୍ଷାରେ ନିଜକୁ ହଜାଇ ସେ ଦେଖିବାକୁ ଯାଇଛି—ତାର ସୁଖସ୍ୱପ୍ନର ବାସ୍ତବତା; କିନ୍ତୁ ପ୍ରକୃତରେ ସେ ଦେଖିଛି କଅଣ ? ଅଗ୍ନିଶିଖାର ପ୍ରବଳ ପ୍ରଦୀପ୍ତି ପରେ ଭସ୍ମସ୍ତୂପର ଅଳୀକ ମୂର୍ତ୍ତି, ଉତ୍କଟ କାମ ପରିତୃପ୍ତିରେ ଜୀବନର ଘୋର ଅବଶତା, ଆକାଂକ୍ଷାର ତୀବ୍ର ତାଡ଼ନାରେ ନୈରାଶ୍ୟର ଘନ ଅନ୍ଧକାର, ବିଜୟ ଦୁନ୍ଦୁଭିର ମୁଖରତାରେ ନିର୍ଜନତାର ମର୍ମସ୍ପର୍ଶୀ ଆକୁଳତା ମନୁଷ୍ୟ ପ୍ରାଣକୁ ବିଶେଷ ଭାବରେ ଉତ୍କ୍ଷିପ୍ତ କରି ଯେ ଚିତ୍ରଟି ଆଙ୍କି ଦେଇଛି, ତାକୁ ଭିନ୍ନ ରଙ୍ଗରେ ରଞ୍ଜିତ କରି ସୁଦ୍ଧା ମନୁଷ୍ୟ ତାର ଆଶାର ସ୍ୱପ୍ନକୁ ପୂର୍ଣ୍ଣମାତ୍ରାରେ ବାସ୍ତବ କରି ପାରି ନାହିଁ । ଅଦୃଷ୍ଟ ଲିଙ୍ଗ ପରିବର୍ତ୍ତିରେ ମୁକ୍ତାନନ୍ଦୀ ଶିଶିରବିନ୍ଦୁ କାମପରିତନ୍ତ୍ର ହୃଦୟରେ ପ୍ରଣୟର ପବିତ୍ର ସ୍ପର୍ଶ, ଅମଳତାର ଆକର୍ଷଣରେ ଆକାଂକ୍ଷାର ନିବୃତ୍ତି, ବିଜୟୀର ବିଜୟୋଲ୍ଲାସରେ ମୈତ୍ରୀର ଶାନ୍ତାବସ୍ଥା ପ୍ରକଟିତ ହେଲେ ହୃଦୟର ଗୋଟିଏ ଅତି ଉନ୍ନତ ଦ୍ୱାର ଉନ୍ମୁକ୍ତ ହୋଇପାରେ; କିନ୍ତୁ ବାସ୍ତବତା ସମ୍ପୂର୍ଣ୍ଣରୂପେ ଅନୁଭୂତ ହୁଏ ନାହିଁ । ଯୁଗ ପରେ ଯୁଗ ଆସି ଅତୀତରେ ମିଶିଗଲାଣି । ସଂଖ୍ୟାତୀତ ମନୁଷ୍ୟ ଧରିତ୍ରୀବକ୍ଷରେ କେତେ ରଙ୍ଗରେ ଆବିର୍ଭୂତ ହୋଇ ଅନ୍ତର୍ହିତ ହେଲେଣି; କିନ୍ତୁ କର୍ମ-ଚକ୍ରର ଘୂର୍ଣ୍ଣନରେ ଲେଶମାତ୍ର ବିରାମ ଆସି ନାହିଁ । ମନୁଷ୍ୟ ଜାତିର ଅସ୍ତିତ୍ୱ ଥିବାପର୍ଯ୍ୟନ୍ତ ଏହାର ଗତି ଅପ୍ରତିହତ ରହିବ । ସଂସାରର ଯାବତୀୟ ବୈଚିତ୍ର୍ୟ ମଧ୍ୟରେ ମନୁଷ୍ୟ ତାର ଗତି ନିୟନ୍ତ୍ରିତ କରିବା ପାଇଁ କେତେ ମାର୍ଗ ଅନୁସରଣ କରେ । ଅପ୍ରତ୍ୟାଶିତ ଅନେକ ବାଧା ଆସି ତାର ପଥରୋଧ କରନ୍ତି; କିନ୍ତୁ ସେମାନଙ୍କୁ ଉପେକ୍ଷା କରି ସେ ଅଗ୍ରଗତିର ପରିଚୟ ଦିଏ । ପ୍ରବଳ ଆକାଂକ୍ଷାର ଅଧୀନ ହୋଇ ମନୁଷ୍ୟ ଯେଉଁ ମହତ୍ କାର୍ଯ୍ୟ ସମ୍ପାଦନ କରେ, ସେଥିରେ ସଂସାରବାସୀ ସ୍ତମ୍ଭିତ ହୋଇ-ପାରନ୍ତି; କିନ୍ତୁ ହୃଦୟ ଯାହାର ସନ୍ଧାନରେ ବ୍ୟଗ୍ର ହୋଇ ପଡ଼ିଥାଏ ତାକୁ ପାଇଲାକ୍ଷଣି ଗୋଟାଏ ବିରାଟ ନୀରବତାରେ ମନୁଷ୍ୟର ଜଟିଳ କର୍ମଗ୍ରନ୍ଥିଟି ଆବୃତ୍ତ ହୋଇ ପଡ଼େ । ଏହି ଅବସ୍ଥାରେ ସେ ଦେଖେ—ତା କର୍ମର ପରିଣତି । ଏପରି ଅବସ୍ଥାରେ ଉପନୀତ ହେବା ମଧ୍ୟ ସହଜ ନୁହେଁ । କୌଣସି ମାର୍ଗରେ ଅନେକ ଦିନ ଗତି କଲେ ମନୁଷ୍ୟ ଗୋଟାଏ ସନ୍ଧିସ୍ଥଳରେ ପହଞ୍ଚିବ, ଯେଉଁଠାରେ ତାର ଚିରପରିଚିତ ଓ ଆଦରର ଦର୍ଶନୀୟ ବସ୍ତୁଗୁଡ଼ିକ ସମ୍ପୂର୍ଣ୍ଣ ବିପରୀତ ଆକାରରେ ଦେଖାଦେବେ । ସେମାନଙ୍କୁ ଅନୁସରଣ କଲାବେଳେ ମନୁଷ୍ୟ ତାର ଚିରାଭ୍ୟସ୍ତ ଗନ୍ତବ୍ୟ ପଥକୁ ପାସୋରି ଦେଇ ଭିନ୍ନ ଏକ ପଥର ପଥିକ ହୁଏ । ସଂସାରବାସୀ-ମାତ୍ରେ ପଥାଶ୍ରୟୀ; କିନ୍ତୁ ସମସ୍ତଙ୍କର ପଥ ଏକ ଦିଗରେ ନିର୍ଦ୍ଦିଷ୍ଟ ନୁହେଁ । ବିଶ୍ୱବିଜୟୀ ଆଲେକଜେଣ୍ଡାର ଯେ ଆଶାର ସ୍ୱପ୍ନ ଦେଖି ପୃଥିବୀକୁ ପଦଦଳିତ କରିବାକୁ ଅଗ୍ରସର ହୋଇଥିଲେ, ତାଙ୍କର ପୁଣି କାହିଁକି ଅନ୍ତିମ କାଳରେ ଗୋଟାଏ ଅସାଧାରଣ ନୈରାଶ୍ୟ ଆସିଲା ? ପ୍ରାଣେ ପ୍ରତିମାକୁ ରାମଚନ୍ଦ୍ର କାହାର ଅନୁରୋଧରେ ନିର୍ବାସନ ଦଣ୍ଡବିଧାନ କଲେ ? ପୂତାଖ୍ୟାନ ରାମାୟଣ କାହାର

ବର୍ତ୍ତନାରେ ବିଶ୍ୱବରେଣ୍ୟ ହେଲା ? ସତୀଶିରୋମଣି ସାବିତ୍ରୀ କାହିଁକି ଭାରତନାରୀର ଆଦର୍ଶ ହେଲେ ? ଦୁର୍ଗାବତୀ, ଲକ୍ଷ୍ମୀବାଈ ପ୍ରଭୃତି ମନସ୍ୱିନୀ ବୀରରମଣୀମାନେ କାହାର ଇଙ୍ଗିତରେ ରଣାଙ୍ଗନକୁ ଡେଇଁ ପଡ଼ିଲେ ? ଏସବୁ ପ୍ରଶ୍ନର ଉତ୍ତର ଗୋଟାଏ କଥାରେ ଦେଲେ ତ୍ୟାଗ ବୁଝାଏ ନାହିଁ କି ?

ମନର ଅନୁକୂଳତା ଆଚରଣ କରି ଯେ ଗତି ପ୍ରବୃତ୍ତି ମାର୍ଗକୁ ପ୍ରଶସ୍ତ କରିଦିଏ, ତାହାପୁଣି ଏହାର ପ୍ରତିକୂଳରେ ଯାଇ ନିବୃତ୍ତିର ମହତ୍ତ୍ୱ ଜ୍ଞାପନ କରେ । ପ୍ରବୃତ୍ତି ଓ ନିବୃତ୍ତି ମନର ଦୁଇଟି ବିଶିଷ୍ଟ ଭିନ୍ନ ଅବସ୍ଥା ପ୍ରକାଶ କରେ । ଗୋଟିକର ବର୍ତ୍ତମାନତାରେ ଅପରର ପ୍ରାଦୁର୍ଭାବ ସହଜ ହୁଏ ନାହିଁ । ଯେପର୍ଯ୍ୟନ୍ତ ମନୁଷ୍ୟ ଗୋଟିଏ ନିର୍ଦ୍ଦିଷ୍ଟ ଦିଗରେ ଗତି କରୁଥାଏ, ତାର ଅପର ଦିଗପ୍ରତି ସାଧାରଣତଃ ଲକ୍ଷ୍ୟ ନ ଥାଏ । ଅନେକ ସମୟରେ ଅବସ୍ଥାର ବିଶେଷତ୍ୱ ଯୋଗୁ ମନର ଗତି ଚାଳିତ ହୁଏ । ଏହା ବ୍ୟତୀତ ମନ ଯେ ମାର୍ଗକୁ ସହଜରେ ଅବଲମ୍ବନ କରିପାରେ, ତାହାକୁ ହିଁ ସେ ପ୍ରଥମେ ଗ୍ରହଣ କରେ । ବସ୍ତୁ କିମ୍ବା ବିଷୟର ଉପକାରିତା ଉପଲବ୍ଧି କରି ହୃଦୟର ତୃପ୍ତି ବିଧାନ ଚେଷ୍ଟାକୁ ଆମ୍ଭେମାନେ ଭୋଗ ଆଖ୍ୟା ଦେଇଥାଉଁ । ଭୋଗ ପ୍ରବୃତ୍ତିର ନାମାନ୍ତର ମାତ୍ର । ପ୍ରବୃତ୍ତିକୁ ଚରିତାର୍ଥ କରିବାକୁ ଯାଇ ମନୁଷ୍ୟ ଯେପରି ଭୋଗର ବଶବର୍ତ୍ତୀ ହୁଏ, ସେହିପରି ନିବୃତ୍ତି ମାର୍ଗକୁ ଆଶ୍ରୟ କରି ସେ ତ୍ୟାଗର ନିଦର୍ଶନ ଦେଖାଏ । ଗୋଟାଏ ସ୍ରୋତର ଅନୁକୂଳ ଓ ପ୍ରତିକୂଳରେ ସନ୍ତରଣ କରି ମନୁଷ୍ୟ ତାର ଧର୍ମ ପାଳନ କରେ । ଏହି ଦୁଇ ବିରୁଦ୍ଧ କ୍ରିୟାରେ ମନୁଷ୍ୟ ଜୀବନ ଅତିବାହିତ ହେବ; ସୁତରାଂ ତାର କାର୍ଯ୍ୟପ୍ରଣାଳୀ ଦେଖି ସେ କେଉଁ ମାର୍ଗର ଅଧିକାରୀ, ବୁଝିନେବାକୁ ହୁଏ । ଗୋଟିଏ ସରଳ ଓ ସହଜ ପଥରେ ବିଚରଣ କରି ଶିଖିଲେ ମନୁଷ୍ୟ କଠିନ ପଥଟିଏ ପାଇଲେ ସୁଦ୍ଧା ଅତିକ୍ରମ କରିବାକୁ କୁଣ୍ଠିତ ହୁଏ ନାହିଁ । ଆଦୌ ବାଟ ଚାଲି ନ ଜାଣି କେହି କେବେ ଦୁର୍ଗମ କଣ୍ଟକାକୀର୍ଣ୍ଣ ପାର୍ବତ୍ୟ ପ୍ରଦେଶରେ ଭ୍ରମଣ କରିବାକୁ ମନ ବଳାଏ ନାହିଁ । ଶିଶୁ ଗୃହ-ପ୍ରାଙ୍ଗଣରେ ବୁଲି ବୁଲି ଯେ ଶକ୍ତି ସଞ୍ଚୟ କରେ, ତାହା ପୁଣି ତାକୁ ଭବିଷ୍ୟତରେ ଭୀଷଣ ଜଳଧି ବକ୍ଷରେ କିମ୍ବା ଅନନ୍ତ ଆକାଶର ନୀଳିମ କୋଡ଼ରେ ସଞ୍ଚରଣ କରିବାକୁ ଉତ୍ସାହିତ କରେ । ତା ହୋଇ ନ ଥିଲେ ଆଜି ବ୍ୟୋମବିହାର ପାଶ୍ଚାତ୍ୟବାସୀର ଏତେ ଆଦରର ବିଷୟ ହୋଇ ନ ଥାନ୍ତା । ଅଭ୍ରଭେଦୀ ଗିରିଶିଖରକୁ ଅତିକ୍ରମ କଲାବେଳେ ମନୁଷ୍ୟ ଦେଖେ, ଗିରି ଆରୋହଣ ତାର ପ୍ରାଥମିକ କାର୍ଯ୍ୟ । ଶୃଙ୍ଗକୁ ଅଧିକାର କଲା ପରେ ତାର ଅବରୋହଣ ଗତି ପୂର୍ଣ୍ଣରୂପେ ସୁଗମ ହୋଇପଡ଼େ । ଆମ୍ଭମାନଙ୍କର ସଂସାର ବର୍ତ୍ତି ଟି ଏହି ଗିରି ଆରୋହଣ ସଙ୍ଗେ ସମାନ କହିଲେ ଚଳେ । ମନୁଷ୍ୟ ଜନ୍ମ ହେଲା ମାତ୍ରେ ସଂସାରର ବୈଚିତ୍ର୍ୟରେ ଆବଦ୍ଧ ହୋଇ ରହେ । ଶୈଶବରେ କ୍ରୀଡ଼ା, ସାଥୀମାନଙ୍କର ଖେଳକୌତୁକ ଓ ପିତାମାତାଙ୍କର ସ୍ନେହ ଶିଶୁ ଜୀବନକୁ ଅତିମାତ୍ରାରେ ମୁଗ୍ଧ କରିଦିଏ । ତେଣୁ ଶିଶୁର ପ୍ରବୃତ୍ତି ସାଂସାରିକ ବିଷୟ ସହିତ ସଂଶ୍ଳିଷ୍ଟ ହୋଇ ରହେ । ଏହିପରି ଜୀବନର ଗତି ସଙ୍ଗେ ପ୍ରବୃତ୍ତିର ଉତ୍ତେଜନା ମାର୍ଗାନ୍ତରକୁ ଅନୁସରଣ କରି ଚାଲିଥାଏ । ପାରିପାର୍ଶ୍ୱିକ ଅବସ୍ଥାଗୁଡ଼ିକ ମଧ୍ୟ ଏଥିରେ ଯଥେଷ୍ଟ ସାହାଯ୍ୟ କରନ୍ତି । ସମୟ ଆସେ, ଯେତେବେଳେ ମାନବୀୟ ଶକ୍ତି ସାଂସାରିକ କ୍ରିୟା ସମ୍ପାଦନରେ ଗୋଟାଏ ଅତ୍ୟୁତ୍କୃଷ୍ଟ ସ୍ଥାନ ଅଧିକାର କରେ । ବର୍ତ୍ତମାନ ଦେଖାଯାଉ, ଏଠାରେ ପ୍ରବୃତ୍ତି କିମ୍ବା ଭୋଗର ମାତ୍ରା ମନୁଷ୍ୟ କିପରି ଭାବରେ ଅନୁଭବ କରେ ।

କେହି କେହି କହି ପାରନ୍ତି, ବୈଜ୍ଞାନିକ ଓ ଦାର୍ଶନିକ କଠିନ ସମସ୍ୟାସବୁ ସମାଧାନ କଲାବେଳେ ଯେ ଆନନ୍ଦ ଅନୁଭବ କରନ୍ତି, ତାହା ଭୋଗ ନୁହେଁ । ଭୋଗର ସ୍ୱରୂପ ସମସ୍ତଙ୍କ ଦୃଷ୍ଟିରେ ସମାନ ନୁହେଁ । ଜଣେ ସାମାନ୍ୟ ଜଡ଼ବସ୍ତୁ ଆହରଣ କରି ଯେ ସୁଖ ଅନୁଭବ କରେ, ଅନ୍ୟ ଜଣେ ତାକୁ ବିପର୍ଯ୍ୟସ୍ତ କରି ଅଧିକ ଆନନ୍ଦ ଅନୁଭବ କରିପାରେ । ଯେ ପର୍ଯ୍ୟନ୍ତ କିଛି ଲାଭ କରିବାର ଇଚ୍ଛା ବର୍ତ୍ତମାନ ଥାଏ, ସେପର୍ଯ୍ୟନ୍ତ ଭୋଗକୁ ସ୍ୱୀକାର କରିବାକୁ ଆମ୍ଭେମାନେ ବାଧ୍ୟ ହେଉଁ । କୌଣସି ପଦାର୍ଥକୁ ନଷ୍ଟ କଲେ ଯେ ତୃପ୍ତି ଆସେ, ତାକୁ ତ୍ୟାଗ କୁହାଯାଏ ନାହିଁ । ଏହା ଗ୍ରହଣ କରିବାର ଆଉ ଗୋଟିଏ ପନ୍ଥା । ବୈଜ୍ଞାନିକ କିମ୍ବା ଦାର୍ଶନିକର ଜୀବନବ୍ୟାପୀ ସାଧନା ଫଳରେ ମଧ୍ୟ ତାର ଇପ୍‌ସିତ ବିଷୟର ପ୍ରକୃତାବସ୍ଥା ପ୍ରମାଣିତ ହୋଇ ନ ପାରେ । କେବଳ ଦୁରୂହ କ୍ରିୟା ସମ୍ପାଦନ କରିପାରିଲେ ଭୋଗର ନିବୃତ୍ତି ଆସେ ନାହିଁ । ବିଷୟର ମୋହ ଥିବା ପର୍ଯ୍ୟନ୍ତ ଭୋଗ ମନୁଷ୍ୟକୁ ଅନୁସରଣ କରି ଚାଲିଥାଏ । ପ୍ରକାରର ତାରତମ୍ୟ ଅନୁସାରେ ଭୋଗୀ ଶ୍ରେଷ୍ଠ କିମ୍ବା ଇତର ବୋଲି ପ୍ରମାଣିତ ହୁଏ । କାମୁକ ଯେ ଚକ୍ଷୁରେ ରମଣୀର ମୁଖମଣ୍ଡଳ ଅବଲୋକନ କରେ, ପ୍ରେମିକ ଭାବୁକ ସେପରି ଦୃଷ୍ଟିରେ ଚାଳିତ ହୁଏ ନାହିଁ; କିନ୍ତୁ ଉଭୟେ ରମଣୀଠାରୁ କିଛି ଗ୍ରହଣ କରିବାକୁ ବ୍ୟସ୍ତ ଥାନ୍ତି । ଜଣେ ଯେ ଶ୍ରେଣୀର ଗ୍ରାହକ ଅପର ଜଣକ ତାଠାରୁ

ଦୂରରେ ରହି ମଧ୍ୟ ସେହି ଶ୍ରେଣୀଭୁକ୍ତ; କିନ୍ତୁ ପାର୍ଥକ୍ୟ ରହିଯାଏ କେବଳ ଦୂରତାରେ । ଅବଶ୍ୟ ଏହି ଦୂରତାକୁ ତୁଚ୍ଛ ବୋଲି କୁହାଯିବ ନାହିଁ । ଏହାର ପ୍ରଭାବରେ ମୋହର ପ୍ରଭାବ, ଯାହା କି ଭୋଗର ଭିତ୍ତିସ୍ୱରୂପ କ୍ରମଶଃ ସୂକ୍ଷ୍ମାବସ୍ଥା ଧାରଣ କରେ । ଆସକ୍ତିର ବେଗ ଦେଖି ଭୋଗକୁ ଭିନ୍ନ ଭିନ୍ନ ଶ୍ରେଣୀରେ ଗଣନା କରାଯାଇପାରେ । ଜ୍ଞାନଲିପ୍‌ସା ସଙ୍ଗେ ବିଷୟ ଲିପ୍‌ସା ସମାନ ନୁହେଁ । କିନ୍ତୁ ଲିପ୍‌ସାଟା ସାଧାରଣ ଭାବରେ ବର୍ତ୍ତମାନ ଥିବାରୁ ଜ୍ଞାନ ଓ ବିଷୟ ଲାଭକୁ ଭୋଗର ଅଧୀନ କରାଯାଏ । ଭୋଗର ପରିଧି ଖୁବ୍ ବିସ୍ତୃତ । ଏହି ପରିଧିକୁ ଯେ ଯେପରି ଭାବରେ ଓ ଯେତେ ଦୂର ଅତିକ୍ରମ କରେ, ସେହି ଅନୁସାରେ ଭୋଗର ମାତ୍ରା ନିର୍ଣ୍ଣୀତ ହୁଏ ।

ଭୋଗକୁ ହେୟ ମନେକରିବା ସଂସାର ବିରାଗୀଙ୍କ ପକ୍ଷରେ ଖୁବ୍ ସମ୍ଭବପର । ସେ ଜଗତକୁ ଯେ ଦୃଷ୍ଟିରେ ଦେଖନ୍ତି, ତାହା ସାଧାରଣ ଦୃଷ୍ଟିର ବହିର୍ଭୂତ । ଭାବର ବିଶିଷ୍ଟତା ଦୃଷ୍ଟି ଶକ୍ତିକୁ ପ୍ରଭାବିତ କରେ ବୋଲି ଏପରି ବୈଷମ୍ୟ ଲକ୍ଷିତ ହୁଏ । ବାହ୍ୟ ଜଗତ ସହିତ ସମ୍ପର୍କ ଯେ ପରିମାଣରେ ବର୍ଦ୍ଧିତ ହୁଏ, ସେହି ଅନୁସାରେ ଆସକ୍ତି ଭୋଗ ଲିପ୍‌ସାକୁ ପ୍ରବଳ କରେ । ଅଭ୍ୟାସ ଦୋଷରେ ମଧ୍ୟ ଭୋଗ-ସ୍ପୃହା ହୃଦୟକୁ ଅଧିକାର କରେ । ଅନୁକୂଳ ଅବସ୍ଥା ପାଇଲେ ମନୁଷ୍ୟ ସ୍ୱତଃପ୍ରବୃତ୍ତ ହୋଇ ନିଜ ଅଭାବର ମାତ୍ରାକୁ ବଢ଼ାଇଦିଏ । କୃଷିଜୀବୀ ସାଧାରଣତଃ ସରଳ ଭାବରେ ଜୀବନ ଯାପନ କରିଥାଏ । ତାର ଭୋଗ ସ୍ପୃହା ଅବସ୍ଥାନୁରୂପୀ ହୋଇପାରେ ନାହିଁ । ସମୟର ପରିବର୍ତ୍ତନ ଆସିଲେ ସେହି କୃଷକର ଯଦି ପ୍ରଭୂତ ଧନାଗମ ହୁଏ, ତାହାହେଲେ ତାର ହୃଦୟ ଉଚ୍ଛ୍ୱସିତ ହୋଇ ଉଠିବା ଖୁବ୍ ସ୍ୱାଭାବିକ । ସରଳତା ଛାଡ଼ି ସେ ଐଶ୍ୱର୍ଯ୍ୟର ଜଟିଳତା ଆଡ଼କୁ ଦୃଷ୍ଟି ଫେରାଇଦିଏ । ଜୀବନର ଗତି ପରିବର୍ତ୍ତନକୁ ସତର୍କ ଭାବରେ ଦେଖି ନ ପାରି ମନୁଷ୍ୟ ହଠାତ୍ ସହଜଲଭ୍ୟ ବିଷୟକୁ ଗ୍ରହଣ କରେ । ତେଣୁ ଦରିଦ୍ର କୃଷକ ଧନବାନ୍ ବଣିକର ଅବସ୍ଥା ଲାଭ କଲେ ଭୋଗ ବିଳାସରେ ଆତ୍ମବିସ୍ମୃତ ହୋଇପଡ଼ିବା କିଛି ବିସ୍ମୟକର ନୁହେଁ ।

ଭୋଗ ନୀତି-ମାର୍ଗର ବିରୋଧୀ ନୁହେଁ । ଅନାସକ୍ତଭାବରେ ଯେ ଭୋଗ କରାଯାଏ, ତାହା ଆଦର୍ଶସ୍ଥାନୀୟ । ପୂର୍ବକାଳରେ ଜନକ ଏଥିର ଦୃଷ୍ଟାନ୍ତ ଦେଖାଇଥିଲେ । ବର୍ତ୍ତମାନ ଯୁଗରେ ଆମ୍ଭେମାନେ ପାଶ୍ଚାତ୍ୟ ବିଜ୍ଞାନବିତ୍‌ମାନଙ୍କୁ ଆଦର୍ଶଭୋଗୀ ବୋଲି କହିପାରୁ । ବାୟୁ-ପୋତ ଆବିଷ୍କାର କଲାବେଳେ କେତେ ଜଣ ବୈଜ୍ଞାନିକ ମୃତ୍ୟୁମୁଖରେ ପତିତ ହୋଇ ନାହାନ୍ତି ? କେତେକ ପାଶ୍ଚାତ୍ୟ ପଣ୍ଡିତ ଅଳ୍ପ ଦିନ ତଳେ ହିମାଳୟର ସର୍ବୋଚ୍ଚ ଗୌରୀଶଙ୍କର ଶୃଙ୍ଗ ଆରୋହଣ କରିବାକୁ ଯାଇ ଉପର୍ଯ୍ୟୁକ୍ତ ଦଶାର ଅଧୀନ ହୋଇଅଛନ୍ତି । ଜ୍ଞାନ-ସାଧନର ବଳବତୀ ସ୍ପୃହା ହୃଦୟକୁ ଅଧିକାର କଲେ ମନୁଷ୍ୟ ନିଜର ଶରୀରକୁ ସୁଦ୍ଧା ଉପେକ୍ଷା କରିପାରେ । ଯେ ଭୋଗରେ ଶରୀର-ସୁଖ ପ୍ରତି ଲକ୍ଷ୍ୟ ନ ଥାଏ, ତାହା ସର୍ବଥା ବରଣୀୟ ହୋଇପାରେ; କିନ୍ତୁ କେତେ ଜଣ ଏ ମାର୍ଗରେ ଅଗ୍ରସର ହୋଇପାରନ୍ତି ? ଆଜି ଭାରତବାସୀ ଯେ ଦୁରବସ୍ଥାରେ ପଡ଼ିଛି, ସେଥିରେ ତାର ଏ ଦିଗକୁ ଗତି କରିବା ଏକପ୍ରକାର ଅସମ୍ଭବ କହିଲେ ଚଳେ । ଶରୀର-ସୁଖରେ ଆଦର୍ଶ-ଭୋଗୀ ଆସ୍ଥା ସ୍ଥାପନ କରି ନ ପାରନ୍ତି; କିନ୍ତୁ ମିଥ୍ୟା ବୋଲି ଶରୀରରକ୍ଷାକୁ ଅବହେଳା କଲେ କେହି ଉଚ୍ଚ ଶ୍ରେଣୀର ସାଧକ ହୋଇ ପାରିବେ ନାହିଁ । ସାମାନ୍ୟ ଅନ୍ନସମସ୍ୟା ଭାରତବାସୀକୁ ବ୍ୟସ୍ତ କରି ପକାଇଲାଣି, ସେଥିରେ ସେ କିପରି ଆଦର୍ଶ ଭୋଗର କାମନା କରିପାରେ ? ପ୍ରାଚୀନ ଭାରତ ବର୍ତ୍ତମାନ ଦୁରବସ୍ଥାର ସମ୍ମୁଖୀନ ହୋଇଥିଲେ ତାର ଜ୍ଞାନ, ଧର୍ମ ପ୍ରଭୃତି ଏତେ ଅସାଧାରଣ ହୋଇ ନ ଥାନ୍ତା । ଆଜି ଭାରତ ଗୋଟାଏ ଭୀଷଣ ସନ୍ଧିସ୍ଥଳରେ ପହଞ୍ଚି ଯେ ଜ୍ଞାନଗରିମାର ପରିଚୟ ଦେଉଛି, ତାହା ଯଥେଷ୍ଟ ବୋଲି ଭାବିବାକୁ ହେବ । ୟୁରୋପର ବସ୍ତୁ-ମୋହ ଗୋଟାଏ ଚରମ ସୀମାକୁ ସ୍ପର୍ଶ କଲାଣି । ୟୁରୋପ ଭୋଗର ଶେଷମାତ୍ରା ଆସ୍ୱାଦନ କରି ସାରିଲାଣି; କିନ୍ତୁ କାହିଁକି ତାର ନିବୃତ୍ତି ଆସୁ ନାହିଁ ? ଏଠାରେ ପ୍ରାଚୀନ ଭାରତ ଓ ବର୍ତ୍ତମାନ ୟୁରୋପର ଭୋଗ ବିଷୟ ଆଲୋଚନା କଲେ ଗୋଟାଏ ପାର୍ଥକ୍ୟ ଜଣାଯାଇ ପାରେ । ଭାରତର ଭୋଗରେ ନିବୃତ୍ତି ଥିଲା ଲକ୍ଷ୍ୟ; କିନ୍ତୁ ୟୁରୋପ ପକ୍ଷରେ ତାହା ହେଲା ନାହିଁ । ୟୁରୋପର ପିପାସା ଦିନକୁ ଦିନ ବଢ଼ିଯାଉଛି । ସମଗ୍ର ପୃଥିବୀକୁ ଗ୍ରାସ କଲେ ସୁଦ୍ଧା ୟୁରୋପର ତୃପ୍ତି ଆସିବ ନାହିଁ । ବସ୍ତୁ-ଅବଲମ୍ବନ ଭୋଗର ପ୍ରଥମାବସ୍ଥା, କିନ୍ତୁ ଶୀର୍ଷ ସୀମା ଆଡ଼କୁ ଯିବାବେଳେ ବସ୍ତୁ-ମୋହ ସ୍ୱତଃ ହ୍ରାସ ପାଇଯାଏ । ୟୁରୋପର ସେହି ଅବସ୍ଥା ଏ ପର୍ଯ୍ୟନ୍ତ ଆସି ନାହିଁ ବୋଲି ପ୍ରାଚୀନ ଭାରତଠାରୁ ସେ ଦୂରରେ ଅଛି । ଅଧିକାର ଭେଦରେ ଭୋଗକୁ ଗ୍ରହଣ କରିବା ବାଞ୍ଛନୀୟ । ଦରିଦ୍ରର ରାଜଭୋଗ ପାଇଁ ଲାଳାୟିତ ହେବା ଉଚିତ ନୁହେଁ । ଦରିଦ୍ର ନିଜର କ୍ଷୁଦ୍ର ସୀମା-

ମଧ୍ୟରେ କର୍ତ୍ତବ୍ୟ ସାଧନ କରି ଯେ ଶାନ୍ତି ଅନୁଭବ କରେ, ତାହା ରାଜଭୋଗଠାରୁ ଉତ୍କୃଷ୍ଟ ହୋଇପାରେ; କିନ୍ତୁ ଦରିଦ୍ର ରାଜାର ସ୍ଥାନ ଅଧିକାର କରିବାପାଇଁ ମନ ବଳାଇବା ଅନୁଚିତ । ଯେଉଁମାନେ ଭାରତକୁ ପାଶ୍ଚାତ୍ୟ ଛାଞ୍ଚରେ ଗଢ଼ି ନେବାକୁ ଚାହାନ୍ତି, ସେମାନଙ୍କର ଏଥିପ୍ରତି ଟିକିଏ ଦୃଷ୍ଟି ଦେବା ସମୀଚୀନ ବୋଧ ହୁଏ । କର୍ମ ପ୍ରତି ଅବହେଳା ଦେଖାଇ ଭୋଗ ଆଡ଼କୁ ଆକୃଷ୍ଟ ହେବା କେବଳ କର୍ମବିମୁଖ ଭିକ୍ଷାଜୀବୀର ପ୍ରବୃତ୍ତି ସଙ୍ଗେ ସମାନ । ୟୁରୋପ ଓ ଭାରତର କାର୍ଯ୍ୟପ୍ରଣାଳୀ ପରୀକ୍ଷା କଲେ ଉଭୟର ଭୋଗର ତାରତମ୍ୟ ଜଣାପଡ଼େ ଓ ସେଥିରେ ଉଚ୍ଚାଧିକାରୀର ଐଶ୍ୱର୍ଯ୍ୟ ଦେଖି ଈର୍ଷାନ୍ୱିତ ହେବା କାପୁରୁଷତା ଛଡ଼ା ଆଉ କିଛି ନୁହେଁ ।

ସାମାନ୍ୟ ଶକଟ ଯାନରେ ଯଦି ଭାରତବାସୀର ଆୟାସ ଆବଦ୍ଧ ରହେ, ତାହାହେଲେ ତାର ବ୍ୟୋମବିହାର ବାସନା ପରିତ୍ୟାଗ କରିବା ଉଚିତ ନୁହେଁ କି ? ନିଜର ଅସାମର୍ଥ୍ୟ ପ୍ରକାଶେ କୌଣସି ବିଷୟ-ଭୋଗରୁ ବଞ୍ଚିତ ରହିଲେ ମନୁଷ୍ୟକୁ କେହି ବଡ଼ ବୋଲି କହିବେ ନାହିଁ ।

ଭୋଗ କର୍ମର ଅନ୍ତରାୟ ନୁହେଁ । ଲିପ୍‌ସାରୁ କର୍ମ-ଜଗତର ଉତ୍ପତ୍ତି । କର୍ମଶ୍ରେଣିର ଜଟିଳତାରେ ଆସକ୍ତି ସୂକ୍ଷ୍ମ ଶିରାପ୍ରଶିରା ରୂପେ ବିଦ୍ୟମାନ ଥାଏ । ଭୋଗର ଆସ୍ୱାଦନ ହୃଦୟକୁ ଅଧିକାର କରୁ ନ ଥିଲେ ଜଗତ ଅନ୍ୟ ଆକାର ଧାରଣ କରିଥାନ୍ତା । ବିଜ୍ଞାନ-ବିଭବରେ ସୌଧ-କିରୀଟିନୀ ନଗରୀ ବିଦ୍ୟୁଦାଲୋକରେ ଯେ ଅପୂର୍ବ ଶ୍ରୀ ଧାରଣ କରେ, ବିପଞ୍ଚୀର ସୁମଧୁର ସ୍ୱରରେ ସଙ୍ଗୀତର ଯେ ଲହରୀ ଖେଳିଯାଏ, ଲଳନାର ଲଳିତ କଣ୍ଠଧ୍ୱନିରେ ହୃଦୟରେ ଯେ ନିଭୃତ ଭାବନା ଫୁଟିଉଠେ, ସୌନ୍ଦର୍ଯ୍ୟ-ପୂଜାରେ ଯେ ଅମର କଳାର ଉତ୍ପତ୍ତି ହୁଏ, ସେ ସବୁ ଭୋଗର ନିଦର୍ଶନ ନୁହେଁ କି ? ମନୁଷ୍ୟ ଜାତି ତାର ଶୈଶବରୁ ସ୍ୱର୍ଗର କଳ୍ପନା କରି ଆସିଅଛି । କେବଳ କଳ୍ପନା ନୁହେଁ, ପୃଥିବୀର ପ୍ରାୟ ଯାବତୀୟ ଧର୍ମଗ୍ରନ୍ଥରେ ଏହି ସ୍ୱର୍ଗପ୍ରାପ୍ତିର ପଥ ଉଲ୍ଲିଖିତ ଓ ପ୍ରଶଂସିତ ହୋଇଅଛି । ଭାରତୀୟର ସର୍ବଶ୍ରେଷ୍ଠ ଧର୍ମଗ୍ରନ୍ଥରେ ଯୁଦ୍ଧ-ପ୍ରେରଣା ଜନ୍ମାଇବା ପାଇଁ ସ୍ୱର୍ଗର ପ୍ରଲୋଭନ ବର୍ଣ୍ଣିତ ହୋଇଅଛି । ଆଜି ୟୁରୋପରେ ସଂଗ୍ରାମର ଯେ ଦୁନ୍ଦୁଭି ସମସ୍ତ ସମୟରେ ବାଜି ଉଠୁଛି, ତାକୁ ଶୁଣି କାହିଁକି ରାଜନୀତିଜ୍ଞମାନେ ଆତଙ୍କିତ ହେବେ ? ପ୍ରାଚୀନ ଭାରତର ରଣ-ନୈପୁଣ୍ୟ ଅତିମାତ୍ରାରେ ଧର୍ମାଶ୍ରୟୀ ଥିଲା; କିନ୍ତୁ ୟୁରୋପ ସେ ପଥରେ ଚାଳିତ ନୁହେଁ । ୟୁରୋପର ଭିନ୍ନ ଭିନ୍ନ ଦେଶର ରାଜନୀତିଜ୍ଞମାନଙ୍କର ମନୋମାଳିନ୍ୟ ଘଟିଲେ ଜାତୀୟ ସ୍ୱାର୍ଥକୁ ଉପଲକ୍ଷ କରି ସମର ରଚନା କରିବା ସେମାନଙ୍କର ଗୋଟାଏ ବିଶେଷତ୍ୱ । ସମର ଧ୍ୱଂସର ଗୋଟାଏ କ୍ରିୟା । ତାକୁ ପୁଣି ଭୋଗ ସହିତ ସମ୍ପୃକ୍ତ କରାଯାଇପାରେ ? ନର-ଶୋଣିତରେ ବାସନାର ତୃପ୍ତି ଶୁଣିବାକୁ ଆଶ୍ଚର୍ଯ୍ୟବୋଧ ହୋଇପାରେ; କିନ୍ତୁ ମନୁଷ୍ୟର ଜୀବନ ସମୟବିଶେଷରେ ଏପରି ଭାବରେ ଗତି କରେ ଯେ ଧ୍ୱଂସ ସାଧନ କଲେ ତାର ଶାନ୍ତି ଆସେ ନାହିଁ । ଆବର୍ଜନା ପରିଷ୍କାର କରି ଗୃହର ସୌଷ୍ଠବ ରକ୍ଷା କରାଯାଏ, ସେହିପରି ମନୁଷ୍ୟ ଜାତିର ଉଦ୍‌ବୋଧନ ଓ ଶକ୍ତି ପରିଚୟ ପାଇ ସମରକୁ ଆହ୍ୱାନ କରାଯାଏ । ସମରବିଜୟୀ ରକ୍ତନଦୀରେ ସନ୍ତରଣ କରି ଯେ ଆନନ୍ଦ ପାଏ, ତାହା ଆସୁରିକ ବୋଧ ହୋଇପାରେ; କିନ୍ତୁ ପ୍ରକାରଭେଦରେ ଏହା ଗୋଟାଏ ଭୋଗ । ଏହି ଭୋଗ ଚରିତାର୍ଥ କରିବା ପାଇଁ କୋଟି କୋଟି ନର-ନାରୀର ରକ୍ତପାତ ହୋଇଅଛି । ପୁଣି ଯେ ନ ହେବ, ଏହା କେହି କହିପାରିବେ ନାହିଁ ।

ଶିକ୍ଷା ଓ ସଂଯମ ଭୋଗର ସହାୟତା କରନ୍ତି । ଉଚ୍ଛୃଙ୍ଖଳତାରେ ଜୀବନର ଗତି ଅତିବାହିତ ହେଲେ ଭୋଗ ପରିବର୍ତ୍ତରେ ଲୋଲୁପତା ହୃଦୟକୁ ଅଧିକାର କରେ । ଲମ୍ପଟ ଓ ମଦ୍ୟପାୟୀ ବ୍ୟକ୍ତିମାନଙ୍କୁ ଦେଖିଲେ ଏହାର ଯାଥାର୍ଥ୍ୟ ଜଣାଯାଏ । ମନୁଷ୍ୟ ଇନ୍ଦ୍ରିୟ ଚରିତାର୍ଥ କରେ; କିନ୍ତୁ ବିଚାର ଜ୍ଞାନ ଥିବାରୁ ପଶୁପରି ଆଚରଣ କରିବାକୁ କୁଣ୍ଠିତ ହୁଏ । ଅନେକ ଲୋକ ଅଛନ୍ତି, ଯେଉଁମାନଙ୍କର ପାଶବିକ କାର୍ଯ୍ୟରେ ଜଗତ୍ କଳୁଷିତ ହେଲେ ସୁଦ୍ଧା ସେମାନେ ସେଥିପ୍ରତି ଦୃକ୍‌ପାତ କରନ୍ତି ନାହିଁ । ଶ୍ୱାନଶୃଗାଳ ପରି ସେମାନେ ପୂତିଗନ୍ଧମୟ ଆବର୍ଜନାରେ ନିଜତ୍ୱ ହଜାଇ ଦିଅନ୍ତି । ସର୍ବଦା ଗୋଟାଏ ବୁଭୁକ୍ଷୁ ଭାବରେ ହୃଦୟ ଆଲୋଡ଼ିତ ହେଲେ ଭୋଗ ଅନୁଭବ କରାଯାଏ ନାହିଁ । ସମଷ୍ଟିଗତ ଭାବରେ କୌଣସି ଜାତୀୟ ଜୀବନକୁ ଲକ୍ଷ୍ୟ କଲେ ଭୋଗର ଯେ ନିଦର୍ଶନ ମିଳେ, ସେଥିରେ ଗୋଟାଏ ଜାତି ଅନ୍ୟ ଜାତିଠାରୁ ଉଚ୍ଚ କିମ୍ବା ନୀଚ ବିବେଚିତ ହୋଇଥାଏ । ଆଧୁନିକ ସଭ୍ୟ ଜଗତ୍ ଦୃଷ୍ଟିରେ ଐଶ୍ୱର୍ଯ୍ୟହୀନତା ଅସଭ୍ୟତାର ନାମାନ୍ତର ମାତ୍ର । ଶିକ୍ଷା ପ୍ରଭାବରେ ଯେ ଜାତି ଯେତେ ସଂଯତ ହୋଇଅଛି ଓ ଯାହାର ଲୋଲୁପତା ନିୟନ୍ତ୍ରିତ ହୋଇ ରହିଛି, ତାକୁ ସେତିକି ସଭ୍ୟ ବୋଲି କୁହାଯାଉଛି । ପାଶ୍ଚାତ୍ୟ

ଜାତିମାନେ ଯେ ଜଗତରେ ଭୋଗାନୁସରଣ କରୁଛନ୍ତି ଓ ସେମାନଙ୍କର ଶିକ୍ଷା ଯେ ପ୍ରଣାଳୀରେ ବର୍ତ୍ତମାନ ଚାଲିଛି, ସେଥିରେ ଆଦିମ ଜାତିମାନଙ୍କ ସରଳତାର ସ୍ଥାନ ଆଉଟିଁ ନାହିଁ କହିଲେ ଚଳେ । ନାନା ଅଭାବ ସୃଷ୍ଟି କରି ସେମାନେ ଜୀବନର ଜଟିଳତା ଅଧିକ ପରିମାଣରେ ବଢ଼ାଇ ଦେଉଛନ୍ତି । ଶିକ୍ଷିତମାନେ ଭାରତୀୟ ୟୁରୋପର ପନ୍ଥାନୁସରଣ କରି ତାର ପୂର୍ବପୁରୁଷର ଆଦର୍ଶକୁ ହେୟ ମନେ କରୁଛନ୍ତି । ପ୍ରାଚୀନ ଭାରତର ଆଦର୍ଶ ଯୁଗୋଚିତ ପ୍ରଭାବରେ ଅନ୍ୟ ଆକାର ଧାରଣା କରିପାରେ; କିନ୍ତୁ ତାକୁ ସମ୍ପୂର୍ଣ୍ଣ ଭାବରେ ତ୍ୟାଗ କରିବା ଦ୍ୱାରା ମୌଳିକତା ରକ୍ଷା ହୋଇ ପାରୁ ନାହିଁ । କ୍ଷେତ୍ରର ବିଶେଷତ୍ୱକୁ ଲକ୍ଷ୍ୟ ନ ଦେଇ ବୀଜ ବପନ କଲେ ସୁଫଳ ପ୍ରସବ କରେ ନାହିଁ । ପାଶ୍ଚାତ୍ୟ ଐଶ୍ୱର୍ଯ୍ୟମୋହରେ ଯେଉଁମାନେ ଭାରତରେ ସୁଖସ୍ୱପ୍ନ ଦେଖୁଛନ୍ତି, ସେମାନଙ୍କର ଠିକଏ ସାବଧାନ ହେବା ଉଚିତ । ଦେଶ ଓ ଅବସ୍ଥାବିଶେଷ ଭେଦରେ ଭୋଗର ଉଦ୍ଦେଶ୍ୟ ପରୀକ୍ଷା କରି ଗ୍ରହଣ କରିବା ସବୁଠାରୁ ସୁବିଧାଜନକ ।

ଉନ୍ନତ ଭୋଗ ତ୍ୟାଗ ମଧ୍ୟରେ ସ୍ୱତନ୍ତ୍ରତା ଖୁବ୍ କମ୍ ପରିମାଣରେ ଥାଏ । ହୃଦୟରେ ଆନନ୍ଦ ଜନ୍ମାଇବା ପାଇଁ ମନୁଷ୍ୟ ସର୍ବଦା ଚେଷ୍ଟିତ ଥାଏ । ଏହି ଆନନ୍ଦ ପାଇବା ଉଭୟ ତ୍ୟାଗ ଓ ଭୋଗର ଚରମ ଲକ୍ଷ୍ୟ । ଏହାରି ଉଦ୍ଦେଶ୍ୟରେ ମନୁଷ୍ୟ ଯାବତୀୟ କାର୍ଯ୍ୟ ସମ୍ପାଦନ କରେ । ପ୍ରଣୟର ପବିତ୍ର ଆକର୍ଷଣରେ ଜୀବନର ଯେ ସରସତା ଫୁଟି ଉଠେ ଓ ଯାହାକୁ ପାଇବା ପାଇଁ ଉଭୟ ପ୍ରଣୟୀ ଓ ପ୍ରଣୟିନୀ ସେମାନଙ୍କ ଜୀବନକୁ ସୁଦ୍ଧା ଅକାତରରେ ତ୍ୟାଗ କରି ପାରନ୍ତି, ତାହା ପ୍ରକାରାନ୍ତରରେ ଆଦର୍ଶ ଭୋଗ ନୁହେଁ କି ? ଏହି ଆଦର୍ଶ ଭୋଗ ପାଇବା ପାଇଁ ସାବିତ୍ରୀ ସମସ୍ତ ପାର୍ଥିବ ସୁଖ ବିନିମୟରେ ସତ୍ୟବାନଙ୍କୁ ବରଣ କରିଥିଲେ । ଦରିଦ୍ର ଅରଣ୍ୟବାସୀ ସ୍ୱଳ୍ପାୟୁ ରାଜକୁମାର ସତ୍ୟବାନ ରମଣୀର ଅପାର୍ଥିବ ପ୍ରେମରେ ଜୀବନକୁ ଧନ୍ୟ କରି ପାରିଥିଲେ । ରାଜକୁମାର ଜୀବନର ସର୍ବସ୍ୱ ତ୍ୟାଗ କରି ଭୋଗର ଯେ ନିଦର୍ଶନ ଦେଖାଇଲେ, ତାହା ଭାରତ ଛଡ଼ା ଅନ୍ୟତ୍ର ବିରଳ । କେହି କହିପାରନ୍ତି, ଏହି ବୃତ୍ତାନ୍ତ ଗୋଟାଏ ଆଖ୍ୟାୟିକା ମାତ୍ର । ଆଖ୍ୟାୟିକା ହେଲେ ସୁଦ୍ଧା ଏପରି ମହତ୍ତ୍ୱ ଭାବ ପୃଥିବୀର ଅନ୍ୟ କୌଣସି ଜାତିର ହୃଦୟକୁ ଅଧିକାର କରିପାରି ନାହିଁ । ଯାହାର ଭାବ ମହତ, ତାହାର କାର୍ଯ୍ୟପ୍ରଣାଳୀ ମଧ୍ୟ ତଦ୍ରୂପ ହୋଇଥାଏ । ସୀତାଦେବୀ ବନବାସିନୀ ହେଲେ । ଅଯୋଧ୍ୟାର ପ୍ରଥିତଯଶା ନରପତି ପ୍ରଜା-ପାଳନ ସକାଶେ ନିଜ ହୃଦୟର ଆରାଧ୍ୟା ଦେବୀଙ୍କୁ ତ୍ୟାଗ କଲେ; କିନ୍ତୁ ସେମାନଙ୍କ ବିଚ୍ଛେଦରେ ପ୍ରଣୟର ଯେ ଅମରତ୍ୱ ପ୍ରମାଣିତ ହେଲା, ତାହା ତ୍ୟାଗ ବ୍ୟତୀତ ସମ୍ଭବପର ହୋଇ ନ ଥାନ୍ତା । କର୍ତ୍ତବ୍ୟ ଅନୁରୋଧରେ ରାଜୈଶ୍ୱର୍ଯ୍ୟକୁ ତ୍ୟାଗ କରି ମନରେ ଯେ ବିମଳ ଆନନ୍ଦ ଭୋଗ କରାଯାଏ, ତାହା ଭୋଗ ଓ ତ୍ୟାଗର ସମନ୍ୱୟରେ ସଂଗଠିତ ହୋଇଥାଏ । ୟୁରୋପର ଆଦର୍ଶ ଭାରତ ସଙ୍ଗେ ସମାନ ନ ହେଲେ ସୁଦ୍ଧା ୟୁରୋପବାସୀ ଯେ ତ୍ୟାଗୀ ନୁହନ୍ତି, ଏପରି କହିବା ଦ୍ୱାରା ଆମ୍ଭମାନଙ୍କ ବିଚାର ପକ୍ଷପାତ ଦୋଷରେ ଦୂଷିତ ହୋଇପାରେ । ଗତ ପୃଥିବୀ ଯୁଦ୍ଧରେ ପାଶ୍ଚାତ୍ୟ ଜଗତ୍ ତ୍ୟାଗର ଗୋଟାଏ ଉତ୍କୃଷ୍ଟ ନିଦର୍ଶନ ଦେଖାଇ ଦେଇଛନ୍ତି । ଲକ୍ଷ ଲକ୍ଷ ଲୋକ ସ୍ୱଦେଶର ଗୌରବ ରକ୍ଷା ଲାଗି ପ୍ରାଣ ଦେଇଛନ୍ତି । କର୍ତ୍ତବ୍ୟାନୁରୋଧରେ ୟୁରୋପବାସୀ ଯାହା କରିବାକୁ କ୍ଷମ ହୁଏ, ତାହା ବର୍ତ୍ତମାନ ଭାରତବାସୀର କଳ୍ପନାର ଅତୀତ । ୟୁରୋପରେ ଭୋଗ ଓ ତ୍ୟାଗ ଉଭୟ ଅଛି । ଭାରତରେ ଏହା ବିରଳ କହିଲେ ଚଳେ ।

ଜଗତ୍ ଗୋଟାଏ ବନ୍ଦିଶାଳା ନୁହେଁ । ବିଶ୍ୱ ପ୍ରକୃତି ବିଶ୍ୱମୁଖରେ ଯେ ସୌନ୍ଦର୍ଯ୍ୟ ପ୍ରକଟିତ କରେ, ତାହା ଜୀବର ଆନନ୍ଦପଥ ଉଦ୍‌ଘାଟିତ କରେ । ଆନନ୍ଦ ପାଇବାର ପ୍ରକୃତ ଉପାୟ ନିର୍ଦ୍ଧାରଣ କରି ନ ପାରି ଜୀବ କଷ୍ଟଭାଗୀ ହୁଏ । ରୋଗ, ଶୋକ ପ୍ରଭୃତି ମନୁଷ୍ୟକୁ ତାର ଶରୀର-ସୁଖରୁ ବଞ୍ଚିତ କରାନ୍ତି । ହୃଦୟର ଆବରଣକୁ ବଡ଼ କରି ଦେଖିଲେ ଓ ସେହି ଦିଗରେ ସୁଖ ପାଇବା ପାଇଁ ଅଗ୍ରସର ହେଲେ ଅନ୍ତରର ଭାବ ବିକଶିତ ହୋଇପାରେ ନାହିଁ । ତ୍ୟାଗୀ ଏହି ଆବରଣକୁ ଭେଦ କରି ପ୍ରକୃତ ଆନନ୍ଦର ସନ୍ଧାନ ନିଏ । ତ୍ୟାଗ ଯେ ସମ୍ପଦ ଆହରଣ କରେ, ଭୋଗ ତାକୁ ପୂର୍ବରୁ ରକ୍ଷା କରିଥାଏ । ଜୀବନର ବିଫଳତା ପ୍ରମାଣ କରି ନୈରାଶ୍ୟ ଅବଲମ୍ବନ କଲେ ଉଭୟ ଭୋଗ ଓ ତ୍ୟାଗ ମନୁଷ୍ୟଠାରୁ ଦୂରରେ ରହିଯାନ୍ତି । ଏକଦେଶ-ଦର୍ଶୀ ଲୋକ ସାଧାରଣତଃ ଶରୀରର କଷ୍ଟବିଧାନ କରି ତ୍ୟାଗାନୁସରଣ କରନ୍ତି । ସଂସାରର ଯାବତୀୟ ଐଶ୍ୱର୍ଯ୍ୟକୁ ଭୟବିହ୍ୱଳ ଚିତ୍ତରେ ଗ୍ରହଣ କରିବା ସେମାନଙ୍କର ସ୍ୱଭାବ ହୋଇପଡ଼େ । ମହାପୁରୁଷମାନେ ବିଷୟକୁ ବିଷସ୍ୱରୂପ ଦେଖିଥାନ୍ତି ବୋଲି ସେମାନଙ୍କର ଗୋଟାଏ ଧାରଣା ଥାଏ । ଅବଶ୍ୟ ନିକୃଷ୍ଟ ଅଧିକାରୀ ଭୋଗୀ ମନରେ ଏପରି ଜ୍ଞାନ ହେବାଦ୍ୱାରା ସୁଫଳ ଜନ୍ମିପାରେ; କାରଣ ସେମାନେ ଅନ୍ତରଟାକୁ ବାଦ୍ ଦେଇ କେବଳ ଆବରଣଟାକୁ ଏକମାତ୍ର ଅବଲମ୍ବନ କରିଥାନ୍ତି । ଉତ୍କୃଷ୍ଟ

ଭୋଗରେ ବିଷୟପ୍ରତି ଆସକ୍ତି ଜନ୍ମେ ନାହିଁ । ବିଷୟର ଅସାରତା ଉପଲବ୍ଧି କରିବା ଉତ୍ତମ ଭୋଗୀର ଲକ୍ଷଣ । ରାଜର୍ଷି ଜନକ ରାଜୈଶ୍ୱର୍ଯ୍ୟରେ ଆବଦ୍ଧ ରହି ସୁଦ୍ଧା ହୃଦୟରେ ଯେ ଆନନ୍ଦ ଅନୁଭବ କରିଥିଲେ, ତାହା ତାଙ୍କର ବିଷୟ-ଲିପ୍ସାର ପରିଚୟ ଦିଏ ନାହିଁ । ମନର ଉନ୍ନତାବସ୍ଥା ସହିତ ଭୋଗ ଓ ତ୍ୟାଗର ସମ୍ବନ୍ଧ ସମାନ ଭାବରେ ଥାଏ । ବିଷୟ-ମୋହ ମନକୁ ଅଧିକାର କଲେ କେବଳ ଲାଳସାର ମାତ୍ରା ବଢ଼ିଯାଏ; କିନ୍ତୁ ସେଥିରେ ଭୋଗର ତୃପ୍ତି ଆସେ ନାହିଁ । ଅଗ୍ନିରେ ଘୃତାହୁତି କଲେ ଯେପରି ଅଗ୍ନିଶିଖା ପ୍ରଜ୍ୱଳିତ ହୋଇଉଠେ, ସେହିପରି ଲାଳସାର ଜ୍ୱାଲତା ବିଷୟ-ସଂଯୋଗରେ ଦିନକୁ ଦିନ ବଢ଼ିଯାଇ ହୃଦୟକୁ ଗୋଟାଏ କ୍ଷିପ୍ତାବସ୍ଥାର ଅଧୀନ କରାଏ । ହୃଦୟର ଚଞ୍ଚଳତାରେ ଭୋଗର ସ୍ଥାନ ଲାଳସା ଅଧିକାର କରେ । ସାଂସାରିକ ବିଷୟମାନଙ୍କର ଶ୍ରୀବୃଦ୍ଧି ସାଧନ କରିବା ଭୋଗୀର ଲକ୍ଷ୍ୟ ହୋଇପାରେ; କିନ୍ତୁ ଏହା ବୋଲି ବିଷୟ-ତୃଷ୍ଣାରେ ନିଜତ୍ୱ ହଜାଇଦେଲେ ପ୍ରକୃତ ଆନନ୍ଦ ମିଳେ ନାହିଁ ।

ଭୋଗ ସାଧନାସାପେକ୍ଷ । ତ୍ୟାଗରେ ତାର ମୁକ୍ତି । କାମିନୀ ଓ କାଞ୍ଚନ ମନୁଷ୍ୟର ଦୁଇଟି ପ୍ରଧାନ ଆକର୍ଷଣ । କାଞ୍ଚନ ପାଇଁ ମନୁଷ୍ୟ ଅକାତରରେ ଜୀବନକୁ ବିପତ୍ତିସଙ୍କୁଳ କରିଦିଏ—ମୃତ୍ୟୁକୁ ସୁଦ୍ଧା ଉପେକ୍ଷା କରେ । ଜଗତରେ ଅନ୍ୟାୟ ଓ ଅତ୍ୟାଚାର ସକାଶେ କାଞ୍ଚନକୁ ବେଶୀ ଭାଗରେ ଦାୟୀ କରାଯାଏ । ପ୍ରବଳର ଦୁର୍ବଳ ଉପରେ ଅତ୍ୟାଚାର, ମିଥ୍ୟା ଓ ପ୍ରବଞ୍ଚନାରେ ଜଗତର ଶାନ୍ତି ହରଣ କରିବା ପାଇଁ କାଞ୍ଚନ ମନୁଷ୍ୟକୁ ଗୋଟାଏ ଉତ୍ତେଜନା ଦେଇଥାଏ । ଏହାଛଡ଼ା ସଦୁପାୟରେ ମନୁଷ୍ୟ ଯେତେ ଧନ ସଂଗ୍ରହ କରେ, ସେଥିରେ ତାକୁ ବହୁତ ଶ୍ରମସ୍ୱୀକାର କରିବାକୁ ପଡ଼ିଥାଏ । ଅନନ୍ତ ଜଳଧି ବକ୍ଷରେ, ଶ୍ୱାପଦ-ସଙ୍କୁଳ ନିବିଡ଼ ଅରଣ୍ୟରେ ଓ ଦୁରୁହ ଭୂଧରକନ୍ଦରରେ ନିଃଶଙ୍କଚିତ୍ତରେ ଭ୍ରମଣ କରିବା ପାଇଁ ଯେ ପ୍ରେରଣା ଆସେ ଓ ପୃଥିବୀରେ ଆଜି ପାଶ୍ଚାତ୍ୟ ଜାତିମାନେ ଯେ ଐଶ୍ୱର୍ଯ୍ୟରେ ମୁଗ୍ଧ ହୋଇ ସ୍ୱାର୍ଥପରତାର କ୍ରୂର ନିଦର୍ଶନ ଦେଖାଉଅଛନ୍ତି, ସେ ସବୁ ମୂଳରେ କାଞ୍ଚନର ଆସକ୍ତି ପୂର୍ଣ୍ଣମାତ୍ରାରେ ରହିଛି । ଧନଭୋଗ ପାଇଁ ସମସ୍ତ ସଭ୍ୟ ଜଗତ ବର୍ତ୍ତମାନ ଯେପରି ଚଞ୍ଚଳ ହୋଇ ଉଠିଲାଣି, ସେଥିରେ ଜାତୀୟ ସ୍ୱାର୍ଥ ଯେନ ସଂଘର୍ଷ ହେବା ସ୍ୱାଭାବିକ । ଏହି ସଂଘର୍ଷ ଫଳରେ ଜଗତରେ କେତେ ଅଶାନ୍ତି ଘଟିଯାଇଛି ଓ ପୁଣି ଯେ ଏହା କି ଆକାର ଧାରଣ କରିବ, ତାହାର କିଛି ସ୍ଥିରତା ନାହିଁ । ଧନଲାଭରେ ଐଶ୍ୱର୍ଯ୍ୟର ପୂର୍ଣ୍ଣତା ପାଇଁ ସଭ୍ୟ ମାନବ ଆଜି ତାର ସମସ୍ତ ସାଧନାକୁ ଜଳ, ସ୍ଥଳ ଓ ଆକାଶରେ ପ୍ରତିଫଳିତ କରିଦେଇଛି । ଭୋଗର ଆଉ ଗୋଟିଏ ବିଶିଷ୍ଟ ଉପାଦାନ—କାମିନୀ । କାମିନୀର ଆକର୍ଷଣରେ ଯେତେ ଅଘଟନ ଘଟନା ଘଟିଯାଇଛି, ତାହା ଇତିହାସ ପୃଷ୍ଠାରେ ସଜୀବ ହୋଇ-ରହିଛି । ରମଣୀର ସୌନ୍ଦର୍ଯ୍ୟ ନିକଟରେ ପୃଥିବୀର ସଭ୍ୟତମ ଜାତିର ଆତ୍ମବିସ୍ମୃତି ଆସିଛି । ବୀରର ଦର୍ପ ଓ ଜ୍ଞାନୀର ଜ୍ଞାନ କାମିନୀର କଟାକ୍ଷରେ ଅସଂଖ୍ୟ ଥର ନିସ୍ତେଜ ହୋଇଯାଇଛି । ଚିତୋରର ଜହରରେ ରମଣୀ ଦେଖାଇ ଯାଇଛି—ପୁରୁଷ ପ୍ରେମର ପ୍ରତିଦାନ, ଜଗଦ୍ୱିଖ୍ୟାତ ତାଜମହଲରେ ରହିଯାଇଛି—ରମଣୀ ଭୋଗର ଗୋଟାଏ ଅଦମ୍ୟ ଉଚ୍ଛ୍ୱାସର ସ୍ମୃତି । ପୃଥିବୀର କେତେ ଧନକୁବେର ଲଳନାର ଲଳିତ ଚରଣ ତଳେ ନିଜତ୍ୱ ହଜାଇ ଦେଇଅଛନ୍ତି । ରମଣୀର କଥାପଦକ ପାଇଁ ପୁରୁଷ ତାର ଧନଭଣ୍ଡାରକୁ ଫୁତ୍କାରରେ ଉଡ଼ାଇ ଦେଇଛି । ଏ ସବୁ ଦେଖି ଭୋଗକୁ ସହଜଲଭ୍ୟ ମନେ କରିବା ଉଚିତ ନୁହେଁ । ଭୋଗର ଶେଷ ମାତ୍ରା ଗ୍ରହଣ କରି ମନୁଷ୍ୟ ଯେତେବେଳେ ତା ହୃଦୟକୁ ଉନ୍ମୁକ୍ତ କରିଦିଏ, ତ୍ୟାଗ ଆସି ସେତେବେଳେ ସେହି ଉନ୍ମୁକ୍ତ କ୍ଷେତ୍ରକୁ ଅଧିକାର କରେ । ଭୋଗ ଓ ତ୍ୟାଗର ମିଳନରେ ମନୁଷ୍ୟ ଦେବତ୍ୱ ଲାଭ କରେ ।

# ମହତର ଚିନ୍ତାଧାରା

ଭାବ କର୍ମର ପ୍ରସୂତି । କର୍ମର ଜଟିଳତା କେବଳ ଜଡ଼-ଜଗତରେ ଆବଦ୍ଧ । ମନୁଷ୍ୟର ଜନ୍ମ ଓ ସ୍ଥିତି ଯେନ ସାଂସାରିକ ଯାବତୀୟ କର୍ମର ଉତ୍ପତ୍ତି । ମନୁଷ୍ୟ ଯଦି ଚିନ୍ତାଶୂନ୍ୟ ପ୍ରାଣୀ ହୋଇଥାନ୍ତା, ତାହା ହେଲେ ବିଶ୍ୱର ଅସୀମତାରେ କର୍ମର ଭାବ ସଙ୍ଗେ ସମ୍ପର୍କ ଦେଖାଇବା ପାଇଁ କୌଣସି ସମ୍ଭାବନା ରହନ୍ତା ନାହିଁ । ମନୁଷ୍ୟର କର୍ମପ୍ରଚେଷ୍ଟା ସବୁବେଳେ ନିର୍ଦ୍ଦିଷ୍ଟ ପନ୍ଥା ଅନୁସରଣ କରେ ନାହିଁ । ଯୁଗେ ଯୁଗେ ମାନବର ଭିନ୍ନ ଭିନ୍ନ ଚିନ୍ତାଧାରା ନୂତନ କର୍ମପ୍ରଣାଳୀମାନ ସୃଷ୍ଟି କରି ଆସିଲାଣି । ଏହି ଭିନ୍ନତା ମଧ୍ୟରେ ଗୋଟିଏ ପ୍ରଚ୍ଛନ୍ନ ସାମଞ୍ଜସ୍ୟସ୍ଥାପନ ସୌନ୍ଦର୍ଯ୍ୟାନୁଭୂତି ମନୁଷ୍ୟକୁ ଉଦ୍‌ବୁଦ୍ଧ କରି ରଖିଛି ବୋଲି ଅନୁମାନ କରାଯାଏ । ମନୁଷ୍ୟର ଅନ୍ତର୍ନିହିତ ଆବେଗ ରହିଛି । ଏହି ଆବେଗ ତାକୁ ସୁଖର ସନ୍ଧାନ ନେବାପାଇଁ ପ୍ରେରଣା ଦିଏ । ଆନନ୍ଦ ପାଇବା ପାଇଁ ଚିତ୍ତବୃତ୍ତିର ଅଶେଷ ପରିଚାଳନାରେ କିଛି ବିସ୍ମୟ ନାହିଁ; କାରଣ ଅନ୍ଧକାରରେ ଲୁକ୍‌କାୟିତ ମହାର୍ଘ୍ୟ ବସ୍ତୁକୁ କେହି କୌଣସି ନିର୍ଦ୍ଦିଷ୍ଟ ଦିଗରୁ ଅନୁସନ୍ଧାନ କରେ ନାହିଁ । ଅନ୍ୱେଷଣର ବ୍ୟଗ୍ରତା ମାର୍ଗର ପାର୍ଥକ୍ୟ ସୃଷ୍ଟି କରେ । ସୂକ୍ଷ୍ମ ଦୂରଦୃଷ୍ଟି ବଳରେ ଯେଉଁମାନେ ଏହି ମାର୍ଗରେ ଗୋଟିଏ ବିଶିଷ୍ଟତା ରଖିଯାନ୍ତି, ସେହିମାନେ ଜଗତରେ ପୂଜ୍ୟ ଓ ସେହି-ମାନଙ୍କର ଚିନ୍ତାଧାରା କର୍ମଜଗତକୁ ବହୁକାଳ ପାଇଁ ପ୍ରଭାବିତ କରେ । ସାଧାରଣ ଲୋକର ଧାରଣା ସଙ୍କୀର୍ଣ୍ଣ ରୀତିକୁ ଅନୁସରଣ କରେ; କିନ୍ତୁ ଅସାଧାରଣ ଭାବୁକ କୌଣସି ଏକ ପ୍ରଚଳିତ ଭାବଧାରାରେ ଆବଦ୍ଧ ହୋଇ ରହେ ନାହିଁ । ପୁରୁଷାନୁକ୍ରମେ ରାଜାମାନେ ଶାସନ-ଯନ୍ତ୍ର ନିୟନ୍ତ୍ରିତ କରନ୍ତି, ଏଥିରେ କିଛି ବିଶେଷତ୍ୱ ଲକ୍ଷିତ ହୁଏ ନାହିଁ । ଦେଶବିଶେଷର ରାଜା କୌଣସି ନିୟମ ପରିବର୍ତ୍ତିତ କଲେ ସମଗ୍ର ମାନବ-ସମାଜ ତାକୁ ଗ୍ରହଣ କରେ ନାହିଁ, କେବଳ ଗୋଟିଏ ଜାତି କିଛି ସମୟ ପାଇଁ ତାହା ପାଳନ କରେ । ଭାବୁକର ମତରେ ଏଥିର ବ୍ୟତିକ୍ରମ ଦେଖାଯାଏ । ସେ ଯେଉଁ ପ୍ରେରଣା ଓ କର୍ମର ସୂଚନା ଦିଅନ୍ତି, ତାହା ସମୂହ ମାନବ ଜାତିର କଲ୍ୟାଣ ସାଧନ କରେ । ତେଣୁ ଜ୍ଞାନୀଙ୍କର ସଙ୍କେତକୁ ମାନବଜାତି ଚିରଦିନ ଅପେକ୍ଷା କରି ରହେ ।

ଚିନ୍ତାର ଅନୁଶୀଳନରେ ଜ୍ଞାନର ବିକାଶ । କାର୍ଯ୍ୟ ଓ କାରଣ ସମ୍ବନ୍ଧକୁ ସାଧାରଣ ମାନବ ସହଜରେ ଦେଖିପାରେ ନାହିଁ । କେବଳ ବାହାରର ଗୋଟିଏ ବେଷ୍ଟନୀ ଉପରେ ତାର ଦୃଷ୍ଟି ନିବଦ୍ଧ ଥାଏ । ପ୍ରବଳ ଗଭୀର ଜଳସ୍ରୋତର ଉପରିଭାଗ ଯେପରି ଚଞ୍ଚଳ ଥାଏ ଓ ତଳଦେଶରେ ସ୍ରୋତର ପ୍ରଖରତା ଆଦୌ ଜଣାଯାଏ ନାହିଁ, ସେହିପରି ସଂସାରର ବାହ୍ୟ ଚିହ୍ନଗୁଡ଼ିକ ଯେଉଁ ଭିନ୍ନତା ପ୍ରତିପାଦନ କରନ୍ତି, ତାହା ସେମାନଙ୍କର ପ୍ରକୃତ ସ୍ୱରୂପ ନୁହେଁ । ବର୍ଣ୍ଣ ଚିହ୍ନଗୁଡ଼ିକର ଅନ୍ତରାଳରେ ଗୋଟିଏ ଧର୍ମର ସମତା ଆତ୍ମଗୋପନ କରିଥାଏ; ସେଥିଯୋଗୁଁ ଚିନ୍ତାଶୀଳ ମନୀଷୀମାନେ ବାହ୍ୟ ପାର୍ଥକ୍ୟ କିମ୍ବା ଚଞ୍ଚଳତାରେ ମନୋନିବେଶ କରନ୍ତି ନାହିଁ । କବି, ଦାର୍ଶନିକ ପ୍ରଭୃତିଙ୍କ ଦୃଷ୍ଟିରେ ଜାଗତିକ କୌଣସି ପଦାର୍ଥ ହେୟ ବିବେଚିତ ହୁଏ ନାହିଁ । ଭାରତର ପ୍ରାଚୀନ ଆର୍ଯ୍ୟମନୀଷୀମାନଙ୍କ ମଧ୍ୟରେ ଏହି ସମଦର୍ଶନ ଭାବ ପ୍ରବଳ ଥିଲା । ଯାବତୀୟ ଘଟନାସମ୍ପାତରେ ନିଜର ଭାବଧାରାକୁ ଅବିଚଳିତ ରଖିବା ସମସ୍ତଙ୍କ ପକ୍ଷରେ ସମ୍ଭବ ହୁଏ ନାହିଁ । ସତ୍ୟ ଓ ସୌନ୍ଦର୍ଯ୍ୟର ଅନ୍ୱେଷଣରେ ଯେଉଁମାନଙ୍କର ସମଗ୍ର ଭାବଧାରା ଉଚ୍ଛ୍ୱସିତ ହୁଏ, ସେହିମାନେ ଜଗତର ଅଗ୍ରଦୂତ ହୁଅନ୍ତି । ସେମାନଙ୍କ ପ୍ରଚାରିତ ମୈତ୍ରୀମନ୍ତ୍ର ମାନବ ସମାଜରେ ଶାନ୍ତି ସ୍ଥାପନ କରେ । ବୁଦ୍ଧ, ଚୈତନ୍ୟ, ନାନକ ପ୍ରଭୃତି ଏହି ମାର୍ଗର ପ୍ରଦର୍ଶକ । ଯୀଶୁଙ୍କର ଅମୃତ ବାଣୀ ଆଜି ପାଶ୍ଚାତ୍ୟ ଭୂଖଣ୍ଡରେ ଗୋଟିଏ ପ୍ରତିଧ୍ୱନି ପରି ରହିଛି । ଅଧିକାଂଶ ପାଶ୍ଚାତ୍ୟଜାତି ଯୀଶୁଙ୍କ ଧର୍ମରେ ଦୀକ୍ଷିତ ହେଲେ ମଧ୍ୟ ତାଙ୍କ ଧର୍ମର ପ୍ରକୃତ ମହତ୍ତ୍ୱ ହୃଦୟଙ୍ଗମ କଲା ପରି ଜଣାପଡ଼େ ନାହିଁ । ପାଶ୍ଚାତ୍ୟ ଜାତିମାନଙ୍କର କର୍ମ-ନିୟନ୍ତ୍ରଣରେ ଗୋଟିଏ ତୀବ୍ର ପ୍ରେରଣା ରହିଛି । ସେମାନଙ୍କର ଭାବଧାରା ଯେଉଁ ଦିଗରେ ଚାଳିତ ହେଲାଣି, ତାକୁ ଜଗତ କେତେ କାଳ ପାଇଁ ଗ୍ରହଣ କରିବ,

ସହଜରେ ବୁଝାଯାଇ ପାରିବ ନାହିଁ । ବସ୍ତୁବାଦର ମୋହ ବର୍ତ୍ତମାନ ଯୁଗକୁ ବିଶେଷ ଭାବରେ ପ୍ରଭାବିତ କରିପକାଇଛି ବୋଲି ପାଶ୍ଚାତ୍ୟର ଭାବ ପ୍ରାଚ୍ୟର କର୍ମମାର୍ଗରେ ସ୍ପଷ୍ଟ ଆକାରରେ ଦେଖା ଦେଲଣି; କିନ୍ତୁ ଏହାର ସ୍ଥାୟିତ୍ୱ ସମ୍ବନ୍ଧରେ ସନ୍ଦିହାନ ହେବାକୁ ପଡ଼ିବ । ଆଉ ଥରେ ଯଦି ପୃଥିବୀବ୍ୟାପୀ ଗୋଟାଏ ପ୍ରବଳ ସମର ହୋଇଯାନ୍ତା, ତାହା ହେଲେ ଜଗଦ୍‌ବାସୀ ବୁଝନ୍ତେ, ପାଶ୍ଚାତ୍ୟ ସଭ୍ୟତା କେଡ଼େ ଭିତ୍ତିହୀନ । କୁବେର ପରି ଧନସମ୍ପଦର ଅଧିକାରୀ ହେଲେ କିମ୍ବା ଦରିଦ୍ରର ରକ୍ତ ଶୋଷଣ କରି ବିଳାସବ୍ୟସନରେ ମଜ୍ଜି ରହିଲେ ମନୁଷ୍ୟତ୍ୱର ପରିଚୟ ମିଳେ ନାହିଁ । ଐଶ୍ୱର୍ଯ୍ୟ ଓ ପ୍ରଭୁତ୍ୱ ମଧ୍ୟରେ ତ୍ୟାଗର ନିଦର୍ଶନହିଁ ମାନବର ଧର୍ମ ।

ଜଗତ୍ ସଙ୍ଗେ ପ୍ରକୃତିର ଘନିଷ୍ଠ ସମ୍ପର୍କ । ମନୁଷ୍ୟ ଆତ୍ମନିର୍ଭରଶୀଳ ହୋଇପାରେ; କିନ୍ତୁ ଯଦି ସେ ପ୍ରାକୃତିକ ନିୟମକୁ ଅବହେଳା କରେ, ତାହା ହେଲେ ତାର ଜୀବଧାରାରେ ଆକସ୍ମିକ ବାଧା ଆସିବା ଅସମ୍ଭବ ନୁହେଁ । ମହତ୍ ଲୋକମାନଙ୍କର ଯାବତୀୟ କର୍ମ ଦୋଷଶୂନ୍ୟ ନୁହେଁ । ପ୍ରାକୃତିକ ନିୟମାନୁସାରେ ଗୁଣ ଓ ଦୋଷକୁ ସମ୍ପୂର୍ଣ୍ଣରୂପେ ପରସ୍ପରଠାରୁ ବାଦ୍ ଦିଆଯାଇ ପାରିବ ନାହିଁ । ପ୍ରଚଣ୍ଡ ଗ୍ରୀଷ୍ମ ପରେ ବର୍ଷା ଆସିବା ସ୍ୱାଭାବିକ । ମନୁଷ୍ୟ ଅନେକ ସମୟରେ ପାର୍ଥିବ ବିଷୟମାନଙ୍କର ଧ୍ୱଂସ ଦେଖି ହତାଶ ହୋଇପଡ଼େ; କିନ୍ତୁ ତାର ଗୋଟିଏ ଦିଗର କ୍ଷତି ଅପର ଦିଗର ଲାଭର ପରିମାଣକୁ ବଢ଼ାଇଦିଏ । ଧନସମ୍ପତ୍ତିର ପରିମାଣ ବୃଦ୍ଧିରେ ଜନସଂଖ୍ୟାର ବହୁଳତା ସାଧାରଣତଃ ଦୃଷ୍ଟ ହୋଇଥାଏ । ପ୍ରକୃତି ହସ୍ତରେ ସମତା ବିଧାନ କରିବାର କ୍ଷମତା ଅଛି । ଦୃପ୍ତ, ବଳବାନ, ଭାଗ୍ୟବାନ ଓ ଧନୀକୁ ପ୍ରକୃତିର ଏହି ନିୟମ ମାନି ଚାଲିବାକୁ ହେବ । ଆଜି ପାଶ୍ଚାତ୍ୟ ସଭ୍ୟତା ମନୁଷ୍ୟ ମନରୁ ଏହି ଭାବ ଅପସାରିତ କରିବାକୁ ବସିଛି; କିନ୍ତୁ ଯେତେବେଳେ ଭୀଷଣ ଭୂମିକମ୍ପରେ ସହସ୍ର ସହସ୍ର ନରନାରୀ କୀଟପତଙ୍ଗ ପରି ଧ୍ୱଂସମୁଖରେ ଇହଲୀଳା ସାଙ୍ଗ କରୁଛନ୍ତି, ସେତେବେଳେ କାହିଁକି ପାଶ୍ଚାତ୍ୟର ବିଜ୍ଞାନଗରିମା ଆସି ରକ୍ଷା କରୁ ନାହିଁ ? ମନୁଷ୍ୟ ନିଜ ଚେଷ୍ଟାରେ ବଡ଼ ହୋଇପାରେ; କିନ୍ତୁ ପ୍ରକୃତିର ନିୟମ ଲଙ୍ଘନ କରିବା ତା ପକ୍ଷରେ ବାତୁଳତା ମାତ୍ର । ମହତ୍ ଲୋକ ଚକ୍ଷୁରେ ଐହିକ ଗୌରବ ବଡ଼ ଦିଶେ ନାହିଁ; ତେଣୁ ଆଧୁନିକ ସଭ୍ୟତାଭିମାନୀ ମହତ୍ତ୍ୱର ଭାବକୁ ଆଦର କରୁ ନାହିଁ । ମହତ୍ ଲୋକ ଚରମ ମାର୍ଗରେ ବିଚରଣ କରି ଦେଖେ—ଜଗତ୍ ସଙ୍ଗେ ପ୍ରକୃତିର ଶେଷ ପରିଣତି । ପ୍ରକୃତି ମନୁଷ୍ୟକୁ ଯାହା ଦାନ କରେ, ତାକୁ ପୁଣି ଅନ୍ୟ ଆକାରରେ ଗ୍ରହଣ କରେ । କେବଳ ଗ୍ରହଣଲାଳସୀ ହେଲେ ମନୁଷ୍ୟତ୍ୱର ବିକାଶ ଘଟେ ନାହିଁ ।

ପ୍ରକୃତିର ସାହଚର୍ଯ୍ୟରେ ମାନବିକତାର ଉତ୍କର୍ଷ ସାଧିତ ହୁଏ । ମନୋବୃତ୍ତିର ଚାଳନାରେ ମନୁଷ୍ୟର ଅନ୍ତର୍ନିହିତ ଭାବରାଶି ମୁକ୍ତି ଲୋଡ଼େ, ଏହା ମନୁଷ୍ୟର ଶ୍ରେଷ୍ଠ ସାଧନା । ବୀରାଗ୍ରଣୀ ନେପୋଲିୟନ, ସିଜାର, ସିକନ୍ଦର ପ୍ରଭୃତିଙ୍କ ଅତିମାନୁଷୀ ସାଧନାରେ ଯେଉଁ ବିଶେଷତ୍ୱ ଥିଲା, ତାହା ସମ୍ପୂର୍ଣ୍ଣ ପ୍ରକୃତି-ଦତ୍ତ ବୋଲି ମନେ ହୁଏ । ନେପୋଲିଅନ୍ ମନୁଷ୍ୟର ଜୀବନକୁ ଗୋଟିଏ ଦୁର୍ଗ ସଙ୍ଗେ ତୁଳନା କରି ଦେଖିଛନ୍ତି । ତାଙ୍କ ମତରେ ଜୀବନ-ରକ୍ଷା ସକାଶେ କୌଣସି ନିର୍ଦ୍ଦିଷ୍ଟ ଉପାଦାନ ଉପରେ ନିର୍ଭର କରିବା ଉଚିତ ନୁହେଁ; କାରଣ ଜନ୍ମ ଓ ମୃତ୍ୟୁ ଗୋଟାଏ ପ୍ରାକୃତିକ କାର୍ଯ୍ୟ । ଜୀବନ ସଂରକ୍ଷଣ ସକାଶେ ଔଷଧାଦିର ବ୍ୟବସ୍ଥାକୁ ସେ ଅତି ତୁଚ୍ଛ ବୋଲି କହିଛନ୍ତି । ମୁକ୍ତ ବାୟୁ, ବିଶୁଦ୍ଧ ଜଳ ପ୍ରଭୃତିକୁ ଜୀବନଧାରଣର ପ୍ରଧାନ ଅବଲମ୍ବନ ସ୍ୱରୂପ ସେ ଗ୍ରହଣ କରିଛନ୍ତି । ମନୁଷ୍ୟର ଜୀବନକୁ ପ୍ରକୃତି ଯେପରି ଭାବରେ ଗଢ଼ିନିଏ, ତାହା ଅନ୍ୟ କୃତ୍ରିମ ଉପାୟ ଦ୍ୱାରା ସାଧିତ ହୋଇପାରେ ନାହିଁ । ବିଶେଷତଃ କବି, ଭାବୁକ ଓ ଯୁଗପ୍ରବର୍ତ୍ତକ ପୁରୁଷଶ୍ରେଷ୍ଠମାନଙ୍କ ଜୀବନୀ ପାରିପାର୍ଶ୍ୱିକ ପ୍ରାକୃତିକ କ୍ରିୟାମାନଙ୍କଦ୍ୱାରା ପ୍ରଭାବିତ ହୋଇଥାଏ । ଅନନ୍ତ ସମୁଦ୍ରର ସଲିଳ-ପରିଖା ଗ୍ରେଟ୍‌ବ୍ରିଟେନ୍‌ବାସୀଙ୍କୁ ସାହସୀ ବୀରଜାତି କରି ଗଢ଼ିଦେଇଛି । ବିଭିନ୍ନ ବୃକ୍ଷରାଜିମଣ୍ଡିତ, ନଦୀପର୍ବତଶୋଭିତ, ବିସ୍ତୀର୍ଣ୍ଣ ଶ୍ୟାମଳ କୃଷିକ୍ଷେତ୍ରପରିବ୍ୟାପ୍ତ ଭାରତର ଶାନ୍ତ ପ୍ରକୃତି ଭାରତୀୟ ପ୍ରାଣକୁ ଗୋଟାଏ ସ୍ୱତନ୍ତ୍ର ବେଷ୍ଟନୀରେ ଆବଦ୍ଧ କରି ରଖିଛି । ଭାରତର ଜଳବାୟୁରେ ଯେଉଁ ବିଶିଷ୍ଟ ଚିନ୍ତାଧାରାର ବିକାଶ ଘଟିଅଛି, ତାହା ପୃଥିବୀର ଅନ୍ୟ କୌଣସି ଦେଶରେ କ୍ୱଚିତ୍ ଦେଖାଯାଏ ।

ପ୍ରକୃତିକୁ ଅନୁସରଣ କରି ମହତ୍ତ୍ୱର ଚିନ୍ତାଧାରା ମାନବ ସମାଜରେ ଗୋଟିଏ ସତ୍ତ୍ୱର ଅନୁଭୂତି ଆଣେ । ଜଣକର ଭାବନା କାହିଁକି ଯୁଗ ଯୁଗ ପାଇଁ ବୈଚିତ୍ର୍ୟ ସୃଷ୍ଟି କରିଯାଏ ? ମନୁଷ୍ୟ କାହିଁକି ବ୍ୟକ୍ତିବିଶେଷଙ୍କ କଳ୍ପନାପ୍ରସୂତ ମାର୍ଗକୁ ଅନୁସରଣ କରେ ? ସମସ୍ତ ମାନବଜାତି କାହିଁକି ପ୍ରେମର ଅନାବିଳ କାହାଣୀ ଶ୍ରବଣ କରି ମୁଗ୍ଧ ହୁଅନ୍ତି ? ଚିରହୂରଣୀସ୍ଥ ପବନ

ରାମାୟଣ ଗ୍ରନ୍ଥରେ ଅମର-କବି କାହିଁକି ପ୍ରେମର ମନ୍ଦାକିନୀ ବୁହାଇ ଦେଲେ ? ଜନକ-ନନ୍ଦିନୀ ସୀତାଦେବୀଙ୍କର ବିରହ ବିଳାପରେ ବନଭୂମି ମୁଖରିତ ହୋଇଉଠିଲା ଓ ନୀରବ ପ୍ରକୃତି ଯେପରି ସହାନୁଭୂତି ଦେଖାଇଲା, ତାହା କବିର କଳ୍ପନା ହୋଇପାରେ; କିନ୍ତୁ କଳ୍ପନାର ସେହି ଚିତ୍ରଟି ମାନବ-ଅନ୍ତରରେ ଗୋଟାଏ କରୁଣ ପ୍ରତିଧ୍ୱନି ସୃଷ୍ଟି କରେ ନାହିଁ କି ?

କବି ସତ୍ୟ ଓ ସୌନ୍ଦର୍ଯ୍ୟର ଉପାସକ । ସତ୍ୟ ଓ ସୌନ୍ଦର୍ଯ୍ୟର ସମନ୍ୱୟରେ ସେ ଆନନ୍ଦର ଯେଉଁ ଲଳିତ ଛବିଟି ଦେଖନ୍ତି, ତାହା ମାନବମାନଙ୍କରେ ଚିରଦିନ ପାଇଁ ଗୋଟାଏ ଶ୍ରଦ୍ଧାପାତ୍ର କରିଯାଏ । ତାହା ହୋଇ ନ ଥିଲେ ଆଜି ପର୍ଯ୍ୟନ୍ତ ରାମାୟଣ, ମହାଭାରତ, ଇଲିୟାଡ଼ ପ୍ରଭୃତି ପୃଥିବୀବ୍ୟାପୀ ମହାକାବ୍ୟମାନଙ୍କର ଅସ୍ତିତ୍ୱ ନ ଥାନ୍ତା । ମନୁଷ୍ୟ ଜଡ଼ବାଦୀ ହୋଇପାରେ; କିନ୍ତୁ ତା ଅନ୍ତରର ଭାବଧାରାଟି ସହଜରେ ଶୁଷ୍କ ହୁଏ ନାହିଁ । ଅନେକ ସମୟରେ କେବଳ ଅନ୍ତରର ସ୍ନେହ-ପ୍ରବଣତା ଉନ୍ନତ-ଭାବ ପ୍ରକାଶରେ ସାହାଯ୍ୟ କରେ । ବହୁକାଳ ସାଧନା ଫଳରେ ମନୁଷ୍ୟର ଯେଉଁ ଅନୁଭୂତି ଆସେ ନାହିଁ, ସ୍ନେହସିକ୍ତ ହୃଦୟର ପ୍ରସନ୍ନତା ତାକୁ ମୁହୂର୍ତ୍ତିକେ ପ୍ରକାଶ କରିଦିଏ । ଜଗତରେ ହୃଦୟର ମୂଲ୍ୟ ବୁଦ୍ଧି ବଡ଼ କିମ୍ବା ସାନର ସ୍ଥାନ ନିରୂପଣ କରାଯାଉଥିଲେ ଆଜି ସାମାଜିକ ଚିତ୍ର ଅନ୍ୟ ଆକାର ଧାରଣ କରିଥାନ୍ତା । ସାଧାରଣ ମନୁଷ୍ୟର ସଂକୀର୍ଣ୍ଣ ଚିନ୍ତାମାନଙ୍କରେ ସମାଜର ଗତି ସରଳ ହୋଇପାରେ ନାହିଁ । ସ୍ୱାର୍ଥପର ଛିଦ୍ରାନ୍ୱେଷୀ ଲୋକମାନଙ୍କର ସଂଖ୍ୟାଧିକ୍ୟ ଏହି ବିପର୍ଯ୍ୟୟର ପ୍ରଧାନ କାରଣ । ଏ ସ୍ଥଳରେ ସ୍ୱତଃ ପ୍ରଶ୍ନ ଉଠିପାରେ—ମହତ୍ ନ ହୋଇ ଲୋକ ମହତ୍ତ୍ୱର ଭାବଧାରା କିପରି ଅନୁସରଣ କରିପାରେ ? ଅନନ୍ତ ଜଳଧିର ବକ୍ଷସ୍ଥଳର ବିଶାଳତା ଓ ଅନୁପମ ଗାମ୍ଭୀର୍ଯ୍ୟ ତୁଳନାରେ ପୋତାଶ୍ରୟୀ ନାବିକର ସତ୍ତା ଗୋଟାଏ ସାମାନ୍ୟ ରେଣୁଠାରୁ ହୀନ; କିନ୍ତୁ ମାନବଠାରେ ବିଶ୍ୱ-ଶକ୍ତିର ଯେଉଁ ସାମାନ୍ୟ ସତ୍ତା ଅଛି, ତାକୁ ଉଚ୍ଛେଦ କରିବା ପ୍ରକୃତିର ଅଭିପ୍ରାୟ ନୁହେଁ । ତେଣୁ ନାବିକ ଅନନ୍ତ ସମୁଦ୍ରରେ ତରଣୀ ବାହି ନେବାକୁ କ୍ଷମ ହୁଏ । ବିପତ୍-ସଙ୍କୁଳ ଗିରିସଙ୍କଟ କିମ୍ବା ଜଳର ପ୍ରଚଣ୍ଡ ଆବର୍ତ୍ତ ନିକଟରେ ମନୁଷ୍ୟ ନିଜକୁ ଅସହାୟ ମନେ କରିପାରେ; କିନ୍ତୁ ହୃଦୟର ପ୍ରେରଣା ଯେତେବେଳେ ଆଶା ଓ ଉନ୍ନତିର ଶିଖରକୁ ଆରୋହଣ କରୁଥାଏ, ସେତେବେଳେ ସେ ବିପଦର କାଳିମାକୁ ଭୟ କରେ ନାହିଁ । ଏପରି ବିପଦର ସମ୍ମୁଖୀନ ହେଲେ ମନୁଷ୍ୟତ୍ୱର ଯେଉଁ ବିକାଶ ଘଟେ, ତାକୁ ସାମାଜିକ କୁଟିଳତା ଘୋଡ଼ାଇ ରଖିପାରେ ନାହିଁ । ନାଗରିକ ରଣକ୍ଷେତ୍ରରେ କିମ୍ବା ଉତ୍ତାଳ ତରଙ୍ଗବେଷ୍ଟିତ ଶତ୍ରୁ-ସମାକୀର୍ଣ୍ଣ ପୋତବାହିନୀ ମଧ୍ୟରେ ସାଗରର ନୀଳାମ୍ବୁରାଶି ସଙ୍ଗେ ହୃଦୟର ଉଦାରତାକୁ ସମାନ ରଖି ବୀରଜାତି ଯେଉଁ କର୍ମ ସମ୍ପାଦନ କରେ, ତାହା ସମ୍ପୂର୍ଣ୍ଣ ଭାବର ଅନୁରୂପ । ସମସ୍ତ ସମୟରେ କୌଣସି ମନସ୍ୱୀ ପୁରୁଷସିଂହଙ୍କର ବିଶାଳ ଭାବ କର୍ମଜଗତରେ ଯେଉଁ ବିପ୍ଳବ ଆଣେ, ତାକୁ ଉପର୍ଯ୍ୟୁକ୍ତ ଉଦାହରଣ ଦୃଷ୍ଟିରେ ଆମ୍ଭେମାନେ ମହତ୍ ବୋଲି ଗ୍ରହଣ କରିପାରୁଁ । ପ୍ରତ୍ୟେକ ମନୁଷ୍ୟ ମହତ୍ ହୋଇ ନ ପାରନ୍ତି; କିନ୍ତୁ ମହତ୍ତର ଭାବ ଗ୍ରହଣ କରିବାପାଇଁ କୌଣସି ପ୍ରତିବନ୍ଧକ ନାହିଁ । ମନୁଷ୍ୟର ସ୍ୱାଧୀନ ମତ ଅଛି, ତାକୁ ନିଜର ଅଭିପ୍ରାୟ ଅନୁସାରେ ପ୍ରୟୋଗ କରାଯାଇପାରେ । ସେ ଯେ ପର୍ଯ୍ୟନ୍ତ ମହତ୍ ଆଡ଼କୁ ଦୃଷ୍ଟି ଦେଇ ନ ଥାଏ, ସେ ପର୍ଯ୍ୟନ୍ତ ତାର କର୍ମ ଓ ଭାବ ଗୋଟାଏ ନିର୍ଦ୍ଦିଷ୍ଟ ସୀମା ମଧ୍ୟରେ ଆବଦ୍ଧ ଥାଏ । ଏହି ସୀମାକୁ ଲଙ୍ଘନ କରିବାରେ ଗୋଟାଏ ବିସ୍ମୃତି ଆସେ । ବିସ୍ମୃତି ମାନସିକ ଗତି ଅନୁସାରେ ଭାବର ଭିନ୍ନ ଭିନ୍ନ ଧାରାକୁ ଗ୍ରହଣ କରେ । ସାଂସାରିକ କର୍ମପ୍ରେରଣା ଏହି ଭାବଧାରାମାନଙ୍କ ମଧ୍ୟରୁ କେତୋଟିକୁ ଆଶ୍ରୟ କରି ଗୋଟିଏ ମାର୍ଗ ଖୋଲିଦିଏ । ମାର୍ଗକୁ ସୁଗମ କରିବାପାଇଁ ମହତ୍ତ୍ୱର ଚିନ୍ତାଧାରା ତାହାର ଉପଯୋଗିତା ମନୁଷ୍ୟ ମନରେ ଜାଗରିତ କରାଏ । ତାକୁ ଅବଲମ୍ବନ କରି ସେ ଦୁସ୍ତର ସଂସାର-ବର୍ତ୍ମକୁ ପାର ହୋଇଯାଏ । ସେଥିଯୋଗୁଁ ମନୀଷୀମାନେ କହିଯାଇଛନ୍ତି ଯେ, ମହାଜନଙ୍କର ପନ୍ଥା କେବଳ ଅନୁସରଣୀୟ ।

ମହତ୍ତ୍ୱର ଚିନ୍ତାଧାରାକୁ ଅନୁସରଣ କରି ମନୁଷ୍ୟ ମହତ୍ତ୍ୱ ହୋଇପାରେ । ପ୍ରାଥମିକ ଅବସ୍ଥାରେ ସେ ବସ୍ତୁଜଗତକୁ ବଡ଼ କରି ଦେଖେ । ଅଧିକାଂଶ ସମୟରେ ସେ ଯେଉଁ ସମାଜରେ ବାସ କରେ, ତାକୁ ଠିକ୍‌ରୂପେ ଦେଖିପାରେ ନାହିଁ । ସମାଜଟା ଯଦି ଦୁଶ୍ଚରିତ୍ରରେ କଳୁଷିତ ହୋଇଥାଏ ଓ ସମାଜରେ ଅଧିକାଂଶଙ୍କର କାର୍ଯ୍ୟ କୌଣସି ଭିତ୍ତିହୀନ ଓ ପ୍ରବଞ୍ଚନାପୂର୍ଣ୍ଣ ବିଷୟକୁ ଲକ୍ଷ୍ୟ କରି ସମ୍ପାଦିତ ହେଉଥାଏ, ତାହାହେଲେ ମହତ୍ତ୍ୱକୁ ଅନୁକରଣ କରିବାର ଆକାଙ୍‌କ୍ଷା ମନୁଷ୍ୟର ସହଜରେ ଜାଗ୍ରତ ହୁଏ ନାହିଁ । ଏପରି ସମାଜ ସହିତ ନିଜର ଭାବଧାରାକୁ ମିଳାଇ ଦେଲେ ମନୁଷ୍ୟ କକ୍ଷଚ୍ୟୁତ ଗ୍ରହ ପରି ଗୋଟାଏ ଅନିର୍ଦ୍ଦିଷ୍ଟ ଦିଗରେ ବହୁକାଳ ପାଇଁ ଗତି କରେ । ଧର୍ମ ଓ ସମାଜ-ସଂସ୍କାରକମାନେ ମାନବର ହିତ କାମନା ଉଦ୍ଦେଶ୍ୟରେ କଳୁଷ ନିବାରଣ କରିବାର ଯେଉଁ

ଉପାଯ୍ୟମାନ ସ୍ଥିର କରିଥାନ୍ତି, ତାହା ଯୁଗପ୍ରଭାବରେ କିଛି ସମୟ ପାଇଁ ଅନାଦୃତ ହୋଇ ରହେ; କିନ୍ତୁ ମହତ୍ତ୍ୱର ପ୍ରଚେଷ୍ଟା ଦିନେ ସାର୍ଥକ ହୁଏ । ଧର୍ମ ଓ ସମାଜର ବିପ୍ଳବରେ କେତେ ମହାପୁରୁଷଙ୍କର ଶରୀରର ପତନ ଘଟିଅଛି । ଅପକର୍ମୀର କୁଚିନ୍ତାରେ ସେମାନଙ୍କର ଅଶେଷ ନିର୍ଯାତନା ଘଟିଅଛି । କିନ୍ତୁ କଲ୍ଲୋଳମୀର ସ୍ୱଚ୍ଛନ୍ଦ ଗତି ପରି ସେମାନଙ୍କ ଭାବଧାରାରେ କୌଣସି ବ୍ୟତିକ୍ରମ ଆସି ନାହିଁ । ପତିତ ମାନବସମାଜକୁ ଉଦ୍‌ବୁଦ୍ଧ କରିବା ପାଇଁ ସେହି ମହାପୁରୁଷମାନଙ୍କର ଆବିର୍ଭାବ ହୋଇଥାଏ । ସେଥିଯୋଗୁଁ ଗୀତାରେ ଉଲ୍ଲେଖ ଅଛି—"ଧର୍ମ ସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ" । ବିଶ୍ୱ-ନିୟନ୍ତା କ୍ଷୁଦ୍ର ମାନବର କର୍ମ ଓ ଚିନ୍ତାକୁ ଦୃଢ଼ତର ଚାଳନ କରିବାପାଇଁ ପୃଥିବୀରେ ମହାମାନବ ରୂପରେ ଅବତୀର୍ଣ୍ଣ ହେବା ବିଜ୍ଞାନସମ୍ମତ ହୋଇ ନ ପାରେ; କିନ୍ତୁ ଅନ୍ତରର ପ୍ରେରଣା ନିଶ୍ଚୟ ଏକ ମହୀୟସୀ ଶକ୍ତିର ବର୍ତ୍ତମାନତା ଉପରେ ଆସ୍ଥା ସ୍ଥାପନ କରିବ । ଜଡ଼ ଶରୀରକୁ ଏକମାତ୍ର ଅବଲମ୍ବନ କରି ଯଦି ଐହିକ ସୁଖରେ ସମସ୍ତ ଆୟାସ ଆବଦ୍ଧ ରହୁଥାନ୍ତା, ତାହା ହେଲେ ମନୁଷ୍ୟତ୍ୱର ପରିଣତି କେବଳ ଜୀବତ୍ୱରେ ପର୍ଯ୍ୟବସିତ ହୋଇ ରହନ୍ତା । ହୃଦୟର ବିଶେଷତ୍ୱରେ ମାନବିକତାର ଯେଉଁ ବିକାଶ ଘଟେ, ତାହା ଏକ ଅପାର୍ଥିବ ଭାବରାଜ୍ୟ ସୃଷ୍ଟି କରେ। ସେହି ଭାବରାଜ୍ୟରୁ ଯେଉଁ ସ୍ପନ୍ଦନଟିକ ଆସେ, ତାକୁ ବିସ୍ତୀର୍ଣ୍ଣ କରିବା ପାଇଁ ମହତ୍ତ୍ୱର ଚିନ୍ତାଧାରା ଚିରକାଳ ଗୋଟିଏ ଅଭିନବ ଗତିରେ ପ୍ରବାହିତ ହେଉଥାଏ । ପ୍ରାକୃତିକ ନିୟମାନୁସାରେ କ୍ଷୁଦ୍ର ସ୍ରୋତସ୍ୱିନୀ ବହିଯାଇ ଅନନ୍ତ ସାଗର ସଙ୍ଗେ ମିଶେ । ମନୁଷ୍ୟର କ୍ଷୀଣ ଭାବଧାରାଟି ଉଚ୍ଛ୍ୱସିତ ହେଲେ ସେହିପରି ମହତ୍ତ୍ୱର ଭାବଧାରାକୁ ଆଶ୍ରୟ କରି ନିଜର ଅନନ୍ତ ସତ୍ତା ଉପଲବ୍ଧି କରେ ।

ଭାବର ଉନ୍ମେଷ ଜୀବନର ସୌନ୍ଦର୍ଯ୍ୟବୋଧ ଜନ୍ମାଏ । ଜ୍ଞାନୀମାନେ ଜୀବନକୁ ଗୋଟାଏ ମହୋତ୍ସବ ପରି ମନେ କରନ୍ତି । ସର୍ବଦା ସଂସାର ବୃତ୍ତିରେ ଶୃଙ୍ଖଳିତ ମନୁଷ୍ୟ ଚକ୍ଷୁରେ ଜଗତର ଚିତ୍ର ଭିନ୍ନ ପ୍ରତୀୟମାନ ହୁଏ । ସଂସାରର ଦୈନ୍ୟ ଓ ଦୁର୍ବିପାକ ଆସକ୍ତିପରାୟଣ ମନୁଷ୍ୟକୁ ଅତିମାତ୍ରାରେ ଅଭିଭୂତ କରେ; ତେଣୁ ତାର ଦୃଷ୍ଟିରେଖା ଗୋଟାଏ କୁହେଳିକାରେ ଆଚ୍ଛନ୍ନ ହୋଇପଡ଼େ । ସେ ଜୀବନର ଆନନ୍ଦ କଦାଚିତ୍ ଅନୁଭବ କରେ । ଯାହାକୁ ସେ ପ୍ରକୃତ ସୁଖ ବୋଲି ମନେ କରେ ଓ ଯାହାକୁ ଅନୁସରଣ କରି ତା ଜୀବନର ଅଧିକାଂଶ ସମୟ ବ୍ୟୟିତ ହୁଏ, ତାହା ସେହି କୁହେଳିକାରେ ମିଶିଯାଏ । ମନୁଷ୍ୟ ନିଃସ୍ୱ ହୁଏ; ତାର ଭାବଧାରା ଗୋଟାଏ ଶୁଷ୍କ ମରୁଭୂମିରେ ପ୍ରବାହିତ ହେଲା ପରି ଜଣାଯାଏ । କେତେକ ଲୋକ ଜୀବନର ଶେଷଭାଗରେ ସଂସାରର ଅସାରତା ଉପଲବ୍ଧି କରି ସେମାନଙ୍କ ଭାବଧାରାରେ ହଠାତ୍ ପରିବର୍ତ୍ତନ ଆଣନ୍ତି । ଏହି ପରିବର୍ତ୍ତନ ସାଂସାରିକ ସୁଖ ପ୍ରୟାସରେ ବାଧା ଦିଏ । ମନୁଷ୍ୟର ଗତି ପ୍ରତିହତ ହେବା ଯଦି ବିଧିନିର୍ଦ୍ଦିଷ୍ଟ ହୁଏ, ତାହା ହେଲେ ସଂସାରର ଜଟିଳତା ଭେଦ କରି ତାକୁ ସ୍ୱାଧୀନ ଭାବଧାରାର ସନ୍ଧାନ ନେବାକୁ ପଡ଼ିବ । ହୃଦୟର ଦୃଢ଼ତା ଥିଲେ ମନୁଷ୍ୟ ସହଜରେ ବିଚଳିତ ହୁଏ ନାହିଁ । ସାଂସାରିକ କର୍ମ ସମ୍ପାଦନଦ୍ୱାରା ଯେଉଁ ଶକ୍ତିମତ୍ତାର ପରିଚୟ ମିଳେ, ତାହା ମହତ୍ ଭାବରେ ଅନୁପ୍ରାଣିତ ଉନ୍ନତିକାମୀ କର୍ମୀ ପକ୍ଷରେ ସମ୍ପୂର୍ଣ୍ଣ ସ୍ୱାଭାବିକ । ତାଙ୍କର କର୍ମମାର୍ଗରେ ବିଶୃଙ୍ଖଳା ପ୍ରାୟ ଦେଖାଦିଏ ନାହିଁ । ସେ ନିଜ ଅନ୍ତରର ଭାବଧାରା ସହିତ କର୍ମପ୍ରଣାଳୀକୁ ସମାନ ଗତିରେ ଉନ୍ମୁକ୍ତ କରିବାକୁ ସର୍ବଦା ଚେଷ୍ଟିତ ଥାନ୍ତି । ସମ୍ପଦ ଓ ବିପଦରେ ମନର ସ୍ଥିରତା ଆସିବା ତାଙ୍କ ପକ୍ଷରେ ସମ୍ଭବ ହୋଇଥାଏ । ଯାବତୀୟ କୋଳାହଳ ଓ ଅଶାନ୍ତି ମଧ୍ୟରେ ସୌନ୍ଦର୍ଯ୍ୟର ସ୍ନିଗ୍ଧ ଅନୁଭୂତି ସମସ୍ତ ବାଧାକୁ ଦୂର କରିଦିଏ । ଏହି ସୌନ୍ଦର୍ଯ୍ୟଜ୍ଞାନ କ୍ରମେ କ୍ରମେ ଭାବରାଜ୍ୟକୁ ଅଧିକାର କରି କର୍ମଜଗତକୁ ପ୍ରଭାବିତ କରେ । ଭାବ ଯାହାକୁ ଯୋଗାଇ ରଖିଥାଏ, କର୍ମ ତାକୁ ଗୋଟାଏ ଆକାର ଦେଇ ଗ୍ରହଣ କରିଦିଏ । ପ୍ରେମର ମଧୁର ସ୍ପନ୍ଦନ ପ୍ରଥମେ ହୃଦୟରେ ଅନୁଭୂତ ହୁଏ; ତାକୁ ପୁଣି ଭାବୁକ ଭାଷାରେ ବ୍ୟକ୍ତ କରି ମାନବ ସମାଜରେ ପ୍ରେମର ଅତୁଳନୀୟ କାହାଣୀ ବର୍ଣ୍ଣନା କରିଦିଏ । ଭାବର ଉତ୍କର୍ଷ ଭାଷାର ମହତ୍ତ୍ୱ ଜ୍ଞାପନ କରେ । ଭାବ ପ୍ରକାଶରେ କବି, ଚିତ୍ରକର ଓ ଶିଳ୍ପୀ ଶ୍ରେଷ୍ଠ ବୋଲି ବିବେଚିତ ହୁଅନ୍ତି । ଭାବର ଅଭିବ୍ୟକ୍ତିରେ ଯେଉଁମାନଙ୍କଦ୍ୱାରା ସତ୍ୟ ଉପେକ୍ଷିତ, ସେମାନେ ଇତର ଶ୍ରେଣୀଭୁକ୍ତ ଓ ସେମାନଙ୍କର ବର୍ଣ୍ଣନା କିମ୍ବା ଚିତ୍ରଣ ଅଳ୍ପକାଳ ମଧ୍ୟରେ ବିଲୁପ୍ତ ହୁଏ । ହୃଦୟର ଅଭିବ୍ୟକ୍ତିକୁ ଅତ୍ୟଳ୍ପ ଲୋକେ ଉପଯୁକ୍ତ ଆଧାର ଯୋଗାଇଥାନ୍ତି; ତେଣୁ ଜଗତରେ ମହତ୍ତ୍ୱର ଭାବଧାରା ଗୋଟାଏ ସ୍ୱାତନ୍ତ୍ର୍ୟ ରକ୍ଷା କରି ପ୍ରକାଶିତ ହୁଏ ।

ମନୁଷ୍ୟର ଭାବଧାରା ତାହାର ଜନ୍ମ ଭଳି ରହସ୍ୟମୟ । ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ କେତୋଟି ବର୍ଷର ଅବସ୍ଥିତି ଛାଡ଼ିଦେଲେ ମନୁଷ୍ୟ ଜୀବନର ଜଗତ୍ ସଙ୍ଗେ ସମ୍ପର୍କଟା ଗୋଟାଏ ଅଜ୍ଞାତ ପରିକଳ୍ପନା ପରି ବୋଧହୁଏ । ମନୁଷ୍ୟ ସଂସାରରେ ଜନ୍ମଗ୍ରହଣ କରେ; କିନ୍ତୁ ସେ ଜାଣିପାରେ ନାହିଁ, ତାର ବିକାଶ କିପରି ହେଲା । ନିଜର ମୂଳାଧାରକୁ ସ୍ଥିର କରିବା ମନୁଷ୍ୟ

ପକ୍ଷରେ ଗୋଟିଏ ଦୁରୂହ ସମସ୍ୟା । ଜାଗତିକ ଘଟନା ସମ୍ପର୍କରେ ସର୍ବଦା ଆତ୍ମନିର୍ଭରଶୀଳ ହେବା ସମସ୍ତଙ୍କ ପକ୍ଷରେ ସମ୍ଭବ ନୁହେଁ; ତେଣୁ ମନୁଷ୍ୟ ବାଧ୍ୟ ହୋଇ ଗୋଟାଏ ଅନନ୍ତ ଶକ୍ତିର ବର୍ତ୍ତମାନତା ସ୍ୱୀକାର କରେ । ଜୀବନର ଆକସ୍ମିକ ପରିବର୍ତ୍ତନ ଏହି ଅନୁଭୂତିକୁ ଦୃଢ଼ କରେ । ଭାବର ଭିନ୍ନତା ଓ ବୈଚିତ୍ର୍ୟ କୌଣସି ନିର୍ଦ୍ଦିଷ୍ଟ ନିୟମର ଅଧୀନ ନୁହେଁ । ସମସ୍ତେ ସମଭାବରେ ପ୍ରଣୋଦିତ ହୁଅନ୍ତି ନାହିଁ । ଜନ୍ମଗତ ଚିନ୍ତାଧାରା ମନୁଷ୍ୟକୁ ବିଭିନ୍ନ କର୍ମପନ୍ଥାର ଆଶ୍ରୟ ନେବାକୁ ଉତ୍ସାହିତ କରେ; କିନ୍ତୁ ଭାବଧାରାର ଏହି ବୈଷମ୍ୟକୁ କେହି ଲକ୍ଷ୍ୟ ରଖନ୍ତି ନାହିଁ । ଭାବର ପାର୍ଥକ୍ୟ ଯୋଗୁଁ ଜଣକର ଆସକ୍ତି ଅପରର ବିରକ୍ତିର କାରଣ ହୁଏ । ସୌନ୍ଦର୍ଯ୍ୟାନୁଭୂତି ମଧ୍ୟ ଭାବବୈଷମ୍ୟରେ ସମାନତା ରକ୍ଷା କରିପାରେ ନାହିଁ । ପ୍ରେମ ବିନିମୟ ବେଳେ ଏହି ଅସମାନତା ସ୍ପଷ୍ଟ ହୋଇ ଜଣାପଡ଼େ । ଭାବ କର୍ମ-ଜଗତର ଅସାମଞ୍ଜସ୍ୟ ବିଧାନ କରେ; କିନ୍ତୁ ଭାବର ସେହି ଅଦ୍ଭୁତ ବିଧାନ ଚିରଦିନ ଅଜ୍ଞାତ ରହିଯାଏ ।

ମହତ୍ତ୍ୱର ଚିନ୍ତାଧାରା ବ୍ୟକ୍ତିଗତ ଭାବର ବିଶେଷତ୍ୱକୁ ସମୂହ ଭାବରେ ଧାରଣ କରିଥାଏ । ମୁକ୍ତ ପ୍ରକୃତି ପରି ମହତ୍ତ୍ୱର ଭାବରାଜ୍ୟରେ କୌଣସି ପ୍ରତିବନ୍ଧକ ତିଷ୍ଠିପାରେ ନାହିଁ । ସାଧାରଣ ମନୁଷ୍ୟ ମହତ୍ତ୍ୱର ଭାବକୁ ପୂର୍ଣ୍ଣରୂପେ ସବୁସମୟରେ ଗ୍ରହଣ କରିପାରେ ନାହିଁ । ମହତ୍ତ୍ୱର ଚିନ୍ତାକୁ ଯଦି ସମସ୍ତେ ବିନା ସାଧନାରେ ଅବଧାରଣ କରିପାରୁଥାନ୍ତେ, ତାହା ହେଲେ ଜନସମାଜରେ ମହତ୍ ପାଇଁ କୌଣସି ବିଶିଷ୍ଟ ସ୍ଥାନ ରହନ୍ତା ନାହିଁ । ଅନ୍ତରର କଳନା ସହଜରେ ଜଣାପଡ଼େ ନାହିଁ । ଭାବର ଗାମ୍ଭୀର୍ଯ୍ୟ ଭାବୁକର ମହତ୍ତ୍ୱ ପ୍ରକାଶ କରେ । ଚିନ୍ତାଧାରାର ସୀମା ସଙ୍କୀର୍ଣ୍ଣ ହୋଇଗଲେ ମହତ୍ତ୍ୱର ବିକାଶ ଘଟେ ନାହିଁ । ଯେ ପର୍ଯ୍ୟନ୍ତ ମନୁଷ୍ୟ ପ୍ରକୃଷ୍ଟ ଜ୍ଞାନର ପରିଚୟ ଦେଉଥାଏ, ସେ ପର୍ଯ୍ୟନ୍ତ ତାର ଆଦର ସମାଜରେ ଆଦୌ ହ୍ରାସ ପାଏ ନାହିଁ । ଜ୍ଞାନର ଅଳ୍ପତାରେ ଲୋକର ଭାବବିଶେଷ ବେଶି ଦିନ ଆଦୃତ ହୁଏ ନାହିଁ । ଅନେକ ସମୟରେ ସମୂହ ଭାବଧାରାର ପରିବର୍ତ୍ତନ ଘଟିଥାଏ । ସମାଜର ସମଷ୍ଟିଗତ ଆକାଙ୍କ୍ଷାକୁ ଅନୁସରଣ କରି ଯୁଗପ୍ରଭାବ ଯେଉଁ ଭାବର ବିକାଶ ଆଣେ, ତାକୁ ସାଧନାର କୌଣସି ନୂତନ ମାର୍ଗ ସମୂଳେ ବଦଳାଇ ଦେଇପାରେ । ସେଥିଯୋଗୁଁ ମନୁଷ୍ୟର ଅନୁସୃତ କର୍ମ-ପନ୍ଥା କେତେ ଅଭିନବ ଆକାର ଧାରଣ କରେ । ଭାବ-ବିନିମୟରେ ଭାବର ଗୁରୁତ୍ୱ ଜଣାପଡ଼େ । ଭାବାବେଶରେ ଆତ୍ମପର ଜ୍ଞାନ ଲୁପ୍ତ ହୋଇଥାଏ । ମନର ଗତି ଅନୁସାରେ ହୃଦୟର ମିଳନ ହୁଏ । ସ୍ନେହ ଓ ପ୍ରେମର ପରିଣାମ ଅଳ୍ପ କିମ୍ବା ବେଶି ହୋଇ-ପାରେ । ଅନ୍ତରର ଭାବ ଯେପରି ଏହି ପରିମାଣର ଅଳ୍ପତା ଓ ଆଧିକ୍ୟ ନିର୍ଣ୍ଣୟ କରିଯାଏ । ମହତ୍ତ୍ୱର ଭାବକଥା ଦୂରେ ଥାଉ, ସାଧାରଣ ମନୁଷ୍ୟର କୋମଳ ଅନ୍ତରରୁ ଯେଉଁ ମଧୁର ପ୍ରେମ-ରାଗିଣୀ ଭାସିଆସେ, ସେଥିରେ ଆକୃଷ୍ଟ ଓ ଭାବମୁଗ୍ଧ ହେବାପାଇଁ ଗ୍ରାହକମାନଙ୍କର ଅଭାବ ପଡ଼େ ନାହିଁ । ବିଧିବଦ୍ଧ ପ୍ରଣାଳୀଦ୍ୱାରା ଚିନ୍ତାଧାରାକୁ ନିୟନ୍ତ୍ରିତ କରାଯାଏ ନାହିଁ । ଲୌହ ଓ ଚୁମ୍ବକର ପରସ୍ପର ଆକର୍ଷଣ ପରି ବିଭିନ୍ନ ଚିନ୍ତାଧାରାର ସହଯୋଗ ସମ୍ପାଦିତ ହୁଏ । ବାୟୁମଣ୍ଡଳର ସ୍ପନ୍ଦନ ପରି ଭାବ-ତରଙ୍ଗର ଗୋଟାଏ ବ୍ୟାପ୍ତି ଅଛି । ଏହା ହୋଇ ନ ଥିଲେ, ଜଣକର ଭାବ ଅଜ୍ଞାତରେ କାହିଁକି ଅପରର ହୃଦୟରେ ଆଘାତ ଦିଅନ୍ତା ? ମହତ୍ତ୍ୱର ଚିନ୍ତାଧାରାରେ ଏହି ଆଘାତର ସୂଚନା ବିଶେଷ ପରିମାଣରେ ମିଳେ । ସାଧାରଣ ଲୋକ ସଂସାରର ତୀବ୍ର ପୀଡ଼ନରେ ନିଜର ଭାବକୁ ସବୁବେଳେ ଅନୁସରଣ କରିପାରେ ନାହିଁ; କିନ୍ତୁ ମହତ୍ ଲୋକ ଯାବତୀୟ ନିର୍ଯ୍ୟାତନା ସହ୍ୟ କରି ଅନ୍ତରର ମୁକ୍ତ ଭାବକୁ ମାନବଜାତିର କଲ୍ୟାଣ ପାଇଁ ବ୍ୟକ୍ତ କରନ୍ତି । ତାଙ୍କର ଅନୁଭୂତିରେ ମନୁଷ୍ୟର ସମସ୍ତ ଦୁଃଖ ଓ ସୁଖର ଚିତ୍ର ପ୍ରକଟିତ ହୁଏ । ସତ୍ୟକୁ ଅବଲମ୍ବନ କରି ତାଙ୍କର ଭାବଧାରା ମାନବ ହୃଦୟରେ ପ୍ରବାହିତ ହୁଏ । ସେଥିଯୋଗୁଁ ମହତ୍ତ୍ୱର ଭାବଧାରାରେ ମାନବ ଚରିତ୍ରର ଗୋଟିଏ ସ୍ପଷ୍ଟ ଛାୟାପାତ ଦେଖାଯାଏ ।

ଗୋଟାଏ ରୀତି ଆଚରଣ କରି ମହତ୍ତ୍ୱର ଭାବଧାରା ବଢ଼ିଯାଏ ନାହିଁ । କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ଭାବରେ ସର୍ବଦା ଅନୁପ୍ରାଣିତ ହେଲେ ଅନ୍ତର୍ଦୃଷ୍ଟି ସଙ୍କୀର୍ଣ୍ଣ ହୋଇଯାଏ । ପ୍ରତ୍ୟେକ ମନୁଷ୍ୟର ସୌନ୍ଦର୍ଯ୍ୟ ଜ୍ଞାନ ଥାଏ । ସୌନ୍ଦର୍ଯ୍ୟର ଆଧାରକୁ ଉତ୍କଣ୍ଠିତ ହୃଦୟରେ ଅନୁସରଣ କଲେ ସାଧାରଣତଃ ଏହି ଜ୍ଞାନର ଅପଚୟ ଘଟେ; ଉନ୍ନତିର ସ୍ଥାନ ଅବନତି ଅଧିକାର କରେ । ମହତ୍ ଭାବକୁ ହୃଦୟ ଗ୍ରହଣ କଲେ ସଙ୍କୀର୍ଣ୍ଣତା ଚାଲିଯାଏ; କିନ୍ତୁ ସମସ୍ତ ସମୟରେ ଜ୍ଞାନର ବିକାଶପାଇଁ ପ୍ରତିଦ୍ୱନ୍ଦ୍ୱୀ ମତଗୁଡ଼ିକର ବୈପରୀତ୍ୟ ପ୍ରତି ଆସ୍ଥାବାନ୍ ହେବାକୁ ପଡ଼େ । ସବୁ ମନୀଷୀମାନଙ୍କର ପ୍ରେରଣା ସମାନ ନ ଥାଏ ଗୋଟାଏ ବିଷୟକୁ ସମଦୃଷ୍ଟିରେ ଆଲୋଚନା କରିବାର ସ୍ପୃହା ଜ୍ଞାନୀ ମାନଙ୍କେ ଥାଇପାରେ; କିନ୍ତୁ ଚିନ୍ତାଧାରାର ବିଶିଷ୍ଟତା ଓ

ପାର୍ଥକ୍ୟ ଯୋଗୁଁ ଏକ ବିଷୟର ବିଭିନ୍ନ ସମାଧାନ ଦେଖାଯାଏ । ଜଣେ ମହାପୁରୁଷ କହିଗଲେ, ଦୁର୍ବଳତାକୁ ହୃଦୟରେ ସ୍ଥାନ ଦେବା କଥା ଦୂରେ ଥାଉ, ଯେଉଁ ସ୍ଥାନକୁ ଗଲେ ଉନ୍ନତ ଭାବର ଲେଶ ମାତ୍ର ବିକୃତ ଘଟିପାରେ, ସେହି ସ୍ଥାନକୁ ଶୀଘ୍ର ପରିତ୍ୟାଗ କରିବା ବିଧେୟ । ଆଉ ଜଣେ ଦୂରଦର୍ଶୀ ଭାବୁକ ଏହି କଥାକୁ ଠିକ୍ ବିପରୀତ ଭାବରେ ବର୍ଣ୍ଣନା କଲେ । ସେ କହିଲେ, ଦୁର୍ବଳତା ମଧ୍ୟରେ ଅବସ୍ଥିତିରେ ହିଁ ମନୁଷ୍ୟର ପ୍ରକୃତ ପରିଚୟ ମିଳେ । ଏହି ଦୁଇ ମତର ପ୍ରତିଷ୍ଠା ପାଇଁ ଯୁକ୍ତିର ଅଭାବ ହେବ ନାହିଁ କିମ୍ବା ସତ୍ୟତା ସମ୍ବନ୍ଧରେ ଦେଖିବାକୁ ଗଲେ ଗୋଟିଏ ଅପରଠାରୁ ଉତ୍କୃଷ୍ଟ ବୋଲି ପ୍ରମାଣିତ ହେବ ନାହିଁ । ଅତଏବ ଚନ୍ତାଧାରାର ଭିନ୍ନତା ଯୋଗୁଁ କୌଣସି ମତବାଦର ଐକ୍ୟ ସଂସ୍ଥାପନ କରାଯାଇପାରେ ନାହିଁ । ଆଜିର ପ୍ରତିଷ୍ଠିତ ମତ କାଲିକି ବଦଳି ଯାଇପାରେ । ଏଥିରେ କ୍ଷୁବ୍ଧ ହେବା ଉଚିତ ନୁହେଁ ।

ଭାବ-ବୈଚିତ୍ର୍ୟରେ ସୃଷ୍ଟିର ସୌନ୍ଦର୍ଯ୍ୟ ଉପଲବ୍ଧ ହୋଇଥାଏ । ସାଧାରଣ ମନୁଷ୍ୟର ଅନ୍ତର ଏହି ବୈଚିତ୍ର୍ୟକୁ ଅପୂର୍ଣ୍ଣରୂପେ ଅବଧାରଣ କରେ; ତେଣୁ ତାର ଭାବଧାରାଟି ସଂସାରର କଠିନତା ମଧ୍ୟରେ ସଙ୍କୁଚିତ ହୋଇ ରହେ । ଦୁର୍ବଳ ଜଳସ୍ରୋତ ଯାବତୀୟ ପ୍ରତିବନ୍ଧକ ଏଡ଼ାଇ ଯେପରି ଅନନ୍ତ-ସାଗର ସଙ୍ଗେ ମିଶେ, ସେହିପରି ମହତ୍ତର ଚନ୍ତାଧାରା ସଂକୀର୍ଣ୍ଣ ସାଂସାରିକ ମତଗୁଡ଼ିକ ଉପେକ୍ଷା କରି ଅସୀମ ଭାବସମୁଦ୍ରରେ ମିଶିଯାଏ । ସାଂସାରିକ ଦୁଃଖ ଓ ଦୁର୍ଦ୍ଦଶାକୁ ତୁଚ୍ଛ ମନେକରି ମହତ୍ ବ୍ୟକ୍ତି ତାଙ୍କ ଗନ୍ତବ୍ୟପଥରେ ଅଗ୍ରସର ହୁଅନ୍ତି; କିନ୍ତୁ ସାଧାରଣଙ୍କ ପକ୍ଷରେ ସାମାନ୍ୟ ବିପଦକୁ ଅତିକ୍ରମ କରିବା କଠିନ ହୁଏ । ସାଂସାରିକ କର୍ମସମୂହ ଉନ୍ନତର ସୋପାନସ୍ୱରୂପ ହୋଇପାରେ; କିନ୍ତୁ ସେହି ସୋପାନ ଶ୍ରେଣୀର ଶୀର୍ଷଦେଶରେ ସୌନ୍ଦର୍ଯ୍ୟର ଯେଉଁ ଉତ୍ପତ୍ତି ଥାଏ, ତାହାର ସହିତ ଅନ୍ତରର ଭାବଧାରାଟି ମିଳାଇଦେବା ପାଇଁ ମହତ୍ତର ଚନ୍ତାଧାରା ମନୁଷ୍ୟକୁ ପ୍ରେରଣା ଦିଏ । ମହତ୍ତର ଭାବ ଅବଲମ୍ବନରେ ହୃଦୟର ଆବିଳତା ଦୂର ହେଲେ ସୌନ୍ଦର୍ଯ୍ୟର କାଳିମା ଭିନ୍ନ ଆକାର ଧାରଣ କରେ ଓ ସେଥି ସଙ୍ଗେ ଭେଦାଭେଦ ଭାବ ଅପସରିଯାଏ । ଏହି ଅବସରରେ ମନୁଷ୍ୟର ସଂସାରମାର୍ଗ ସରଳତାକୁ ଆଶ୍ରୟ କରେ ଓ ପୂର୍ବ କୁହେଳିକାର ପରିଣତି କେବଳ ସୌନ୍ଦର୍ଯ୍ୟାନୁଭୂତିରେ ପର୍ଯ୍ୟବସିତ ହୁଏ ।

# ବେଷ୍ଟନୀ

ଜଗତର କ୍ରିୟାକଳାପ ମଧ୍ୟରେ ଗୋଟିକୁ ଅପରଠାରୁ ପୃଥକ୍ ରଖିବା ପାଇଁ ଯେଉଁ ବାହ୍ୟ ଆବରଣଗୁଡ଼ିକ ଲୋଡ଼ା ହୁଏ, ସେହିଗୁଡ଼ିକକୁ ସାଧାରଣତଃ ବେଷ୍ଟନୀ ଆଖ୍ୟା ଦିଆଯାଇଥାଏ । ମଞ୍ଜିଟିର ଉତ୍ପାଦିକା ଶକ୍ତିକୁ ଆବରଣ ଘୋଡ଼ାଇ ରଖେ । ଚେତନର ସମ୍ପର୍କ ଯଦି କୌଣସି ଆବରଣକୁ ଅପେକ୍ଷା କରୁଥାଏ, ତାହା ହେଲେ ଜାଗତିକ ଜଟିଳ କର୍ମବନ୍ଧନ ମଧ୍ୟରେ ମନୁଷ୍ୟର ପ୍ରକୃତ ପଥ ବେଷ୍ଟିତ ହୋଇ ରହିବା ସ୍ୱାଭାବିକ । ସାମାଜିକ ଅଶେଷ ରୀତିନୀତିମାନଙ୍କର ପ୍ରଚଳନକୁ ଆମ୍ଭେମାନେ ବେଷ୍ଟନୀର ବିଭିନ୍ନ ଶ୍ରେଣୀରୂପେ ଗ୍ରହଣ କରିପାରୁଁ । ଉପର୍ଯ୍ୟୁକ୍ତ ଦୃଷ୍ଟିରେ ଆଲୋଚନା କଲେ ଜଣାଯିବ ଯେ, କାଳୋପଯୋଗୀ ପ୍ରଭାବରେ ଯେଉଁ ଭିନ୍ନତା ଓ ପରିବର୍ତ୍ତନ ଆସେ, ସେଗୁଡ଼ିକ ବେଷ୍ଟନୀର ଗୋଟାଏ ଗୋଟାଏ ପ୍ରକାର ମାତ୍ର । ଆଜି ଜଗତ୍ ଯାହାକୁ କୁସଂସ୍କାର ଆଖ୍ୟା ଦେଇ ଲୋପ କରିଦେବାକୁ ଯାଉଛି, ତାହା ଦିନେ ସୁସଂସ୍କାର ଛଳରେ ଆସି ମାନବର ମାନବିକତାକୁ ରକ୍ଷା କରିଥିଲା । ଆଦିମ ମାନବ ଜାତିର ସଭ୍ୟତା ସଙ୍ଗେ ଆଧୁନିକ ସଭ୍ୟତାକୁ ତୁଳନା କଲେ ଯେଉଁ ପ୍ରଭେଦ ଦେଖାଯାଏ, ସେଥିରେ ବେଷ୍ଟନୀର ବୈଶିଷ୍ଟ୍ୟ ଅଧିକ ପରିମାଣରେ ପରିଲକ୍ଷିତ ହୁଏ; କିନ୍ତୁ ମନୁଷ୍ୟର ପ୍ରକୃତ କର୍ମଜାଲ ତାର ଦୃଷ୍ଟିକୁ ଏ ଦିଗରେ ସହଜରେ ସଞ୍ଚାଳିତ କରାଇଦିଏ ନାହିଁ । ଅତୀତର ଅନ୍ଧକାର ଅନନ୍ତ କାଳସ୍ରୋତରେ ଯେ ଗତିକ୍ରିୟାପାତ କରି ଚାଲିଯାଏ, ତାହା ବେଷ୍ଟନୀର ଗୋଟାଏ ବିରାଟ ସମ୍ପ୍ରସାରଣ । ଅତୀତ ଓ ବର୍ତ୍ତମାନ ମଧ୍ୟରେ ପାର୍ଥକ୍ୟ ଯଦି ପ୍ରକୃତିବିରୁଦ୍ଧ ନ ହୁଏ, ତାହା ହେଲେ ବେଷ୍ଟନୀକୁ ପ୍ରାକୃତିକ କ୍ରିୟାପ୍ରଣାଳୀରେ ଗୋଟିଏ ବିଶିଷ୍ଟ ସ୍ଥାନ ଦେଲେ କିଛି କ୍ଷତି ନାହିଁ । ଅନେକ ସମୟରେ ମାନସିକ ପ୍ରଭାବଦ୍ୱାରା ଯେଉଁ ପାରିପାର୍ଶ୍ୱିକ ଅବସ୍ଥାମାନଙ୍କର ଉତ୍ପତ୍ତି ହୋଇଥାଏ, ସେଥିରେ ସାମାଜିକ ଜୀବନ ଗୋଟାଏ ସ୍ୱତନ୍ତ୍ର ରୀତି ଅନୁସରଣ କରିପାରେ । ଲୌକିକ ଶିକ୍ଷାଦ୍ୱାରା ଏ ଦିଗର କାର୍ଯ୍ୟ ସାଧିତ ହୋଇଥାଏ; କିନ୍ତୁ ଜୀବଜଗତର ପ୍ରକୃତି ସଙ୍ଗେ ଯେ ଘନିଷ୍ଠ ସମ୍ପର୍କ, ସେଥିରେ କାଳର ପ୍ରଭାବକୁ ଏଡ଼ିଦେଇ ମନୁଷ୍ୟ ସମ୍ପୂର୍ଣ୍ଣରୂପେ ଗୋଟାଏ ନୂତନ ମନଗଢ଼ା ସମାଜ ଗଢ଼ି ଦେଇପାରିବ ନାହିଁ । ମନୁଷ୍ୟ ବୃକ୍ଷକୁ ରୋପଣ କରେ; କିନ୍ତୁ ପ୍ରକୃତି ଉପରେ ତାର ଉତ୍ପତ୍ତି ନିର୍ଭର କରେ । ଗୋଟାଏ ବେଷ୍ଟନୀ ପ୍ରାୟ ବେଶି ଦିନ ରହେ ନାହିଁ; କାରଣ ଏହା ବିକାଶପଥର ଅନ୍ତରାୟ । ମନୁଷ୍ୟ ମନର ଅତୀତ ଭାବଧାରା ଅଲକ୍ଷିତରେ ଆସି କୌଣସି ନୂତନ କର୍ମମାର୍ଗ ଉଦ୍‌ଘାଟନ କଲାବେଳେ ପ୍ରକୃତିର ରୀତି ଅନୁସୃତ ହେବା ସହଜ ନୁହେଁ । କିନ୍ତୁ ସେହି ଭାବଧାରାଟିକୁ ଅତୀତ ଘୋଡ଼ାଇ ରଖେ, କେବଳ ଭବିଷ୍ୟତରେ ଅଙ୍କୁରିତ କରିବ ବୋଲି । ଫଳଟି ପାଚି ଝଡ଼ି ପଡ଼େ । ଫଳର ବହିରାବରଣକୁ ଆଶ୍ରୟ କରି ଭାବୀ ବୃକ୍ଷଟି ଅତି ସଙ୍କୁଚିତ ଓ ନିଦ୍ରିତ ଅବସ୍ଥାରେ ରହେ । ଉପଯୁକ୍ତ ସମୟ ଆସିଲାକ୍ଷଣି ଫଳ ପୁଣି ବୃକ୍ଷରୂପରେ ଆବିର୍ଭୂତ ହୋଇଉଠେ । ପ୍ରାକୃତିକ କ୍ରିୟାପ୍ରଣାଳୀରେ ବ୍ୟବଧାନ ଆଣିବା ପାଇଁ ବେଷ୍ଟନୀର ସୃଷ୍ଟି ।

ବେଷ୍ଟନୀକୁ ନାନା ଭାବରେ ପ୍ରୟୋଗ କରାଯାଇପାରେ । ଲୋକାଚାର ଓ ସାମାଜିକ ନିୟମଗୁଡ଼ିକ କାଳ ଓ ସ୍ଥଳବିଶେଷରେ ମନୁଷ୍ୟର ସ୍ୱାଧୀନତା ଉପରେ ଯଥେଷ୍ଟ ଆଧିପତ୍ୟ ବିସ୍ତାର କରିଥାଏ । କିନ୍ତୁ ବିଚାର କଲେ ଜଣାଯିବ ଯେ, ଏହି ଆଧିପତ୍ୟଟା ବେଷ୍ଟନୀର ଗୋଟାଏ ରୂପାନ୍ତର ଓ ଏହା ଅନେକ ସମୟରେ ଜଗତର ମଙ୍ଗଳ ବିଧାନ କରେ । ଉଚ୍ଚନୀଚ କଥା ଦୂରେ ଥାଉ, ବିଭୂତିସମ୍ପନ୍ନ ଦୁଇଟି ବିଷୟର ସମତା ସମ୍ଭବ ହୁଏ ନାହିଁ । ଉତ୍ତୁଙ୍ଗ ପର୍ବତ ଓ ବୀଚିବିକ୍ଷୋଭିତ ବିଶାଳ ସାଗରର ଦୃଶ୍ୟ ମହାନ୍ ହେଲେ ସୁଦ୍ଧା ଦୁହିଁଙ୍କର ଅବସ୍ଥା ସମାନ ନୁହେଁ । ସାଗରର ବେଳା ଅଛି ଓ ପର୍ବତର ତଟଦେଶ ଅଛି । ଏ ଦୁହେଁ ବେଷ୍ଟନୀର ରୂପମାତ୍ର । ପ୍ରକୃତିର ନିୟମ ଲଙ୍ଘନ କରି ସାଗରବେଳା ଲଙ୍ଘିଲା ବେଳେ ଯେପରି ଗୋଟାଏ ଉତ୍କଟ ଅବସ୍ଥା ଘଟିପାରେ, ସେହିପରି ସାମାଜିକ ଓ ନୈତିକ ବେଷ୍ଟନୀମାନଙ୍କୁ ନିର୍ବିଚାରରେ ଅତିକ୍ରମ କରିଗଲେ ପରିଣାମଟା ଭୟାବହ

ହୋଇଉଠେ । ଏଥିପ୍ରତି ଦୃଷ୍ଟି ଦେଇ ସାମ୍ୟବାଦ ପ୍ରଚାର କରିବା ଉଚିତ । ପ୍ରତ୍ୟେକ ମନୁଷ୍ୟର କିଛି ବିଶେଷତ୍ୱ ଥାଏ । ସେଥିଯୋଗୁଁ ଦୁଇ ଜଣଙ୍କ ମଧ୍ୟରେ ଗୋଟାଏ ସମାନତା ସହଜରେ ସ୍ଥାପନ କରାଯାଇ ପାରେ ନାହିଁ । ଜୀବତତ୍ତ୍ୱ ସମ୍ପର୍କରେ ମନୁଷ୍ୟ ଜାତିର କେତେଗୁଡ଼ାଏ ସମାନ ଗୁଣ ଓ ଦୋଷ ଥାଇପାରେ; କିନ୍ତୁ ମନୁଷ୍ୟତ୍ୱ ବିକାଶ ଦିଗରେ ଦେଖିବାକୁ ଗଲେ ଜଣେ ଅନ୍ୟ ଜଣକ ସହିତ ସମାନ ହୋଇ ପାରିବ ନାହିଁ । ଉଚ୍ଚ ଓ ନୀଚ ଭାବକୁ ଦୂର କରିବା କଠିନ । ଏହା ସ୍ୱତଃ ଆସି ମନୁଷ୍ୟ ସମାଜରେ ଆଧିପତ୍ୟ ବିସ୍ତାର କରିଅଛି । ଲତାଟି ଚିରଦିନ କୋମଳ; କିନ୍ତୁ ଏହି କୋମଳତା ବୃକ୍ଷର ସାରବତ୍ତାକୁ ଘୋଡ଼ାଇ ରଖେ ନାହିଁ କି ?

ଦିଗ୍‌ବଳୟରେ ଅସ୍ତଗାମୀ ସୂର୍ଯ୍ୟ ବୁଡ଼ିଯାଏ । ସାନ୍ଧ୍ୟ ଆକାଶ କିଛିକ୍ଷଣ ପାଇଁ ବିଚ୍ଛୁରିତ ରଶ୍ମିକୁ ଧାରଣ କରି ରକ୍ତିମ ଆଭା ପ୍ରକଟିତ କରେ । ରାତ୍ରିର ଅନ୍ଧକାର ଆସି ସବୁ ଘୋଡ଼ାଇଦିଏ । ଅସଂଖ୍ୟ ତାରକାରାଶି ନକ୍ଷତ୍ରମଣ୍ଡଳରେ ବିକଶିତ ହୁଅନ୍ତି । ପ୍ରକୃତି ଭିନ୍ନ ଚିତ୍ର ଧାରଣ କରେ । ଏହି ପରିବର୍ତ୍ତନ ଯେଉଁ ଅପ୍ରତିହତ ନିୟମରେ ନିୟନ୍ତ୍ରିତ ହୁଏ, ତାକୁ ଅନୁସରଣ କରି ଭାବୁକର ଉଚ୍ଛୃଙ୍ଖଳ ଚିତ୍ତ ସଙ୍କୁଚିତ ହୋଇଯାଏ । ମନୁଷ୍ୟ ଅନେକ ସମୟରେ ଭାବିଥାଏ, ତାର ଇଙ୍ଗିତରେ ସବୁ କାର୍ଯ୍ୟ ସମ୍ପାଦିତ ହୋଇଯିବ । ଅନୁକୂଳ କାର୍ଯ୍ୟକ୍ରମେ ତାର ସାଧନା ନିୟୋଜିତ ହେଲେ ଯେଉଁ ସୁଫଳ ଫଳେ, ତାକୁ କେବଳ ଲକ୍ଷ୍ୟ କରି ସେ ଜୀବନର ଅନ୍ଧକାରକୁ ଦେଖିପାରେ ନାହିଁ । ଐଶ୍ୱର୍ଯ୍ୟର ମୋହ ମନୁଷ୍ୟର ବହିର୍ମୁଖୀ ଭାବକୁ ଅତ୍ୟଧିକ ମାତ୍ରାରେ ବଢ଼ାଇଦିଏ । ଦିନଟି ଆସି ଚାଲିଯାଏ । ଦିବାବସାନରେ କୌଣସି ବ୍ୟତିକ୍ରମ ଘଟେ ନାହିଁ । କିନ୍ତୁ ମନୁଷ୍ୟର ଭାବଧାରାଟି ଏପରି କୌଣସି ଧାରାବାହିକ ନିୟମର ଅଧୀନ ହୁଏ ନାହିଁ । ଦୈନ୍ୟ ଆସେ, ମନୁଷ୍ୟ ଶତ ଚେଷ୍ଟାରେ ଅନ୍ତରର କାତରତାକୁ ଦୂର କରି ଦେବ ବୋଲି; କିନ୍ତୁ ସବୁ ଆୟାସ ବୃଥା ହୁଏ । ଗୋଟାଏ ନିସ୍ତେଜ ଭାବ ମନର ପ୍ରସନ୍ନତାକୁ ଆବୃତ କରିପକାଏ । ପ୍ରାକୃତିକ ଦୃଶ୍ୟର ମାଧୁର୍ଯ୍ୟ ଭାବୁକର ମାନସପଟରେ ଗୋଟାଏ ମନୋହାରିଣୀ ଛବି ଆଙ୍କି ଦେଇପାରେ; କିନ୍ତୁ ସାଧାରଣ ଚିତ୍ତର ଉଦ୍ଦାମତାକୁ ସଂଯତ କରିବା ପାଇଁ ଏହା ଯଥେଷ୍ଟ ନୁହେଁ । କିନ୍ତୁ ବାହ୍ୟ ଆକର୍ଷଣ ସେହି ସାଧାରଣ ମନୁଷ୍ୟର ମନକୁ ଅଧିକମାତ୍ରାରେ ଅଭିଭୂତ କରିଥାଏ । ତେଣୁ ସଂସାରଧର୍ମ ପାଳନ କରି କେହି ସବୁବେଳେ ନିଜର ଭାବଧାରାକୁ ପ୍ରାକୃତିକ ପରିବର୍ତ୍ତନ ସଙ୍ଗେ ମିଳାଇ ରଖିପାରେ ନାହିଁ । ଜଳ ବୁଦ୍‌ ବୁଦ୍‌ ତୁଲ୍ୟ ମନୁଷ୍ୟ ଅନନ୍ତ ପ୍ରକୃତି-କୋଡ଼ରେ କିଛିକ୍ଷଣ ପାଇଁ ଆବିର୍ଭୂତ ହୋଇ ଗୋଟାଏ ଅସୀମତାରେ ହଜିଯାଏ । ସମୟ ସମୟରେ ମନର ଚଞ୍ଚଳ ଗତି ପ୍ରକୃତିର ବିରାଟ ମୂର୍ତ୍ତି ନିକଟରେ ସ୍ତବ୍ଧ ହୋଇଯାଏ । ମନୁଷ୍ୟର ବାହାର ବେଷ୍ଟନୀଟି ଏହି ଅବସରରେ ଲୋପ ପାଇଯାଏ । ଅକିଞ୍ଚନର ମହତ୍ତ୍ୱ ସହିତ କୌଣସି ପାର୍ଥକ୍ୟ ରହେ ନାହିଁ । ମନୁଷ୍ୟ ନିଜକୁ କ୍ଷୁଦ୍ର, ଅସହାୟ ଓ ହେୟ ମନେ କଲେ ତାର ବେଷ୍ଟନୀଟି ଦୃଢ଼ ହୋଇ ରହେ । ସଂସାରର କର୍ମଜାଲ ଏହି ବେଷ୍ଟନୀର ଆକାର ସ୍ୱରୂପ ହୁଏ । ଭାବନାର ଉଚ୍ଚ ସ୍ତରକୁ ଉକ୍ତ କର୍ମଜାଲ ସ୍ପର୍ଶ କରିପାରେ ନାହିଁ । ତେଣୁ ସେହି କର୍ମୀ ଓ ଭାବୁକ ମଧ୍ୟରେ ଗୋଟାଏ ବ୍ୟବଧାନ ରହିଯାଏ । କର୍ମୀ ଚକ୍ଷୁରେ ଭାବୁକ ହେୟ ବିବେଚିତ ହୋଇପାରେ; କିନ୍ତୁ କର୍ମୀର ଦୃଷ୍ଟି ଗୋଟାଏ କ୍ଷୁଦ୍ର ସୀମା ମଧ୍ୟରେ ଆବଦ୍ଧ ।

ଜଗତରେ ଯାହାର ଯେତେ ଅଧିକ ମୂଲ୍ୟ, ତାହା ସେତେ ଦୃଢ଼ ବେଷ୍ଟନୀରେ ଆବଦ୍ଧ । କେତେ ଅମୂଲ୍ୟ ରତ୍ନରାଶି ଲୋକ-ଲୋଚନ ଅନ୍ତରାଳରେ ପଡ଼ିରହେ—ସେମାନଙ୍କର ଗଣନା କେହି ରଖେ ନାହିଁ । ଯାହାର ଦୃଷ୍ଟି ଯେତେ ଦୂରକୁ ସଞ୍ଚାଳିତ ହୁଏ, ସେ ସୌନ୍ଦର୍ଯ୍ୟର ପରାକାଷ୍ଠା ସେତେ ଅନୁଭବ କରିପାରେ । କ୍ଷୁଦ୍ର ପରିସର ମଧ୍ୟରେ ଅପାର୍ଥିବ ବିଷୟର ସନ୍ଧାନ ନେବା ପାଇଁ ମନୁଷ୍ୟ କଷ୍ଟ ବୋଧ କରେ; କିନ୍ତୁ ମହତ୍ତ୍ୱର ପରିକଳ୍ପନା ପାଇଁ ଯେ କ୍ଷୁଦ୍ରର ସୃଷ୍ଟି, ଏ କଥା ଆମ୍ଭେମାନେ ଭୁଲିଯାଉ । ଶିଶୁର ଧୂଳିଖେଳା ଭବିଷ୍ୟତ୍ ମାନବର କର୍ମମୟ ଜୀବନର ଭିତ୍ତିଭୂମି ହୁଏ । ଶୈଶବରତି ସୁଖକ୍ରୀଡ଼ା ବସ୍ତୁତିର ବେଷ୍ଟନୀକୁ କ୍ୱଚିତ୍ ଅତିକ୍ରମ କରେ । ଚପଳତାର ପରିଣତି ସାଧାରଣତଃ ବକ୍ରତାକୁ ଅନୁସରଣ କରେ; କିନ୍ତୁ ଏହାଦ୍ୱାରା ଜୀବନର ଯଥାର୍ଥ ଅନୁଭୂତି ଆସେ ନାହିଁ । ଗୋଟାଏ ବେଷ୍ଟନୀକୁ ଛାଡ଼ି ଦେଇ ମନୁଷ୍ୟ ଅପର ବେଷ୍ଟନୀରେ ଆବଦ୍ଧ ହୁଏ । ସଂସାର ପକ୍ଷରେ ଉପଯୁକ୍ତ ମୂଲ୍ୟ ନିରୂପଣ କରି ବିଷୟ ନିର୍ବାଚନ କରିବା ସବୁବେଳେ ସମ୍ଭବପର ହୁଏ ନାହିଁ । ତାର ଦୃଷ୍ଟିରେଖା ସାମାନ୍ୟ କେତେଟା ପଦାର୍ଥରେ ଅତିରିକ୍ତ ମାତ୍ରାରେ ସଂପୃକ୍ତ ହୋଇ ରହେ ଓ ଗୋଟାଏ ସାଧାରଣ କ୍ଷେତ୍ରରେ ସମଭାବାପନ୍ନ ବ୍ୟକ୍ତିମାନେ ମିଳିତ ହୋଇ ଯେଉଁ ପ୍ରତିଯୋଗିତା ଆରମ୍ଭ କରନ୍ତି, ସେଥିରେ ଗୋଟାଏ ବେଷ୍ଟନୀ ସ୍ୱତଃ ସୃଷ୍ଟ ହୋଇଉଠେ ।

ପ୍ରତିଯୋଗିତାରେ ଯେଉଁମାନେ ସଫଳକାମ ହୁଅନ୍ତି, ସେମାନେ ସାଧାରଣତଃ ସ୍ୱାର୍ଥର ଅଧୀନ ଥା'ନ୍ତି । ଅନ୍ୟ କେହି ସେମାନଙ୍କ ସମକକ୍ଷ ହେବା ଭାବ ସେମାନେ ସହ୍ୟ କରିପାରନ୍ତି ନାହିଁ । ସେମାନେ ବିଶେଷତ୍ୱ ରଖି ଗୋଟାଏ ପାରିପାର୍ଶ୍ୱିକ ଅବସ୍ଥା ସୃଷ୍ଟି କରନ୍ତି । ଏପରି ଅବସ୍ଥା ସୃଷ୍ଟ ହେବା ଅସଙ୍ଗତ ନୁହେଁ । ଜଗତର ଆକର୍ଷଣ ଏହାରି ଉପରେ ଅନେକ ପରିମାଣରେ ନିର୍ଭର କରେ । ମନୁଷ୍ୟ ବଡ଼ ହେବ ବୋଲି ଆଶା କରେ; କିନ୍ତୁ ତାର ବଡ଼ ହେବାର ଯୋଗ୍ୟତା ସାଂସାରିକ ବେଷ୍ଟନୀମାନଙ୍କୁ ଅତିକ୍ରମ କରିବାରେ ପରୀକ୍ଷିତ ହୁଏ । ଶୈଶବରୁ ବାର୍ଦ୍ଧକ୍ୟ ପର୍ଯ୍ୟନ୍ତ ମନୁଷ୍ୟ ଗତି କରେ; କିନ୍ତୁ ତାର ଗତି ପ୍ରାୟ ସବୁବେଳେ ପ୍ରତିହତ ହେଉଥାଏ । ବିଶେଷତଃ ବେଷ୍ଟନୀଗୁଡ଼ିକ ନ ଥିଲେ ମନୁଷ୍ୟ ଏପରି ବାଧା ପାଉ ନ ଥାନ୍ତା । ସରଳତା ଅନେକ ସମୟରେ ସଂସାର-ପଥରେ ବିରୋଧୀ ହୁଏ; ତେଣୁ ସୁଲଭ ପଦାର୍ଥକୁ ସଂସାରୀ ବେଶି ଆଦର କରେ ନାହିଁ । ଉନ୍ମାଦନାରେ ଗତି ଆଣିବା ପାଇଁ ବେଷ୍ଟନୀର ଉପକାରିତା ଉପଲବ୍ଧ ହୋଇଥାଏ; କିନ୍ତୁ ଉନ୍ମାଦନା ନ ଥିଲେ ଜୀବନର ସରସତା ରହନ୍ତା ନାହିଁ । ଏହି ସରସତା ରକ୍ଷା କରିବାକୁ ଜଗତ୍ ସର୍ବଦା ବ୍ୟଗ୍ର ଥାଏ ।

ସାଧନାର ସୁଦୃଢ଼ ଭିତ୍ତି ବେଷ୍ଟନୀ ଉପରେ ଅନେକ ପରିମାଣରେ ନିର୍ଭର କରେ । ବେଷ୍ଟନୀ ଦୁର୍ବଳ ହେଲେ ବାହ୍ୟ ପ୍ରଭାବ ସାଧନାର ପ୍ରତିକୂଳାଚରଣ କରେ । ଜଗତରେ ଯେତେ ମନୀଷୀଙ୍କର ଆବିର୍ଭାବ ଘଟିଅଛି, ସେମାନଙ୍କର ଜୀବନୀ ଆଲୋଚନା କଲେ ଜଣାଯିବ ଯେ, ଅଧିକାଂଶଙ୍କର କାର୍ଯ୍ୟକ୍ରମରେ ଗୋଟାଏ ବିଶେଷତ୍ୱ ଥାଏ । ସାଧାରଣ ଚକ୍ଷୁରେ ଯେଉଁ ଘଟଣାଗୁଡ଼ିକ କେବଳ ପ୍ରତିବନ୍ଧକ ବୋଲି ଗ୍ରହଣୀୟ ହୋଇପାରେ, ସେହିଗୁଡ଼ିକ ଅସାଧାରଣ ମାନବର କାର୍ଯ୍ୟାନୁଷ୍ଠାନରେ ବହୁ ପରିମାଣରେ ସହାୟତା କରନ୍ତି । ଜୀବନର ଜଟିଳ ଗତିରେ ସାଧାରଣ ମନୁଷ୍ୟ ସବୁବେଳେ ଅନୁକୂଳ ଅବସ୍ଥାକୁ ଲକ୍ଷ୍ୟ କରି ରହେ । ନିଜର ଇଚ୍ଛାନୁଯାୟୀ ବେଷ୍ଟନୀଟିଏ ପାଇଲେ ସେ ଆନନ୍ଦ ଅନୁଭବ କରେ । ଜଗତ୍ ସହିତ ତାର ସମ୍ପର୍କ ସଂଶ୍ଳିଷ୍ଟ ହୁଏ, ଗୋଟାଏ ସ୍ୱାର୍ଥଜଡ଼ିତ ଦିଗରେ । ସେ ଅନ୍ୟ କୌଣସି ବିଷୟରେ ବିଶେଷ ଆସ୍ଥା ସ୍ଥାପନ କରେ ନାହିଁ । ତାର ବେଷ୍ଟନୀଟି ଏପରି ଗଢ଼ି ହୋଇ ଉଠେ ଯେ, ଦୃଷ୍ଟି ସଞ୍ଚାଳନ କରିବାକୁ ତାକୁ ଗୋଟାଏ ଦିଗରେ ଅବସର ମିଳେ । ସାଂସାରିକ କାର୍ଯ୍ୟ ସମ୍ପାଦନରେ ଏପରି ଏକଦେଶଦର୍ଶୀ ହେବା ସମୀଚୀନ ହୋଇପାରେ; କିନ୍ତୁ ଯେଉଁମାନଙ୍କର ଚିନ୍ତାଧାରା ପ୍ରଚଳିତ ରୀତିକୁ ଅତିକ୍ରମ କରେ, ସେମାନଙ୍କର କାର୍ଯ୍ୟ-ପ୍ରଣାଳୀରେ ଗୋଟାଏ ନୂତନତ୍ୱ ଲକ୍ଷିତ ହୁଏ । ସେମାନେ ଯେଉଁ ପାରିପାର୍ଶ୍ୱିକ ଅବସ୍ଥା ସୃଷ୍ଟି କରନ୍ତି, ତାହା ସାଧାରଣ ସାଂସାରିକ ଜୀବନର ବିରୋଧୀ ହୁଏ । ଏହି ବିରୁଦ୍ଧ ବେଷ୍ଟନୀ ସଂସାରୀର ବୋଧଗମ୍ୟ ହୁଏ ନାହିଁ; ତେଣୁ ମହତ୍ ଲୋକର କାର୍ଯ୍ୟ ସହଜରେ ଅନୁସୃତ ହୋଇପାରେ ନାହିଁ । ବେଗବତୀ ନଦୀର ପ୍ରବଳ ପ୍ରବାହ ଅନନ୍ତ ସାଗର ସଙ୍ଗମରେ ଗୋଟାଏ ବିରାଟ ସମାନତା ସୃଷ୍ଟି କରେ; କିନ୍ତୁ ସମସ୍ତ ସମୟରେ ଯେଉଁ ଉଚ୍ଛ୍ୱଳ ଜଳ-କଲ୍ଲୋଳ ଉଠେ, ତାହା ସେହି ସମତାକୁ ଲୋପ କରିଦିଏ । ଜୀବନର ଧାରାବାହିକ ପର୍ଯ୍ୟାୟରେ ଯେତେବେଳେ ଜଡ଼ତା ଆସେ, ସେତେବେଳେ ପ୍ରାକୃତିକ ନିୟମକୁ ଅନୁସରଣ କରି ଗୋଟାଏ ସ୍ପନ୍ଦନ ହୁଏ । ଏହି ସ୍ପନ୍ଦନକୁ କେହି କେହି ଅସ୍ୱାଭାବିକ ବୋଲି ମନେକରି ପାରନ୍ତି; କିନ୍ତୁ ଜଗତରେ କୌଣସି ଘଟଣା ଅନାହୂତ ଭାବରେ ସଂଘଟିତ ହୁଏ ନାହିଁ । ଶାନ୍ତ ବାୟୁମଣ୍ଡଳ ପ୍ରଖର ସୂର୍ଯ୍ୟକିରଣ ପ୍ରଭାବରେ ପ୍ରବଳ ଝଡ଼ ସୃଷ୍ଟି କରେ । ଜାଗତିକ କାର୍ଯ୍ୟ ସବୁବେଳେ ଗୋଟିଏ ରୀତିରେ ଆଚରିତ ହୁଏ ନାହିଁ । କାଳର ପ୍ରଭାବ ସଙ୍ଗେ ମନୀଷୀମାନଙ୍କର ପ୍ରେରଣା ମିଶି ଗୋଟାଏ ନୂତନତ୍ୱ ସୃଷ୍ଟି କରେ । ଏହାକୁ ସାଧାରଣତଃ ଆମ୍ଭେମାନେ ଯୁଗୋଚିତ ପରିବର୍ତ୍ତନ ଆଖ୍ୟା ଦେଇଥାଉଁ ।

ଯେଉଁମାନେ ପ୍ରେରଣା ଦେଇ ପରିବର୍ତ୍ତନର ସୂତ୍ରପାତ କରାନ୍ତି, ସେମାନେ ପ୍ରାୟ ପ୍ରଚଳିତ ଦେଶାଚାରକୁ ଲକ୍ଷ୍ୟ କରନ୍ତି ନାହିଁ । ମନୁଷ୍ୟର ଅନ୍ତର୍ନିହିତ ସ୍ୱାଧୀନ ଭାବ ସେମାନଙ୍କର କ୍ରିୟାକଳାପରେ ପ୍ରକାଶିତ ହେବା ପାଇଁ ଯଥେଷ୍ଟ ସୁବିଧା ପାଏ । ସେମାନେ ସାଧାରଣ ବେଷ୍ଟନୀରେ ଆବଦ୍ଧ ହୁଅନ୍ତି ନାହିଁ । ଜୀବନର ଗତିରେ ଗୋଟାଏ ବିପ୍ଳବ ଆଣିବା ପାଇଁ ସେମାନଙ୍କର ସାଧନା ନିୟୋଜିତ ହୁଏ । ବିପ୍ଳବୀ ସବୁଦିନେ ବିପ୍ଳବୀ ହୋଇ ରହେ ନାହିଁ । ଝଡ଼ ବହିଯାଏ, କେତେ ଉତ୍ପାତ କରେ; କିନ୍ତୁ ଶେଷରେ ପ୍ରକାଶ କରେ—ଗୋଟିଏ ସୁନ୍ଦର ଶାନ୍ତ ପ୍ରାକୃତିକ ଚିତ୍ର । ବିପ୍ଳବୀ ବନ୍ଦୀ ହୁଏ, କେତେ ନିର୍ଯ୍ୟାତନା ଭୋଗ କରେ; କିନ୍ତୁ ବୀରପୂଜାର ଉତ୍କୃଷ୍ଟ ସାମଗ୍ରୀ ତାହାରି ପାଇଁ ସଂଗୃହୀତ ହୋଇ ରହେ । ଦିନେ ଆସେ, ଯେତେବେଳେ ବିଦ୍ରୋହ-ବହ୍ନିରେ ସାଧନାର ମନ୍ତ୍ର ଶାନ୍ତି-ବାରି ସେଚନ କରେ । ଅସଂଖ୍ୟ ବେଷ୍ଟନୀ ନଷ୍ଟ କରି ସେହି ବୀର ସାଧକର କର୍ମମାର୍ଗ ଗୋଟାଏ ନୂତନ

ପଥର ସୂଚନା ଦିଏ । ଏ ପଥରେ ଗତି କରିବା ପାଇଁ ଜଗଦ୍‌ବାସୀ ଅଗ୍ରସର ହୁଅନ୍ତି; କିନ୍ତୁ ଯେତେବେଳେ ସାଧକର ସୃଷ୍ଟ ବେଷ୍ଟନୀଟି ଦୁର୍ବଳ ହୋଇଯାଏ, ସେତେବେଳେ ବାହ୍ୟ ପ୍ରଭାବ ପୁଣି ଆସି ବିରୁଦ୍ଧାଚରଣ କରେ ।

ବେଷ୍ଟନୀ ସମ୍ଭୋଗର ସରଣୀ । ପ୍ରସ୍ଫୁଟିତ ପୁଷ୍ପର ସୁଗନ୍ଧ ଗ୍ରହଣ କରିବାପାଇଁ ସମସ୍ତଙ୍କ ପ୍ରାଣରେ ଗୋଟାଏ ବ୍ୟଗ୍ରତା ଥାଏ; କିନ୍ତୁ ପୁଷ୍ପ କାହିଁକି କଣ୍ଟକାବୃତ ହୋଇ ରହେ ? ଜଗତରେ ଯେ ସୁନ୍ଦର ଓ ସରସ, ତାକୁ ବେଶି ସଙ୍କୁଚିତ କରେ କିଏ ? ଅସାମାନ୍ୟ ରୂପବତୀ ଲଳନା ଯୌବନର ଉଦ୍ଦାମ ସୌନ୍ଦର୍ଯ୍ୟକୁ ଧାରଣ କରି ଅନ୍ତଃପୁରରେ ଅବରୁଦ୍ଧ ହୋଇ ରହେ । ଯାହାର ରୂପଲାବଣ୍ୟରେ ଜଗତ ମୋହିତ ହୋଇପାରେ, ତାହାର ମୁକ୍ତି ପାଇଁ ସମାଜର କଅଣ କ୍ରୂର ଦୃଷ୍ଟି ଦେଖାଇବା ଉଚିତ ? ସୌନ୍ଦର୍ଯ୍ୟକୁ କେହି କେହି ଧରି ରଖିପାରେ ନାହିଁ । ତେବେ କଅଣ ସୁନ୍ଦରୀର ସୌନ୍ଦର୍ଯ୍ୟଟିକୁ ଘୋଡ଼ାଇ ରଖିବାପାଇଁ ଅନ୍ତଃପୁରର ସୃଷ୍ଟି ଗୋଟାଏ ବ୍ୟର୍ଥତା ? ମନୁଷ୍ୟର କର୍ମ ବ୍ୟର୍ଥତାକୁ ଲକ୍ଷ୍ୟ କରି ଆରବ୍ଧ ହୁଏ ନାହିଁ । ସୌନ୍ଦର୍ଯ୍ୟାନୁଭୂତିରେ କ୍ଷିପ୍ରତାକୁ ଦୂର କରିବାକୁ ହୁଏ । ହୃଦୟର ଅତ୍ୟଧିକ ବ୍ୟଗ୍ରତାକୁ କମାଇ ନ ଦେଲେ କୌଣସି ପଦାର୍ଥର ପ୍ରକୃତ ମୂଲ୍ୟ ନିରୂପିତ ହୁଏ ନାହିଁ । ସୌନ୍ଦର୍ଯ୍ୟ ପ୍ରତି ଗୋଟିଏ ଲାଳସା ଜନ୍ମିଲେ ମନୁଷ୍ୟର ପଶୁତ୍ୱ ପ୍ରବଳ ହୋଇଉଠେ । ଯେଉଁମାନଙ୍କର ସୌନ୍ଦର୍ଯ୍ୟ-ଦୃଷ୍ଟି କୌଣସି ଆଶ୍ରୟକୁ ଅପେକ୍ଷା ରଖେ ନାହିଁ, ସେମାନେ ଉପର୍ଯ୍ୟୁକ୍ତ ମତକୁ ଗ୍ରହଣ କରିବେ ନାହିଁ; କିନ୍ତୁ ଜଗତରେ ସେମାନଙ୍କର ସଂଖ୍ୟା କେତେ ? ରୂପଜ ଆସକ୍ତିରେ ସୌନ୍ଦର୍ଯ୍ୟଜ୍ଞାନ ଥାଏ । ଉପଯୁକ୍ତ ବେଷ୍ଟନୀଦ୍ୱାରା ଆବୃତ ହେଲେ ଆସକ୍ତିର ମାତ୍ରା କ୍ରମଶଃ ଅପସୃତ ହୋଇପାରେ । ଅବଗୁଣ୍ଠନବତୀ ରମଣୀର ସୌନ୍ଦର୍ଯ୍ୟ ଉଚ୍ଛଳ ଯୌବନକୁ ଅନେକ ପରିମାଣରେ ପ୍ରଶମିତ କରେ । ଆସକ୍ତିରେ ଗୋଟାଏ ଉନ୍ମାଦନା ଥାଏ; କିନ୍ତୁ ବେଷ୍ଟନୀଟି ହୁଏ, ଏହାର ପ୍ରତିବନ୍ଧକ । ଅମୂଲ୍ୟ ରତ୍ନର ଅଧିକାରୀ ମନରେ ଗୋଟାଏ ଗର୍ବ ଅନୁଭବ କରେ; କିନ୍ତୁ ଏହି ଅନୁଭୂତି-ରତ୍ନଟି ହଜିଯିବା ସଙ୍ଗେ ଚାଲିଯାଏ । ଯଦି ସୌନ୍ଦର୍ଯ୍ୟକୁ କେବଳ ଭୋଗ ଉଦ୍ଦେଶ୍ୟରେ ଗ୍ରହଣ କରାଯାଏ ଓ କାମିନୀ-କାଞ୍ଚନର ସମାବେଶରେ ଐଶ୍ୱର୍ଯ୍ୟର ପ୍ରଭୁତ୍ୱ ପ୍ରତିପାଦିତ ହୁଏ, ତାହା ହେଲେ ମଧ୍ୟ ଅନ୍ତଃପୁରବାସିନୀ ସୁନ୍ଦରୀର ଅବରୁଦ୍ଧ ହୋଇ ରହିବା ବାଞ୍ଛନୀୟ । ସୌନ୍ଦର୍ଯ୍ୟର ଅପବ୍ୟବହାର କରି କେହି କେବେ ସୌନ୍ଦର୍ଯ୍ୟ-ପିପାସା ମେଣ୍ଟାଏ ନାହିଁ । ସୌନ୍ଦର୍ଯ୍ୟରକ୍ଷା ମନୁଷ୍ୟର ଗୋଟିଏ ଧର୍ମ । ଏହି ଧର୍ମ ପାଳନ ପାଇଁ ବେଷ୍ଟନୀର ଆଶ୍ରୟ ନେବାକୁ ହୁଏ ।

ଭେଦନୀତି ବେଷ୍ଟନୀର ଅନୁଗାମିନୀ । କ୍ଷେତ୍ରର ଭିନ୍ନତା ଅନୁଯାୟୀ ବେଷ୍ଟନୀକୁ ନାନା ଶ୍ରେଣୀରେ ବିଭକ୍ତ କରାଯାଇପାରେ । ଗୋଟିକର ପୁଷ୍ଟିସାଧନ ସକାଶେ ଅପରଟିକୁ ଟିକିଏ ବ୍ୟବଧାନରେ ରଖାଯାଏ । ଅନେକ ସମୟରେ ଦୁଇଟି ସମକାଳୀୟ ପ୍ରାଣୀ ଏକ ବେଷ୍ଟନୀ ମଧ୍ୟରେ ରହି ସମପ୍ରଣାଳୀରେ ପୁଷ୍ଟିଲାଭ କଲେ ସୁଦ୍ଧା ଗୋଟାଏ ପାର୍ଥକ୍ୟ ସେମାନଙ୍କ ମଧ୍ୟରେ ଦୃଷ୍ଟ ହୁଏ । ଯମଜ ସନ୍ତାନଙ୍କର ଭବିଷ୍ୟତ ଜୀବନ ଗୋଟାଏ ସମାନ ଗତିରେ ଅତିବାହିତ ହୁଏ ନାହିଁ । ବିଦ୍ୟାଳୟରେ ସମାନ ପଦ୍ଧତିରେ ସବୁ ଛାତ୍ରମାନେ ଶିକ୍ଷା ପାଆନ୍ତି; କିନ୍ତୁ କେତେଜଣଙ୍କର ଭବିଷ୍ୟତ ଜୀବନରେ ଅତୀତର ଶିକ୍ଷା ସମାନ ଫଳଦାନ କରେ ? ଆଧୁନିକ ଯୁଗରେ ବିଜ୍ଞାନର କ୍ରିୟା-କୌଶଳ ସମସ୍ତଙ୍କୁ ଅନୁପ୍ରାଣିତ କରୁଅଛି । ଯାହା ବିଜ୍ଞାନସମ୍ମତ ନୁହେଁ, ତାହା ସଭ୍ୟ ମାନବର ଗ୍ରହଣୀୟ ନୁହେଁ ବୋଲି ଅନେକେ କହୁଥାନ୍ତି; କିନ୍ତୁ ଏହି ବିଜ୍ଞାନ ବଳରେ ଓ ସାମ୍ୟ ସ୍ଥାପନ ଛଳରେ ଯେଉଁ ଭେଦନୀତି ପ୍ରଚାର କରାଯାଉଅଛି, ତାହା ପ୍ରତ୍ୟେକ ଚିନ୍ତାଶୀଳ ବ୍ୟକ୍ତି ଅନୁଭବ କରିପାରିବେ । ଜାତିଗତ ସ୍ୱାର୍ଥକୁ ପ୍ରଚ୍ଛନ୍ନ ରଖି ଜଗତରେ ବଡ଼ ହେବାର ଆଶା ପୋଷଣ ନ କରନ୍ତି, ଏପରି ସଭ୍ୟଜାତି ଆଜି ବିରଳ । ବୈଜ୍ଞାନିକ ସାଧନାକୁ ଗୁପ୍ତ ମାରାତ୍ମକ ଅସ୍ତ୍ରଶସ୍ତ୍ର ନିର୍ମାଣ କରିବାରେ ନିୟୋଜିତ କରିବା ଗୋଟିଏ ଉତ୍କୃଷ୍ଟ ଉପାୟ ହେଲାଣି । ଭେଦଭାବ ଦୂର କରିବା ଗୋଟାଏ କଥା ମାତ୍ର । କାର୍ଯ୍ୟରେ ବିପରୀତ ମାର୍ଗାବଲମ୍ବନ କରିବା ହେଲା ପ୍ରଚଳିତ ନୀତି । ଆଜିକାଲିର ସଭ୍ୟତା ବେଷ୍ଟନୀର କାଠିନ୍ୟକୁ ପସନ୍ଦ କରେ ନାହିଁ । ପର୍ଦ୍ଦାଟିଏ ରହିବ; କିନ୍ତୁ ତାହା ରୁକ୍ଷ ନ ହୋଇ ମସୃଣ ହେଲେ ଯୁଗୋଚିତ ରୁଚି ସଙ୍ଗେ ବାଧା ଦେବ ନାହିଁ । ବର୍ତ୍ତମାନ ରାଷ୍ଟ୍ରନୀତି ସାମ୍ୟ ପ୍ରଚାର କଲାବେଳେ ଯେଉଁ କ୍ଷୁଦ୍ର ପ୍ରକୋଷ୍ଠଗୁଡ଼ିକର ସୃଷ୍ଟି କରେ ଓ ସେଥିରେ ଯେତେ ଦଳଗତ ମତର ପୁଷ୍ଟି ପାଇଁ ସୁବିଧା ଦିଏ, ତାହା ଅତୀତରେ ଅଜ୍ଞାତ ଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ବେଷ୍ଟନୀର ପ୍ରଭାବ ଭେଦନୀତି ସହିତ ଅତିମାତ୍ରାରେ ସଂପୃକ୍ତ ହୋଇ ରହେ । ଜାତିଗତ ବିଦ୍ୱେଷ ହେତୁ ବେଷ୍ଟନୀର ଅପକାରିତା ଉପଲବ୍ଧି କଲାବେଳେ ଜାତିର ଶକ୍ତିସଂଚୟ ପାଇଁ ଏହା ଯେ ଅତ୍ୟନ୍ତ ଆବଶ୍ୟକ, ଏହା କେହି ଅସ୍ୱୀକାର କରିବେ ନାହିଁ ।

ଗଠନକ୍ରିୟାର ସୌଷ୍ଠବ ପାଇଁ ବେଷ୍ଟନୀର ବିଧାନ ହୋଇଥାଏ । ଜଗତରେ ଭଙ୍ଗାଗଢ଼ା ଲାଗି ରହିଛି । କେତେବେଳେ ଭଲ ପଦାର୍ଥଟିଏ ଭାଙ୍ଗିଯାଉଛି, ତାହା ପରିବର୍ତ୍ତିରେ ମନ୍ଦ ପଦାର୍ଥଟିଏ ଗଢ଼ି ହୋଇ ଉଠୁଛି । ଅନେକ ସମୟରେ ବେଷ୍ଟନୀର ଦୋଷ କିମ୍ବା ଗୁଣ ସହିତ ବେଷ୍ଟନୀ ଅନ୍ତର୍ଭୁକ୍ତ ପଦାର୍ଥର କୌଣସି ସାମଞ୍ଜସ୍ୟ ରହେ ନାହିଁ । ଏତେ ବିଭ୍ରାଟରେ ସୁଦ୍ଧା ପ୍ରତ୍ୟେକର ଗୋଟାଏ ବେଷ୍ଟନୀ ଅଛି । କ୍ଷୁଦ୍ର ଓ ମହତ୍ ପାଇଁ ବିଭିନ୍ନ ବେଷ୍ଟନୀ ଥାଇପାରେ; କିନ୍ତୁ ସେଗୁଡ଼ିକ ସମକାଳୀୟ ଅଟନ୍ତି । ଦୀନ କୃଷକଟିଏ ଗୋଟିଏ ପଲ୍ଲୀରେ ତାର ସମସ୍ତ ଜୀବନକାଳ କଟାଇଦିଏ; ଜଗତର କୌଣସି ସମ୍ବାଦ ସେ ରଖେ ନାହିଁ କିମ୍ବା ଜଗତରେ କେହି ତାକୁ ଗଣନା କରେ ନାହିଁ । ପଲ୍ଲୀର କ୍ଷୁଦ୍ର କୁଟୀରଖଣ୍ଡିକରେ ତାର ସବୁ ଆଶା ଜଡ଼ିତ ଥାଏ । ଜଗତରେ ସେ ବଡ଼ ହେବ ବୋଲି ଆଶା ପୋଷଣ କରେ ନାହିଁ; କାରଣ ତାର ବେଷ୍ଟନୀଟି ଏଡ଼େ କ୍ଷୁଦ୍ର ଯେ, ବାହାରର କୌଣସି ବଡ଼ ପଦାର୍ଥକୁ ସେ ନିଜର ଧାରଣା ମଧ୍ୟରେ ଆଣିପାରେ ନାହିଁ । ଏପରି ଜୀବନରେ ମଧ୍ୟ ବ୍ୟତିକ୍ରମ ଦେଖାଯାଇଥାଏ । ଦୀନ କୃଷକ କୌଣସି ସମୟରେ ଜଗତରେ ଅତି ଉଚ୍ଚ ସ୍ଥାନ ଅଧିକାର କଲେ ଜୀବନର ସେହି ପରିବର୍ତ୍ତନ ସଙ୍ଗେ ବେଷ୍ଟନୀର ମଧ୍ୟ ପରିବର୍ତ୍ତନ ଘଟେ । ନିଉଟନ୍‌ଙ୍କର ଜ୍ଞାନ-ଗରିମା ଯେତେବେଳେ ଜଗଦ୍‌ବାସୀ ଜାଣିପାରିଲେ, ସେତେବେଳେ ସେ ଆଉ କୃଷିଜୀବୀ ବୋଲି ପରିଚିତ ହେଲେ ନାହିଁ । ଜନ୍ମଗତ ବେଷ୍ଟନୀ ସମସ୍ତଙ୍କର ଅଛି । ରାଜାଧିରାଜଠାରୁ ଆରମ୍ଭ କରି ଦୀନ କୃଷକ ପର୍ଯ୍ୟନ୍ତ ସମସ୍ତେ ଭିନ୍ନ ଭିନ୍ନ ବେଷ୍ଟନୀରେ ଆବଦ୍ଧ ରହନ୍ତି । ବଂଶପରମ୍ପରା ବୃତ୍ତି ଆଚରଣ କରି ଜୀବନ କଟାଇବାକୁ ଅଧିକାଂଶ ଭଲ ମନେ କରନ୍ତି; ତେଣୁ ସେମାନଙ୍କର ବେଷ୍ଟନୀରେ କୌଣସି ପରିବର୍ତ୍ତନ ଆସେ ନାହିଁ । ଦରିଦ୍ର କୃଷକ କିମ୍ବା ଧନ-କୁବେର ମଧ୍ୟରେ ଯେଉଁ ବ୍ୟବଧାନ ଦେଖାଯାଏ, ତାହା କେବଳ ବେଷ୍ଟନୀଗତ । ଦୁହିଙ୍କର ବେଷ୍ଟନୀକୁ ଅନ୍ତର କରିଦେଲେ କେହି କାହାରିଠାରୁ ବଡ଼ ବୋଲି ସହଜରେ ବିବେଚିତ ହୋଇପାରିବେ ନାହିଁ; କିନ୍ତୁ ଉଲ୍ଲିଖିତ ବ୍ୟତିକ୍ରମ ବିଷୟ ଆଲୋଚନା କଲେ ଜଣାଯିବ ଯେ, କ୍ଷୁଦ୍ର ଯେଉଁଠାରେ ମହତ୍ ହୁଏ, ସେଠାରେ ବେଷ୍ଟନୀ-ପ୍ରଭାବ ଅଳ୍ପ ପରିମାଣରେ କାର୍ଯ୍ୟ କରିଥାଏ । ସଂଖ୍ୟାତୀତ ବେଷ୍ଟନୀ ମନୁଷ୍ୟକୁ ଘେରି ରହିଛି । ଧନ କିମ୍ବା ଯଶଃ ଅର୍ଜନ କଲେ ମଧ୍ୟ ଏଥିରୁ ନିଷ୍କୃତି ମିଳେ ନାହିଁ । କେବଳ ତାର ପଥ ବିସ୍ତୃତ ହୋଇଯାଏ । ଏହି ବିସ୍ତୃତି ସଙ୍ଗେ ପ୍ରକୃତ ମନୁଷ୍ୟତ୍ୱର ବିଶେଷ ସମ୍ପର୍କ ନାହିଁ । ଅନେକ ହୀନଦଶାପନ୍ନ ଲୋକ ଟିକିଏ ଭଲ ଅବସ୍ଥା ପାଇଲାକ୍ଷଣି ଗୋଟାଏ ସ୍ୱତନ୍ତ୍ର ବେଷ୍ଟନୀ ଗଢ଼ିବାକୁ ଚାହାନ୍ତି । ମହତ୍ତ୍ୱ ଦେଖାଇବା ଛଳରେ ଏମାନେ କେତେଗୁଡ଼ିଏ ସହଚର ଅନ୍ୱେଷଣରେ ରହନ୍ତି । ସହଚରମାନଙ୍କର ସ୍ୱଭାବକୁ ଲକ୍ଷ୍ୟ ରଖି ସେମାନେ ବେଷ୍ଟନୀ ଗଢ଼ନ୍ତି; କାରଣ ବିପରୀତ କିମ୍ବା ଉତ୍କୃଷ୍ଟ ସ୍ୱଭାବର ଲୋକ ଯଦି ସହଚର ଶ୍ରେଣୀଭୁକ୍ତ ହୁଅନ୍ତି, ତାହାହେଲେ ସବୁ ପଣ୍ଡ ହୋଇଯିବାର ଆଶଙ୍କା ଥାଏ । ବର୍ତ୍ତମାନ ଯୁଗରେ ପ୍ରବଞ୍ଚନାର ଅଭାବ ନାହିଁ; ମହତ୍ତ୍ୱ ଦେଖାଇବା ଲୋକମାନଙ୍କ ସଂଖ୍ୟା ମଧ୍ୟ କମ୍ ନୁହେଁ । ଦେଶସେବକ, ସ୍ୱେଚ୍ଛାସେବକ ପ୍ରଭୃତି ପଦର ଅଭାବ ନାହିଁ; କିନ୍ତୁ ଦୁର୍ବଳତାକୁ ଘୋଡ଼ାଇ ରଖି ଯେଉଁ ବେଷ୍ଟନୀଟି ନିର୍ମାଣ କରିଥାନ୍ତି, ତାକୁ ନଷ୍ଟ କରିବା ପାଇଁ ବାହାରର କୌଣସି ପ୍ରଭାବ ପ୍ରଯୁକ୍ତ ହୁଏ ନାହିଁ । ଏହା ସ୍ୱତଃ ଉଭେଇଯାଏ । ନିଦାଘର ତପ୍ତ ଝଙ୍କାର ପରି ଏହା ଅଳ୍ପକାଳ ସକାଶେ ଗୋଟାଏ ଶୁଷ୍କତା ସୃଷ୍ଟି କରି ବିଲୀନ ହୋଇଯାଏ । ଶାନ୍ତ ଜଳାଶୟରେ ଉପଲଖଣ୍ଡ ନିକ୍ଷିପ୍ତ ହେଲା ମାତ୍ରେ ଯେପରି ଗୋଟିଏ କ୍ଷୁଦ୍ର ତରଙ୍ଗ ସୃଷ୍ଟ ହୋଇ ସମସ୍ତ ଜଳାଶୟକୁ ବ୍ୟାପିଯାଏ, ସେହିପରି ମନୁଷ୍ୟର ବେଷ୍ଟନୀଟି କ୍ରମଶଃ ପ୍ରସାର ଲାଭ କରିବା ବାଞ୍ଛନୀୟ । ଏଥିରେ ଦୁର୍ବଳତାର ଚିହ୍ନ ରହିବ ନାହିଁ; ମନୁଷ୍ୟତ୍ୱର ବିକାଶ ପକ୍ଷରେ ଏହାହିଁ ଗ୍ରହଣୀୟ ।

# ଅବସାଦ

ଜୀବନର ଅବସନ୍ନତାରେ ହୃଦୟର ଯେ ଭାବ ଫୁଟି ଉଠେ, ତାହା ଧାରାବାହିକ କାର୍ଯ୍ୟଗୁଡ଼ିକୁ କିଛିକ୍ଷଣ ପାଇଁ ନିଷ୍ପନ୍ଦ କରି ଗୋଟାଏ ନୂତନ ଭୂମିକା ସୃଷ୍ଟି କରେ । ଏହି ଭୂମିକାରେ ମାନବ ତାର ଅତୀତକୁ ଦେଖିନିଏ—କେତେ ଯୁଗର ସଞ୍ଚିତ କଳ୍ପନା—ପ୍ରଭାବରେ ହୃଦୟ ଯେ ଅଭାବ ଅନୁଭବ କରୁଥିଲା, ଘଟନାଚକ୍ରର ପରିବର୍ତ୍ତନରେ ସେହି ପ୍ରଭାବ ଗୋଟାଏ ବିରାମ ରଖି ଚାଲିଯାଇଛି । ସୁଖ-ଆଶାରେ ମନୁଷ୍ୟ ଯେ ଭାବ ଅନୁସରଣ କରି ଅଗ୍ରସର ହେଉଥିଲା, ତାକୁ ପୁଣି ଭିନ୍ନ ଭାବରେ ଗ୍ରହଣ କରିବା ପାଇଁ ଆକସ୍ମିକ ପ୍ରେରଣା ଆସି ହୃଦୟ-ତନ୍ତ୍ରୀରେ ନୂତନ ଏକ ରାଗିଣୀର ସନ୍ଧାନ ଦେଇଗଲା; କିନ୍ତୁ ସେହି ବିରାମର ସୂତ୍ରପାତ ହେଲା, ମନୁଷ୍ୟ ଜୀବନର ପଟପରିବର୍ତ୍ତନର ଗୋଟାଏ ସୂଚନା ।

ପୁଞ୍ଜୀଭୂତ ସୁଖ ଓ ଦୁଃଖର ଅନୁଭୂତି ଜଗତର ବୈଚିତ୍ର୍ୟକୁ ମନୁଷ୍ୟ ପ୍ରାଣରେ ପୂର୍ଣ୍ଣମାତ୍ରାରେ ସ୍ପର୍ଶ କରାଇଦିଏ ନାହିଁ; ତେଣୁ ମାନବୀୟ କ୍ରିୟାପ୍ରଣାଳୀରେ ବ୍ୟକ୍ତିଗତ ସ୍ୱାର୍ଥର ଛାୟା ବେଶି ପରିମାଣରେ ଦେଖାଯାଏ । ବିଶ୍ୱପ୍ରକୃତି ସହିତ ତାନ ମିଳାଇ ଗାଇବା ମାନବ-ପ୍ରାଣର ଆକାଙ୍‌କ୍ଷା ହୋଇପାରେ; କିନ୍ତୁ ଏହି ଆକାଙ୍‌କ୍ଷା ଜୀବନର ସୁଖ ଓ ଦୁଃଖରେ କିପରି ବିଚଳିତ ହୋଇଉଠେ, ତାହା ବ୍ୟକ୍ତିବିଶେଷଙ୍କର ଜୀବନୀ ଆଲୋଚନା କଲେ ଜଣାଯାଇପାରେ । ଉତ୍ତାଳ ତରଙ୍ଗ ଉଠିଲାବେଳେ ଜଳଭାଗର ବିଶିଷ୍ଟତା କେବଳ ଚଞ୍ଚଳତାରେ ଲକ୍ଷିତ ହୋଇଥାଏ । ସେହିପରି ଜୀବନ ଗୋଟିଏ କ୍ରିୟାର ଅଧୀନ ହେଲେ ମନୁଷ୍ୟର ଦୃଷ୍ଟି କୌଣସି ଏକ ନିର୍ଦ୍ଦିଷ୍ଟ ଦିଗରେ ଆବଦ୍ଧ ରହେ । ଉତ୍ସାହକୁ ଅତିମାତ୍ରାରେ ବ୍ୟୟ କଲେ ପ୍ରାଣର ସ୍ପନ୍ଦନ ବୃଦ୍ଧି ପାଏ ସତ୍ୟ; କିନ୍ତୁ କାହାର ଇଙ୍ଗିତରେ ଏହି ବ୍ୟାକୁଳତା ଦିନୁ ଦିନ ସତେଜ ହୋଇଉଠେ, ସେଥିପ୍ରତି କେହି ଲକ୍ଷ୍ୟ ରଖନ୍ତି ନାହିଁ । ଜଗତର ଭଲ ଓ ମନ୍ଦରେ ମନୁଷ୍ୟ ନିଜକୁ ଅସଂପୃକ୍ତ ରଖି ଯେ ଆଶ୍ୱସ୍ତି ପାଏ, ତାହା ତାର ସ୍ୱାର୍ଥପର ସ୍ୱଭାବର ଗୋଟାଏ ଲକ୍ଷଣ ହୋଇପାରେ; କିନ୍ତୁ ଅନ୍ୟ ପକ୍ଷରେ ନିଜତ୍ୱକୁ ପାସୋରି ଦେଲେ ଯେ ଉଦାର ଭାବ ପ୍ରକଟିତ ହୁଏ, ତାହା ଜୀବନର ସ୍ୱାଧୀନ ପଥ ଖୋଲିଦିଏ । ସଂସାରର ଜଞ୍ଜାଳ ଭିତରେ ଏହାକୁ ଖୋଜି ପାଇବା ପାଇଁ ମନୁଷ୍ୟ କେତେ ଥର ବ୍ୟଗ୍ର ହୋଇଉଠେ । ମନେ କରେ, ଏହାରି ସନ୍ଧାନରେ ସେ ଜୀବନର ସବୁ ଦୈନ୍ୟ ଭୁଲିଯିବ; କିନ୍ତୁ ପଦେ ପଦେ ବାଧା ଆସି ସବୁ ବିଫଳ କରି ଦେଇ ଚାଲିଯାଏ । ଗୋଟାଏ ନିମେଷ ଦୀର୍ଘ ଜୀବନକାଳ ମଧ୍ୟରେ ଅତି ତୁଚ୍ଛ ବୋଧ ହୋଇପାରେ; କିନ୍ତୁ ସେହି ନିମେଷକର ଦାଗ ହୃଦୟକୁ ଚିରକାଳ ପାଇଁ ବ୍ୟଥାର ସ୍ୱରରେ ହଜାଇ ଦେଇଯାଏ । ସଙ୍ଗୀତର ଲହରୀ ଖେଳି ଉଠେ, ଅନନ୍ତ ଆକାଶରେ ତାନର ମୂର୍ଚ୍ଛନା ମିଶିଯାଏ; କିନ୍ତୁ ରହି ଦେଇଯାଏ ଗୋଟିଏ କ୍ଷୀଣ ପ୍ରତିଧ୍ୱନି । ପ୍ରତିଧ୍ୱନିର ବାସ୍ତବତା କିମ୍ବା ସ୍ଥାୟିତ୍ୱ କେହି ପ୍ରାୟ ବୁଝନ୍ତି ନାହିଁ; କିନ୍ତୁ ହୃଦୟର ଭାବକୁ ଗୋଟାଏ ନୂତନ ଛାଞ୍ଚରେ ଗଢ଼ି ଦେବାପାଇଁ ଏହା ଯଥେଷ୍ଟ ସାହାଯ୍ୟ କରେ । ଜୀବନର ଦୁଃଖ ଦୂର କରିବାକୁ କିମ୍ବା ଅସହ୍ୟ ଭାବରେ ବିରାମ ଆଣିବାକୁ ମନୁଷ୍ୟ ଅତୀତ ଆଡ଼କୁ ଦୃଷ୍ଟି ଫେରାଇ ଦେଖେ—ହୃଦୟ-ତନ୍ତ୍ରୀରେ ଯେ ରାଗିଣୀ ଥରେ ମୁହୂର୍ତ୍ତକ ପାଇଁ ଝଙ୍କୃତ ହୋଇ ଉଠିଥିଲା, ତାହା କେଉଁଆଡ଼େ ବିଲୀନ ହୋଇଯାଇଛି; କିନ୍ତୁ ଗାନର ପ୍ରତିଧ୍ୱନି ପରି ରହିଛି କେବଳ ଗୋଟାଏ ଅସ୍ପଷ୍ଟ ସ୍ପନ୍ଦନ । ଯାହା ଥରେ ସରସ ଓ ସୁନ୍ଦର ବୋଲି ରୂପ ଘେନି ଚିଦାକାଶରେ ଭାସି ଉଠିଥିଲା, ତାକୁ କ୍ରୂର ଘଟନା-ଚକ୍ର ପୋଡ଼ାଇ ରଖିଛି; କିନ୍ତୁ ସ୍ମୃତିଟିକିକ ପ୍ରତିଧ୍ୱନି ପରି ପ୍ରାଣର ଆକର୍ଷଣକୁ ଇତସ୍ତତଃ କରିବାକୁ ତ୍ରୁଟି କରି ନାହିଁ । ଏହାରି ଫଳରେ କେତେ କ୍ଷଣଜନ୍ମା ପୁରୁଷଙ୍କ ଜୀବନ ବିଡ଼ମ୍ବିତ ହୋଇଅଛି ।

ବାଧା ଓ ନର୍ଯ୍ୟାତନା ହୃଦୟର ନଭୃତ ଦ୍ୱାରଟିକୁ ଅନେକ ସମୟରେ ଖୋଲିଦିଏ । କ୍ରମାଗତ ସୁଖ କିମ୍ବା ଦୁଃଖର ସ୍ରୋତ ଉଠିଲେ ଅନ୍ତର ତାର ପ୍ରଭାବରେ ନସ୍ତେଜ ହୋଇପଡ଼େ । କାହାର ଅସ୍ଥିର ଅନ୍ୱେଷଣରେ ମଧ୍ୟ ଏହା ସତେଜ ହୁଏ ନାହିଁ । ଗୋଟାଏ ହଠାତ୍ ବାଧା ଆସି ଜୀବନର ଅନୁସୃତ ଗତିକୁ ରୋଧ କଲେ ଯେ କ୍ଷୁବ୍ଧତା ଜନ୍ମେ, ତାହା ମନୁଷ୍ୟକୁ ଆତ୍ମପରୀକ୍ଷା ପାଇଁ ଅବସର ଦିଏ । କୌଣସି ଦ୍ରୁତଗାମୀ ଯାନ ଆକସ୍ମିକ ବାଧା ପାଇ ବର୍ତ୍ମ୍ୟସ୍ଖଳିତ ହେଲା ପରି ସମସ୍ତ ସମୟରେ ମନୁଷ୍ୟର କର୍ମ-ମାର୍ଗରେ ଗୋଟାଏ ବିଭ୍ରାଟ ଆସେ । ସ୍ୱତଃପ୍ରଣୋଦିତ ହୋଇ କେହି କେବେ ସୁଖ ବିନମୟରେ ଦୁଃଖକୁ ବରଣ କରେ ନାହିଁ; ବରଂ ଦୁଃଖର ଭାରକୁ ଭବିଷ୍ୟତ୍ ସୁଖ ପାଇବା ଆଶାରେ ମନୁଷ୍ୟ ଗ୍ରହଣ କରିନିଏ । ଜଗତର ହାହାକାର ଓ କ୍ରନ୍ଦନ ମଧ୍ୟରେ ଏହି ସୁଖ ପାଇବା ଆଶା ମନୁଷ୍ୟକୁ ଉଜ୍ଜୀବିତ କରି ରଖିଅଛି । ସମସ୍ତଙ୍କର ସକଳ ଆଶା ଯେ ସବୁ ସମୟରେ ପୂର୍ଣ୍ଣ ହୁଏ, ଏପରି ଭାବିବା ମଧ୍ୟ ଅନୁଚିତ । ଯୁଗ ପରେ ଯୁଗ ଆସି ଅତୀତରେ ମିଶି ଗଲଣି; କିନ୍ତୁ ହୃଦୟର ଅଭାବକୁ କେହି ଠିକ୍ ରୂପେ ଆଜି ପର୍ଯ୍ୟନ୍ତ ଅନୁସରଣ କରିପାରି ନାହିଁ ।

ଦୁଇ ଦିନ ପୂର୍ବେ ଯେ ଅଭାବ ମନକୁ ଅତିମାତ୍ରାରେ ବିକ୍ଷୋଭିତ କରୁଥିଲା, ବର୍ତ୍ତମାନ ହୁଏତ ତାହା ଭିନ୍ନ ଆକାର ଧାରଣ କଲଣି କିମ୍ବା ଅନ୍ୟ ଏକ ଅଭାବ ଆସି ତାର ସ୍ଥାନ ଅଧିକାର କଲଣି । ଏହି ଅଗଣିତ ପରିବର୍ତ୍ତନ ମଧ୍ୟରେ ହୃଦୟର ସ୍ଥିରତା ଆଣି ଜଗତକୁ ଗୋଟାଏ ଭାବରେ ଦେଖିବା ମଧ୍ୟ ଅସମ୍ଭବ । ବୋଧହୁଏ, ହୃଦୟର ଏହି ଚଞ୍ଚଳତା ମଧ୍ୟରେ ଯେ ପ୍ରଭାବ ଅଛି, ତାହା ମନୁଷ୍ୟ ଜାତିକୁ ଜଗତ୍ ପ୍ରତି ଟାଣି ରଖିଛି । ପ୍ରତ୍ୟେକ ପରିବର୍ତ୍ତନ ବେଳେ ଗୋଟାଏ ବାଧା କିଛିକ୍ଷଣ ପାଇଁ ଅନୁଭୂତ ହୋଇଥାଏ । ଏହିପରି ସହସ୍ର ବାଧା ଏଡ଼ି ପାରିଲେ ପ୍ରକୃତ ମନୁଷ୍ୟତ୍ୱର ପରିଚୟ ମିଳେ; ତେଣୁ ଜଗତର ଜଞ୍ଜାଳ ମଧ୍ୟରେ ଅନ୍ତରର ନଭୃତ କାମନାକୁ ଗୋଟାଏ ଆକସ୍ମିକ ଘଟନା-ସ୍ରୋତରେ ଭସାଇ ଦେଲେ ମନୁଷ୍ୟ ସହଜରେ ପଥଭ୍ରଷ୍ଟ ପଥିକର ଦଶା ଭୋଗ କରେ ।

ଜୀବନର ପ୍ରଧାନ ବନ୍ଧନ ଓ ଆନନ୍ଦାନୁଭୂତି ଯାହାକୁ ଅବଲମ୍ବନ କରି ମନୁଷ୍ୟକୁ ଜଗତ୍ ପ୍ରତି ଆକୃଷ୍ଟ କରି ରଖେ, ତାକୁ ଅନ୍ତର କରି ଦେଲେ କିଛିକ୍ଷଣ ପାଇଁ ଗୋଟାଏ ବିରାମ ଆସେ । ଏହାକୁ ମଧ୍ୟ ଅବସର ବୋଲି କୁହାଯାଇ-ପାରେ । ଅପରିମିତ ଉତ୍ସାହ ନଷ୍ଟ କରି ଜଣେ ଜଣକୁ ଅନୁସରଣ କରେ । ଅକାତରରେ ଜଗତର ସୁଖସମୃଦ୍ଧିକୁ ଉପେକ୍ଷା କରି ସେ ଦେଖେ—ଚକ୍ଷୁ ସମ୍ମୁଖରେ ଜଣକର ଅମଳ ସୌନ୍ଦର୍ଯ୍ୟ ପ୍ରାଣର ଉଦାମତା ଆଣି ଏତେ ଦିନଯାଏ ଯେ ସରସତାର ଉତ୍ସ ଉନ୍ମୁକ୍ତ କରି ରଖିଥିଲା, ତାହା ହଠାତ୍ ଲୋପ ପାଇଯାଇଛି କିମ୍ବା ଉତ୍ସଟି ଭିନ୍ନ ଦିଗରେ ଗତି କରି ପ୍ରାଣରେ ସ୍ପନ୍ଦନକୁ ଭିନ୍ନ ଗତିରେ ବାଜିବାକୁ ଇଙ୍ଗିତ କରୁଛି । ଜୀବନର ସାଥୀ କରିନେବାକୁ ଯାଇ ଜଣେ ଅନ୍ୟର ସବୁ ଦୋଷ ମାର୍ଜନା କରେ, ଶତ ଲାଞ୍ଛନା ଭୋଗ କରେ, ଜୀବନର ଗତି ପରିବର୍ତ୍ତନ କରିଦେଇ ଗୋଟାଏ ଅର୍ଥଶୂନ୍ୟ ଶୃଙ୍ଖଳତା ସୃଷ୍ଟି କରେ; କିନ୍ତୁ ଏସବୁ ମଧ୍ୟରେ ଗୋଟାଏ ମାତ୍ର ଆକର୍ଷଣ ଆତ୍ମଗୋପନ କରିଥାଏ, ଯାହାକୁ ଅନ୍ତର ଭୁଲିବାକୁ କୁଣ୍ଠିତ ହୁଏ ଓ ଯାହାର ସାମାନ୍ୟ ସ୍ମୃତିଟିକରେ ଜୀବନ ପଲ୍ଲବିତ ହୋଇଉଠେ । ସମସ୍ତ ସମୟରେ ଗୋଟିଏ ଚ୍ଛେଦ ଆସି ଜୀବନ-ଯବନିକାକୁ ଭିନ୍ନ ଭାବରେ ପତନ କରି ଦେଇଯାଏ । ଏଠାରେ ଯେ ବିରାମ ଆସେ, ସେଥିରେ ଆଉ ଉଦ୍ଦୀପନାର ସମ୍ଭାବନା ଥାଏ ନାହିଁ । ପବିତ୍ର ପ୍ରଣୟୋଚ୍ଛ୍ୱାସରେ ଆକସ୍ମିକ ବିଡ଼ମ୍ବନା ଆସି ଗୋଟାଏ ସ୍ତବ୍ଧତା ସୃଷ୍ଟି କରି ଦେଇ ଗଲେ ସେଥିରେ ସମସ୍ତ ଜୀବନଟା ନୈରାଶ୍ୟରେ କଟିଯାଏ । କୈଶୋର କିମ୍ବା ଯୌବନର ସୁଖ-କଳ୍ପନା ଜୀବନ-ଯବନିକାକୁ ଯେ ରଙ୍ଗରେ ରଞ୍ଜିତ କରିଥାଏ, ତାହା ଘଟନା-ଚକ୍ରର ନିଷ୍ଠୁର ପରିବର୍ତ୍ତନରେ ଗୋଟାଏ ଭଯ୍ୱାବହ ଆବିଳତା ସୃଷ୍ଟି କରି ଜୀବନଟାକୁ ଗୋଟାଏ ମରୁଭୂମିରେ ପରିଣତ କରିଦିଏ ।

ଅବସାଦ ସୌନ୍ଦର୍ଯ୍ୟ-ବିକାଶରେ ସାହାଯ୍ୟ କରିଥାଏ । ଚନ୍ଦ୍ରକାନ୍ତିଜାତ ନର୍ଜନ ନଶୀଥିନୀରେ କୋକିଳର କୂଜନ ବିରହୀ ପ୍ରେମିକ ମନରେ ଯେ ଭାବାନ୍ତର ଆଣେ, ତାହା ଅଧିକାଂଶ ସମୟରେ ଜୀବନକୁ ଅବଶ କରିଦିଏ । ଚଞ୍ଚଳା ତଟିନୀ ଗିରିକନ୍ଦରରେ କୁଳୁକୁଳୁ ରବରେ ବହିଯାଏ; କିନ୍ତୁ ଯେଉଁ ଅବ୍ୟକ୍ତ ଭାବର ମୂର୍ଚ୍ଛନା ଦିଏ, ସେଥିରେ ହୃଦୟର ସ୍ପନ୍ଦନ ଶିଥିଳ ହୋଇପଡ଼େ । ଦର୍ଶକ ସେଠାରେ ଦେଖେ—ଗୋଟାଏ ସରଳ ପ୍ରାଣର ପ୍ରତିବିମ୍ବ । ଉଦାମତା ଛାଡ଼ି ମନ ଯେତେବେଳେ

ସରଳତା ଆଡ଼କୁ ଗତି କରେ, ସେତେବେଳେ ପ୍ରାକୃତିକ କ୍ରିୟା ସହିତ ସେ ଅସମ୍ପୃକ୍ତ ରହିପାରେ ନାହିଁ । ଅବସନ୍ନତାରେ ନିଜତ୍ୱ ଭୁଲିଯିବା ସମ୍ଭବପର ହୋଇପାରେ; କିନ୍ତୁ ହୃଦୟର ଅବଲମ୍ବନକୁ ଦୁର୍ବଳ କରି ଭିନ୍ନ ରଙ୍ଗରେ ଆଙ୍କି ଦେଲେ ଜୀବନ ଅତି ତୁଚ୍ଛ ବୋଧହୁଏ । ପ୍ରକୃତ ସୌନ୍ଦର୍ଯ୍ୟ ଉପଭୋଗରେ ମତ୍ତତା ନାହିଁ; ତେଣୁ ସେହି ଅବଲମ୍ବନକୁ ଦୁର୍ବଳ ନ କରି ଅନ୍ତର କରିଦେବା ଉଚିତ । ଏପରି କରିବାଦ୍ୱାରା ଗୋଟାଏ ଅବସାଦ ଆସେ । ମନୁଷ୍ୟ ଜୀବନରେ ଅନେକ ଘଟନା ଘଟେ—କେତେ ସରସ ସମ୍ପର୍କ ମୁହୂର୍ତ୍ତକେ ଲୋପ ପାଇଯାଏ, ପୁଣି କେତେକ ଜୀବନର ତୁଚ୍ଛତାକୁ ଆସି ବଢ଼ାଇ ଦିଅନ୍ତି । ଯାହା ଲୋପ ପାଏ, ସେଥିରେ ଅବସାଦ ଜନ୍ମେ । ମନୁଷ୍ୟ ଲୁପ୍ତ ଘଟନାକୁ ସ୍ମୃତିପଟରେ ଅଙ୍କି ରଖେ, ଲୋକ ସମକ୍ଷରେ ତାକୁ ବର୍ଣ୍ଣନା କରିବାକୁ ମନ ବଳାଏ ନାହିଁ । ସେ ଜାଣେ—ହୃଦୟର ନିଭୃତ ବେଦନାରେ ଗୋଟାଏ ସରସତା ଅଛି । ମନୁଷ୍ୟ ଯାହା ନିକଟରେ ଥରକ ପାଇଁ ଆତ୍ମସମର୍ପଣ କରିଦିଏ, ତାର ସମ୍ପର୍କକୁ ମନରୁ ଏକାବେଳକେ ପାସୋରି ଦେବା ଏକପ୍ରକାର ଅସମ୍ଭବ କହିଲେ ଚଳେ । କାହାରି ପ୍ରତାରଣାରେ ଯଦି ହୃଦୟର ସ୍ପନ୍ଦନ ଓ ଅନୁଭୂତ ହୋଇଥାଏ, ତାହା ହେଲେ ଦିନ ଆସେ, ଯେତେବେଳେ ପ୍ରତାରକର ଧୂର୍ତ୍ତ ହୃଦୟରେ ଦାରୁଣ ଆଘାତ କରେ । ସେତେବେଳେ ମନୁଷ୍ୟ ବୁଝେ, ଜଗତରେ ହୃଦୟର ମୂଲ୍ୟ କେହି ସହଜରେ ନିରୂପଣ କରି ପାରନ୍ତି ନାହିଁ ।

ଅବସାଦ ଆସୁ ନ ଥିଲେ ମନୁଷ୍ୟ ଅଧିକାଂଶ ସମୟରେ ଗୋଟାଏ ମୋହରେ ମାତି ଜୀବନଟାକୁ କଟାଇ ଦେଉଥାନ୍ତା । କୌଣସି ମୂଲ୍ୟବାନ୍ ପଦାର୍ଥକୁ ହଜାଇ ଦେବାରେ ଯେ ଦୁଃଖ ଆସେ, ପ୍ରତାରିତ ହେଲେ ତଦପେକ୍ଷା ବେଶି ଦୁଃଖ ଅନୁଭୂତ ହୁଏ । ଗୋଟିକରେ କଳ୍ପନା-ସୁଖର ଅଭାବ, ଅପରଟିରେ ବଞ୍ଚନା ଦୁଃଖର ପାର୍ଥକ୍ୟ ରଖି ଦେଇଯାନ୍ତି । କଳ୍ପନାସୁଖରେ ମନୁଷ୍ୟ ସୌନ୍ଦର୍ଯ୍ୟର ବିକାଶ ଦେଖିପାରେ । ହୃଦୟକୁ ଥରେ ଜଣକ ନିକଟରେ ଅବନତ କରିଦେଲେ ଶତ ବାଧା ଆସି ତାକୁ ଦୂର କରିପାରେ ନାହିଁ । ଯାହା ଦୂର ହୋଇଯାଏ, ତାହା ଗୋଟାଏ ଆବରଣ ମାତ୍ର । ଅନ୍ତରର ଜିନିଷଟିକୁ ଭଲ କରି ଦେଖିନେବା ଉଚିତ । ଭଲ କରି ନ ଦେଖି ହୃଦୟାବେଗରେ ଜଣେ ଜଣକୁ ଅନୁସରଣ କଲେ ଭବିଷ୍ୟତରେ ଗୋଟାଏ କଳଙ୍କ ଚରିତ୍ରକୁ ଦୂଷିତ କରିପାରେ । ସାଧାରଣତଃ ଜୀବନରେ ଯେ ଅବସାଦ ଆସେ, ସେଥିରେ ମନୁଷ୍ୟ ଶ୍ରମ ସ୍ୱୀକାର କରି ଅତୀତ ଘଟନାବଲୀକୁ ଆଲୋଚନା କରେ ନାହିଁ । ଏପରି କରୁଥିଲେ ଜୀବନର ରହସ୍ୟମୟ ଅଂଶଟା କେତେକ ପରିମାଣରେ ହ୍ରାସ ପାଉଥାନ୍ତା । ସୌନ୍ଦର୍ଯ୍ୟର ଉପଲବ୍ଧି କରିବାକୁ ଯାଇ ଗୋଟିଏ ବୁଭୁକ୍ଷାର ଅଧୀନ ହେବା ବାଞ୍ଛନୀୟ ନୁହେଁ । ଅସ୍ୱାଦର ମର୍ମ ନ ଜାଣି କ୍ଷିପ୍ତ ହୋଇଉଠିଲେ ଅବସାଦ ଆସି ଗୋଟାଏ ବ୍ୟବଧାନ ସୃଷ୍ଟି କରେ । ଏହାରି ଫଳରେ ସୌନ୍ଦର୍ଯ୍ୟର ପରିଚୟ ମିଳେ ।

ଆତ୍ମତୃପ୍ତି ପାଇଁ ଅବସାଦ ଲୋଡ଼ା । ସଙ୍ଗୀତର ଗୋଟାଏ ସ୍ୱରରେ ଆନନ୍ଦର ଉତ୍ସ ପୂର୍ଣ୍ଣମାତ୍ରାରେ ଖୋଲେ ନାହିଁ । ଭ୍ରମରର ପୁଷ୍ପବିଶେଷରେ ପ୍ରାଣର ଉନ୍ମାଦନା ମେଣ୍ଟାଏ ନାହିଁ । ସମଜାତୀୟ ପକ୍ଷୀର କାକଳିରେ ଉଷାର ଆଗମନ ସୂଚିତ ହୁଏ ନାହିଁ । ଜଗତର ବୈଚିତ୍ର୍ୟ ଉପଭୋଗ କରିବାପାଇଁ ଗୋଟିଏ ନିର୍ଦ୍ଦିଷ୍ଟ ପଥ ଥିଲେ ଜୀବନର ବ୍ୟାକୁଳତା ଆଦୌ ଜନ୍ମନ୍ତା ନାହିଁ କିମ୍ବା ଅବସାଦକୁ କେହି ଅନୁଭବ କରନ୍ତେ ନାହିଁ । ସମୟବିଶେଷରେ ଜୀବନର ସରସତା ସମ୍ପାଦନ ସକାଶେ ବିଷୟାନ୍ତରକୁ ଅନୁସରଣ କରିବା ମନୁଷ୍ୟ ପକ୍ଷରେ ଖୁବ୍ ସ୍ୱାଭାବିକ ହୁଏ ଓ ସେଥିଯୋଗୁଁ ପରିବର୍ତ୍ତନଶୀଳ ଜଗତର କ୍ରିୟା-କଳାପରେ ସେ ଚଳେ ମାତ୍ର ବହୁତ୍ୱ ଅନୁଭବ କରେ ନାହିଁ । ହୃଦୟ ଗୋଟିଏ ନିର୍ଦ୍ଦିଷ୍ଟ ବିଷୟରେ ବେଶି ଦିନ ଆବଦ୍ଧ ରହିଲେ କ୍ରମଶଃ ସଂକୀର୍ଣ୍ଣ ହୋଇପଡ଼େ, ଦୃଷ୍ଟିରେଖା ବିଶ୍ୱର ଅସୀମତାରେ ମଜ୍ଜି ରହିବାକୁ ଦ୍ୱିଧା ବୋଧ କରେ ।

କ୍ଷୀଣତାକୁ ସବଳ କରିବାରେ ଅବସାଦ ଯେଉଁ ତୀବ୍ର ଆଘାତ ଦିଏ, ତାହା ଅନୁଭବୀ ବ୍ୟତୀତ ଅନ୍ୟ କେହି ହୃଦୟଙ୍ଗମ କରିପାରିବେ ନାହିଁ । ରୂପର ସୌନ୍ଦର୍ଯ୍ୟରେ ମନ ଉତ୍କ୍ଷିପ୍ତ ହୋଇପଡ଼ିଲେ ଅବସାଦ ଆସି ତାକୁ ଦୂର କରେ । ମନୁଷ୍ୟକୁ ପତନମୁଖରୁ ରକ୍ଷା କରିବାପାଇଁ ଏହା ଏକ ଉତ୍କୃଷ୍ଟ ଉପାୟ । ବିଷୟ-ଭୋଗରେ ମନର ଚଞ୍ଚଳତା କ୍ରମଶଃ ବଢ଼ି ଉଠିଲେ ଅଲକ୍ଷିତରେ ଅନ୍ତର ନିସ୍ତେଜ ହୋଇଯାଏ । ବାହ୍ୟ କର୍ମ-ନିପୁଣତା ଜୀବନର ପ୍ରକୃତ ଅଭାବକୁ ଜଣାଇଦିଏ ନାହିଁ । ଭ୍ରମବଶତଃ ଅଧିକାଂଶ ସମୟରେ ମନୁଷ୍ୟ ଯେ ପଥରେ ଗତି କରୁଥାଏ, ତାହା ତାକୁ ପ୍ରକୃତ ଆନନ୍ଦର ସନ୍ଧାନ ଦିଏ ନାହିଁ;

ତେଣୁ ଅବସାଦ ଆସି ଗୋଟାଏ ସ୍ତବ୍ଧତା ସୃଷ୍ଟି କରେ । ଏହାର ପ୍ରଭାବରେ ସେ ଚଞ୍ଚଳତାକୁ ଦୂର କରି ପୁଣି ଏକ ନୂତନ ଜୀବନର ଭିତ୍ତି ସ୍ଥାପନ କରେ । ଜୀବନରେ କେତେଗୁଡ଼ିଏ ଢେଉ ଉଠେ, କେତେ ରୂପରେ ହୃଦୟ ଆଲୋଡ଼ିତ ହୁଏ, ଜଣକର ପ୍ରଭାବକୁ ଅନ୍ୟ ଜଣେ ଆସି ମନ୍ଦୀଭୂତ କରିଦିଏ, ଅସଂଖ୍ୟ ସ୍ୱରରେ ଅନ୍ତରର ବୀଣା ବାଜିଉଠେ; କିନ୍ତୁ ସମସ୍ତଙ୍କର ଗୋଟାଏ ଗୋଟାଏ ସୀମା ଅଛି । ଏହି ସୀମାରେ ଅବସାଦ ତାର ବୈଜୟନ୍ତୀ ଉତ୍ତୋଳନ କରି ମାନବ-ପ୍ରାଣକୁ ସୁସ୍ଥିର କରିବା ପାଇଁ ଯେ ପ୍ରେରଣା ଦିଏ, ତାହା କୌଣସି ଉପଭୋଗରେ ମିଳେ ନାହିଁ । ପ୍ରତ୍ୟେକ ଉପଭୋଗର ପ୍ରତିକ୍ରିୟାରୂପେ ଅବସାଦର ଶ୍ରାନ୍ତି ହୃଦୟକୁ କିଛିକ୍ଷଣ ପାଇଁ ଅଧିକାର କରୁ ନ ଥିଲେ ମନୁଷ୍ୟ ନୂତନତ୍ୱର ରସ ଗ୍ରହଣ କରିବାକୁ ଅକ୍ଷମ ହେଉଥାନ୍ତା । ଯୌବନର ଅବସାଦରେ ବାର୍ଦ୍ଧକ୍ୟର ତୃପ୍ତି ନ ଥିଲେ ଜୀବନଟା ତୁଚ୍ଛ ବୋଧ ହୁଅନ୍ତା । ଯଯାତି ନିଜ ପୁତ୍ରଠାରୁ ଯୌବନ ପାଇଥିଲେ; କିନ୍ତୁ ସେଥିରେ କାହିଁକି ତୃପ୍ତି ଆସିଲା ନାହିଁ ? ଅବସାଦ ପରେ ଯେ ତୃପ୍ତି ଆସେ, ତାହା ସ୍ଥାୟୀ ବୋଲି ଜଣାଯାଏ ।

ଆସକ୍ତି ଓ ଭୋଗର ନିବିଡ଼ ସମ୍ବନ୍ଧରେ ସାଂସାରିକ ଜୀବନର ଉପାଦେୟତା ସାଧାରଣତଃ ପ୍ରମାଣିତ ହୋଇଥାଏ । ଏହାକୁ ଉପେକ୍ଷା କରି କେବଳ ଦୁଇଟି ହୃଦୟର ଅନାସକ୍ତ ମିଳନରେ ଯେ ଆନନ୍ଦ ଅନୁଭବ କରାଯାଏ; ତାହା ପ୍ରାୟ ଆଧୁନିକ ଯୁଗରେ ବିରଳ କହିଲେ ଚଳେ । ଏପରି ମିଳନ କବିର ବର୍ଣ୍ଣନାରେ ଦେଖିବାକୁ ମିଳିପାରେ । ବିଷୟ-ମୋହର ଉନ୍ମାଦନାରେ ଅନ୍ତରର ସାର ଜିନିଷଟି ଚିରଦିନ ପାଇଁ ନିଭୃତରେ ରହିଯାଏ । ଆଜିକାଲି ଆମ୍ଭମାନଙ୍କ ମନରେ ଯେ କ୍ଷଣିକ ଅବସାଦ ଆସୁଛି, ତାହା କେବଳ ଜୀବନର ସାମୟିକ କ୍ଷିପ୍ରତା ଛଡ଼ା ଅନ୍ୟ କିଛି ନୁହେଁ । ଅବସାଦ ଆସିଲେ ମନ ସ୍ୱତଃ ଅବନତ ହୋଇପଡ଼େ । ହୃଦୟର ଆଦରଣୀୟ ଅବଲମ୍ବନଟି ଲୋପ ପାଇଯାଏ; କିନ୍ତୁ ଯେ ସ୍ମୃତିଟିକି ରଖି ଦେଇଯାଏ, ସେଥିରେ ବ୍ୟାକୁଳତାର ଚିହ୍ନ ସୁଦ୍ଧା ଦେଖାଯାଏ ନାହିଁ । ଆଜି ମନୁଷ୍ୟର ମନ ବିଷୟ-ମୋହରେ ଯେପରି ଉଦ୍‌ଭ୍ରାନ୍ତ ହୋଇଉଠିଛି, ସେଥିରେ ଏପରି ଅବସ୍ଥା ଅନୁଭୂତ ହେବା ଅସମ୍ଭବ କହିଲେ ଚଳେ । ସମଜାତୀୟ ପଦାର୍ଥର ମିଳନ ଶୀଘ୍ର ସମ୍ପାଦିତ ହୋଇଥାଏ; କିନ୍ତୁ ହୃଦୟ ସମ୍ପର୍କରେ ଏଥିରେ ବ୍ୟତିକ୍ରମ ଦେଖାଯାଏ । ଦୁଇଟି ହୃଦୟ କିଛି ସମୟ ପାଇଁ ମିଳିଯାନ୍ତି । ଗୋଟାଏ ସ୍ରୋତରେ ଦୁଇଟି ଜୀବନ ଏକାଠି ଭାସି ଯାଉଥାଏ; ହଠାତ୍ କି ପରିବର୍ତ୍ତନ ଆସେ ଯେ, ଦୁଇଟିଯାକ ଚିର କାଳ ପାଇଁ ବିଚ୍ଛିନ୍ନ ରହନ୍ତି । ଏପରି ଦୃଷ୍ଟାନ୍ତ ସଂସାରରେ ଯଥେଷ୍ଟ ଦେଖିବାକୁ ମିଳେ । ଏ ସମ୍ପର୍କରେ ଗୋଟିଏ କଥା ମନେ ରଖିବାକୁ ହେବ—ବିଚ୍ଛିନ୍ନତାରେ ଦୁଃଖ କରିବାର କିଛି କାରଣ ନାହିଁ । ଏହା ଅବସାଦର ପ୍ରଧାନ ରଙ୍ଗଭୂମି । ମନୁଷ୍ୟ ଜୀବନରେ ଯଦି କିଛି ବିଶେଷତ୍ୱ ଥାଏ, ତାହା ହେଲେ ତାକୁ ଏହିଠାରେ ଆରୋପ କରିଦେବା ସବୁଠାରୁ ସମୀଚୀନ ବୋଧ ହୁଏ । ହୃଦୟର ଅବଲମ୍ବନକୁ ଦୂର କରି ଯେ ଗୋପନ-ପୂଜା ଅର୍ପଣ କରାଯାଏ, ସେଥିରେ ପ୍ରକୃତ ମହତ୍ତ୍ୱ ଥାଏ ଏବଂ ତାହା ସାଧାରଣ ସଂସାରର ବିଷୟ-ଜ୍ଞାନ ଉପରେ ନିର୍ଭର କରେ ନାହିଁ । ଆଉ ଗୋଟିଏ କଥା ଏ ସମ୍ପର୍କରେ ସ୍ମରଣ ରଖିବାକୁ ହେବ । ଆକର୍ଷଣର ପ୍ରଭାବ ବେଶି ପରିମାଣରେ ଅନୁଭୂତ ହେଲେ ଅବସାଦଟା କ୍ଷିପ୍ରତାରେ ପରିଣତ ହୋଇଥାଏ । ଆକର୍ଷଣ ଶରୀର ସମ୍ବନ୍ଧ ଯେତେ ପ୍ରବଳ ହୋଇଉଠେ; କିନ୍ତୁ ଅବସାଦ ଆକର୍ଷଣ ଉପରେ ନିର୍ଭର କରେ ନାହିଁ । ଭୋଗ-ସ୍ପୃହାକୁ ପରାସ୍ତ କରି ମନର ସ୍ଥିରତା ଆଣିବା ପାଇଁ ଅବସାଦ ନିତାନ୍ତ ଆବଶ୍ୟକ ବୋଲି ମନେ ହୁଏ ।

ଦୀପକ ରାଗରେ ସଙ୍ଗୀତର ଝଙ୍କାର ହୃଦୟକୁ ଏକ ଅତୀନ୍ଦ୍ରିୟ ରାଜ୍ୟକୁ ଘେନି ଗଲେ ମନୁଷ୍ୟ ତାର ନିଜ ସତ୍ତା ସୁଦ୍ଧା ଭୁଲିଯାଏ । ପ୍ରେମିକ ପ୍ରେମରସରେ ବୁଡ଼ି ରହେ, ପ୍ରେମିକାର ଅନ୍ତରରେ ସେ ନିଜକୁ ବିଲୀନ କରିଦିଏ । ତା ନିକଟରେ ସଂସାରର ସବୁ ଆକର୍ଷଣ ଲୋପ ପାଇଯାଏ । ଯାବତୀୟ ଜଟିଳତା ଭେଦ କରି ବିଶ୍ୱ ପ୍ରକୃତି ମନୁଷ୍ୟର ହୃଦୟ ସହିତ ସମ-ସ୍ୱରରେ ଯେଉଁ ଅମର ଗାନର ତାନ ଧରେ, ସେଥିରେ ପାର୍ଥିବ ସନ୍ତାପର ଚିହ୍ନ ମାତ୍ର ରହେ ନାହିଁ । ଅନାବିଲ ସଙ୍ଗୀତ ଓ ପ୍ରେମରେ ହୃଦୟର ଯେ ଭାବ ଫୁଟିଉଠେ, ତାହା ଜଗତକୁ ଏକ ନୂତନ ଆଭାରେ ରଞ୍ଜିତ କରିଦିଏ । ଏହିଠାରେ ମନୁଷ୍ୟର ଯେ ଦେବତ୍ୱ ଆସେ, ତାହା ତାର ପୂର୍ବ ଅବସାଦ-ସଂସ୍କାରରୁ ଉତ୍ପତ୍ତି ଲାଭ କରିଥାଏ; କାରଣ ଗୋଟାଏ ବ୍ୟବଚ୍ଛେଦହୀନ ଦଶାର ଅଧୀନ ହୋଇ କେହି କେବେ ଉନ୍ନତିର ଚରମ ସୋପାନରେ ଉପନୀତ ହୁଏ ନାହିଁ । ଅନନ୍ତ ଜୀବନ-ପଥରେ ଅବସାଦ କେବଳ ସ୍ମାରକ ସ୍ତମ୍ଭ ପରି କାର୍ଯ୍ୟ କରିଥାଏ । ମନୁଷ୍ୟ ଅଗ୍ରସର ହୁଏ, କେତେ ରୂପବତୀର ପ୍ରେମରେ ଓ ସଙ୍ଗୀତର ପ୍ରାଣସ୍ପର୍ଶୀ ମୂର୍ଚ୍ଛନାରେ ନିଜକୁ

ଭୁଲିଯାଏ; କିନ୍ତୁ ଗୋଟାଏ ଅବସାଦ ଆସିଲାକ୍ଷଣି ସେ ଯେଉଁ ଅବ୍ୟକ୍ତ ଭାବ ଅନୁଭବ କରେ, ସେଥିରେ ତାର ହୃତ୍‌ଶକ୍ତି ଆତ୍ମପ୍ରକାଶ କରେ । ଲୋକଚକ୍ଷୁରେ ଅବସାଦ ହୃଦୟର ଜଡ଼ତା ସମ୍ପାଦନ କରେ ବୋଲି କୁହାଯାଇପାରେ; କିନ୍ତୁ ପ୍ରକୃତରେ ତାହା ନୁହେଁ । ଗଭୀର ଅନ୍ଧକାରରେ ଆଲୋକ ଅତି ପ୍ରଚ୍ଛନ୍ନରେ ଥାଏ; ସୁତରାଂ ଅନ୍ଧକାରକୁ ଆଲୋକର ଭିତ୍ତିସ୍ୱରୂପ ଧରିଲେ କିଛି କ୍ଷତି ନାହିଁ । ବର୍ତ୍ତମାନ ଆମ୍ଭେମାନେ ଅବସାଦକୁ ଭାବୀ ମଙ୍ଗଳର ଉତ୍ସସ୍ୱରୂପ ଗ୍ରହଣ କରିପାରୁଁ । ରୂପ-ମୋହରେ ଚକ୍ଷୁ ଯେତେବେଳେ ଝଲସି ଉଠେ, ଅନ୍ତରର ବେଦନା ଭାଷାରେ ବ୍ୟକ୍ତ କରି ହୁଏ ନାହିଁ, ଗୋଟାଏ ପ୍ରଳୟ ସଙ୍କୀର୍ଣ୍ଣ ମୋହରେ ମନ କ୍ଷିପ୍ତ ହୋଇପଡ଼େ; ସେତେବେଳେ ଅବସାଦ ଆସି ଗୋଟାଏ ଦୀର୍ଘ ପର୍ଦ୍ଦା ଟାଣି ଦେଇଯାଏ । ଜୀବନଟା ଗୋଟାଏ ମରୁଭୂମି ପରି ପ୍ରତୀୟମାନ ହୁଏ; କିନ୍ତୁ ସେହି ମରୁଭୂମିରେ ନନ୍ଦନର ପାରିଜାତ ଫୁଟି ଉଠେ । ସୌନ୍ଦର୍ଯ୍ୟ ମୋହ ଭୁଲିଯାଏ, ରହିଯାଏ କେବଳ ଗୋଟାଏ ଝଙ୍କାର । ଏହି ଝଙ୍କାର ଜୀବନରେ ଯେ ଯେତେ ପରିମାଣରେ ଅନୁଭବ କଲାଣି, ତାର ପଥ ସେହି ପରିମାଣରେ ପରିଷ୍କୃତ ହୋଇଗଲାଣି । ଦିନ ଆସେ, ଯେତେବେଳେ ଦୁଇଟା ଆଲୋକ ଦୁଇଦିଗରୁ ଆସି ଏକାଠି ମିଳିତ ହୋଇଯାନ୍ତି ଓ ଅବସାଦର ପର୍ଦ୍ଦା ଚିରଦିନ ପାଇଁ ଲୋପ ପାଇଯାଏ । ମନେ ରଖିବାକୁ ହେବ—ଅବସାଦ ଗୋଟାଏ ସଂସ୍କାରକ ମାତ୍ର ।

# ପ୍ରିୟ-ଦର୍ଶନ

ଜୀବନର ରମଣୀୟତା ଐଶ୍ୱର୍ଯ୍ୟରେ ନିହିତ । ଐଶ୍ୱର୍ଯ୍ୟର ବିଶ୍ଳେଷରେ ଯେ କେତୋଟି ଉପାଦାନ ମିଳେ, ତନ୍ମଧ୍ୟରୁ ଦର୍ଶନର ବିଶିଷ୍ଟତା ପ୍ରତି ଲକ୍ଷ୍ୟ କରାଯାଉ । ବିଶ୍ୱରୂପ ଦର୍ଶନରେ ଅମିତବିକ୍ରମ ଅର୍ଜ୍ଜୁନଙ୍କର ଯେଉଁ ଉଦ୍‌ବୋଧନ ଆସିଥିଲା, ଆଜି ତାହା କାଳ୍ପନିକ ବୋଧ ହୋଇପାରେ; କିନ୍ତୁ କୌଣସି ଦୁର୍ଲ୍ଲଭ ଦର୍ଶନରେ ଅନ୍ତରର ଅନୁଭୂତିକୁ କେହି ଅସ୍ୱୀକାର କରିବେ ନାହିଁ । ବିଶ୍ୱ ପ୍ରକୃତିରେ ଆଲୋକର ପ୍ରଭାବ ଯେନି ଦୃଷ୍ଟିର ସଞ୍ଚାଳନ ହୁଏ; କିନ୍ତୁ ସମସ୍ତଙ୍କର ଦୃଷ୍ଟି ସମାନ ରହେ ନାହିଁ । ବୈଜ୍ଞାନିକ ଆଲୋକର ଗତି ନିର୍ଣ୍ଣୟ କଲାବେଳେ ଯେପରି ଗାଣିତିକ ନିୟମର ଅଧୀନ ହୁଅନ୍ତି, ମନୁଷ୍ୟ ଦୃଷ୍ଟି ସଞ୍ଚାଳନ କଲାବେଳେ ସେପରି କୌଣସି ନିୟମର ଅପେକ୍ଷା ରଖେ ନାହିଁ । ତାର ଚକ୍ଷୁ ଦୁଇଟି ଅତି କ୍ଷୁଦ୍ର ହେଲେ ସୁଦ୍ଧା ସେ ବସ୍ତୁଜଗତକୁ ଯେପରି ଦେଖିପାରେ, ଅନ୍ୟ ପ୍ରାଣୀ ପକ୍ଷରେ ସେପରି ସମ୍ଭବ ହୁଏ ନାହିଁ । ଦୃଷ୍ଟି-ବୈଷମ୍ୟ ସକାଶେ ଭଲ ଓ ମନ୍ଦ ମଧ୍ୟରେ ଗୋଟାଏ ସର୍ବବାଦସମ୍ମତ ପାର୍ଥକ୍ୟ ଏ ପର୍ଯ୍ୟନ୍ତ ସ୍ଥିର କରାଯାଇପାରି ନାହିଁ । ଜଣକର ଦୃଷ୍ଟିରେ ଯାହା ଭଲ ବୋଲି ଗ୍ରହଣୀୟ, ଅପର ଚକ୍ଷୁରେ ତାହା ଅତି ତୁଚ୍ଛ ବୋଲି ପ୍ରତିପନ୍ନ ହେବା ଅସ୍ୱାଭାବିକ ନୁହେଁ ।

ଶ୍ୱାସ-ପ୍ରଶ୍ୱାସରେ କେହି ପରାଙ୍ମୁଖ ହୁଏ ନାହିଁ; କିନ୍ତୁ ସମସ୍ତଙ୍କର ଐଶ୍ୱର୍ଯ୍ୟପ୍ରାପ୍ତିର ପନ୍ଥା ସମାନ ନୁହେଁ । ଆସକ୍ତି ଓ ଅନାସକ୍ତିର ମାତ୍ରା ଜୀବ-ଧର୍ମ ପାଳନରେ କେତେ ଦୂର ଗ୍ରହଣୀୟ, ତାହା ଆମ୍ଭମାନଙ୍କର ଆଲୋଚନାର ବିଷୟ ନୁହେଁ । ସାଧାରଣତଃ ଆସକ୍ତିର ଅଧୀନ ହୋଇ ମନୁଷ୍ୟ ସାଂସାରିକ ସୁଖ କାମନା କରେ । ପାର୍ଥିବ ବିଷୟଗୁଡ଼ିକ କାମନା ସହିତ ବିଶେଷ ଭାବରେ ସଂପୃକ୍ତ ଥାଏ ବୋଲି ସେ ବସ୍ତୁମୋହରେ ବଡ଼ ବ୍ୟାକୁଳ ହୋଇପଡ଼େ । ଦର୍ଶନେନ୍ଦ୍ରିୟ ସାହାଯ୍ୟରେ ମନୁଷ୍ୟର ଏହି ବ୍ୟାକୁଳତା ବଢ଼ିଯାଏ; ତେଣୁ ଉତ୍କଣ୍ଠିତ ହୃଦୟରେ ମନୁଷ୍ୟର ଦୃଷ୍ଟିରେଖା ଗୋଟାଏ ଈପ୍‌ସିତ ବିଷୟକୁ ଅବଲମ୍ବନ କରି ଜୀବନରେ ଏକ ଅପୂର୍ବ ଅଧ୍ୟାୟର ଅବତାରଣା କରେ । କେବଳ ଜୀବନ୍ତ ସମ୍ପର୍କରେ କୌଣସି ନୂତନତ୍ୱ ଦେଖାଯାଏ ନାହିଁ । ଦର୍ଶନ-ସୁଖ ସହିତ ଅନ୍ତରର ପ୍ରେରଣା ସଂଶ୍ଳିଷ୍ଟ ହେଲେ ଯେଉଁ ଅଭିନବ ଗତି ସୃଷ୍ଟ ହୁଏ, ସେଥିରେ ଜୀବନର ଧାରା ଗୋଟାଏ ସ୍ୱତନ୍ତ୍ରତା ଦେଖାଇ ବହିଯାଏ । ଏଥିରେ କାମନାର ପ୍ରଭାବ ଥାଇପାରେ; କିନ୍ତୁ ଗୋଟାଏ ବିକାଶ ଆଣିବା ପାଇଁ ଏହି ସୁଗମ ପଥକୁ ଅନାଦର କରିବା ଉଚିତ ନୁହେଁ । ସୁନ୍ଦର ଦୃଶ୍ୟଟି ସମସ୍ତଙ୍କର ଆଦରଣୀୟ ହୁଏ । ଅନ୍ତରର କୋମଳତା ଏଥିରେ ଉଚ୍ଛ୍ୱସିତ ହେଲେ ମନୁଷ୍ୟର ଚକ୍ଷୁ ସମ୍ମୁଖରେ ସୌନ୍ଦର୍ଯ୍ୟର ଗୋଟାଏ ଦୀପ୍ତି ଝଲସି ଉଠେ । ସୌନ୍ଦର୍ଯ୍ୟର ଆଧାର ଯେଉଁ ଦୀପ୍ତି ଦାନ କରେ, ତାହା ଚକ୍ଷୁର କ୍ଷଣିକ ତୃପ୍ତି ଆଣେ; କିନ୍ତୁ ହୃଦୟର ପ୍ରେରଣାକୁ ଅନୁସରଣ କରି ତାହା ଭାବରାଜ୍ୟରେ କେତେ ଦୂର ଗତି କରିପାରେ, ନିର୍ଣ୍ଣୟ କରିବା ସହଜ ନୁହେଁ । ହୃଦୟର ଉଚ୍ଛ୍ୱାସ କୌଣସି ଦୃଷ୍ଟ ବିଷୟରୁ ଉତ୍ପତ୍ତି ଲାଭ କରି ବିସ୍ତୃତ ହୋଇପାରେ । ତାକୁ କଳନା କରିବା ଦର୍ଶନେନ୍ଦ୍ରିୟର କାର୍ଯ୍ୟ ନୁହେଁ । ମନୁଷ୍ୟର ଦର୍ଶନ ଓ ଅନୁଭୂତି ଗୋଟାଏ ସମାନ ନିୟମ ପାଳନ କରେ ନାହିଁ । ଚକ୍ଷୁର ପଲକରେ ସେ ଗୋଟାଏ ପଦାର୍ଥକୁ ଦେଖି ପାସୋରି ଦେଇପାରେ; କିନ୍ତୁ ଗୋଟାଏ ଅନୁଭୂତିକୁ ଏତେ ଶୀଘ୍ର ହୃଦୟ ଛାଡ଼ିପାରେ ନାହିଁ । ସମସ୍ତ ଜୀବନଟା କଟିଯାଏ, ମନୁଷ୍ୟ ଅସଂଖ୍ୟ ଦୃଶ୍ୟ ଦେଖେ; କିନ୍ତୁ କେତେଟାର ମାତ୍ର ଅନୁଭୂତି ତାର ଜୀବନରେ ବଦ୍ଧମୂଳ ହୋଇ ରହେ । ଅନ୍ତରର ଅନ୍ୱେଷଣ ସବୁବେଳେ ଗୋଟାଏ ଢଙ୍ଗରେ ଗତି କରେ ନାହିଁ । ଆଜି ଯାହାକୁ ମନୁଷ୍ୟ ହୃଦୟରେ ଲୋଡ଼ୁଛି ଓ ଯାହାର ପ୍ରତୀକ୍ଷାରେ ସଂସାରର ଯାବତୀୟ ବସ୍ତୁକୁ ତୁଚ୍ଛ ବୋଧ କରୁଅଛି, ତାକୁ ପୁଣି ବିସ୍ମୃତ ହେବା ତାର କେଉଁ ଧର୍ମ ? ବିନାଶଶୀଳ ପଦାର୍ଥଗୁଡ଼ିକର ପରିଣତି ଶାଶ୍ୱତ ଆନନ୍ଦର ଗୋଟାଏ ସଙ୍କେତ ମାତ୍ର । ମନୁଷ୍ୟ ସଂସାରକୁ ସାର କରିଥାଏ; କିନ୍ତୁ ଯେତେବେଳେ ସଂସାରର ବନ୍ଧନ ଅତି ନିର୍ମମ ଭାବରେ

ଛୁଣ୍ଡିଯାଏ, ସେତେବେଳେ ଗୋଟାଏ ଅନ୍ଧକାର ଆସେ ଓ ଏହି ଅନ୍ଧକାରରେ ଆଲୋକର ସନ୍ଧାନ ନେବା ପାଇଁ ମନୁଷ୍ୟକୁ ଅବସର ମିଳେ । ବନ୍ଧୁତ୍ଵ ହେବା ଯଦି ମନୁଷ୍ୟର ସ୍ୱଭାବ ହୋଇ ନ ଥାନ୍ତା, ତାହା ହେଲେ ପତନଶୀଳ ଜଡ଼ଜଗତରେ ତାର ସବୁ ଆୟାସ ଚରିତାର୍ଥ ପାଇଁ ଆବଦ୍ଧ ରହୁଥାନ୍ତା ।

ମନୁଷ୍ୟର ଅନିବାର୍ଯ୍ୟ ପିପାସା ସବୁବେଳେ ଗୋଟାଏ ମନ୍ଦ ଲକ୍ଷଣ ନୁହେଁ । ଗୋଟିକରେ ପୂର୍ଣ୍ଣ ତୃପ୍ତି ଅନୁଭବ କଲେ ସାଧାରଣତଃ ସଙ୍କୁଚିତ ଦୃଷ୍ଟିର ପରିଚୟ ମିଳେ । ଅନୁପମା ସୁନ୍ଦରୀର ମୁଖ-ମଣ୍ଡଳରେ ସୁଦ୍ଧା ସୌନ୍ଦର୍ଯ୍ୟର ପୂର୍ଣ୍ଣତା ଲକ୍ଷିତ ହୋଇପାରେ ନାହିଁ । ସାମାନ୍ୟ ଦୋଷ ଦେଖାଯିବା ସହଜ ନୁହେଁ । ବିଶେଷତଃ ଦୃଷ୍ଟିର ଲୋଲୁପତା ସୂକ୍ଷ୍ମ ବିଚାର ପାଇଁ ସୁବିଧା ଦିଏ ନାହିଁ । ଦର୍ଶନର ଆନନ୍ଦ ଯେତେବେଳେ ଲାଳସା ଆଡ଼କୁ ଗତି କରେ, ସେତେବେଳେ ଗୋଟାଏ ଶାରୀରିକ ଉତ୍ତେଜନା ଆସେ ।

ଅନେକେ ଉତ୍ତେଜନାର ବଶବର୍ତ୍ତୀ ହୋଇ ସୌନ୍ଦର୍ଯ୍ୟର ଆଧାରକୁ ଗ୍ରହଣ କରନ୍ତି ଓ ସେହି ଆଧାରର ତିରୋଧାନରେ ମ୍ରିୟମାଣ ହୋଇପଡ଼ନ୍ତି । ସାଧାରଣ ମନୁଷ୍ୟ ପକ୍ଷରେ ଦୋଷ ଓ ଗୁଣର ଭିନ୍ନତା ଦେଖି ସୌନ୍ଦର୍ଯ୍ୟର ଅମଳ ଆନନ୍ଦ ଉପଭୋଗ କରିବା ପାଇଁ କୌଣସି ବାଧା ନାହିଁ; କିନ୍ତୁ ହୃଦୟର ଦୁର୍ବଳତା ଦୃଷ୍ଟିଶକ୍ତିକୁ ଏପରି ପ୍ରଭାବିତ କରେ ଯେ, ସେ କେବଳ ଗୋଟାଏ ବିଷୟରେ ତାର ଦୃଷ୍ଟିରେଖାକୁ ଆବଦ୍ଧ କରିଦିଏ । ଏପରି ଦୃଷ୍ଟିର ସମୀଚୀନତା ମଧ୍ୟ ପ୍ରମାଣ କରାଯାଇପାରେ; କିନ୍ତୁ ଦର୍ଶନର ଉପଯୋଗିତା ଅନ୍ତରର ଅନୁଭୂତିକୁ ଜାଗ୍ରତ କଲାବେଳେ ମନୁଷ୍ୟ ଗୋଟିକର ଦର୍ଶନରେ ବେଶି ସମୟ ଆସ୍ଥା ସ୍ଥାପନ କରେ ନାହିଁ । ଅନ୍ତରର ଆଲୋକ ଦୃଷ୍ଟିରେଖାକୁ ଏହି ଅବସରରେ ବିସ୍ତୀର୍ଣ୍ଣ କରିଦିଏ । ସେହି ଅବସ୍ଥାରେ ମନୁଷ୍ୟ ସହସ୍ର ସୁନ୍ଦରୀର ଆନନଶ୍ରୀ ଅବଲୋକନ କଲେ ସୁଦ୍ଧା କୌଣସି ବିକାର ଅନୁଭବ କରେ ନାହିଁ । ସମସ୍ତଙ୍କର ପିପାସା ସମାନ ନୁହେଁ । ପାନୀୟର ଗୁଣ ଓ ଦୋଷ ବିଚାର କରିବାର ଶକ୍ତି ଅଧିକାଂଶଙ୍କର ଥାଇପାରେ; କିନ୍ତୁ ଅତ୍ୟଳ୍ପ ଲୋକ ଏଥିପ୍ରତି ଦୃଷ୍ଟି ଦିଅନ୍ତି । ଏ ସମ୍ପର୍କରେ ଆମ୍ଭେମାନେ କହିପାରୁଁ ଯେ, ସୁନ୍ଦରୀର ସୌନ୍ଦର୍ଯ୍ୟ ପ୍ରତି ସମସ୍ତେ ଆକୃଷ୍ଟ ହୁଅନ୍ତି; କିନ୍ତୁ କେତେ ଜଣ ତାର ସୌନ୍ଦର୍ଯ୍ୟର ଉପଯୁକ୍ତ ବିଚାର କରନ୍ତି ? ସୌନ୍ଦର୍ଯ୍ୟ-ପିପାସା ମନୁଷ୍ୟର ହୃଦୟକୁ ଅଭିଭୂତ କରେ—ଏଥିରେ କାହାରି ମତଦ୍ୱୈଧ ହେବ ନାହିଁ; କିନ୍ତୁ ସେହି ପିପାସାଟା ଯଦି ବିକାର-ପଥର ଅନୁଗାମୀ ହୁଏ, ତାହା ହେଲେ ଦୂଷିତ ପାନୀୟ ପରି ଏହା ସର୍ବଥା ପରିହାର୍ଯ୍ୟ ।

ସାଧାରଣ ନିୟମରେ ମଧ୍ୟ ବ୍ୟତିକ୍ରମ ଥାଏ । ସମଜାତୀୟ ପ୍ରାକୃତିକ କବିମାନଙ୍କର ଅନୁଶୀଳନରେ ଗୋଟାଏ ପ୍ରଭେଦ ଦେଖାଯାଏ । ସୌନ୍ଦର୍ଯ୍ୟର ପରାକାଷ୍ଠା ଗୋଟିଏ ଦର୍ଶନରେ ପ୍ରମାଣିତ ହୋଇ ନ ପାରେ; କିନ୍ତୁ ଅନ୍ଧକାରରେ ଆଲୋକର ବର୍ତ୍ତିକା ପରି ମନୁଷ୍ୟ କୌଣସି ବିଶିଷ୍ଟ ସୌନ୍ଦର୍ଯ୍ୟ-ଦର୍ଶନରେ ମୁଗ୍ଧ ହୋଇ ଜୀବନର ପ୍ରତିହତ ଗତିକୁ ଗୋଟାଏ ସରଳ ଧାରାରେ ବୁହାଇଦିଏ । ଭବିଷ୍ୟତ ଜୀବନର ଅନିଶ୍ଚିତ ଅଧ୍ୟାୟରେ କୌଣସି ଧାରାବାହିକ ବର୍ଣ୍ଣନା ଲିପିବଦ୍ଧ କରିବା କେବଳ କଳ୍ପନା-ପ୍ରସୂତ ହୋଇପାରେ; କିନ୍ତୁ ଏହି କଳ୍ପନାରେ କବିର କାବ୍ୟ, ଚିତ୍ରକରର ଚିତ୍ର, ଶିଳ୍ପୀର ଶିଳ୍ପ ଓ ସଙ୍ଗୀତ-ବିଳାସୀର ସଙ୍ଗୀତ ପ୍ରତିବିମ୍ବିତ ହୋଇଉଠେ । ଭାବୁକର ଭାବନା ସବୁବେଳେ ମୁକ୍ତି ଲୋଡ଼େ । ଜଣେ ସୁନ୍ଦରୀର ଅପାଙ୍ଗ ଦୃଷ୍ଟି ଭାବୁକ ହୃଦୟରେ ଯୁଗାନ୍ତର ପାଇଁ ଭାବ ସଞ୍ଚୟ କରିଦେଇ ଯାଏ । ଅବଶ୍ୟ ବିଚାରଦୃଷ୍ଟି ଏ ସ୍ଥଳରେ ବିଶେଷ କାର୍ଯ୍ୟ କରେ ନାହିଁ । ଏହା ବୋଲି ମୁଗ୍ଧ ଭାବୁକ ଯଦି କାମପରତନ୍ତ୍ର ହୁଏ, ତାହା ହେଲେ ତାର ଦୃଷ୍ଟିରେଖା ସୀମାବଦ୍ଧ ହୋଇ ରହେ । ଜଣକୁ ଦେଖି ଅନ୍ତରର ଅନ୍ତରତମ ପ୍ରଦେଶରେ ସ୍ପନ୍ଦନ ଅନୁଭବ କରିବା ଖୁବ୍ କମ୍ ଲୋକଙ୍କ ଭାଗ୍ୟରେ ଘଟିଥାଏ । ଭାବୁକର ଚିତ୍ତ ଯାବତୀୟ ଦର୍ଶନରେ ଆନ୍ଦୋଳିତ ହୁଏ ନାହିଁ । ଯେଉଁଠାରେ ସେ ଅନ୍ତରର ପ୍ରେରଣା ଅନୁଭବ କରେ, ସେହିଠାରେ ତାର ଭାବଧାରା ଉଚ୍ଛ୍ୱସିତ ହୋଇଉଠେ । ଦୃଷ୍ଟିର ସହାୟତା ବଳରେ ଅନ୍ତରର ଗୋଟାଏ ଅସ୍ପଷ୍ଟ ସ୍ମୃତି କାଳକ୍ରମେ ହୃଦୟର ପ୍ରଚ୍ଛନ୍ନ ଧାରାକୁ ମୁକ୍ତ କରିଦିଏ । ଅସୀମ ସୌନ୍ଦର୍ଯ୍ୟକୁ ସୀମାବଦ୍ଧ କରିବାଦ୍ୱାରା ଯେଉଁ ପ୍ରତୀତି ଜନ୍ମେ; ତାହାକୁ ହିଁ ପ୍ରିୟଦର୍ଶନର ଫଳସ୍ୱରୂପ ଗ୍ରହଣ କରାଯାଇପାରେ । ଜଣକର ଦର୍ଶନସୁଖରେ ବିଶ୍ୱସୌନ୍ଦର୍ଯ୍ୟର ଅନୁଭୂତି ମିଳିପାରେ । ମନୁଷ୍ୟ କ୍ଷୁଦ୍ର ହେଲେ ସୁଦ୍ଧା ତାର ହୃଦୟ କ୍ଷୁଦ୍ର ନୁହେଁ । ସେ ଜଣକର ଦର୍ଶନରେ ଅନ୍ତରର ରୁଦ୍ଧ ଆବେଗ ମୁକ୍ତିର ସନ୍ଧାନ କରେ । ଏଠାରେ ଜୀବନ୍ତ

ସମ୍ପର୍କରେ ମନୁଷ୍ୟର ଦର୍ଶନ ଶକ୍ତି କାର୍ଯ୍ୟ କରେ ନାହିଁ । ତାହା ହୋଇଥିଲେ କବିର ଉଚ୍ଛ୍ୱାସ ସାମାନ୍ୟ କୁସୁମ-ସ୍ତବକ ସନ୍ଦର୍ଶନରେ ସ୍ଫୂର୍ତ୍ତ ହୁଅନ୍ତା ନାହିଁ । ବସ୍ତୁକୁ ଏକକ୍ଷୁରେ ପର୍ଯ୍ୟବସିତ କରିବା ସମସ୍ତଙ୍କ ପକ୍ଷରେ ସମ୍ଭବପର ନୁହେଁ । ତେଣୁ ଜଣକର ସୌନ୍ଦର୍ଯ୍ୟ ଦର୍ଶନ କରି ପ୍ରାଣର ପିପାସା ମେଣ୍ଟାଇବା ସାଧାରଣ ନିୟମର ବ୍ୟତିକ୍ରମ ପରି ଅନୁମିତ ହୁଏ ।

ଉଦାର ଦୃଷ୍ଟିରେ ପ୍ରେମ ଓ ସୌନ୍ଦର୍ଯ୍ୟର ବିକାଶ ବିଭିନ୍ନ ବୋଲି ଜଣାଯାଏ ନାହିଁ । ପ୍ରେମିକର ପ୍ରିୟଦର୍ଶନ ଓ ସୌନ୍ଦର୍ଯ୍ୟଲିପ୍ସା ଗୋଟାଏ ସାଧାରଣ ଉତ୍ସର ଦୁଇଟି ଧାର । ଏହି ଦୁଇଟି ଧାର ଭିନ୍ନ ଦିଗରେ ବହିଯାଇ ଶେଷରେ ଏକତ୍ର ହୁଅନ୍ତି ।

ଅନନ୍ତ ସାଗରର ସଙ୍ଗମରେ ଯେପରି ସ୍ରୋତସ୍ୱିନୀମାନଙ୍କର ପୃଥକ୍ ସତ୍ତା ଲୋପ ପାଇଯାଏ, ସେହିପରି ସୌନ୍ଦର୍ଯ୍ୟ ଓ ପ୍ରେମ ମନୁଷ୍ୟର ସଙ୍କୀର୍ଣ୍ଣ ଦୃଷ୍ଟିରେ ଭିନ୍ନ ପ୍ରକାର ପ୍ରତୀୟମାନ ହେଲେ ସୁଦ୍ଧା ମାନବିକତାର ଚରମ ଉତ୍କର୍ଷ ଏ ଦୁହିଁଙ୍କୁ ସମାନ କରିଦିଏ । ପ୍ରିୟଦର୍ଶନରେ ହୃଦୟାବେଗର ପ୍ରଖରତା ଅନୁଭୂତ ହୋଇଥାଏ; କିନ୍ତୁ ମନର ପ୍ରଶାନ୍ତ ଅବସ୍ଥା ଆସିଲେ ଏପରି ଉଦ୍‌ବେଗ ଆଉ ରହେ ନାହିଁ । ନାୟକ ନାୟିକାର ମିଳନ-ପ୍ରତୀକ୍ଷା ପ୍ରାଚୀନ କାବ୍ୟମାନଙ୍କରେ ବିଶେଷ ଭାବରେ ବର୍ଣ୍ଣିତ ଅଛି । ପ୍ରେମିକ ଓ ପ୍ରେମିକାର ନିଭୃତ ଭାବନାକୁ ପ୍ରାଚୀନ କବିମାନେ ଯେପରି ଭାବରେ ବର୍ଣ୍ଣନା କରିଛନ୍ତି, ଆଧୁନିକ ରସଗ୍ରାହୀମାନେ ଅଧିକାଂଶ ସ୍ଥଳରେ ସେହି ବର୍ଣ୍ଣନାକୁ ରୁଚିସମ୍ପନ୍ନ ବୋଲି କହିବେ । କବିତାର ପ୍ରତ୍ୟେକ ଛନ୍ଦ ଯଦି ଗୋଟାଏ ବିହ୍ୱଳତା ପ୍ରକାଶ କରେ ଓ ଅସଙ୍ଗଲିପ୍ସାର ଅଭିବ୍ୟକ୍ତି ସେଥିରେ ସୁସ୍ପଷ୍ଟ ହୋଇପଡ଼େ, ତାହା ହେଲେ ମାର୍ଜିତ ରୁଚି ନିଶ୍ଚୟ ସେହି କବିତାର ବିରୋଧୀ ହେବ । ହୃଦୟର ଆକାଙ୍‌କ୍ଷା କେବଳ ମୁହୂର୍ତ୍ତିକର ଦର୍ଶନରେ ସମାପ୍ତ ହୋଇପାରେ । ଏପରି ସ୍ଥଳରେ ଉତ୍କଟ ଉତ୍କଣ୍ଠାର ଅଧୀନ ହେବା ପ୍ରେମିକ କିମ୍ବା ପ୍ରେମିକାର ଗଭୀର ଭାବର ପରିଚୟ ଦିଏ ନାହିଁ । ପ୍ରିୟ-ଦର୍ଶନ ହୃଦୟରେ ସ୍ୱତଃ ଗୋଟାଏ ଆନନ୍ଦ ଆଣେ । ଯଦି ମନରେ କିଛି ମଳିନତା ଥାଏ, ତାହା ହେଲେ ଦର୍ଶନର ପବିତ୍ରତା ତାକୁ କ୍ଷାଳିତ କରେ । ସୁମହତ୍ ଚରିତ୍ରର ଅଧିକାରୀ ନ ହେଲେ, ପ୍ରିୟ-ଦର୍ଶନର ପ୍ରକୃତ ମର୍ଯ୍ୟାଦା ଜଣାପଡ଼େ ନାହିଁ । ଚଞ୍ଚଳତା ପ୍ରିୟଦର୍ଶନର ସାର୍ଥକତା ପ୍ରମାଣ କରେ ନାହିଁ । ଭାବର ଗମ୍ଭୀରତାରେ ଭାବୁକର ଚିତ୍ତଗ୍ଳାନି ଜନ୍ମେ ନାହିଁ । ପ୍ରିୟ-ଦର୍ଶନ ଯାହା ଉପରେ ଭିତ୍ତି ସ୍ଥାପନ କରେ, ତାହା ସାଧାରଣ ଦୃଷ୍ଟିରେ ଯଥାର୍ଥରୂପେ ଅଙ୍କିତ ହୋଇପାରେ ନାହିଁ; ତେଣୁ ଜଣେ ଯାହାକୁ ଦେଖିବାକୁ ଭଲ ପାଏ, ଅପର ତାକୁ ସହଜରେ ଉପେକ୍ଷା କରେ । ଅନ୍ତରର ଆକର୍ଷଣ ସମାନତା ପାଳନ କରେ ନାହିଁ । ମନୁଷ୍ୟର ସ୍ୱାଭାବିକ ପ୍ରବୃତ୍ତି ଏଥିରେ ସହାୟତା କରେ । ପ୍ରେମର ଜଟିଳ ଗୂଢ଼ ନିର୍ଣ୍ଣୟ କରିବା କଠିନ । ଦର୍ଶନାକାଙ୍‌କ୍ଷା ଯେପରି ପ୍ରଣୟୀ ଓ ପ୍ରଣୟିନୀ ମନରେ ପ୍ରଭାବ ବିସ୍ତାର କରେ, ସେହିପରି ଭାବ ଆରାଧ୍ୟ ଓ ଭକ୍ତ ମଧ୍ୟରେ ଦୃଷ୍ଟ ହୋଇଥାଏ । ପ୍ରଣୟରେ ମିଳନ ଓ ଭକ୍ତିରେ ମୁକ୍ତି ସମସ୍ତଙ୍କର ଲକ୍ଷ୍ୟ ନୁହେଁ । ଥରେ ମାତ୍ର ଅଲଭ୍ୟର ଦର୍ଶନ ଲାଭ କଲେ ଯଦି ହୃଦୟର ସଂଯୋଜନା ଅନନ୍ତ କାଳ ପାଇଁ ପ୍ରେମ, ଭକ୍ତି ଓ ସୌନ୍ଦର୍ଯ୍ୟ ସହିତ ସାଧିତ ହୋଇପାରେ, ତାହା ହେଲେ ପ୍ରେମ ଓ ସୌନ୍ଦର୍ଯ୍ୟର ସମନ୍ୱୟରେ ପ୍ରିୟଦର୍ଶନର ଉଦାରତା ଓ ମହତ୍ତ୍ୱ ନିର୍ଣ୍ଣୀତ ହେବା ବାଞ୍ଛନୀୟ ।

ଅନ୍ତରର ଅଭିବ୍ୟକ୍ତି ପ୍ରିୟଦର୍ଶନରେ ପ୍ରତିଫଳିତ ହେଲା ପରି ଜଣାଯାଏ । ରୂପଜ ସୌନ୍ଦର୍ଯ୍ୟର ଭଙ୍ଗୁରତା ମଧ୍ୟ ହୃଦୟରେ ଭୀତିସଞ୍ଚାର କରେ । ମନୁଷ୍ୟ ପ୍ରାଣର ଅଧୀରତା ଅଳ୍ପକାଳ ସ୍ଥାୟୀ; କିନ୍ତୁ ଏହି ଅଧୀରତାରେ ତାର ଚିରଶାନ୍ତିର ମାର୍ଗ ରୁଦ୍ଧ ହୋଇଯିବାର ଆଶଙ୍କା ଥାଏ । ଅନେକ ସମୟରେ ଆକସ୍ମିକ ଘଟଣାଟିଏ ଜୀବନର ଗତିକୁ ବଦଳାଇଦିଏ । ବିଶେଷତଃ କୌଣସି ଅଜ୍ଞାତ ବ୍ୟକ୍ତିଙ୍କର ଦର୍ଶନରେ ହୃଦୟର ଅନାବିଳ ପ୍ରେମ ଉଚ୍ଛ୍ୱସିତ ହୋଇଉଠିବା କିଛି ଅସମ୍ଭବ ନୁହେଁ । ପଶ୍ଚାତ୍ତରରେ ମନୁଷ୍ୟ ଯାହାକୁ ନିମେଷକ ପାଇଁ ଦୃଷ୍ଟିର ଅନ୍ତରାଳରେ ରଖିବାକୁ କୁଣ୍ଠିତ ହୁଏ, ତାହା ପୁଣି ଗୋଟାଏ ଛଳନା ଦେଖାଇ ମୁହୂର୍ତ୍ତିକେ ଦୃଷ୍ଟି ସମ୍ମୁଖରୁ ଅନ୍ତର୍ହିତ ହୋଇଯାଏ । ଶୂନ୍ୟ ଦୃଷ୍ଟି କେବଳ ଗୋଟାଏ କୁହୁକମୀ ଶକ୍ତିର ପରିଚୟ ପାଏ । ଉପର୍ଯ୍ୟୁକ୍ତ ଦୁଇଟି ଦୃଷ୍ଟାନ୍ତ ମନୁଷ୍ୟ ଜୀବନର ଆକସ୍ମିକ ପରିବର୍ତ୍ତନର ପ୍ରମାଣ ଦେଇପାରେ । ପରିବର୍ତ୍ତନରେ ଭଲ କିମ୍ବା ମନ୍ଦ ଆସିପାରେ । ପ୍ରିୟଜନର ବିଚ୍ଛେଦ ଓ ଆବିର୍ଭାବ ଉଭୟ ହୃଦୟରେ ଆଘାତ ଦିଏ । ଗୋଟିଏ କୋମଳ ହେଲେ ଅପରଟି କର୍କଶ ହୁଏ; କିନ୍ତୁ ବିକାଶ ଦିଗରେ କାହାର ପ୍ରୟୋଗ କିପରି କାର୍ଯ୍ୟ କରେ, ତାହା ହୃଦୟର ବିଶିଷ୍ଟତା ଉପରେ ନିର୍ଭର କରେ । ଜଣେ ଦୁଃଖରେ, ଶାନ୍ତିରେ ଯେଉଁ ଚନ୍ଦ୍ର ଦେଖିପାରେ, ଅନ୍ୟ ଜଣେ ସୁଖରେ ରହି ସେହି ଚନ୍ଦ୍ରର

କଳ୍ପନା ସୃଷ୍ଟି କରିପାରେ ନାହିଁ । ଭାବନାର ଗତି ବିଭିନ୍ନ ମାର୍ଗକୁ ଅନୁସରଣ କରିପାରେ; କିନ୍ତୁ ତାର ମୂଳାଧାରରେ କୌଣସି ଭିନ୍ନତା ଲକ୍ଷିତ ହୁଏ ନାହିଁ । ପ୍ରିୟଦର୍ଶନ ଏହି ମୂଳାଧାର ଉପରେ ଗୁରୁତ୍ୱାରୋପ କରେ; ତେଣୁ ସଂଖ୍ୟାତୀତ ପ୍ରାଣୀ-ମାନଙ୍କ ମଧ୍ୟରୁ ଜଣେ କେବଳ ଜଣକ ସହିତ ଚକ୍ଷୁର ପଲକରେ ଚିରଦିନ ପାଇଁ ଆବଦ୍ଧ ହେଲେ ବିସ୍ମୟର କିଛି କାରଣ ରହେ ନାହିଁ । ଆଜିକାଲି ଶିକ୍ଷାଭିମାନୀ "Love at first sight" କଥାଟାକୁ ପସନ୍ଦ କରେ; କିନ୍ତୁ କଥାଟାର ସାରବତ୍ତା ପ୍ରତି ମନ ଦିଏ ନାହିଁ । ଦୃଷ୍ଟି ସଞ୍ଚାଳନ ମାତ୍ରେ ଅସଂଖ୍ୟ ନରନାରୀଙ୍କ ମଧ୍ୟରୁ ଜଣକୁ ନିଜର ବୋଲି ଭାବିବା କିଛି ଅସଙ୍ଗତ ନୁହେଁ । ମନୁଷ୍ୟ ଆଜନ୍ମ କେତେଗୁଡ଼ିଏ ପ୍ରବୃତ୍ତି ପୋଷଣ କରେ । ସେଥିମଧ୍ୟରୁ କୋମଳ ପ୍ରବୃତ୍ତିଗୁଡ଼ିକ ସାଧାରଣତଃ ପ୍ରଚ୍ଛନ୍ନ ଭାବରେ ଥାଏ । ଅନ୍ତଃସଲିଳା ଫଲ୍‌ଗୁ ପରି ମନୁଷ୍ୟର କୋମଳ ଭାବରାଶି ସଂସାରର ତିକ୍ତତା ଓ କୋଳାହଳ ମଧ୍ୟରେ ଗୋଟାଏ ଗୋପନତା ଆଶ୍ରୟ କରି ରହେ । ପ୍ରିୟଦର୍ଶନ ଗୋପନତାରେ ସଞ୍ଚିତ କୋମଳ ଭାବରାଶିମାନଙ୍କର ଉଦ୍‌ବୋଧନ ଆଣେ ବୋଲି ଜୀବନରେ ଏହା ଏଡ଼େ ମଧୁର ଓ ହୃଦୟସ୍ପର୍ଶୀ । ସମାଜର କୁଟିଳତା ଓ ନିର୍ଯ୍ୟାତନା ହୃଦୟର ନିଭୃତ ମଧୁର ସ୍ପନ୍ଦନଟିକୁ ବନ୍ଦ କରିଦେବା ପାଇଁ ସହସ୍ର ଚେଷ୍ଟା କରେ; କିନ୍ତୁ ନିୟତିର ବିଧାନ କୌଣସି ଶୁଭ ମୁହୂର୍ତ୍ତରେ ସଂସାରର ଯାବତୀୟ କଣ୍ଟକକୁ ଦୂର କରି ମାନବିକତାର କୋମଳ ବିକାଶକୁ ସ୍ପଷ୍ଟ କରିଦିଏ । କର୍କଶତା-ପ୍ରୟାସୀ କର୍ମୀ ଏଥିରେ ବିଚଳିତ ହୋଇପାରେ । ଭାବର ସମ୍ପୂର୍ତ୍ତି-ବିଧାନରେ ଯୁଗଯୁଗାନ୍ତର ପାଇଁ ଜଣକର ଦୃଷ୍ଟି ଆଉ ଜଣକୁ ନୟନର ପିତୁଳା ପରି ଗ୍ରହଣ କଲେ ସମାଜ କିମ୍ବା ଜାତିର ସେଥିରେ ବିଦ୍ୱେଷ ରହିବା ଉଚିତ ନୁହେଁ । ଅବଶ୍ୟ ଦୃଷ୍ଟିର ଲୋଲୁପତାକୁ ଏ ସମ୍ପର୍କରେ ସମର୍ଥନ କରିବା ଅବିଧେୟ ।

ହୃଦୟର ମିଳନ ନ ହେଲେ ଚକ୍ଷୁର ସୌନ୍ଦର୍ଯ୍ୟ-ବୋଧ ଆସେ ନାହିଁ । କେହି କାହାକୁ ଘୃଣାଚକ୍ଷୁରେ ଦେଖି ଅନ୍ତରର ଆବେଗକୁ ଭାଷାରେ ପ୍ରକାଶ କରେ ନାହିଁ । ଆହୁରି ମଧ୍ୟ ମନୁଷ୍ୟର ଗୋଟାଏ ଉଦାସୀନ ଭାବ ଥାଏ । ଔଦାସୀନ୍ୟ ପ୍ରିୟଦର୍ଶନର ବିରୋଧୀ ହୁଏ ନାହିଁ; ବରଂ ଗୋପନରେ ଯେଉଁ କୋମଳ ଭାବର ଉଦ୍ଦୀପନା ହୋଇଥାଏ; ତାକୁ ଏହା ସଂଯତ ଭାବରେ ରଖେ । ହୃଦୟର ଆବେଗକୁ ସବୁବେଳେ ଭାଷାରେ ପ୍ରକାଶ କଲେ ପ୍ରଣୟ ଓ ଭକ୍ତିର ମହତ୍ତ୍ୱ ନଷ୍ଟ ହୁଏ । ସଂସାରର କର୍ମତତ୍ପରତାରେ ଅନ୍ତରର ଆରାଧ୍ୟ ଧନ ଗୋଟାଏ ଆବରଣର ଅନ୍ତରାଳରେ ରହିବା ଭଲ । ଯାବତୀୟ ସୁଖୋଦ୍ଦୀପକ ଦର୍ଶନରେ ପ୍ରିୟଦର୍ଶନର ଆନନ୍ଦ ମିଳେ ନାହିଁ । ମନର ଚଞ୍ଚଳତା କିମ୍ବା ଉତ୍ତେଜନା ଦୃଷ୍ଟିଶକ୍ତିଦ୍ୱାରା ଅନେକ ପରିମାଣରେ ସାଧିତ ହୋଇଥାଏ । ସମସ୍ତ ସମୟରେ ବାହାରର ଲାବଣ୍ୟ ସୌନ୍ଦର୍ଯ୍ୟର ବିଶିଷ୍ଟ ବିଭାବଗୁଡ଼ିକୁ ପ୍ରକାଶ କରେ ନାହିଁ । ଦୃଷ୍ଟିରେଖା କେବଳ ସୌନ୍ଦର୍ଯ୍ୟର ବେଷ୍ଟନୀରେ ଅଟକି ରହେ ଓ ଦର୍ଶକ କ୍ଷଣସ୍ଥାୟୀ ଆନନ୍ଦର ଆଭାସ ମାତ୍ର ଅନୁଭବ କରେ । ସାଧାରଣ ମନୁଷ୍ୟ ଅଧିକାଂଶ ସମୟରେ ସୌନ୍ଦର୍ଯ୍ୟର ଏହି ବାହାର ଅଂଶଟି ଉପଭୋଗ କରି ଗୋଟାଏ ଉନ୍ମାଦନାରେ ସମସ୍ତ କଟାଇଦିଏ । ସଂସାର ବିରାଗୀ କାମିନୀ ଓ କାଞ୍ଚନତ୍ୟାଗର ବ୍ୟବସ୍ଥା ଦିଅନ୍ତି ।

ସୌନ୍ଦର୍ଯ୍ୟର ଆକର୍ଷଣ ଯେତେବେଳେ ଉତ୍ତେଜନାର କାରଣ ହୁଏ, ସେତେବେଳେ ମାନସିକ ବିକାର ଘଟିବା ସ୍ୱାଭାବିକ । କାମିନୀ ଓ କାଞ୍ଚନ ସବୁବେଳେ ଅନର୍ଥର ହେତୁ ନୁହେଁ । ତାହା ହୋଇଥିଲେ ହିନ୍ଦୁର ଚତୁର୍ବର୍ଗ ବସ୍ତୁପ୍ରାପ୍ତିରେ କାମ ଓ ଅର୍ଥ ଦୁଇଟି ବିଶିଷ୍ଟ ଫଳ ହୋଇ ନ ଥାନ୍ତା । ଉତ୍ତେଜନା ଓ ମାନସିକ ବିକାରକୁ ଭୟ କରି କାମିନୀ ଓ କାଞ୍ଚନ ତ୍ୟାଗର ବ୍ୟବସ୍ଥା ହୋଇଅଛି । ପ୍ରାକୃତିକ ବିଧାନରେ କୌଣସି ବିଷୟ ହେୟ ନୁହେଁ । ପାପ ଓ ପୁଣ୍ୟ, ଭଲ ଓ ମନ୍ଦ ବିଚାର କରିବା ସଂସାରବାସୀର ସୀମାବଦ୍ଧ ଦୃଷ୍ଟିର ପରିଚାୟକ । ପ୍ରକୃତ ସୌନ୍ଦର୍ଯ୍ୟ ଜ୍ଞାନ ଜନ୍ମିଲେ ହୃଦୟର ସଙ୍କୀର୍ଣ୍ଣତା ଗୁଚିଯାଏ; ଗୋଟାଏ ସାର୍ବଜନୀନ ପ୍ରୀତିଦୃଷ୍ଟି ସ୍ୱତଃ ସଞ୍ଚାଳିତ ହୁଏ ।

କାଳର ପ୍ରଭାବ ରୁଚିଗତ ବୈଷମ୍ୟ ସୃଷ୍ଟି କରେ । ଅତୀତରେ ପ୍ରକୃତିର ଉପାସନା ପ୍ରବଳ ଥିଲା । ଆଜି ସେହି ଉପାସନା ପରିବର୍ତ୍ତରେ ଉପଭୋଗ ଆଧିପତ୍ୟ ବିସ୍ତାର କରିଅଛି । ଜୀବନ ସଙ୍ଗେ ଐଶ୍ୱର୍ଯ୍ୟର ସମ୍ପର୍କ ଅଛି । ସମ୍ପର୍କଟା କେତେ-ବେଳେ କ୍ଷୀଣ, କେତେବେଳେ ପୁଣି ଉଚ୍ଛୃଙ୍ଖଳ ହୁଏ । ଜଡ଼ବାଦ ଓ ଅପାର୍ଥିବ ଭାବନା ପରସ୍ପର ବିରୋଧୀ ବୋଲି ମନେ ହୁଏ । ବର୍ତ୍ତମାନ ଯୁଗ ବସ୍ତୁବାଦକୁ ଐଶ୍ୱର୍ଯ୍ୟପ୍ରାପ୍ତିର ପ୍ରଧାନ ପନ୍ଥା ବୋଲି ଗ୍ରହଣ କରେ; ତେଣୁ ଜଡ଼ବିଜ୍ଞାନର ଉତ୍କର୍ଷ ସଭ୍ୟ ସମାଜରେ ବେଶି ଆଦର ପାଏ । ଆଜି କଳ୍ପନା-ବିଭବ ମନୁଷ୍ୟର କୋମଳ ପ୍ରବୃତ୍ତିମାନଙ୍କୁ ବିଶେଷ ଭାବରେ ସ୍ପର୍ଶ କରୁ ନାହିଁ ।

ଯେଉଁମାନଙ୍କର ଦୃଷ୍ଟି ରେଖା ଜଡ଼ବିଜ୍ଞାନକୁ ଅବଲମ୍ବନ କରିଛି ସେମାନେ ଜଗତର ରହସ୍ୟକୁ ଅନ୍ୟ ଦିଗରୁ ଦେଖିବାକୁ ମନ ବଳାଇବେ ନାହିଁ । ଏହି ପ୍ରଭେଦ ଯେନ ପ୍ରାଚ୍ୟ ଓ ପ୍ରତୀଚ୍ୟର ଆଦର୍ଶ ଭିନ୍ନ ହୋଇଯାଇଅଛି । ପ୍ରାଚ୍ୟର ଦୈନ୍ୟରେ ଶାନ୍ତିର ଯେ ଗମ୍ଭୀରତା ଅଛି, ପ୍ରତୀଚ୍ୟର ଅସ୍ଥାୟୀ ଐଶ୍ୱର୍ଯ୍ୟରେ ସେପରି କୌଣସି ନିଦର୍ଶନ ନାହିଁ । ପ୍ରାଚ୍ୟ ଓ ପ୍ରତୀଚ୍ୟର ଦୃଷ୍ଟି ସମାନ ନୁହେଁ । ପ୍ରାଚ୍ୟର ଅନୁଭୂତି ମନୁଷ୍ୟର ଅନ୍ତରକୁ ଅନ୍ୱେଷଣ କଲାବେଳେ ପ୍ରତୀଚ୍ୟ ବେତାର ଯନ୍ତ୍ରକୁ ଅନୁସରଣ କରେ । ଗୋଟିଏ କ୍ଷେତ୍ରରେ ସରଳପ୍ରାଣତା ଲକ୍ଷିତ ହେଲେ ଅନ୍ୟତ୍ର ତଦ୍‌ବିପରୀତ ଅବସ୍ଥା ଐଶ୍ୱର୍ଯ୍ୟର ପ୍ରଭୁତ୍ୱ ଦେଖାଏ ।

ଐଶ୍ୱର୍ଯ୍ୟର ମହତ୍ତ୍ୱ ପ୍ରଭୁତ୍ୱରେ ନାହିଁ; କିନ୍ତୁ ଯୁଗୋଚିତ ରୁଚିକୁ ପ୍ରଭୁତ୍ୱ ବିଶେଷ ଭାବରେ ପ୍ରଭାବିତ କରେ । ଜଡ଼ବସ୍ତୁର ଆହରଣ ଓ ଉପଭୋଗରେ ହୃଦୟର ପ୍ରଶାନ୍ତି ଆସେ ନାହିଁ; ବରଂ ସ୍ୱାର୍ଥପରତା ମନୁଷ୍ୟର ଭାବରାଜ୍ୟକୁ ଅଧିକାର କରେ । ପ୍ରୀତି ଓ ସୌନ୍ଦର୍ଯ୍ୟର ଅବକାଶରେ ତ୍ୟାଗ ଓ ସଂଯମ ଆବଶ୍ୟକ ହୋଇଥାଏ । ଦୃଷ୍ଟିଶକ୍ତି କେବଳ ସଂସାରର ବସ୍ତୁଜାଲରେ ନିବଦ୍ଧ ରହିଲେ ହୃଦୟର ନିଭୃତ କନ୍ଦରରେ ପ୍ରେମର ଅମୃତ ରାଗିଣୀ ଝଙ୍କୃତ ହୋଇଉଠେ ନାହିଁ । ଗୋଟାଏ ଶୁଷ୍କତା ଚକ୍ଷୁ ସମ୍ମୁଖରେ ଉଦ୍ଭାସିତ ହୋଇଉଠେ । ମନୁଷ୍ୟ ସମସ୍ତ ଜୀବନଟା ଅର୍ଥ ଓ ଯଶର ଲାଳସାରେ କଟାଇ ଦେଇ ପରିଣାମରେ ଦେଖେ ଯେ, ଗୋଟାଏ ବିପୁଳ ବ୍ୟର୍ଥତା ତାକୁ ଏତେ ଦିନଯାଏ ଭୁଲାଇ ରଖିଥିଲା । ପ୍ରେମ ଓ ସୌନ୍ଦର୍ଯ୍ୟର ଦୀପ୍ତି ଆଲୋକର ସ୍ଫୁରଣ ସଙ୍ଗେ ସମାନ । ଏହି ସ୍ଫୁରଣଟି ସମସ୍ତଙ୍କ ଦୃଷ୍ଟିରେ ଦେଖାଯାଏ ନାହିଁ । ସମୂହ ବା ସ୍ୱତନ୍ତ୍ର ଭାବରେ ସୌନ୍ଦର୍ଯ୍ୟର ବିକାଶ ଘଟିଥାଏ । ସୌନ୍ଦର୍ଯ୍ୟର ଅଲକ୍ଷିତ ଉପାଦାନଗୁଡ଼ିକ ମାନବ ହୃଦୟରେ ପ୍ରୀତିସଞ୍ଚାର କରେ । ପ୍ରିୟଦର୍ଶନ ଏହି ଅଲକ୍ଷିତ ଉପାଦାନଗୁଡ଼ିକୁ ଗ୍ରହଣ କରି ଜୀବନର ସରସତାକୁ ବଢ଼ାଇଦିଏ । ସାମୟିକ ବିସ୍ମୃତି ପ୍ରିୟଦର୍ଶନର ଅନୁଭୂତିକୁ ଅପସାରିତ କରିପାରେ ନାହିଁ । ଶବ୍ଦଟିଏ ଯେତେ କ୍ଷୀଣ ହେଉ ପଛକେ, ଅନନ୍ତ ଆକାଶରେ ଅନନ୍ତ କାଳପାଇଁ ଆତ୍ମଗୋପନ କରି ରହେ । ସେହିପରି ଦର୍ଶନଟି ଆଡ଼ମ୍ବରଶୂନ୍ୟ ହେଲେ ସୁଦ୍ଧା ଯଦି ଅନ୍ତରର ଗୋଟିଏ ଅତି ମଧୁର ସ୍ପନ୍ଦନ ସେଥିରେ ସୃଷ୍ଟି ହୋଇଥାଏ, ତାହା ହେଲେ ତାକୁ ପାସୋରି ଦେବା ମନୁଷ୍ୟ ପକ୍ଷରେ ସମ୍ଭବପର ହୁଏ ନାହିଁ । ଯାହାର ଦର୍ଶନ ଲାଭରେ ଏହି ସ୍ପନ୍ଦନ ଅନୁଭୂତ ହୋଇଥାଏ, ତାହାର ସନ୍ଧାନରେ ମନୁଷ୍ୟ ଗୋଟାଏ ଅଜ୍ଞାତ ଦିଗରେ ଜୀବନଟାକୁ ଅତିବାହିତ କରିଦେଇପାରେ । ପ୍ରେମର ଦୀପ୍ତି ଥରେ ମାତ୍ର ଚକ୍ଷୁ ସମ୍ମୁଖରେ ଆସି ଲୁଚିଯାଇପାରେ । ସଂସାରର ଅଜସ୍ର ନିର୍ଯ୍ୟାତନା ମନୁଷ୍ୟକୁ ସ୍ତବ୍ଧ କରିଦେଇପାରେ; କିନ୍ତୁ ଇନ୍ଧନରେ ଅଗ୍ନି ସଂଯୋଗ କଲେ ଯେପରି ତାହା ସମସ୍ତରେ ଜଳିଉଠେ, ସେହିପରି ମୁହୂର୍ତ୍ତିକର ପ୍ରିୟଦର୍ଶନ ଯୁଗାବଧି ଗୋଟାଏ ଆଲୋକର ବର୍ତ୍ତିକା ରଖିଦେଇଯାଏ । ଦିନ ଆସେ, ଯେତେବେଳେ ବିଶ୍ୱପ୍ରେମରେ ମନୁଷ୍ୟ ଦେଖେ—ଜଣକ ସହିତ ନିମେଷକ ପାଇଁ ଦେଖା ମନୁଷ୍ୟ ଜୀବନକୁ କେଡ଼େ ସୁମହତ୍ ଓ ଅମୃତମୟ କରିପାରେ ।

# ଅବସାନ

ସୃଷ୍ଟିର ବିରାଟ କୌଶଳରେ ଯେଉଁ ମହାମୟୀ ଅଖଣ୍ଡ ଶକ୍ତି ପରିବ୍ୟାପ୍ତ ହୋଇ ରହିଅଛି ଓ ଯାହାକୁ ଜଡ଼ବାଦୀ ବୈଜ୍ଞାନିକ ବିବିଧ ଉପାୟରେ ନିରୂପଣ କରିବାକୁ ଯାଇ ଏପର୍ଯ୍ୟନ୍ତ କୌଣସି ଚରମ ପନ୍ଥାରେ ଉପନୀତ ହୋଇପାରି ନାହିଁ, ଅବସାନ ସେହି ଶକ୍ତିର ଗୋଟାଏ ପର୍ଯ୍ୟାୟ ମାତ୍ର । ସେହି ଶକ୍ତିର ପ୍ରଚ୍ଛନ୍ନ ଓ ନୀରବ ବିକାଶକୁ ମଧ୍ୟ ଅବସାନ ଆଖ୍ୟା ଦିଆଯାଇ-ପାରେ । ନାନା ରଙ୍ଗରେ ରଞ୍ଜିତ ଇନ୍ଦ୍ରଧନୁ କ୍ଷଣିକ ଦୀପ୍ତି ଦାନ କରି ଉଭେଇଯାଏ । ଅନନ୍ତ ଆକାଶରେ ମୁହୂର୍ତ୍ତିକ ପାଇଁ ଇନ୍ଦ୍ରଧନୁ ପ୍ରକଟିତ ହୋଇ ଲୁଚିଗଲା ବେଳେ ସେ ରଖି ଦେଇଯାଏ—ଗୋଟାଏ ଅବସାନର ଚିହ୍ନ । ମେଘାବୃତ ଧରଣୀର ନିମେଷକ ଉନ୍ମେଷ ପାଇଁ ଓ ପ୍ରକୃତିର ଗୁରୁ-ଗମ୍ଭୀର ଭାବକୁ ପରିବର୍ତ୍ତନ କରିବା ପାଇଁ ଯଦି ଇନ୍ଦ୍ରଧନୁର ସୃଷ୍ଟି ହୋଇପାରେ, ତା ହେଲେ ଐହିକ ଐଶ୍ୱର୍ଯ୍ୟର ପରିଣତି ଯେ କୌଣସି ଆକସ୍ମିକ ଧ୍ୱଂସାବଶେଷରେ ପରିଲକ୍ଷିତ ହେବା ସମ୍ପୂର୍ଣ୍ଣ ସ୍ୱାଭାବିକ । ପ୍ରଭାତ ଓ ସନ୍ଧ୍ୟାର କ୍ଷୀଣଦୀପ୍ତି ସମାନ ହେଲେ ସୁଦ୍ଧା ସମାନ ଭାବ ପ୍ରକାଶ କରେ ନାହିଁ । ତେଣୁ ପ୍ରଭାତ ପାଇଁ ସଙ୍ଗୀତରେ ଯେ ରାଗିଣୀଟି ମନୋହାରିଣୀ ହୁଏ, ସନ୍ଧ୍ୟା ପାଇଁ ତାହା ହୁଏ ନାହିଁ । ବିପଞ୍ଚୀର ଯେ ସୁମଧୁର ସ୍ୱରଟି ବସନ୍ତ ସନ୍ଧ୍ୟାରେ ଭାସି ଆସି ବିଜନବିହାରୀ ପଥିକ ମନରେ ଅତୀତର ଗୋଟିଏ ଅସ୍ପଷ୍ଟ ମଧୁର ବିରହ-ଚିତ୍ର ଆଙ୍କି ଦେଇପାରେ, ତାହା ଅବସାନର ନାମାନ୍ତର ନୁହେଁ କି ? ମାଧୁର୍ଯ୍ୟର ପ୍ରାଚୁର୍ଯ୍ୟରେ ଯେଉଁ ଅବନତି ଆସେ, ତାହା ହୁଏ ଏହାର ପ୍ରଧାନ ଅବଲମ୍ବନ । ସୌନ୍ଦର୍ଯ୍ୟର ତୂଳିକା ସବୁବେଳେ ସମାନ ଭାବରେ କାର୍ଯ୍ୟ କରେ ନାହିଁ । ବସନ୍ତ ଋତୁରାଜ; କିନ୍ତୁ ସେହି ବସନ୍ତ ସନ୍ଧ୍ୟାର ସବୁ ନୈସର୍ଗିକ ବିଭବ ମଧ୍ୟରେ ମନ ଯେତେବେଳେ ଉଦାସ ହୋଇ ଭାସେ ଓ ଗୋଟାଏ ପ୍ରତୀକ୍ଷାରେ ଭାବୁକ ନିଜକୁ ଭୁଲିଯାଏ, ସେତେବେଳେ ଅବସାନ ତାକ ଅଲକ୍ଷିତ ଶକ୍ତି ବିସ୍ତାର କରେ । ସୌନ୍ଦର୍ଯ୍ୟାନୁଭୂତିରେ ମଧ୍ୟ ଏହା ବିଶେଷ ବିଶେଷ ଭାବରେ ସାହାଯ୍ୟ କରେ । ଗୋଟିଏ ହିଲ୍ଲୋଳ ପରେ ବିରାମ ଆସେ । ଫୁଲଟିଏ ଫୁଟି ଯେତେବେଳେ ମଉଳି ପଡ଼େ, ଯୌବନର ଆକର୍ଷଣଟି ଯେତେବେଳେ ଶିଥିଳ ହୋଇ ଆସେ ଓ ଯୁବକ ଯୁବତୀଠାରୁ ଅନ୍ତର ହୋଇ ନୈରାଶ୍ୟରେ ମୁକ୍ତି ଲୋଡ଼େ, ସେତେବେଳେ ଅବସାନ ତାର ବିଜୟ-ବୈଜୟନ୍ତୀ ଉତ୍ତୋଳନ କରିଦିଏ । ସନ୍ଧ୍ୟାରାଗରଞ୍ଜିତ ନୈଶ ଆକାଶରେ ସଂଖ୍ୟାତୀତ ତାରକା ରାଶି ଫୁଟି ଉଠିଲାବେଳେ ପ୍ରକୃତିର ଅନିନ୍ଦ୍ୟ ଶୋଭା ଗୋଟିଏ ପଟପରିବର୍ତ୍ତନ ଛଳରେ ଆସି ଜଗତକୁ ମୁଗ୍ଧ କରେ । ଜଡ଼ବିଜ୍ଞାନ ଯେଉଁ ତାରକାମାନଙ୍କର ଅସୀମ ଦୂରତ୍ୱ ନିରୂପଣ କରିବାରେ ପ୍ରୟାସ କରେ, ଶାନ୍ତ ଭାବନା ଦିବାବସାନରେ ସେହିମାନଙ୍କୁ କେବଳ ଅପେକ୍ଷା କରି ରହେ । କର୍ମକ୍ଲାନ୍ତ ଜୀବନର ଶତ ନିର୍ଯ୍ୟାତନା ସନ୍ଧ୍ୟାର ଶାନ୍ତ ହିଲ୍ଲୋଳ ସ୍ପର୍ଶରେ ଉଭେଇଯାଏ । ଛବିଟି ପରି ମନୁଷ୍ୟ ମୁହୂର୍ତ୍ତିକ ପାଇଁ ନିଷ୍ପନ୍ଦ ହୋଇ ରହେ । ପ୍ରକୃତିର ଅଲଙ୍ଘନୀୟ ନିୟମରେ ଅବସାନ ଯେଉଁ ପର୍ଯ୍ୟାୟଟି ଉପସ୍ଥାପିତ କରାଏ, ତାହା ହୁଏ କ୍ଷୁବ୍ଧପ୍ରାଣର ଗୋଟାଏ କ୍ଷଣିକ ଆଶ୍ୱାସନା । ଏହି ଆଶ୍ୱାସନାଟିକକ ପାଉ ନ ଥିଲେ ଜୀବନ ଦୁର୍ବହ ବୋଧ ହେଉଥାନ୍ତା ।

ଅନୁଭୂତି ସଙ୍ଗେ ଅବସାନର ବିଶେଷ ସମ୍ପର୍କ । ଜଡ଼-ବିଜ୍ଞାନ ଏହାକୁ ଅନେକ ସମୟରେ ଉପେକ୍ଷା କରିଥାଏ । ପ୍ରମାଣସାପେକ୍ଷ କ୍ରିୟାରେ ଏହାର ମହତ୍ତ୍ୱ ଉପଲବ୍ଧି କରାଯାଏ ନାହିଁ । ସଂଖ୍ୟାତୀତ କ୍ଷୁଦ୍ର ଘଟନାମାନଙ୍କୁ ପଛରେ ପକାଇ ଦେଇ ଜୀବନ-ସ୍ରୋତ ଅବିରାମ ଗତିରେ ଚାଲିଛି । କାଳର ପ୍ରଭାବ ସବୁ ପୋଡ଼ାଇ ଦେଉଛି । ଯାହା ଲୁଚି ଯାଉଛି, ତାକୁ ପୁଣି ଦୃଷ୍ଟି ସମ୍ମୁଖରେ କିଏ ପ୍ରକାଶ କରେ ? ସଂସାରର ସବୁ କୋଳାହଳଭେଦୀ ଗୋଟାଏ ନୀରବତା ସମସ୍ତ ସମୟରେ ପ୍ରାଣକୁ ଅଧିକାର କରି ବସେ । ରଙ୍ଗାଳୟରେ ପଟ ପରିବର୍ତ୍ତିତ ହେଉଥାଏ; କିନ୍ତୁ କୌଣସି ବିଶିଷ୍ଟ ଦୃଶ୍ୟର ଅଭିନୟ ପରେ କିଛିକ୍ଷଣ

ପାଇଁ ଗୋଟାଏ ବ୍ୟବଚ୍ଛେଦ ଆସେ । ଏହି ବ୍ୟବଚ୍ଛେଦରେ ଦର୍ଶକ ଟିକିଏ ତାର ଦୃଷ୍ଟିକୁ ପଛକୁ ଫେରାଇଦିଏ । କାରଣ ତାର ଅନ୍ତର ଅନୁଭବ କରେ—ସେହି ଅତୀତ ଦୃଶ୍ୟର ଆକର୍ଷଣ । ଅନୁଭୂତିର ଉପାଦାନ ଅଧିକାଂଶ ସମୟରେ ନୀରବତାକୁ ଆଶ୍ରୟ କରେ; ତେଣୁ ଅବସାନର ଚିତ୍ରଟି ଶୂନ୍ୟ କିମ୍ବା ଭାରାକ୍ରାନ୍ତ ହୃଦୟରେ ବେଶି ପରିମାଣରେ ପ୍ରତିଭାତ ହୋଇଉଠେ । କୌଣସି ବିଶିଷ୍ଟ ଦର୍ଶନ ଯେତେବେଳେ ଲୁଚି ଯାଉଥାଏ, ସେତେବେଳେ ହୃଦୟରେ ଗୋଟାଏ ଶୂନ୍ୟତା ଆସେ ଓ ସେହି ଅବସରରେ ଅନୁଭୂତି ଆସି ଅବସାନର ଚିତ୍ରଟିକୁ ଆଙ୍କି ଦେଇଯାଏ । ଅନ୍ୟ ପକ୍ଷରେ ଭାରାକ୍ରାନ୍ତ ହୃଦୟରେ ଜ୍ୱାଳା ନିବାରଣ କରିବାକୁ କ୍ଷୁବ୍ଧ ପ୍ରାଣ ଯେତେବେଳେ ବିସ୍ମୃତିକୁ ଅପେକ୍ଷା କରେ, ସେତେବେଳେ ମଧ୍ୟ ଅବସାନ ଆସେ । ଆନନ୍ଦ ଓ ନିରାନନ୍ଦ ଦୁଇଟିକୁ ଘେନି ଏହା ପ୍ରକୃତି ସଙ୍ଗରେ ମିଶି ଚାଲିଥାଏ । ଦୁର୍ଦ୍ଦିନର ସଙ୍କଟ ଓ ସୁଦିନର ସୁଖନିଦ୍ରା ଆସି ଚାଲିଯାଏ; ଅବସାନରେ ସେମାନେ ଗୋଟାଏ ଅସ୍ପଷ୍ଟ ଛବି ଆଙ୍କି ଦେଇଯାନ୍ତି । ବିସ୍ମୃତି ଯାହାକୁ ଅତି ନିର୍ମମ ଭାବରେ ଲୋପ କରିଦିଏ, ଅବସାନ ତାକୁ ଟିକିଏ ସଜାଇ ଦେଇ ବିସର୍ଜନ ଦିଏ । ଜଗତର ସମସ୍ତ ବସ୍ତୁ ପରିଣାମୀ । ପରିଣାମକୁ ଯଦି ସମସ୍ତେ ଆଗରୁ ଜାଣିପାରୁଥାନ୍ତେ, ତେବେ ଅବସାନର ବୈଶିଷ୍ଟ୍ୟକୁ କେହି ଲକ୍ଷ୍ୟ ରଖନ୍ତେ ନାହିଁ ।

ବିୟୋଗାନ୍ତ ଘଟଣାବଳୀର ବିବୃତିର ଆଦର ଅତୀତ ଯୁଗରେ ନ ଥିଲା । ମନୁଷ୍ୟର ଜୀବନ ସେତେବେଳେ ଚିନ୍ତା-ଜଟିଳତା ମଧ୍ୟରେ ଅତିବାହିତ ହେଉ ନ ଥିଲା । ସୁଲଭ ସାଂସାରିକ ସୁଖଭୋଗ କରି ସେ ଅତୀତରେ ଗୋଟାଏ ସ୍ୱତନ୍ତ୍ର ଭାବଧାରା ସୃଷ୍ଟି କରିଥିଲା । ସଭ୍ୟତାର ବିସ୍ତୃତି ସଙ୍ଗେ ମାନବ ଆଜି ତାର ଜୀବନର ଗତିକୁ ବିଭିନ୍ନ ଦିଗରେ ନିୟନ୍ତ୍ରିତ କରିବାକୁ ଚେଷ୍ଟା କରୁଛି । ଦିନେ ଯାହା ତାର କଳ୍ପନାର ସୀମାକୁ ଆସି ପାରୁ ନ ଥିଲା, ଆଜି ସେ ତାକୁ କାର୍ଯ୍ୟରେ ପରିଣତ କରି ସଭ୍ୟତାର ଗୌରବ ଦେଖାଉଅଛି; କିନ୍ତୁ ଏହି ଦୁଇ ଜୀବନ ମଧ୍ୟରେ ଯେ ପାର୍ଥକ୍ୟ ଦେଖାଯାଏ, ତାହା କେତେ ଦୂର ଅପୂର୍ଣ୍ଣତାର ପରିପୂରକ, ତାହା କହିବା ସହଜ ନୁହେଁ । ଜଟିଳତା ମଧ୍ୟରେ ସଭ୍ୟତାର ଅଭିବୃଦ୍ଧି ଘଟିପାରେ; କିନ୍ତୁ ଜୀବନର ସ୍ୱାଚ୍ଛନ୍ଦ୍ୟବିଧାନ ସଙ୍ଗେ ଏହାର କୌଣସି ସମ୍ପର୍କ ନାହିଁ । ଗୋଟାଏ ଗୋଟାଏ ଜୀବନର ସ୍ପନ୍ଦନକୁ ଦ୍ରୁତ କିମ୍ବା ମନ୍ଥର କରିଦେଇପାରେ । ଅତୀତର ଭାବଧାରା ସଙ୍ଗେ ବର୍ତ୍ତମାନର ସାମଞ୍ଜସ୍ୟ ରକ୍ଷା କରିବା ଲାଗି କେତେଗୁଡ଼ାଏ ସାଧାରଣ ଅନୁଭୂତି ଅଛି । ବିରହ, ମିଳନ ଓ ପ୍ରତିହିଂସା ପ୍ରଭୃତିର ଚିତ୍ରଣ ଯୁଗୋପଯୋଗୀ ପ୍ରଭାବରେ ଭିନ୍ନ ଆକାର ଧାରଣ କରିଥାଏ; କିନ୍ତୁ ପ୍ରତ୍ୟେକର ଯେଉଁ ସାଧାରଣ ଭିତ୍ତି ଅଛି, ସେଥିର ପରିବର୍ତ୍ତନ କରିବା ସମ୍ଭବ ନୁହେଁ । ଅତୀତରେ ପ୍ରକୃତିର ଯେ ଚିତ୍ରଟି ମନୋମୋହକର ବୋଧ ହେଉଥିଲା, ଆଜି ମଧ୍ୟ ତହିଁର ବିଶେଷ ପରିବର୍ତ୍ତନ ଘଟି ନାହିଁ । ସୂର୍ଯ୍ୟାସ୍ତର କମନୀୟ କାନ୍ତି ଅତୀତ ଓ ବର୍ତ୍ତମାନରେ ତାର ସମାନତାକୁ ବ୍ୟତିକ୍ରମ କରି ନାହିଁ । ବର୍ଣ୍ଣନାର ପାର୍ଥକ୍ୟ ସଙ୍ଗେ ମୌଳିକ ଭାବଧାରାର ପରିବର୍ତ୍ତନ ଘଟେ ନାହିଁ । ଯେଉଁ ଅଖଣ୍ଡ ନିୟମ ସୃଷ୍ଟିର ଆଦିମ କାଳରୁ ଅବ୍ୟାହତ ହୋଇ ରହିଅଛି ଓ ପ୍ରାକୃତିକ କ୍ରିୟାମାନଙ୍କର ଅକ୍ଷୁର୍ଣ୍ଣ ପ୍ରଭାବ ବିସ୍ତାର କରୁଅଛି, ତାହା ଶ୍ରେଷ୍ଠ ମାନସିକ ପ୍ରବୃତ୍ତିମାନଙ୍କୁ ମଧ୍ୟ ସମାନ ଭାବରେ ଗୋଟାଏ ସାଧାରଣ ଧର୍ମପାଳନ କରିବାକୁ ପ୍ରେରଣା ଦିଏ । ଅବସାନର ବୈଚିତ୍ର୍ୟକୁ ଅତୀତ ଯେ ଦୃଷ୍ଟିରେ ଦେଖୁଥିଲା, ବର୍ତ୍ତମାନ ମଧ୍ୟ ସେହି ଦୃଷ୍ଟିରେ ଦେଖୁଛି । ଯଦି କିଛି ପାର୍ଥକ୍ୟ ରହିଥାଏ, ତାହା ହେଲେ ତାକୁ ବେଷ୍ଟଣୀର ବିଶିଷ୍ଟତା ଉପରେ ଆରୋପ କରାଯାଇପାରେ । ମାନସିକ କ୍ରିୟା ପ୍ରକୃତି ଉପରେ ନିର୍ଭର କରେ । ପ୍ରକୃତି ଯେତେବେଳେ ନିର୍ଜନତାରେ ଅବସାନର ଦୃଶ୍ୟଟିକୁ ତାର ସୌନ୍ଦର୍ଯ୍ୟ ତୂଳିକାରେ ଆଙ୍କି ଦିଏ, ସେତେବେଳେ ଅନ୍ତରର ଭାବ ସେହି ପ୍ରାକୃତିକ ଚିତ୍ରଣରେ ପ୍ରଭାବିତ ହୁଏ । ଅତୀତ ଓ ବର୍ତ୍ତମାନର ବ୍ୟବଧାନ ଲୋପ ପାଏ । ସାଂସାରିକ ଘଟଣାବଳୀର ଏ ସମ୍ପର୍କରେ ଟିକିଏ ପାର୍ଥକ୍ୟ ଦେଖାଯାଇପାରେ । ବିୟୋଗାନ୍ତ ଘଟଣାକୁ ସୁଖପ୍ରୟାସୀ ଆଦର କରେ ନାହିଁ । ସେ ସବୁବେଳେ ତା ଚକ୍ଷୁ ସମ୍ମୁଖରେ ଗୋଟାଏ ପୂର୍ଣ୍ଣ ଆନନ୍ଦର ଚିତ୍ର ଦେଖିବାକୁ ଭଲ ପାଏ; କିନ୍ତୁ ଏହା କଅଣ ସମ୍ଭବ ? ଅତୀତରେ ଯେଉଁ ବିରହବର୍ଣ୍ଣନା ଭାବୁକ ପ୍ରାଣକୁ ଉଚ୍ଛ୍ୱସିତ କରୁଥିଲା, ଆଜି ତାହାର ବିଲୟ ଘଟି ନାହିଁ । ଅତୀତ ଦେଖାଇ ଦେଇ ଯାଇଛି, ଦୁଃଖ ଉପରେ ଶାନ୍ତିର ଚିତ୍ର ସୁନ୍ଦର ଭାବରେ ଅଙ୍କିତ ହୋଇପାରେ । ଦୁଃଖର ଅବସାନ ବେଳେ ପ୍ରାଣରେ ଯେ ଆଶ୍ୱାସନା ଆସେ, ଐଶ୍ୱର୍ଯ୍ୟର ପୂର୍ଣ୍ଣ ଦୀପ୍ତିରେ ସେ ଅନୁଭୂତି ଆସେ ନାହିଁ । ଅବସାନ ସବୁବେଳେ ଗୋଟାଏ ଧାରାର ଶେଷଭାଗକୁ ଅପେକ୍ଷା କରିଥାଏ; ତେଣୁ ବିୟୋଗାନ୍ତ ଘଟଣାବଳୀ ଅବସାନରେ ଗୋଟାଏ ନୈରାଶ୍ୟର ଛାୟା ପକାଇ ଦେଇଥାଏ ।

ପବିତ୍ରତାର ପ୍ରମାଣ ସହଜରେ ମିଳେ ନାହିଁ । ଘଟନାବହୁଳ ପ୍ରାଣୀର ଜୀବନର ଗତି ଗୋଟାଏ ନିର୍ଦ୍ଦିଷ୍ଟ ବିଷୟକୁ ବେଶିଦିନ ଅନୁସରଣ କରିପାରେ ନାହିଁ । କେବଳ ସମସ୍ତ ସମୟରେ ଅବସାନର ପରିସ୍ଥିତି ଗୋଟାଏ ନୂତନ ଛନ୍ଦର ସୂଚନା ଦିଏ ଓ ସେଥିରେ ଜୀବନର ଧାରାଟି ଏକ ଅପୂର୍ବ ସ୍ପନ୍ଦନ ଅନୁଭବ କରେ । ଏହି ସ୍ପନ୍ଦନର ରମଣୀୟତା ପବିତ୍ରତାରେ ସ୍ଥାୟୀ ହୋଇ ରହେ । ଜୀବନରେ ଅନେକ ମିଳନ ହୁଏ; କିନ୍ତୁ କାହାର ସ୍ଥାୟିତ୍ୱ ବେଶି ଦିନ ରହେ ? ଯେଉଁଠି ପବିତ୍ର ଭାବ ହୃଦୟକୁ ବେଶି ପରିମାଣରେ ଅଧିକାର କରିଥାଏ, ସେହିଠାରେ ମିଳନଟା ହୁଏ ଅତି ମଧୁର ଓ ସେହି ମିଳନ ଅବସାନରେ ମନୁଷ୍ୟ ଦେଖେ ଗୋଟାଏ ପ୍ରାଣସ୍ପର୍ଶୀ ଚିତ୍ର । ଅନ୍ତର ଲୋଡ଼େ ମିଳନ; କିନ୍ତୁ ଯୁଗଯୁଗବ୍ୟାପୀ ସାଧନା ଫଳରେ ସୁଦ୍ଧା ମନୁଷ୍ୟ ଏହି ଈପ୍ସିତ ଅବସ୍ଥାଟିକୁ ସହଜରେ ପାଏ ନାହିଁ । ଜଗତରେ ମିଳନର ଅଭାବ ନାହିଁ । ପ୍ରଣୟରେ ମିଳନର ବିଶେଷତ୍ୱ ଦେଖାଯାଏ; କିନ୍ତୁ ପ୍ରଣୟର ପବିତ୍ରତା କେତେ ଜଣଙ୍କୁ ସ୍ପର୍ଶ କରେ ? ହିନ୍ଦୁର ଆଦର୍ଶ ପ୍ରମାଣ କରିଛି, ବିଚ୍ଛେଦରେ ପ୍ରଣୟର ପବିତ୍ରତା । ଚିତ୍ରଟି ଲୁଚିଯିବା ସଙ୍ଗେ ଯଦି ହୃଦୟ ତାକୁ ଭୁଲିଯାଏ, ତାହା ହେଲେ ବିଶେଷତ୍ୱ ରହିଲା କେଉଁଠାରେ ? ହୃଦୟର ଭାବ ସଙ୍ଗେ ଶରୀରର ସମ୍ପର୍କ ଥାଏ । ମୁହୂର୍ତ୍ତିକର ଗ୍ଲାନି କିମ୍ବା କଥାପଦଟିଏ ଯୁଗାନ୍ତର ପାଇଁ ଭାବ ସଞ୍ଚୟ କରି ରଖେ । ଅବଶ୍ୟ ଚଞ୍ଚଳତାବଶତଃ ଯେଉଁ ବାକ୍ୟ ବିନିମୟ ହୁଏ, ସେଥିର କିଛି ମୂଲ୍ୟ ନାହିଁ । ଅବସାନରେ ଯେଉଁ ସ୍ପନ୍ଦନ ଅନୁଭୂତ ହୁଏ, ତାହା ମୁହୂର୍ତ୍ତିକ ପାଇଁ ଆସିଥାଏ; କିନ୍ତୁ ସେହି ମୁହୂର୍ତ୍ତିଟି ଚିରକାଳର ମିଳନ ଭାବକୁ ପ୍ରକାଶ କରିଦିଏ । କୋମଳତାର ଉତ୍ସସ୍ୱରୂପିଣୀ ନାରୀ ପୁରୁଷର କପଟତାକୁ ସୂକ୍ଷ୍ମଦୃଷ୍ଟିରେ ବିଚାର କରିପାରେ ନାହିଁ ।

ଅନେକ ସମୟରେ ପୁରୁଷ ମଧ୍ୟ ନାରୀର ଚଞ୍ଚଳତାରେ ଗୋଟାଏ କ୍ଷୁବ୍ଧତାର ଅଧୀନ ହୋଇପଡ଼େ । ପୁରୁଷର କପଟତା କିମ୍ବା ନାରୀର ଚଞ୍ଚଳତା ମିଳନ ପଥର ବିରୋଧୀ । ମିଳନର ଅବସାନରେ ଦୁହେଁ ଚିରଅପରିଚିତ ପରି ରହନ୍ତି । ଘଟନା-ଚକ୍ରରେ ପଡ଼ି ପୁରୁଷ ଓ ନାରୀର ଯେ ମିଳନ ସମ୍ଭବ ହୋଇଥାଏ, ତାକୁ ଅବସାନ ଆସି ଶିଥିଳ କରିଦିଏ । ପ୍ରଣୟର ପବିତ୍ରତା ସହଜରେ ପ୍ରମାଣିତ ହୋଇଯାଏ ।

ଦୀର୍ଘକାଳରୁ ସଞ୍ଚିତ ଭାବରାଶି ଜଣଙ୍କର ବିଦାୟ ବେଳାରେ ଉଦ୍‌ବେଳ ହୋଇପାରେ । ଦୃଷ୍ଟି ସମ୍ମୁଖରେ ଯାହା ବହୁଦିନ ସୌନ୍ଦର୍ଯ୍ୟବିଧାନ କରି ଆସୁଥାଏ, ତାର ଅବସାନ ଘଟିଲେ ହୃଦୟ ସ୍ୱତଃ ଗୋଟାଏ ଶୂନ୍ୟତା ବୋଧ କରେ । ଏହି ଶୂନ୍ୟତାରେ ଅବସାନ ଦେଖାଏ ତାର ବୈଚିତ୍ର୍ୟ । ଆଦରର ବସ୍ତୁକୁ କେହି ଅନାଦର କରେ ନାହିଁ । ସାଂସାରିକ ବାଧା ପାଇ ହୃଦୟର ନିଭୃତ ଭାବନା ଅଧିକାଂଶ ସମୟରେ ଅବ୍ୟକ୍ତ ରହିଯାଏ । ଜଣେ ଜଣଙ୍କୁ ଭଲ ପାଉଥିଲେ ସୁଦ୍ଧା ମୁହଁ ଖୋଲି କହିବାର ଅଧିକାର ନ ଥାଏ । ଅନ୍ତରର ଭାବଟି ଗୋପନରେ ରହିଥାଏ । କଲନାଦିନୀ ତଟିନୀ ପରି ମନୁଷ୍ୟର ଭାବଧାରାଟି ସବୁବେଳେ ମୁକ୍ତ ନୁହେଁ । ସେ ଯାହା ସବୁ ଭାବେ, ତାକୁ ଭାଷାରେ ପ୍ରକାଶ କରୁଥିଲେ କେତେ ଯେ ବିପ୍ଳବ ହେଉଥାନ୍ତା, ସେଥିର ଇୟତ୍ତା ନାହିଁ । ଜୀବନର ବିଶିଷ୍ଟ ଅଧ୍ୟାୟଗୁଡ଼ିକ ନିଭୃତ ଭାବନାରେ ପୂର୍ଣ୍ଣ ଥାଏ; ତେଣୁ ମନୁଷ୍ୟ ସେହି ଗୋପନ-ଭାବନାସମ୍ପୃକ୍ତ ଦୃଶ୍ୟର ଅବସାନ ବେଳେ ଅନ୍ତରରେ ଯେ ଉଚ୍ଛ୍ୱାସ ଅନୁଭବ କରେ, ତାକୁ ଭାଷାରେ ପ୍ରକାଶ କରେ ନାହିଁ; ପ୍ରକାଶ କରିବା ମଧ୍ୟ ଉଚିତ ନୁହେଁ । ଦୁଷ୍ପ୍ରାପ୍ୟ ବସ୍ତୁକୁ କେହି ସହଜରେ ପଦାକୁ ଆଣେ ନାହିଁ । ଯେଉଁ ଭାବନାରେ ଅନ୍ତର ଆଲୋକିତ ହୋଇପାରେ, ତାକୁ ବାହାରେ ବ୍ୟକ୍ତକଲେ କେବଳ ଦୁର୍ବଳତାର ପରିଚୟ ମିଳେ । ଅନୁଭୂତିରେ ଯାହାର ମହତ୍ତ୍ୱ ନିହିତ, ତାକୁ ଅବସାନର ଚିତ୍ରଣ ପ୍ରଣାଳୀ ଟିକିଏ ସ୍ପଷ୍ଟ କରିଦିଏ । ଦୁଇଟି ଭାବଧାରା ମିଳିତ ହେଲାପରେ ବାହାରର ସମ୍ପର୍କ ଆଉ ଆବଶ୍ୟକ ହୁଏ ନାହିଁ । ଏହି ଅବସ୍ଥାରେ ବିଚ୍ଛେଦ ଭାବ ହୃଦୟକୁ ପୂର୍ଣ୍ଣରୂପେ ଅଧିକାର କଲେ କ୍ଷୁଦ୍ର ଘଟନା-ଗୁଡ଼ିକ ଅବସାନର ବୈଚିତ୍ର୍ୟକୁ ଘୋଡ଼ାଇ ରଖିପାରନ୍ତି ନାହିଁ । ଦୂରତ୍ୱରେ ପ୍ରେମରଜ୍ଜୁ ସମ୍ପ୍ରସାରିତ ହେଉଥାଏ । ବିଦାୟର ଶୁଭବେଳାରେ ମିଳନର ଅବସାନ ଆସେ; କିନ୍ତୁ ସେଥି ସଙ୍ଗେ ପ୍ରାଣର ଆକର୍ଷଣଟି ଆସ୍ତେ ଆସ୍ତେ ବୃଦ୍ଧିପାଏ । ଯେତେ ଦୂରକୁ ଜଣେ ଜଣଙ୍କଠାରୁ ଅନ୍ତର ହୋଇ ଚାଲିଯାଏ, ପ୍ରେମର ଅଦୃଶ୍ୟ ବନ୍ଧନ ଦୁହିଙ୍କୁ ସେତିକି ପରିମାଣରେ ଆବଦ୍ଧ କରିଦିଏ । ପ୍ରକୃତ ପ୍ରେମରେ ମିଳନର ମାତ୍ରାଟା ଖୁବ୍ କମ୍ । ଗୋଟାଏ ଅନ୍ତରାଳରେ ରହି ଦୁଇଟି ଭାବଧାରା ଗତି କରୁଥାଏ । ପୂର୍ଣ୍ଣତା ଆସିଲେ ଦୁଇଟିଯାକ ଏକ ହୋଇଯାନ୍ତି, କାହାରି ଅବସାନ ହୁଏ ନାହିଁ ।

ଅବସାନରେ ପ୍ରକୃତିର ଶାନ୍ତ ଓ କମନୀୟ ଭାବ ପ୍ରକଟିତ ହୁଏ । ସମ୍ପର୍କର ମଧୁରତା ଗ୍ରହଣ ପାଇଁ ହୃଦୟ ଯେତେବେଳେ ଉନ୍ମୁକ୍ତ ହୋଇ ରହେ ଓ ଜଣେ ଆଗନ୍ତୁକର ପ୍ରତୀକ୍ଷାରେ ମନୁଷ୍ୟ ପ୍ରକୃତିର ନୀରବ ବାଣୀ ସହିତ ନିଜର ଗୋପନ-ଆତ୍ମବାଣୀକୁ ଗୋଟାଏ ସମତାନରେ ମିଳାଇଦେବାକୁ ବସେ, ସେତେବେଳେ ଅବସାନର ଛାୟାଟି ବଡ଼ ଆଦରଣୀୟ ହୁଏ । ଜନ୍ମାନ୍ତରର ଅଜ୍ଞାତ ଆକର୍ଷଣ ଏହି ଛାୟା ସଙ୍ଗରେ ଆସି ହୃଦୟରେ କୋମଳ ଆଘାତଟିଏ ଦେଇ ଦୂରକୁ ଅପସରିଯାଏ ।

ମନୁଷ୍ୟ କେବଳ ପ୍ରକୃତିର ସେହି ନୀରବ ଦୃଶ୍ୟଟି ଦେଖି ତୃପ୍ତ ହୋଇ ରହେ । ପ୍ରକୃତିର ପ୍ରଶାନ୍ତ ଭାବ ଦେଖିଲେ ହୃଦୟର ଉଦ୍ଦାମ ଭାବ ଭୁଲିଯାଏ, ଅତୀତର ସୁଖ-ସ୍ମୃତି ଜାଗ୍ରତ ହୁଏ । ମନୁଷ୍ୟ ପୁରାତନକୁ ନୂତନତ୍ୱର ଛାଞ୍ଚରେ ଗଢ଼ିନିଏ । ଯାହାର ସାମୀପ୍ୟ ଦିନେ ମନରେ ସଙ୍କୋଚ ଆଣିଥିଲା ଓ ଯାହାକୁ ନିଭୃତରେ ଆରାଧନା କରି ମନ ଅସୀମ ଆଡ଼କୁ ଧାବିତ ହେଉଥିଲା, ତାକୁ ଅତୀତ ଲୁଚାଇ ରଖିଥାଏ; କିନ୍ତୁ ଅବସାନରେ ପ୍ରକୃତି ଯେ ଭାବ ଧାରଣ କରେ, ସେଥିରେ ଅତୀତର ରୁଦ୍ଧ-ଦ୍ୱାରଟି ଉନ୍ମୁକ୍ତ ହୁଏ, ପୁରୁଣା ବନ୍ଧୁଟି ପୁଣି ଆସି ହୃଦୟକୁ ଅଧିକାର କରେ । ପ୍ରାକୃତିକ ପରିବର୍ତ୍ତନ ସଙ୍ଗେ ଅନ୍ତରର ଭାବ ନିୟନ୍ତ୍ରିତ ହେଉ ନ ଥିଲେ ସାଂସାରିକ କୋଳାହଳ ମଧ୍ୟରେ ମନୁଷ୍ୟ ସବୁ ଭୁଲିଯାଉଥାନ୍ତା । ପ୍ରେମର ଅମୃତ ଆକର୍ଷଣ ମଧ୍ୟ ସେହି କଙ୍କାଳରେ ଲୋପ ପାଇଯାନ୍ତା । ସ୍ୱାର୍ଥପରତାରେ କାମର ପ୍ରଭାବ ବିଶେଷ ଭାବରେ ଲକ୍ଷିତ ହୁଏ । ସାଧାରଣ ମାନବ ଏହି ପ୍ରଭାବକୁ ଅତିକ୍ରମ କରିପାରେ ନାହିଁ; ତେଣୁ ଦୈନନ୍ଦିନ ଜୀବନରେ ତାର ସବୁ ଆୟାସ ବ୍ୟୟିତ ହୋଇଯାଏ ଓ ପ୍ରକୃତି ସଙ୍ଗେ କୌଣସି ସମ୍ପର୍କ ରଖିବାକୁ ସେ ପରାଙ୍‌ମୁଖ ହୁଏ । ଅନେକେ କହନ୍ତି, ଭାବ-ପ୍ରବଣ ଚିତ୍ତ ସାଂସାରିକ ଜଟିଳ କାର୍ଯ୍ୟ ସମ୍ପାଦନ ସକାଶେ ଉପଯୁକ୍ତ ନୁହେଁ । ଏହି ଉକ୍ତିଟି ଯଦି ସତ୍ୟ ହୁଏ ଓ ମନୁଷ୍ୟତ୍ୱର ପରିଚୟ ଦେବାପାଇଁ କେବଳ ସଂସାର-କ୍ଷେତ୍ରରେ ମନୋନିବେଶ କରାଯାଏ, ତାହା ହେଲେ ଗୋଟାଏ ଶୁଷ୍କତାରେ ସାରା ଜୀବନଟି ଅତିବାହିତ ହୋଇଯିବ । ଯନ୍ତ୍ରବତ୍ ଚାଳିତ ହୋଇ ମନୁଷ୍ୟ ଆହାର ବିହାର ପ୍ରଭୃତି କରିପାରେ; କିନ୍ତୁ ତାର ଚରମ ଲକ୍ଷ୍ୟ କ'ଣ ଏହି ସାଂସାରିକ ସୀମା ମଧ୍ୟରେ ଆବଦ୍ଧ ? ଆଜି ପାଶ୍ଚାତ୍ୟ ସଭ୍ୟତା ଜଡ଼ବିଜ୍ଞାନକୁ ଯେଉଁ ପରିମାଣରେ ଦୃଢ଼ କରି ଧରିଛି, ସେଥିରେ କୋମଳତାର ସ୍ଥାନ ନାହିଁ କହିଲେ ଚଳେ । ମନୁଷ୍ୟର ଭାବଧାରା ଗୋଟାଏ ନିର୍ଦ୍ଦିଷ୍ଟ ମାର୍ଗକୁ ବେଶି ଦିନ ଅନୁସରଣ କରିପାରେ ନାହିଁ । ଏହା ଯଦି ହୋଇ ନ ଥାନ୍ତା, ତାହା ହେଲେ କବି କିମ୍ବା ଭାବୁକକୁ ସମସ୍ତେ ହେୟ ମନେ କରୁଥାନ୍ତେ । କୋମଳତା ଓ କର୍କଶତାର ସମ୍ମିଶ୍ରଣରେ ଯଦି ସଂସାରଟି ଗଢ଼ା ହୋଇ ନ ଥାନ୍ତା, ତାହାହେଲେ ପ୍ରଚଳିତ ବସ୍ତୁବାଦ ଚିରଦିନ ଗୋଟାଏ ଭାବରେ ମନୁଷ୍ୟର ମନକୁ ଟାଣି ରଖନ୍ତା । ପ୍ରକୃତରେ ଦେଖିବାକୁ ଗଲେ ଜଗତରେ ସମସ୍ତଙ୍କର ସ୍ଥାନ ଅଛି । ଯୁଗର ପ୍ରଭାବ ଅନୁସାରେ ଗୋଟିକର ପ୍ରତିପତ୍ତି ବେଳେ ଅପରର ନ୍ୟୂନତା ଉପଲବ୍‌ଧି କରାଯାଇପାରେ; କିନ୍ତୁ କେହି ବାଦ୍ ଯାଏ ନାହିଁ । ବିବିଧ ପ୍ରାକୃତିକ ଶୋଭା-ବିଭୂତିରେ ଅବସାନ ଯେଉଁ ସ୍ତରଟି ନିର୍ମାଣ କରେ, ତାକୁ ଆଧୁନିକ ବୈଜ୍ଞାନିକ ବାଦ୍ ଦେଇପାରିବ ନାହିଁ ।

କଳା-କୌଶଳରେ ଅବସାନର ଚିତ୍ରଟି ଗୋଟିଏ ବିଶିଷ୍ଟ ଉପାଦାନ । ଦୂର ଦିଗ୍‌ବଳୟରେ ସୂର୍ଯ୍ୟାସ୍ତର ରଞ୍ଜିତ ଆଭା ଦୂର ପର୍ବତ ଗାତ୍ରରେ ଶ୍ୟାମଳିତ ଅସ୍ପଷ୍ଟ ତରୁରାଜି ଉପରେ ପ୍ରତିଫଳିତ ହୋଇ ଯେଉଁ ମନୋହର ଚିତ୍ରଟି ସୃଷ୍ଟି କରେ, ତାକୁ ଚିତ୍ରକର ତାର କଳାକୌଶଳରେ ଆଙ୍କିଦିଏ । ସୂର୍ଯ୍ୟାସ୍ତର କମନୀୟ ଦୃଶ୍ୟ ବେଶି କ୍ଷଣ ସ୍ଥାୟୀ ହୋଇ ରହେ ନାହିଁ; କିନ୍ତୁ ଭାବୁକର ଭାବରାଜ୍ୟରେ ତାର ପ୍ରଭାବ ଅଳ୍ପ ସମୟ ପାଇଁ ନୁହେଁ । ପ୍ରକୃତିର ସେହି ଅନିନ୍ଦ୍ୟ ଶୋଭା ଦର୍ଶନରେ ମନୁଷ୍ୟ ଶତ ଯାତନା ଭୁଲିଯାଏ । ଦର୍ଶନର ମାହେନ୍ଦ୍ର ମୁହୂର୍ତ୍ତକୁ ସ୍ଥାୟୀ କରିବା ପାଇଁ ଚିତ୍ରର ଅବତାରଣା । ଗୋଟିଏ ବିଶିଷ୍ଟ ଦିନର ପ୍ରାକୃତିକ ସୌନ୍ଦର୍ଯ୍ୟ କଳା ସାହାଯ୍ୟରେ ବହୁଯୁଗବ୍ୟାପୀ ସ୍ଥାୟିତ୍ୱ ଲାଭ କରେ । ମନୁଷ୍ୟ କଳ୍ପନାବଳରେ ମହତ୍ତ୍ୱକୁ ସୀମାବଦ୍ଧ କରିପାରେ । ବିରାଟ ପ୍ରକୃତିର ନଗ୍ନ ଅବସାନ ମୂର୍ତ୍ତିକୁ ସାମାନ୍ୟ ତୂଳିକା କେବଳ ଅନୁଭୂତ ବୈଶିଷ୍ଟ୍ୟରେ ପ୍ରକାଶ କରିଦିଏ । ପ୍ରାକୃତିକ ସୌନ୍ଦର୍ଯ୍ୟ ବ୍ୟତୀତ ଭାବବିନିମୟରେ ଯେଉଁ ଶାରୀରିକ ଆକର୍ଷଣ ଅନୁଭୂତ ହୋଇଥାଏ, ତାକୁ ମଧ୍ୟ ଅଙ୍କନ-ପ୍ରଣାଳୀ ସ୍ପଷ୍ଟ ଭାବରେ ପ୍ରକାଶ କରିଦିଏ । ଦୁଇ ଜଣଙ୍କର ଦୀର୍ଘ ଏକତ୍ରାବସ୍ଥାନରେ କିଛି ବିଶେଷତ୍ୱ ନାହିଁ; କିନ୍ତୁ ସମପ୍ରେରଣାର ଅଧୀନ ଦୁଇ ଜଣ ଯେତେବେଳେ ପରସ୍ପରଠାରୁ ବିଚ୍ଛିନ୍ନ ହୁଅନ୍ତି, ସେତେବେଳେ ମୁଖର ମୌନଭଙ୍ଗୀ ହୃଦୟର ଦାରୁଣ ବେଦନାକୁ ଅପ୍ରକାଶ୍ୟରେ ବ୍ୟକ୍ତ କରେ । ସାଧାରଣ ଦୃଷ୍ଟି ଏହାକୁ ଲକ୍ଷ୍ୟ କରି ନ ପାରେ; କିନ୍ତୁ ଚିତ୍ରକରର ସୂକ୍ଷ୍ମ ଦୃଷ୍ଟିରେ ଜୀବନ-କାବ୍ୟର ଏହା ଗୋଟାଏ ବିରାଟ ଅଧ୍ୟାୟର ସମାପ୍ତି । ମନୁଷ୍ୟର ଶାରୀରିକ ଆକର୍ଷଣର ଅବସାନରେ ଅନ୍ତର ଯେଉଁ ଉପାଦାନ ସଞ୍ଚୟ କରିଦେଇଯାଏ, ସେଥିରେ କଳାର ଅପୂର୍ଣ୍ଣତା ଅନେକ ପରିମାଣରେ ଦୂର ହୁଏ ।

ଅବସାନରେ ସୃଷ୍ଟିର ସୌନ୍ଦର୍ଯ୍ୟ ନିହିତ । ଗୋଟିଏ ଦୃଶ୍ୟ କିମ୍ବା ଭାବରେ ଜଗତ୍ ଆବଦ୍ଧ ନୁହେଁ । ସୌନ୍ଦର୍ଯ୍ୟର ମାପକାଠିରେ ଅବସାନ ଗୋଟିଏ ଗୋଟିଏ ଚିହ୍ନ ରଖି ଦେଇଯାଏ । ଏହି ଚିହ୍ନଗୁଡ଼ିକ ସାହାଯ୍ୟରେ ଅତୀତ ଓ ବର୍ତ୍ତମାନର ସାଧାରଣ ସୂତ୍ରଟି ପ୍ରକାଶିତ ହୁଏ । ଦିବାବସାନରେ ରାତ୍ରି ଆସେ । ଦିବସର ସୌନ୍ଦର୍ଯ୍ୟ ଚାଲିଯାଏ; ରାତ୍ରି ତାକୁ ଭିନ୍ନ ଆକାରରେ ପ୍ରକାଶ କରେ । ଅତୀତରେ ଯେ ଭାବ ପ୍ରବଳ ଥିଲା, ଆଜି ତାହା ହିଁ ଅଛି; କେବଳ ପରିବର୍ତ୍ତନ ଘଟିଛି ମନୁଷ୍ୟର ଗ୍ରହଣ-ପ୍ରଣାଳୀରେ । ନାରୀ ଓ ପୁରୁଷର ସମ୍ପର୍କ ଚିରଦିନ ସମାନ ଅଛି । ଅବସାନ ଘଟିଛି ଦୁହିଁଙ୍କର ଅତୀତ ଭାବବିନିମୟରେ । ବିରହର ମୌଳିକ ଭାବ ସମାନ ଥିଲେ ସୁଦ୍ଧା ପ୍ରକାଶ-ପ୍ରଣାଳୀରେ ବ୍ୟତିକ୍ରମ ଘଟିଛି । ଏପରି ବ୍ୟତିକ୍ରମ ଘଟିବା ମଧ୍ୟ ବାଞ୍ଛନୀୟ । ଗୋଟିଏ ଅତି ପୁରାତନ ରାଗିଣୀରେ ଗାନର ମାଧୁରୀ ପ୍ରାଣସ୍ପର୍ଶୀ ହୁଏ ନାହିଁ । ଯେଉଁ ସ୍ୱରକୁ ମନୁଷ୍ୟ ବହୁ ଦିନୁ ଶୁଣି ଆସିଲାଣି, ତାକୁ ଟିକିଏ ଭିନ୍ନ ତାନରେ ମିଳାଇ ନେବାକୁ ଇଚ୍ଛା କରେ । ଅତୀତରେ ନାରୀ ଥିଲା ପୁରୁଷହୃଦୟର ଅଧିଷ୍ଠାତ୍ରୀ ଦେବୀ, ଆଜି ମଧ୍ୟ ସେହିଠାରେ ଅଛି; କିନ୍ତୁ ବିଳୟ ଘଟିଛି ତାର କେତେଗୁଡ଼ିଏ ବାହ୍ୟ ବେଷ୍ଟନୀରେ । ପୁରାଣର ଯୁଗ ଚାଲିଗଲାଣି; କିନ୍ତୁ ତା ପରିବର୍ତ୍ତିରେ ଉପନ୍ୟାସର ଯୁଗ ଆସିଲାଣି । ପୁରାଣ ଯେ ଧାତରେ ସମାଜକୁ ଗଢ଼ିଥିଲା, ଉପନ୍ୟାସ ତାକୁ ଅନୁସରଣ କରୁ ନାହିଁ; ଜଳସ୍ରୋତ ନିମ୍ନକୁ ଗତି କଲାବେଳେ ବକ୍ରତାରେ ରୁଦ୍ଧ ହୋଇ ରହେ ନାହିଁ; ମନୁଷ୍ୟର ଭାବଧାରାଟି ମଧ୍ୟ ସେହିପରି କୌଣସି ବିଶିଷ୍ଟ ବେଷ୍ଟନୀର ଅପେକ୍ଷା ରଖେ ନାହିଁ । ଗତିର ବ୍ୟତିକ୍ରମ ବେଳେ ଅବସାନ ଆସି ଗୋଟିଏ ଦାଗ ଦେଇଯାଏ । ଏହି ଚିହ୍ନଗୁଡ଼ିକର ସଂଯୋଜନା ସୌନ୍ଦର୍ଯ୍ୟାନୁଭୂତିରେ ସାହାଯ୍ୟ କରେ । ପ୍ରାକୃତିକ ଦୃଶ୍ୟ ସମ୍ବନ୍ଧରେ ଏହି ନିୟମ ପ୍ରଯୋଜ୍ୟ ନୁହେଁ ; କାରଣ ପ୍ରକୃତି ପୃଥକ୍ ରହି ମନୁଷ୍ୟ ଉପରେ ତାର ପ୍ରଭାବ ବିସ୍ତାର କରେ । ମନୁଷ୍ୟର ଇଚ୍ଛାନୁସାରେ ପ୍ରକୃତି ଚାଳିତ ହୁଏ ନାହିଁ । ସୃଷ୍ଟିର ଅଲଙ୍ଘନୀୟ ନିୟମାନୁସାରେ ପ୍ରାକୃତିକ ଦୃଶ୍ୟମାନଙ୍କର ଅବସାନ ଘଟେ । ସେମାନଙ୍କୁ ଅନୁସରଣ କରି ମନୁଷ୍ୟ ତାର ଭାବଧାରାକୁ ଗଢ଼ିନିଏ । ଗଢ଼ିନେଲାବେଳେ ଯେଉଁ ପାର୍ଥକ୍ୟ ରହିଯାଏ, ତାକୁ କାଳ ଅତୀତ ଓ ବର୍ତ୍ତମାନର ପରିସର ମଧ୍ୟରେ ସଜାଇ ରଖେ । ଅବସାନ ଗୋଟାଏ ଛାୟା ପରି । ଏହି ଛାୟାର ଅନ୍ଧକାର ମଧ୍ୟରେ ଦୃଷ୍ଟି ନିକ୍ଷେପ କଲେ ସୌନ୍ଦର୍ଯ୍ୟର ଆଭାସ ମିଳେ; ତେଣୁ ସାଧାରଣ ଅନ୍ଧକାର ପରି ଏହା ଭୟାବହ ନୁହେଁ । ଚିତ୍ତର ଚିତ୍ରଶାଳାରେ ମନୁଷ୍ୟର କଳ୍ପନା-ଭାବମୟୀ ପ୍ରତିକୃତିକୁ ଏହା ପ୍ରକୃଷ୍ଟ ସାହାଯ୍ୟ କରେ ।

# ଉଚ୍ଛ୍ୱାସ

ପ୍ରକୃତିର ଅନନ୍ତ ଉତ୍ସରୁ ଅସଂଖ୍ୟ ଧାରା ପ୍ରଧାବିତ ହୋଇ ଏକ ବିରାଟ ସତ୍ତାର ଅନୁସରଣ କରୁଛନ୍ତି । ମାର୍ଗର ବିଭିନ୍ନତା ଓ ଜଟିଳତାରେ କେହି କାହାର ଗତି କିମ୍ବା ପରିଣତି ପ୍ରତି ସହଜରେ ଲକ୍ଷ୍ୟ ରଖୁ ନାହିଁ । ସମସ୍ତଙ୍କ ଯେନ ସୃଷ୍ଟିର ଅନାହତ ଗତି ଚାଲିଛି । କ୍ଷୁଦ୍ର ଓ ମହତ୍ତ୍ୱର ପାର୍ଥକ୍ୟ ସୃଷ୍ଟିର ଏହି ବିରାଟ ପ୍ରବାହରେ ବିଲୀନ ହୋଇଯାଉଛି । ଜ୍ୟେଷ୍ଠ ସାନବଡ଼ର ବିଚାର ଗୋଟାଏ କ୍ଷଣିକ ସୀମା ନିରୂପଣ ବ୍ୟତୀତ ଅନ୍ୟ କିଛି ନୁହେଁ ।

ଗତିର ବିରାମ ନାହିଁ । ଜଗତରେ ଯାହା ଚାଲି ଯାଉଛି, ତାହା ପୁଣି ଆସୁଛି; ହୁଏତ ପରିବର୍ତ୍ତନର ଗୋଟାଏ ମୂର୍ତ୍ତି ଅବଲମ୍ବନ କରି ଭିନ୍ନ ଭାବରେ ପ୍ରକାଶିତ ହେବା ପାଇଁ ମଙ୍ଗଳମୟଙ୍କର ତା ପ୍ରତି କୌଣସି ନିଗୂଢ଼ ନିର୍ଦ୍ଦେଶ ରହିଛି । ଋତୁଚକ୍ର ଅବିରାମ ଗତିରେ ଚାଲିଛି । କେତେ ମଧୁମୟ ବସନ୍ତ ଜୀବନର ସୁଖସ୍ମୃତି ଯେନ ଅତୀତରେ ମିଶିଯାଉଛି । ସୁନ୍ଦରୀର ଅବ୍ୟକ୍ତ ଭାବ ସ୍ୱପ୍ନରଚିତ ଏକ ଅସ୍ଫୁଟ ଆଦେଶ ପରି ଜୀବନର ଗତିରେ ଛାୟାପାତ କରି ଚାଲିଯାଉଛି । ଭାବୁକ କେବଳ ଦେଖୁଛି—ଗୋଟାଏ ଗତି, ଯାହାର ଆଦି କିମ୍ବା ଅନ୍ତ ନିର୍ଣ୍ଣୟର କିଛି ନିର୍ଦ୍ଦିଷ୍ଟ ଉପାୟ ନାହିଁ । ଯେତେବେଳେ ସ୍ରୋତସ୍ୱିନୀ ନିସ୍ତବ୍ଧଭାବରେ ବହି ଯାଇ ଯାଇ ଉଚ୍ଛ୍ୱସିତ ହୋଇଉଠେ, କୁସୁମସ୍ତବକ ଶାନ୍ତ ଶୀକରପାତରେ ମୁକୁଳିତ ହୁଏ, ସୁନ୍ଦରୀର ନିଭୃତ ଭାବନା ଜଣେ କାହାର ପ୍ରତୀକ୍ଷାରେ ଏକ ଅନୁପମ ଶାନ୍ତ ସ୍ୱରଲହରୀ ତୋଳେ, ଦୁଇ ଅପରିଚିତ ସଂସାର-ଯାତ୍ରୀ ହୃଦୟର ମିଳନଆବେଗରେ ପରସ୍ପରକୁ ନିଜର କରିନେବାକୁ ବ୍ୟଗ୍ର ହୋଇଉଠନ୍ତି, ଦୁଇଟି ଭିନ୍ନ ଧାରା ପରସ୍ପରର ଆକର୍ଷଣ ଛଳରେ ଉଚ୍ଛଳ ହୋଇଯାଆନ୍ତି, ସେତେବେଳେ ଗତି ମୁହୂର୍ତ୍ତିକ ପାଇଁ ତାର ସ୍ୱରୂପ ଦେଖାଇଦିଏ ।

ଜୀବନର ଗତି ଉଚ୍ଛ୍ୱସିତ ହୋଇଉଠେ ବାଧାଗ୍ରସ୍ତ ଗିରିନଦୀ ପରି ସବୁ ଏଡ଼ି ଦେଇ ଶାନ୍ତ ଭାବରେ ଗୋଟାଏ ଅସୀମତାରେ ମିଶିଯିବା ପାଇଁ; କିନ୍ତୁ ମନୁଷ୍ୟର କ୍ଷୁବ୍ଧ ବାସନା ସବୁ ବ୍ୟର୍ଥ କରିଦିଏ । ମୁହୂର୍ତ୍ତିକର ଗତିର ସ୍ୱରୂପ ଦର୍ଶନ ଚିରଦିନର ଶାନ୍ତି ସଞ୍ଚୟ କରି ଦେଇପାରେ; କିନ୍ତୁ ଭ୍ରାନ୍ତମନ ସହଜରେ ତାକୁ ଦେଖିପାରେ ନାହିଁ । ଶୀକର ପଡ଼େ, କୁସୁମ ଫୁଟେ, ଅବ୍ୟକ୍ତ ଅଧରରେ ଶାନ୍ତିର ସୁଷମା ଖେଳିଯାଏ, ଆବେଗ ଆସେ, ଅନ୍ତର ମିଳନର ସନ୍ଧାନ ପାଏ, କିନ୍ତୁ ସଂସାରରେ କେତେ ଜଣଙ୍କର ଜୀବନ ଏମାନଙ୍କୁ ପାଇ ଧନ୍ୟ ହୁଏ ? ମନେ ହୁଏ, ସଂଖ୍ୟା ଅତି କମ୍ । ଏକ ଭାବରେ କେତେଗୁଡ଼ିଏ ନିୟମର ଗଣ୍ଡି ମଧ୍ୟରେ ମଧ୍ୟ ଜୀବନଟା ବିତିଗଲେ କିଛି ଲକ୍ଷ୍ୟ କରିବାର ନ ଥାଏ । ସୌନ୍ଦର୍ଯ୍ୟର ଦୀପ୍ତିଟିକ ପାଇଁ ଜୀବ ସର୍ବଦା ଉଦ୍‌ଭ୍ରାନ୍ତ ପରି ଧାଉଁଛି । କିଏ କିପରି ଲାଳସା କିମ୍ବା କାମନାର ବଶବର୍ତ୍ତୀ, ତାହା କହାଯାଇ ପାରିବ ନାହିଁ । ସ୍ୱଭାବର ନିଗୂଢ଼ ଆଲୋଚନା ଉପରେ ତାହାର ସ୍ଥିରତା ଜଣାଯାଇପାରେ । ଜୀବ ଦୀପ୍ତି କାହିଁକି ଲୋଡ଼େ ? ଶରୀରର ଧର୍ମ ସୁଖ-ଲାଳସାରେ ନିହିତ । କ୍ଷଣିକ ତୃପ୍ତିରେ ତାହାର ପରିବର୍ଦ୍ଧନ ଯେତେବେଳେ ପୂର୍ଣ୍ଣରୂପେ ନିର୍ଭର କରେ, ସେତେବେଳେ ତା ଅନ୍ତରର ଶକ୍ତି ଆସ୍ତେ ଆସ୍ତେ ଲୁଚି ଆସେ । ଶରୀରଦୀପ୍ତି ପରିବର୍ତ୍ତନରେ ଗୋଟାଏ ଛାୟା ଅନୁସରଣ କରେ । ଏହି ଛାୟାକୁ ଅନୁସରଣ କରି ଜୀବ-ଧର୍ମ ପାଳନ କଲେ ଜୀବ ଦୀପ୍ତି-ପ୍ରୟାସୀ ହୁଏ ନାହିଁ । ମନୁଷ୍ୟକୁ ବାଦ ଦେଲେ ସାଧାରଣ ଜୀବଦୃଷ୍ଟିରେ ଏ ପ୍ରକାର ପ୍ରଚେଷ୍ଟା ଆଦୌ ନାହିଁ । ମନୁଷ୍ୟ ଯେତେବେଳେ ପଶୁବତ୍ ଆଚରଣ କରେ, କାମିନୀ ଓ କାଞ୍ଚନର ମୋହରେ ଅନ୍ତରର ସତ୍‌ପିପାସାକୁ ଭୁଲିଯାଏ, ସେତେବେଳେ ତାର ଦୀପ୍ତି ଲୋଡ଼ିବା ପାଇଁ ଅବସର ନ ଥାଏ । କାମିନୀ କିମ୍ବା କାଞ୍ଚନ ଅନାଦରଣୀୟ ନୁହେଁ; କିନ୍ତୁ ଦୃଷ୍ଟିର ଲୋଲୁପତାରେ ଜୀବନର ସରସ ଲକ୍ଷ୍ୟ ଏମାନଙ୍କଦ୍ୱାରା ବ୍ୟର୍ଥ ହୋଇଯାଏ । କାମିନୀ

କିମ୍ବା କାଞ୍ଚନର ଆଭା ଦାମିନୀ ପରି ଝଟକି ଉଠେ, ମୋହମଦିରା ଢାଳିଦେଇ ମନୁଷ୍ୟର ମନକୁ ଚିରଦିନ ପାଇଁ ଟାଣିନେବ ବୋଲି; କିନ୍ତୁ ଜୀବନର ଉଚ୍ଛ୍ୱାସ ଆସି ବାଧା ଦିଏ । ଐହିକ ଐଶ୍ୱର୍ଯ୍ୟର ବିନାଶ ଏହାର ମୂଳ କାରଣ ହୁଏ ।

ଗିରିନଦୀ ପରି ଜୀବନର ଧାରା ବହି ଯାଉଛି—କେତେବେଳେ ଶୁଷ୍କ, କେତେବେଳେ ପୁଣି ଗତିରୁଦ୍ଧ, ଉଚ୍ଛ୍ୱସିତ; କିନ୍ତୁ ଗତି ଚାଲିଛି, ବିରାମ ନାହିଁ । ହତାଶାର ଘନାନ୍ଧକାରରେ ଜୀବନର ସ୍ଫୂର୍ତ୍ତିଟିକି ଯେତେବେଳେ ଲୁପ୍ତ ପ୍ରାୟ ହୋଇ ଆସେ କିମ୍ବା ଆବେଗପୂର୍ଣ୍ଣହୃଦୟରେ ଜଣକ ସହିତ ନିଜକୁ ମିଳାଇ ଦେବାପାଇଁ ଗଭୀର ଭାବନାରେ ଶରୀର ଅବଶ ହୋଇଆସେ, ସେତେବେଳେ ଜୀବନର ଧାରାରେ ଗୋଟାଏ ଗୋଟାଏ ଉଚ୍ଛ୍ୱାସ ଉଠେ । ଏମାନେ ଏକପ୍ରକାର ନୁହନ୍ତି । ଗୋଟିକରେ ସୁଲଳିତ ସଙ୍ଗୀତ ଝଙ୍କୃତ ହେଲେ ଅନ୍ୟଟି ହତାଶାର ମର୍ମଦାହବାଣୀ ସଞ୍ଚୟ କରେ । ଜୀବନର ଗତି ଜଳଧାରା ପରି କେତେବେଳେ ସ୍ୱଚ୍ଛ, କେତେବେଳେ ପୁଣି ଆବିଳ । ଉଚ୍ଛ୍ୱାସର ବିସ୍ତାରରେ ଏପରି ପାର୍ଥକ୍ୟ ସମ୍ଭବ ହୋଇଥାଏ । ପ୍ରତିବନ୍ଧକ ଆସି ଗତିରେ ଉଚ୍ଛ୍ୱାସ ସୃଷ୍ଟି କରେ । ପ୍ରତିବନ୍ଧକଶୂନ୍ୟ ଗତିରେ ସ୍ୱାତନ୍ତ୍ର୍ୟ ଥାଇପାରେ; କିନ୍ତୁ ଗତିର ନିୟନ୍ତ୍ରଣ ପାଇଁ ଉଚ୍ଛ୍ୱାସର ପ୍ରୟୋଜନୀୟତାକୁ ସ୍ୱୀକାର କରିବାକୁ ପଡ଼ିବ । ଅନେକ ସମୟରେ ଗତିର ସ୍ୱଚ୍ଛତା ଅସ୍ୱଚ୍ଛ ବାଧା ପାଇଲେ ପରିବର୍ତ୍ତିତ ହୋଇଯାଏ । ସାଧାରଣ ମନୁଷ୍ୟଜୀବନରେ ଏହାର ଦୃଷ୍ଟାନ୍ତ ଯଥେଷ୍ଟ ଦେଖିବାକୁ ମିଳେ; କିନ୍ତୁ ଏଥିପ୍ରତି କେହି ବିଶେଷ ଲକ୍ଷ୍ୟ ରଖନ୍ତି ନାହିଁ । ନିର୍ମଳ ଜଳଧାରା ବହି ଆସୁ ଆସୁ ମାର୍ଗରେ ପଙ୍କିଳ ହୋଇଯାଏ । ପ୍ରତିବନ୍ଧକ ଏହାର ପ୍ରଧାନ କାରଣ ହୁଏ । ଭଲ ମନ୍ଦର ବିଚାର ନାହିଁ; ବାଧା ଆସିଲା କ୍ଷଣି ସ୍ୱତଃ ଉଚ୍ଛ୍ୱାସ ଉଠିବ ଓ ସେଥି ସଙ୍ଗେ ଗତିରେ ପରିବର୍ତ୍ତନ ଦେଖାଦେବ ।

ହୃଦୟର ଉଚ୍ଛ୍ୱାସ ଜୀବନକୁ ସ୍ୱତନ୍ତ୍ରତା ଆଣିଦିଏ । ଅଧିକାଂଶ ପରିବର୍ତ୍ତିତ ଜୀବନର ଗତିରେ ଏହାର ପ୍ରଭାବ ରହିଥାଏ । ଉଚ୍ଛ୍ୱାସଟିଏ ଉଠି ଚାଲିଯାଏ; କିନ୍ତୁ ରଖିଦେଇ ଯାଏ ଗୋଟିଏ ସ୍ୱରଲହରୀ, ଯାହା ସର୍ବଦା ଅଲକ୍ଷିତରେ ଅନ୍ତରକୁ ଆଲୋଡ଼ନ କରୁଥାଏ । ସୁଦୂର ଅତୀତରେ ଜଣେ ଜଣକ ସହିତ ଅନ୍ତରର ଭାବ ମିଳାଇ ଯେଉଁ କଥାପଦିକ କହିଦେଇଥାଏ ଓ ସେଥିରେ ହୃଦୟର ଯେ ସ୍ପନ୍ଦନ ଆସିଥାଏ, ତାକୁ ଭୁଲିଯିବା ପାଇଁ ମନୁଷ୍ୟ ଚେଷ୍ଟା କରେ; କିନ୍ତୁ ଅନ୍ତରର ପରିବର୍ତ୍ତନ ନ ଆସିବାଯାଏ ସେ ତାକୁ ଭୁଲିପାରେ ନାହିଁ । ଜ୍ୟୋତ୍ସ୍ନାସ୍ନାତ ବସନ୍ତ ରଜନୀର ମୃଦୁମନ୍ଦ ହିଲ୍ଲୋଳ ହୃଦୟରେ ସ୍ୱତଃ ଗୋଟାଏ ଆନନ୍ଦର ଢେଉ ଖେଳାଇ ଦେଇଯାଏ । ସେହି ଢେଉ ସଙ୍ଗେ ଯଦି କୌଣସି ଅନ୍ତରର ଅବ୍ୟକ୍ତ ମଧୁର ବାଣୀ ମିଶିଯାଏ, ତାହାହେଲେ ମନୁଷ୍ୟର ସ୍ମୃତିପଟରେ ତାହା ବଡ଼ କୋମଳ ଭାବରେ ଅଙ୍କିତ ହୋଇରହେ । ହୁଏତ ଜନ୍ମାନ୍ତରର କୌଣସି ନିଗୂଢ଼ ମିଳନ-ଫଳରେ ଗୋଟାଏ ଲୁପ୍ତ ସ୍ମୃତି ପୁଣି ଜାଗ୍ରତ ହୋଇ ନୂତନତ୍ୱ ଦେଖାଇବା ଛଳରେ ଜୀବନର ଗତିକୁ ତାହାର ଆଡ଼କୁ ଆକୃଷ୍ଟ କରିନିଏ । ବସନ୍ତ-ଯାମିନୀର ରମଣୀୟତା ସମସ୍ତଙ୍କ ଦୃଷ୍ଟିରେ ସମାନ ନୁହେଁ । ଭାବର ଉଚ୍ଛ୍ୱାସ ଯାହାର ଯେତେ ଅଧିକ, ତା ପକ୍ଷରେ ଜ୍ୟୋତ୍ସ୍ନା ଓ ହିଲ୍ଲୋଳ ସେତେ ଆରାମଦାୟକ । ଜୀବନର ବନ୍ଧୁରତା ହୃଦୟର ଚଞ୍ଚଳତା ଆଣେ; କାରଣ ପ୍ରତିହତ ଗତି ସବୁବେଳେ ଶକ୍ତି ପ୍ରୟୋଗରେ ଲାଗିଥାଏ ଓ ତଦ୍ଦ୍ୱାରା ଗୋଟାଏ ସଂଘର୍ଷର ଉତ୍ପତ୍ତି ଘଟେ । ଅନେକ ଏହି ସଂଘର୍ଷକୁ ଉଚ୍ଛ୍ୱାସର ନାମାନ୍ତର ବୋଲି ଭାବିଥାନ୍ତି । କିନ୍ତୁ ତା ହୋଇଥିଲେ ସଂସାରରେ ସମସ୍ତେ ଚିରଶାନ୍ତିରେ ଦିନାତିପାତ କରୁଥାନ୍ତେ ।

ଗୋଟିଏ ଆକର୍ଷଣର ଗତି ଯେତେବେଳେ ଅତି କ୍ଷୀଣ ହୋଇଆସେ ଓ ଅପର ଗୋଟିଏ ଆକର୍ଷଣ ଆସି ଭିନ୍ନ ଭାବରେ ହୃଦୟକୁ ଅଧିକାର କରେ, ସେତେବେଳେ ଭାବର ଉଚ୍ଛ୍ୱାସ ପୂର୍ଣ୍ଣମାତ୍ରାରେ ଉଠେ ନାହିଁ । ବିରାଗ ଅନୁରାଗ ମିଶିଗଲେ ଅନ୍ତରର ସମାନତା ରହେ ନାହିଁ । ସେଥିଯୋଗୁଁ ହୃଦୟର ଉନ୍ନତ ଅବସ୍ଥା ନ ଜାଣି ଶାନ୍ତିପ୍ରୟାସୀ ହେଲେ ସହଜରେ ତାହା ମିଳେ ନାହିଁ । ସାଧାରଣ ସଂସାରୀ ଭାବର ଉଚ୍ଛ୍ୱାସକୁ ଅନୁଭବ କରେ ନାହିଁ । କଳ୍ପନା ପ୍ରଭାବରେ ଜଡ଼ ଜଗତରୁ ମନକୁ ଟାଣି ନେବା ତାର ସ୍ୱଭାବ-ବିରୁଦ୍ଧ ବୋଲି ମନେହୁଏ । ଜାଗତିକ କ୍ରିୟା ସମ୍ପାଦନରେ ନିଜର ସମସ୍ତ ଶକ୍ତି ପ୍ରୟୋଗ କରି ସେ ଯାହା ପାଏ, ତାହା ଅଳ୍ପକାଳ ମଧ୍ୟରେ ଲୁପ୍ତ ହୁଏ । ଅସାର ଅବଲମ୍ବନକୁ ଆଶ୍ରୟ କରି ସେ ଜୀବନକାଳ କଟାଇଦିଏ । କ୍ଷଣିକ ତୃପ୍ତିରେ ଇହଜୀବନର ସରସତା ନିର୍ଭର କଲେ ଅନନ୍ତ ଜୀବନର ସନ୍ଧାନ ମିଳିବା ଦୁଷ୍କର ହୁଏ । ସାଂସାରିକ କ୍ରିୟାମାନଙ୍କ ସହିତ କଳ୍ପନାରଚିତ ଆନନ୍ଦର ତୁଳନା ନାହିଁ । ଗୋଟିଏ ପକ୍ଷରେ ଦୃଶ୍ୟମାନ ସହଜ ଅନୁଭୂତିସମ୍ପନ୍ନ ଐଶ୍ୱର୍ଯ୍ୟର ମହତ୍ତ୍ୱ, ଅନ୍ୟ ପକ୍ଷରେ ଶୂନ୍ୟତାରୁ ସୌନ୍ଦର୍ଯ୍ୟର ଉପଲବ୍ଧି । ଯେ ଗୋଟିକରେ ଆନନ୍ଦ ଅନୁଭବ କରେ, ସେ ଅପରଟିରେ ଆନନ୍ଦ ପାଏ ନାହିଁ ।

ବାସ୍ତବ ଆନନ୍ଦ କେଉଁଥିରେ ବେଶି, ବିଷ୍ମର-ବୃଦ୍ଧି ପ୍ରକାଶ କରିପାରେ । ଯନ୍ତ୍ରବତ୍ ଚାଳିତ ଜୀବନ ପକ୍ଷରେ ଆଧୁନିକ ଯୁଗ ସର୍ବଦା ଉପଯୋଗୀ । କବିର କଳ୍ପନା, ଭାବୁକର ଭାବନା ଆଜିକାଲି କେତେଜଣଙ୍କୁ ମାତ୍ର ତୃପ୍ତି ଦେଇପାରେ; କିନ୍ତୁ ଅଧିକାଂଶ ଯୁଗପ୍ରଭାବରେ ପ୍ରଭାବିତ । ଗୋଟିଏ ଦିଗରେ ଅଧିକାଂଶଙ୍କର ଗତି ହେଲେ ତଦ୍‌ବିପରୀତ ଦିଗରେ ଯାତ୍ରୀମାନଙ୍କ ସଂଖ୍ୟା ଅଳ୍ପ ହୁଏ । ସଂଖ୍ୟାଗରିଷ୍ଠ ଦଳର ଅଧିକାର-ଶକ୍ତି ଅଳ୍ପସଂଖ୍ୟକ ଭିନ୍ନଭାବାବଲମ୍ବୀମାନଙ୍କୁ ଜଗତରେ ସେମାନଙ୍କର ଇଚ୍ଛାନୁଯାୟୀ ସ୍ଥାନ ଦିଏ ନାହିଁ; କିନ୍ତୁ ପ୍ରକୃତିର ପାଳନରୀତି କାଳକ୍ରମେ ଏହି ଅସାମଞ୍ଜସ୍ୟକୁ ଦୂର କରି ପ୍ରତ୍ୟେକର ଆକାଙ୍‌କ୍ଷିତ ଫଳ ଦାନ କରେ । ଅନେକ ସମୟରେ ଭାବନାର ଉଚ୍ଛ୍ୱାସ ଗୋଟାଏ ଚଞ୍ଚଳତାକୁ ଅନୁସରଣ କରି ଯେପରି ପ୍ରକାଶିତ ହୁଏ, ସେଥିରେ ବସ୍ତୁବାଦୀ ବିରକ୍ତ ହେବାର ଯଥେଷ୍ଟ କାରଣ ଥାଏ । କଳ୍ପନାର ଅସଂଯତ ଗତି ସବୁବେଳେ କୃତ୍ରିମତାର ଆବରଣ ଅନ୍ୱେଷଣ କରି, ଶୂନ୍ୟତାର ଅବଲମ୍ବନ ଛାଡ଼ିଦେଇ ପାର୍ଥିବ ଆଧାରରେ ଭାବର ପୂର୍ଣ୍ଣ ବିକାଶ ଦେଖାଇବାକୁ ଚେଷ୍ଟା କରେ; କିନ୍ତୁ ପରିଣାମରେ ଗୋଟାଏ କେବଳ ଶୂନ୍ୟତା ରହିଯାଏ, ବସ୍ତୁବାଦ ସହିତ ଅନ୍ୟ ଏକ ଆକାରରେ ମିଳିଯାଏ । ଏହା ସଂସାରୀ ଦୃଷ୍ଟିରେ ଅନାଦରଣୀୟ ନୁହେଁ; କିନ୍ତୁ ଯେତେବେଳେ ଭାବନାର ପଙ୍କିଳ ଉଚ୍ଛ୍ୱାସରେ ଭାବୁକର ଲେଖନୀ ଚାଳିତ ହୁଏ, ସେତେବେଳେ ସଂସାରୀ ତାକୁ ଅଗ୍ରାହ୍ୟ କରେ । ହୃଦୟର ପ୍ରକୃତ ଶାନ୍ତି ଏପରି ଉଚ୍ଛ୍ୱାସରେ ଆସେ ନାହିଁ । ଜୀବନର ଗତି କେବଳ ପ୍ରତିହତ ହୋଇ ଗୋଟିଏ ଆବିଳ ଧାରା ଖୋଲିଦିଏ ।

ଜୀବନର ଭାବୋଚ୍ଛ୍ୱାସ ହୃଦୟକୁ ପ୍ରଭାବିତ କରିଥାଏ; କିନ୍ତୁ ଏହି ପ୍ରଭାବ ଯଦି ଅଳ୍ପକାଳ ମଧ୍ୟରେ ଉଭେଇଯାଏ, ତାହାହେଲେ ଭାବନାର ମହତ୍ତ୍ୱ ଜଣାପଡ଼େ ନାହିଁ । ସମସ୍ତ ସମୟରେ ଭାବାବେଶରେ ମନୁଷ୍ୟ ସଂସାରର ଜଟିଳତା ଭେଦ କରି ସ୍ୱର୍ଗୀୟ ଆନନ୍ଦ ଅନୁଭବ କରେ । ସମସ୍ତଙ୍କ ପକ୍ଷରେ ଏପରି ଅନୁଭୂତି ସମ୍ଭବ ହୁଏ ନାହିଁ । ମନୁଷ୍ୟର ସୌନ୍ଦର୍ଯ୍ୟ-ପିପାସା ଜଡ଼ଜଗତର ବେଷ୍ଟନୀ ବାହାରକୁ ଚାଲିଗଲେ ତା ଅନ୍ତରରେ ଯେଉଁ ଉଚ୍ଛ୍ୱାସ ଉଠେ, ତାହା ସାଧାରଣ ସାଂସାରିକ ପ୍ରତିବନ୍ଧକ-ମାନଙ୍କୁ ଉପେକ୍ଷା କରେ । ପ୍ରବଳ ନିକଟରେ ଦୁର୍ବଳର ପରାଜୟ ପରି ଅନ୍ତରର ଅମଳ ଉଚ୍ଛ୍ୱାସ କ୍ଷୁଦ୍ର ଜାଗତିକ ଭାବନାକୁ ବେଶି ସମୟ ପାଇଁ ସ୍ଥାନ ଦିଏ ନାହିଁ । ହୃଦୟର ସରସତା ନ ଥିଲେ ଉନ୍ନତ ଭାବୋଚ୍ଛ୍ୱାସ ଆସିଲେ ମଧ୍ୟ ମନୁଷ୍ୟ ତାକୁ ଅବଧାରଣ କରିପାରେ ନାହିଁ । କେବଳ ଢେଉଟି ଆସି ଚାଲିଗଲା ପରି ଅନ୍ତର କିଛିକ୍ଷଣ ପାଇଁ ଉଚ୍ଛ୍ୱସିତ ହୋଇଉଠେ; ପୁଣି ଗୋଟାଏ ବିରାମ ଆସି ବିସ୍ମୃତିର ଅନ୍ତରାଳରେ ସବୁ ପୋତାଇ ଦିଏ । ମୁହୂର୍ତ୍ତିକର ସୌନ୍ଦର୍ଯ୍ୟାନୁଭୂତିକୁ ଚିରଦିନ ପାଇଁ ଅନ୍ତର ସଞ୍ଚୟ କରିପାରେ ନାହିଁ । ସାଧନାଦ୍ୱାରା ମନୁଷ୍ୟ ହୃଦୟକୁ ଉନ୍ମୁକ୍ତ ନ ରଖିଲେ ଉପର୍ଯ୍ୟୁକ୍ତ ସଞ୍ଚୟର ଉପଯୋଗିତା ଜଣାପଡ଼େ ନାହିଁ । ସାଧନା ପାଇଁ ସମସ୍ତଙ୍କର ଅଧିକାର ଅଛି । ମାତ୍ର ଗୋଟିଏ ଅବଲମ୍ବନକୁ ଆଶ୍ରୟ ନ କଲେ ଏହି ଅଧିକାରରୁ ବଞ୍ଚିତ ହେବାକୁ ପଡ଼େ । ଅବଲମ୍ବନର ଶୁଚିତା ଭାବୋଚ୍ଛ୍ୱାସକୁ ଗୋଟିଏ ନୂତନ ଭାବରେ ଗ୍ରହଣ କରିବା ପାଇଁ ପ୍ରେରଣା ଦିଏ । ବିଭିନ୍ନ ବିକାଶ ମାର୍ଗକୁ ଅନୁସରଣ କଲେ ଏହାର ପ୍ରତିବିମ୍ବ ଜଣାଯାଏ । ଯେଉଁମାନଙ୍କର କୌଣସି ଅବଲମ୍ବନ ନାହିଁ, ସେମାନଙ୍କର ଏପରି ଅନୁଭୂତିରୁ ବିରତ ରହିବା ଆବଶ୍ୟକ । ବିନା ଅବଲମ୍ବନରେ କେହି ଜଗତର ବେଷ୍ଟନୀ ବାହାରକୁ ସୌନ୍ଦର୍ଯ୍ୟାନୁଭୂତି ପାଇଁ ଅଗ୍ରସର ହୁଏ ନାହିଁ । ସାଧାରଣ ଲୋକର ଲକ୍ଷ୍ୟ ବସ୍ତୁ-ଜଗତରେ ଆବଦ୍ଧ ଥାଏ । ଅନ୍ତରର ଦୃଷ୍ଟିରେଖା କୌଣସି ସୀମା ମଧ୍ୟରେ ଆବଦ୍ଧ ନୁହେଁ । ସଂସାରର ନିଗଡ଼ ମଧ୍ୟରେ ଏହାକୁ ସଂକୁଚିତ କରି ମନୁଷ୍ୟ ବସ୍ତୁଜଗତର ବାହାରକୁ ଯାଇପାରେ ନାହିଁ । ଯେ କୌଣସି ଉନ୍ନତିମାର୍ଗରେ ଅଗ୍ରସର ହେବାପାଇଁ ଅବଲମ୍ବନ ଲୋଡ଼ାହୁଏ; କିନ୍ତୁ ଲକ୍ଷ୍ୟ ଅନୁସାରେ ଏହା ସ୍ୱତଃ ଆସି ଜୀବନର ଗତିକୁ ପ୍ରଭାବିତ କରେ । ଅନେକ ସମୟରେ ମନୁଷ୍ୟ ତା ଗତିପଥରେ ଭିନ୍ନ ଭିନ୍ନ ଅବଲମ୍ବନର ଆଶ୍ରୟ ନିଏ । ସାଧନାର ପୃଥକ୍ ରୀତି ତାକୁ ଏଥିରେ ସାହାଯ୍ୟ ଦେଇଥାଏ । ଗତିଶୀଳ ପକ୍ଷରେ ବିଭିନ୍ନ ଅବଲମ୍ବନ ଆବଶ୍ୟକ ହୋଇପାରେ; କିନ୍ତୁ ତଦ୍ୱାରା ଜୀବନର ଗତି ଏକାଧାରରେ ସୀମିତ ହୁଏ ନାହିଁ । କେତେବେଳେ ଏହା କିପରି ଆକାର ଧାରଣ କରେ, ତହିଁର କିଛି ସ୍ଥିରତା ନାହିଁ । ସଂଖ୍ୟାତୀତ ମାନବଜୀବନର ସାମଞ୍ଜସ୍ୟହୀନ ଚରିତ୍ରମାନଙ୍କରେ ଅବଲମ୍ବନର ଭିନ୍ନତା ଓ ପରିବର୍ତ୍ତନ-ଶୀଳତା ପ୍ରତିଫଳିତ ହୋଇଥାଏ । ତେଣୁ ଜଗତରେ ଜଣକର ଆକାଙ୍‌କ୍ଷିତ ମାର୍ଗ ସମସ୍ତଙ୍କଦ୍ୱାରା ଆଦୃତ ହୁଏ ନାହିଁ । ଅବଶ୍ୟ ଅବଲମ୍ବନକୁ ଛାଡ଼ିଦେଇ ଯେଉଁମାନେ ଆତ୍ମବଳ ସାହାଯ୍ୟରେ ସମ୍ପୂର୍ଣ୍ଣରୂପେ ଗତି କରନ୍ତି, ସେମାନଙ୍କ ମାର୍ଗ ସ୍ୱତନ୍ତ୍ର ହୋଇପଡ଼େ ଓ ଦୂରଦର୍ଶୀ କର୍ମୀ କିମ୍ବା ଜ୍ଞାନୀମାନେ ସେମାନଙ୍କୁ ଆଦର୍ଶ କରିପାରନ୍ତି; କିନ୍ତୁ ସାଧାରଣ ସଂସାରୀ ପକ୍ଷେ ଏ

ଦଗରେ ଗଢକରିବା ଅସମ୍ଭବ କହିଲେ ଚଳେ । ସଂସାରର ଅବଲମ୍ବନ ଅଧିକାଂଶ ସମୟରେ ବଡ଼ ଦୁର୍ବଳ ଥାଏ । ଅନ୍ତରର ଉଚ୍ଛ୍ୱାସକୁ ସେ ଠିକ୍ ରୂପେ ଅନୁଭବ କରେ ନାହିଁ । ଅନ୍ତଃସଲିଳା ଫଲ୍‌ଗୁ ପରି ହୃଦୟର କେତେ ଭାବ ବଡ଼ ଅଲକ୍ଷିତଭାବରେ ରହିଥାଏ । ଉଚ୍ଛ୍ୱାସଟିଏ ଉଠେ, ବାହାରର ଚଞ୍ଚଳତାକୁ ଆବୃତ କରି ଭିନ୍ନଭାବରେ ମନୁଷ୍ୟକୁ ଅନୁପ୍ରାଣିତ କରେ । ସେ ଯାହା ଖୋଜେ, ତାହା ପାଏ ନାହିଁ; କିନ୍ତୁ ସେ ବୁଝେ ନାହିଁ ଯେ, ଅନ୍ତରର ଉଚ୍ଛ୍ୱାସରେ ମୁକ୍ତିର ମର୍ମ ବଡ଼ ଦୃଢ଼ଭାବରେ ସଂଶ୍ଳିଷ୍ଟ ଥାଏ । ଉଚ୍ଛ୍ୱାସର ବେଗକୁ ମନୁଷ୍ୟ ଉପଯୁକ୍ତ ଅବଲମ୍ବନ ସାହାଯ୍ୟରେ ଜୀବନର ଗତି ଉପରେ ପ୍ରୟୋଗ କଲେ ମନର ଗ୍ଲାନି ଦୂର ହୋଇଯାଏ; ଜୀବନର ଗୋଟାଏ ନୂତନ ଅଧ୍ୟାୟ ଆରମ୍ଭ ହୁଏ ।

ତଟିନୀର ଉଚ୍ଛ୍ୱାସ, ସଙ୍ଗୀତର ମୂର୍ଚ୍ଛନା ଓ ଭାବର ଗାମ୍ଭୀର୍ଯ୍ୟରେ ଗୋଟାଏ ସମାନତା ଅଛି । ଏହି ସମାନତାକୁ ଲକ୍ଷ୍ୟ କରିବା ସହଜ ନୁହେଁ । ଜଗତର ଅସମାନ ଗତିରେ ମାନବର ଚରିତ୍ର-ବିକ୍ଷେପ ଆସିବା ସ୍ୱାଭାବିକ । ଜଣକୁ ଅନୁସରଣ କରି କିମ୍ବା ଗୋଟାଏ ଭାବରେ ଜୀବନ ଅତିବାହିତ କରି ସଂସାରରେ ସୁଖୀ ହେବା ମନୁଷ୍ୟଙ୍କ ସଂଖ୍ୟା ଅତି କମ୍ । କାମନାର ଆକର୍ଷଣ ମନ ଉପରେ ଯେ ପ୍ରଭାବ ବିସ୍ତାର କରେ, ତାହା ଚରିତାର୍ଥ ପାଇଁ ଲକ୍ଷ୍ୟର ଅନୁବର୍ତ୍ତୀ ମନୁଷ୍ୟକୁ ଗୋଟାଏ କରେ ନାହିଁ । ସେ ଅନେକ ସମୟରେ ମନେ କରେ କେବଳ ଧୀର ସ୍ଥିର ଭାବରେ ନିଜର କର୍ତ୍ତବ୍ୟ ପାଳନ କରିଗଲେ ଜୀବନର ସାର୍ଥକତା ଆସେ । କର୍ତ୍ତବ୍ୟର ମର୍ମ ନ ବୁଝି ମଧ୍ୟ ଅନେକେ ଗୋଟାଏ ଗଡ୍ଡଳିକା ପ୍ରବାହରେ ଭାସିଯାନ୍ତି । ଯୁଗର ପ୍ରଭାବ ଓ ପାରିପାର୍ଶ୍ୱିକ ଅବସ୍ଥା ସେମାନଙ୍କର କର୍ତ୍ତବ୍ୟ ସମ୍ବନ୍ଧରେ ଭ୍ରମ ଧାରଣା କରାଇଥାଏ । ନିଜର ଅନ୍ତର୍ନିହିତ ଶକ୍ତିର ପରିଚୟ ନ ପାଇ ଧାରାବାହିକ କାର୍ଯ୍ୟପନ୍ଥା ଅନୁସରଣ କଲେ ସେମାନେ ଜଗତରେ ସୁଖ୍ୟାତି ଲାଭ କରିପାରନ୍ତି ଓ ତଦ୍ଦ୍ୱାରା ସେମାନଙ୍କ ଚରିତ୍ରର ସୃଷ୍ଟି ଆସିପାରେ; କିନ୍ତୁ ଉନ୍ନତ ମାନସିକ ବିକାଶରେ ଯେଉଁ ସାଧନା ଆବଶ୍ୟକ ହୁଏ, ତାହା ଜାଗତିକ କର୍ମ-ସମ୍ପାଦନରେ ଅତି ଅଳ୍ପ ପରିମାଣରେ ଥାଏ । ଅନ୍ୟ ପକ୍ଷରେ ଯେତେବେଳେ ସଂସାରର କର୍ମ-ଜଟିଳତା ମନୁଷ୍ୟର ଗତିପଥରେ ଗୋଟାଏ ପ୍ରତିବନ୍ଧକ ସୃଷ୍ଟି କରିଦିଏ ଓ ସେ ହତବୁଦ୍ଧି ହୋଇ ଏଣେତେଣେ ଗତିର ମୁକ୍ତତା ପାଇଁ ଦୃଷ୍ଟି ଫେରାଏ, ସେତେବେଳେ ତାକୁ ଟିକିଏ ଅବସର ମିଳିଲେ ସେ ଦେଖେ—ଜଗତର କର୍ମ-ସମ୍ପାଦନରେ ଗୋଟାଏ ନିର୍ଦ୍ଦିଷ୍ଟ ଧାରା ରହିଛି; ମାତ୍ର ସେହି ଧାରାରେ ସମସ୍ତଙ୍କର ଗତି ସମାନ ରହୁ ନାହିଁ । ସାଧାରଣ ସଂସାରର ଜୀବନରୁ ଏହାର ପ୍ରମାଣ ମିଳେ । ଏହି ଅସମାନତା ପ୍ରତି ସାଧାରଣତଃ କେହି ସହଜରେ ଦୃଷ୍ଟି ଦିଅନ୍ତି ନାହିଁ । ଅସମାନତାରୁ ସମାନତା, ଅନ୍ଧକାରରୁ ଆଲୋକ ଓ ମନ୍ଦରୁ ଭଲର ଉତ୍ପତ୍ତି ନ ଦେଖିଲେ ଜୀବନର ଗତି ଜଣାପଡ଼େ ନାହିଁ । କେହି ବୁଝନ୍ତି ନାହିଁ, ଜୀବନରେ କାହିଁକି ଏତେ ପ୍ରତିବନ୍ଧକ ଆସେ ଓ ମନୁଷ୍ୟ କାହିଁକି ଏତେ ସାଂସାରିକ ଯନ୍ତ୍ରଣା ପାଏ । ଅଧିକାଂଶ ସଂସାରଯାତ୍ରୀ ଉଦ୍‌ଭ୍ରାନ୍ତ ପଥିକ ପରି ଗୋଟାଏ ଅନିର୍ଦ୍ଦିଷ୍ଟ ଜଟିଳ ପଥରେ ଗତି କରି ସେମାନଙ୍କ ପ୍ରକୃତ ଅବସ୍ଥା ବୁଝିପାରନ୍ତି ନାହିଁ । ଦୃଷ୍ଟି ସମକ୍ଷରେ ଯାହାର ବାହ୍ୟ ଦୀପ୍ତି ଯେତେ ବେଶି ଜଣାଯାଏ, ମନୁଷ୍ୟ ତାକୁ ସେତେ ଅଧିକ ପରିମାଣରେ ନିଜସ୍ୱ କରିବା ପାଇଁ ଚେଷ୍ଟା କରେ । ମରୀଚିକାର ଆଲୋକ ପରି ଏହି ଦୀପ୍ତି ଅନୁସରଣକାରୀକୁ ଗୋଟାଏ ମରୀଚିକାରେ ପକାଇ ଦେଇ ଅନ୍ତର୍ହିତ ହୋଇଯାଏ । ମନୁଷ୍ୟ-ଜୀବନର ପରିଶ୍ରମ ଯେତେବେଳେ ଏପରି ଗୋଟାଏ ଅସାର ଭ୍ରମଣରେ ବିତିଯାଏ, ସେତେବେଳେ ସେ ନୈରାଶ୍ୟର ଭୀତିପ୍ରଦ ଅନୁଭୂତିରେ ଅସହାୟ ହୋଇପଡ଼େ ଓ ସାଂସାରିକ ଯାବତୀୟ ଦୁଃଖଯନ୍ତ୍ରଣାକୁ ବାଧ୍ୟ ହୋଇ ସହ୍ୟ କରେ । ସୃଷ୍ଟିର ମଙ୍ଗଳମୟ ବିଧାନରେ ଗତିପଥରେ ପ୍ରତିବନ୍ଧକମାନେ ଆସନ୍ତି କେବଳ ଗତି ଫେରାଇ ଦେବାପାଇଁ; କିନ୍ତୁ ମନୁଷ୍ୟର କଳୁଷିତ ଦୃଷ୍ଟି ସେ ଦଗରେ ଯାଏ ନାହିଁ । ଯେଉଁ ଆକର୍ଷଣ ତାକୁ ପ୍ରଥମରୁ ପ୍ରଭାବିତ କରିଥାଏ, ସେଥିରୁ କ୍ଷାନ୍ତ ହେବା ତାହା ପକ୍ଷେ ସ୍ୱଭାବ-ବିରୁଦ୍ଧ ପରି ଜଣାପଡ଼େ । ତେଣୁ କାମନାର ବିନାଶରେ, ଶାଶ୍ୱତ ଆନନ୍ଦର ଉପଲବ୍ଧି ସାଧାରଣ ଜଗଦ୍‌ବାସୀପକ୍ଷେ ସମ୍ଭବ ହୁଏ ନାହିଁ । କର୍ମର ଅସାମଞ୍ଜସ୍ୟ ଓ ଭଲ-ମନ୍ଦର ବୈଷମ୍ୟ ଯେପରି ଜଗତରେ ଗତି ଅସମାନ ଜଣାପଡ଼େ । ଜାଗତିକ କର୍ମ-ସମ୍ପାଦନ ପାଇଁ ଯେ ସାଧାରଣ ରୀତିସବୁ ସୃଷ୍ଟ ହୋଇଅଛି, ସେଥିରେ ଜୀବନର ଗତି-ନିୟନ୍ତ୍ରଣର ସରଳ ପଥ ନାହିଁ । କେହି କେହି ଅସାଧାରଣ କର୍ମୀ ଜୀବନର ଧାରାକୁ ଲକ୍ଷ୍ୟ ନ କରି କେବଳ କର୍ମ କରିଯାନ୍ତି । ହୃଦୟରେ ନିର୍ଲିପ୍ତ ଭାବ ନ ଆସିଲେ ମନୁଷ୍ୟ ଏପରି ଅବସ୍ଥାର ଅଧୀନ ହୋଇପାରେ ନାହିଁ; କିନ୍ତୁ ଯେଉଁମାନେ ଅନ୍ତରର ଉଚ୍ଛ୍ୱାସରେ ଅଭିଭୂତ ହୋଇପଡ଼ନ୍ତି, ସେମାନଙ୍କର ଗତି ଭିନ୍ନ ପ୍ରକାର ହୁଏ । ଭାବର ଗାମ୍ଭୀର୍ଯ୍ୟରେ ଯେ ପ୍ରେରଣା ଅଛି, ନିର୍ଲିପ୍ତ କର୍ମସମ୍ପାଦନରେ ତାହା ନାହିଁ । ଗୋଟିଏ ସରସତାର ଉତ୍ସ ହେଲେ ଅନ୍ୟଟି

ଜ୍ଞାନ-ମାର୍ଗର ସରଣୀ ହୁଏ । ଗୋଟିକରେ ଉଚ୍ଛ୍ୱାସ ଅନୁଭୂତ ହେଲେ, ଅନ୍ୟଟିରେ ପ୍ରତିବନ୍ଧକହୀନ ପ୍ରବଳ ପ୍ରବାହର ବେଗ ସମ୍ଭାଳି ଅଗ୍ରସର ହେବାକୁ ପଡ଼େ । ଗୋଟିକରେ ତଟିନୀର ଶାନ୍ତ କଳ-ନାଦ ସ୍ପନ୍ଦିତ ହେଲେ ଅନ୍ୟଟିରେ ପ୍ରଖର ରଶ୍ମି ପ୍ରତିଫଳିତ ହୁଏ । ଆଧାରର ବିଶେଷତ୍ୱ ଉପରେ ଏ ଦୁହିଁଙ୍କର ଭିନ୍ନତା ନିର୍ଭର କରେ । ଏଠାରେ ସାନବଡ଼ର ବିଚାର ନାହିଁ ।

ଉଚ୍ଛ୍ୱାସ ମୁକ୍ତିନିସ୍ୟନ୍ଦୀ । ହୃଦୟର ଭାବ ଉଚ୍ଛଳ ହୋଇଉଠିଲେ ଉଚ୍ଛ୍ୱାସ ଆସେ ! ଏହାର ପ୍ରକାରଭେଦ ଅଛି । ଜଣେ ଯେପରି ଅନୁପ୍ରାଣିତ ହୁଏ, ଅନ୍ୟ ତାକୁ ସେପରି ଗ୍ରହଣ କରି ନପାରେ । ଏଥିରେ କୌଣସି ଦୋଷ ନାହିଁ । ଜୀବନର ଗତିରେ ଚରିତ୍ରର ଶୁଦ୍ଧତା ଫୁଟିଉଠିଲେ ଆଲୋକର ସନ୍ଧାନ ମିଳେ । ଏହି ଆଲୋକର ତେଜରେ ହୃଦୟ ସ୍ୱତଃ ଉଚ୍ଛ୍ୱସିତ ହୋଇଉଠେ । କବିର କଳ୍ପନା, ଭାବୁକର ଭାବନା, ଯୋଗୀର ସାଧନା ଏକାଧାରରେ ବିକଶିତ ହୋଇଯାଏ । ଜୀବନର ମାହେନ୍ଦ୍ରବେଳା ନ ଆସିବାଯାଏ ଏପରି ବିକାଶ ସମ୍ଭବ ହୁଏ ନାହିଁ । ବହୁଜନ୍ମର ସାଧନା ଫଳରେ ଯେତେବେଳେ ଏହି ଶୁଭମୁହୂର୍ତ୍ତଟି ଆସେ, ସେତେବେଳେ ଅନ୍ଧକାରର ପର୍ଦ୍ଦାଟି ଉଠିଯାଏ । ନୂତନ ଆଲୋକର ଦୀପ୍ତିରେ ଅନ୍ତର ଆଲୋଡ଼ିତ ହୁଏ । ଏହି ଆଲୋଡ଼ନ ଏକ ଅତି ପବିତ୍ର ଉଚ୍ଛ୍ୱାସର ନାମାନ୍ତର ମାତ୍ର । ସମୁଦ୍ରରେ ଉତ୍ତାଳ ତରଙ୍ଗ ଗୋଟିକ ପରେ ଗୋଟିଏ ଆସେ, କୂଳରେ ପ୍ରତିହତ ହୋଇ ଉଭେଇଯାଏ; ବାଲୁକାଶଯ୍ୟାରେ ରହିଯାଏ କେବଳ ଗୋଟିଏ ଆଭାସ ମାତ୍ର । ଆଭାସଟି କିଛିକ୍ଷଣ ଗଲା ପରେ ଲୁଚିଯାଏ, ଅନ୍ୟ ତରଙ୍ଗର ଆଘାତ ତାର ସ୍ଥାନ ଅଧିକାର କରେ । ଜୀବନରେ ଏହିପରି ଅନେକ ତରଙ୍ଗ ଉଠି ମନୁଷ୍ୟର ଅନ୍ତରକୁ ବିକ୍ଷୁବ୍ଧ କରିଦିଏ । କାହାରି ଚିହ୍ନ ତାହାର ସ୍ମୃତିପଟରେ ଅଙ୍କିତ ହୋଇ ରହେ ନାହିଁ । କାଳକ୍ରମେ ସବୁ ବିଲୀନ ହୋଇଯାଏ । ସମୁଦ୍ରର ତଟଦେଶରେ ତରଙ୍ଗ ବେଶୀ ପରିମାଣରେ ଉଦ୍‌ବେଳିତ ହୁଏ; କିନ୍ତୁ ଭିତରକୁ ଗଲେ ତାର ପ୍ରଶାନ୍ତ ମୂର୍ତ୍ତି ପ୍ରକଟିତ ହୁଏ । ଜୀବନର ସାଧାରଣ ଗତିରେ ଯେ ସବୁ ଉଚ୍ଛ୍ୱାସ ଆସେ, ତାହା ସମୁଦ୍ରତଟସ୍ଥ ତରଙ୍ଗର ଆଘାତ ପରି କ୍ଷଣିକ । ଉଚ୍ଛ୍ୱାସର କ୍ରିୟା କ୍ଷଣିକ ହେଲେ ଜୀବନର ମୁକ୍ତତା ଦୂରେ ଥାଉ, ମନୁଷ୍ୟର ଅଗ୍ରଗତିରେ ବାଧା ପହଞ୍ଚିଯାଏ । ପୂର୍ଣ୍ଣିମାରେ ଜୁଆର ଉଠେ । ଜ୍ୟୋତ୍ସ୍ନା-ପ୍ଲାବିତ ଅନନ୍ତ ଆକାଶ ଅସୀମ ସମୁଦ୍ର ସଙ୍ଗେ ମିଳନର ପରିଚୟ ଦିଏ, ଅସୀମ ସଙ୍ଗେ ଅସୀମର ମିଳନକୁ ଜୁଆରର ଗୋଟାଏ ବିଶ୍ୱ-ବ୍ୟାପକ ଛନ୍ଦରେ ଶୁଣାଇ ଦିଏ । କବି, ଭାବୁକ, ଯୋଗୀ, ସଂସାରୀ ସମସ୍ତେ ଶୁଣନ୍ତି; କିନ୍ତୁ କିଏ କିପରି ଭାବରେ ଗ୍ରହଣ କରେ, ସହଜରେ କହି ହେବ ନାହିଁ । ତଟ-ଦେଶରୁ ଭିତରକୁ ଚାଲିଗଲେ ତରଙ୍ଗର କ୍ଷୁବ୍ଧତା ଜଣାପଡ଼େ ନାହିଁ; କିନ୍ତୁ ଗୋଟାଏ ସ୍ପନ୍ଦନର ଅନୁଭୂତି ଆସେ । ସମୁଦ୍ରର ଅତଳସ୍ପର୍ଶୀ ଗର୍ଭ ଉପରେ ଏହି ସ୍ପନ୍ଦନ ଖେଳିଗଲା ବେଳେ କୌଣସି ପ୍ରକୋପ ନ ଥାଏ । ଜଳର ଗମ୍ଭୀରତାରେ ଏହା ସ୍ୱତଃ ଶାନ୍ତଭାବ ଧାରଣ କରେ । ଜ୍ଞାନର ବିକାଶରେ ଭାବର ଯେଉଁ ଗାମ୍ଭୀର୍ଯ୍ୟ ଆସେ, ତାହା ଏହିପରି ଅଟେ । ଅସ୍ଥାୟୀ ଉଚ୍ଛ୍ୱାସ ଗୋଟିକ ପରେ ଗୋଟିଏ ଆସୁଥାଏ; କିନ୍ତୁ ଅନ୍ତରର ଦୀପ୍ତିରେ ଯେଉଁ ଉଚ୍ଛ୍ୱାସ ଆସେ, ତାହା ଶାଶ୍ୱତ କାଳପାଇଁ ରହିଯାଏ । ଏହାର ଆଗମନରେ ସବୁ ବିକ୍ଷୁବ୍ଧ ଭାବ ଆସ୍ତେ ଆସ୍ତେ ଲୁଚିଯାଏ । ରଜନୀର ଶେଷପର୍ଦ୍ଦାଟି ଉଷା ଆବିର୍ଭାବରେ ଉଠିଗଲା ପରି, ଜୀବନର ଯାବତୀୟ ଗ୍ଳାନି ହୃଦୟର ଏହି ଅମଳ ଉଚ୍ଛ୍ୱାସରେ ଦୂର ହୋଇଯାଏ । ଉଷାର ମାଙ୍ଗଳିକ ଗାନ ସଙ୍ଗେ ତରୁଣ ଅରୁଣର ପ୍ରଥମ ଦର୍ଶନ ନବବଳ ସଂଗ୍ରହ କରି ଶ୍ରାନ୍ତ ମାନବକୁ ତା ଗତିପଥରେ ସ୍ୱଚ୍ଛନ୍ଦରେ ଛାଡ଼ିଦେଲା ପରି, ବିଷୟାକୃଷ୍ଟ ମନ ଜଣକର ଇଙ୍ଗିତରେ ଅନାହତ ଉଚ୍ଛ୍ୱାସ ଅନୁଭବ କଲେ ମୁକ୍ତି ଓ ଆନନ୍ଦର ପଥ ସ୍ୱତଃ ଖୋଲିଯାଏ । ଯେ ଇଙ୍ଗିତ ଦିଅନ୍ତି, ସେ ଚିରଦିନ ପାଇଁ ତାର ଅବଲମ୍ବନ ହୋଇ ରହନ୍ତି । ବିଶ୍ୱାସ ଏହାର ମୂଳମନ୍ତ୍ର ।

# ଗୃହସ୍ଥର ଆଚରଣ

ଜଗତର କର୍ମଜାଲରେ ମନୁଷ୍ୟ ସର୍ବଦା ଆବଦ୍ଧ । ତାର ଆକାଙ୍‌କ୍ଷା ଓ କର୍ମ ସବୁବେଳେ ଗୋଟାଏ ମାର୍ଗକୁ ଅନୁସରଣ କରେ ନାହିଁ । ମନୁଷ୍ୟର ଏହି ଅନୁସୃତିରେ ପ୍ରବୃତ୍ତିମାନଙ୍କର ବିଲକ୍ଷଣ ପ୍ରଭାବ ଥାଏ । ପ୍ରବୃତ୍ତିମାନେ ମନୁଷ୍ୟର କର୍ମଜାଲକୁ ସୃଷ୍ଟି କରନ୍ତି । ଯେତେବେଳେ ସେ ସେମାନଙ୍କର ପ୍ରଭାବକୁ ଏଡ଼ି ଚାଲିଯାଏ, ସେତେବେଳେ ତାର ପଥ ପରିଷ୍କୃତ ହୋଇଯାଏ; କିନ୍ତୁ ସଂସାରରେ ଥାଇ ଏପରି ଜୀବନଯାପନ କରିବା ଅଧିକାଂଶଙ୍କ ପକ୍ଷେ ସମ୍ଭବ ହୁଏ ନାହିଁ । ପ୍ରାଚୀନ କାଳରେ ଜନକଙ୍କ ପରି ରାଜର୍ଷିମାନେ ଗୃହସ୍ଥ ଧର୍ମକୁ ସେମାନଙ୍କର କାର୍ଯ୍ୟାବଳୀଦ୍ୱାରା ନିୟନ୍ତ୍ରିତ କରୁଥିଲେ । ସେମାନଙ୍କ ଆଦର୍ଶ ଆଜି ପର୍ଯ୍ୟନ୍ତ ରହିଛି । ଆଦର୍ଶକୁ ମାନି ଚଳିବା ପାଇଁ ଆଜି ସମାଜରେ ଲୋକ ବିରଳ କହିଲେ ଚଳେ । ମନୁଷ୍ୟର ସ୍ୱଭାବ ସବୁଦିନେ କେତୋଟି ଧାରାକୁ ଅନୁସରଣ କରି ଚାଲେ । ପ୍ରାଚୀନକାଳରେ ଯେ କର୍ମଧାରା ଯେ ଆଦର୍ଶକୁ ଲକ୍ଷ୍ୟ ରଖି ପ୍ରଧାବିତ ହେଉଥିଲା, ଆଜି ସେହି ଆଦର୍ଶ ଅଛି; କିନ୍ତୁ କର୍ମଧାରାରେ କାହିଁକି ପରିବର୍ତ୍ତନ ହେଲା ? ଏହାର ମୂଳରେ ଯୁଗପ୍ରଭାବ ବିଶେଷଭାବରେ ଅଛି ବୋଲି ମନେ କରିବାକୁ ହେବ । ମନୁଷ୍ୟର କର୍ମରାଶି ମୁହୂର୍ତ୍ତିକେ ବିଲୀନ ହୋଇଗଲେ ସୁଦ୍ଧା ଗୋଟିଏ ନିସ୍ତରଙ୍ଗ ହ୍ରଦରେ ଉପଲଖଣ୍ଡ ନିକ୍ଷିପ୍ତ ହେଲାମାତ୍ରେ ଯେପରି ତାହାର ସତ୍ତା ହ୍ରଦ-ଗର୍ଭରେ ଲୁଚିଯାଏ ଓ ଗୋଟାଏ ତରଙ୍ଗର ବ୍ୟାପ୍ତି ସମସ୍ତ ହ୍ରଦକୁ ଆଲୋଡ଼ନ କରେ, ସେହିପରି ମନୁଷ୍ୟର ବିଶିଷ୍ଟ କର୍ମସବୁ ଅନ୍ତର୍ହାନ କାଳସ୍ରୋତରେ ଗୋଟାଏ ସ୍ପଷ୍ଟ ରେଖାପାତ କରି ଚାଲିଯାଏ । ଅତୀତର କଳ୍ପନା ସଙ୍ଗେ ଏହି ରେଖାର ବିସ୍ତୃତି ବର୍ତ୍ତମାନ ଓ ଭବିଷ୍ୟତକୁ ସ୍ପର୍ଶ କରି ଚାଲିଥାଏ । ମନୁଷ୍ୟ ଅଧିକାଂଶ ସମୟରେ ବାଲ୍ୟକାଳରୁ ପ୍ରାଚୀନତାର ଗୋଟାଏ ପ୍ରଭାବ ଅନୁଭବ କରି ଅଗ୍ରସର ହୁଏ, କିନ୍ତୁ ଶିକ୍ଷା ଓ ଅନ୍ୟାନ୍ୟ ପାରିପାର୍ଶ୍ୱିକ ଅବସ୍ଥାମାନଙ୍କର ସଂସ୍ପର୍ଶରେ ଆସି ସେ ଭିନ୍ନରୁଚି ଓ ମାର୍ଗାବଲମ୍ବୀ ହୋଇପଡ଼େ । କେବଳ ମନୁଷ୍ୟଜୀବନର ଭିନ୍ନ ଭିନ୍ନ ଦଶାରେ କର୍ମର ଯେ ପାର୍ଥକ୍ୟ ଦେଖାଯାଏ, ସେଥିରେ ଯୁଗପ୍ରଭାବର ବିଶାଳତାକୁ ତୁଳନା କଲେ ନିଶ୍ଚୟ କାଳର ପରିବର୍ତ୍ତନକୁ ସ୍ୱୀକାର କରିବାକୁ ହେବ । ନିକ୍ଷିପ୍ତ ଉପଲଖଣ୍ଡ ହ୍ରଦଗର୍ଭରେ ମୁହୂର୍ତ୍ତିକ ପାଇଁ ଗୋଟାଏ ଗର୍ତ୍ତ ସୃଷ୍ଟି କରି ଲୁଚିଯାଏ; କିନ୍ତୁ ତାର ସୃଷ୍ଟ ତରଙ୍ଗଟି ଯେପରି ବିସ୍ତୃତି ଲାଭ କରେ, ସେହିପରି କାଳବକ୍ଷରେ ଆଦର୍ଶର ରେଖାଟି ରହିଯାଏ । କର୍ମ-ଧାରାଟି କିଛିକ୍ଷଣ ପରେ ଅସ୍ପଷ୍ଟ ହୋଇଆସେ ଓ ଅନ୍ୟ କର୍ମଧାରା ତାର ସ୍ଥାନ ଅଧିକାର କରେ । ସେତେବେଳେ ମନୁଷ୍ୟ ସହଜରେ ଯୁଗର ପ୍ରଭାବକୁ ଅନୁଭବ କରେ । ଯେଉଁମାନେ ଅତୀତର ଆଦର୍ଶକୁ ଲକ୍ଷ୍ୟ ନ ରଖି ବର୍ତ୍ତମାନର କର୍ମଧାରାରେ ଭାସିଯାନ୍ତି, ସେମାନଙ୍କୁ କାଳର ଗତି ଜଣାପଡ଼େ ନାହିଁ ଓ ସେମାନେ ଜଗତର କର୍ମଜାଲକୁ ସ୍ଥାୟୀ ବୋଲି ମନେ କରନ୍ତି ।

ଯୁଗପ୍ରଭାବରୁ ଯୁଗଧର୍ମର ସୃଷ୍ଟି । ସଂସାର ଯୁଗଧର୍ମର ବିରୋଧୀ ହୁଏ ନାହିଁ । ମନୁଷ୍ୟ ସହସ୍ର ବର୍ଷ ତଳେ ଯେଉଁ କାର୍ଯ୍ୟ ସମ୍ପାଦନ କରୁଥିଲା, ଆଜି ତାର ସେହି କାର୍ଯ୍ୟ ନାହିଁ । ଶିକ୍ଷା ଓ ସଭ୍ୟତାର ବିସ୍ତୃତିରେ ଜାତୀୟ ଜୀବନର ଗତି ଅନୁସରଣ କଲେ ଉପର୍ଯ୍ୟୁକ୍ତ ପାର୍ଥକ୍ୟ ଜଣାପଡ଼େ । ବର୍ତ୍ତମାନ ଓ ଅତୀତକୁ ନେଇ କାର୍ଯ୍ୟମାନଙ୍କର ତୁଳନା କଲେ କିଛି ଲାଭ ନାହିଁ । ଅତୀତରେ ଯେଉଁ କାର୍ଯ୍ୟ ସମାଜରେ ସମସ୍ତଙ୍କ ପକ୍ଷରେ କରଣୀୟ ହୋଇଥିଲା, ଆଜି ତାହା ସମ୍ପାଦିତ ହୋଇ ନ ପାରୁଛି ବୋଲି ମନୁଷ୍ୟର ଗତିପଥରେ କୌଣସି ତ୍ରୁଟି ଘଟିଛି, ଏହା ଭାବିବା ମଧ୍ୟ ଅନୁଚିତ । ମନୁଷ୍ୟର ଆକାଙ୍‌କ୍ଷା ଯୁଗପ୍ରଭାବରେ ଭିନ୍ନ ଗତି ଅବଲମ୍ବନ କରେ । ପୂର୍ବପୁରୁଷମାନଙ୍କର ଆଚରିତ ରୀତିନୀତି ସହିତ ଆମ୍ଭମାନଙ୍କର ବର୍ତ୍ତମାନ ଆଚାର ବ୍ୟବହାରର କୌଣସି ସାମଞ୍ଜସ୍ୟ ନାହିଁ । ସେମାନେ ଯେ ରୀତିରେ ଗାର୍ହସ୍ଥ୍ୟଧର୍ମ ପାଳନ କରୁଥିଲେ, ତାହା କେବଳ ଗୋଟାଏ ଔପନ୍ୟାସିକ ବୃତ୍ତାନ୍ତ ପରି ଆଜିକାଲି ଲୋକମୁଖରେ ଶୁଣାଯାଏ । ଅତୀତରେ ଯେଉଁ ଅସାଧାରଣ କର୍ମସବୁ ଗୃହସ୍ଥଦ୍ୱାରା ଆଚରିତ ହେଉଥିଲା

ତାହା ଜୀବନର ଚଞ୍ଚଳତାକୁ ଲକ୍ଷ୍ୟ କରି ସାଧିତ ହେଉ ନ ଥିଲା । ଗୋଟାଏ ମହତ୍ତ୍ୱ ଲକ୍ଷ୍ୟ ପ୍ରାଚୀନ ସାମାଜିକ ଜୀବନକୁ ବିଶେଷ ଭାବରେ ପ୍ରଭାବିତ କରୁଥିଲା । ସେତେବେଳେ ଗୃହସ୍ଥର କର୍ମକୁ କେତେଗୁଡ଼ିଏ ବିଭାଗରେ ବିଭକ୍ତ କରି ଦିଆଯାଇଥିଲା । ସେମାନଙ୍କ ଅନୁସରଣ କରି ସେ ତାର ଜୀବନର ଗତି ନିୟନ୍ତ୍ରିତ କରୁଥିଲା । ବର୍ତ୍ତମାନ କାଳର ପ୍ରଭାବରେ ସେ ସବୁ ଅତୀତ କର୍ମପନ୍ଥା ପ୍ରାୟ ବିଲୁପ୍ତ ହୋଇ ଆସିଲାଣି । ଅତୀତ ଚାଲି ଯାଇଛି; କିନ୍ତୁ ରହିଛି ଯାଇଛି ଗୋଟାଏ ଛାୟା, ଯାହା ଆଜି ସୁଦ୍ଧା କାଳର ପ୍ରଭାବକୁ ଅତିକ୍ରମ କରି ମନୁଷ୍ୟ ମନରେ ଗୋଟାଏ ବିସ୍ମୟ ଆଣିଛି । ଏହି ବିସ୍ମୟର ଅନ୍ତରାଳରେ କାଳ ତାହାର ବିରାଟ ସତ୍ତାର ଗୋଟାଏ ଆଭାସ ମାତ୍ର ଦେଇ ଅବିରାମ ଗତିରେ ଚାଲିଛି । ସମସ୍ତ ସମୟରେ ସେତେବେଳେ ମନୁଷ୍ୟ ଦେଖୁଛି, ସେ ଦିନେ ଯେଉଁଠାରେ ଥିଲା, ଆଜି ସେଠାରୁ ବିଚ୍ଛିନ୍ନ ହୋଇ ବହୁଦୂରକୁ ଚାଲି ଆସିଛି କିମ୍ବା ତା ଜୀବନ-ଧାରାରେ ଗୋଟାଏ ଅଲକ୍ଷିତ ପରିବର୍ତ୍ତନ ଆସ୍ତେ ଆସ୍ତେ ଆସି ତାକୁ ସମ୍ପୂର୍ଣ୍ଣ ଏକ ଅପରିଚିତ ଓ ନୂତନ ଅବସ୍ଥାର ଅଧୀନ କରି ପକାଇଛି, ସେତେବେଳେ ସେ ବୁଝେ କାଳର ପ୍ରଭାବ । ଅତି ସୂକ୍ଷ୍ମ ଭାବରେ ଅନୁଭବ କଲେ ଦୈନନ୍ଦିନ ଜୀବନରେ ମଧ୍ୟ କାଳର ପ୍ରଭାବ ଜଣା ପଡ଼ିପାରେ; କିନ୍ତୁ ସେପରି ଅନୁଭୂତି ଥିବା ଗୃହସ୍ଥ ବ୍ୟକ୍ତିଙ୍କର ସଂଖ୍ୟା ଅତି କମ୍ । ମନୁଷ୍ୟର ପରିସ୍ଥିତି ତାର ସ୍ୱଭାବ ଗଠନ ପକ୍ଷରେ ସହାୟତା କରେ ଓ ଯୁଗଧର୍ମ ବଳରେ ଏହାର ଦୃଢ଼ତା ଆସେ ।

କର୍ମର ବହୁଳତା ଓ ଜଟିଳତା ଦେଖିଲେ ଗୃହସ୍ଥ ପାଇଁ କୌଣସି ନିର୍ଦ୍ଦିଷ୍ଟ ମାର୍ଗ ନାହିଁ ବୋଲି ଅନୁମିତ ହୋଇପାରେ; କିନ୍ତୁ ଏଥିରେ ବିବ୍ରତ ହେବାର କୌଣସି କାରଣ ନାହିଁ । ମନୁଷ୍ୟ ଅନ୍ତରର ପିପାସା ବହୁମୁଖୀ ବୋଲି ଏପରି ଜଟିଳ କର୍ମଭୂମିର ସୃଷ୍ଟି ହୋଇଅଛି । ମନୁଷ୍ୟ ଯଦି ଅପରିମିତ ଆକାଙ୍କ୍ଷାର ବଶବର୍ତ୍ତୀ ହୋଇ ନ ଥାନ୍ତା, ତାହାହେଲେ କର୍ମମାର୍ଗର ଗତି ଅତି ସରଳ ହୋଇଥାନ୍ତା । କାମନାହୀନ କର୍ମ ସଂସାରୀ ପକ୍ଷରେ ଅନୁସନ୍ଧେୟ ନୁହେଁ । ନିଷ୍କାମ କର୍ମ କଥା ଦୂରେ ଥାଉ, ଜଗତରେ ଯେ ଯେଉଁ ସ୍ତରରେ ବିଚରଣ କରୁଥାଏ, ତାକୁ ସେହିଠାରେ ରହି ଉପଯୁକ୍ତ କର୍ମଶିକ୍ଷା ଓ କର୍ମ ସମାପନ କରିବା ଆବଶ୍ୟକ; କାରଣ ହଠାତ୍ କେହି ଉଚ୍ଚକର୍ମର ଅଧିକାରୀ ହୋଇପାରେ ନାହିଁ । ପ୍ରତ୍ୟେକ ଗୃହସ୍ଥର ଏଥିରେ ବିଶେଷ ଦୃଷ୍ଟି ଦେବା ଉଚିତ । ବର୍ତ୍ତମାନ ଜଗତରେ ଅସଂଖ୍ୟ କର୍ମୀ ଓ କର୍ମବିଭାଗ ଦେଖିଲେ ଅତୀତ ଆଡ଼କୁ ଯାଇ ଗୋଟାଏ ଅଜ୍ଞାତ ପାର୍ଥକ୍ୟର ସମ୍ମୁଖୀନ ହେବାକୁ ସାଧାରଣ ଗୃହସ୍ଥ ଇଚ୍ଛା କରିବେ ନାହିଁ । ପ୍ରତ୍ୟେକ ସାମାଜିକ କର୍ମାନୁଷ୍ଠାନରେ ସାଧାରଣ ଗୃହସ୍ଥ ଜୀବନର ଯେ ଛବି ପ୍ରକଟିତ ହୁଏ, ତାହା ବିଭିନ୍ନ ପାରିବାରିକ କ୍ରିୟାମାନଙ୍କର ସାମଞ୍ଜସ୍ୟରେ ସମାଜ-ଚିତ୍ରର ବିଭିନ୍ନତା ଓ ସ୍ୱତନ୍ତ୍ରତା ଦେଖାଇଥାଏ । ଜଗତର ଗତି ଚାଲିଛି, ସଂଖ୍ୟାତୀତ ନରନାରୀ ଚାଲିଛନ୍ତି—କିଏ ଆଗରେ, କିଏ ପଛରେ । ଜଣେ ଯେଉଁ କାର୍ଯ୍ୟ କରୁଛି, ଅନ୍ୟ ଜଣେ ଆସି ତାକୁ ସେହି କାର୍ଯ୍ୟରେ ସହାୟତା କରୁଛି କିମ୍ବା ତା'ଠାରୁ ସେହି କର୍ମଶିକ୍ଷା ଲାଭ କରି ଅନ୍ୟତ୍ର ଚାଲିଯାଉଛି । ପୁଣି ଜଣକର କାର୍ଯ୍ୟକୁ ଅନ୍ୟ ଜଣେ ବଡ଼ ଘୃଣାଚକ୍ଷୁରେ ଦେଖି ଅସନ୍ତୁଷ୍ଟ ହୋଇ ପୃଥକ ମାର୍ଗରେ ଗତି କରୁଛି; କିନ୍ତୁ ଏ ସମସ୍ତ ଗତି ଓ କର୍ମ ମଧ୍ୟରେ ପ୍ରତ୍ୟେକଙ୍କର ପ୍ରେରଣା ରହିଛି । ପ୍ରେରଣା ନ ଥାଇ ଜାଗତିକ କର୍ମସମ୍ପାଦନ ପ୍ରାୟ ବିରଳ କହିଲେ ଚଳେ । ଏହି ପ୍ରେରଣା ଯୋଗୁଁ ବିଭିନ୍ନ କର୍ମ ଓ କର୍ମୀର ସୃଷ୍ଟି ହୋଇଅଛି । କର୍ମୀର ଚେଷ୍ଟା ଦେଖିଲେ ଅନ୍ତରର ଅନୁଭୂତି ଜଣାପଡ଼େ ଓ ଶ୍ରେଣୀଗତ ଭାବରେ ସମକର୍ମୀମାନଙ୍କ ସମ୍ମିଳନ ପାଇଁ ନିଷ୍ଠାର ଯେଉଁ ନିଦର୍ଶନ ମିଳେ, ସେଥିରେ ସାମାଜିକ ଜୀବନର ଗୋଟାଏ ପୁଷ୍ଟି ସାଧିତ ହୁଏ । କର୍ମର ବହୁଳତା ଅସଂଖ୍ୟ ସମାଜ ସୃଷ୍ଟି କରି ମାନବକୁ ତାର ଈପ୍ସିତ ପଥରେ ଯାତ୍ରା କରିବା ପାଇଁ କେତେଗୁଡ଼ିଏ ନିୟମ ବାନ୍ଧି ଦେଇଛି । ଇଚ୍ଛାନୁସାରେ ସେ କୌଣସି ଗୋଟାଏ ସାମାଜିକ ଗୋଷ୍ଠୀରେ ରହିପାରେ ।

ମନୁଷ୍ୟ ଜୀବନର ଉତ୍କର୍ଷ କେବଳ ସାମାଜିକ ନିୟମପାଳନରେ ଆବଦ୍ଧ ନୁହେଁ । ସଂସାରରେ ସର୍ବଦା କର୍ମ-ସମ୍ପାଦନ ଲାଗି ରହିଛି । ଭଲମନ୍ଦ ବିଚାର କରି କର୍ମମାର୍ଗ ସ୍ଥିର କରିବା ପାଇଁ ମଧ୍ୟ ମନୁଷ୍ୟକୁ ଅବସର ମିଳୁ ନାହିଁ । ଅନେକ ଲୋକ ପୁରୁଷାନୁକ୍ରମେ ଏକ ସାଧାରଣ ରୀତି ଆଚରଣ କରି ଆସୁଅଛନ୍ତି । କେହି କେହି ପୁଣି କିଛି ବିଶେଷତ୍ୱ ଦେଖାଇବା ଆଶାରେ ଏହି ମାର୍ଗ ତ୍ୟାଗ କରି ସମ୍ପୂର୍ଣ୍ଣ ନୂତନ କର୍ମ-ମାର୍ଗର ଆଶ୍ରୟ ନେଉଅଛନ୍ତି; କିନ୍ତୁ ଗୃହସ୍ଥ ନିଜର ନିଜତ୍ୱ ପ୍ରକାଶ ନ କରିବା ପର୍ଯ୍ୟନ୍ତ ଉପର୍ଯ୍ୟୁକ୍ତ ଦୁଇ ବିପରୀତ ପନ୍ଥା ଅନୁସରଣ କଲେ ସୁଦ୍ଧା ହୃଦୟର ଗ୍ଲାନି ଅନୁଭବ କରେ । ସମସ୍ତ ସମୟରେ ଏପରି ଏକ ଅଭିସନ୍ଧି ଆସି ପହଞ୍ଚିଯାଏ ଯେ, ସେ କିଛି ନିର୍ଣ୍ଣୟ କରି ପାରେ ନାହିଁ । ଅଧିକାଂଶ ଗୃହସ୍ଥଙ୍କ ଜୀବନ ଏଥିରୁ ନିଷ୍କୃତି

ପାଏ ନାହିଁ । ଫଳାକାଙ୍କ୍ଷା ପୂର୍ଣ୍ଣ ହେଉଥିବା ପର୍ଯ୍ୟନ୍ତ ମନୁଷ୍ୟ ସାଂସାରିକ ଜୀବନ-ଯାପନକୁ ବଡ଼ ସୁଖକର ବୋଧ କରେ; କିନ୍ତୁ ଜୀବନର ସନ୍ଧିସ୍ଥଳକୁ ଆସିଗଲେ ସେ ନିରୁପାୟ ହୋଇ ପଡ଼େ । ମନୁଷ୍ୟ ନିଜତ୍ୱ ଓ ଅବଲମ୍ବନ ଏ ଦୁଇଟିର ସ୍ୱତନ୍ତ୍ର ଅଧିକାରୀ ହେଲେ ତା କର୍ମ-ମାର୍ଗରେ ବାଧା ବେଶି ସମୟ ସ୍ଥାୟୀ ହୋଇପାରେ ନାହିଁ । ସଂସାରରେ ସାଧାରଣ ଗୃହସ୍ଥ ଜୀବନର ଉତ୍କର୍ଷକୁ ଅନେକ ସମୟରେ ଭୁଲିଯାନ୍ତି । ଗୋଟାଏ କଠିନ କର୍ମଜାଲ ମଧ୍ୟରେ ନିଜକୁ ଆବଦ୍ଧ ରଖି ସେ ସଂସାରର ପ୍ରକୃତ ଆନନ୍ଦ ପାଏ ନାହିଁ ।

ସାଂସାରିକ ବାଧାବିଘ୍ନ ମଧ୍ୟରେ ମନୁଷ୍ୟର ନିଜତ୍ୱ ପ୍ରକାଶିତ ହେବା ସହଜ ନୁହେଁ । ଅନେକ ସମୟରେ ସାମାଜିକ ରୀତିନୀତି ମଧ୍ୟ ପ୍ରତିବନ୍ଧକ ସ୍ୱରୂପ ହୋଇଥାଏ । ପୂର୍ବକାଳରେ ଆମ ଦେଶରେ ଗୃହସ୍ଥର ଆଚରଣ ସମ୍ବନ୍ଧରେ ଶିକ୍ଷା ଦିଆ ହେଉଥିଲା, କିନ୍ତୁ ଆଜିକାଲି ସେପରି ଶିକ୍ଷାର ପ୍ରଚଳନ ନାହିଁ । ମନୁଷ୍ୟର ଗୋଟାଏ ସଙ୍କୁଚିତ ଅବସ୍ଥା ଆସିଗଲେ, ସେ ସହଜରେ ଆଉ ସେଥିରୁ ନିଷ୍କୃତି ପାଏ ନାହିଁ । ଯେଉଁମାନଙ୍କର ମାନସିକ ପ୍ରବୃତ୍ତି ଟିକିଏ ଉଚ୍ଚ ଦରର ଥାଏ, ସେହିମାନେ କୌଣସି କାରଣବଶତଃ ଏପରି ଅବସ୍ଥାର ଅଧୀନ ହେଲେ ସୁଦ୍ଧା ଦିନେ ସୁସମୟ ଆସି ଆତ୍ମଶକ୍ତିର ପରୀକ୍ଷା ଦେବାପାଇଁ ସେମାନଙ୍କୁ ଗୋଟାଏ ଭିନ୍ନ କର୍ମକ୍ଷେତ୍ରରେ ପ୍ରବେଶ କରାଏ । ପ୍ରତ୍ୟେକ ଗୃହସ୍ଥ ନିଜର ପାରିବାରିକ ପରିସ୍ଥିତି ମଧ୍ୟରେ ଇଚ୍ଛାନୁସାରେ ଅନୁକୂଳ ଅବସ୍ଥାକୁ ଲକ୍ଷ୍ୟ ରଖି ଶକ୍ତି ପ୍ରୟୋଗ କରିପାରେ ଓ ତଦ୍ଦ୍ୱାରା ତାର ଯେଉଁ ବିକାଶ ଜନ୍ମେ, ସେଥିରେ ନିଜତ୍ୱର ଯଥେଷ୍ଟ ପରିଚୟ ମିଳେ । ନିଜତ୍ୱ ରକ୍ଷା କରି ନ ପାରି ଅଧିକାଂଶ କେବଳ ଏକ ଧାରାବାହିକ କର୍ମପନ୍ଥାର ଆଶ୍ରୟରେ ଜୀବନକୁ କଟାଇ ଦିଅନ୍ତି । ମନୁଷ୍ୟତ୍ୱର ଶ୍ରେଷ୍ଠ ନିଦର୍ଶନ ଏଥିରେ ନ ଥାଏ । ଜଗତରେ ଯେତେ ବିସ୍ମୟକର ଓ ମହତ୍ତ୍ୱ କାର୍ଯ୍ୟ ସମ୍ପାଦିତ ହୋଇଅଛି, ସେଥିରେ ଗୃହସ୍ଥର ପ୍ରଭାବ ଅଛି । ଗୃହସ୍ଥ ନିଜକୁ ଶ୍ରେଷ୍ଠ ମନେ କରିବା ଉଚିତ ନୁହେଁ । ଅର୍ଥ କିମ୍ବା କ୍ଷମତାର ପ୍ରଭାବକୁ ଭୟ କରି ସେ ଯଦି ଶକ୍ତିବିକାଶର ପଥରୋଧ କରିଦିଏ, ତାହାହେଲେ ଜଗତରେ ତା ପାଇଁ ଉପଯୁକ୍ତ ସ୍ଥାନ ରହେ ନାହିଁ । ଯେଉଁମାନେ ସର୍ବଦା ଦୀନହୀନଭାବରେ କାଳାତିପାତ କରନ୍ତି, ସେମାନଙ୍କର ପଥ ମଧ୍ୟ ସଙ୍କୁଚିତ ନୁହେଁ । ପ୍ରତ୍ୟେକ ଗୃହସ୍ଥର ଦୃଢ଼ କର୍ତ୍ତବ୍ୟଜ୍ଞାନ ରହିବା ବାଞ୍ଛନୀୟ । ସାମାନ୍ୟ କର୍ମ ନିଷ୍ଠାର ସହିତ ସମ୍ପାଦନ କରି ଜଣେ ଗୃହସ୍ଥ ଉଚ୍ଚ ସ୍ଥାନର ଅଧିକାରୀ ହୋଇପାରେ । କର୍ତ୍ତବ୍ୟଜ୍ଞାନରୁ ନିଜତ୍ୱର ପରାକାଷ୍ଠା ମିଳେ । କର୍ତ୍ତବ୍ୟପରାୟଣ ଗୃହୀ ସାଂସାରିକ ବିପଦର ସମ୍ମୁଖୀନ ହୋଇ ସୁଦ୍ଧା ନିଜତ୍ୱ ହରାଏ ନାହିଁ । ତାର ଲକ୍ଷ୍ୟ ଗୋଟାଏ ଅବଲମ୍ବନକୁ ଆଶ୍ରୟ କରିଥାଏ । ଅବଲମ୍ବନ ନ ଥିଲେ ମନୁଷ୍ୟର ଗତି ସହଜ ହୁଏ ନାହିଁ ଓ ଲକ୍ଷ୍ୟର ସ୍ଥିରତା ମଧ୍ୟ ରହେ ନାହିଁ । ନିଜର ଆକାଙ୍କ୍ଷା ଓ ରୁଚି ଅନୁଯାୟୀ ମନୁଷ୍ୟ ଅବଲମ୍ବନ ଗ୍ରହଣ କରେ । କେବଳ ଗୋଟାଏ ଗଡ଼ଡ଼ଳିକା ପ୍ରବାହରେ ଭାସିଯିବା ଲୋକଙ୍କ ସଂଖ୍ୟା ସଂସାରରେ ଅନେକ ଦେଖାଯାଏ । ସେମାନଙ୍କୁ ପ୍ରକୃତ ଗୃହସ୍ଥ ବୋଲି କୁହାଯାଇ ନ ପାରେ । କୌଣସି ପ୍ରଚଳିତ ରୀତି କିମ୍ବା ପ୍ରଥାକୁ ଅନୁସରଣ କରି କାର୍ଯ୍ୟାନୁଷ୍ଠାନ କରାଯାଇପାରେ; କିନ୍ତୁ ସେଥିରେ ବିଶେଷତ୍ୱ ପ୍ରତି ଲକ୍ଷ୍ୟ ଦେବା ଉଚିତ । ଯାବତୀୟ କର୍ମ କରି ନିଜର ଲକ୍ଷ୍ୟ ଆଡ଼କୁ ଅଗ୍ରସର ହେବାପାଇଁ ଆଦୌ ବାଧା ନାହିଁ । କର୍ମରେ ଅନୁପ୍ରାଣିତ ହୋଇ ନିଜତ୍ୱକୁ ଭୁଲିଯିବାଦ୍ୱାରା ମନୁଷ୍ୟତ୍ୱର ଅବମାନନା ଘଟେ । ସୈନିକ ଯୁଦ୍ଧକ୍ଷେତ୍ରରେ ସେନାନାୟକଙ୍କର ଆଦେଶ ଅତି ଦୃଢ଼ଭାବରେ ପାଳନ କରେ । ସେପରି କରିବା ତାର ପ୍ରଧାନ କର୍ତ୍ତବ୍ୟ; କିନ୍ତୁ କର୍ତ୍ତବ୍ୟ ପାଳନ ବେଳେ ଅବଲମ୍ବନର ଶକ୍ତି ତାକୁ ଯେପରି ପ୍ରଫୁଲ୍ଲ ରଖେ ଓ ସେ ଯେପରି ଅଦମ୍ୟ ସାହସରେ ସଂଗ୍ରାମ କରେ, ତାହା କେବଳ ସେନାପତିଙ୍କର ଆଦେଶ ବାଣୀ ଶ୍ରବଣରେ ସମ୍ଭବପର ନୁହେଁ । ପ୍ରତ୍ୟେକ ଗୃହସ୍ଥର ବୀର ପରି ଆଚରଣ କରିବା ଗୋଟାଏ ଧର୍ମ । ଭୟାଳୁ ହେଲେ ତା ପାଇଁ ଜଗତରେ ଉଚ୍ଚ ସ୍ଥାନ ରହେ ନାହିଁ । ଗୃହସ୍ଥର ପ୍ରଧାନ ଧର୍ମ ସଂସାର-କ୍ଷେତ୍ରରେ ନିଷ୍ଠାର ସହିତ କର୍ତ୍ତବ୍ୟ ପାଳନ । ଅନେକେ କର୍ତ୍ତବ୍ୟପରାଙ୍ମୁଖ ହୋଇ ସଂସାର ତ୍ୟାଗୀ ହୁଅନ୍ତି । ଏପରି ତ୍ୟାଗରେ ମନୁଷ୍ୟର କିଛି ଲାଭ ନାହିଁ । ଆସକ୍ତିର ବିଲୋପସାଧନ ପାଇଁ ସଂସାର ବାହାରକୁ ଯିବା ଅନାବଶ୍ୟକ । ଜାଗତିକ କ୍ରିୟାମାନଙ୍କର ଘାତ ଓ ପ୍ରତିଘାତ ମଧ୍ୟରେ ଜୀବନଯାପନ କରି ଗୃହସ୍ଥର ଯେଉଁ ଅଭିଜ୍ଞତା ଜନ୍ମେ, ସେଥିରେ ସେ ଭଲ ମନ୍ଦ ବିଚାର କରିବାର ଗୋଟାଏ ବିବେଚନା ଶକ୍ତି ଲାଭ କରେ । ଏହି ବିବେଚନା ଶକ୍ତି ବଳରେ ସେ ସାଧାରଣ ପ୍ରଲୋଭନମାନଙ୍କୁ ଏଡ଼ି ଦେଇପାରେ । ସଂସାରରେ ଅନେକ ସମୟରେ ପ୍ରବଳ ଲିପ୍ସା ଆସି ତାକୁ ଅଧୀର କରିଦିଏ । ଲିପ୍ସାର ପ୍ରଖରତା ସାଧାରଣ ବିଚାର ବୁଦ୍ଧିକୁ ସହଜରେ ବଶୀଭୂତ କରିଦିଏ । ଜୀବନର ଧାରାବାହିକ ଗତିରେ ଯେତେବେଳେ ଏପରି ସନ୍ଧିସ୍ଥଳ ପହଞ୍ଚେ, ସେତେବେଳେ ଅବଲମ୍ବନ ପ୍ରୟୋଜନୀୟତା ଅନୁଭୂତ ହୋଇଥାଏ । ସାଧାରଣ ଗୃହସ୍ଥର ଅବଲମ୍ବନ ବଡ଼ କ୍ଷୀଣଭାବରେ ଥାଏ । ଲକ୍ଷ୍ୟ ସାଂସାରିକ

ବେଷ୍ଟନୀ ମଧ୍ୟରେ ଆବଦ୍ଧ ରହିଲେ ଅବଲମ୍ବନର ଦୃଢ଼ତା ରହେ ନାହିଁ । ପ୍ରତି ଉତ୍ଥାନ ଓ ପତନରେ ସେ ବଡ଼ ଅସହାୟ ହୋଇପଡ଼େ । ଅବଲମ୍ବନକୁ ଜଗତର ବାହାରେ ଅନ୍ୱେଷଣ କରାଯାଏ ନାହିଁ, କିନ୍ତୁ ତାହାର ଆଶ୍ରୟରେ ସଂସାର-ପଥ ଏପରି ସରଳ ହୋଇଯାଏ ଯେ, ଗୃହସ୍ଥ ଜଗତର ବାହାରେ ସୁଦ୍ଧା ନିଜର ସତ୍ତା ଅନୁଭବ କରେ । ହୃଦୟର ସ୍ୱଚ୍ଛତା ନ ଥିଲେ ଅବଲମ୍ବନର ମୁକ୍ତତା ଆସେ ନାହିଁ । ଗୃହୀ ଯାବତୀୟ ସାଂସାରିକ ଜଞ୍ଜାଳ ମଧ୍ୟରେ ଅବଲମ୍ବନର ମଧୁରତା ଅନୁଭବ କଲେ ତା ଜୀବନର ରିକ୍ତତା ଅନେକ ପରିମାଣରେ ପ୍ରଶମିତ ହୋଇଯାଏ । ବିନା ସାଧନାରେ ସେ ଏହାର ମହତ୍ତ୍ୱ ବୁଝିପାରେ ନାହିଁ । ଅବଶ୍ୟ ଜନ୍ମାନ୍ତରୀଣ ସଂସ୍କାର ଥିଲେ ସାଧନ-ମାର୍ଗ ସ୍ୱତନ୍ତ୍ର ହୋଇପାରେ ।

ସଂସାରରେ ଚିରଦିନ ଆବଦ୍ଧ ହୋଇ ରହିବା ପାଇଁ ମନୁଷ୍ୟର ଜନ୍ମ ନୁହେଁ । କେତେଗୁଡ଼ାଏ ପ୍ରଲୋଭନରେ ମଜ୍ଜି ରହିଲେ ଜୀବନର ସାର୍ଥକତା ଜଣାପଡ଼େ ନାହିଁ । ଧନବାନ୍ ଗୃହସ୍ଥର ଧନସଂଗ୍ରହରେ ବିଶେଷତ୍ୱ ଥାଇପାରେ; କିନ୍ତୁ ସବୁବେଳେ ତା ଅନ୍ତରରେ ଗୋଟାଏ ଦୁର୍ଦ୍ଦମନୀୟ ପିପାସା ଜାଗ୍ରତ ରହିଲେ ସେ ପ୍ରକୃତ ମାର୍ଗର ଅଧିକାରୀ ହୋଇପାରେ ନାହିଁ । ଅନେକେ ଭ୍ରମବଶତଃ ଧନବାନ୍ ଗୃହୀକୁ ସମାଜରେ ସର୍ବୋଚ୍ଚ ସ୍ଥାନ ଦେଇ ତାର କାର୍ଯ୍ୟକୁଶଳତାକୁ ସର୍ବଦା ଅନୁମୋଦନ କରନ୍ତି; କିନ୍ତୁ ଏଥିରେ ଗୋଟାଏ ନୀଚତାର ସ୍ପର୍ଶ ଲାଗିଥାଏ । ଲକ୍ଷ୍ୟ ଯାହାର ଜଡ଼ତ୍ୱରେ ନିବଦ୍ଧ, ତାକୁ ଆଦର୍ଶ ସ୍ଥାନ ଦେବା ଅନୁଚିତ । ଆଜିକାଲି ଜଡ଼ବାଦୀମାନେ ଏ କଥାକୁ ସମର୍ଥନ କରିବେ ନାହିଁ । ବାହାରର ଚାକଚକ୍ୟରେ ସେମାନଙ୍କ ପ୍ରାଣରେ ପୁଲକ ଜନ୍ମେ । ଅନ୍ତରର ନିବେଦନରେ ମହତ୍ତର ପରିକଳ୍ପନା ସେମାନଙ୍କ ପକ୍ଷରେ ଅସମ୍ଭବ ବୋଧହୁଏ । ପ୍ରାଚ୍ୟ ଓ ପାଶ୍ଚାତ୍ତ୍ୟର କର୍ମ-ଭୂମିରେ ଏହାର ଦୃଷ୍ଟାନ୍ତ ମିଳେ । ଉଭୟ ଭୂଖଣ୍ଡର ଗୃହସ୍ଥମାନଙ୍କ ମଧ୍ୟରେ ଯେଉଁ ଅସାମଞ୍ଜସ୍ୟ ଦେଖାଯାଏ, ତାହାର ମୂଳରେ ବିଷୟଗତ ଜ୍ଞାନର ପାର୍ଥକ୍ୟ ରହିଅଛି । ଦେଶ ଓ କାଳ ଯେନ ଏହି ପାର୍ଥକ୍ୟକୁ ଅଯଥାର୍ଥ କୁହାଯାଇ ନ ପାରେ । ଯଦି ସମସ୍ତ ସଂସାରବାସୀର ଅବଲମ୍ବନ ଏକ ହୋଇଥାନ୍ତା, ତାହାହେଲେ କୌଣସି ବିରୁଦ୍ଧାତ୍ମକ କର୍ମମାର୍ଗର ସୂଚନା ମିଳନ୍ତା ନାହିଁ । ଜଗତରେ ଅବଲମ୍ବନ-ପ୍ରାପ୍ତି ଅନ୍ୱେଷଣ ଉପରେ ନିର୍ଭର କରେ । ଉଚ୍ଚନୀଚର ଭେଦଭାବ ସଂସାରରେ ଚିରଦିନ ରହିଛି । ଗୃହସ୍ଥର ଆଚରଣ ଅଧିକାଂଶ ସମୟରେ ଗୋଟାଏ ସୀମାରେ ଆବଦ୍ଧ ଥାଏ; କିନ୍ତୁ ଏହି ସୀମା ମଧ୍ୟରେ କୌଣସି ଅବଲମ୍ବନ ଆଶ୍ରୟରେ ଭେଦଭାବକୁ ଦୂର କଲେ ସେ ବନ୍ଧନଦଶାରୁ ମୁକ୍ତ ପାଏ ।

ସରଳତା ଆଚରଣ କରିବା ପ୍ରତ୍ୟେକ ଗୃହସ୍ଥର କର୍ତ୍ତବ୍ୟ । କର୍ମର ରୀତି ଦେଖିଲେ ହୃଦୟର ଭାବ ଜଣାଯାଏ । ଅନେକେ କହିଥାନ୍ତି, ସଂସାରୀ ପକ୍ଷରେ ସରଳ ମାର୍ଗରେ ଗତି କରିବା ସହଜ ନୁହେଁ । ଯାବତୀୟ ସାଂସାରିକ ଜଟିଳତା ଭେଦ କରି ମନୁଷ୍ୟ ଅଗ୍ରସର ହେଲେ ତାର ଗତିପଥର ସରଳତା ରହେ ନାହିଁ । ଆଜିକାଲି ସାଧାରଣ ଗୃହସ୍ଥର କାର୍ଯ୍ୟାବଳୀରୁ ଏଥିର ପ୍ରମାଣ ମିଳିପାରେ; କିନ୍ତୁ ବାସ୍ତବିକ ସଂସାରଧର୍ମ ସେପରି ନୁହେଁ । ମନର ଉନ୍ନତ ଅବସ୍ଥା ଥିଲେ କର୍ମର ଜଟିଳତା ମନୁଷ୍ୟର ଗତିରୋଧ କରିପାରେ ନାହିଁ । ତା ପାଇଁ ସ୍ୱତଃ ଗୋଟିଏ ମାର୍ଗ ଉନ୍ମୁକ୍ତ ହୋଇଯାଏ । ଉଚ୍ଚ ସ୍ତରରେ ମାନବିକତାର ଯେଉଁ ବିକାଶ ଘଟେ, ସେଥିରେ ପ୍ରତ୍ୟେକ ଗୃହସ୍ଥ ଅଧିକାରୀ ହୋଇପାରନ୍ତି; କିନ୍ତୁ କର୍ମଜାଲ ମଧ୍ୟରେ ନିଜକୁ ହଜାଇଦେଲେ ଏପରି ଅଧିକାର ଆସେ ନାହିଁ । କର୍ମର ଶ୍ରେଷ୍ଠତ୍ୱ ପ୍ରତିପାଦନରେ ଅନ୍ତରର ଯେ ସଂଯୋଗ ଅଛି, ତାହା ଉଚ୍ଚ କିମ୍ବା ନୀଚ କର୍ମଭେଦରେ ଜଣା ପଡ଼େ ନାହିଁ । ଗୋଟିଏ ପୌରାଣିକ ଦୃଷ୍ଟାନ୍ତରୁ ଏହା ସ୍ପଷ୍ଟରୂପେ ଉପଲବ୍ଧ ହୋଇପାରେ । ଦିନେ ଶିବ ଓ ପାର୍ବତୀଙ୍କ ଚତୁର୍ଦ୍ଦିଗରେ ଅନେକ ଭକ୍ତ ବେଷ୍ଟନ କରି ନୈବେଦ୍ୟ ଅର୍ପଣ କରୁଥିଲେ । ଗୋଟିଏ ଧୋବା ସେହି ବାଟରେ ମଇଳା ଲୁଗାବୋଝଟିଏ ମୁଣ୍ଡାଇ ଯାଉଥିଲା । ଔତ୍ସୁକ୍ୟବଶତଃ ସେ ଟିକିଏ ଗୋଡ଼ ଟେକି ଶିବପାର୍ବତୀଙ୍କୁ ଚାହିଁଲା ଓ ଅନ୍ତରର ନିବେଦନ ଜଣାଇ ଦେଇ ଚାଲିଗଲା । ପାର୍ବତୀ ଧୋବାର ଏପରି ଆଚରଣ ଦେଖି ଶିବଙ୍କୁ ପଚାରିଲେ । ଉତ୍ତରରେ ଶିବ ପାର୍ବତୀଙ୍କୁ କହିଲେ—ସେହି ଧୋବା ଜଣେ ପରମ ଭକ୍ତ । ଯେଉଁ ଭକ୍ତମାନେ ଆଗରୁ ସେଠାରେ ଥିଲେ, ସେମାନଙ୍କର କୌଣସି ବନ୍ଧନ ନ ଥିଲା; ସୁତରାଂ ସେମାନଙ୍କ ପକ୍ଷରେ ନିର୍ବିରୋଧରେ ପୂଜା ବିଧାନ କରିବାରେ କୌଣସି ବିଶେଷତ୍ୱ ନାହିଁ । ଗୃହୀ ଓ ସଂସାର-ବିରାଗୀ ମଧ୍ୟରେ ଏହିପରି ପାର୍ଥକ୍ୟ ଥାଏ । ଗୃହସ୍ଥ ସଂସାର-ବୋଝଟି ବହି ବହି ବଡ଼ ଅବସନ୍ନପ୍ରାଣରେ ଜୀବନଯାତ୍ରା ରୁଥାଏ; କିନ୍ତୁ ଯେତେବେଳେ ହୃଦୟର ଆକର୍ଷଣ ତାକୁ କିଞ୍ଚିତ ସମୟ ପାଇଁ ସଂସାରର ବେଷ୍ଟନୀ ବାହାରକୁ

ଟାଣିନେଇ ଗୋଟାଏ ବିରାଟ ସତ୍ତ୍ୱର ଅନୁଭୂତ ଜନ୍ମାଇଦିଏ, ସେତେବେଳେ ତାକୁ ସର୍ବଶ୍ରେଷ୍ଠ ତ୍ୟାଗୀ ବୋଲି ମନେ କରିବାକୁ ହେବ । ମୁହୂର୍ତ୍ତିକର ଅସ୍ମାନୁଭୂତ ଗୃହସ୍ଥ ପକ୍ଷରେ ଯଥେଷ୍ଟ । ସଂସାରର ମାୟାପାଶ ଥରେ ଛିନ୍ନ ହେବାକୁ ଆରମ୍ଭ କଲେ ମନୁଷ୍ୟର ଗତିପଥ ଆଉ ବେଶି ସମୟ ପାଇଁ ଅବରୁଦ୍ଧ ହୋଇ ରହେ ନାହିଁ; ଗୃହସ୍ଥ ଜୀବନର ନିଷ୍ଠା ଓ ସରଳତାରେ ତ୍ୟାଗର ମହନୀୟତା ପ୍ରତିଷ୍ଠିତ ହୋଇ ଉଠେ ।

# ଇତିହାସର ଧାରା

ଗତିଶୀଳ ଜଗତରେ ପରିବର୍ତ୍ତନକ୍ରିୟା ଅବିରାମ ଚାଲିଛି । ପରିବର୍ତ୍ତନ ବିଧାନରେ ଯୁଗ ପରେ ଯୁଗ ଆସି ଏକ ବିଶାଳ ଧାରା ଖୋଲିଦିଏ ଓ ସେହି ଧାରାରେ ଅଗଣିତ କର୍ମ-ଚକ୍ର ପ୍ରତିବିମ୍ବିତ ହୋଇ ରହେ । ଜଗତର ଘଟଣାବହୁଳତାକୁ ଆଶ୍ରୟ କରି ଐତିହାସିକ ତାର ବିବୃତି ବର୍ଣ୍ଣନା କରେ । ଉପର୍ଯ୍ୟୁକ୍ତ ପ୍ରତିବିମ୍ବ ତାକୁ ଯଥେଷ୍ଟ ଉପାଦାନ ଦିଏ । ଐତିହାସିକ ଜଗତରେ ସଂଘଟିତ ସମସ୍ତ ଘଟଣାକୁ ବର୍ଣ୍ଣନା କରେ ନାହିଁ । କେବଳ ଜାତୀୟ କର୍ମଧାରାକୁ ଅନୁସରଣ କରି ସେ ଯାହା ଲିପିବଦ୍ଧ କରେ, ସେଥିରେ ଇତିହାସର ପରିପୁଷ୍ଟି ପୂର୍ଣ୍ଣରୂପେ ସାଧିତ ହୋଇପାରେ ନାହିଁ । ଜାତୀୟ ଭାବଧାରାର ଗତି ନିର୍ଦ୍ଦେଶ ପାଇଁ ତାର ବର୍ଣ୍ଣନା ପ୍ରଶସ୍ତ ହେବା ଆବଶ୍ୟକ । ଭାବ ଓ କର୍ମ ପରସ୍ପର ସଂପୃକ୍ତ; କିନ୍ତୁ ଅତୀତରୁ ସେମାନଙ୍କର ଏକ ଯୋଗସୂତ୍ରରେ ଗ୍ରଥିତ ରହିବା ବର୍ତ୍ତମାନ ପର୍ଯ୍ୟନ୍ତ ସୁସ୍ପଷ୍ଟରୂପେ ସାଧାରଣ ଇତିହାସରେ ପ୍ରକାଶିତ ହୋଇ ନାହିଁ ।

ସମୟ ସମୟରେ ଜଣେ ଯାହା କରିଯାଏ, ଅନ୍ୟ ଜଣେ ଆସି ତାକୁ ଅନୁସରଣ କରେ । ଏହି ଅନୁସୃତିରେ ଦୁଇଟି ଦିଗ ଦେଖାଯାଏ । ଗୋଟିକରେ ଭାବର ସଂପୂର୍ତ୍ତିବିଧାନ, ଅନ୍ୟଟିରେ ନିୟମରକ୍ଷା । ଜଣେ ଦୁଇ ଦିଗରେ କ୍ୱଚିତ୍ ଅଗ୍ରସର ହୋଇପାରେ । ଆଜି ପ୍ରାଚ୍ୟ ଓ ପାଶ୍ଚାତ୍ୟର କର୍ମଭୂମିରେ ଯେ ପାର୍ଥକ୍ୟର ସୂଚନା ମିଳେ, ସେଥିରେ ଏହାର ପ୍ରଭାବ ବଡ଼ ଅଲକ୍ଷିତରେ ରହିଛି । ଗୋଟିଏ ଜାତି କିମ୍ବା ଦେଶର ଇତିହାସରେ ଘଟଣାମାନଙ୍କର ଯେଉଁ ପ୍ରତିବିମ୍ବ ଦେଖାଯାଏ, ସେଥିର ବିଶେଷତ୍ୱ ଅନ୍ୟତ୍ର ବିରଳ । ଅନ୍ୟାନ୍ୟ ଦେଶମାନଙ୍କ ତୁଳନାରେ ଭାରତବର୍ଷର ଇତିହାସର ଧାରା ସ୍ୱତନ୍ତ୍ର । ଜାତୀୟ କର୍ମ ଓ ଭାବବିକାଶର ପନ୍ଥା ନିର୍ଦ୍ଦେଶ ପାଇଁ ଆମ୍ଭମାନଙ୍କ ଦେଶରେ କୌଣସି ଧାରାବାହିକ ଇତିହାସ ନାହିଁ; କିନ୍ତୁ ପାଶ୍ଚାତ୍ୟ ଦେଶମାନଙ୍କର ଇତିହାସରେ ଅତୀତରୁ ଅସ୍ପଷ୍ଟ ହେଲେ ସୁଦ୍ଧା ଗୋଟାଏ ରେଖାପାତ ବର୍ତ୍ତମାନ ପର୍ଯ୍ୟନ୍ତ ରହିଛି । ଇତିହାସର ଧାରା କେବଳ ଅନୁଷ୍ଠିତ କାର୍ଯ୍ୟାବଳୀକୁ ଅନୁସରଣ କଲେ ତାହାର ଗତି ସରଳ ହୋଇଯାଏ; କିନ୍ତୁ ଭାବର ଅନୁସୃତିରେ ଏପରି ସମ୍ଭବ ନୁହେଁ ବୋଲି ଭାରତବର୍ଷର ଇତିହାସ ବଡ଼ ଅଭାବପୂର୍ଣ୍ଣ ବୋଧହୁଏ । କର୍ମର ନିୟନ୍ତ୍ରଣ କେତେଗୁଡ଼ିଏ ନିୟମରେ ଆବଦ୍ଧ । ଯନ୍ତ୍ରବତ୍ ଚାଳିତ ହୋଇ ନିର୍ଦ୍ଦିଷ୍ଟ କର୍ମପନ୍ଥା ଅନୁସରଣ କଲେ ଜାତୀୟ କର୍ମଜୀବନର ବିକାଶପଥ ସହଜ ବୋଧ ହୋଇପାରେ; କିନ୍ତୁ ଭାବଧାରାର ପ୍ରଚ୍ଛନ୍ନ ଗତିରେ ଜାତିର ବିକାଶମାର୍ଗ ସନ୍ଧାନ କରିବା ସହଜ ନୁହେଁ । ଅତୀତର ଗୌରବ କାହାଣୀ ଗୋଟିଏ ପତିତ ଜାତିର ଉଦ୍‌ବୋଧନ ଆଣିପାରେ; କିନ୍ତୁ ତାହା ବେଶି ସମୟ ପାଇଁ ରହେ ନାହିଁ । ଜଣକର କର୍ମପ୍ରେରଣା ଶତ ଶତ ବର୍ଷର ଜାତୀୟ କର୍ମକୁଣ୍ଠତାକୁ ଦୂର କରି ଦେଇପାରେ; କିନ୍ତୁ ଏହା ଗୋଟାଏ ପଟପରିବର୍ତ୍ତନରେ ଦୃଶ୍ୟକାବ୍ୟର ଏକାଂଶ ଉପଲବ୍ଧ ହେଲି ପରି ଅନେକ ସମୟରେ ଅସଂପୂର୍ଣ୍ଣ ରହିଯାଏ । ଜଣେ କର୍ମୀର କର୍ମଧାରା ଅନ୍ୟମାନଙ୍କୁ ଯେ ପ୍ରେରଣା ଦିଏ, ସେଥିରେ ଜାତୀୟ ମୌଳିକତା ବେଶି ଦିନ ରକ୍ଷିତ ହେବା ବଡ଼ କଠିନ । ତା ହୋଇଥିଲେ ଜଣେ ନେପୋଲିଅନ୍ କିମ୍ବା ଜଣେ ଆଲେକ୍‌ଜେଣ୍ଡାର ତାଙ୍କ କାର୍ଯ୍ୟଦ୍ୱାରା ଜାତିର ମୁକ୍ତଦ୍ୱାର ଚିରଦିନ ପାଇଁ ଉନ୍ମୁକ୍ତ ରଖି ପାରିଥାନ୍ତେ । ସୈନ୍ୟାଧ୍ୟକ୍ଷର ଆଦେଶବାଣୀରେ କି ମର୍ମ ଥାଏ ? ଏହା ଗୋଟାଏ ତୀବ୍ର ନିୟମ ପାଳନ ବ୍ୟତୀତ କିଛି ନୁହେଁ । ମନୁଷ୍ୟକୁ ଯନ୍ତ୍ରବତ୍ କରି ତାର କର୍ମପନ୍ଥାକୁ ନିୟମର ଶୃଙ୍ଖଳରେ ବାନ୍ଧି ରଖିବା ଜାତୀୟ ବିକାଶର ପ୍ରଥମ ପରିଚ୍ଛେଦ କହିଲେ ଚଳେ । ଯେଉଁଠାରେ କର୍ମ ଭାବଠାରୁ ବିଚ୍ଛିନ୍ନ, ସେଠାରେ ଏପରି ଯନ୍ତ୍ରସୃଷ୍ଟି ସୁନ୍ଦର । ମନୁଷ୍ୟ ଜୀବନର ବିଶେଷତ୍ୱ ଜଣେ ଅନ୍ୟ ଜଣକର କର୍ମକୁ ଅନୁସରଣ କରିବାରେ କେବଳ ଆବଦ୍ଧ ନହେଁ । କୃତ୍ରିମ ପୟଃପ୍ରଣାଳୀ ପରି ମନୁଷ୍ୟ ଜୀବନର ଗତି ନିର୍ଦ୍ଦିଷ୍ଟ ନିୟମର ଧାରାକୁ ସବୁବେଳେ ଅପେକ୍ଷା ରଖେ ନାହିଁ ।

ଭାବଗତ ଇତିହାସରେ ଭାବ ଓ କର୍ମର ସମନ୍ୱୟ ପରିସ୍ଫୁଟ ହୋଇଉଠେ । ଯେ ଜାତିର ଇତିହାସରେ କେବଳ ଯୁଗ ପରେ ଯୁଗର ଅବତାରଣା ଓ କେତେଗୁଡ଼ିଏ ବିଭିନ୍ନ ବିଶିଷ୍ଟ କାର୍ଯ୍ୟାବଳୀର ଚିତ୍ରଣ ଦେଖାଯାଏ ସେଥିରେ ଜାତୀୟ ଭାବଧାରାର ଉନ୍ମେଷ ସହଜରେ ଲକ୍ଷିତ ହୁଏ ନାହିଁ । ରାଜ୍ୟଶାସକ, ଧର୍ମ ଓ ସମାଜ ସଂସ୍କାରକମାନଙ୍କର କାର୍ଯ୍ୟକୁ ଅବଲମ୍ବନ କରି ଐତିହାସିକ ବର୍ଣ୍ଣନା ସାଧାରଣତଃ ପ୍ରକାଶିତ ହୋଇଥାଏ; କିନ୍ତୁ ଭାଗବତ ଇତିହାସରେ ବ୍ୟକ୍ତିତ୍ୱର ଏକ ସୁନ୍ଦର ଅଭିବ୍ୟକ୍ତି ଦେଖାଯାଏ । ବ୍ୟକ୍ତିବିଶେଷ କାଳକ୍ରମେ ଭାବର ରୂପକ ହୋଇଯାଆନ୍ତି । ଆର୍ଯ୍ୟ ଇତିହାସରେ ଜନକ, ବିଶ୍ୱାମିତ୍ର ପ୍ରଭୃତି ମନୀଷୀମାନେ ଭାବର ଗୋଟିଏ ଗୋଟିଏ ବିଶିଷ୍ଟ ରୂପକ ହୋଇଅଛନ୍ତି । ସେମାନେ ଯେଉଁ କାର୍ଯ୍ୟସବୁ ସାଧନ କରିଯାଇଅଛନ୍ତି, ସେଥିପ୍ରତି ବର୍ତ୍ତମାନ ଇତିହାସପାଠକର ଦୃଷ୍ଟି ନ ପଡ଼ିଲେ ସୁଦ୍ଧା ସେମାନଙ୍କର ସୃଷ୍ଟ ଆଦର୍ଶରେ ଜାତୀୟ ଜୀବନ ଚିରଦିନ ଉଜ୍ଜୀବିତ ହୋଇ ରହିବ । ଆଧୁନିକ ବିଶିଷ୍ଟ ଐତିହାସିକମାନେ ଭାଗବତ ଇତିହାସକୁ ଆଦର କରନ୍ତି ନାହିଁ । ରାମାୟଣ ଓ ମହାଭାରତ ପରି ଅମୂଲ୍ୟ ଗ୍ରନ୍ଥମାନଙ୍କୁ ସେମାନେ ଭିତ୍ତିହୀନ ଐତିହାସିକବୃତ୍ତାନ୍ତ ବୋଲି କହିଥାନ୍ତି । ପ୍ରତ୍ନତତ୍ତ୍ୱବିତ୍ ଭୂମି ଖନନ କରି ଲୁପ୍ତ ସହର କିମ୍ବା ବିଦ୍ୟାମନ୍ଦିର ଆବିଷ୍କାର କରନ୍ତି । ତାଙ୍କର ଆବିଷ୍କ୍ରିୟାରେ ଅତୀତ ଜାତୀୟ ସଭ୍ୟତାର ନିଦର୍ଶନ ମିଳେ । ସେ ଯେଉଁ ମହତ୍ତ୍ କାର୍ଯ୍ୟ କରନ୍ତି, ସେଥିରେ ଐତିହାସିକର ଲିପିବଦ୍ଧ କରିବା ପାଇଁ ଯଥେଷ୍ଟ ସାମଗ୍ରୀ ଥାଏ । ସମୟ ସମୟରେ ତାଙ୍କର ଆବିଷ୍କୃତ ଉପାଦାନଗୁଡ଼ିକ ସାଧାରଣ ଇତିହାସର ଧାରାକୁ ବଦଳାଇ ଦିଏ; କିନ୍ତୁ କି ପ୍ରେରଣାର ବଶବର୍ତ୍ତୀ ହୋଇ ଦିନେ ଅତୀତରେ ସେହି ଭୂଗର୍ଭପ୍ରୋଥିତ ସହର ଓ ବିଦ୍ୟାମନ୍ଦିରର ଭିତ୍ତି ସ୍ଥାପିତ ହୋଇଥିଲା, ତାକୁ କେହି ଐତିହାସିକ ଭାବନ୍ତି ନାହିଁ । ଐତିହାସିକ ସାଧାରଣତଃ ଧର୍ମ କିମ୍ବା ସମାଜ ସଂସ୍କାରକୁ ଲକ୍ଷ୍ୟ ରଖି ପରିବର୍ତ୍ତନର ଧାରାକୁ ବର୍ଣ୍ଣନା କରେ; କିନ୍ତୁ ଭାବଜଗତର ବିପ୍ଳବରେ ମନୁଷ୍ୟର କର୍ମ-ମାର୍ଗ ସ୍ୱତଃ ଯେ କାହିଁକି ବଦଳିଯାଏ, ସେଥିରେ କୌଣସି କାରଣ ସେ ନିର୍ଦ୍ଦେଶ କରେ ନାହିଁ । ଅତୀତ ଘଟଣାମାନଙ୍କର ବିବୃତିରେ ମନୁଷ୍ୟ କେବଳ ସମ୍ପାଦିତ କର୍ମମାନଙ୍କର ଗୋଟାଏ ଧାରଣା କରିପାରେ । ତା ଅନ୍ତରର ପ୍ରେରଣା ଏଥିରେ ଜାଗ୍ରତ ହେବା ସହଜ ନୁହେଁ; ବରଂ କୌଣସି ମନ୍ଦିରର ଭଗ୍ନାବଶେଷ ଦେଖିଲେ ଅତୀତ ଗୌରବର ଅହେତୁକୀ ସ୍ମୃତି ମନରେ ଗୋଟାଏ ସ୍ପନ୍ଦନ ଆଣି ତାର ଦୃଷ୍ଟିରେଖାକୁ ବହୁ ଦୂରକୁ ଟାଣିନେଇପାରେ । ଏପରି ହେଲେ ମନୁଷ୍ୟର କାଳଜ୍ଞାନ ସେହି ଦର୍ଶନରେ ବିଲୀନ ହୋଇ ଏକ ଅପୂର୍ବ ଭାବ ପ୍ରକାଶ କରେ । ପାଷାଣ ମୂର୍ତ୍ତି ତା ଚକ୍ଷୁରେ ଜୀବନ୍ତ ହୋଇ ଉଠେ । ଅତୀତର କାହାଣୀ ସେ ନିଶ୍ଚଳ ବିଗ୍ରହ ମୁଖରୁ ଶୁଣିବାକୁ ପାଏ । ଭଗ୍ନମନ୍ଦିରର ଦ୍ୱାରଦେଶରେ ଦଣ୍ଡାୟମାନ ହୋଇ ସେ ପୂର୍ବପୁରୁଷର ଲୁପ୍ତ ପ୍ରେରଣା ଅନୁଭବ କରେ । ତା ଧମନୀରେ ଗୋଟାଏ ଚଞ୍ଚଳତାର ଢେଉ ଖେଳିଯାଏ । କାଳର ଦୂରତା ଘୁଞ୍ଚିଯାଏ । ସେ ମନେ କରେ ଯେପରି ଦିନେ ତାରି ହସ୍ତରେ ସେହି ବିଶାଳ ଭଗ୍ନ ମନ୍ଦିର ନିର୍ମିତ ହୋଇଥିଲା । ଜନ୍ମଭୂମିର ମହୀୟସୀ କୀର୍ତ୍ତି ଦର୍ଶନରେ ମନୁଷ୍ୟ ପ୍ରାଣରେ ଯେଉଁ ପୁଲକ ଆସେ, ତାହା ଶତ ଇତିହାସପାଠରେ ସମ୍ଭବ ନୁହେଁ ।

ଅଧିକାଂଶ ଇତିହାସରେ ଅତିରଞ୍ଜନ ଦୋଷ ଥାଏ । ସାମାଜିକ ଓ ରାଜନୈତିକ ପରିସ୍ଥିତିକୁ ଯଥାର୍ଥ ରୂପେ ବର୍ଣ୍ଣନା କରି ନ ପାରିବାର ମଧ୍ୟ ଅନେକ କାରଣ ଥାଏ । ସମାଜବିପ୍ଳବ କିମ୍ବା ରାଜନୈତିକ ଆନ୍ଦୋଳନ ସମୟରେ ସମସାମୟିକ ଐତିହାସିକମାନଙ୍କର ବିବୃତି ବିଶ୍ୱାସଯୋଗ୍ୟ ହୋଇପାରେ ନାହିଁ । ସେମାନେ ଯେଉଁ ମତର ପୋଷକତା କରୁଥାନ୍ତି, ତାକୁ ଅବଲମ୍ବନ କରି ଘଟଣାମାନଙ୍କର ଅତିରିକ୍ତ ବର୍ଣ୍ଣନା କରନ୍ତି । ଅନେକ ସମୟରେ ପ୍ରବଳର ପ୍ରଭାବକୁ ଏଡ଼ି ନ ପାରି ସେମାନେ ଯାହା ଲିପିବଦ୍ଧ କରିଯାଆନ୍ତି, ତାହା ସ୍ତାବକର ସ୍ତୁତିଗାନ ପରି ହୁଏ । ପୂର୍ବକାଳରେ ରାଜପରିଷଦର ପଣ୍ଡିତମାନଙ୍କଦ୍ୱାରା ଇତିହାସ ଲେଖାଯାଉଥିଲା । ରାଜ୍ୟ କିମ୍ବା ରାଜାଙ୍କ ସମ୍ବନ୍ଧରେ ନିରପେକ୍ଷ ବିବରଣ ଏପରି ଇତିହାସରେ ପ୍ରକାଶିତ ହେବା ସମ୍ଭବ ନୁହେଁ । ଗୋଟିଏ ରାଜତ୍ୱର ଅବସାନ ପରେ ଅନ୍ୟ ରାଜତ୍ୱର ପ୍ରତିଷ୍ଠା ମଧ୍ୟ ଠିକରୂପେ ବର୍ଣ୍ଣିତ ହୁଏ ନାହିଁ । ବିଜୟୀ ବିଜିତ ଶତ୍ରୁର କୀର୍ତ୍ତିଗାଥା ରଖିବାକୁ ଚାହେଁ ନାହିଁ । ମନୁଷ୍ୟର ଯଶୋଲିପ୍ସା ଅନୁକୂଳ କ୍ଷେତ୍ର ପାଇଲେ ଅସତ୍ୟର ମଧ୍ୟ ଆଶ୍ରୟ ନିଏ । ଧର୍ମ ଓ ସମାଜବିପ୍ଳବରେ ଯେତେବେଳେ ଗୋଟିଏ ମତର ସଂସ୍ଥାପନ କରାଯାଇ ଅନ୍ୟ ପ୍ରଚଳିତ ମତର ଉଚ୍ଛେଦ ସାଧନ କରାଯାଏ, ସେତେବେଳେ ବହୁ ଅତିରଞ୍ଜିତ ବର୍ଣ୍ଣନା ପାଇଁ ସୁବିଧା ମିଳେ । କାଳକ୍ରମେ ସମାଜ, ରାଜନୀତି ଓ ଧର୍ମର ଧାରା ବଦଳିଯାଏ ଓ ସେହି ଅବସରରେ ଇତିହାସର ଧାରା ମଧ୍ୟ ଅନ୍ୟ ଆକାର ଧାରଣ କରେ । ପରିବର୍ତ୍ତନର ସନ୍ଧିସ୍ଥଳରେ ଗୋଟାଏ ସ୍ୱେଚ୍ଛାଚାରିତା

ସାଧାରଣତଃ ଆସିଥାଏ । ଏହି ସ୍ୱେଚ୍ଛାଚାରିତା ଆଶ୍ରୟରେ ଅନେକ ପ୍ରକ୍ଷିପ୍ତ ବିବରଣୀ ଇତିହାସର ପୃଷ୍ଠା ବୃଦ୍ଧି କରେ । ରାମାୟଣ ଓ ମହାଭାରତ ପରି ଅସାଧାରଣ ଗ୍ରନ୍ଥମାନଙ୍କରେ ଏଥିର ସୂଚନା ମିଳେ ।

ଇତିହାସର ବିକ୍ଷିପ୍ତତାରେ ମଧ୍ୟ କୌଣସି ଗୋଟାଏ ଶକ୍ତିର ବିକାଶ କିମ୍ବା ଅପଚୟର ନିଦର୍ଶନ ମିଳେ । କିମ୍ବଦନ୍ତୀ ଓ ପୌରାଣିକ ଉପାଖ୍ୟାନଗୁଡ଼ିକ ସମୟ ସମୟରେ ଐତିହାସିକ ପ୍ରମାଣସ୍ୱରୂପ ଗୃହୀତ ହୋଇଥାଏ । ଇତିହାସର ଧାରା ଯେତେବେଳେ ଗୋଟାଏ ସମାପ୍ତିରେ ଆସି ପହଞ୍ଚେ କିମ୍ବା ତାର ଉତ୍ପତ୍ତି ପାଇଁ କୌଣସି ଉପାୟ ମିଳେ ନାହିଁ, ସେତେବେଳେ ଘଟଣାମାନଙ୍କର ଯୋଜନା ପାଇଁ ଉପଯୁକ୍ତ ପ୍ରମାଣ ଆବଶ୍ୟକ ହୁଏ । ଆଦିମ ଯୁଗରୁ ଆଜି ପର୍ଯ୍ୟନ୍ତ କୌଣସି ଜାତିର ଧାରାବାହିକ ଇତିହାସ ନାହିଁ କହିଲେ ଚଳେ । ସବୁ ଜାତି ପ୍ରାୟ ଆଦିମ ଯୁଗର ବର୍ଣ୍ଣନାକୁ କେବଳ କେତେଗୁଡ଼ିଏ ଆନୁମାନିକ ପ୍ରମାଣ ଉପରେ ନ୍ୟସ୍ତ କରିଅଛନ୍ତି । ଆଭିଜାତ୍ୟର ପରିଚୟ ଦେବାପାଇଁ ଆଧୁନିକ ସଭ୍ୟ ଜାତିମାନେ ଆଦିମ କାଳର କୌଣସି ଉପାଖ୍ୟାନ କିମ୍ବା ପୁରାଣବର୍ଣ୍ଣିତ ଶକ୍ତିଶାଳୀ ଜାତି ସହିତ ସମ୍ବନ୍ଧ ସ୍ଥାପନ କରିବାକୁ ପଶ୍ଚାତ୍ପଦ ନୁହନ୍ତି । ଏପରି ସମ୍ପର୍କସ୍ଥାପନ କେତେଦୂର ବିଶ୍ୱାସଯୋଗ୍ୟ, ତାହା ମଧ୍ୟ କେହି ବୁଝନ୍ତି ନାହିଁ । ସଭ୍ୟତାଭିମାନୀମାନେ ଇତିହାସର ନଗ୍ନ ସତ୍ୟ ବ୍ୟତୀତ ପ୍ରକ୍ଷିପ୍ତ ବର୍ଣ୍ଣନାଗୁଡ଼ିକୁ ଆଦୌ ଗ୍ରହଣ କରନ୍ତି ନାହିଁ; କିନ୍ତୁ ବଂଶ-ଗୌରବ ସ୍ଥାପନବେଳେ ଏଥିର ବ୍ୟତିକ୍ରମ ଦେଖାଯାଇଥାଏ । ଆଜି ଯେଉଁମାନେ ବିଭବଶାଳୀ ବୋଲି ଜଗତରେ ଅହଙ୍କାର କରୁଛନ୍ତି, ସେମାନେ ଅକୁଣ୍ଠିତ ଭାବରେ ଆର୍ଯ୍ୟବଂଶଧର ବୋଲି କହିବାକୁ ତତ୍ପର ନୁହନ୍ତି କି ? ଭାରତବର୍ଷକୁ ପ୍ରଥମେ ଆର୍ଯ୍ୟମାନେ ଆସିଲାବେଳେ ସେମାନଙ୍କର ବର୍ଣ୍ଣାଶ୍ରମ ଧର୍ମ ନ ଥିଲା; କିନ୍ତୁ କାଳକ୍ରମେ ଜାତିବିଭାଗର ସୃଷ୍ଟି ହେଲା ଓ ଉଚ୍ଚ ନୀଚର ଗୋଟାଏ ପାର୍ଥକ୍ୟଜ୍ଞାନ ସମାଜକୁ ପ୍ରଭାବିତ କଲା । ସମୟସ୍ରୋତରେ ଏହି ଜାତିବିଭାଗର କେତେ ପରିବର୍ତ୍ତନ ଓ ପରିବର୍ଦ୍ଧନ ହୋଇଅଛି । ବୌଦ୍ଧଧର୍ମର ଉତ୍ଥାନ ବେଳେ ପୁଣି ଏହା ସମୂଳେ ବିଲୁପ୍ତ ହୋଇଯାଇଥିଲା; କିନ୍ତୁ ପରବର୍ତ୍ତୀ କାଳରେ ଏହାର ଅଭ୍ୟୁଦୟ ଘଟିଅଛି । ଏହା ଛଡ଼ା ଭିନ୍ନ ଭିନ୍ନ ଜାତି ମଧ୍ୟରେ ସମ୍ମିଶ୍ରଣ ଘଟି ସାଧାରଣ ଜାତିର ଉତ୍ପତ୍ତି ଘଟିଅଛି । ପ୍ରତ୍ୟେକ ପ୍ରାଚୀନ ଜାତିର ଇତିହାସରେ ଏହାର ପ୍ରମାଣ ଅଛି । ଜାତିଗତ ପ୍ରାଧାନ୍ୟ କିମ୍ବା ଅନ୍ତରସ୍ଥ ମନୁଷ୍ୟର ଭେଦବୁଦ୍ଧିର ପରିଚାୟକ । ପ୍ରତ୍ୟେକ ଜାତି ମଧ୍ୟରେ ଏହାର ପ୍ରଭାବ ପ୍ରକାର ଭେଦରେ ଦୃଷ୍ଟ ହୁଏ । ଯେଉଁମାନେ ହିନ୍ଦୁର ବର୍ଣ୍ଣାଶ୍ରମ ଧର୍ମକୁ ଅନାଦର କରନ୍ତି, ସେମାନେ ମଧ୍ୟ ଜାତିଗତ ପାର୍ଥକ୍ୟକୁ ଭୁଲନ୍ତି ନାହିଁ । ଜାତିବିଦ୍ୱେଷ ମୂଳରେ ଏହାର ପ୍ରଭାବ ପ୍ରଚ୍ଛନ୍ନଭାବରେ ଥାଏ । ଏହି ବିଦ୍ୱେଷକୁ ବିଶେଷ ଭାବରେ ଅବଲମ୍ବନ କରି ଇତିହାସର ବିକ୍ଷିପ୍ତତା ଅନେକ ସ୍ଥଳରେ ବିସ୍ତାର ଲାଭ କରେ ଓ ସତ୍ୟାସତ୍ୟର ନିରୂପଣ ପାଇଁ ଏଥିରେ କୌଣସି ମାର୍ଗ ରହେ ନାହିଁ । ପୁରାଣକାରମାନେ ଯାହା ଲେଖିଗଲେ, ତାକୁ ସରଳବିଶ୍ୱାସୀ ରକ୍ଷଣଶୀଳମାନେ ଅକାତରରେ ଗ୍ରହଣ କରିନେଲେ; ଐତିହାସିକ ସତ୍ୟ ପ୍ରତି ସେମାନେ ଦୃଷ୍ଟି ଦେଲେ ନାହିଁ । ଗୋଟାଏ ଧର୍ମଭାବର ପ୍ରେରଣାରେ ପୁରାଣକୁ ଅତି ଉଚ୍ଚସ୍ଥାନ ଦେଇ ଦୈନନ୍ଦିନ କର୍ମମାର୍ଗର ବହୁତ ଦୂରରେ ରଖିଲେ । ଭାଗବତ ଗାଦିର ପୂଜାବିଧାନ ଦେଖିଲେ ରକ୍ଷଣଶୀଳ ସମାଜର ପୁରାଣମାନଙ୍କ ପ୍ରତି ଅଚଳା ଭକ୍ତିର ଏକ ସୁନ୍ଦର ଦୃଷ୍ଟାନ୍ତ ମିଳେ । ଅନ୍ୟ ପକ୍ଷରେ ଆଧୁନିକ ଶିକ୍ଷାପ୍ରାପ୍ତ ଅନୁସନ୍ଧିତ୍ସୁ ଐତିହାସିକ ଗବେଷଣା ଦେଖିଲେ ଭିନ୍ନ ଗତି ଜଣାଯାଏ । ସେ ପୁରାଣମାନଙ୍କୁ ଐତିହାସିକ ଦୃଷ୍ଟିରେ ବିଚାର କରେ । ଯେଉଁ ପ୍ରମାଣ ବଳରେ ଇତିହାସର ଧାରା ପୁଷ୍ଟ ହୁଏ, ପୁରାଣ ତାକୁ ସେପରି ପ୍ରମାଣ ଦେଇପାରେ ନାହିଁ ବୋଲି ତା ଦୃଷ୍ଟିରେ ପୁରାଣର ବିଶେଷତ୍ୱ ଅତିମାତ୍ରାରେ ଲକ୍ଷିତ ହୁଏ ନାହିଁ । ପୌରାଣିକ ଓ ଐତିହାସିକର ଦୃଷ୍ଟି ବୈଷମ୍ୟରେ ଇତିହାସର ଧାରା ସଙ୍କୁଚିତ ହୋଇଯାଏ । ପୌରାଣିକ ଲେଖା ବିକ୍ଷିପ୍ତ ଜଣାଯାଇପାରେ; କିନ୍ତୁ ସେଥିରେ ଗୋଟାଏ ଶକ୍ତିର ବିକାଶ ସ୍ପଷ୍ଟ ଜଣାପଡ଼େ । ଦେବାସୁର ଯୁଦ୍ଧବିଗ୍ରହ ଇତ୍ୟାଦି ବର୍ଣ୍ଣନାରେ ପୁରାଣଗୁଡ଼ିକ ପୂର୍ଣ୍ଣ । ଦେବତାମାନଙ୍କର ବିଜୟ ଘୋଷଣା ପ୍ରାୟ ପ୍ରତ୍ୟେକ ପୁରାଣରୁ ମିଳେ । ସେମାନଙ୍କର ମହତ୍ତ୍ୱ ବୈଦିକ ଯୁଗରୁ ଆରମ୍ଭ କରି ଆଜି ପର୍ଯ୍ୟନ୍ତ ଅଛି; କିନ୍ତୁ ଇତିହାସ ସେମାନଙ୍କୁ ସେପରି ଦୃଷ୍ଟିରେ ଦେଖେ ନାହିଁ । ସାଧାରଣ କାର୍ଯ୍ୟପ୍ରଣାଳୀରେ ଯାହା ଘଟିଯାଇଅଛି, ତାକୁ ସମ୍ବଳ କରି ଇତିହାସର ଧାରା ଚାଲିଛି । ପାର୍ଥିବ ବେଷ୍ଟନୀର ବାହାରକୁ ସାଧାରଣତଃ ଐତିହାସିକର ଚିନ୍ତାଧାରା ଯାଏ ନାହିଁ । ଶକ୍ତିର ବିକାଶ କିମ୍ବା ଅପଚୟ ସେ ଦେଖେ ନାହିଁ । କାହାର ଜୟ କିମ୍ବା ପରାଜୟରୁ ସେ ନୀତିଶିକ୍ଷା ଗ୍ରହଣ କରେ ନାହିଁ ।

ଇତିହାସର ଧାରାରୁ ଜାତିଗତ ବିଶେଷତ୍ୱ ଲକ୍ଷିତ ହୁଏ । ସବୁ ଜାତିର ମୌଳିକତା ସମାନ ନୁହେଁ । ପ୍ରାଚୀନତା ଏହାର ଏକ ପରୀକ୍ଷା । ଦୁର୍ବଳ ଜାତି ବେଶି ଦିନ ତିଷ୍ଠି ପାରେ ନାହିଁ । ଯୁଗ-ପରିବର୍ତ୍ତନର ତୋଡ଼ରେ ଅନେକ ଦୁର୍ବଳ ଜାତି

ବିଲୀନ ହୋଇଯାନ୍ତି । ଐତିହାସିକ ଏଥିର ସନ୍ଧାନ ସୁଦ୍ଧା ପାଇବାକୁ ଅକ୍ଷମ ହୁଏ । କର୍ମମାର୍ଗର ଗତି ଏକ ହୋଇଥିଲେ ଇତିହାସର ବର୍ଣ୍ଣନାରେ ଭିନ୍ନତା ଦେଖାଯାଏ ନାହିଁ । କର୍ମ ଅଧିକାଂଶ ସମୟରେ ଅନ୍ତରର ଭାବକୁ ଅନୁସରଣ କରେ; କିନ୍ତୁ ଏହି ଭାବଗତ ବୈଷମ୍ୟକୁ ସାଧାରଣତଃ କେହି ଲକ୍ଷ୍ୟ କରନ୍ତି ନାହିଁ ବୋଲି କର୍ମର ଜଟିଳତା ପ୍ରତିପନ୍ନ ହୁଏ । ସମସ୍ତଙ୍କର ଭାବଧାରା ମଧ୍ୟ ସମାନ ନୁହେଁ । ଗୋଟିଏ ସାମାନ୍ୟ ପରିବାରରେ ଯଦି ଭାବର ଐକ୍ୟ ଦେଖା ନ ଯାଏ, ତାହାହେଲେ ବିଭିନ୍ନ ଜାତିକୁ ସମଭାବାପନ୍ନ ଦେଖିବା ଗୋଟାଏ ବ୍ୟର୍ଥତା ନୁହେଁ କି ? ଭାବର ଅସାମଞ୍ଜସ୍ୟ ଥାଇପାରେ; କିନ୍ତୁ ସ୍ତର ବିଶେଷରେ ଏହାର ମୌଳିକତା ସ୍ୱୀକାର କରିବାକୁ ଆମ୍ଭେମାନେ ବାଧ୍ୟ । ଜଗତର ମନୀଷୀମାନଙ୍କର ଚିନ୍ତାଧାରାରେ ଅନେକ୍ୟ କ୍ୱଚିତ୍ ଦୃଷ୍ଟ ହୁଏ । କାରଣ ସେମାନଙ୍କ ଭାବନାର ମୌଳିକତା ଏକ ସ୍ତରରୁ ଉତ୍ପତ୍ତି ଲାଭ କରିଥାଏ । ତା ନ ହୋଇଥିଲେ ସେମାନଙ୍କର ପ୍ରଚାରିତ ବାଣୀର ମର୍ମ ସାଧାରଣ ମନୁଷ୍ୟ ବୁଦ୍ଧିର ଅଗମ୍ୟ ହୋଇଥାନ୍ତା । ଅନେକ ସମୟରେ ସାଧାରଣ ବୁଦ୍ଧିରେ ଯାହା ବିରୁଦ୍ଧଭାବାପନ୍ନ ବୋଲି ଜଣାଯାଏ, ଅସାଧାରଣ ଲୋକ ତାକୁ ସମଭାବାପନ୍ନ ବୋଲି ପ୍ରତିପନ୍ନ କରନ୍ତି । ଭାବନାର ସ୍ତର ଏକ ନୁହେଁ । ଯେଉଁ ଜାତି ଭାବନାର ଯେ ସ୍ତରରେ ଅଛି, ତାକୁ ସେଠାରୁ ବିଚ୍ଛିନ୍ନ କରିଦେଲେ କିମ୍ବା ସମ୍ପୂର୍ଣ୍ଣ ଭିନ୍ନଭାବରେ ଅନୁପ୍ରାଣିତ କଲେ, ସେ ଜାତିର ମଙ୍ଗଳ ହୁଏ ନାହିଁ । ଜାତିର ମୌଳିକତା ଏଥିରେ ନଷ୍ଟ ହୋଇଯାଏ । ସାମାନ୍ୟ ବ୍ୟକ୍ତିଗତ ଭାବନାର ବୈଷମ୍ୟ ଦେଖି ତାର ମୌଳିକ ଧାରାକୁ ଭୁଲିଯିବା ଉଚିତ ନୁହେଁ । ଆଧୁନିକ ଐତିହାସିକମାନେ ଭାରତୀୟର ଏହି ମୌଳିକ ଭାବଧାରାକୁ ଉପେକ୍ଷା କରି ତାର ଇତିହାସକୁ ଅସମ୍ପୂର୍ଣ୍ଣ କିମ୍ବା ଅଭାବପୂର୍ଣ୍ଣ ବୋଲି କହିଥାନ୍ତି । ଏ କଥାରେ ସତ୍ୟ ଆଦୌ ନାହିଁ । ଭାରତବର୍ଷର ଇତିହାସ କେତେଗୁଡ଼ିଏ ସାଧାରଣ ଘଟଣାରେ ଆବଦ୍ଧ ନୁହେଁ । ତାର ପ୍ରାଚୀନତା ପୃଥିବୀର ସବୁ ଦେଶଠାରୁ ବେଶି । ତାର ଅତୀତକୁ ଇତିହାସ ବର୍ଣ୍ଣନା କରିପାରିବ ନାହିଁ । ଇତିହାସର ଗତି ଯେଉଁଠାରେ ପ୍ରତିହତ ହୋଇପଡ଼ୁଛି, ଅତୀତର ଗୋଟାଏ ଯୁଗରେ ପହଞ୍ଚି ଆଉ ଦୂରକୁ ଯାଇ ପାରି ନାହିଁ, ସେଠାରେ ଆହୁରି ଦୂର ଅତୀତକୁ ଯାଇ ସେ ତାର ସଭ୍ୟତାର ଚରମ ପରାକାଷ୍ଠା ଦେଖାଇ ଦେଇଛି । ଯେଉଁ ଦେଶ କାଳର କୌଣସି କଳନା ରଖେ ନାହିଁ, ସେଠାରେ ଇତିହାସର ମାପକାଠି ଗୋଟାଏ ବୃଥା ଆଡ଼ମ୍ବର । ଯେ ଦେଶର ଅଧିବାସୀ ଥରେ ଅତୀତରେ ନିଷ୍କାମ କର୍ମ ଆଚରଣ କରି ଜନ୍ମଭୂମିକୁ ଦେବବାଞ୍ଛିତଭୂମିରେ ପରିଣତ କରିଥିଲେ, ସେଠାରେ ପୁଣି ଐତିହାସିକର ଧାରାବାହିକ ସାଧାରଣ ଆଚରିତ କର୍ମମାନଙ୍କର ବର୍ଣ୍ଣନାରେ ବେଶି ମୂଲ୍ୟ ଅଛି ବୋଲି ମନେ ହୁଏ ନାହିଁ । ଯଦି କେହି କହେ, ଦେଶର ଅତୀତ ଇତିହାସ ପାଠ କଲେ ଜାତିର ଅତୀତ ଗୌରବ ଜଣାପଡ଼େ ଓ ମନୁଷ୍ୟ ଗୋଟାଏ ପ୍ରେରଣା ପାଏ, ତାହା ହେଲେ ମଧ୍ୟ ଆମ୍ଭେମାନେ କହୁ ଯେ, ଆମ ଦେଶରେ ଯଥେଷ୍ଟ ଶିକ୍ଷଣୀୟ ବିଷୟ ଅଛି, ଯାହାକୁ ଯଥାର୍ଥରୂପେ ଅଧ୍ୟୟନ କଲେ ଜାତିର ଜାଗରଣ ନିଶ୍ଚୟ ଆସିବ । ଅନ୍ୟ ଦେଶର ଇତିହାସ ଲୁପ୍ତ ହୋଇପାରେ; କିନ୍ତୁ ଭାରତବର୍ଷର ଇତିହାସର ଧାରା କଦାପି ଲୁପ୍ତ ହୋଇ ଯାଇ ନ ପାରେ । ଭାରତବର୍ଷର ଏପରି କାହିଁକି ଗୋଟାଏ ବିଶେଷତ୍ୱ ଅଛି ? ନିରପେକ୍ଷ ଭାବରେ ଦେଖିବାକୁ ଗଲେ ଜାତୀୟ କର୍ମଧାରାକୁ ଏଥି ସକାଶେ ଦାୟୀ କରାଯାଏ । ଭାରତୀୟ ଥରେ ଭାବନାର ଯେ ସ୍ତରରେ ପହଞ୍ଚିଥିଲା, ବର୍ତ୍ତମାନ ସେଠାରୁ ତାର ବିଚ୍ୟୁତି ଘଟିଥିଲେ ସୁଦ୍ଧା ସେଦିନର ଗୋଟାଏ ଅଲକ୍ଷିତ ଯୋଗସୂତ୍ର ତାକୁ ଆଜି ପର୍ଯ୍ୟନ୍ତ ବାନ୍ଧି ରଖିଛି । ଆଜି ତାର ଯେଉଁ ଇତିହାସ ଲେଖା ଯାଉଅଛି, ସେଥିରେ କଣ ଅଛି ? ଗୋଟିକ ପରେ ଗୋଟିଏ ରାଜତ୍ୱର ଅବସାନ ! ଦୀର୍ଘକାଳବ୍ୟାପୀ ମୋଗଲ ରାଜତ୍ୱ ଗଲା, କେତେ ଅତ୍ୟାଚାର, ନିପୀଡ଼ନ ଦେଶବାସୀ ସହିଲେ, ହିନ୍ଦୁଧର୍ମର ଉଚ୍ଛେଦସାଧନ ପାଇଁ କେତେ ଚେଷ୍ଟା କରାଗଲା । ସାମାଜିକ ଜୀବନରେ ପରିବର୍ତ୍ତନ ଆଣି ଦେଶକୁ ଭିନ୍ନ ଛାଞ୍ଚରେ ଢାଳିବାକୁ ଉଦ୍ୟମ କରାଗଲା । ବୈବାହିକ ସୂତ୍ରରେ ହିନ୍ଦୁ ମୁସଲମାନ ସମ୍ବନ୍ଧ ମଧ୍ୟ ସ୍ଥାପିତ ହେଲା; କିନ୍ତୁ ଫଳରେ କଣ ହେଲା ? କାହିଁ ସେ ମୋଗଲ ସମ୍ରାଟ୍ ? କାହିଁ ତାଙ୍କର ଐଶ୍ୱର୍ଯ୍ୟର ଗରିମା ? ସବୁ ଚାଲିଯାଇଛି; ରହିଛି ଏକା ତାଜମହଲ ମୂକସାକ୍ଷୀରୂପେ ତାଙ୍କ ଅତୀତ ବିଭବର ସାକ୍ଷ୍ୟ ଦେବା ପାଇଁ । ମୋଗଲ ଐତିହାସିକ ଅନେକ କଥା ଲେଖିଗଲେ; କିନ୍ତୁ ତାଙ୍କର ଇତିହାସର ଧାରାରେ କିଛି ବିଶେଷତ୍ୱ ରହିଲା ନାହିଁ । ବରଂ ତାଜମହଲରେ ସୌନ୍ଦର୍ଯ୍ୟର ଯେ ଅବଦାନଟି ପ୍ରବଳପ୍ରତାପ ମୋଗଲ ସମ୍ରାଟ ଦେଇଗଲେ, ତାହା ତାଙ୍କୁ ସ୍ମରଣୀୟ କରି ରଖିଲା । ସେ ଇଚ୍ଛା କରିଥିଲେ ତାଙ୍କ ପ୍ରଣୟିନୀର ଜୀବନ ଚରିତ ତତ୍କାଳୀନ ଶ୍ରେଷ୍ଠ ଐତିହାସିକଙ୍କ ଦ୍ୱାରା ଲେଖାଇ ପାରିଥାନ୍ତେ; କିନ୍ତୁ ଭାବବିହ୍ୱଳ ସମ୍ରାଟ ସେଥିରେ ଅନ୍ତରର ଆକୁଳ ପିପାସା ମେଣ୍ଟାଇ ପାରିବେ ନାହିଁ ବୋଲି ବିଶ୍ୱ-ବିଖ୍ୟାତ ତାଜମହଲ ନିର୍ମାଣରେ ବ୍ରତୀ ହେଲେ । ସେ ବୁଝିଥିଲେ, ମନୁଷ୍ୟଅନ୍ତରର ଉଚ୍ଛ୍ୱସିତ ଭାବଧାରା ଇତିହାସକୁ ଅପେକ୍ଷା ରଖେ

ନାହିଁ । ତାଙ୍କ ପ୍ରେମର ଅତୁଳନୀୟ ନିଦର୍ଶନ ତାଜମହଲରେ ପ୍ରତିବିମ୍ବିତ ହୋଇଉଠିଛି । ସମ୍ରାଟ୍ ଓ ସମ୍ରାଟ୍-ମହିଷୀ କେଉଁଆଡ଼େ କାଳର କରାଳ କବଳରେ ବିଲୟ ଭଜିଲେଣି; କିନ୍ତୁ ଆଜି ଦର୍ଶକର ଚକିତ ଦୃଷ୍ଟିରେ ତାଜମହଲ ପ୍ରେମର ଏକ ଅପରୂପ ଆଭା ଫୁଟାଇଦିଏ । ସମ୍ରାଟଙ୍କ ଜୀବନର ଗୋଟିଏ ବିଶେଷ ବିବରଣୀକୁ ଐତିହାସିକ ଶତଚେଷ୍ଟା କରିଥିଲେ ସୁଦ୍ଧା ଏପରି ବିଶ୍ୱବିମୋହନ ରୂପ ଦାନ କରିପାରି ନ ଥାନ୍ତେ । କେତେଗୁଡ଼ିଏ କର୍ମସମଷ୍ଟିରେ ଜାତୀୟ ଚରିତ୍ରର ବିଶେଷତ୍ୱ ଦେଖାଇବା ଐତିହାସିକର ସହଜସାଧ୍ୟ କର୍ମ । ଯେ ଜାତି କେବଳ କର୍ମର ନିୟମାନୁଯାୟୀ ଜୀବନର ପନ୍ଥା ସ୍ଥିର କରିନିଏ, ସେ ଜାତି ପକ୍ଷରେ ଜାତୀୟ ଇତିହାସ ନିତାନ୍ତ ଲୋଡ଼ା । ଯନ୍ତ୍ରବତ୍ ନିୟନ୍ତ୍ରିତ ହେବା ଜାତି ପକ୍ଷରେ ଇତିହାସରୂପକ ଗୋଟିଏ ନିର୍ଘଣ୍ଟ ରହିବା ଆବଶ୍ୟକ; କାରଣ ସେମାନଙ୍କର ମୌଳିକତା ବଡ଼ ଦୁର୍ବଳ ଅବସ୍ଥାରେ ଥାଏ । ପ୍ରତ୍ୟେକ ଜାତିର ଇତିହାସର ଧାରା ଦେଖିଲେ ସେମାନଙ୍କୁ ଦୁର୍ବଳ କିମ୍ବା ସବଳ ବୋଲି ସହଜରେ କୁହାଯାଇ ପାରିବ । ଯେ ଜାତି ଅନେକ ଉତ୍ଥାନ ଓ ପତନର ସମ୍ମୁଖୀନ ହୋଇ ଆସିଲାଣି, କିନ୍ତୁ ତାର ମୌଳିକତା ଯାଇ ନାହିଁ, ତାକୁ ଦୁର୍ବଳ କହିବା ସମୀଚୀନ ନୁହେଁ ।

କେବଳ ଭାବଗତ କିମ୍ବା ଘଟନାଗତ ଐତିହାସିକ ବର୍ଣ୍ଣନାରେ ଇତିହାସର ପୁଷ୍ଟି ହୁଏ ନାହିଁ । ଦୁହିଁଙ୍କ ମଧ୍ୟରେ ଗୋଟିଏ ସମ୍ପର୍କ ରହିବା ଆବଶ୍ୟକ । କର୍ମମାର୍ଗରୁ ଭାବଧାରାଟିକୁ ବିଚ୍ଛିନ୍ନ କରିଦେଲେ ଜୀବନଟା ଯେପରି ଶୁଷ୍କ ବୋଧହୁଏ, ସେହିପରି ଇତିହାସକୁ ଘଟନାସମ୍ବଳିତ କରି ଭାବଗତ ବର୍ଣ୍ଣନାକୁ ବାଦ୍‌ଦେଲେ ବିଷୟଟି ବଡ଼ ନୀରସ ହୋଇଯାଏ ।

# ଗତିପଥ

ଗତି ସୃଷ୍ଟିର ଏକ ଶାଶ୍ୱତ ଧାରା । ଏହାର ବ୍ୟବଚ୍ଛେଦ ନାହିଁ । ଅତୀତ, ବର୍ତ୍ତମାନ ଓ ଭବିଷ୍ୟତର ଭିନ୍ନତା ଏହାକୁ ମନୁଷ୍ୟଚକ୍ଷୁରେ ବିଦ୍ଧ ବୋଲି ପ୍ରତିପନ୍ନ କଲେ ସୁଦ୍ଧା ଏହା କାଳ ପରି ଅସୀମ ଓ ଗୋଟିଏ ଚିରନ୍ତନ ମାର୍ଗର ନିମିତ୍ତ । ଗତିକୁ ବାଦ ଦେଲେ କାଳର କୌଣସି କଳନା ରହେ ନାହିଁ । କାଳ ଓ ଗତି ଅତି ବିଚିତ୍ରଭାବରେ ସଂପୃକ୍ତ । ଜଗତ୍ ଏ ଦୁହିଁଙ୍କର ପ୍ରଭାବକୁ ଏଡ଼ିପାରେ ନାହିଁ । ଯେଉଁ ସବୁ ଅବଶ୍ୟମ୍ଭାବୀ ଓ ବିସ୍ମୟକର ପରିବର୍ତ୍ତନ ଜଗତରେ ପ୍ରତିନିୟତ ସଂଘଟିତ ହେଉଅଛି, ସେଥିରେ ଏ ଦୁହେଁ ବଡ଼ ଅଲକ୍ଷିତ ଭାବରେ କାର୍ଯ୍ୟ କରିଯାନ୍ତି । ମନୁଷ୍ୟପକ୍ଷରେ କାଳ ଓ ଗତିର ମାର୍ଗ ସହଜରେ ଅନୁସନ୍ଧେୟ ନୁହେଁ । ଆଜି ଯେଉଁଠାରେ ଭୂଧର ତାହାର ବିରାଟ କାୟା ବିସ୍ତାର କରି ପଡ଼ିଅଛି, ଦୂର ଅତୀତରେ ଦିନେ ତାହା ଅତଳସ୍ପର୍ଶ ସାଗରଗର୍ଭରେ କେଉଁଆଡ଼େ ଲୀନ ହୋଇ ରହିଥିଲା । ସମ୍ଭବତଃ କୌଣସି ଆକସ୍ମିକ ଭୂକମ୍ପ ଏପରି ପରିବର୍ତ୍ତନ ଘଟାଇ ଦେଇଅଛି । କିନ୍ତୁ ଏପରି କାହିଁକି ହେଲା, କେହି ସହଜରେ କହିପାରିବେ ନାହିଁ । କାଳର ଗତିରେ ସବୁ ଘଟିଯାଉଛି । ଦିନ ପରେ ଦିନ ଆସି ଅତୀତରେ ମିଶିଯାଏ; କିନ୍ତୁ ଜଗତରେ ଗତିପଥଟି ଚିରଦିନ ଦୁର୍ଜ୍ଞେୟ ହୋଇ ରହେ । କାଳର ଅତି ବିଶାଳ ପ୍ରବାହରେ ଅସ୍ଥାୟୀ ପାର୍ଥିବ ଘଟଣାସବୁ ଜଳ-ବୁଦ୍-ବୁଦ୍ ପରି ମୁହୂର୍ତ୍ତକେ ଆବିର୍ଭୂତ ହୋଇ କେଉଁଆଡ଼େ ଉଭେଇ ଯାଏ । ସେମାନଙ୍କର ଗତିପଥ ବଡ଼ ବିଚ୍ଛିନ୍ନ ଓ ପରସ୍ପର ସମ୍ବନ୍ଧଶୂନ୍ୟ ପରି ଜଣାପଡ଼େ । ବିଶ୍ୱପ୍ରକୃତି ଏକ ବିରାଟ ନିୟମର ଅନୁବର୍ତ୍ତିନୀ ହୋଇ ଯେଉଁ ଅଜ୍ଞାତ ମାର୍ଗରେ ଗତି କରୁଛି, ତାର ଅଂଶସମ୍ଭୂତ ସୃଷ୍ଟ ବସ୍ତୁର ପୃଥକ୍‌ଗତି ମଧ୍ୟ କ୍ଷଣକ ପାଇଁ ଭିନ୍ନ ପ୍ରତୀତ ହେଲେ ସୁଦ୍ଧା ଚରମ ମାର୍ଗ ସେହି ଅଜ୍ଞାତ ଦିଗରେ । ପ୍ରାକୃତିକ ଗତିର ବୈଚିତ୍ର୍ୟ ସଙ୍ଗେ ଜୀବଜଗତ୍ ଅସଂପୃକ୍ତ ନୁହେଁ ।

ଏକର ବହୁତ୍ୱରେ ଜଗତର ବିଭିନ୍ନ ବିକାଶ । ଆନନ୍ଦ ଓ ଚୈତନ୍ୟର ପ୍ରଭାବ ଏହାର ପ୍ରଧାନ ଅବଲମ୍ବନ । ସ୍ତରବିଶେଷରେ ପ୍ରାଣୀମାନଙ୍କର ଯେଉଁ ପାର୍ଥକ୍ୟ ଦେଖାଯାଏ, ତାହା ଗୋଟାଏ ଧାରାର ଉନ୍ନତ ଓ ଅବନତ ଗତି ଛଡ଼ା ଅନ୍ୟ କିଛି ନୁହେଁ । ପ୍ରବଳ ଜଳସ୍ରୋତ ଯେତେବେଳେ ମାଡ଼ିଆସେ, ସେତେବେଳେ ତାହାର ଆକାର କିମ୍ବା ଗଭୀରତା ସବୁ ସ୍ଥାନରେ ସମାନ ନ ଥାଏ । ଜୀବନଟା ଏହିପରି ଗୋଟାଏ ଅସମାନ ଧାରାରେ ଗତି କରି ଚାଲିଛି; କିନ୍ତୁ ଗତିଟା ରହିଛି ଗୋଟାଏ ମହାମିଳନ ଆକାଙ୍‌କ୍ଷାରେ । ମିଳନ ଓ ଆନନ୍ଦ ଚିରଦିନ ଅଭିନ୍ନ । ଏମାନଙ୍କର ଉପଭୋଗ ପାଇଁ ପ୍ରାଣର ଗୋଟାଏ ସ୍ୱାଭାବିକ ପିପାସା ଅଛି । ପିପାସାର ନିବୃତ୍ତି ସମସ୍ତଙ୍କ ପକ୍ଷରେ ସମଭାବରେ ଘଟେ ନାହିଁ; ତେଣୁ ଜୀବ-ଜଗତର ଗତି ପରସ୍ପର ସମ୍ବନ୍ଧଶୂନ୍ୟ ପରି ଜଣାପଡ଼େ ।

ପ୍ରତ୍ୟେକ ମନୁଷ୍ୟର ଅନ୍ତର୍ନିହିତ ଗୋଟାଏ ପ୍ରେରଣା ଥାଏ । ଶିକ୍ଷା ଓ ସଭ୍ୟତା ଏହାକୁ ଅନେକ ସମୟରେ ପ୍ରଭାବିତ କରେ । ସଭ୍ୟ ଓ ଅସଭ୍ୟ ଜାତିର ମାନସିକ ପ୍ରବୃତ୍ତି ସମାନ ଭାବରେ ଗତି କରେ ନାହିଁ । ଏହାର କାରଣ କଣ ? ବିକାଶର ଭିନ୍ନତା ଓ ସାଧନାର ପରିସ୍ଥିତି ମନୁଷ୍ୟର ପ୍ରେରଣାକୁ ଯେ କୌଣସି ମାର୍ଗାବଲମ୍ବୀ କରାଇବ; କିନ୍ତୁ ଗୋଟିଏ ଆଦର୍ଶ ନିର୍ଣ୍ଣୟ କରି ଜୀବନର ସ୍ରୋତକୁ ସମଧାରାରେ ବୁହାଇଦେବା ତା ପକ୍ଷରେ ଅସମ୍ଭବ । ସଂଖ୍ୟାତୀତ ଜୀବନର ପରିଣତି ଏହାର ପ୍ରମାଣ । ପଥର ପାର୍ଥକ୍ୟ ନିରର୍ଥକ ନୁହେଁ । ଆଧାରର ବିଶିଷ୍ଟତା ସମପଦାର୍ଥକୁ ଅସମାନ ଦେଖାଇଲା ପରି ମାୟାର ଇନ୍ଦ୍ରଜାଲ ମନୁଷ୍ୟର ଦୃଷ୍ଟିକୁ ସର୍ବଦା ଆଚ୍ଛନ୍ନ କରି ରଖିଛି । ସେଥିପାଇଁ ସ୍ତରବିଶେଷରେ ଜଣକର ନିବୃତ୍ତି ସବୁ ସମୟରେ ସମସ୍ତ ମାନବ ଜାତିକୁ ଅନୁପ୍ରାଣିତ କରେ ନାହିଁ । ଜଗତର ବୈଚିତ୍ର୍ୟ ରକ୍ଷା ଏହା ଉପରେ ଅନେକ ପରିମାଣରେ ନିର୍ଭର କରେ ।

ଛନ୍ଦହୀନ କବିତା ଓ ଲକ୍ଷ୍ୟହୀନ ଗଦ୍ୟ ସାଧାରଣ ବିଚାରବୁଦ୍ଧିରେ ଗୋଟାଏ ଦୋଷ ବୋଲି କୁହାଯାଇପାରେ; ବାସ୍ତବିକ ତାହା ନୁହେଁ । କୃତ୍ରିମ ନିୟମ-ପାଳନ ସୌଷ୍ଠବର ପରିଚୟ ଦେଇପାରେ; କିନ୍ତୁ ମନୁଷ୍ୟ ଅନ୍ତରର ଗତି କୌଣସି ନିର୍ଦ୍ଦିଷ୍ଟ ଧାରାକୁ ଅପେକ୍ଷା ରଖେ ନାହିଁ । ଅନନ୍ତ ସମୁଦ୍ର ଓ ଅଖଣ୍ଡ ଆକାଶର ନୀଳିମାରେ ଯେ ଆଭା ଲାଗି ରହିଛି, ତାହା ଅବିନଶ୍ୱର ନୁହେଁ କି ? ସମୁଦ୍ରରେ ଓ ଆକାଶରେ ତରଙ୍ଗଟିଏ ଉଠେ ଓ ପୁଣି କେଉଁ ଆଡ଼େ ଉଭେଇ ଗଲା ପରି ଜଣାପଡ଼େ; କିନ୍ତୁ ଲାଗି-ରହିଥାଏ ସେହି ଚିରନ୍ତନ ଆଭାଟିକିକ ଯାହାକୁ ବିଶ୍ୱର ଅସୀମତା କଦାପି ହଜାଇ ଦେଇପାରେ ନାହିଁ । ମନୁଷ୍ୟ ଅନନ୍ତ ପଥର ଯାତ୍ରୀ । ଜୀବନର ଯାତ୍ରାରେ ତାକୁ ଚିହ୍ନିବା ସହଜ ନୁହେଁ । ଆଜିକାର "ମୁଁ" କାଲିକି ବଦଳିଯାଏ । ନିଜର ବୋଲି ହୃଦୟ ଯାହାକୁ ଧରି ରଖିଥାଏ, ତାହା ପୁଣି ସାତ ପର ପରି ଦୂରକୁ ଚାଲିଯାଏ । କାଳର ପ୍ରଭାବ ତାର ଅସ୍ତିତ୍ୱକୁ ମାନିବାକୁ ଚାହେଁ ନାହିଁ । ମନେ ହୁଏ; ଜଗତ୍‌ଟା ଗୋଟାଏ ମାୟାର ବନ୍ଧନ । ଏଠାରେ କେହି କାହାର ନୁହନ୍ତି । ମନୁଷ୍ୟ ସଂସାରକୁ ସାଥିଶୂନ୍ୟ ଭାବରେ ଆସିଛି । ତାକୁ ପୁଣି କିଏ ଆତ୍ମୀୟ ବୋଲି ପରିଚୟ ଦେବ ? ଅଥବା ଏ ପରିଚୟ ଦେବାରେ ମାନବତ୍ୱର କି ବିକାଶ ଘଟିପାରେ ? ମୋର ବୋଲି କହିଲେ ତାକୁ ଯଦି ଅସ୍ଥାୟୀ ଜଗଦ୍‌ବାସୀ ଉପହାସ କରେ, ତାହା ହେଲେ ଆତ୍ମୀୟ ପାଇଁ ସ୍ଥାନ କାହିଁ ?

ଜୀବନ ଓ ଆନନ୍ଦକୁ ବିଚ୍ଛିନ୍ନ ଭାବରେ ଭାବିଲେ ଅନ୍ତରର ପିପାସା ମେଣ୍ଟେ ନାହିଁ । ଆଜିକାର "ମୋର" କାଲିକି ବଦଳି ଯାଏ । ଜୀବନର ଶାନ୍ତିଧାରାଟି ସହଜରେ ଜଣାପଡ଼େ ନାହିଁ । ଜଗତର ଇନ୍ଦ୍ରଜାଲକୁ ମନୁଷ୍ୟ ଭେଦ କରିପାରେ ନାହିଁ ବୋଲି ତାର ଗୋଟାଏ ଭ୍ରାନ୍ତି ଆସେ । ତେଣୁ ସେ ଆତ୍ମୀୟର ସ୍ୱରୂପ ଦେଖି ନ ପାରି ପ୍ରତାରିତ ହୁଏ ।

ଆନନ୍ଦ ମୁକ୍ତିର ନାମାନ୍ତର ମାତ୍ର । ପ୍ରାଣିଜଗତ୍ ସଙ୍ଗେ ଆନନ୍ଦର ଗୋଟାଏ ଧାରା ଚିରଦିନ ଲାଗି ରହିଛି । ଅନୁଭୂତି ଅନୁସାରେ ଏହାର ସମ୍ୟକ୍ ଉପଲବ୍ଧି ଜଣାପଡ଼େ । ମନୁଷ୍ୟସମାଜ ମଧ୍ୟ ଏହାକୁ ସମଭାବରେ ଗ୍ରହଣ କରିପାରି ନାହିଁ; କିନ୍ତୁ ଏକ ପ୍ରଚ୍ଛନ୍ନ ଧାରାର ବିଭିନ୍ନ ବିକାଶ ଯେ ଏଥିସକାଶେ ଦାୟୀ, ଏ କଥା ବୋଧହୁଏ ସମସ୍ତେ ଅକୁଣ୍ଠିତ ଭାବରେ ସ୍ୱୀକାର କରିବେ । ଲଲନାର ଲଳିତ ମଧୁର ଅକପଟ ହାସ୍ୟ, କବିର ଭାବୋଚ୍ଛ୍ୱାସ ଓ ପ୍ରକୃତିର ନୈସର୍ଗିକ ଚିତ୍ରଣରେ ଯେ ଅପରୂପ ସୌନ୍ଦର୍ଯ୍ୟର ନିଦର୍ଶନ ମିଳେ, ତାହା ଏକ ମୂଳାଧାରରୁ ଗତି କଲା ପରି ଜଣାପଡ଼େ । ତେବେ ପାର୍ଥକ୍ୟ କେଉଁଠି ? ଦୂର ପର୍ବତଗାତ୍ରରେ, ସରଣୀର ଅସ୍ପଷ୍ଟ ଚିହ୍ନ ଭାବୁକ ମନରେ ଗୋଟାଏ ସରଳ ଭାବର ଉଦ୍ଦୀପନା ଆଣେ; କିନ୍ତୁ ନିକଟବର୍ତ୍ତୀ ପର୍ବତାରୋହୀ ସେହି ସରଣୀରେ ଗତି କଲାବେଳେ ପର୍ବତର ବନ୍ଧୁରତା ଓ ପିଚ୍ଛିଳତା ହୃଦୟରେ ଯେ ଭୀତି ସଞ୍ଚାର କରାଏ, ତାହା ଭାବୁକର ଅନୁଭୂତିକୁ ସହଜରେ ଆସେ ନାହିଁ । ଭାବରାଜ୍ୟର ଗତି ଜଡ଼ଜଗତ୍ ସଙ୍ଗେ ସମାନତା ରକ୍ଷା କରେ ନାହିଁ । ଆନନ୍ଦର ଉତ୍ସ ଏକ ହୋଇପାରେ, କିନ୍ତୁ ପାର୍ଥକ୍ୟ ଯେ ଗୋଟାଏ ରହିବ, ଏଥିରେ କୌଣସି ସନ୍ଦେହ ନାହିଁ । ରମଣୀର ଶୋଭାସମ୍ପଦ କାମୁକ ଓ ଭାବୁକ ଚକ୍ଷୁରେ ସମାନ ଦେଖାଯାଏ ନାହିଁ । ଭାବନା ଓ କାମନା ବହିର୍ଦୃଷ୍ଟିରେ ସମାନ ଦେଖାଯାଇପାରେ; କିନ୍ତୁ ସେମାନଙ୍କର ଗତି ସମାନ ରହେ ନାହିଁ । ଆସଙ୍ଗଲିପ୍ସା ଜୀବନର ଧର୍ମ ହୋଇପାରେ ଓ ଏଥିରେ ଆନନ୍ଦର ସ୍ପର୍ଶ ଥାଇପାରେ; କିନ୍ତୁ ଗୋଟାଏ ପ୍ରବଳ ସ୍ରୋତରେ ଅସଂଖ୍ୟ ତରଣୀ ଭାସିଗଲାବେଳେ ଯେପରି ଏକ ମାର୍ଗାନୁସରଣ କରନ୍ତି ନାହିଁ, ସେହିପରି ଜୀବଜଗତ୍‌ରେ ଶ୍ରେଣୀଗତ ଉତ୍କର୍ଷ ଓ ଅପକର୍ଷ ଆନନ୍ଦର ଧାରାକୁ ଆଶ୍ରୟ କରି ଅସଂଖ୍ୟ ଦିଗରେ ଧାବିତ ହୁଏ; ତେଣୁ ଆସଙ୍ଗଲିପ୍ସା ଓ ଭାବୋଚ୍ଛ୍ୱାସ ଦୁଇ ପୃଥକ୍ ଆକର୍ଷଣର ସୂଚନା ଦିଅନ୍ତି । ନୀଳ ଆକାଶରେ ଜ୍ୟୋତ୍ସ୍ନାର ପ୍ଲାବନ ସଙ୍ଗେ ଧୂମ୍ର-ଗମ୍ଭୀର ବାରିଦ-ପଟଳର ସମାବେଶ କେବଳ କବିର କଳ୍ପନା ନୁହେଁ ।

ଏକ ଅସୀମତାରେ ଦୁଇଟି ସ୍ୱତନ୍ତ୍ର ଚିତ୍ରଣ ପ୍ରକୃତିର ବୈଚିତ୍ର୍ୟ ବିଧାନ କରି ଯେ ଉନ୍ମୁକ୍ତ ଧାରା ଫିଟାଇ ଦିଏ, ସେଥିରେ ମନୁଷ୍ୟର ଯଥେଷ୍ଟ ଶିକ୍ଷଣୀୟ ବିଷୟ ଥାଏ । ଆନନ୍ଦ ଓ ନିରାନନ୍ଦ ଏକ ହୃଦୟତନ୍ତ୍ରୀର ସ୍ପନ୍ଦନ । ପ୍ରକୃତିର ଅନୁପମ ବିଭବରେ ଅନୁପ୍ରାଣିତ ହୋଇ ମନୁଷ୍ୟ ଗତି କରୁଥିଲେ, ତା ଅନ୍ତରର ଭାବଧାରାଟି ଏପରି ଜଟିଳ ହୁଅନ୍ତା ନାହିଁ । ସେ ଯେତେ ଜଟିଳତା ଭିତରେ ପ୍ରବେଶ କରେ, ତା ମୁକ୍ତିର ପଥ ସେତିକି ଅବରୁଦ୍ଧ ହୋଇଆସେ ଓ ତାର ଆନନ୍ଦାନୁଭୂତି ମଧ୍ୟ ସେହି ଅନୁସାରେ କମିଆସେ । ସେଥିପାଇଁ ଜ୍ଞାନୀମାନେ ଜଗତକୁ ମାୟାର ଲୀଳାଭୂମି ବୋଲି କହନ୍ତି ।

ଗତି ନ ଥିଲେ ମୁକ୍ତ ମିଳେ ନାହିଁ । ଭଲ କମ୍ବା ମନ୍ଦର ବିଚାର ଏ ସମ୍ପର୍କରେ କରାଯାଇ ନାହିଁ । ଦୁଇଟି ସମାନ୍ତର ସରଳ ରେଖାର ଗତି ପରି ଅନେକ ସମୟରେ ଦୁଇଟି ଜୀବନର ଗତି ହୋଇଥାଏ । ଜଣକର ଭଲମନ୍ଦ ଅନ୍ୟ ଜଣଙ୍କୁ ସ୍ପର୍ଶ କରେ ନାହିଁ; ଅଥଚ ସେ ଦୁହିଙ୍କ ମଧ୍ୟରେ ଏପରି ଗୋଟାଏ ଆକର୍ଷଣ ଥାଏ ଯେ, ଦୁହେଁ ଦୁହିଁଙ୍କୁ ଅପେକ୍ଷା କରି ସଂସାରକ୍ଷେତ୍ରରେ ଗତି କରୁଥାନ୍ତି । ସଂସାର-କ୍ଷେତ୍ରରେ ସର୍ବଦା ଗୋଟାଏ ସଂଘର୍ଷ ଚାଲିଛି, ଉତ୍ଥାନ ଓ ପତନ ଲାଗି ରହିଛି । ସୁରମ୍ୟ ହର୍ମ୍ୟର ଧ୍ୱଂସାବଶେଷରେ ବାଲିଶିକାମୟ ସମାଧି ମନ୍ଦିରର ଗଠନ ସାଧିତ ହେଉଅଛି । ସୁନ୍ଦରୀର ଶିରୀଷକୋମଳ ଅଙ୍ଗ ପଲକରେ ମୃତ୍ୟୁ ଅନ୍ତରାଳରେ ଲୁଚି ଯାଉଛି । ଯୁବକ ଯୁବତୀର ହଳାହଳମୟ ପ୍ରେମ ସମାଜମୁଖରେ କାଳିମା ଲେପନ କରି ସେମାନଙ୍କ ଜୀବନକୁ ଅତି ତୁଚ୍ଛ କରିଦେଉଛି । ଜୀବନର ବାତାବର୍ତ୍ତି ମୁହୂର୍ତ୍ତିକ ପାଇଁ ସୁଦ୍ଧା ବନ୍ଦ ନ ହୋଇଣ ପୁଣି ହୃଦୟରେ ଆଶାର ସଂଚାର କିଏ କରାଉଅଛି ? ଏ ସବୁ ଭାବିଲେ ମନରେ ସ୍ୱତଃ ଗୋଟାଏ ଅବସାଦ ଆସେ । ଦୁଇଟି ଜୀବନ ଯେତେବେଳେ ପରସ୍ପରଠାରୁ ବିଚ୍ଛିନ୍ନ ହୋଇ ଅଥଚ ପରସ୍ପରକୁ ଅପେକ୍ଷା କରି ଗତି କରୁଥାନ୍ତି, ସେତେବେଳେ ସଂସାରର ସହସ୍ର ନିର୍ଯାତନା କିପରି ଦୁହିଁଙ୍କୁ ଉଜ୍ଜୀବିତ କରି ରଖିଥାଏ ? ଉଭୟଙ୍କ ମଧ୍ୟରେ ଅବଶ୍ୟ ଆକର୍ଷଣର ପ୍ରଭାବ ବଡ଼ ପ୍ରଖର ଭାବରେ ଥାଏ ! କିନ୍ତୁ ସମାଜ ତାକୁ ଜାଣିପାରେ ନାହିଁ । ଜାଣିବା କିମ୍ବା ଜଣାଇଦେବା ମଧ୍ୟ ଉଚିତ ନୁହେଁ । ଅଲକ୍ଷିତ ଭାବରେ ଜଣେ ଅନ୍ୟ ଜଣଙ୍କଠାରୁ ଯେଉଁ ପ୍ରେରଣା ପାଉଥାଏ, ତାହାହିଁ ଜୀବନର ପ୍ରଧାନ ସମ୍ବଳ ହୁଏ । ପ୍ରେମର ଅନାବିଳ ଆସ୍ୱାଦନ ଜୀବନରେ କ୍ୱଚିତ୍ ମିଳେ । ସମ୍ପର୍କଶୂନ୍ୟ ଭାବରେ ରହିଲେ ଜୀବନଟା ଶୁଷ୍କ ବୋଧହୁଏ; ପୁଣି ହୃଦୟର ମିଳନକୁ ଉପେକ୍ଷା କରି ଉତ୍ତେଜନାର ବଶବର୍ତ୍ତୀ ହୋଇ ଯେ ମିଳନର ସୂତ୍ରପାତ କରାଯାଏ, ତାହା ଅତି ଜଘନ୍ୟ ହୋଇ ଉଠେ । ଗୋଟାଏ ବୁଭୁକ୍ଷା ସବୁବେଳେ ପ୍ରାଣକୁ ଅସ୍ଥିର କରିଦିଏ । ଜୀବନର ଶେଷ ପରିଣତି ଗୋଟାଏ ଶୂନ୍ୟତା ରଖି ଚାଲିଯାଏ । ବର୍ତ୍ତମାନ ପ୍ରଶ୍ନ ଉଠିପାରେ, ଦୁଇଟି ସମାନ୍ତର ସରଳ ରେଖାର ଗତି ପରି ଦୁଇଟି ଜୀବନର ଗତି ହେଲେ ଓ ଗୋଟାଏ ଅଲକ୍ଷିତ ପ୍ରଭାବ ସେ ଦୁହିଁଙ୍କ ମଧ୍ୟରେ ରହିଲେ, ଜଣକର ଭଲ ଓ ମନ୍ଦ ଅନ୍ୟକୁ କାହିଁକି ସ୍ପର୍ଶ ନ କରିବ ? ସ୍ୱାର୍ଥବିଜଡ଼ିତ ମନୁଷ୍ୟ ଭଲ ମନ୍ଦର ବିଚାର କରେ । ମନୁଷ୍ୟର କ୍ଷୁଧିତ ବାସନା ଜଗତର ଭଲ ଜିନିଷଟାକୁ ସବୁବେଳେ ଧରି ରଖିବାପାଇଁ ପ୍ରୟାସ କରେ; କିନ୍ତୁ ସେ ବୁଝେ ନାହିଁ ଯେ, ତା ଚକ୍ଷୁରେ ଯେଉଁଟି ଭଲ, ଅପର ଚକ୍ଷୁରେ ତାହା ହେୟ କିମ୍ବା ତାର ସେହି ବିଷୟ ପ୍ରତି ଲୋଲୁପତା ଅପର ଦୃଷ୍ଟିରେ କଣ୍ଟକର ଆଘାତ ପରି ଜଣାଯାଉଛି । ଭଲ ଓ ମନ୍ଦ ବିଚାର କରିବାର ବୁଦ୍ଧି ଜାଗତିକ କାର୍ଯ୍ୟର କଷଟି ପଥର ହୋଇପାରେ ଓ ତଦ୍ୱାରା ଉପର୍ଯ୍ୟୁକ୍ତ ଦୁଇଟି ଜୀବନର ସାଂସାରିକ କାର୍ଯ୍ୟକ୍ରମ ପରୀକ୍ଷିତ ହୋଇପାରେ; କିନ୍ତୁ ଅନ୍ତର ଯେଉଁ ଅପାର୍ଥିବ ସନ୍ଧାନ କରୁଥାଏ, ସେଥିରେ ଏହାର କୌଣସି ସମ୍ପର୍କ ନାହିଁ । ସୂକ୍ଷ୍ମାତିସୂକ୍ଷ୍ମ ଅତୀନ୍ଦ୍ରିୟ ରାଜ୍ୟରେ ଯେତେବେଳେ ଦୁଇଟି ଜୀବନ ପରସ୍ପରକୁ ଅନ୍ୱେଷଣ କରି ବୁଲନ୍ତି ସେତେବେଳେ ସଂସାରର ମାୟିକ କ୍ରିୟା ଏମାନଙ୍କୁ ସ୍ପର୍ଶ କରେ ନାହିଁ । ଗୋଟାଏ ଅରୂପ ମିଳନର ପ୍ରେରଣା ଏମାନଙ୍କୁ ଜାଗ୍ରତ ରଖେ । ଦୁଇଟି ଜୀବନର ଧାରା ପୃଥକ୍ ଭାବରେ ବହିଯାଏ; କିନ୍ତୁ ଗୋଟିଏ ସ୍ରୋତସ୍ୱିନୀର କୁଳୁକୁଳୁ ଧ୍ୱନି ଅଦୂରବର୍ତ୍ତୀ ଅପର ସ୍ରୋତସ୍ୱିନୀର କୂଳରେ ପ୍ରତିଧ୍ୱନିତ ହେଲା ପରି ଗୋଟିଏ ଅନ୍ତରର ମଧୁର ବାଣୀ ଅନ୍ୟର ଅନ୍ତରରେ ବରାବର ସ୍ପନ୍ଦିତ ହେଉଥାଏ । ଏହି ସ୍ପନ୍ଦନଟିକ ଅରେ ଉତ୍ଥିତ ହୋଇ ଯଦି ବିଶ୍ୱର ଅମିୟରାଗିଣୀ ସଙ୍ଗେ ମିଶି ପାରିଲା, ତାହାହେଲେ ଦୁଇଟି ଜୀବନର ବିଚ୍ଛିନ୍ନ ଗତି ଆଉ କୌଣସି ବାଧା ମାନେ ନାହିଁ । ପରସ୍ପରଠାରୁ ଅସଂଯୁକ୍ତ ରହି ସୁଦ୍ଧା ସେମାନେ ଗତି କରି ଅନନ୍ତ ଜୀବନସମୁଦ୍ରରେ ମିଶିଯାନ୍ତି । ଅସୀମ ସଙ୍ଗେ ମିଶିଗଲାବେଳେ ସେମାନଙ୍କର ସ୍ୱାତନ୍ତ୍ର୍ୟ ଲୁପ୍ତ ହୋଇଯାଏ । କେବଳ ଏକ ବିଶ୍ୱମୋହନ ରାଗିଣୀ ଝଙ୍କୃତ ହୋଇ ବିଶ୍ୱର ଅବିନଶ୍ୱରତା ଜଣାଇ ଦିଏ । ଏ ରାଗିଣୀର ମର୍ମ କେତେ ଜଣ ସଂସାରବାସୀ ବୁଝିପାରନ୍ତି ? ବିଶ୍ୱ-ଶିଳ୍ପୀ ଏପରି ଜୀବନର ଗତିକୁ ସାଧାରଣ ବିଚାରବୁଦ୍ଧିର ବାହାରେ ରଖିଛନ୍ତି । ଉଲ୍ଲିଖିତ ଗତି ଏକମାତ୍ର ଅବଲମ୍ବନୀୟ ନୁହେଁ । ମୁକ୍ତିପଥାଶ୍ରୟୀର ଅନ୍ତରର ଉଦ୍ଦୀପନା ଗତିନିର୍ଣ୍ଣୟର ସମ୍ୟକ ବିଚାର କରିପାରେ ।

ଅନୈକ୍ୟରୁ ଐକ୍ୟର ସଂସ୍ଥାପନ କରିପାରିଲେ ମନୁଷ୍ୟ ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ୍ ମଧ୍ୟରେ ବିଶ୍ୱର ଏକ ଚିରନ୍ତନ ଧାରାକୁ ଦେଖିପାରେ । ପ୍ରେମ ଓ ଜ୍ଞାନର ସମନ୍ୱୟ ଏହାରି ଉପରେ ନିର୍ଭର କରେ । ଜଗତର ଅତି ବିସ୍ମୟକର କିମ୍ବା ଅତି ସାମାନ୍ୟ ସାଧାରଣ ଘଟଣା ସହିତ ଏହାର ସମ୍ବନ୍ଧ ରହିଛି । ଜଗତର ଜଟିଳ କର୍ମଜାଲ ମନୁଷ୍ୟକୁ ନିବିଡ଼ଭାବରେ ବାନ୍ଧି ରଖେ ବୋଲି ତାର ଦୃଷ୍ଟି ବଡ଼ ସଂକୁଚିତ ହୁଏ; କିନ୍ତୁ କାଳସ୍ରୋତରେ ଏପରି ଗୋଟାଏ ଢେଉ ଆସେ, ଯେତେବେଳେ

ମନୁଷ୍ୟର ସବୁ ବନ୍ଧନ ଘୁଞ୍ଚିଯାଏ ଓ ସେ ଦେଖେ, ଜୀବନର ଗତି ବଡ଼ ଚଞ୍ଚଳ । ସେଥିରେ ପୁଣି କାମିନୀ ଓ କାଞ୍ଚନର ମୋହ ଏହି ଚଞ୍ଚଳତାକୁ ଗୋଟାଏ କ୍ଷୁବ୍‌ଧତାରେ ପରିଣତ କରି ତାର ଗତିପଥକୁ ବଡ଼ ସଙ୍କଟାପନ୍ନ କରିଦେଉଛି । ଏଠାରେ ଜୀବନଟା ଗୋଟାଏ ଛନ୍ଦହୀନ କବିତା ପରି ଜଣାଯାଇ ପାରେ; କିନ୍ତୁ ଗତିଟା ଯେ ବିଚ୍ଛିନ୍ନ ନୁହେଁ, ଏହି ଭାବଟି ମନୁଷ୍ୟର ହୃଦୟରେ ସର୍ବଦା ଅଙ୍କିତ ହୋଇ ରହିଲେ ସେ ଉତ୍‌ଥାନ ଓ ପତନ ଦଶାକୁ ଭୟ କରେ ନାହିଁ । ଗତିମୁକ୍ତ ନିୟନ୍ତ୍ରିତ ହେଲେ ଭଲ ମନ୍ଦର ପ୍ରଭାବ ସ୍ଥାୟୀ ହୋଇ ରହେ ନାହିଁ । ମୋହାବେଶରେ ସୁଦ୍ଧା ଗୋଟାଏ ଧାରାରେ ଜୀବନ-ସ୍ରୋତ ପ୍ରବାହିତ ହେଲେ, ସମୟ ତାକୁ ବଦଳେଇ ଦିଏ । ମନ୍ଦରୁ ଭଲ ଆସେ । ଏଥିର ଦୃଷ୍ଟାନ୍ତ ମଧ ବିରଳ ନୁହେଁ । ବାଲ୍ମୀକି, ବିଲ୍ୱମଙ୍ଗଳ ପ୍ରଭୃତିଙ୍କ ଜୀବନଚରିତ ଏଥିର ପ୍ରମାଣ ଦିଏ । ମନୁଷ୍ୟ ଐହିକ ଐଶ୍ୱର୍ଯ୍ୟର ଚରମ ସୋପାନରେ ଅଧିରୂଢ଼ ହୋଇ ସୁଦ୍ଧା ଗୋଟାଏ ଅଭାବ କାହିଁକି ଅନୁଭବ କରେ ? ସହସ୍ର କାମିନୀର କରପଲ୍ଲବ ସ୍ପର୍ଶରେ ସେ କାହିଁକି ବେଶୀ କ୍ଷୁବ୍‌ଧ ହୋଇଉଠେ ? ଜୀବନର ଧାରାରୁ ଶାନ୍ତିର ଶୀତଳତା କାହିଁକି ଅପସରିଯାଏ ? ଯେଉଁ ଅବିଚ୍ଛିନ୍ନ ଗତି କାଳ ସଙ୍ଗେ ମିଶି ଚାଲିଛି, ତାହା ଜୀବନକୁ ବାଦ୍ ଦିଏ ନାହିଁ । ଜୀବନର ଅସମାନ ଗତି ଗୋଟାଏ ସାମୟିକ ବିରାମ ସୃଷ୍ଟି କରିପାରେ; କିନ୍ତୁ ସେହି ଅନନ୍ତ ସ୍ରୋତରୁ ଏହା କଦାପି ବିଚ୍ଛିନ୍ନ ହୋଇ ରହିପାରିବ ନାହିଁ । ପାର୍ଥିବ ଐଶ୍ୱର୍ଯ୍ୟର ପୂର୍ଣ୍ଣତା ଥିଲେ ଜଗତର ଗତି ଏକ ପରିବର୍ତ୍ତିରେ ବଦ୍ଧ ହୋଇଥାନ୍ତା ।

ଆଗରୁ କୁହାଯାଇଅଛି ଯେ, ଦୁଇଟି ଜୀବନର ସ୍ୱତନ୍ତ୍ର ଧାରା କଲନାଦିନୀ ତଟିନୀ ପରି ବହିଯାଇ ଶେଷରେ ଗୋଟାଏ ଅସୀମତାରେ ମିଶିଯାଏ । ଏପରି ହେଲେ ମଧୁରତା ବଡ଼ କ୍ଷୀଣ ହୋଇ ହୁଡ଼େଇ ଗଲା ପରି ଜଣାପଡ଼େ । ଏପରି ଏକ କାଳ୍ପନିକ ସୁଖ ଆଶାରେ କେତେ ଜଣ ସଂସାରର ଜଟିଳ ପଥକୁ ଅତିକ୍ରମ କରି ପାରନ୍ତି ? ବୋଧହୁଏ ସଂଖ୍ୟା ଖୁବ୍ କମ୍ । ଜୀବନଟାର ପରିଣତି ଯଦି ଗୋଟାଏ ମାତ୍ର ପରିଚ୍ଛେଦରେ ପର୍ଯ୍ୟବସିତ ଥାନ୍ତା, ତାହା ହେଲେ କଳ୍ପନା-ପ୍ରଭାବ ମନୁଷ୍ୟକୁ ଧରି ରଖିପାରନ୍ତା ଓ ଏକ ଭାବରେ ମଜ୍ଜି ରହି ଜୀବନର ମହତ୍ତ୍ୱ ଅନୁଭବ କରନ୍ତା, କିନ୍ତୁ ବିଧିର ବିଧାନ ସେପରି ନିର୍ଦ୍ଦିଷ୍ଟ ନୁହେଁ । ସଂସାରର ବୈଚିତ୍ର୍ୟ ଉପଲବ୍‌ଧି କରିବା ପାଇଁ ମିଳନର ଉତ୍ପତ୍ତି । ତାହା ଯଦି କେବଳ ଗୋଟିଏ କଳ୍ପିତ ଆଶା ପାଖକୁ ଅନୁସରେ, ତାହା ହେଲେ ବାସ୍ତବତାର ସନ୍ଧାନ ସହଜ ହେବ ନାହିଁ । ଭୋଗର ସ୍ପୃହାଟାକୁ ଦୁର୍ବଳଚିତ୍ତ ମନୁଷ୍ୟ ବେଶୀ ଦିନ ହୃଦୟରେ ସ୍ଥାନ ଦେଇ ପାରେ ନାହିଁ । ହୁଏତ ସୁଖର କଳ୍ପନା ପ୍ରଭାବରେ ଜଣେ ସୁନ୍ଦରୀର ଶିରୀଷକୋମଳ ଅଙ୍ଗଲତା କିଛିଦିନ ତା ଅନ୍ତରରେ ଏକ ନବ ବସନ୍ତର ଉନ୍ମାଦନା ଆଣିପାରେ; କିନ୍ତୁ ସେଇଟା କଣ ସ୍ଥାୟୀ ହେବା ସମସ୍ତଙ୍କ ପକ୍ଷରେ ସମ୍ଭବ ? କବି କମ୍ପ ଚନ୍ଦ୍ରକରର ଜୀବନର ବନ୍ଧୁରତାକୁ ମାନେ ନାହିଁ । ଜୀବନ ଚାହେଁ—ଗୋଟାଏ ନିରବଚ୍ଛିନ୍ନ ଧାରାର ଚିରନ୍ତନ ଶାନ୍ତ ପ୍ରବାହ । ପ୍ରବୃତ୍ତିମାନଙ୍କର ଉତ୍ତେଜନାରେ ମନୁଷ୍ୟର ଗତି ସର୍ବଦା ଚଞ୍ଚଳ । ସେଥିରେ ପୁଣି ମାନସିକ ବିକ୍ଷେପର ବିଲୋପ ସାଧନ ଗୋଟାଏ ବିଡ଼ମ୍ବନା କହିଲେ ଚଳେ । ଅବଶ୍ୟ ଯେଉଁମାନଙ୍କର ମାନସିକ ବିକାଶ ଅତି ଉଚ୍ଚ ଦରର, ସେହିମାନେ କେବଳ ଦୁଇଟି ସ୍ୱତନ୍ତ୍ର ଧାରାରେ ସମପ୍ରବାହର ବେଗ ଅନୁଭବ କରିପାରନ୍ତି ଓ ସେମାନଙ୍କ ଜୀବନର ଗତି ଅସାଧାରଣ ହୋଇପାରେ; କିନ୍ତୁ ସାଧାରଣ ମନୁଷ୍ୟର କର୍ମମାର୍ଗ ଏଥିରେ ସଂଶ୍ଳିଷ୍ଟ ରହେ ନାହିଁ । ଜଗତ ଦେଖେ—ସାଧାରଣ ଗତିର ବିଶେଷତ୍ୱ, ଯେଉଁଥିରେ ପ୍ରେମର ଅପାର୍ଥିବ କଳ୍ପନାର ସଂଯୋଜନା ଅଧିକ ଆବଶ୍ୟକ ହୁଏ ନାହିଁ ।

ଜଗତ୍‌ର ଆକାଙ୍‌କ୍ଷିତ ଦର୍ଶନ ସୌନ୍ଦର୍ଯ୍ୟର ସେତୁରେ ଦ୍ୱୈତଭାବର ଉଦ୍ଦୀପନାକୁ ବେଶି ସମୟ ଦେଖି ସମ୍ଭାଳି ପାରେ ନାହିଁ । ସଦା ସୁଖ ଦୁଃଖର ସଂସାର-ପଥଟି ଜଣକୁ ଜଣକର ସହଯାତ୍ରୀ ହେବାପାଇଁ ଇଙ୍ଗିତ ଦିଏ । ପବିତ୍ର ରାମାୟଣ ଏହାର ଶ୍ରେଷ୍ଠ ନିଦର୍ଶନ । ପୁରୁଷର ଅନୁଗାମିନୀ ନାରୀ-ଚରିତ୍ରରେ ଦେଖାଇ ଯେଉଁ ମହାଭାବ ରାମାୟଣକାର ଫୁଟାଇ ଦେଇଅଛନ୍ତି, ତାହା ଜଗତରେ ଅମର ହୋଇ ରହିବ । ନାରୀର ସତୀତ୍ୱରେ ପୁରୁଷର ଦେବତ୍ୱ ଗୋଟାଏ ଅପୂର୍ବ ମିଳନ । ଏହାହିଁ ଜଗଦ୍‌ବାସୀର ପରମ ପଥ । ଜୀବନର ଦିନ କେତେଟା ଜଣେ ଯଦି ଜଣକୁ ନିଜର କରି ନ ପାରିଲା, ତାହା ହେଲେ ଜୀବନଟା କ୍ଷିପ୍ତତାର ଗୋଟାଏ ରଙ୍ଗଭୂମି ହୋଇଉଠେ । ଅସୀମ ଯଶୋଲିପ୍ସା, ଅପରିମିତ ଅର୍ଥପିପାସା, ଲଳନାର ଅନ୍ତରଞ୍ଜଣା ରଙ୍ଗରହସ୍ୟରେ ଅଧିକାଂଶ ଆତ୍ମବିସ୍ମୃତ ହୋଇଯାନ୍ତି; କିନ୍ତୁ ଏହା ଗୋଟାଏ ଗୋଟାଏ କ୍ଷଣିକ କ୍ଷିପ୍ତତା ନୁହେଁ କି ? ଦୁନିଆକୁ ଦୁଇଟା ଦିନ ପାଇଁ ଆସି ସାର୍ଥଶୂନ୍ୟ ଭାବରେ ଚାଲିଯିବା ସ୍ପୃହଣୀୟ ନୁହେଁ । ଲକ୍ଷ୍ୟ ଯାହାର ସୁଦୂର ଚକ୍ରବାଳରେ ନିବଦ୍ଧ ଥାଏ, ସେ ପାର୍ଶ୍ୱବର୍ତ୍ତୀ ଚନ୍ଦ୍ର-ଦର୍ଶନରେ ଅଭିଭୂତ ହୁଏ ନାହିଁ । ରମଣୀର ନିଃସ୍ୱାର୍ଥ ପ୍ରେମ ପୁରୁଷର ସହଜ ଦୃଷ୍ଟିକୁ ଆସେ ନାହିଁ

ବୋଲି ନାରୀଚରିତ୍ରର ମହନୀୟତା ପୁରୁଷର ଦୁର୍ବଳତାରେ ଅସଂପୃକ୍ତ ରହେ । ଜଗତରେ ଯେ ଯେତେ ଉଦାର, ତାର ଦୃଷ୍ଟିରେଖା ସେତେ ବିସ୍ତୃତ । ପୁରୁଷ ହୋଇ କେବଳ ନାରୀର ଅପାଙ୍ଗରେ ଦୃଷ୍ଟିର ଲୋଲୁପତା ମେଣ୍ଟାଇଲେ ନାରୀ ଅନ୍ତରର ସ୍ୱବୋଚ୍ଛ୍ୱାସ ଅସ୍ତଗାମୀ ରବିର କିରଣଜାଲ ପରି ଗୋଟାଏ ଅସୀମତାରେ ମିଶିଯାଏ ଓ ସଂସାରର ସରଳ ପଥଟି ସେଥି ସଙ୍ଗେ ଏକ କୁଟିଳ ଆକାର ଧାରଣ କରେ । ଅତୃପ୍ତ ଭୋଗବିଳାସରେ ପୁରୁଷ ଓ ନାରୀର ପରସ୍ପର ସନ୍ଧାନ ବ୍ୟର୍ଥତାର ଗୋଟାଏ ପ୍ରତିମୂର୍ତ୍ତି । ତା ନ ହୋଇଥିଲେ ସଂସାରର ଅସାରତାରେ ପବିତ୍ର ପ୍ରଣୟକୁ ଶାନ୍ତିର ସୋପାନସ୍ୱରୂପ କେହି ଗ୍ରହଣ କରନ୍ତେ ନାହିଁ । ଜଗତ୍ ଯେଉଁଦିନୁ ବିବାହ ବିଧାନକୁ ମାନି ଆସିଲାଣି, ସେହି ଦିନୁ ତାର ପଥଟି ଉନ୍ମୁକ୍ତ ହୋଇ ରହିଛି । ଗାର୍ହସ୍ଥ୍ୟ ଧର୍ମର ସଂସ୍ଥାପନ ଚିରଦିନ ରହିବ । ଦୂରଦୃଷ୍ଟିସମ୍ପନ୍ନ ମନୁଷ୍ୟର ଗତି ଏହି ମାର୍ଗକୁ ସର୍ବଦା ଅନୁସରଣ କରୁଥିବ ।

# ମାୟାର ବନ୍ଧନ

କେତେ ଢେଉ ଆସି ମନୁଷ୍ୟର ମନ ଉପରେ ଖେଳିଯାଏ । ଜଗତ୍ କେତେ ମନଭୁଲାଣିଆ ଜିନିଷ ଦେଖାଇଦିଏ; କିନ୍ତୁ ତା ଅନ୍ତରର ତୃପ୍ତି କୌଣସି ଗୋଟିକରେ ମେଣ୍ଟେ ନାହିଁ । ପ୍ରତିମୁହୂର୍ତ୍ତରେ ଜଗତର ଯେଉଁ ଅବିରାମ ପରିବର୍ତ୍ତନ ଘଟୁଛି, ତାହାରି ଧାରାରେ ମନ ଓ ଜଗତ୍ ଦୁହେଁ ସଂପୃକ୍ତ ହୋଇ ଗୋଟାଏ ଚିରନ୍ତନ ମାୟାଜାଲକୁ ଧାରଣ କରିଛନ୍ତି । ଏହି ମାୟାପାଶକୁ ତ୍ୟାଗ କରି ନପାରି ମନ ସର୍ବଦା ଜଗତର ଢେଉ ଉପରେ ଉଦ୍‌ବେଳିତ ହେଉଥାଏ । ଆତ୍ମ, ପର ଦୁଇଟା ଭାବ ଘେନି ଏହା ସର୍ବଦା ଗୋଟାଏ ତୁମୁଳ ସଂଗ୍ରାମରେ ବ୍ୟାପୃତ ରହିଛି । ଆଧୁନିକ ସଭ୍ୟତାର ଆବରଣ ଆଜି ଏହି ସଂଘର୍ଷରେ ତାର ନଗ୍ନରୂପ ପ୍ରକାଶ କରୁଛି ବୋଲି ନିଃସନ୍ଦେହରେ କୁହାଯାଇପାରେ । ସଭ୍ୟ ମାନବ ତା ପ୍ରଗତିର ସୀମା ନିରୂପଣ କରିବାକୁ ଯାଇ ବର୍ତ୍ତମାନ ଗୋଟାଏ ଅଧୋଗତିର ସୂଚନା ଦେଲାଣି । ସ୍ୱାର୍ଥର ବନ୍ଧନ ବ୍ୟକ୍ତିବିଶେଷଠାରୁ ଆରମ୍ଭ କରି ସମଗ୍ର ମାନବଜାତି ଉପରେ ଏପରିଭାବରେ ଦୃଢ଼ ହେଲାଣି ଯେ, ସେଥିରେ ମନୁଷ୍ୟର ଦୃଷ୍ଟିରେଖା ଆଉ ବେଶି ଦୂରକୁ ଯାଇପାରୁନାହିଁ । ଅହଂସାର ପୁଣ୍ୟପୀଠରେ ହିଂସାର ବଜ୍ରଧ୍ୱନି ପ୍ରକମ୍ପିତ ହେଲାଣି । ମନୁଷ୍ୟ ବୁଝିପାରୁ ନାହିଁ, ବର୍ତ୍ତମାନ ତାର ଗତି କେଉଁଆଡ଼େ ଯାଉଛି । ସ୍ନେହ ଓ କାରୁଣ୍ୟର ଚିହ୍ନ ଆଉ ତାର ପ୍ରାଣକୁ ସ୍ପର୍ଶ କରୁ ନାହିଁ । ଅନ୍ତରର କୋମଳତାରେ ନୀଚ ସ୍ୱାର୍ଥପରତାର ବିଷ ଲାଗି ଯେଉଁ ହଳାହଳ ଉଦ୍‌ଗୀରଣ କରୁଅଛି, ସେଥିରେ କର୍କଶତାର ଚଣ୍ଡ ଛବି ପ୍ରକାଶ ପାଉଅଛି । ମନୁଷ୍ୟର ଉଗ୍ର, ନିର୍ମମ କ୍ରିୟା ସମ୍ମୁଖରେ ହୃଦୟର ଭାବପ୍ରବଣତା ଶୁଷ୍କ ହୋଇଗଲେ ଶାରୀରିକ ସୁଖସମ୍ଭୋଗ ତା ଜୀବନର ଏକମାତ୍ର ଲକ୍ଷ୍ୟ ହୋଇପଡ଼େ । ସଂସାରକୁ ସେ ଭିନ୍ନ ଦୃଷ୍ଟିରେ ଦେଖେ, ନିଜର ସ୍ୱାର୍ଥ-ସଂଶ୍ଳିଷ୍ଟ ସୀମା ମଧ୍ୟରେ ଯାହା ଆସି ପାରିବ ନାହିଁ, ତାକୁ ସେ ଗ୍ରହଣ କରିବାକୁ ପଶ୍ଚାତ୍‌ପଦ ହୁଏ । ଏପରି କି ସ୍ନେହର ବନ୍ଧନରେ ଯାହା ସହିତ ଦିନେ ନିଜକୁ ମିଶାଇ ଦେଇଥାଏ, ତାକୁ ପୁଣି ଅଜାଣତରେ ଭୁଲିଯାଏ । ଜଗତର ସଂଖ୍ୟାତୀତ ଘଟଣାରାଶି, ଢେଉ ପରି ଗୋଟିକ ପରେ ଗୋଟିଏ ଆସି ଜୀବନରେ ଆଘାତ ଦେଇଯାନ୍ତି । ଦୁର୍ବଳ ମାନବ ଆତ୍ମପର ଭାବ ଘେନି କେତେବେଳେ କେଉଁ ଘଟଣାକୁ ଆଶ୍ରୟ କରି ଜୀବନ ଅତିବାହିତ କରେ, ତହିଁର କିଛି ଠିକଣା ରହେ ନାହିଁ । ଆଜି ଯାହାକୁ ଅନ୍ତରର ସହିତ ଭଲ ପାଉଛି, ହୁଏ ତ କାଲିକି ତାକୁ ପରମ ଶତ୍ରୁ ବୋଲି ଜ୍ଞାନ କରିବ । ପ୍ରତ୍ୟକ୍ଷ ଘଟନାମାନଙ୍କରେ ଏଥିର ଯଥେଷ୍ଟ ପ୍ରମାଣ ମିଳେ । ମନର ଚଞ୍ଚଳତା ନ ଥିଲେ ଜଗତର କ୍ଷୁବ୍‌ଧତା ଏପରି ସ୍ପଷ୍ଟ ହୁଅନ୍ତା ନାହିଁ । ମନୁଷ୍ୟ ଅଧିକାଂଶ ସମୟରେ ଯେଉଁ ଅତ୍ୟଧିକ ସ୍ନେହ-ପ୍ରବଣତା ଦେଖାଇଥାଏ, ସେଥିରେ କୃତ୍ରିମତା ପ୍ରଚ୍ଛନ୍ନଭାବରେ ଥାଏ କିମ୍ବା ଆତ୍ମତୃପ୍ତିବିଧାନ ପାଇଁ କୌଣସି ଗୋଟାଏ ସାଂସାରିକ ଅବଲମ୍ବନର ଆଶ୍ରୟ ଗ୍ରହଣ କରାଯାଇଥାଏ । ଯେ ଜିନିଷଟା ଜାଗତିକ ନୁହେଁ, ତାକୁ ଜଗତର ବେଷ୍ଟନୀ ମଧ୍ୟରେ ବିକଶିତ କରାଇବା ସହଜ ନୁହେଁ ଓ ସେଥିରୁ ପ୍ରକୃତ ଆନନ୍ଦ ପାଇବା ଗୋଟାଏ ଦୁରାକାଙ୍‌କ୍ଷା । ବିଜୟୀର ବିଜୟୋଲ୍ଲାସ, ପ୍ରଣୟୀର ପ୍ରଣୟୋଚ୍ଛ୍ୱାସ ସବୁ ଗୋଟାଏ ଗୋଟାଏ କ୍ଷଣିକ ଉନ୍ମାଦନା । ଏଥିରେ ଆନନ୍ଦର ସ୍ପର୍ଶ ମାତ୍ର ଥାଇପାରେ । ଅନ୍ଧକାର ରାତ୍ରିରେ ବିଜୁଳିର ଚମକ ପରି ଏହା ମନୁଷ୍ୟ ମନରେ ଗୋଟାଏ ତୀବ୍ର ଆଶା ଜାଗ୍ରତ କରି ଅନ୍ତର୍ହିତ ହୋଇଯାଏ । ଆଲୋକ ହଠାତ୍ ଜଳିଉଠି ଲିଭିଗଲେ ଯେପରି ଅନ୍ଧକାରର ଗାଢ଼ତା ବଢ଼ିଗଲା ପରି ଜଣାଯାଏ, ସେହିପରି ମନୁଷ୍ୟ ଅନେକ ସମୟରେ ଆକସ୍ମିକ ପ୍ରେରଣାର ବଶବର୍ତ୍ତୀ ହୋଇ ବଡ଼ ବ୍ୟଗ୍ର ହୋଇଉଠେ ଜଗତକୁ କିଛି ଦେଖାଇ ଦେବ ବୋଲି । କିନ୍ତୁ ପରିଣାମଟା ଅନ୍ୟପ୍ରକାର ହୋଇଯାଏ । ଜଗତକୁ ଦେଖାଇବ କଣ, ସେ ନିଜେ କିଛି ଦେଖିପାରେ ନାହିଁ । ଆଲୋକରୁ ଆସି ଅନ୍ଧକାରରେ ନିଜର ପଥ ସୁଦ୍ଧା ଚିହ୍ନି ପାରେ ନାହିଁ । ଏପରି ଭ୍ରମ ଘଟିବା ସମ୍ପୂର୍ଣ୍ଣ ସ୍ୱାଭାବିକ । ବସ୍ତୁମୋହର ଆକର୍ଷଣରେ ବିରାମରେ

ମୁହୂର୍ତ୍ତିକ ପାଇଁ ଯେଉଁ ଚେତନା ଆସେ, ତାହା ମନୁଷ୍ୟକୁ ଚିରକାଳ ପଥ ଦେଖାଇପାରେ ନାହିଁ; ତେଣୁ ଏହି ବିରାମ ପରେ ତା ପ୍ରାଣର କ୍ଷୁବ୍ଧତା ଆହୁରି ବଢ଼ିଯାଏ—କେତେବେଳେ ନୈରାଶ୍ୟର ଅନ୍ଧକାର ବାତ୍ୟା ସୃଷ୍ଟି କରି ହୃଦପ୍ରଦ ଚମକ ଆଣେ, କେତେବେଳେ ଅବା ଆଶାର ମୃତ୍ୟୁସଞ୍ଜୀବନୀ ଦୀପ୍ତି ଆଣି ତାକୁ ଉଦ୍‌ବୁଦ୍ଧ କରେ । ମାୟାର ବନ୍ଧନରେ ଆଶା ଓ ନୈରାଶ୍ୟର ଏହିପରି ବ୍ୟବଧାନ ଚିରକାଳ ରହିବ । ପ୍ରବଳର ଶକ୍ତି ପରୀକ୍ଷା ପାଇଁ ଏହାର ଉତ୍ପତ୍ତି ।

ମନୁଷ୍ୟ ଯେତେ ଦିନ ପର୍ଯ୍ୟନ୍ତ ନିଜକୁ କେନ୍ଦ୍ର କରି ବସ୍ତୁଜଗତକୁ ପରିଧିସ୍ୱରୂପ ଧରିଥିବ, ସେତେ ଦିନ ଯାଏ ତାକୁ ମୁକ୍ତିର ପୂର୍ଣ୍ଣ ସନ୍ଧାନ ମିଳିବ ନାହିଁ । ରାଜନୀତି, ସମାଜନୀତି ଓ ଧର୍ମନୀତି ଯେତେ ଉନ୍ନତ ହେଲେ ସୁଦ୍ଧା ଯଦି ଗୋଟାଏ ସୀମା ମଧ୍ୟରେ ରହିଯାଏ, ତାହାହେଲେ ତାହା ଅନ୍ତହୀନ ମୁକ୍ତିପଥରେ ବିରୋଧ ଜନ୍ମାଏ । ସୀମାସୃଷ୍ଟ ସଙ୍କୀର୍ଣ୍ଣତା ଯୋଗ ଜଗତରେ ନାନା ବିପ୍ଳବର ସୂତ୍ରପାତ ହୁଏ । ପ୍ରତ୍ୟେକ ବିପ୍ଳବ ମୂଳରେ ବସ୍ତୁଲିଭର ମାୟା ମନ ଓ ଜଗତକୁ ଏପରି ଦୃଢ଼ଭାବରେ ବାନ୍ଧି ଦେଇଥାଏ ଯେ, ସେଥିରେ ସ୍ୱତଃ ଗୋଟାଏ ପରିସର କ୍ରମଶଃ ବିସ୍ତୃତ ହୋଇ ଅପର ସୀମାକୁ ଆକ୍ରମଣ କରେ; ତେଣୁ ସଂଘର୍ଷ ଅନିବାର୍ଯ୍ୟ ହୁଏ । ନୀତି ସୀମାବଦ୍ଧ ହେଲେ ସୁଦ୍ଧା ଶକ୍ତି ସଂରକ୍ଷଣରେ ଯଥେଷ୍ଟ ସହାୟତା କରେ । ଯେପରି ବୈଜ୍ଞାନିକ ଶକ୍ତିଶାଳାରେ ଶକ୍ତିସଂଚୟ ପାଇଁ ଗୋଟିଏ ସ୍ଥାନ ନିରୂପିତ ହୋଇଥାଏ ଓ ସେଠାରୁ ସେହି ଶକ୍ତି ଭିନ୍ନ ଭିନ୍ନ ସ୍ଥାନକୁ ପ୍ରେରଣ କରାଯାଇ ଅଦ୍ଭୁତ କାର୍ଯ୍ୟ ସମ୍ପାଦିତ ହୁଏ, ସେହିପରି ମନୁଷ୍ୟର ମନ ନୀତିର ପରିଖାରେ ଆବଦ୍ଧ ହେଲେ ଜାଗତିକ କାର୍ଯ୍ୟଗୁଡ଼ିକ ସୁସମ୍ପନ୍ନ ହୁଏ । ମନକୁ ଜଗତଠାରୁ ସମ୍ପୂର୍ଣ୍ଣରୂପେ ବାଦ୍ ଦେଲେ ମାୟାର ପ୍ରହେଳିକା ଅନ୍ତର୍ହିତ ହୋଇଯାଏ ଓ ମନୁଷ୍ୟର କର୍ମଭୂମି ବୋଲି କିଛି ରହେ ନାହିଁ । ମନ ଓ ଜଗତର ସମ୍ପର୍କ ବ୍ୟବଧାନଗତ ହେଲାକ୍ଷଣି ଏହା ପୁଣି ମନୁଷ୍ୟକୁ ଭୁଲାଇ ଦିଏ । ମନୁଷ୍ୟ ପ୍ରଥମ ଦୃଷ୍ଟି-ସଂଚାଳନରେ ଜଗତକୁ ଯେପରି ଦେଖିଥାଏ, ତାହା ପୁଣି ଅଳ୍ପ କାଳ ମଧ୍ୟରେ ଭିନ୍ନ ଆକାର ଧାରଣ କରେ । ବ୍ୟବଧାନ ଓ ପରିବର୍ତ୍ତନ ମାୟାର ପ୍ରଭାବକୁ ପରାଭୂତ କରିପାରେ ନାହିଁ । ବରଂ ମନୁଷ୍ୟ ବୟସର ବୃଦ୍ଧି ଓ ଆୟୁର କ୍ଷୀଣତା ସଙ୍ଗେ ଜଗତ୍ ପ୍ରତି ବେଶି ଆକୃଷ୍ଟ ହୁଏ ।

କର୍ମ ଜଗତର ସ୍ଥିତି ପାଇଁ ମାୟିକ ବନ୍ଧନର ଅତ୍ୟନ୍ତ ଲୋଡ଼ା । ନିଃସ୍ୱାର୍ଥ କର୍ମସମ୍ପାଦନ ଜଗତରେ କେହି ପ୍ରାୟ କରେ ନାହିଁ । ମାୟାର ଆକର୍ଷଣ ସ୍ୱାର୍ଥସଂଶ୍ଳିଷ୍ଟ ହୋଇ ମନୁଷ୍ୟ ମନରେ କର୍ମପ୍ରେରଣା ଜନ୍ମାଇଦିଏ ଓ ସାଧନାର ନିମ୍ନ ସ୍ତରସବୁ ଆସ୍ତେ ଆସ୍ତେ ତା ଦୃଷ୍ଟିସମକ୍ଷରେ ପଡ଼େ । ଆକର୍ଷଣର ତାରତମ୍ୟ ଅନୁସାରେ ମନୁଷ୍ୟ ସମାଜରେ ସାନ କମ୍ବା ବଡ଼ ବୋଲି ବିବେଚିତ ହୋଇଥାଏ । ସଙ୍କୀର୍ଣ୍ଣ ପାରିବାରିକ ଓ ବିସ୍ତୀର୍ଣ୍ଣ ମାତୃଭୂମିର ସୀମା ମଧ୍ୟରେ କର୍ମୀର ଦୁଇଟି ପରସ୍ପର ବିରୋଧୀ ଅସାଧାରଣ ଆଚରଣ ଦେଖାଯାଇପାରେ; କିନ୍ତୁ ସେଭଳି କର୍ମୀଙ୍କର ସଂଖ୍ୟା ଅତି କମ୍ । ସାଧାରଣତଃ ମନୁଷ୍ୟର ଦୃଷ୍ଟିରେଖା ଗୋଟିଏ କ୍ଷେତ୍ର ମଧ୍ୟରେ ପ୍ରବେଶ କଲେ ସେଥିରୁ ସହଜରେ ବାହାରି ଯାଇପାରେ ନାହିଁ । ଏଥିପାଇଁ ଆଜି ସମାଜରେ ଏତେ ଶ୍ରେଣୀ-ବିଭାଗ ଘଟିଅଛି । ଉଚ୍ଚ ନୀଚ ଭେଦ-ଭାବ ସଙ୍କୀର୍ଣ୍ଣ ମନର ପରିଚୟ ଦେଲେ ସୁଦ୍ଧା ତାକୁ ସମାଜର ଗଣ୍ଡିରୁ ବାହାର କରି ଦିଆଯାଇ ପାରିବ ନାହିଁ ।

ଶକ୍ତିର ବିନାଶ ଘଟେ ନାହିଁ । ଗୋଟିଏ ଆଧାରରେ ଏହା ପୂର୍ଣ୍ଣରୂପେ କମ୍ବା ଚିରକାଳ ପାଇଁ ବିକାଶ ପାଇ ନ ପାରେ । ଶକ୍ତିର ବର୍ତ୍ତମାନତା ଗ୍ରହଣ କଲେ ମାୟାର ପ୍ରଭାବକୁ ମଧ୍ୟ ଅସ୍ୱୀକାର କରାଯିବ । ଅନେକେ କହିଥାନ୍ତି, ମାୟାଗ୍ରସ୍ତ ଆଧାରର କିଛି ନିଜସ୍ୱ ରହେ ନାହିଁ । ଗୋଟିଏ ଜଡ଼ତା ତାକୁ ଗ୍ରାସକଲା ପରି ଜଣାଯାଏ । ଚୈତନ୍ୟର ଉନ୍ମେଷ ଉପରେ ଆଧାରର ବିଶେଷତ୍ୱ ନିର୍ଭର କରେ । ଯେଉଁଠି ଉନ୍ମେଷ କମ୍ କମ୍ବା ଆଦୌ ନାହିଁ, ସେଠାରେ ମାୟାର ପ୍ରଭାବ ମଧ୍ୟ ସେହିପରି ହୋଇଥାଏ । ମାୟିକ କ୍ରିୟାମାନଙ୍କୁ ମଧ୍ୟ ଶକ୍ତି ବିରହିତ ବୋଲି କୁହାଯାଇ ନ ପାରେ । ଚୈତନ୍ୟ ଓ ଶକ୍ତି ଅବିଚ୍ଛେଦ୍ୟ । ଗୋଟିଏ ସୂକ୍ଷ୍ମ ହେଲେ ଅପରଟି ସ୍ଥୂଳ ବୋଲି ଧରାଯାଇପାରେ । ଗୋଟିକୁ ବାଦ୍ ଦେଲେ ଅନ୍ୟଟିର କଳ୍ପନା କରିବା ସହଜ ନୁହେଁ । ଜଗତରେ ସବୁ ଆଧାରରେ ଏ ଦୁହିଁଙ୍କର ସମାନ ଭାବରେ ମିଳନ ପରିଲକ୍ଷିତ ହୁଏ ନାହିଁ । ମିଳନର ବିଭ୍ରାଟରେ ମାୟାର ସୃଷ୍ଟି; ସୁତରାଂ ସୂକ୍ଷ୍ମଦୃଷ୍ଟିରେ ଦେଖିବାକୁ ଗଲେ, ମାୟିକ ପ୍ରଭାବର ଜଡ଼ତ୍ୱ ପ୍ରମାଣ କରିବା ଗୋଟାଏ ଅସାର କଥା । କୌଣସି ଆଧାରରେ ଚୈତନ୍ୟର ନ୍ୟୂନତା ଦେଖି ଜଡ଼ତାର ଆଖ୍ୟା ଦେବା ସମୀଚୀନ ନୁହେଁ ।

ଅଗ୍ନିକଣାକୁ କଦାପି ସାମାନ୍ୟ ମନେ କରିବା ଉଚିତ ନୁହେଁ । ଏହାର ମୁହୂର୍ତ୍ତିକର ସ୍ଫୁରଣରେ ବିଶାଳ ନଗରର ଧ୍ୱଂସ ସାଧିତ ହୋଇପାରେ । ଆଜ ଯାହାକୁ ଲୋକସମାଜରେ ହୀନ, ଅପଦାର୍ଥ, ଏପରି କି ଜଡ଼ ବୋଲି ବୁଝାଯାଉଅଛି, କାଲି ହୁଏତ ସେ ଯେଉଁ ରଶ୍ମି ବିକୀରଣ କରିବ, ସେଥିରେ ଜଗତର ମହା ପରିବର୍ତ୍ତନ ଘଟିଯାଇ ପାରେ । ଚୈତନ୍ୟ ଓ ଶକ୍ତିର ସମ୍ୟକ୍ ବିକାଶ ପାଇଁ ଆଧାରର ଟିକିଏ ବିଶିଷ୍ଟତା ଥିବା ଦରକାର । ବିଶିଷ୍ଟତା ଦଗରୁ ଦେଖିଲେ ଚୈତନ୍ୟର ପ୍ରଭାବ ଶକ୍ତିଠାରୁ ଭିନ୍ନ ବୋଲି ଅନୁମିତ ହୋଇପାରେ; କିନ୍ତୁ ଗୋଟିଏ ଯେ ଅପରଟିର ପରିପୂରକ, ଏ କଥା ଯେପରି ଭ୍ରମ ନ ହୁଏ । ଏ ଦୃଷ୍ଟିକୁ ଛାଡ଼ିଦେଲେ ଆଧାରର କଥା ଦୂରେ ଥାଉ, ସମସ୍ତ ବିଶ୍ୱର ଅସ୍ତିତ୍ୱ ଏକ ମୁହୂର୍ତ୍ତରେ କେଉଁଆଡ଼େ ଲୀନ ହୋଇଯିବ । କେବଳ ଶକ୍ତିର ବିକାଶରେ ମାୟାର ସମ୍ଭୂତ ହୁଏ ନାହିଁ । ଜଗତ-ସଂସ୍ପର୍ଶରେ ମନ ପ୍ରତିନିୟତ ଯେଉଁ ତରଙ୍ଗମାନଙ୍କର ଆଘାତ ଅନୁଭବ କରେ, ତାହା ଚୈତନ୍ୟ ଓ ଶକ୍ତିର ପରସ୍ପର ଆକର୍ଷଣର ଫଳ । ମାୟା ଏହି ଆକର୍ଷଣର ନାମାନ୍ତର ମାତ୍ର । "ବ୍ୟାରୋମିଟର" ବା ଯନ୍ତ୍ରମାନ ଯନ୍ତ୍ର ସାହାଯ୍ୟରେ ପ୍ରକୃତିର ସ୍ପନ୍ଦନତା ଆଗରୁ ସୂଚିତ ହେଲା ପରି ମାୟାର ବନ୍ଧନରେ ମନର ଗତି ଜଣାଯାଇ-ପାରେ । ଚୈତନ୍ୟର ଉନ୍ମେଷ ସଙ୍ଗେ ଶକ୍ତିର ବିକାଶ ମନର ଗୋଟାଏ ମହାପରିବର୍ତ୍ତନ ଘଟାଇ ଦିଏ ଓ ଏହାରି ବଳରେ ଜଣେ ଗଣନଗଣ୍ୟ ମାନବ ମଧ୍ୟ ଜଗତରେ ମହା ଶକ୍ତିମାନ୍ ବୋଲି ବିବେଚିତ ହୁଏ । ଅନେକ ସମୟରେ ମାୟାର ବନ୍ଧନ ହଠାତ୍ ଶିଥିଳ ହୋଇଯାଏ, ମନୁଷ୍ୟର ଶକ୍ତି ପରୀକ୍ଷା କରିବା ପାଇଁ ଅବସର ରହେ ନାହିଁ । ଏପରି ଘଟିବାର ରହସ୍ୟ ନିର୍ଣ୍ଣୟ ସହଜ ନୁହେଁ । କେହି କେହି ଶକ୍ତିର ସମ୍ୟକ୍ ଆଲୋଚନା ନ କରି ତାହାକୁ ମାୟାର ଆଖ୍ୟା ଦେଉଥାନ୍ତି । ମାୟା ଓ ଶକ୍ତି ମଧ୍ୟରେ ଗୋଟାଏ ପାର୍ଥକ୍ୟ ଅଛି । ସ୍ଥୂଳଦୃଷ୍ଟିରେ ତାହା ଦେଖାଯାଏ ନାହିଁ । ଚୈତନ୍ୟ ଓ ଶକ୍ତି ପରସ୍ପର ସହିତ ସଂଯୁକ୍ତ ଥାନ୍ତି; କିନ୍ତୁ ମାୟା ରହେ ସେମାନଙ୍କଠାରୁ ଦୂରରେ । ସେମାନଙ୍କୁ ଅନୁକରଣ କରି ମାୟା ଜଗତକୁ ଭିନ୍ନ ଚିତ୍ରରେ ଆଙ୍କି ଦିଏ ଓ ମନୁଷ୍ୟ ତାକୁ ଅନୁସରଣ କରି ପ୍ରାଣର ପିପାସା ମେଣ୍ଟାଇପାରେ ନାହିଁ । ନୀତିବାଦୀମାନେ ଗୋଟାଏ ସୀମା ମଧ୍ୟରେ ରହିଲେ ସୁଦ୍ଧା ଶକ୍ତିସଞ୍ଚୟ ପାଇଁ ଯେଉଁ ସୁବିଧା ପାଆନ୍ତି, ସେଥିରେ ସେମାନେ ଧନେ ମାୟାର ଆବରଣ ଉନ୍ମୋଚନ କରିବାକୁ ସମର୍ଥ ହୁଅନ୍ତି । ମାୟାବଦ୍ଧ ଜୀବ ପକ୍ଷରେ ମନୀଷୀମାନଙ୍କର ମତାନୁଯାୟୀ ପ୍ରାଥମିକ ଅବସ୍ଥାରେ କୌଣସି ଉନ୍ନତ ନୀତିର ଅନୁବର୍ତ୍ତୀ ହେବା ବାଞ୍ଛନୀୟ । ଅଗ୍ର ଓ ମୂଳ ବିଭିନ୍ନ ହେଲେ ସୁଦ୍ଧା ଯେପରି ଗୋଟିକର ଅଭାବରେ ବୃକ୍ଷର ପୂର୍ଣ୍ଣତା ଆସେ ନାହିଁ, ସେହିପରି ଚୈତନ୍ୟ ଓ ଶକ୍ତି ଏକ ଓ ଅଖଣ୍ଡ । ଶକ୍ତି-ସଂରକ୍ଷଣ ବିନା ମାୟାର ବନ୍ଧନ ତୁଟେ ନାହିଁ । ନଚେତ୍ ମନ କେବଳ ଏକ ମାୟାବିନୀର ସ୍ୱପ୍ନରାଜ୍ୟରେ ବିଚରଣ କରେ, ବାସ୍ତବତା ଚାଲିଯାଏ; ଆସେ ଗୋଟାଏ ଦୁରାକାଙ୍କ୍ଷା, ଯାହାର ତୃପ୍ତି ପାଇଁ ଜଗତ୍ ଶୂନ୍ୟ ଓ ଅସାର ବୋଧ ହୁଏ । ମନର ଯାବତୀୟ ଦୁର୍ବଳତା ଏହି ଶୂନ୍ୟତାରେ ଭାସି ଉଠି ମାୟାର ବନ୍ଧନକୁ ଆହୁରି ଦୃଢ଼ କରିଦିଏ ।

କର୍ମଜଗତ୍ ଓ ମାୟାର ସମ୍ପର୍କରେ ମନର ଗତି ଅନୁସରଣ କରିବା ବ୍ୟାରୋମିଟର 'ଗଜ୍ଞ' ପରି ସହଜ ନୁହେଁ । ମନ ବଡ଼ ଚଞ୍ଚଳ ବୋଲି ନୀତିବାଦୀମାନେ ଏହାର ସଂଯମ ପାଇଁ ନୀତି-ମାର୍ଗ ସ୍ଥିର କରିଦେଇଅଛନ୍ତି । କେବଳ ନୀତି-ମାର୍ଗ ଅବଲମ୍ବନ କଲେ ଏହା ଚରମ ସୋପାନରେ ପହଞ୍ଚିପାରେ ନାହିଁ; କାରଣ ମାୟାର ବିଭୀଷିକା ଏହାକୁ ସର୍ବଦା ଅନୁସରଣ କରି ଚାଲିଥାଏ । ଜଗତର ବେଷ୍ଟନୀ-ମଧ୍ୟରେ ମାୟାର ପ୍ରଭାବ ଏତେ ବେଶି ଯେ, ମନ ଜଗତର ସୀମା ଅତିକ୍ରମ ନ କରିବା ଯାଏ ମାୟାପ୍ରପଞ୍ଚରୁ ଅବ୍ୟାହତି ପାଏ ନାହିଁ । ଶ୍ରେଷ୍ଠ ଧର୍ମ-ନୀତି ତ୍ୟାଗର ମହନୀୟ ଆଦର୍ଶ ଦେଖାଇ ମନୁଷ୍ୟର ମନକୁ ଜଗତର ବାହାରକୁ ନେଇଯାଏ; କିନ୍ତୁ ସଂସାରରେ ଥାଇ ଏପରି ନିର୍ଲିପ୍ତ ଭାବେ ଜୀବନ ଯାପନ କରିବା କେତେ ଜଣଙ୍କ ପକ୍ଷରେ ସମ୍ଭବ ହୋଇପାରେ ? ଜନକ ଜନନୀର ସ୍ନେହ, ପ୍ରଣୟିନୀର ପ୍ରଣୟ, ସନ୍ତାନ ପ୍ରତି ବାତ୍ସଲ୍ୟ ଭୁଲିଯାଇ ତ୍ୟାଗର କଠିନ ମାର୍ଗରେ ଅଗ୍ରସର ହେବା ସାଧାରଣ ମନୁଷ୍ୟର ଧାରଣାର ବହିର୍ଭୂତ ହୋଇପଡ଼େ । ଅବଶ୍ୟ ଜ୍ଞାନୀ ସୋଽହଂବାଦୀଙ୍କର କଥା ସ୍ୱତନ୍ତ୍ର । ତାଙ୍କର ଅନ୍ତରରୁ ପ୍ରେମର ଯେଉଁ ମନ୍ଦାକିନୀ ବହୁଥାଏ, ସେଥିରେ ଜଗତର ଆବିଳତା ଆଦୌ ସ୍ପର୍ଶ କରିପାରେ ନାହିଁ । ସେ ସାଧାରଣ ସାଧନା-ମାର୍ଗର ବହୁ ଦୂରକୁ ଚାଲିଯାନ୍ତି । ତାଙ୍କର ଆଦର୍ଶରେ କ୍ଷୁବ୍ଧ ପ୍ରାଣ ସାନ୍ତ୍ୱନା ପାଇପାରେ; କିନ୍ତୁ ତାଙ୍କ ମାର୍ଗରେ ଗତି କରିବା ବୃଥା ପ୍ରୟାସ ପରି ଜଣାପଡ଼େ । ସ୍ନେହ, ପ୍ରେମ ଓ ବାତ୍ସଲ୍ୟ ମାୟା ପ୍ରଭାବରୁ ସଂସାରୀ ଦୃଷ୍ଟିରେ ଭିନ୍ନରୂପେ ପ୍ରତୀୟମାନ ହୁଏ; କିନ୍ତୁ ବାସ୍ତବିକ ତାହା ନୁହେଁ । ସେମାନେ ଏକ ଅମୃତ ଉତ୍ସରୁ ବାହାରି ତିନି ଦଗରେ ପ୍ରବାହିତ ହେଲା ପରି ଜଣାଗଲେ ସୁଦ୍ଧା ଶେଷରେ ଆନନ୍ଦର ତ୍ରିବେଣୀସଙ୍ଗମରେ ଏକ ହୋଇଯାନ୍ତି । ଉତ୍ପତ୍ତି ଓ ପରିଣତି ସବ

ଏକ ହେଲ, ତାହାହେଲେ ଭିନ୍ନତା ଆସିଲା କେଉଁଠାରୁ ? ମାୟାର ପ୍ରହେଳିକା ସେହି ଅମୃତଧାରାକୁ ବିଭିନ୍ନ ଚକ୍ଷରେ ଆଙ୍କିଦିଏ; କିନ୍ତୁ ମନୁଷ୍ୟ ତାକୁ ବୁଝିପାରେ ନାହିଁ । ମାୟାର ତୂଳିକା ସମସ୍ତଙ୍କ ପାଇଁ ସମାନ ଭାବରେ ଚକ୍ଷ ଆଙ୍କେ ନାହିଁ । ଯାହାର ପ୍ରାଣକୁ ଯେପରି ଭାବରେ ସ୍ପର୍ଶ କରିବ, ସେ ସେହିପରି କୌଶଳ ଅବଲମ୍ବନ କରେ । ଜଗତର ବିଶାଳତାକୁ ତାର ଇନ୍ଦ୍ରଜାଲ ଘେରି ରହିଛି । ମନର ଦୁର୍ବଳତାରେ ତା ଚକ୍ଷର ଉତ୍କର୍ଷ ସାଧିତ ହୁଏ । ସମସ୍ତ ସମୟରେ ମାୟାର ବନ୍ଧନ ମନ ଉପରେ ଅଧିମାତ୍ରାରେ ପ୍ରଭୁତ୍ୱ ବିସ୍ତାର କରିବାକୁ ଯାଇ ଏପରି ଗୁରୁ ଆଘାତ ଦିଏ ଯେ, ମନୁଷ୍ୟର ଉଦ୍ଧ୍ୱାରି ଗୋଟାଏ ଚେତନା ଆସେ । ମାୟାର ମୋହ ଆଉ ତାକୁ ଭୁଲାଇ ରଖିପାରେ ନାହିଁ । ଅନ୍ତରରେ କେତେ ଆଘାତ ଲାଗୁଛି; କିନ୍ତୁ ଗୋଟିଏ ବିଶିଷ୍ଟ ଆଘାତର ଧ୍ୱନିରେ ହୃଦୟକନ୍ଦର ଚିରଦିନ ପାଇଁ ସ୍ପନ୍ଦିତ ହେବାକୁ ଲାଗିଲେ ସେହି ସ୍ପନ୍ଦନରେ ମାୟାର ବନ୍ଧନ ଆସ୍ତେ ଆସ୍ତେ ଛିଣ୍ଡିଯାଏ । ଅନେକ ସମୟରେ ରଜ୍ଜୁକୁ ଶକ୍ତ କରୁ କରୁ ଯେପରି ହଠାତ୍ ଛିଣ୍ଡିଯାଏ, ସେହିପରି ମାୟାର ବନ୍ଧନ ଅତି ଦୃଢ଼ ହୋଇଗଲେ ଛିଣ୍ଡିଯିବା ସ୍ୱାଭାବିକ ହୋଇପଡ଼େ । ସେଥିଯୋଗୁଁ ମାୟା-ପାଶରେ ମନର ଗତିକୁ ନିୟନ୍ତ୍ରିତ କରିବା ପାଇଁ ସଂଯମ ଆବଶ୍ୟକ ।

ମାୟିକ ପ୍ରେରଣାରୁ ଆତ୍ମପର ଭାବର ସୃଷ୍ଟି ଓ ସଂଘର୍ଷର ଦୃଷ୍ଟି । ଜୀବଜଗତ୍ ସଙ୍ଗେ ଏହା ଏପରି ଘନିଷ୍ଠ ଭାବେ ସଂଶ୍ଳିଷ୍ଟ ଯେ, ଏହାକୁ ବାଦ ଦେଲେ ଜୀବତ୍ୱର ସତ୍ତା ବଡ଼ କ୍ଷୀଣ ଜଣାଯାଏ । କିନ୍ତୁ ମନୁଷ୍ୟତ୍ୱର ଉନ୍ନତ ପରିଣତିରେ ଏହାର ସେପରି ପ୍ରଭାବ ନାହିଁ କହିଲେ ଚଳେ । ଅନ୍ୟାନ୍ୟ ଜୀବମାନଙ୍କ ସଙ୍ଗେ ମନୁଷ୍ୟର କେତେକ ପରିମାଣରେ ସାମଞ୍ଜସ୍ୟ ଥିଲେ ସୁଦ୍ଧା ତା ଅଗ୍ରଗତିରେ ଏହା ଆସ୍ତେ ଆସ୍ତେ ଲୋପ ପାଇଯାଏ । ସାଧାରଣ ମନୁଷ୍ୟ-ଜୀବନର ଆଲୋଚନାରୁ ଉପର୍ଯ୍ୟୁକ୍ତ ବିଷୟର ସାରବତ୍ତା ଜଣାଇପାରେ । କ୍ରୀଡ଼ାରତ ଶିଶୁ ଜୀବନର ଘଟଣାବଳୀକୁ ଯେ ଚକ୍ଷୁରେ ଦେଖେ, ସ୍ଥବିର ସେପରି କାହିଁକି ଦେଖେ ନାହିଁ ? ଏପରି ପାର୍ଥକ୍ୟ କାହିଁକି ସ୍ୱତଃ ଜୀବନକୁ ଅଧିକାର କରି ବସେ ? ମନୁଷ୍ୟତ ସାରା ଜୀବନଟା କ୍ରୀଡ଼ାକୌତୁକରେ କଟାଇଦେଇପାରନ୍ତା; କିନ୍ତୁ କାହିଁକି ସବୁଦିନେ ସେପରି ଆସ୍ୱାଦ ତାର ଆସେ ନାହିଁ ? ଏ ସମସ୍ତ ପ୍ରଶ୍ନର ଉତ୍ତରରେ ମନର କାର୍ଯ୍ୟକାରୀ ଶକ୍ତିକୁ ଗ୍ରହଣ କରାଯାଇପାରେ । ସାରା ଦୁନିଆଟା ଏହାଦ୍ୱାରା ଚାଳିତ । ସଂସାରରେ ଯେତେ ଅସାମଞ୍ଜସ୍ୟ ଓ ବିରୋଧ ଦେଖାଯାଉଛି, ସମସ୍ତଙ୍କ ମୂଳରେ ମନର ପ୍ରଚ୍ଛନ୍ନ ପ୍ରଭାବ ଅଛି । ସଂଘର୍ଷର ପ୍ରଳୟ ତାଣ୍ଡବରେ କିମ୍ବା ଶାନ୍ତିର ସୁଷୁପ୍ତିରେ ଏହା ସର୍ବଦା ଜାଗ୍ରତ ଅଛି । ମନକୁ ଯେବେ କର୍ମ-ଜଗତ୍ ଯେଉଁ ଅସମାନତା ଓ ବୈଧତା ଦୃଷ୍ଟି କରୁଅଛି, ସେଥିପାଇଁ ମାୟା ଦାୟୀ । ମନ ଜଗତ୍ ସହିତ ମାୟାବନ୍ଧନରେ ବାନ୍ଧି ହୋଇଅଛି ବୋଲି ଆଜି ଏତେ ପରିବର୍ତ୍ତନ, ନୂତନତ୍ୱ ଓ ଆତ୍ମପର ଭାବର ସଂଘର୍ଷ ଲାଗି ରହିଛି । ନଚେତ୍ ଗୋଟାଏ ବିରାଟ ସମାନତାରେ ସବୁ ସମାନ ହୋଇ ରହିଥାନ୍ତା । ଭଲ, ମନ୍ଦ, ସୁନ୍ଦର, ଅସୁନ୍ଦର, ପ୍ରବଳ, ଦୁର୍ବଳର ପାର୍ଥକ୍ୟ ବୁଝିବାକୁ କେହି ଯାଆନ୍ତେ ନାହିଁ । ମନ ସଙ୍ଗେ ଜଗତର ଏହି ଘନିଷ୍ଠ ସମ୍ପର୍କକୁ ଲକ୍ଷ୍ୟ କରି ଭାଗବତକାର କହିଛନ୍ତି—'ମନର ମୂଳେ ଏ ଜଗତ ।' ମାୟା ଅଧୀନରେ ମନର ସ୍ୱାତନ୍ତ୍ର୍ୟ ରହେ ନାହିଁ । ମାୟାର ପ୍ରଭାବ ମନ ଉପରେ ଯେପରି ଭାବେ ପଡ଼େ, ଭାବନାର ଗତି ତଦନୁଯାୟୀ ହୋଇଯାଏ । ଉନ୍ନତ ମାନବିକତାର ବିକାଶ ପାଇଁ ମାୟାର ଅନ୍ତରାୟକୁ ଛେଦନ କରାଯାଏ; କାରଣ ଜଗତର ବେଷ୍ଟନୀରେ ସବୁଦିନେ ଆବଦ୍ଧ ହୋଇ ରହିବା ପାଇଁ ମନୁଷ୍ୟ ଆସି ନାହିଁ । ଶିଶୁ ଚିରଦିନ ଶିଶୁ ହୋଇ ରହେ ନାହିଁ । ତାକୁ ସଂସାରପଥ ଅତିକ୍ରମ କରିବାକୁ ପଡ଼େ । ଜଗତ୍‌ର ଘଟଣାମାନଙ୍କର ଅଳୀକତା ଓ ଜୀବନର ଅଳସତା ଦେଖି ଅନେକେ ମୂହ୍ୟମାନ ହୋଇଯାନ୍ତି ଓ ପୁଣି କେତେକ ଚାର୍ବାକ ମତାବଲମ୍ବୀ ଜୀବନଟାକୁ ଫୁତ୍କାରରେ ଉଡ଼ାଇ ଦେବାକୁ ଚାହାଁନ୍ତି । ଏହି ଉଭୟଶ୍ରେଣୀଙ୍କ ମଧ୍ୟରେ ଜୀବନର ଉପାଦେୟତା କେହି ବୁଝନ୍ତି ନାହିଁ । ଜୀବନର ମହତ୍ତ୍ୱ ବୁଝିବାକୁ ହେଲେ ମନର ସ୍ଥିରତା ଆବଶ୍ୟକ । କ୍ଷଣିକ ଉନ୍ମାଦନା କିମ୍ବା ବିଷାଦ- କାଳିମା-ଅଭିଭୂତ ମାୟିକ ବିସ୍ତାର ଅଭିବ୍ୟକ୍ତିରୁ ମନର ପ୍ରକୃତ ଅବସ୍ଥା ଜଣାପଡ଼େ ନାହିଁ । ମନର ବିରାଟ ଅବସ୍ଥା ସାଧନା ଦ୍ୱାରା ଯେତେବେଳେ ଉନ୍ମୁକ୍ତ ହୋଇଯାଏ, ସେତେବେଳେ ବିଶ୍ୱର ବିଶାଳତା ସଙ୍ଗେ ମନୁଷ୍ୟର ସମ୍ବନ୍ଧ ଏକ ହୋଇଯାଏ; ଆଉ ତା ମନରେ ଆତ୍ମପର ଭାବ ରହେ ନାହିଁ ।

ବିଶ୍ୱସୌନ୍ଦର୍ଯ୍ୟ ଉପଲବ୍ଧି କରିବା ପଥରେ ମାୟାର ଅନ୍ତରାୟ ତୁଚ୍ଛ ନୁହେଁ । ବିଶ୍ୱ-ଚିତ୍ରଶାଳାରେ ଏହା ଗୋଟାଏ ରଙ୍ଗିନ୍ ମନଭୁଲାଣିଆ ପର୍ଦ୍ଦା ପରି ପଡ଼ିଥାଏ । ଏହାକୁ ଉନ୍ମୋଚନ କରିବାର କୌଶଳ ସମସ୍ତେ ଜାଣି ପାରନ୍ତି ନାହିଁ । ସେହି

ପର୍ଦ୍ଦା ନିକଟରୁ ଆତ୍ମବହିର୍ଭୂତ ହୋଇ ଫେରିଆସି ମାୟିକ କ୍ରିୟାକୁ ଖାଲି ଅସାର ମନେକଲେ କିମ୍ବା ଜଗତକୁ ମିଥ୍ୟା ବୋଲି କହିଲେ ସୁବିବେଚନା ହୁଏ ନାହିଁ । ବିରାଟ ମାୟାର ପରିକଳ୍ପନା ଦୂରେ ଥାଉ, ଚିତ୍ରକରର କଳାନୈପୁଣ୍ୟ, କବିର ଭାବୋଚ୍ଛ୍ୱାସ ଓ ସଙ୍ଗୀତର ପ୍ରାଣସ୍ପର୍ଶୀ ମୂର୍ଚ୍ଛନାରେ ଯେଉଁ ମୁଗ୍ଧତା ଥାଏ, ତାକୁ ସାଧାରଣ ସଂସାରବାସୀ ଗ୍ରହଣ କରିପାରେ ନାହିଁ । ବସ୍ତୁମୋହ ତାକୁ ସବୁବେଳେ ଭୁଲାଇ ରଖେ । ଅନ୍ତର କେବଳ ଗୋଟାଏ ଦୁର୍ଦ୍ଦମନୀୟ ଲିପ୍ସାର ଆକର୍ଷଣ ଅନୁଭବ କରେ । ଏ ଲିପ୍ସାର ନିବୃତ୍ତି ନ ହେବାଯାଏ ମନୁଷ୍ୟର ଅଗ୍ରଗତି ସମ୍ଭବ ହୁଏ ନାହିଁ । ସାମାନ୍ୟ ପାର୍ଥିବ ଲାଳସା ହୃଦୟକୁ ଏପରି ସଙ୍କୁଚିତ କରିଦିଏ ଯେ, ସେ ନିଜର ସ୍ୱାର୍ଥ ଛଡ଼ା ଅନ୍ୟ କିଛି ଭାବିବାକୁ ମନ ବଳାଏ ନାହିଁ । ଅତି ଅସ୍ଥାୟୀ ଓ ଦୁର୍ବଳ ଅବଲମ୍ବନକୁ ମନୁଷ୍ୟ ସବୁଠାରୁ ବଡ଼ ବୋଲି ଜ୍ଞାନ କଲେ ମନୁଷ୍ୟତ୍ୱର ଅବମାନନା ଘଟେ । ଜାଗତିକ କର୍ମ ସମ୍ପାଦନରେ ବିଘ୍ନ ସ୍ଥାନ କିଛି ନାହିଁ; କିନ୍ତୁ ଦୃଷ୍ଟିରେଖାର ପ୍ରସାରଣରେ ଏହା ଯେପରି ବାଧା ନ ଜନ୍ମାଏ, ସେଥିପ୍ରତି ସାବଧାନ ହେବା ଆବଶ୍ୟକ । କର୍ମଜଗତର ଘାତପ୍ରତିଘାତ ପ୍ରତି ମନ ଦେଲେ ମାୟାର ପ୍ରଭାବ ଜଣାଯାଏ । ଏହି ପ୍ରଭାବର ସମ୍ମୁଖୀନ ହୋଇ ମନୁଷ୍ୟ ଯେ ଶିକ୍ଷାଲାଭ କରେ, ତାହା ଜୀବନର ସରସତା ବଢ଼ାଇ ଦିଏ । ଅନ୍ତରର କୋମଳତାରେ କର୍କଶତାର ଆଘାତ, ସ୍ନେହର ପ୍ରତିଦାନରେ ଘୃଣା, ପ୍ରଣୟର ପ୍ରତିଦାନରେ ପ୍ରତ୍ୟାଖ୍ୟାନ, ସୌନ୍ଦର୍ଯ୍ୟର ବିନିମୟରେ ହୀନ ଲୋଲୁପତା ମନର ଗତିକୁ ଅତି ସହଜରେ ବଦଳାଇ ଦିଏ । ମାୟାମୁଗ୍ଧ ମାନବ ବୁଝିପାରେ ନାହିଁ ତାର ଦୁର୍ବଳତା କେଉଁଠି ଓ ସେ କାହାପାଇଁ ଏତେଦୂର ଲାଞ୍ଛିତ ଓ ଅବହେଳିତ; ମାୟିକକ୍ରିୟାର ପ୍ରତିକ୍ରିୟାରେ ମଧ୍ୟ ମନୁଷ୍ୟର ଉଦ୍‌ବୋଧନ ଆସିପାରେ ଓ ତଦ୍ଦ୍ୱାରା ସେ ମୁକ୍ତାବସ୍ଥା ପାଇ ପାରେ । ଏହା ଛଡ଼ା ଆଉ ଗୋଟିଏ ବିକାଶ-ମାର୍ଗ ଅଛି, ଯଦ୍ଦ୍ୱାରା ମନୁଷ୍ୟ ଦୁସ୍ତର ମାୟାବନ୍ଧନରୁ ଉନ୍ମୁକ୍ତ ହୋଇ ପାରେ । ଏଥିରେ ମାୟା ସଙ୍ଗେ ବିରୋଧ ଜନ୍ମିବାର ଅବକାଶ ରହେ ନାହିଁ । ମାୟା-ବଦ୍ଧ ମନୁଷ୍ୟ ଯେତେବେଳେ ଉଭୟ ପ୍ରହରୀ ଓ ବନ୍ଦୀର କାର୍ଯ୍ୟ କରେ, ସେତେବେଳେ ଜଗତ ତା ପକ୍ଷରେ ଗୋଟିଏ ସୁନ୍ଦର ଲୀଳାଭୂମି ହୁଏ ଓ ନିଜର ମୁକ୍ତ ଆତ୍ମାକୁ ସେ ନିଜେ ବନ୍ଧନ କରେ । କିନ୍ତୁ ଏପରି ଅବସ୍ଥା ଆସିବା ପୂର୍ବରୁ ମନର ଉପଯୁକ୍ତ ବିକାଶ ଆସିବା ଆବଶ୍ୟକ । ତାହା ନ ହେଲେ ଊଷର ଭୂମିରେ ବୀଜ ବପନ କଲାଭଳି ସବୁ ପ୍ରଯତ୍ନ ବୃଥା ହୋଇଯାଏ, ଗତି ପୁଣି ଉଜାଣି ବହିବାକୁ ଆରମ୍ଭ କରେ । ସବୁ ମନର ବିକାଶ ସମାନ ନୁହେଁ । ଅଳ୍ପ ବିକାଶର ସୂଚନା ମିଳିଲେ ତାକୁ ସାଧନାଦ୍ୱାରା ବଢ଼ାଇ ଦିଆଯାଇ ପାରେ; ମାତ୍ର ଉପଯୋଗୀ ପାରିପାର୍ଶ୍ୱିକ ଅବସ୍ଥା ଏଥିପାଇଁ ଏକାନ୍ତ ଲୋଡ଼ା । ଅନେକ ସମୟରେ ଅବସ୍ଥାର ବିପର୍ଯ୍ୟୟ ବିକାଶକୁ ସମୂଳେ ନଷ୍ଟ କରିଦେଇ ମନୁଷ୍ୟକୁ ଗୋଟାଏ ଅସହାୟ ଅବସ୍ଥାରେ ପକାଇ ଚାଲିଯାଏ । ସେ କେବଳ ଜଗତର ପ୍ରତି ତରଙ୍ଗ ଆଘାତରେ ଇତସ୍ତତଃ ହେଉଥାଏ । ଜଗତଟା ତା ପକ୍ଷରେ ଗୋଟାଏ ମରୀଚିକା ହୋଇଯାଏ । ଏହିପରି ସନ୍ଧିସ୍ଥଳରେ ତାକୁ ରକ୍ଷା ପାଇବାକୁ ହେଲେ ଜଣକର ଆଶ୍ରୟ ଲୋଡ଼ା ହୁଏ । ସେହି ଆଶ୍ରୟଦାତା ଯେ କେହି ଲୋକ ହେଲେ ଚଳିବ ନାହିଁ । ଅନ୍ଧକାରରୁ ଆଲୋକ ଓ ନଶ୍ୱରତାରୁ ଅନଶ୍ୱରତାର ସନ୍ଧାନ ଯଦି ସେ ପାଇଥିବେ, ତାହାହେଲେ ଏହି ଭ୍ରାନ୍ତ ମାନବକୁ ପଥ ଦେଖାଇ ପାରିବେ । ବିକାଶର ପଥ ସରଳ ହୋଇପାରେ; ମାତ୍ର ସାଧନାକୁ ବାଦ୍ ଦେଲେ ମାୟା ବନ୍ଧନରେ ଏହା ଆଚ୍ଛନ୍ନ ହୋଇ ପଡ଼େ । ଅନ୍ଧକାରମେଘାବୃତ ରଶ୍ମିରେଖା ପରି ଏହାର ଗୋଟିଏ ଅସ୍ପଷ୍ଟ ଜ୍ୟୋତି ଅଳ୍ପକାଳ ପାଇଁ ଦେଖାଦେଇ ଲୁଚିଯାଏ । ସାଧନାର ମାର୍ଗ ମଧ୍ୟ ଯାବତୀୟ ବିକାଶ ପାଇଁ ସମାନ ନୁହେଁ । ତେଣୁ ଜ୍ଞାନ, ଭକ୍ତି ଓ କର୍ମଦ୍ୱାରା ଏହି ମାର୍ଗ ସବୁ ସ୍ଥିରୀକୃତ ହୁଏ । ବିକାଶର ବୀଜ ପ୍ରତ୍ୟେକ ହୃଦୟରେ ନିହିତ ଅଛି; ମାତ୍ର କ୍ଷେତ୍ର ଓ କାଳର ତାରତମ୍ୟ ଅନୁସାରେ ଏହାର ଅଭିବ୍ୟକ୍ତି ଜଣାପଡ଼େ । ବହୁ ସାଧନାଦ୍ୱାରା ଯାହା କରିଯାଇ ନ ପାରେ, ଥରେ ମାତ୍ର ଅନ୍ତରର ଉଦ୍‌ବୋଧନ ଆସିଲେ ତାହା ଅପେକ୍ଷା ସହସ୍ରଗୁଣ ଅଧିକ ହୋଇ ପାରେ । ସୁତରାଂ ମାୟାର ବନ୍ଧନକୁ ତୁଟାଇବା ପାଇଁ କୌଣସି ଧାରାବାହିକ ନିୟମ ନାହିଁ; ଅନ୍ତରର ଅନୁଭୂତି ଉପରେ ଏହା ବିଶେଷ ପରିମାଣରେ ନିର୍ଭର କରେ ।

# ଅବଲମ୍ବନ ଓ ନୀତି

ପାର୍ଥିବ ଜୀବନର ଅନିଶ୍ଚୟତାରେ ମାନବିକତାର କୌଣସି ବିଶେଷ ସମ୍ବନ୍ଧ ନାହିଁ । ଜଗତର ଅସ୍ଥାୟୀ ଆକର୍ଷଣ ମନର ପ୍ରଶାନ୍ତ ବିସ୍ତୃତିରେ ଗୋଟାଏ ସୀମା ସୃଷ୍ଟି କରି ଜୀବନର ପରିସରକୁ ମନୁଷ୍ୟ ସମ୍ମୁଖରେ ଗ୍ରେଟ କରି ଆଙ୍କି ଦେଉ ନ ଥିଲେ ମାନବିକତାର ଉନ୍ନତ ବିକାଶ ଅତି ସହଜ ହୋଇ ପଡ଼ନ୍ତା ଓ ମନୁଷ୍ୟ ମୃତ୍ୟୁର ଅନ୍ତରାଳରେ ନିଜକୁ ହଜାଇ ଦେବାକୁ ସୁଦ୍ଧା ଆତଙ୍କ ଅନୁଭବ କରନ୍ତା ନାହିଁ । ଜଗତରେ ଯେତେ ଅତିମାନବଙ୍କର ଆବିର୍ଭାବ ହେଲାଣି, ସେମାନଙ୍କର ସାଂସାରିକ ଜୀବନର ଅଳ୍ପତା ତୁଳନାରେ କର୍ମର ବିରାଟ ସମ୍ପାଦନ ସେମାନଙ୍କୁ ସାଧାରଣ ମନୁଷ୍ୟଶ୍ରେଣୀରୁ ଚିରଦିନ ପୃଥକ୍ ରଖିଛି । ସାଧାରଣ ସଂସାରବାସୀ ପରି ସେମାନେ ବର୍ଷ କେତୋଟାରେ ଜୀବନର ପରିସମାପ୍ତି ଦେଖି କିମ୍ବା କର୍ମର ଧାରାକୁ ପାରିପାର୍ଶ୍ୱିକ ଅବସ୍ଥାରେ ସଂଶ୍ଳିଷ୍ଟ ରଖି ସେମାନଙ୍କର ନିଜତ୍ୱକୁ ଭୁଲିପାରି ନାହାନ୍ତି । ସାଧାରଣ ଲୋକଙ୍କର ଜୀବନ ଯନ୍ତ୍ରବିଶେଷର ତୁଳନା ସଙ୍ଗେ ସମାନ । ମନୁଷ୍ୟତ୍ୱର ପରିଣତିକୁ ସେ ସୀମାହୀନତାରେ ମିଶାଇ ପାରି ନାହିଁ । କେବଳ ସେ ଜଗତର ନିତ୍ୟ ପରିବର୍ତ୍ତନ-ଶୀଳତାରେ ଅନିଶ୍ଚିତ ଜୀବନର କ୍ଷୁଦ୍ରତାକୁ ବଡ଼ କରି ଦେଖିଛି ।

ମନୁଷ୍ୟର ଗତିକୁ ଜୀବନର ଅନିଶ୍ଚୟତା ଚଞ୍ଚଳ କରି ପ୍ରତିପନ୍ନ କରାଉ ନ ଥିଲେ, ସେ ଜଗତରେ କୌଣସି ଅବଲମ୍ବନର ଆଶ୍ରୟ ଲୋଡ଼ି ନ ଥାନ୍ତା । ଏହି ଅବଲମ୍ବନ ମନୁଷ୍ୟ-ସମାଜରେ ବିଭିନ୍ନ ସ୍ତରର ସୃଷ୍ଟି ସଙ୍ଗେ ମନୁଷ୍ୟର ବିକାଶର ମାର୍ଗକୁ କାଳର ଅନନ୍ତ ଗର୍ଭରେ ସୁଦ୍ଧା ଆକୃଷ୍ଟ କରି ରଖିଛି ବୋଲି ତାର ଅଭ୍ୟୁଦୟ ଓ ପତନର କୌଣସି ସୀମା ନିର୍ଦ୍ଦେଶ ନାହିଁ କିମ୍ବା ବିଶ୍ୱର ବିଶାଳ ବ୍ୟାପ୍ତିରେ ତାର ଉପସ୍ଥିତି ଅର୍ଥଶୂନ୍ୟ ଜଣା ପଡ଼ୁନାହିଁ । ମୋଟ ଉପରେ ଜଗତକୁ ଯେ ଯେପରି ଭାବରେ ନିଜର ଅବଲମ୍ବନ ସାହାଯ୍ୟରେ ଦେଖି ପାରିଛି, ସେ ସେହିପରି ଭାବରେ କଳ୍ପନା କରି ବର୍ଣ୍ଣନା କରି ଯାଇଛି । ମନୁଷ୍ୟ ଜଗତରେ ଭୂମିଷ୍ଠ ହେଲା ମାତ୍ରକେ ଅବଲମ୍ବନର ଆଶ୍ରୟ ଲୋଡ଼େ । ମା ହୁଏ ତାର ପ୍ରଥମ ଅବଲମ୍ବନ । କେବଳ ଏତିକି ନୁହେଁ, ମାତୃତ୍ୱରେ ବିଶ୍ୱ-ପ୍ରକୃତିର ଯେଉଁ ବିରାଟ ପାଳନର ସ୍ପର୍ଶ ଲାଗି ରହିଛି, ତାହା ଅସହାୟ ଓ ଶକ୍ତିହୀନ ଶିଶୁ ଅବସ୍ଥାକୁ ମାନବ ଜୀବନରେ ସବୁଠାରୁ ସୁନ୍ଦର କରି ଦେଇଛି । ଜୀବନ-ଜଳଧିର ଅବିଶ୍ରାନ୍ତ ଢେଉଗୁଡ଼ିକ ମନୁଷ୍ୟକୁ ଅବଲମ୍ବନହୀନ ଅବସ୍ଥାରେ ଗତି କରିବାକୁ ବାଧା ଦେଉ ନ ଥିଲେ ମନୁଷ୍ୟତ୍ୱର ପରିଣତି-ମାର୍ଗ ସର୍ବଦା ଗୋଟାଏ ଅନିଶ୍ଚିତତାରେ ଆଚ୍ଛନ୍ନ ହୋଇ ରହିଥାନ୍ତା । ସାଂସାରିକ ଭଲ ମନ୍ଦ କର୍ମର ତାତ୍ପର୍ଯ୍ୟ କେହି ଦେଖିବାକୁ ଯାଆନ୍ତେ ନାହିଁ କିମ୍ବା ମନୁଷ୍ୟର ସ୍ୱାତନ୍ତ୍ର୍ୟବୋଧ ଆସନ୍ତା ନାହିଁ ।

ଉପଯୁକ୍ତ ଅବଲମ୍ବନ ବିନା ସ୍ୱାତନ୍ତ୍ର୍ୟବୋଧ ସହଜରେ ଆସେ ନାହିଁ । ସ୍ୱାତନ୍ତ୍ର୍ୟବୋଧ ଉପରେ ବ୍ୟକ୍ତି କିମ୍ବା ଜାତିର ମହତ୍ତ୍ୱ ଅନେକ ପରିମାଣରେ ନିର୍ଭର କରେ । ବିଚାର-ଜ୍ଞାନ ନ ଥାଇ ସ୍ୱାତନ୍ତ୍ର୍ୟଲାଭ ଆଶାରେ କେବଳ କୌଣସି ନୀତିକୁ ଯନ୍ତ୍ରବତ୍ ଅନୁସରଣ କଲେ ମନୁଷ୍ୟର ଗତି କିଛିଦିନ ପାଇଁ ଅନିର୍ଦ୍ଦିଷ୍ଟ ଜଣା ପଡ଼ି ନ ପାରେ; କିନ୍ତୁ ଶେଷରେ ତାକୁ ଏପରି ଅବସ୍ଥାର ସମ୍ମୁଖୀନ ହେବାକୁ ପଡ଼େ, ଯେଉଁଥିରେ ସେ ତାର ସମଗ୍ର ଜୀବନର ନୀତି-ଅନୁସୃତିକୁ ବୃଥା ମନେ କରେ । ନୀତି କର୍ମର ସୌଷ୍ଠବ ବିଧାନ କରି ପାରେ; କିନ୍ତୁ ଜୀବନର ବିଶାଳତାରେ ଏହା ଅବଲମ୍ବନର ସ୍ଥାନ ଅଧିକାର କରି ନ ପାରେ । ସମୟ ଓ ଘଟଣାର କ୍ରମରେ ନୀତିର ପରିବର୍ତ୍ତନଶୀଳତାକୁ ଲକ୍ଷ୍ୟ କଲେ ଏଥିର ଯାଥାର୍ଥ୍ୟ ଜଣାଯିବ । ମନୁଷ୍ୟ ଚିରଦିନ ଶାନ୍ତି-ପିପାସୁ । ଶାନ୍ତି ଓ ସୁଖ ପ୍ରୟାସରେ ସେ ପ୍ରାଗୈତିହାସିକ ଯୁଗମାନଙ୍କରୁ ନାନା ସଭ୍ୟତାର ମଧ୍ୟ ଦେଇ ଗତି କରି ଆସି ଯେତେ ସମାଜ,

ନୀତି ଓ ଧର୍ମ-ବିପ୍ଲବମାନଙ୍କର ସମ୍ମୁଖୀନ ହୋଇଛି, ସେ ସମସ୍ତରେ କୌଣସି ନୀତିବାଦ ଏ ପର୍ଯ୍ୟନ୍ତ ଏକାଭାବେ ତିଷ୍ଠି ପାରିନାହିଁ । ଅନ୍ୟାନ୍ୟ ନୀତି ତୁଳନାରେ ରାଜନୀତିର ବ୍ୟାପକତା ବେଶି । ମନୁଷ୍ୟ ସଭ୍ୟତାର ନାନା ଉତ୍ଥାନ ଓ ପତନ ସଙ୍ଗେ ଏହାର ନିବିଡ଼ ସମ୍ବନ୍ଧ ଲାଗି ରହିଛି । ମନୁଷ୍ୟର ସମୂହ କର୍ମ-ପ୍ରେରଣାରେ ସମଗ୍ର ଜଗତ୍ ପାଇଁ ଏକ ସ୍ୱାଧୀନ ଓ ସମାନଭାବ ସୃଷ୍ଟିକରିବା ଉଦାର ରାଜନୀତିର ପ୍ରଧାନ ଲକ୍ଷ୍ୟ ହୋଇ ପାରିଲେ ସୁଦ୍ଧା, ମନୁଷ୍ୟର ସ୍ୱାଭାବିକ ଭିନ୍ନତାରେ ପୁଷ୍ଟ ଜାତିଗତ ସ୍ୱାତନ୍ତ୍ର୍ୟକୁ ଲୋପକରି ହୁଏ ନାହିଁ । ଏହି ସ୍ୱାତନ୍ତ୍ର୍ୟରେ ଦେଶବିଶେଷର ଜଳବାୟୁ ଓ ଅନ୍ୟାନ୍ୟ ପାରିପାର୍ଶ୍ୱିକ ଅବସ୍ଥାର ପ୍ରଭାବ ମିଶି ଜଗତରେ ଯେଉଁ ଅନୈକ୍ୟ ସ୍ଥାପନ କରେ, ତାକୁ ଗୋଟିଏ ନୀତି ଯେତେ ମହତ୍ତ୍ୱ ହେଲେ ସୁଦ୍ଧା ସମାନ କରି ପାରିବ ନାହିଁ; କାରଣ ନୀତି ମନୁଷ୍ୟର ଯେଉଁ ସଂସ୍କୃତି ଉପରେ ନିର୍ଭର କରି ଆତ୍ମପ୍ରତିଷ୍ଠା କରିଥାଏ, ତାହା ସବୁ ଦେଶରେ ସମାନ ନୁହେଁ । କୌଣସି ଦେଶ କିମ୍ବା ଜାତିର ସଂସ୍କୃତି ଏକା ଦିନକରେ ଗଠିତ ହୋଇ ନ ଥାଏ । ଶତ ଶତ ବର୍ଷର ଶିକ୍ଷା ଓ ପାରିପାର୍ଶ୍ୱିକ ଅବସ୍ଥା ଏହାର ଗଠନ ପାଇଁ ଯେଉଁ ଉପାଦାନ ଯୋଗାଇ ଥାଏ, ତାକୁ ସମୂଳେ ବାଦ୍ ଦେଇ ଏକ ସମ୍ପୂର୍ଣ୍ଣ ନୂତନ ଭିତ୍ତିରେ ନୀତି ପ୍ରବର୍ତ୍ତନ କରିବା ସମ୍ଭବ ହୋଇପାରେ; କିନ୍ତୁ ଏହାର ସ୍ଥାୟିତ୍ୱ ବେଶି ଦିନ ନୁହେଁ । ଜଗତର ନୀତି-ପ୍ରବର୍ତ୍ତକ, ବିଶେଷତଃ ଦୂରଦର୍ଶୀ ରାଜନୀତିଜ୍ଞମାନେ ଏ ସମ୍ପର୍କରେ ସେମାନଙ୍କର ଅସାଧାରଣ କ୍ଷମତା ପ୍ରକାଶ କରିପାରନ୍ତି; କିନ୍ତୁ ସେମାନଙ୍କର କର୍ମ କିମ୍ବା ନୀତିର ପରିସର କାଳକ୍ରମେ ଶ୍ଲଥ ହୋଇ ଆସେ । ଜଗତର ବର୍ତ୍ତମାନ ପରିସ୍ଥିତିର ଦ୍ରୁତ ପରିବର୍ତ୍ତନ ଯେଉଁମାନେ ଅନୁସରଣ କରୁଥିବେ, ସେମାନେ ଏଥିର ନିଦର୍ଶନ ଅନେକ ପରିମାଣରେ ପାଇପାରିବେ । ପୃଥିବୀ ଇତିହାସର ପ୍ରତ୍ୟେକ ଉଲ୍ଲେଖଯୋଗ୍ୟ ଘଟନାମାନଙ୍କରେ ରାଜନୈତିକ ଉପାଦାନ ବେଶି ପରିମାଣରେ ଥାଇ ସୁଦ୍ଧା କୌଣସି ଯୁଗ-ପ୍ରବର୍ତ୍ତକଙ୍କର ସାଧାରଣ ଓ ସରଳ ରାଜ୍ୟ-ଶାସନ-ପ୍ରଣାଳୀ ଏ ପର୍ଯ୍ୟନ୍ତ ଜଗତରେ ସ୍ଥାୟୀ ପ୍ରତିଷ୍ଠା ଲାଭ କରି ପାରି ନାହିଁ । କିନ୍ତୁ ଆଜି ଯେଉଁ ଚିନ୍ତାଶୀଳ ରାଜନୀତିଜ୍ଞମାନେ ବର୍ତ୍ତମାନଯୁଗର ଅବସାନ ପରେ ଗୋଟିଏ ଅତି ମହତ୍ତ୍ୱଯୁଗ ଆତ୍ମପ୍ରକାଶ କରିବ ବୋଲି ବିଶ୍ୱାସ କରୁଛନ୍ତି, ତାହା କେବଳ ସେମାନଙ୍କର କଳ୍ପନାରେ ପର୍ଯ୍ୟବସିତ ହୋଇ ରହିଯାଇ ପାରେ । ୟୁରୋପୀୟ ପରିସ୍ଥିତି ଅତି ଉଦ୍‌ବେଳିତ । ଏହାକୁ ଲକ୍ଷ୍ୟ କରି ଭାବୀ ଯୁଗର ସୂଚନାମାତ୍ର ଦିଆଯାଇ ପାରେ; କିନ୍ତୁ ଏହାର ଭଲ ମନ୍ଦ ସମ୍ବନ୍ଧରେ ଆଗରୁ ବିଚାର କରିବା ପାଇଁ କୌଣସି ସ୍ପଷ୍ଟ ମାର୍ଗ ଦେଖା ଯାଉନାହିଁ । ମନେହୁଏ ନୀତିକୁ ଦୋହାଇ ଦେଇ ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ ରାଜନୀତିଜ୍ଞମାନେ ଏ ପର୍ଯ୍ୟନ୍ତ ଜଗତକୁ ଭୁଲାଇ ରଖିବାକୁ ଚେଷ୍ଟା କରିଥିଲେ । ପାଶ୍ଚାତ୍ୟ ରାଜନୀତିକ୍ଷେତ୍ରରେ ଗଣତନ୍ତ୍ରବାଦ ଓ ପ୍ରାଚ୍ୟ ଭୂଖଣ୍ଡରେ ବିଶେଷତଃ ଭାରତବର୍ଷରେ ଅହିଂସାବାଦର ପୋଷକମାନେ ବର୍ତ୍ତମାନ ସନ୍ଧିସ୍ଥଳରେ ସେମାନଙ୍କର ନୀତିକୁ କାହିଁକି ଅନୁସରଣ କରି ପାରୁନାହାନ୍ତି ? ଉପର୍ଯ୍ୟୁକ୍ତ ନୀତି ଯଦି ଦୁଇ ବିଭିନ୍ନ ଜାତୀୟ ଜୀବନକୁ ପୂର୍ଣ୍ଣମାତ୍ରାରେ ଅଧିକାର କରିଥାନ୍ତା, ତାହାହେଲେ ଏପରି ସନ୍ଧିସ୍ଥଳ ଉପସ୍ଥିତ ହୋଇଥାନ୍ତା କି ନାହିଁ, ସନ୍ଦେହ । ନୀତି ଦୋଷଶୂନ୍ୟ କିମ୍ବା ମହତ୍ତ୍ୱ ହେଲେ ସୁଦ୍ଧା ମାନବ-ପ୍ରାଣରେ ତାର ଅଧିକାର ଅନେକ ସମୟରେ ଲୌକିକ ମତକୁ ଅପେକ୍ଷା କରି ରହିଥାଏ । ଲୋକମତ କେତେବେଳେ ଉଦାର ହୋଇ ପୁଣି ସଙ୍କୁଚିତ ହୋଇଯାଏ, ତହିଁର କିଛି ଠିକଣା ନାହିଁ ।

ଗଣତନ୍ତ୍ରବାଦ ଅପେକ୍ଷା ଅହିଂସାବାଦ ବେଶି ଉଦାର; କିନ୍ତୁ ରାଜନୀତିକ୍ଷେତ୍ରରେ ଏହାର ବିସ୍ତୃତି ଓ ସ୍ଥାୟିତ୍ୱ କେତେଦୂର ସମ୍ଭବ, କହି ହେବ ନାହିଁ । ମନୁଷ୍ୟସ୍ୱଭାବର ଏକ ବିଶିଷ୍ଟ ସମାନତା ନ ଆସିବାଯାଏ ପାଶ୍ଚାତ୍ୟବାସୀ କଥା ଦୂରେ ଥାଉ, ଭାରତବର୍ଷରେ ସୁଦ୍ଧା ଏହାର ପ୍ରଚାର ବେଶିଦିନ ରହିବ ବୋଲି ଜଣାପଡ଼ୁ ନାହିଁ । ମନୁଷ୍ୟସ୍ୱଭାବର ଦୁର୍ବଳତା ଅହିଂସାବାଦର ପ୍ରବର୍ତ୍ତକ ମହାତ୍ମା ଗାନ୍ଧିଙ୍କୁ ଅବିଦିତ ନାହିଁ । ଦୀର୍ଘକାଳ ସାଧନା ପରେ ସେ ଯେଉଁ ସତ୍ୟକୁ ଅବଲମ୍ବନ କରି ପାରିଛନ୍ତି, ତଦ୍ୱାରା ତାଙ୍କର କର୍ମଜୀବନ ସାର୍ଥକ ହୋଇପାରିଥାଏ, କିନ୍ତୁ ତାଙ୍କର ଦେଶବାସୀ ଏହି ସତ୍ୟକୁ କିପରି ଭାବେ ଗ୍ରହଣ କରିଛନ୍ତି, କାଳକ୍ରମେ ଜଣାଯିବ । ଜୀବନର ଯାବତୀୟ ପରିସ୍ଥିତିରେ ଅହିଂସାଭାବ ପୋଷଣ କରିବା ସାଧାରଣ ଲୋକ ପକ୍ଷରେ ସମ୍ଭବ ନୁହେଁ । ସେ ମଧ୍ୟ ପ୍ରକାରାନ୍ତରରେ ଏହା ସ୍ୱୀକାର କରିଅଛନ୍ତି । ସେ କହିଅଛନ୍ତି—"The first condition of non-violence is Justice all round in every department of life. Perhaps it is too much to expect of human nature. I do not, how-ever think so............................No one should dogmatise about the capacity of human nature for degradation or exaltation." ମନୁଷ୍ୟସ୍ୱଭାବ ଅହିଂସାବାଦର ବିରୋଧୀ କୁହା ନ ଗଲେ ସୁଦ୍ଧା ଏହା ଯେ ତାର

ସ୍ୱଭାବର ଗୋଟିଏ ମହତ୍ତ୍ୱ ଅବସ୍ଥାକୁ ଅପେକ୍ଷା କରେ, ଏଥିରେ କୌଣସି ସନ୍ଦେହ ନାହିଁ । ମନୁଷ୍ୟସ୍ୱଭାବର ଉତ୍କର୍ଷ କିମ୍ବା ଅପକର୍ଷକୁ ଦୃଢ଼ ଭାବରେ ନିର୍ଣ୍ଣୟ କରିଦେବା ପାଇଁ ଗାନ୍ଧି ପକ୍ଷପାତୀ ନୁହନ୍ତି । ଏଥିରୁ ତାଙ୍କର ମନୁଷ୍ୟସ୍ୱଭାବର ପରିବର୍ତ୍ତନଶୀଳତା ଓ ଉଦାରତା ସମ୍ବନ୍ଧରେ ଯଥେଷ୍ଟ ଅଭିଜ୍ଞତା ଅଛି ବୋଲି ବୁଝାଯିବ; କିନ୍ତୁ ଅହିଂସାବାଦ ଯେ ସବୁବେଳେ ମନୁଷ୍ୟସ୍ୱଭାବର ଉତ୍କର୍ଷ ଉପରେ ଓ ଏଥିର ପୁଷ୍ଟି ପାଇଁ ଯେଉଁ ବିଶାଳ ଭୂମିକା ଆବଶ୍ୟକ ହୁଏ, ତାହା ବୋଧହୁଏ ତାଙ୍କର ଉଦ୍ଭାବିତ କର୍ମ-ପନ୍ଥାକୁ ଏ ପର୍ଯ୍ୟନ୍ତ ଦୃଢ଼ ଭାବରେ ସ୍ପର୍ଶ କରି ପାରିନାହିଁ । ଆଜିକି ପ୍ରାୟ କୋଡ଼ିଏ ବର୍ଷରୁ ଅଧିକ ହୋଇଗଲା, ଅହିଂସାବାଦର ପ୍ରଚାର ଦେଶରେ ଚାଲିଛି; କିନ୍ତୁ ଏତେ ଦୀର୍ଘକାଳ ପ୍ରଚାର ଫଳରେ ଭାରତବାସୀର ରାଜନୀତିକ ଦୃଷ୍ଟି-ରେଖାରେ କୌଣସି ବିଶେଷ ପରିବର୍ତ୍ତନ ଆସିଲା ପରି ଜଣାଯାଏ ନାହିଁ । ସେ ନିଜେ ଏ ସମ୍ପର୍କରେ ପୁଣି କହିଛନ୍ତି—Indian Congress has brought no relief to the cultured western powers, because it is still poor stuff. Why travel so far to see the inefficacy ? We in India are torn asunder inspite of the Congress policy of non-violence. The Congress itself is distrusted. ଅହିଂସାବାଦ କଂଗ୍ରେସ ପରି ଜାତୀୟ ବିରାଟ ଅନୁଷ୍ଠାନର ଦୁର୍ବଳ ଉପାଦାନ ହୋଇ ନ ଥିଲେ ପାଶ୍ଚାତ୍ୟ ଭୂଖଣ୍ଡର ରାଜନୀତିକ ପରିସ୍ଥିତି ଅନେକ ଦିନୁ ବଦଳି ଯାଆନ୍ତାଣି । ଆମ୍ଭମାନଙ୍କ ଦେଶର ଆଭ୍ୟନ୍ତରୀଣ ଅବସ୍ଥା ଯେପରି ବିଚ୍ଛିନ୍ନ ଓ ଦେଶବାସୀଙ୍କ ମନରେ କଂଗ୍ରେସ ପ୍ରତି ଯେଉଁ ବିଶ୍ୱାସର ଅଭାବଟିକ ରହିଛି, ତଦ୍ୱାରା ଅହିଂସାବାଦର କାର୍ଯ୍ୟକାରିତା ପ୍ରମାଣିତ ହୋଇପାରୁ ନାହିଁ ବୋଲି ମହାତ୍ମା ଗାନ୍ଧି ଯାହା ଆକ୍ଷେପ କରିଛନ୍ତି, ତାହା ଯଥାର୍ଥ । ଗାନ୍ଧିଙ୍କର କର୍ମଜୀବନର ଶକ୍ତି ସାଧନାରେ ଅହିଂସା ଅବଲମ୍ବନ ତାଙ୍କୁ ଯେତେଦୂର ଅଗ୍ରସର କରାଇ ପାରିଛି ଓ ମନୁଷ୍ୟର ଅନ୍ତର୍ନିହିତ ସତ୍‌ପ୍ରବୃତ୍ତିକୁ ସେ ଯେପରି ଭାବେ ଦେଖି ପାରିଛନ୍ତି, ତାହା ସାଧାରଣ ଲୋକର ଅନୁଭୂତିକୁ ଆସିବା ସହଜ ନୁହେଁ ।

ନୀତି ଓ ଅବଲମ୍ବନ ମନୁଷ୍ୟର ବିକାଶ ପଥରେ ଦୁଇଟି ବିଭିନ୍ନ ସୋପାନ । ନୀତିକୁ ବାଦ୍ ଦେଇ କେବଳ ଅବଲମ୍ବନ ସାହାଯ୍ୟରେ ଉନ୍ନତି କାମନା କରିବା କୌଣସି ବ୍ୟକ୍ତି କିମ୍ବା ଜାତିଗତ ଜୀବନରେ ଶ୍ରେୟସ୍କର ନୁହେଁ । ନୀତି କର୍ମ ସମ୍ପାଦନର ମାର୍ଗକୁ ସରଳ କରି ଅବଲମ୍ବନର ଭୂମିକାକୁ ମନୁଷ୍ୟଦୃଷ୍ଟିରେ ସ୍ପଷ୍ଟ ଆକାରରେ ଆଙ୍କିଦିଏ । ନୀତିର ବେଷ୍ଟନୀ ମଧ୍ୟରେ ମନୁଷ୍ୟର ସାଧନା ଆବଦ୍ଧ ହୋଇ ରହିଗଲେ ଅବଲମ୍ବନର ମହତ୍ତ୍ୱ ଜଣାପଡ଼େ ନାହିଁ । ଏହାକୁ ଅନୁସରଣ କରି ସେ ପ୍ରତିଷ୍ଠାବାନ ହୋଇ ପାରେ, କିନ୍ତୁ ଅବଲମ୍ବନକୁ ଉପେକ୍ଷା କଲେ ତାର ପୂର୍ଣ୍ଣତା ଆସେ ନାହିଁ । ନୀତି ଓ ଅବଲମ୍ବନ ମଧ୍ୟରେ କୌଣସି ଦ୍ୱନ୍ଦ୍ୱ ନାହିଁ, ବରଂ ଉଭୟର ପରସ୍ପର ସହଯୋଗିତାରେ ମନୁଷ୍ୟର କର୍ମକୁଶଳତା ଅତି ଉନ୍ନତ ସ୍ତରକୁ ଅଧିକାର କରେ । ଅନେକ ସମୟରେ ନୀତିକୁ ଏକମାତ୍ର ଅବଲମ୍ବନ ମନେ କରି ମନୁଷ୍ୟ କର୍ମଜଗତରେ ଅଗ୍ରସର ହୁଏ । ଏପରି କରିବା ଦ୍ୱାରା କୌଣସି ବିରୋଧ ନ ଜନ୍ମିଲେ ସୁଦ୍ଧା ଗୋଟାଏ ଶୁଷ୍କତା ଆସି ତା ସମ୍ମୁଖରେ ଦେଖାଦିଏ । ଜୀବନର ବିସ୍ତୀର୍ଣ୍ଣତା ସୀମାବଦ୍ଧ ହୋଇଯାଏ କିମ୍ବା ତାର ଗୋଟିଏ ବିଶିଷ୍ଟ ବିକାଶ ସେହି ନୀତି ଉଦ୍ଦେଶ୍ୟରେ ଅତି ଉଦାର ହୋଇ ଅନ୍ୟାନ୍ୟ ବିକାଶର ମାର୍ଗକୁ ସଙ୍କୁଚିତ କରିଦିଏ । ସଂସାରର ଜଟିଳତାରେ ଉପର୍ଯ୍ୟୁକ୍ତ ଦୁଇ ଅବସ୍ଥା ବେଶିଦିନ ତିଷ୍ଠି ପାରେ ନାହିଁ । ତା ହୋଇଥିଲେ ଜଗତର ପ୍ରଚଳିତ ନୀତିସୂତ୍ରକର ଏତେ ପରିବର୍ତ୍ତନ ହୁଅନ୍ତା ନାହିଁ । ଅବଲମ୍ବନକୁ ପାଇବା ପୂର୍ବରୁ ନୀତିର ଅନୁସୃତି ସର୍ବଦା ବାଞ୍ଛନୀୟ । ଏହା ମନୁଷ୍ୟସାଧନାର ଗୋଟିଏ ବିଶିଷ୍ଟ ଅଙ୍ଗ । ବ୍ୟକ୍ତି ଓ ଜାତି ସମ୍ପର୍କରେ ନୀତି ଓ ଅବଲମ୍ବନର ସ୍ୱରୂପ ସମାନ ହୋଇ ନ ପାରେ । କୌଣସି ଜାତିର ନୀତି କେତେବେଳେ କିପରି ଭାବରେ ପ୍ରଭାବିତ ହୋଇ ରହିଥାଏ, ସ୍ଥିର ରୂପେ ନିର୍ଣ୍ଣୟ କରି ହେବ ନାହିଁ । ଘଟନାର ଅନୁକୂଳରେ ଜାତୀୟ ନୀତିର ପରିବର୍ତ୍ତନ କାହାରିକୁ ଅବିଦିତ ନାହିଁ; କିନ୍ତୁ ଜାତିର ଅବଲମ୍ବନ ଏପରି ନୁହେଁ । ଗୋଟିଏ ଅତି ପ୍ରାଚୀନ ଓ ଦୀର୍ଘ ଭୂମିକାରେ ଏହାର ଅବସ୍ଥିତି ବଡ଼ ଅଚଞ୍ଚଳ । ଜାତୀୟ ଜୀବନରେ କେତେ ଢେଉ ଖେଳି ଚାଲିଯାଏ । କେତେ ନୀତି, ଧର୍ମ ଓ ସମାଜସଂସ୍କାରକମାନେ ଆସି ଜାତୀୟ ବିପ୍ଳବ ସଂଘଟିତ କରନ୍ତି, କିନ୍ତୁ ଜାତିର ମେରୁଦଣ୍ଡ, ତାର ସେହି ଆଦିମ ମୌଳିକତାକୁ, କେହି ପରିବର୍ତ୍ତନ କରିପାରନ୍ତି ନାହିଁ । ଏହାର ଅବଲମ୍ବନରେ ଯେଉଁ ଚିରନ୍ତନ ଆଦର୍ଶ ସୃଷ୍ଟି ହୋଇଥାଏ, ତାହା ଜାତିକୁ ଚିରଦିନ ପାଇଁ ଉଜ୍ଜୀବିତ କରି ରଖେ । ଅତୀତର ପ୍ରେରଣାରେ ଏହି ଆଦର୍ଶର ଅମର ସ୍ପର୍ଶ ସର୍ବଦା ଆତ୍ମଗୋପନ କରି ରହିଥାଏ । ଯେତେବେଳେ କୌଣସି ନୀତି-ପ୍ରବର୍ତ୍ତକ ଦେଶର ଅଧଃପତିତ ଅବସ୍ଥାକୁ ଲକ୍ଷ୍ୟ ରଖି

ଏହାର ଉଦ୍‌ବୋଧନ କରନ୍ତି, ସେତେବେଳେ ଜାତୀୟ ପ୍ରାଣ ଉଦ୍‌ବେଳିତ ହୋଇ ଉଠେ ଓ ଜାତି ନୂତନ ତେଜରେ ତାର ଲୁପ୍ତ ଗୌରବ ଉଦ୍ଧାର କରିବାକୁ ଅଗ୍ରସର ହୁଏ ।

ଦୀର୍ଘକାଳ ଧରି ମହାତ୍ମା ଗାନ୍ଧି ଯେଉଁ ଅହିଂସାବାଦ ପ୍ରଚାର କରି ଆସିଲେ, ସେଥିରେ ନୀତିର ମହତ୍ତ୍ୱ ଅକ୍ଷୁର୍ଣ୍ଣ ରହିଲେ ସୁଦ୍ଧା ଜାତୀୟ ପ୍ରାଣରେ ଜାଗ୍ରତ ଆଣିବା ପାଇଁ ଏହା ଯଥେଷ୍ଟ ହେଲା ନାହିଁ । ଭାରତବର୍ଷ ପରି ବିଶାଳ ଦେଶରେ ନାନା ସମ୍ପ୍ରଦାୟ ଓ ଶ୍ରେଣୀଗତ ପାର୍ଥକ୍ୟ ରହିବା ସମ୍ପୂର୍ଣ୍ଣ ସ୍ୱାଭାବିକ । ଏହାର ଅତୀତ ଇତିହାସରେ ଯେତେ ଉଲ୍ଲେଖଯୋଗ୍ୟ ବିପ୍ଳବାତ୍ମକ ଘଟଣାମାନ ଲିପିବଦ୍ଧ କରାଯାଇଅଛି, ସେ ସମସ୍ତରେ ନୀତିର ପରିବର୍ତ୍ତନ ସଙ୍ଗେ ଆଦର୍ଶର ବ୍ୟାପକତାରେ ବିଶେଷ ବ୍ୟତିକ୍ରମ ଘଟିନାହିଁ । ଭାରତବର୍ଷର ରାଜନୀତି କ୍ଷେତ୍ରରେ ଅହିଂସାବାଦର ପ୍ରବର୍ତ୍ତନ ତାର ଅତୀତ ଆଦର୍ଶକୁ ଗୋଟିଏ ନୂତନ କଳେବର ଦେଇଥାନ୍ତା, ଯଦି ମହାତ୍ମାଙ୍କ କର୍ମଯୋଜନାରେ ସମସ୍ତ ଦେଶବାସୀ ଅନୁପ୍ରାଣିତ ହୋଇ ପାରିଥାନ୍ତେ; କିନ୍ତୁ ବିଭିନ୍ନ ଦଳଗତ ପାର୍ଥକ୍ୟରେ ପୁଷ୍ଟ ଦେଶର ବର୍ତ୍ତମାନ ପରିସ୍ଥିତି ଏପରି ଗୋଟିଏ ମହାପରିବର୍ତ୍ତନ ପକ୍ଷରେ ଉପଯୋଗୀ ହେଲା ନାହିଁ । ନୀତି ସଙ୍ଗେ ଅବଲମ୍ବନର ପରିବର୍ତ୍ତନ କିମ୍ବା ଅବଲମ୍ବନକୁ ନୀତିରେ ପର୍ଯ୍ୟବସିତ କରି ଜାତୀୟ କର୍ମଧାରାର ଗତି ନିୟନ୍ତ୍ରଣ ଗୋଟିଏ ଅସାଧାରଣ କାର୍ଯ୍ୟ । ବିଶେଷତଃ ଭାରତବର୍ଷ ପରି ଦେଶରେ ଏତେ ସାମାଜିକ ନୀତି ଓ ଧର୍ମଗତ ପାର୍ଥକ୍ୟ ଓ ବିଭିନ୍ନ ଆଦର୍ଶକୁ ଅବଲମ୍ବନ କରି ନାନାଜାତିର ଅନୁସୃତି ପାଇଁ ସାଧାରଣ ଆଦର୍ଶ ସୃଷ୍ଟି କରିବା ଏକପ୍ରକାର ଅସମ୍ଭବ କହିଲେ ଚଳେ । ପୃଥିବୀର ଅଧିକାଂଶ ସଭ୍ୟଜାତିଙ୍କର ଆଦର୍ଶ ବଡ଼ ଥାଏ, କିନ୍ତୁ ଘଟନାର କ୍ରମରେ ନୀତିର ପରିବର୍ତ୍ତନ ଅନେକ ସମୟରେ ସେମାନଙ୍କ ମନରେ ପ୍ରକୃତ ଆଦର୍ଶ ବୋଧ ଜନ୍ମାଇ ଦିଏ ନାହିଁ । ଜାତୀୟ ସାଧନା- ମାର୍ଗରେ ନୀତି ଓ ଆଦର୍ଶ ଚିରଦିନ ରହିବ । ଗୋଟିକୁ ଶ୍ରେଷ୍ଠ କରିଦେଲେ ଅପରଟି ସ୍ୱତଃ ସଙ୍କୁଚିତ ହୋଇଯିବ । ଜାତୀୟ କର୍ମ-ଧାରାକୁ ଯେଉଁ ଅସାଧାରଣ କର୍ମୀମାନେ ନିୟନ୍ତ୍ରିତ କରନ୍ତି, ସେମାନଙ୍କର କର୍ମଯୋଜନାରେ ନୀତି ଓ ଆଦର୍ଶର ସ୍ଥାନ ସ୍ୱତନ୍ତ୍ର ରହିବା ଆବଶ୍ୟକ ।

ଜୀବନର ବିସ୍ତୀର୍ଣ୍ଣତାରେ ମନୁଷ୍ୟର ସ୍ୱରୂପ ଓ ଆନନ୍ଦାନୁଭୂତି ପାଇଁ ଯେଉଁ ଆଧ୍ୟାତ୍ମିକ ବିକାଶ ଲୋଡ଼ା ହୁଏ, ସେଥିରେ ନୀତିର ଜଟିଳତା ନାହିଁ, କିନ୍ତୁ ଅବଲମ୍ବନର ବୈଶିଷ୍ଟ୍ୟ ରହିଛି ।

ଜୀବନର ସାର୍ଥକତା ତାର ଅବଲମ୍ବନରେ ନିର୍ଭର କରେ । ଆଧ୍ୟାତ୍ମିକ ଓ ବୈଷୟିକ ଦୁଇଟି ଧାରା ପ୍ରତ୍ୟେକ ମନୁଷ୍ୟର କର୍ମଚକ୍ରରେ ଦୃଢ଼ ଭାବରେ ଅଙ୍କିତ ହୋଇଥାଏ । ଜଗତର ଅଶେଷ ପ୍ରକାର କର୍ମଚକ୍ରରେ ମନୁଷ୍ୟର ସ୍ୱଭାବ ଜଟିଳ ହେଲେ ସୁଦ୍ଧା ଆତ୍ମଗୋପନ କରି ପାରେ ନାହିଁ । ଏହି ଧାରା ଦୁଇଟିର ପ୍ରଖରତା ମନୁଷ୍ୟକୁ ଜଗତ୍ ସମକ୍ଷରେ ଚିହ୍ନାଇ ଦିଏ । ସେଥି ସଙ୍ଗେ ମଧ୍ୟ ତାର ଅବଲମ୍ବନର ବିଶିଷ୍ଟତା ଜଣାପଡ଼େ । ଅବଲମ୍ବନର ବିଶିଷ୍ଟତା ଉପରେ ଜୀବନର ବିସ୍ତୀର୍ଣ୍ଣତା-ଉପଲବ୍ଧି ସୂଚିତ ହୁଏ । ଜଗତରେ ଜଣେ ଅମୀର ଓ ଆଉ ଜଣେ ଫକୀର ହୁଏ, କିନ୍ତୁ ସେଥିରେ ଜୀବନର ଗତି ନିର୍ଣ୍ଣୀତ ହୋଇପାରେ ନାହିଁ । ଅମୀରର ଦୌଲତ ଓ ଫକୀରର ନିଃସ୍ୱ ଜୀବନ-ଯାତ୍ରା ସାଧାରଣ ଦୃଷ୍ଟିରେ ଉପେକ୍ଷିତ ହୋଇପାରେ; କିନ୍ତୁ ବାସ୍ତବ ଦୃଷ୍ଟିରେ ଏପରି ପାର୍ଥକ୍ୟର କୌଣସି ମୂଲ୍ୟ ରହେ ନାହିଁ । ପାର୍ଥିବ ଜୀବନଟା ଯଦି ଅମର ହୋଇଥାନ୍ତା, ତାହା ହେଲେ ମନୁଷ୍ୟର କର୍ମ-ଚକ୍ର ଭିନ୍ନ ପ୍ରକାର ଆକାର ଧରିଥାନ୍ତା ଓ ତାର ବିକାଶର ପଥ ମଧ୍ୟ ଚିରଦିନ ପାଇଁ ରୁଦ୍ଧ ହୋଇ ଯାଇଥାନ୍ତା । ଏପରି ଜୀବନରେ ଅବଲମ୍ବନର ବିଶିଷ୍ଟତାକୁ ଦେଖିବାକୁ ପାଆନ୍ତେ ନାହିଁ । ମାୟା-ପ୍ରପଞ୍ଚର ଅଧୀନରେ ମନୁଷ୍ୟଜାତି ଚିରଦିନ ବିଷୟ-ପାଶରେ ଆବଦ୍ଧ ହୋଇ ରହନ୍ତା କିମ୍ବା ଜଗତ ସ୍ୱର୍ଗରେ ପରିଣତ ହେବା ସଙ୍ଗେ ମନୁଷ୍ୟର ମୁକ୍ତିପଥ ସୃଷ୍ଟି-ରହସ୍ୟରୁ ସ୍ପଷ୍ଟ ରୂପେ ପ୍ରତିଭାତ ହୋଇ ଉଠନ୍ତା; ମନୁଷ୍ୟ ଜୀବନ କେବଳ ଗୋଟାଏ ଭାବରେ ପୂର୍ଣ୍ଣ ହୋଇ ରହନ୍ତା ।

ଜୀବନର ଗତିଶୀଳତା ମନୁଷ୍ୟର ସ୍ୱରୂପ ଓ ଆନନ୍ଦାନୁଭୂତିରେ କୌଣସି ବିକ୍ଷେପ ଆଣେ ନାହିଁ । ବରଂ ଉପଯୁକ୍ତ ଅବଲମ୍ବନ ସାହାଯ୍ୟରେ ଏହାର ଗତି ବିଶ୍ୱର ଶାଶ୍ୱତ ନିୟମକୁ ଅନୁସରଣ କରି ମନୁଷ୍ୟକୁ ଆତ୍ମବିକାଶର ପଥ ଦେଖାଇ ଦିଏ । ମନୁଷ୍ୟ ସ୍ୱଭାବର ଜଟିଳତାରେ କର୍ମର ଦୁଇ ବିଶିଷ୍ଟ ବିଭାଗ, ବୈଷୟିକ ଓ ଆଧ୍ୟାତ୍ମିକ ଜୀବନର ମାନଦଣ୍ଡ ପରି କାର୍ଯ୍ୟ କରେ । ସମୂହ ଭାବରେ ଏହି ମାନଦଣ୍ଡର ବିଚଳିତ ଅବସ୍ଥା ଉପସ୍ଥିତ ହେଲେ ମନୁଷ୍ୟଜାତି ବିପ୍ଳବର ଅଭିମୁଖୀ ହୁଏ; କିନ୍ତୁ ବିପ୍ଳବ ସ୍ଥାୟୀ ହୋଇ ରହେ ନାହିଁ । ପରିବର୍ତ୍ତନଶୀଳ ଜଗତ ଓ ଜୀବନ ଏହାର ବିରୋଧ କରନ୍ତି । ମନୁଷ୍ୟପ୍ରାଣରେ ଆନନ୍ଦର

ଯେଉଁ ସ୍ପର୍ଶଟିକ ରହିଛି, ତାହା ବିଶ୍ୱର ଶାଶ୍ୱତ ଶାନ୍ତିରୁ ସମ୍ଭୂତ । ଅସ୍ଥାୟୀ ଆକର୍ଷଣରେ ପରିବର୍ତ୍ତନଶୀଳତା ଓ ନିତ୍ୟ ନୂତନତ୍ୱରେ ତାର ଆସକ୍ତି ଗୋଟିଏ ଧାରାବାହିକ, ଅବିଚ୍ଛିନ୍ନ ବିରାଟ ନିୟମ ଦ୍ୱାରା ପ୍ରଭାବିତ ହେଉ ନ ଥିଲେ ସାଂସାରିକ ଜୀବନର ସ୍ୱଚ୍ଛନ୍ଦତାରେ ଆନନ୍ଦର ଅନୁଭୂତି ଆସନ୍ତା ନାହିଁ ।

ଜଗତ ଓ ବିଶ୍ୱ ଅଭିନ୍ନ । ଜଗତର ସାମାନ୍ୟ ଧୂଳିକଣାରେ ଆଘାତ ବିଶ୍ୱ-ତନ୍ତ୍ରୀରେ ଝଙ୍କୃତ ହୋଇ ଉଠେ; କିନ୍ତୁ ଜୀବନର ଗତି ଯେଉଁଠାରେ କେତେଗୁଡ଼ିଏ ନିର୍ଦ୍ଦିଷ୍ଟ ନୀତି ଅନୁସରଣ କରି ସୀମାବଦ୍ଧ ହୋଇଯାଏ, ସେଠାରେ ମନୁଷ୍ୟ ବିଶ୍ୱର ବ୍ୟାପକତାକୁ ଉପେକ୍ଷା କରି ନିଜର ପୃଥକ୍ ସଂସାର ସୃଷ୍ଟି କରିବସେ । ଅବଶ୍ୟ ସବୁ ନୀତି ସଂପର୍କରେ ଏପରି କୁହାଯାଇ ନ ପାରେ । ବିଷୟଲିପ୍ସାରେ ପୁଷ୍ଟ ଅନୁଦାର ନୀତି ଜଗତର କର୍ମ-ମାର୍ଗରେ ସତ୍ୟର ଅପଲାପ ଘଟାଉ ନ ଥିଲେ ମନୁଷ୍ୟ ଏଥିର ମର୍ମ ବୁଝନ୍ତା ନାହିଁ, କିମ୍ବା ଜଗତରେ ଜଣେ ସ୍ୱାର୍ଥ-ପ୍ରଣୋଦିତ ହୋଇ ନିଜର କୂଟ ନୀତି ଦ୍ୱାରା ଜଗତକୁ ଭୁଲାଇ ରଖିଲେ କେହି ତାର ପ୍ରତିରୋଧ କରନ୍ତେ ନାହିଁ । ନୀତିବିରୋଧରେ ସତ୍ୟର ସନ୍ଧାନ କେତେବେଳେ ସଂକୁଚିତ ଓ କେତେବେଳେ ପୁଣି ପ୍ରସାରିତ ହୁଏ; କିନ୍ତୁ ମନୁଷ୍ୟର ଯେଉଁ ଅନ୍ତର୍ନିହିତ ସତ୍ୟ ପ୍ରେରଣା ଅଛି, ତାହା ଚିରଦିନ ତାକୁ ଗୋଟାଏ ସସୀମତାରେ ଆବଦ୍ଧ କରାଇ ଦିଏ ନାହିଁ । ମନୁଷ୍ୟ-ଅନ୍ତରର ପ୍ରେରଣା ଯେତେବେଳେ ବିଶ୍ୱ-ସୌନ୍ଦର୍ଯ୍ୟରେ ଏକ ମହୀୟସୀ ଶକ୍ତିର ଅଲକ୍ଷିତ ପ୍ରଭାବ ମୁହୂର୍ତ୍ତିକ ପାଇଁ ସୁଦ୍ଧା ଅନୁଭବ କରିପାରେ, ସେତେବେଳେ ସେ ଆଉ ସ୍ୱାର୍ଥଜଡ଼ିତ କୌଣସି ନୀତିରେ ନିଜକୁ ଭୁଲାଇ ଦେବାକୁ ଚାହେଁ ନାହିଁ । ତାର କ୍ଷୁଦ୍ର ପ୍ରାଣରେ ବିଶ୍ୱ-ପ୍ରାଣର ଏକ ଅବିଚ୍ଛିନ୍ନ ସମ୍ବନ୍ଧ ସେ ଅନୁଭବ କରେ । ପାର୍ଥିବ ଅବଲମ୍ବନ ଯେତେ ମହତ୍ ହେଲେ ସୁଦ୍ଧା ସେ ସେଥିରେ ଅସାରତା ଉପଲବ୍ଧି କରେ । ପାର୍ଥିବ ବେଷ୍ଟନୀରେ ଆବଦ୍ଧ ମନୁଷ୍ୟର କଳ୍ପନା-କୁସୁମ ଅତି ସତେଜ ଜଣା ଯାଇପାରେ; କିନ୍ତୁ କାଳର ଗତିରେ ପରିବର୍ତ୍ତନ ଆସି ତାକୁ ମଉଳାଇ ଦିଏ । ବିଶ୍ୱ-ନିୟମର ଅନୁବର୍ତ୍ତୀ ଜଗତର ପରିବର୍ତ୍ତନଶୀଳତା ମନୁଷ୍ୟର ମନଗଢ଼ା ସଂସାର ଓ ନୀତିକୁ ବେଶିଦିନ ସ୍ଥାୟୀ କରି ଦିଏ ନାହିଁ ।

ଉନ୍ନତ ମାନବିକତାର ବିକାଶ ବିନା ଅବଲମ୍ବନରେ ସମ୍ଭବ ହୁଏ ନାହିଁ । ବିଶ୍ୱର ବିରାଟ ବିସ୍ତୃତି ଓ ଜୀବନର ଚିର ରହସ୍ୟମୟ ଗତିରେ ମନୁଷ୍ୟର ଆତ୍ମବୋଧ ସହଜରେ ଆସେ ନାହିଁ । ଅନେକ ସମୟରେ ମନୁଷ୍ୟ ନିତାନ୍ତ ତୁଚ୍ଛ ବିଷୟକୁ ବଡ଼ କରି ଦେଖେ ଓ ତାକୁ ଅବଲମ୍ବନ କରି ଜୀବନର ସରସତା ଆଣିବ ବୋଲି ଭାବିଥାଏ—କିନ୍ତୁ ଯେତେବେଳେ ସେ ନିଜର ଦୁର୍ବଳତା ବୁଝିପାରେ, ସେତେବେଳେ ଆଉ ତାକୁ ଅପେକ୍ଷା କରେ ନାହିଁ । ମନୁଷ୍ୟ ଚିର ସତ୍ୟ ଓ ସୌନ୍ଦର୍ଯ୍ୟର ଉପାସକ । ତାର ଏଇ ଉପାସନାରେ ପାର୍ଥିବ ଅବଲମ୍ବନର ଯେଉଁ ସମ୍ବନ୍ଧ ରହିଛି, ତାହା ତାକୁ ଦୁର୍ବଳ କିମ୍ବା ଲୋଲୁପ କରିବା ପାଇଁ ଉଦ୍ଦିଷ୍ଟ ହୋଇ ନାହିଁ । ମନୁଷ୍ୟ ସାଧନାନୁସାରେ ଅବଲମ୍ବନ ଶ୍ରେଷ୍ଠ କିମ୍ବା ବଡ଼ ହୋଇଥାଏ; କିନ୍ତୁ ଅତି ମାତ୍ରାରେ ବସ୍ତୁବାଦୀ କିମ୍ବା ପରମୁଖାପେକ୍ଷୀ ହୋଇପଡ଼ିଲେ ଅବଲମ୍ବନର ମହତ୍ତ୍ୱ ଆଦୌ ଜଣା ପଡ଼େ ନାହିଁ । ସତ୍ୟ ଓ ସୌନ୍ଦର୍ଯ୍ୟ ଉଦ୍ଦେଶ୍ୟରେ ହୃଦୟର ନିବେଦନ ସାଧନାର ସାଧାରଣ ସୋପାନରେ ପାର୍ଥିବ ବିଷୟକୁ ଅବଲମ୍ବନ କରିବା ସ୍ୱାଭାବିକ । ମନୁଷ୍ୟର ଗତି ଯଦି ଏହିଠାରେ ପ୍ରତିହତ ହୋଇ ରହେ, ତାହାହେଲେ ଜୀବନ ସ୍ୱତଃ ସଂକୁଚିତ ହୋଇ ଆସେ । ବିଷୟବିଭ୍ରାନ୍ତି ତାକୁ ବିକାଶର ବାସ୍ତବ ପଥ ଦେଖାଇ ଦିଏ ନାହିଁ । ତେଣୁ ସାଧାରଣ ସଂସାରୀ ପକ୍ଷରେ ବିଷୟ ଜଞ୍ଜାଳରୁ ମୁକ୍ତି ପାଇବା ପାଇଁ ଆଧ୍ୟାତ୍ମିକ ସାଧନାର ମାର୍ଗ ମହାଜନମାନେ ନିର୍ଦ୍ଦେଶ କରି ଦେଇ ଅଛନ୍ତି ।

ବୈଷୟିକ ଓ ଆଧ୍ୟାତ୍ମିକ ଦୁଇଟି ଅବଲମ୍ବନକୁ ପୃଥକ୍ ଭାବରେ ମନୁଷ୍ୟ ଅନୁସରଣ କରିପାରେ । ଗୋଟିକର ଅସ୍ଥାୟିତ୍ୱ ସଙ୍ଗେ ଅପରଟିର ସ୍ଥାୟିତ୍ୱକୁ ମିଳାଇ ଦେଲେ ଜୀବନର ଗତି ଜଟିଳ ହୋଇ ପଡ଼େ । ଧର୍ମ କିମ୍ବା ନୀତିର ଯଥାର୍ଥ୍ୟ ମନୁଷ୍ୟର ଅନୁଭୂତିକୁ ସହଜରେ ଆସେ ନାହିଁ । ସୁତରାଂ ଜୀବନର ବିସ୍ତୀର୍ଣ୍ଣତାରେ ସ୍ଥାୟୀତ୍ୱକୁ ଲକ୍ଷ୍ୟ କରିବା ମନୁଷ୍ୟ ପକ୍ଷରେ ଶ୍ରେୟସ୍କର । ସ୍ଥାୟିତ୍ୱର ଅବଲମ୍ବନ ମନୁଷ୍ୟକୁ ସହଜରେ ମିଳେ ନାହିଁ । ଜନ୍ମ ଜନ୍ମାନ୍ତରର ସଞ୍ଚିତ କର୍ମଫଳାନୁସାରେ ଏହା ମନୁଷ୍ୟର ଗତିପଥରେ ସ୍ୱତଃ ଦେଖା ଦେଇ ପାରେ କିମ୍ବା ତାର ସାଧନା ଉପଯୁକ୍ତ ଭାବରେ ନିୟନ୍ତ୍ରିତ ହୋଇ ଏହାକୁ ଆଶ୍ରୟ କରିପାରେ । ଯେ କୌଣସି ଉପାୟରେ ମନୁଷ୍ୟ ତାର ସ୍ଥାୟୀ ଅବଲମ୍ବନକୁ ଥରେ ପାଇ ପାରିଲେ, ସଂସାରର ଦୁର୍ଗମପଥ ତା ନିକଟରେ ବିଭୀଷିକା ଦେଖାଇପାରେ ନାହିଁ, କିନ୍ତୁ ଅବଲମ୍ବନଟି ପାଇବା ତା ପକ୍ଷରେ ସହଜ ହୁଏ ନାହିଁ । ଜଗତର ଜଟିଳତା

ତା ଦୃଷ୍ଟି ସମକ୍ଷରେ ଯେଉଁ ମାୟାଜାଲ ଟାଣି ଦିଏ, ସେଥିରେ ସେ ଅବଲମ୍ବନର ଉପକାରିତା ବୁଝିବାକୁ ମନ ବଳାଏ ନାହିଁ । ଅନେକ ସମୟରେ ନୀତି ଓ କର୍ମର ବିଭ୍ରାଟ ମନୁଷ୍ୟର ସତ୍‌ପ୍ରେରଣାକୁ ଏପରି ଭାବରେ ନିଯୁକ୍ତ କରି ରଖେ ଯେ, ତାର ଅବଲମ୍ବନକୁ ଗ୍ରହଣ କରିବାପାଇଁ ଯଥେଷ୍ଟ ଶକ୍ତି ଥିଲେ ସୁଦ୍ଧା ସେ ସେହି ଦିଗରେ ଅଗ୍ରସର ହେବାକୁ ଅବସର ପାଏ ନାହିଁ । ତା ନ ହୋଇଥିଲେ ପ୍ରତିଭାଶାଳୀ ଲୋକମାନଙ୍କର କାର୍ଯ୍ୟରେ ଯେଉଁ ଅସାଧାରଣ କର୍ମ-କୁଶଳତା ଦେଖା ଦେଇଥାଏ, ତାହା ସମସ୍ତ ବିଶେଷରେ ଲୋକସମାଜରେ ଅନାଦୃତ ହୁଅନ୍ତା ନାହିଁ । ଏପରି ହେବାରେ କୌଣସି ବିଶେଷତ୍ୱ ନାହିଁ । ନୀତି-ପ୍ରତିଷ୍ଠିତ କର୍ମର ପରିବର୍ତ୍ତନ ଅବଶ୍ୟମ୍ଭାବୀ । ପ୍ରତିଭାଶାଳୀ ଲୋକ ସମୟ ଓ ଘଟନାର ଅନୁକୂଳରେ ନିଜେ ନୀତି-ପ୍ରତିଷ୍ଠା କିମ୍ବା ଅନୁସରଣ କରି ଯାହା କରିଯାନ୍ତି, ତାହା ଜାତୀୟ ପ୍ରାଣର ଅବଲମ୍ବନ ପକ୍ଷରେ ସବୁ ସମୟରେ ଉପଯୋଗୀ ହୋଇ ପାରେ ନାହିଁ । କାରଣ ଜାତୀୟ ଜୀବନର ଅବଲମ୍ବନ ବଡ଼ ବିଶାଳ । ତାକୁ ପୂର୍ଣ୍ଣ ଭାବରେ ଲକ୍ଷ୍ୟ କରିବାପାଇଁ ପ୍ରତିଭାଶାଳୀ ଲୋକ ପ୍ରାୟ ଅବସର ପାଏ ନାହିଁ । ଯେଉଁ ମହାଜନମାନେ ଲକ୍ଷ୍ୟର ପୂର୍ଣ୍ଣ ସ୍ୱରୂପ ଦେଖିଛନ୍ତି ସେହିମାନେ ଜଗତରେ ଚିରଦିନ ମାନବଜାତିର ଅବଲମ୍ବନ ହୋଇ ରହିବେ—ସେହିମାନେ ହେବେ ଜଗତର ଗୁରୁ । ସେମାନଙ୍କର ବାଣୀରେ ସତ୍ୟର ପ୍ରକାଶ ନିରବଚ୍ଛିନ୍ନ ଭାବରେ ରହିବ । ଯେଉଁମାନେ ଏପରି ଗୁରୁ ପାଇବାକୁ କ୍ଷମ ହୋଇଅଛନ୍ତି, ସେମାନଙ୍କର ଜୀବନ ମଧ୍ୟ ଧନ୍ୟ ।

# ଭାବ-ଜଗତ

ମନୁଷ୍ୟ ଅନ୍ତରରେ ଭାବର ଉନ୍ମେଷ ଚିରଦିନ ଉନ୍ମୁକ୍ତ ରହିଛି; କିନ୍ତୁ ଗୋଟାଏ ଅନୁଭୂତି ନ ଆସିବା ପର୍ଯ୍ୟନ୍ତ ଏହାକୁ ଭାଷାରେ ପ୍ରକାଶ କରିବା ସହଜ ହୁଏ ନାହିଁ । ବିଶିଷ୍ଟ କବି, ଭାବୁକ ଓ ଚିତ୍ରକରଙ୍କର ଅନୁଭୂତି ସବୁବେଳେ ଗୋଟାଏ ସାଧାରଣ ସୀମା ଅତିକ୍ରମ କରି ଚାଲେ; ଯଦ୍ଦ୍ୱାରା ସେମାନେ ନିଜର ଗଢ଼ି ଜଗତକୁ ଦେଖାଇପାରନ୍ତି । ସେମାନଙ୍କର ଭାବରାଜ୍ୟରେ ଗୋଟାଏ ଅରୂପକୁ ରୂପ ଦେବାପାଇଁ ଯେଉଁ ଉପାଦାନ, ସାଧନା ଓ ସଞ୍ଚିତ କର୍ମଫଳଦ୍ୱାରା ସୃଷ୍ଟ ହୋଇଥାଏ, ତାକୁ ଅବଲମ୍ବନ କୁହାଯାଇ ପାରେ । ଏହି ଅବଲମ୍ବନ କବିର ଲେଖନୀ ଓ ଚିତ୍ରକରର ତୂଳିକାରେ ଆତ୍ମପ୍ରକାଶ କରେ । ବିଶ୍ୱ-ସୃଷ୍ଟିର ଅମର ସୌନ୍ଦର୍ଯ୍ୟରେ ଭାବୁକ ଯେତେ ମୁଗ୍ଧ ହେଲେ ସୁଦ୍ଧା ଅବଲମ୍ବନର ବିଶେଷତ୍ୱ ଉପରେ ତାଙ୍କ କୃତିତ୍ୱର ନିଦର୍ଶନ ମିଳେ । ଆଜି ପୂତ ରାମାୟଣ ହିନ୍ଦୁ ଜାତିର ଅସ୍ଥି ମଜ୍ଜାରେ ଯେପରି ମିଶି ରହିଛି ଓ ଏହାର ବିଲୟ ଯେ ଅସମ୍ଭବ ଏହା କେବଳ ସେହି ମହର୍ଷି ବାଲ୍ମୀକିଙ୍କର ରାମାୟଣବର୍ଣ୍ଣିତ ଅମର ଅବଲମ୍ବନରୁ ପ୍ରକାଶିତ ହୁଏ । ବାଲ୍ମୀକି ହିନ୍ଦୁ ଜାତିପାଇଁ ପ୍ରେମରେ ଯେଉଁ ଅଭ୍ରାନ୍ତ ଆଦର୍ଶ ରଖି ଦେଇଗଲେ, ତାହା ଆଜି ପୃଥିବୀରେ ସମ୍ଭବ ହେବ ନାହିଁ । ବାଲ୍ମୀକିଙ୍କର ହୃଦୟୋଚ୍ଛ୍ୱାସରେ ଥିଲା— ଗୋଟାଏ ମର୍ମସ୍ପର୍ଶୀ ଅଶରୀରୀ ବାଣୀ, ଯାହାକୁ ରୂପ ଦେବାକୁ ଯାଇ ସେ ଅମର ହୋଇ ପାରିଛନ୍ତି । କାଳର ସୁଦୂର ଅତୀତରେ ରାମାୟଣର ସୃଷ୍ଟି କଥା ମନେ କଲେ, ଏହାର କଥାବସ୍ତୁକୁ ଐତିହାସିକର ବିଚାରବୁଦ୍ଧିରେ ନିର୍ଣ୍ଣୟ କରିବାକୁ ଇଚ୍ଛା ହୁଏ ନାହିଁ । କାରଣ ସନାତନ ଆଦର୍ଶ ଉପରେ ଐତିହାସିକର ଲେଖନୀର ପ୍ରଭାବ ରହେ ନାହିଁ । କାଳର କେତେ ଢେଉ ଆସି ଚାଲିଯିବ, କିନ୍ତୁ ହିନ୍ଦୁ ଆଦର୍ଶର ମଉଡ଼ମଣି ବାଲ୍ମୀକିବର୍ଣ୍ଣିତ ରାମାୟଣର ସଙ୍କେତ ଲୁଚିବ ନାହିଁ ।

ଭାବଜଗତର ବିଶାଳ ସୀମାହୀନତାରେ ଅନୁଭୂତି-ସୃଷ୍ଟ ଅବଲମ୍ବନ ଗୋଟାଏ ଗୋଟାଏ ସନାତନ ଆଦର୍ଶକୁ ଲକ୍ଷ୍ୟ କରି ଯେଉଁ ଗତିରେ ଗତି କରେ ତଦନୁଯାୟୀ ଭାବ-ଅଭିବ୍ୟକ୍ତିର ସ୍ୱରୂପ ପ୍ରକାଶିତ ହୁଏ । କାବ୍ୟ, ଗ୍ରନ୍ଥ, ଚିତ୍ରଶିଳ୍ପ ଓ ମନୁଷ୍ୟର ଅନ୍ୟାନ୍ୟ ପ୍ରକାର ପ୍ରଣାଳୀରେ ଏହାର ପ୍ରତିବିମ୍ବ ଅଙ୍କିତ ହୋଇ ରହେ । କିନ୍ତୁ ହୃଦୟର ଉତ୍ତେଜନାରେ ସାମୟିକ ବସ୍ତୁ-ମୋହକୁ ଅନୁସରଣ କଲେ ଏଥିର ବାସ୍ତବତା କେଡ଼େ ଅସ୍ପଷ୍ଟ ହୋଇପଡ଼େ । ଅନେକ ସମୟରେ ସତ୍ୟ ଓ ସୌନ୍ଦର୍ଯ୍ୟର ଆଧାରକୁ ବସ୍ତୁ-ଜଗତର ବେଷ୍ଟନୀ ମଧ୍ୟରେ ସଙ୍କୁଚିତ କରି ଯେଉଁ ଚିତ୍ର ପ୍ରକାଶ କରାଯାଏ ତାହା ଯୁଗୋପଯୋଗୀ ହୋଇପାରେ; କାରଣ ଏଥିରେ ସାଧାରଣ ଅନୁଭୂତିର ଗୋଟାଏ ସ୍ପର୍ଶ ଥାଏ । ଆଦର୍ଶ ଦୃଷ୍ଟିରୁ ଏହାର ବିଚାର ନ କଲେ ମଧ୍ୟ ଚଳେ । ଭାବଜଗତରୁ ରୂପ ନେଇ ଯେତେ କାବ୍ୟ, ଗ୍ରନ୍ଥ, ଚିତ୍ର ବା ଶିଳ୍ପ ଆସିଲାଣି ସେ ସବୁ ସମାନ ନୁହେଁ । ସେମାନଙ୍କର ଅସମାନତାରେ ବିଶ୍ୱର ଚିରନ୍ତନ ଅବଦାନ—ସୌନ୍ଦର୍ଯ୍ୟ ଓ ସତ୍ୟ—ଆତ୍ମଶକ୍ତିର ଉଦ୍‌ବୋଧନ ପାଇଁ ଯେପରି ବିଭିନ୍ନ ଅବଲମ୍ବନକୁ ଆଶ୍ରୟ କରି ଆସିଛି ସେହି ଅନୁସାରେ ସେମାନଙ୍କର ଅସମାନତା ପାଇଁ ମାର୍ଗ ବିସ୍ତୀର୍ଣ୍ଣ ହୋଇଯାଇଛି । ଏଥିରେ ଦେଶ ଓ କାଳର ବିଭିନ୍ନ ସ୍ୱରୂପ ଦେଖାଯାଇପାରେ; କିନ୍ତୁ ସେହି ସନାତନ ଆଦର୍ଶକୁ ଚିରଦିନ ପାଇଁ ଏକ ଅବିନାଶୀ ରୂପ-ସମ୍ପଦରେ ଗଢ଼ି ଦେବା ପାଇଁ ଯେଉଁ କବି, ଚିତ୍ରକର ବା ଶିଳ୍ପୀ ସମର୍ଥ ହୁଅନ୍ତି, ତାଙ୍କର ସଂଖ୍ୟା ଅତ୍ୟଳ୍ପ । ବାଲ୍ମୀକିଙ୍କର ଅମର ଲେଖନୀରେ ଯେଉଁ ମହାକାବ୍ୟ ରୂପ ଧାରଣ କରିଛି ତାକୁ ସତ୍ୟ, ସୌନ୍ଦର୍ଯ୍ୟ ଓ ପ୍ରେମର ସମଷ୍ଟିଗତ ପ୍ରତୀକ ବୋଲି ନିଃସନ୍ଦେହରେ କୁହାଯାଇପାରେ ।

ବିଶାଳ ଭାବ-ଜଗତରେ ଅନ୍ତଃ-ସଲିଳା ଫଲ୍‌ଗୁ ପରି ଏକ ଶାଶ୍ୱତ ଭାବଧାରା ଯୁଗ ଯୁଗ ଧରି ଚାଲିଛି । ଅବିନାଶୀ ଆତ୍ମଶକ୍ତି ପରି ଏହାର ଗତି ଅପ୍ରତିହତ ଓ ଚିରନ୍ତନ । ମହାକବି ବାଲ୍ମୀକିଙ୍କର ଭାବ-ରାଜ୍ୟରେ ଯେଉଁ ଭାବ-ତରଙ୍ଗ ଦିନେ

ଉଠିଥିଲା, ତା'ର ବିରାମ ଆଜିସୁଦ୍ଧା ଆସି ନାହିଁ କିମ୍ବା କେବେହେଲେ ଆସିବ ନାହିଁ । ସାଧାରଣ ମନୁଷ୍ୟ କର୍ମର ଜଟିଳତା ଭେଦ କରି ଭାବର ବୈଷମ୍ୟ ବୁଝି ପାରେ ନାହିଁ । ପାରିପାର୍ଶ୍ୱିକ ଅବସ୍ଥାକୁ ସେ ବଡ଼ କରି ଦେଖେ ଓ ତଦନୁଯାୟୀ ନିଜର କର୍ମପନ୍ଥାକୁ ଆଶ୍ରୟ କରେ । ଏଥିରେ ତାର ନିଜତ୍ୱ ପ୍ରାୟ କିଛି ରହେ ନାହିଁ । କର୍ମ-ଜଗତ ଯେ ଭାବ-ଜଗତର ବହିଃପ୍ରକାଶ ତାକୁ ବୁଝିବାକୁ ଅବକାଶ ମିଳେ ନାହିଁ । ଗୋଟିଏ ଯନ୍ତ୍ର ପରି ସେ ଗତି କରେ । କେବଳ ବିଷୟ ଭାବନା ତା ଅନ୍ତରକୁ ଆବଦ୍ଧ କରି ରଖେ ।

ଭାବ କର୍ମର ପ୍ରସୂତି । କର୍ମ-ଜଗତର ଜଟିଳତା ଓ ବହୁମୁଖୀ ଧାରାରେ ପ୍ରଚଳିତ ଶକ୍ତିମାନଙ୍କର ପ୍ରଭାବ ମନୁଷ୍ୟ ଅନ୍ତରରେ ପଡ଼େ ।

ଜଗତରେ ଯେଉଁମାନେ ନୀତି-ପ୍ରବର୍ତ୍ତନର ସ୍ଥାନ ଅଧିକାର କରି କୌଣସି ଏକ ପ୍ରଚଳିତ କର୍ମଧାରାକୁ ବଦଳାଇ ଦେଇ ତତ୍ ପରିବର୍ତ୍ତିରେ ନୂତନ କର୍ମ-ମାର୍ଗ ସୃଷ୍ଟି କରି ପାରନ୍ତି, ସେମାନଙ୍କ ଭାବ-ଧାରାରେ ଗୋଟିଏ ବିଶେଷତ୍ୱ ଥାଏ । ଏହି ବିଶେଷତ୍ୱ ଉପରେ ଯୁଗଧର୍ମର ସ୍ଥିତି ନିର୍ଭର କରେ । ଯୁଗେ ଯୁଗେ ମାନବର ସାଧନା ସତ୍ୟର ଅନୁସନ୍ଧାନରେ କେତେ ନୂତନ କର୍ମ-ମାର୍ଗ ଉଦ୍‌ଘାଟନ କରି ଆସିଲାଣି; କିନ୍ତୁ ତାହାର ସ୍ଥାୟିତ୍ୱ ଚିରଦିନ ପାଇଁ ରହି ପାରିନାହିଁ । ଆଦର୍ଶ ଦୃଷ୍ଟିରୁ ବିଚାର କଲେ ଯେତେ ଉନ୍ନତ କର୍ମ-ମାର୍ଗ ସୃଷ୍ଟ ହୋଇଅଛି, ସେଥିରେ କୌଣସି ବିଶେଷ ପାର୍ଥକ୍ୟ ଦେଖିବାକୁ ମିଳିବ ନାହିଁ; କାରଣ ସତ୍ୟ ଓ ସନାତନ ଆଦର୍ଶର ପରିବର୍ତ୍ତନ ନାହିଁ ।

ମହାଭାବର ବିକାଶ, ଆତ୍ମ ଶକ୍ତିର ସହାୟତା ଲୋଡ଼େ । କର୍ମଜଗତରେ ଯେଉଁ ମହାପୁରୁଷମାନେ କୌଣସି ପ୍ରଚଳିତ ରୀତିନୀତିରେ ମନୁଷ୍ୟ ହୃଦୟ ସଙ୍କୀର୍ଣ୍ଣତା-ଜନିତ କାଳିମା ପ୍ରଭାବକୁ ଦୂର କରି ଏକ ଅଭ୍ରାନ୍ତ ଆଦର୍ଶରେ ନୂତନ କର୍ମ-ମାର୍ଗ ଉଦ୍‌ଘାଟନ କରନ୍ତି । ସେମାନଙ୍କର ଭାବଧାରାରେ ଏକ ମହୀୟସୀ ଶକ୍ତିର ସ୍ପର୍ଶ ଆତ୍ମଗୋପନ କରିଥାଏ । ତା ହୋଇ ନ ଥିଲେ ଜଣେ ଶ୍ରୀକୃଷ୍ଣ ବା ଜଣେ ବୁଦ୍ଧ ସଂଖ୍ୟାତୀତ ମାନବ-ହୃଦୟକୁ ଅଧିକାର କରି ପାରି ନ ଥାନ୍ତେ । ମହାକବି ବାଲ୍ମୀକିଙ୍କର ହୃଦୟ କନ୍ଦରରୁ ଯେ କରୁଣ ରାଗିଣୀ ହଠାତ୍ ଝଙ୍କୃତ ହୋଇ ଉଠିଥିଲା, ତାହା ଆଜିସୁଦ୍ଧା କବି ଓ ଭାବୁକର ହୃଦୟରେ ପ୍ରତିଧ୍ୱନିତ ହେଉଅଛି । ଭାବର ବୈଷମ୍ୟ ଯେନ ଭାବଜଗତର ବିଭିନ୍ନ ସ୍ତରରେ ଗୋଟାଏ ସମାନତା ଥାଏ । ଏହି ସମାନତା ଉପରେ କବି, ଦାର୍ଶନିକ, ଓ ଚିନ୍ତକରମାନଙ୍କର ଶ୍ରେଣୀ-ବିଭାଗ କରାଯାଇପାରେ । ଆହୁରି ମଧ୍ୟ ଗୋଟିଏ ଭାବର ପ୍ରକାଶ-ଶୈଳୀର ଭିନ୍ନତାରେ ସୌନ୍ଦର୍ଯ୍ୟର ଯେଉଁ ବିକାଶ ଦେଖିବାକୁ ମିଳେ, ତାହା ଦେଶ ଓ କାଳର ପ୍ରଭାବ ଉପରେ ଆରୋପ କରାଯାଇ ପାରେ । ଅଗଣିତ ଆଶ୍ରୟରେ ଏକ ଆତ୍ମଶକ୍ତିର ବିଭିନ୍ନ ବିକାଶ ସଙ୍ଗେ ଏହାକୁ ତୁଳନା କରାଯାଇପାରେ ।

ସାଧାରଣ ମନୁଷ୍ୟ ଗୋଟିଏ ଭାବର ଅଧୀନରେ ସବୁବେଳେ ରହିପାରେ ନାହିଁ । କାରଣ ତାର ଚିତ୍ତର ବିକ୍ଷେପ ସବୁବେଳେ ତରଙ୍ଗାକୁଳ ଗୋଟାଏ ଜଳାଶୟ ପରି ରହିଥାଏ । ତରଙ୍ଗାୟିତ ଜଳାଶୟରେ ଯେପରି କୌଣସି ପ୍ରତିବିମ୍ବ ଦେଖାଯାଏ ନାହିଁ, ସେହିପରି ମନୁଷ୍ୟ-ଅନ୍ତରର ଚଞ୍ଚଳତା କୌଣସି ଭାବଧାରାକୁ—ଯେ ପର୍ଯ୍ୟନ୍ତ ମନର ସ୍ଥିରତା ନ ଆସେ—ପ୍ରକଟିତ କରିପାରେ ନାହିଁ । ଅବଶ୍ୟ ଅନେକ କାବ୍ୟ ଉପନ୍ୟାସରେ ଗୋଟାଏ ତରଳ ଭାବର ଚିତ୍ରଣ ଦେଖାଯାଇଥାଏ; କିନ୍ତୁ ସେପରି ଗ୍ରନ୍ଥ ସବୁ ବେଶିଦିନ ଆଦୃତ ହୋଇପାରେ ନାହିଁ । ଚଞ୍ଚଳମତି ପାଠକମାନଙ୍କର ଚିତ୍ତ-ବିଶୃଙ୍ଖଳା ବୃଦ୍ଧି ଦିଗରେ ଏମାନେ ସହାୟତା କରିପାରନ୍ତି; କିନ୍ତୁ ଗୋଟାଏ ବାସ୍ତବ ଅନୁଭୂତିର ଚିତ୍ର ପ୍ରକାଶ କରିବା ଏମାନଙ୍କ ପକ୍ଷେ ପ୍ରାୟ ସମ୍ଭବ ହୁଏ ନାହିଁ । ଶ୍ରେଷ୍ଠ କବି, ଭାବୁକ, ଚିନ୍ତକର ବା ଯେ କେହି ଭାବ ଜଗତରେ ଅମୃତତ୍ୱ ଆସ୍ୱାଦନ କରିବାରେ ପ୍ରୟାସୀ ହେଲେ, ତାଙ୍କୁ ଚିତ୍ତର ସ୍ଥିରତା ଆଣିବା ପାଇଁ ସାଧନାର ସମ୍ମୁଖୀନ ହେବାକୁ ପଡ଼ିବ । ଜନ୍ମଗତ ସଂସ୍କାର ବଳରେ ଯେଉଁମାନଙ୍କର ସ୍ୱତଃ ଫୁଟି ଉଠେ, ସେମାନଙ୍କର ଏ ସମ୍ପର୍କରେ ଟିକିଏ ସ୍ୱାତନ୍ତ୍ର୍ୟ ରହେ । ମାନବିକତାର ଚରମ ବିକାଶରେ ଭାବ-ସମୃଦ୍ଧି ଅପରିହାର୍ଯ୍ୟ ଓ ଭାବର ଅବର୍ତ୍ତମାନତାରେ କର୍ମ-ଜଗତର ସ୍ଥିତି ଅସମ୍ଭବ କହିଲେ ଚଳେ ।

# ନବ-ବର୍ଷ

ସୀମାହୀନ କାଳସ୍ରୋତରେ ମନୁଷ୍ୟର ଗତି ଚିରଦିନ ରହସ୍ୟରେ ଆଚ୍ଛନ୍ନ । ଗୋଟିଏ ମୁହୂର୍ତ୍ତ ବିଶାଳ ଅତୀତରେ ମିଶିଗଲାବେଳେ କେହି ଲକ୍ଷ୍ୟ ରଖନ୍ତି ନାହିଁ; କିନ୍ତୁ ସେହି ମୁହୂର୍ତ୍ତଟି ହୁଏତ କେତେ କର୍ମ-ଜୀବନର ଧାରାକୁ ବଦଳାଇ ଦେଇ ଚାଲିଯାଏ । ଅନୁଭବୀ କେବଳ ତାକୁ ନିଜ ଜୀବନରେ ଅତି ବଡ଼ କରି ଆଙ୍କି ରଖେ । ସାମାନ୍ୟ ମୁହୂର୍ତ୍ତ ତୁଳନାରେ ଗୋଟିଏ ବର୍ଷ ମଧ୍ୟରେ ସଂଘଟିତ ଘଟଣାବଳୀକୁ ଆଲୋଚନା କଲେ ସୁସ୍ପଷ୍ଟ ପରିବର୍ତ୍ତନ ଦେଖାଯାଏ । ବର୍ଷଟିଏ ଚାଲିଗଲା ପରେ ମନୁଷ୍ୟ ଯେତେବେଳେ ପଛକୁ ଦୃଷ୍ଟି ଫେରାଇ ଦେଖେ, ସେତେବେଳେ ବେଶ୍ ବୁଝିପାରେ—ସେ ଯେଉଁଠାରେ ବର୍ଷକ ତଳେ ଥିଲା, ସେଠାରେ ଆଉ ନାହିଁ । ଅବଶ୍ୟ କେଉଁ ଆଡ଼କୁ ସେ ଯାଉଛି ଓ ତାର ଗତିପଥରେ ଯେଉଁ ପରିବର୍ତ୍ତନ ସବୁ ଦେଖିଆସିଲା, ସେମାନଙ୍କର ସ୍ୱରୂପ କଅଣ, ସହଜରେ ଜାଣିପାରିବ ନାହିଁ । କେବଳ ସେ ଏତିକିମାତ୍ର ଜାଣିପାରେ ଯେ, ବର୍ଷଟିଏ ଚାଲିଗଲା ପରେ ଜୀବନର ଯେଉଁ ଅଧ୍ୟାୟଟି ସରିଯାଏ, ତାହା ଆଉ ଫେରି ଆସେ ନାହିଁ ।

ବର୍ଷ ପରେ ବର୍ଷ ଆସି ଚାଲିଯାଏ, ଆଜିକାର ନୂଆ ବର୍ଷ କାଲିକି ପୁରୁଣା ହୋଇଯାଏ; କିନ୍ତୁ ମନୁଷ୍ୟର ନୂତନତ୍ୱ-ମୋହ ଭାଙ୍ଗେ ନାହିଁ । ପୃଥିବୀର ପ୍ରାୟ ଅଧିକାଂଶ ସଭ୍ୟଜାତିଙ୍କ ମଧ୍ୟରେ ବର୍ଷର ପ୍ରଥମ ଦିବସ ଏକ ନ ହେଲେ ମଧ୍ୟ ସମାରୋହରେ ଅତି ଦୀର୍ଘକାଳରୁ ପାଳିତ ହୋଇ ଆସୁଛି । ମନୁଷ୍ୟର ସୌନ୍ଦର୍ଯ୍ୟବୋଧ ନୂତନତ୍ୱର ପକ୍ଷପାତୀ ବୋଲି କାଳର ଅସୀମତାରେ ସୁଦ୍ଧା ମାସ ଓ ବର୍ଷରୂପରେ ଗୋଟିଏ ଗୋଟିଏ ଛେଦ ଆଣି, ନିଜର ପରିମିତ କାର୍ଯ୍ୟକାଳକୁ ସେଥିରେ ସମ୍ପୃକ୍ତ କରି ଜୀବନର ଅନୁଭୂତିଗୁଡ଼ିକୁ ଉଜ୍ଜୀବିତ ରଖିବା ପାଇଁ ସେ ସର୍ବଦା ତତ୍ପର । ସୌନ୍ଦର୍ଯ୍ୟର ଅବିନାଶୀ ସତ୍ତା କାଳର ଅନନ୍ତ ଗତିରେ କ୍ଷୁଦ୍ର ମାନବର ପ୍ରାଣକୁ ପୂର୍ଣ୍ଣମାତ୍ରାରେ ସ୍ପର୍ଶ କରିପାରେ ନାହିଁ; କିନ୍ତୁ ତାର କଳ୍ପନା ଜାଗତିକ ଆଧାରମାନଙ୍କୁ ଅବଲମ୍ବନ କରି କାଳର ଏକ ନିର୍ଣ୍ଣୀତ ସୀମା ମଧ୍ୟରେ ସୌନ୍ଦର୍ଯ୍ୟର ଅମର ସଙ୍କେତକୁ ଅନୁସରଣ କରିବାକୁ ଭୁଲି ନାହିଁ । ମନୁଷ୍ୟ ତାର ଆଦିମ ଅବସ୍ଥାରୁ ସୌନ୍ଦର୍ଯ୍ୟକୁ ପୂଜା କରି ଆସିଲାଣି, କିନ୍ତୁ ତାକୁ କାଳଠାରୁ ବିଚ୍ଛିନ୍ନ ଦେଖି ନାହିଁ । ସୁଦୂର ଅତୀତରେ ଯେତେବେଳେ ସେ ଜୀବନର ଜଞ୍ଜାଳ ଆଦୌ ଅନୁଭବ କରି ନ ଥିଲା, ଧରିତ୍ରୀପୃଷ୍ଠରେ ବିଚରଣ କରି ଆରାମରେ ନିଜର ଶରୀର-ଯାତ୍ରା ନିର୍ବାହ କରୁଥିଲା ଓ ନିଜକୁ ଚିର ସ୍ୱାଧୀନ ବୋଲି ଭାବୁଥିଲା, ସେତେବେଳେ ତାର ଭାବନା ପ୍ରକୃତିର ବୈଚିତ୍ର୍ୟ ସଙ୍ଗେ କାଳକୁ ଅନୁସରଣ କରୁଥିଲା । କାଳ ସଙ୍ଗେ ପ୍ରକୃତିର ନିବିଡ଼ ସମ୍ବନ୍ଧକୁ ମନୁଷ୍ୟ କେତେବେଳେ କିପରି ଭାବରେ ଦେଖିଛି, ତହିଁର କୌଣସି ନିର୍ଦ୍ଦିଷ୍ଟ ବର୍ଣ୍ଣନା ନାହିଁ । ପ୍ରକୃତିର ବିଧ୍ୱଂସିକା ମହାକାଳରୂପେ ଜଗତରେ ଅବତୀର୍ଣ୍ଣ ହୋଇ ଧ୍ୱଂସର କରାଳ ଲୀଳା ପ୍ରକଟିତ କଲାବେଳେ କିମ୍ବା ତାହାର ନିର୍ଦ୍ଦେଶରେ ଶାନ୍ତ ଧରିତ୍ରୀ ପ୍ରାଣୀକୁଳକୁ ନିଜ କୋଳରେ ସ୍ତନ୍ୟ-ଦାୟିନୀ ଜନ୍ମଦାତ୍ରୀ ପରି ପାଳନ କଲାବେଳେ, ମନୁଷ୍ୟ କାଳର ଗତିକୁ ଏକାଭାବରେ ଦେଖିପାରେ ନାହିଁ । ପ୍ରକୃତିର ଏହି ଦୁଇଟି କ୍ରିୟା କାଳର ଗତିରେ ଆସେ; କିନ୍ତୁ ଗୋଟିକ ପରି ଅପରଟି ତାର ସ୍ପୃହଣୀୟ ହୁଏ ନାହିଁ । ନୂତନତ୍ୱ ପାଇବା ଆଶାରେ ମନୁଷ୍ୟ କାଳର ଅଗ୍ରଗତିକୁ ଅପେକ୍ଷା କରିଥାଏ; କିନ୍ତୁ ତାର ସୁଖର କଳ୍ପନା ଅନେକ ସମୟରେ ବିପରୀତ ଫଳ ପ୍ରସବ କରେ । ବର୍ଷଟିଏ ଚାଲିଯାଏ, ସେଥିପାଇଁ କ୍ୱଚିତ୍ କେହି ଶୋଚନା କରେ; କିନ୍ତୁ ବର୍ଷଟିଏ ଆସୁଛି ବୋଲି ସମସ୍ତେ ଆନନ୍ଦରେ ଅନାଇ ରହନ୍ତି । ମନୁଷ୍ୟ ଚିରଦିନ ସୁଖର ଆଶାୟୀ । ଦୁଃଖ ଓ ନିରାନନ୍ଦକୁ ସେ କଳ୍ପନାରେ ସୁଦ୍ଧା ସ୍ଥାନ ଦେବାକୁ ଇଚ୍ଛା କରେ ନାହିଁ । ନବ-ବର୍ଷକୁ ବରଣ କରି ନେଲାବେଳେ ସେ ଭାବିପାରେ ନାହିଁ ଯେ ତାର ସୀମାରେ ସୃଷ୍ଟିର ଯାବତୀୟ ଅମଙ୍ଗଳ ଆତ୍ମ-ଗୋପନ କରି ରହିଛି; ବରଂ ଯେଉଁ ବର୍ଷଟି ଚିରଦିନ ପାଇଁ ବିଦାୟ ନେଇ ଚାଲିଯାଏ, ତାହା ଗୋଟିଏ ସୁସ୍ପ

ଯୁଗର ଶେଷ ଯବନିକା ପକାଇଦିଏ । କାଳର ଗତି-ଦୃଷ୍ଟିରୁ ସୃଷ୍ଟିର ସୌନ୍ଦର୍ଯ୍ୟ ଅବଦାନକୁ ମାନବଜୀବନର ଭିନ୍ନ ଭିନ୍ନ ସୋପାନରେ ସମ୍ପୃକ୍ତି ସାଧନ ପାଇଁ ସଂଯୋଜନା ଓ ନବବର୍ଷର ଆବିର୍ଭାବ ସଙ୍ଗେ ଏଥିର ଅନୁରୂପ ପରିବର୍ତ୍ତନ ଯୁଗେ ଯୁଗେ ମାନବ-ସମାଜରେ ଆଦରଣୀୟ ହୋଇ ରହିବ ।

ନୂତନ ବର୍ଷରେ ନୂତନ କର୍ମ-ପ୍ରେରଣା ପାଇବ ବୋଲି ମନୁଷ୍ୟ ଆଶା ପୋଷଣ କରିଥାଏ । ସାଧାରଣତଃ ସେ ଗୋଟିଏ ସ୍ୱତନ୍ତ୍ର କର୍ମର ଧାରାକୁ ସବୁଦିନେ ଅନୁସରଣ କରି ଜୀବନ ବିତାଇ ଦେବାକୁ ଭଲ ପାଏ ନାହିଁ । କାଳର ଅବିଚ୍ଛିନ୍ନ ଗତିରେ ଯଦି କର୍ମର ନୂତନତ୍ୱ ପ୍ରକାଶ ନ ପାଏ, ତାହାହେଲେ ତାର କୌଣସି ସାଧନାରେ ପ୍ରବୃତ୍ତି ଜନ୍ମିବ ନାହିଁ । ସେଥିପାଇଁ ସେ କାଳକୁ ବିଭାଗ କରି କର୍ମର ବିଭିନ୍ନତା ସଙ୍ଗେ ସାମଞ୍ଜସ୍ୟ ରକ୍ଷାର ପନ୍ଥା ଆବିଷ୍କାର କରିଅଛି । ଦିନ, ମାସ ଓ ବର୍ଷ ଧରି ପ୍ରତ୍ୟେକ କର୍ମୀ ନିଜର ଅନୁସୃତ କର୍ମ-ପ୍ରଣାଳୀରେ ନିବିଷ୍ଟ ରହିଛନ୍ତି; କିନ୍ତୁ ମନୋବୃତ୍ତିର ସମ୍ୟକ୍ ଚାଳନା ପାଇଁ ଯେଉଁ ପରିବର୍ତ୍ତନଟିକ ଆବଶ୍ୟକ, ତାକୁ କାଳର ନିୟନ୍ତ୍ରଣ ଉପରେ ଆରୋପ କରାଯାଇଅଛି । ବାସ୍ତବିକ ଦେଖିବାକୁ ଗଲେ କାଳ କିମ୍ବା କର୍ମର ଧାରାରେ ଯେଉଁ ନୂତନତ୍ୱ ଅଛି, ତାକୁ ପରିବର୍ତ୍ତନର ଆଖ୍ୟା ମଧ୍ୟ ଦିଆଯାଇ ପାରେ । କର୍ମର ଜଟିଳତା ଚିରଦିନ ଲାଗି ରହିଛି । ସହସ୍ର ବର୍ଷ ତଳେ ମନୁଷ୍ୟ ଯେଉଁ କାର୍ଯ୍ୟ ସମ୍ପାଦନ କରିଥିଲା, ଆଜି ତାହା ତାକୁ ନୂତନ ଓ ଅଜଣା ବୋଧ ହୋଇପାରେ; କିନ୍ତୁ କର୍ମର ଏହି ବିରୋଧ ଓ କାଠିନ୍ୟ ମଧ୍ୟରେ କର୍ମୀର ସ୍ୱଭାବସିଦ୍ଧ ଗୁଣକୁ ଲକ୍ଷ୍ୟ କରିବା ଉଚିତ । ଆବହମାନକାଳରୁ ମନୁଷ୍ୟର ମନୋବୃତ୍ତି ସଙ୍ଗେ ଏହି ଗୁଣର ସମ୍ବନ୍ଧ ଲାଗି ରହିଛି । ବର୍ଷ ପରେ ବର୍ଷ ଆସୁଛି, ଏହିପରି କେତେ ଯୁଗ ବିତିଗଲାଣି ଓ ବିତିଯିବ । ସମୟର ସ୍ରୋତ ଏକା ପରି ଚାଲିଥିବ । କର୍ମର ମଧ୍ୟ ବିରାମ ହେବ ନାହିଁ । ଯୁଗ ଯୁଗାନ୍ତରରୁ ମନୁଷ୍ୟ କେତେ ଅସାମାନ୍ୟ କାର୍ଯ୍ୟ କରି ଆସିଲଣି ଓ ପୁଣି କରିଯିବ; କିନ୍ତୁ ତାର ଗୁଣର ଅତୀତ ଅବସ୍ଥା ପ୍ରକଟିତ ହେବା ସହଜ ନୁହେଁ । ଗୁଣର ଅଧୀନରେ ସେ କାଳର ଯେଉଁ ବ୍ୟବଧାନଟି ଦେଖେ ତାହା ତାର କର୍ମପ୍ରେରଣାର ବିରୋଧୀ ହୁଏ ନାହିଁ । କାଳ ଓ କର୍ମର ଗୋଟିଏ ଅଭିନ୍ନ ମାର୍ଗ ଦେଇ ମନୁଷ୍ୟକୁ ତାର ଲକ୍ଷ୍ୟ ଅନିର୍ଦ୍ଦିଷ୍ଟ ହେଲେ ମଧ୍ୟ ଗତି କରିବାକୁ ହେବ । ଏହା ବ୍ୟତୀତ ତାର ଉପାୟାନ୍ତର ନାହିଁ । ପଥଶ୍ରାନ୍ତ ପଥିକ ଦୁର୍ଗମ ପଥରେ ମୁହୂର୍ତ୍ତିକ ପାଇଁ ବିଶ୍ରାମ ନେଇ ପୁଣି ଯେପରି ଅଗ୍ରସର ହୁଏ, ସେହିପରି କର୍ମକ୍ଳାନ୍ତ ମନୁଷ୍ୟ ସମସ୍ତ ବର୍ଷଟି ଅତିବାହିତ କରି ନୂତନ ବର୍ଷରେ ପଦାର୍ପଣ କଲାମାତ୍ରକେ ଟିକିଏ ଆଶ୍ୱସ୍ତି ଅନୁଭବ କରେ ଓ ପୁଣି କର୍ମର ଜଞ୍ଜାଳରେ ଆବଦ୍ଧ ହୋଇଯାଏ । ନୂତନତ୍ୱର କାଳ୍ପନିକ ସ୍ପର୍ଶ ମନୁଷ୍ୟର କର୍ମଧାରାରେ ଗୋଟାଏ ପରିବର୍ତ୍ତନ ଭାବ ଜନ୍ମାଇ ଦେଇ ନବବର୍ଷରେ ତାର ଆଶାକୁ ଭବିଷ୍ୟତ କଳ୍ପନା ସଙ୍ଗେ ସଂଶ୍ଳିଷ୍ଟ ରଖି ଚାଲିଯାଏ ।

କର୍ମ ଓ କଳ୍ପନା ସମାନ୍ତରରେ ରହିଲେ କାଳର ଅସୀମତା ଜଣାଯାଏ ନାହିଁ । ମନୁଷ୍ୟର କର୍ମପ୍ରେରଣା କେବଳ ଭବିଷ୍ୟତର ଅନିଶ୍ଚିତ ଆଶା ଓ ଆକାଙ୍‌କ୍ଷାରେ ଆବଦ୍ଧ ରହିବା ଉଚିତ ନୁହେଁ । ଭବିଷ୍ୟତ ଉପରେ ନିର୍ଭର କରି ମନୁଷ୍ୟ ଅନେକ ସମୟରେ ତା କର୍ମଜୀବନର ଗତିକୁ କଣ୍ଟକିତ କରିଥାଏ । ଦୂର ଅତୀତ କଥା ଦୂରେ ଥାଉ, ନିଜ ଜୀବନରେ ସଂଘଟିତ କାର୍ଯ୍ୟପ୍ରଣାଳୀକୁ ଅନୁସରଣ ନ କରି କଳ୍ପନା-ପ୍ରଭାବରେ ଭବିଷ୍ୟତକୁ ଆଙ୍କି ନେଇ, ଜୀବନର ଗତି, ଆକାଙ୍‌କ୍ଷା ଅନୁଯାୟୀ ହେବ ବୋଲି ଯେଉଁମାନେ ଭାବନ୍ତି, ସେମାନଙ୍କର କର୍ମକୁଶଳତା ପାଇଁ ସୁବିଧା ପ୍ରାପ୍ୟ ମିଳେ ନାହିଁ । କଳ୍ପନାର ଏକଦେଶ-ଦର୍ଶିତାକୁ ଆଶ୍ରୟ କଲେ ମନୁଷ୍ୟର କର୍ମ-ପ୍ରବୃତ୍ତି ସମୟୋପଯୋଗୀ କର୍ମମାର୍ଗକୁ ଅଲକ୍ଷ୍ୟରେ ଗ୍ରାସ କରିଦେଇ ଗୋଟାଏ ଉଦ୍‌ଭ୍ରାନ୍ତିର ଅଧୀନ ହୋଇପଡ଼େ । ଆଶା ଓ ଆକାଙ୍‌କ୍ଷାର ଅଧୀନରେ ମନୁଷ୍ୟର କର୍ମଜୀବନ ସର୍ବଦା ଅତିବାହିତ ହେଲେ ସୁଦ୍ଧା କାଳର ଉପଯୁକ୍ତ ବିଚାରକୁ ଉପେକ୍ଷା କରାଯାଇ ପାରେ ନାହିଁ । ଗୋଟିଏ ମୁହୂର୍ତ୍ତର ମଧ୍ୟ କର୍ମଜୀବନରେ ସ୍ଥାନ ଅଛି । ଆଶା ଶାନ୍ତିପ୍ରଦ ହୋଇପାରେ; କିନ୍ତୁ ସବୁବେଳେ କାଳର ଗତି ସଙ୍ଗେ ଏହାକୁ ଲକ୍ଷ୍ୟ କରିବା ଉଚିତ । ଜୀବନର ପରିସ୍ଥିତିକୁ ନ ଦେଖି କେହି ବେଶି ଦିନ କଳ୍ପନାରଚିତ ମାୟାପୁରରେ ବିଚରଣ କରିପାରେ ନାହିଁ । ଭବିଷ୍ୟତର କଳ୍ପନା ସଙ୍ଗେ ଅତୀତ କର୍ମଧାରାର ସମ୍ବନ୍ଧ ସ୍ଥାପନ କରି ଯେଉଁମାନେ ଅଗ୍ରସର ହୁଅନ୍ତି, ସେମାନଙ୍କର କର୍ମର ବୈଶିଷ୍ଟ୍ୟ ଓ ମୌଳିକତା ଅବାଧିତ ରହେ ନାହିଁ । ପ୍ରତ୍ୟେକ ଲୋକ କ୍ଷୁଦ୍ର କିମ୍ବା ମହତ୍ତ୍ୱ କୌଣସି କାର୍ଯ୍ୟ ପ୍ରଣାଳୀକୁ ଅନୁସରଣ କରିବ । କର୍ମହୀନ ହୋଇ ଜଗତରେ ପ୍ରାଣ ଧାରଣ କରିବା ତା ପକ୍ଷରେ ଅସମ୍ଭବ । ମାନବ ତାର ସୃଷ୍ଟି ଦିନୁ ଆଜି ପର୍ଯ୍ୟନ୍ତ ଅଶେଷ କାର୍ଯ୍ୟ ସାଧନ କରି ଆସିଲଣି, କିନ୍ତୁ ଏ ପର୍ଯ୍ୟନ୍ତ କେହି କହି ପାରିବେ ନାହିଁ ଯେ, ପ୍ରେରଣାହୀନ କର୍ମସାଧନ ମନୁଷ୍ୟକୁ ସୁଖୀ କରାଇ ପାରିଛି । ଏହି ପ୍ରେରଣା ସଙ୍ଗେ

ମନୁଷ୍ୟର ଅନ୍ତର୍ନିହିତ ପ୍ରବୃତ୍ତିର ପ୍ରାବଲ୍ୟ ଜନ୍ମିତ ଥାଏ ବୋଲି କର୍ମମାର୍ଗ ବିଭିନ୍ନ ହୋଇଯାଏ । ତେଣୁ ଜଣକର କୌଣସି ନିର୍ଦ୍ଦିଷ୍ଟ କାର୍ଯ୍ୟରେ ଅଭିରୁଚି ଅପରର ମନକୁ ସ୍ପର୍ଶ କରେ ନାହିଁ; କିନ୍ତୁ କେତେଗୁଡ଼ିଏ ସାଧାରଣ ଉନ୍ନତ ଗୁଣର ବର୍ତ୍ତମାନତା ହେତୁ ମାନବ-ଜାତିର ବୃହତ୍ତର ଅନୈକ୍ୟ-ବିଶିଷ୍ଟ କର୍ମଧାରାରେ ତିଷ୍ଠି ପାରେ ନାହିଁ । ପୃଥିବୀର ଭିନ୍ନ ଭିନ୍ନ ଜାତି ମଧ୍ୟରେ ସ୍ୱଭାବତଃ ପାର୍ଥକ୍ୟ ଥିଲେ ସୁଦ୍ଧା ଉନ୍ନତ କର୍ମ-ପ୍ରଣାଳୀରେ ସାର୍ଥକତାକୁ କୌଣସି ଜାତି ଅବଜ୍ଞାରେ ପ୍ରତ୍ୟାଖ୍ୟାନ କରିପାରେ ନାହିଁ । ସ୍ୱାର୍ଥସଂଶ୍ଳିଷ୍ଟ ଦୃଷ୍ଟିରେ ଯେଉଁମାନେ ମନୁଷ୍ୟର ଆନ୍ତରିକ ମହତ୍ତ୍ୱ କର୍ମକୁ ଦେଖି ପାରନ୍ତି ନାହିଁ ଓ ନିଜର ସଂକୀର୍ଣ୍ଣତା-ପୁଷ୍ଟ-କର୍ମପ୍ରେରଣାକୁ ବଜାୟ ରଖିବାକୁ ଚେଷ୍ଟା କରନ୍ତି, ସେମାନଙ୍କର କର୍ମମାର୍ଗ ସ୍ୱତଃ ଜଟିଳ ହୋଇ ଉଠେ ଓ ଗୋଟାଏ ଛଳନାର ବଶବର୍ତ୍ତୀ ହୋଇ ସେମାନେ ଜଗତକୁ ବେଶି ଦିନ ଭୁଲାଇ ରଖି ପାରନ୍ତି ନାହିଁ । ଉନ୍ନତ କର୍ମପ୍ରେରଣାର ମାର୍ଗ ରୋଧ କରିବା ପାଇଁ ହୀନ ଲୋଲୁପ ଜାତି କଦାପି ସମର୍ଥ ହୋଇପାରେ ନାହିଁ । ପ୍ରତ୍ୟେକ ଜାତିର ମୌଳିକ ଭାବଧାରା ସଙ୍ଗେ କର୍ମପ୍ରେରଣା ସଂପୃକ୍ତ ଥାଏ । ଜାତିର ଇତିହାସର ଗୋଟାଏ ବିଶେଷତ୍ୱ ରକ୍ଷା କରି ଜାତିକୁ ଚିରକାଳ ପାଇଁ ଜଗତରେ ମହତ୍ତ୍ୱ କରିବା ଯେଉଁମାନଙ୍କର ବାସନା ଥାଏ, ସେମାନେ ଜାତୀୟ ଜୀବନର ଭାବଧାରାକୁ ଅତି ଉଦାର କର୍ମପ୍ରେରଣାର ଅଧୀନ କରି ରଖନ୍ତି । କଳ୍ପନାର ବିଚିତ୍ର ବିଚରଣରେ ସେମାନେ କାଳ ଓ ମନୁଷ୍ୟର ସ୍ୱାଭାବିକ କର୍ମର ସମ୍ବନ୍ଧକୁ ଭୁଲିଯାନ୍ତି ନାହିଁ ।

ନିତ୍ୟ ପରିବର୍ତ୍ତନଶୀଳ ଜଗତ୍ ଗୋଟିଏ ବର୍ଷର ପରିସର ମଧ୍ୟରେ ମନୁଷ୍ୟର କର୍ମଜୀବନକୁ ନାନା ଭାବରେ ପ୍ରଭାବିତ କରିଦିଏ । ମନୁଷ୍ୟ ଯାହା କଳ୍ପନା ସୁଦ୍ଧା କରି ନ ଥାଏ, ତାହା କାର୍ଯ୍ୟ ଗତିରେ ଆସି ତା ସମ୍ମୁଖରେ ଉପସ୍ଥିତ ହୁଏ । ଆଜି ନବବର୍ଷ ଆରମ୍ଭରେ ଯେଉଁ କାର୍ଯ୍ୟକ୍ରମକୁ ଅନୁସରଣ କରିବ ବୋଲି ସେ ସଂକଳ୍ପ କରୁଛି, ହୁଏତ ଆସନ୍ତା ବର୍ଷରେ ତହିଁର ବିପରୀତ କ୍ରମରେ ଗତି କରିବାକୁ ବାଧ୍ୟ ହେବ । ମନୁଷ୍ୟର ସ୍ୱାତନ୍ତ୍ର୍ୟ ରକ୍ଷା କରିବା ପାଇଁ କୌଣସି ନିର୍ଦ୍ଦିଷ୍ଟ ବିଧାନ ନାହିଁ । ବିଶେଷତଃ ସେ ଯେତେଦିନ ପର୍ଯ୍ୟନ୍ତ ନିଜର ସ୍ୱଭାବକୁ କାଳ ଓ କର୍ମର ଗତିରେ ଠିକ୍‌ରୂପେ ସଂଶ୍ଳିଷ୍ଟ କରିପାରି ନାହିଁ, ସେ ପର୍ଯ୍ୟନ୍ତ ତା ମନୋବୃତ୍ତିର ସମ୍ୟକ୍ ପରିଚୟ ମିଳିବ ନାହିଁ କିମ୍ବା ଜଗତରେ ତା ଜୀବନର ସାର୍ଥକତା ଜଣାଯିବ ନାହିଁ । ଅସାଧାରଣ ଶକ୍ତିଶାଳୀ-ପୁରୁଷ ଜୀବନରେ ମଧ୍ୟ ଏହିପରି ପ୍ରମାଦ ଘଟିବାର ସମ୍ଭାବନା ଥାଏ, କାରଣ ସେ ଗୋଟାଏ ବିରାଟ କଳ୍ପନାକୁ କାର୍ଯ୍ୟରେ ପରିଣତ କରିବ ବୋଲି ସର୍ବଦା ଚେଷ୍ଟିତ ଥାଏ । ସାଧାରଣ ଲୋକ ସାରା ଜୀବନକୁ ବିତାଇଦେଇ ଯାହା କରିପାରେ ନାହିଁ, ତାକୁ ସେ ଇଙ୍ଗିତ ମାତ୍ରକେ ସାଧନ କରିପାରେ; କିନ୍ତୁ ସ୍ୱଭାବର ବୈଗୁଣ୍ୟ ଅତର୍କିତଭାବରେ ତାର ଚିରପୋଷିତ ଆକାଙ୍‌କ୍ଷାକୁ ସମୂଳେ ନଷ୍ଟ କରିଦିଏ । ତା ଜୀବନର ବିଶାଳ ଲକ୍ଷ୍ୟ କାଳର ଗତିରେ ଲୁଚିଯାଏ । ମନୁଷ୍ୟର ସ୍ୱଭାବସିଦ୍ଧ ଗୁଣ ଜଗତର ପରିବର୍ତ୍ତନଶୀଳତା ସଙ୍ଗେ ବିରୋଧ ଜନ୍ମାଇ ଆଜି ପର୍ଯ୍ୟନ୍ତ କୌଣସି ସ୍ୱାଧୀନ କର୍ମପନ୍ଥା ଉଦ୍ଭାବନ କରିପାରି ନାହିଁ । ଯେଉଁଠାରେ ମନୁଷ୍ୟର ସକଳ ସତ୍ୟ ଓ ସୌନ୍ଦର୍ଯ୍ୟର ଉନ୍ମେଷରେ ସ୍ୱାର୍ଥର ସଂକୀର୍ଣ୍ଣ ମାର୍ଗକୁ ତ୍ୟାଗ କରି ସୃଷ୍ଟିର ବୈଚିତ୍ର୍ୟ ସଙ୍ଗେ କାଳ ଓ କର୍ମର ଗତିକୁ ଅବଧାରଣ କରିପାରିଛି, ସେହିଠାରେ କର୍ମୀର କଳ୍ପନା ଓ ଶକ୍ତିମତ୍ତାର ପ୍ରକୃତ ପରିଚୟ ମିଳିଛି । ଦିନ, ମାସ କିମ୍ବା ବର୍ଷକୁ ନୂତନତ୍ୱର ଆବରଣରେ ଯାବତୀୟ କର୍ମଧାରା ସଙ୍ଗେ ଯୋଗ କରିଦେଇ ଆନନ୍ଦ ଅନୁଭବ କରିବା ମନୁଷ୍ୟର ଗୋଟାଏ ସାମୟିକ ତୃପ୍ତି । ଏଥିରେ ବାସ୍ତବ ଅନୁଭୂତି ନାହିଁ ।

କର୍ମର ବିସ୍ତାର ଓ ପରିମାପ ପାଇଁ କାଳର ସୀମାସୃଷ୍ଟି ଅଯଥାର୍ଥ ନୁହେଁ । ଏହା ହୋଇ ନ ଥିଲେ ମନୁଷ୍ୟର ଅତୀତରୁ କୌଣସି କର୍ମ-ପ୍ରେରଣା ମିଳିବା ସହଜ ହୁଅନ୍ତା ନାହିଁ । ବର୍ଷଟିଏ ବିତିଗଲା ପରେ ଆଉ ଗୋଟିଏ ନୂତନ ବର୍ଷ ଯେତେବେଳେ ଆସେ, ସେତେବେଳେ ମନୁଷ୍ୟ ତାର ସମ୍ପାଦିତ କର୍ମମାନଙ୍କୁ ଆଲୋଚନା କରିବା ପାଇଁ ସାଧାରଣତଃ ମନ ବଳାଇଥାଏ । ବ୍ୟକ୍ତିଗତ କଥା ବାଦ୍ ଦେଇ ସମୂହ ମାନବଜାତିର ଆଶା ଓ ଆକାଙ୍‌କ୍ଷାକୁ ଏ ସମ୍ପର୍କରେ ଦେଖିବାକୁ ଗଲେ ଯଥେଷ୍ଟ ପରିବର୍ତ୍ତନ ଦେଖାଯାଏ । ଗୋଟିଏ ବର୍ଷ ବିସ୍ତୀର୍ଣ୍ଣ ଭାବରେ ଜଗତରେ ଯେତେ ମଙ୍ଗଳ କିମ୍ବା ଅମଙ୍ଗଳ ଆଣେ, ତାହା ବ୍ୟକ୍ତିଗତ ଜୀବନରେ କଳ୍ପନା ସୁଦ୍ଧା କରାଯାଇପାରେ ନାହିଁ । ବର୍ଷଟିଏ କଥା ଦୂରେ ଥାଉ, ଗୋଟିଏ ମୁହୂର୍ତ୍ତ ମଧ୍ୟ ଜଗତର ପରିବର୍ତ୍ତନରେ ଘଟଣାକ୍ରମକୁ ବଦଳାଇ ଦେଇ ନୂତନଯୁଗର ଅବତାରଣା କରେ । ସବୁ ସମୟ ସମାନ ନ ଥାଏ, ବିଶିଷ୍ଟ ଘଟଣାହୀନ ସମୟର ମୂଲ୍ୟ ଲୋକ ଚକ୍ଷୁରେ କିଛି ନୁହେଁ କହିଲେ ଚଳେ । ଏହିପରି ସହସ୍ର ସହସ୍ର ବର୍ଷ ଅତୀତରେ ମିଶି ଗଲାଣି; କିନ୍ତୁ କେତୋଟି ବର୍ଷର ସ୍ମୃତି ମାନବସମାଜରେ ଯେଉଁ ପ୍ରତିଷ୍ଠା ସ୍ଥାପନ କରି ରହିଛି, ତାକୁ ଆଦୌ ଲୋପ କରି ହେବ ନାହିଁ ।

ଇତିହାସ ସେହି ବର୍ଷଗୁଡ଼ିକୁ ଲିପିବଦ୍ଧ କରି ତାର ସାର୍ଥକତା ପ୍ରମାଣ କରେ । ପ୍ରତି ନୂତନ ବର୍ଷ ଆରମ୍ଭରେ ଯଦି ସେହି ସ୍ମରଣୀୟ ବର୍ଷମାନଙ୍କର ଘଟନାବଳୀ ମାନବଜାତିକୁ ଉଦ୍‌ବୁଦ୍ଧ କରନ୍ତା, ତାହାହେଲେ ନୂତନ ବର୍ଷର ପାଳନବିଧିରେ ଗୋଟାଏ ବିଶେଷତ୍ୱ ରହନ୍ତା । ପ୍ରତି ଯୁଗର ପରିବର୍ତ୍ତନ ବେଳେ ମନୁଷ୍ୟର କର୍ମଧାରା ସାଧାରଣତଃ ବଦଳିଯାଏ । ଏହି ପରିବର୍ତ୍ତନ ମନୁଷ୍ୟର ଦୃଷ୍ଟିକୋଣରେ ନୂତନତ୍ୱର ଯେଉଁ ଆଭ୍ୟନ୍ତିକ ଲଗାଇ ଦେଇଯାଏ, ତାହା ଅନେକ ଥରଯାଏ ତାକୁ ସତ୍ୟ ଓ ସୌନ୍ଦର୍ଯ୍ୟର ଉପଲବ୍‌ଧି ପାଇଁ ମାର୍ଗ ନିର୍ଦ୍ଦେଶ କରିଦିଏ । ଆଜି ଆମ୍ଭେମାନେ ଯେଉଁ ନୂତନ ବର୍ଷରେ ପଦାର୍ପଣ କରୁଅଛୁ, ତାହା ସେହିପରି ଗୋଟିଏ ସ୍ମରଣୀୟ ହେବ ବୋଲି ମନେହୁଏ । ମନୁଷ୍ୟର କର୍ମପରିଧି ବର୍ତ୍ତମାନ ଏପରି ବିସ୍ତୃତ ହୋଇଅଛି ଯେ, କୌଣସି ଅତୀତ ଯୁଗ ଏହା ସଙ୍ଗେ ତୁଳନୀୟ ହେବା ସମ୍ଭବ ନୁହେଁ; କିନ୍ତୁ ଏହି ବିସ୍ତୃତିରେ ଯେଉଁ ପ୍ରଚଣ୍ଡ ଗ୍ଲାନି ଲୁକ୍କାୟିତ ଭାବରେ ଥିଲା, ତାହା ବର୍ତ୍ତମାନ ଗୋଟାଏ ବିଦ୍ରୋହାଗ୍ନି ସମସ୍ତ ପୃଥିବୀ ବକ୍ଷରେ ଜାଳି ଦେବାର ପ୍ରୟାସ କଲଣି । ନବ-ବର୍ଷରେ ସାଧାରଣତଃ ସମସ୍ତେ ଆଶୁ ମଙ୍ଗଳ କାମନା କରି ଆନନ୍ଦ ଉପଭୋଗ କରନ୍ତି; କିନ୍ତୁ ଏଥର ଯେଉଁ ବର୍ଷଟି ଆସିଲା, ସେଥିରେ ମଙ୍ଗଳର କୌଣସି ସୂଚନା ନାହିଁ; ବରଂ ଯାବତୀୟ ଅମଙ୍ଗଳ ଓ ପୃଥିବୀବ୍ୟାପୀ ଗୋଟାଏ ମହାହତ୍ୟାକାଣ୍ଡରେ ଧ୍ୱଂସର ଲୀଳା ଆତ୍ମପ୍ରକାଶ କରିବାର ଯଥେଷ୍ଟ ସମ୍ଭାବନା ରହିଛି । ଅନୁକୂଳ ଘଟଣାକ୍ରମରେ ଯେଉଁମାନେ ଜୀବନ କଟାଇ ଆସିଛନ୍ତି, ସେମାନେ ଏଥର ନୂଆ ବର୍ଷକୁ ଆଦରରେ ବରଣ କରିବାକୁ ଯିବେ ନାହିଁ; କିନ୍ତୁ ସେମାନଙ୍କୁ ସେ ଦୃକ୍‌ପାତ କରିଯିବ ନାହିଁ । ମନୁଷ୍ୟର ବୃଥା ନୂତନତ୍ୱ ମୋହ ଭଙ୍ଗି କାଳ ଯେଉଁ ଶିକ୍ଷା ଦେଇଯିବ, ସେଥିରେ ସେ ବୁଝିବ—ତାର ଗତି କରି ଠିକ୍ ଭାବରେ ଆଜି ପର୍ଯ୍ୟନ୍ତ ଚାଲିଥିଲା ? ସଭ୍ୟତା ଓ ନୀତି ନାମରେ ସେ ଯାହା ପ୍ରଚାର କରି ଆସୁଥିଲା, ତହିଁର ଉପଯୁକ୍ତ ବିଚାର ସମୟ ବୋଧହୁଏ ଆସି ଉପସ୍ଥିତ ହେଲା । ସ୍ୱାର୍ଥପର ଓ ଲୋଲୁପ ବସ୍ତୁବାଦୀ ମନରେ ଯେଉଁ ଆଶଙ୍କା ଦେଖାଦେଲାଣି ତାକୁ ନବ-ବର୍ଷ ସାର୍ଥକ କରି ଦେଇଯାଉ, ତାହା ହେଲେ ତା ଅଭିଯାନର ମୂଲ୍ୟ ପୃଥିବୀର ଇତିହାସରେ ଲିପିବଦ୍ଧ ହୋଇ ରହିବ । କାଳର କରାଳମୂର୍ତ୍ତି ଯଦି ଥରେ ଥରେ ଜଗତରେ ସ୍ୱରୂପ ପ୍ରକାଶ କରିବା ବିଧିର ବିଧାନ ହୋଇଥାଏ, ତାହାହେଲେ ଶକ୍ତିରୂପିଣୀ ମହାକାଳକୁ ପ୍ରାଚୀନ ହିନ୍ଦୁମାନେ ଯେ ପୂଜା କରିଆସିଅଛନ୍ତି, ସେଥିରୁ ସେମାନଙ୍କର ଅତି ଦୂରଦୃଷ୍ଟିର ପରିଚୟ ମିଳେ । କାଳର ଅସୀମତା ସଙ୍ଗେ ବିଶ୍ୱ ପ୍ରକୃତିରୁ ସମ୍ଭୂତ ମାନବର ସମ୍ବନ୍ଧ ସାମାନ୍ୟ କେତେଟା ନିର୍ଦ୍ଦିଷ୍ଟ ନୁହେଁ । କାଳ ଯେ ପ୍ରକୃତିଠାରୁ ପୃଥକ୍ ଏ କଥା ମଧ୍ୟ କୁହାଯାଇ ନ ପାରେ । ଗୋଟିଏ ଶାଶ୍ୱତ ସତ୍ତା ସାଧାରଣ ମନୁଷ୍ୟର କଳ୍ପନାରେ ପ୍ରକଟିତ ହୋଇପାରେ ନାହିଁ ବୋଲି ଜଗତରେ ଏତେ ଭେଦ ଓ ଅସାମଞ୍ଜସ୍ୟର ସୃଷ୍ଟି ।

ପବିତ୍ର ସ୍ମୃତିର ତର୍ପଣରେ କାଳର କ୍ଷୀପ୍ରଗତା ରହିପାରେ ନାହିଁ । ବର୍ଷ ପରେ ବର୍ଷ ଆସି ଚାଲିଯାଏ, ପାର୍ଥିବ ଜୀବନର ଗତି କ୍ଷୀଣ ହୋଇ ଆସେ; କିନ୍ତୁ କୁହୁକିନୀ ଆଶା ମରେ ନାହିଁ । ସେ ମନୁଷ୍ୟଠାରୁ ତା ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ କିଛି ପାଇବ ବୋଲି ଅପେକ୍ଷା କରି ରହିଥାଏ । ଆଶା ଓ ଆକାଙ୍‌କ୍ଷାର ତୃପ୍ତି ବିଧାନ କରି କେହି କେବେ ସୁଖୀ ହୋଇ ପାରେ ନାହିଁ । ମନୁଷ୍ୟ ଯଦି ଥରେ ଜୀବନରେ ଉନ୍ମୁକ୍ତ ସୌନ୍ଦର୍ଯ୍ୟର ସନ୍ଧାନ ପାଇ ତାହାରି ଉଦ୍ଦେଶ୍ୟରେ ନିଜକୁ କିଛି କାଳ ପାଇଁ ନିୟୋଜିତ କରିଥାଏ, ତାହାହେଲେ ତାର ସେହି ସମୟର ସୌନ୍ଦର୍ଯ୍ୟାନୁଭୂତି ଚିରକାଳ ପାଇଁ ଉଜ୍ଜୀବିତ ହୋଇ ରହିପାରେ । ପବିତ୍ର ଅନ୍ତରରେ ମୁହୂର୍ତ୍ତିକ ପାଇଁ ସୌନ୍ଦର୍ଯ୍ୟର ପୂଜା ସ୍ମୃତିର ଅମର ସମ୍ପଦ ହୋଇ ରହିଲେ ମନୁଷ୍ୟର ଗତିପଥ ବେଶୀ ଦିନ ଅନିଶ୍ଚିତ ହୋଇ ରହେ ନାହିଁ । ଅନେକ ସମୟରେ ମନୁଷ୍ୟ ସୌନ୍ଦର୍ଯ୍ୟ ପୂଜା କରୁ କରୁ ପ୍ରବଳ ବାସନାର ଅଧୀନ ହୋଇପଡ଼େ । ତା ଅନ୍ତରରେ ଯେଉଁ ବୁଭୁକ୍ଷା ଜନ୍ମେ, ତାକୁ ଆକାଙ୍‌କ୍ଷା ଆହୁରି ତୀବ୍ର କରିଦିଏ । ଶେଷରେ ସୌନ୍ଦର୍ଯ୍ୟର ଅନୁଭୂତିଟି ବଡ଼ ମଳିନ ହୋଇ ରହେ । ଆଶା ଓ ଆକାଙ୍‌କ୍ଷାର ଗତିରୋଧ କରି କାଳର ଚଳଚ୍ଚିତ୍ରରେ ଯେତେ ସୁନ୍ଦର ଓ ପବିତ୍ର ସ୍ମୃତି ଅଙ୍କିତ ହୋଇ ରହେ, ଜୀବନରେ ଶାନ୍ତିର ମାତ୍ରା ସେତିକି ପରିମାଣରେ ବର୍ଦ୍ଧିତ ହୁଏ । ଶକ୍ତିର ବିନା ସାଧନାରେ ଅପୂର୍ଣ୍ଣ ଆକାଙ୍‌କ୍ଷାର ଅସମ୍ଭାଳ ଦାଉ ଗତିଶୀଳ ଜୀବନକୁ ସୁନିୟନ୍ତ୍ରିତ କରାଇଦିଏ ନାହିଁ । ଜୀବନରେ ସୌନ୍ଦର୍ଯ୍ୟବୋଧର ଅଭାବ ମଧ୍ୟ ଅତୀତର ସ୍ମୃତି ସଙ୍ଗେ ବର୍ତ୍ତମାନ କିମ୍ବା ଭବିଷ୍ୟତର କର୍ମପନ୍ଥାକୁ ବିଶେଷ ଭାବରେ ସଂଶ୍ଳିଷ୍ଟ ରଖେ ନାହିଁ । ସୌନ୍ଦର୍ଯ୍ୟ-ବୋଧ ସଙ୍ଗେ ଶକ୍ତିର ସାଧନା ନ ଥିଲେ ସ୍ମୃତିର ଉପଯୁକ୍ତ ତର୍ପଣ ହୋଇପାରେ ନାହିଁ । ମନୁଷ୍ୟ ଚିରକାଳ ଶକ୍ତିର ପୂଜାରୀ; କିନ୍ତୁ ଅନୁଭୂତି ଓ ଦୃଷ୍ଟିର ଭିନ୍ନତାରେ ଶକ୍ତିପୂଜା ଜଗତରେ ନାନା ଭାବରେ ପ୍ରକାଶ ପାଏ ।

ଯେଉଁଠାରେ ସୌନ୍ଦର୍ଯ୍ୟର ସ୍ପର୍ଶ ମନୁଷ୍ୟର ମନକୁ ପ୍ରଲୋଭିତ କରିପାରିଛି, କିନ୍ତୁ ସେ ତାକୁ ବାସ୍ତବ ଅନୁଭୂତିରେ ଆଣିପାରି ନାହିଁ, ସେହିଠାରେ ତାର ପୂଜାର ମାର୍ଗ ଗୋଟିଏ ନିମ୍ନ ସ୍ତରକୁ ଚାଲିଯାଏ । ଅନେକ ସମୟରେ ରୀତି ପରମ୍ପରାରେ ଯେଉଁ ଉତ୍ସବ ସବୁ ସମାଜରେ ପାଳିତ ହୁଏ, ସେ ସବୁର ଉଦ୍ଦେଶ୍ୟ ବୁଝାଯାଏ ନାହିଁ କିମ୍ବା ଅତୀତର ପ୍ରେରଣାକୁ ସମାଜ ଠିକ୍‌ରୂପେ ବିଚାର କରି ନ ପାରି ଏକ ଧାରାବାହିକ ପ୍ରାଣ-ଶୂନ୍ୟ ନୀତିରେ ସେ ସମସ୍ତକୁ ପାଳନ କରେ । ପ୍ରେରଣାଶୂନ୍ୟ ପୂଜା, ଶକ୍ତି, ସୌନ୍ଦର୍ଯ୍ୟ ଓ ସାଧନାର ସମନ୍ୱୟ ଆଣିପାରେ ନାହିଁ । ଗୋଟିଏ ବାହ୍ୟ ଉତ୍ତେଜନାର ବଶବର୍ତ୍ତୀ ହୋଇ ସେ ପ୍ରକୃତିଠାରୁ କାଳକୁ ଅସମ୍ପୃକ୍ତ ଦେଖେ ଏବଂ ସୌନ୍ଦର୍ଯ୍ୟ-ପିପାସା ମେଣ୍ଟାଇବା ପାଇଁ କାଳର ଅବିଚ୍ଛିନ୍ନ ଗତିରେ କେତେଗୁଡ଼ିଏ ଅସ୍ଥାୟୀ ଘଟଣାକୁ ସମ୍ବଳ କରି ଶକ୍ତି ନିୟୋଜିତ କରେ । ଏଥିରେ ଅନ୍ତରର ସ୍ପନ୍ଦନ ଅବିନାଶୀ ସୌନ୍ଦର୍ଯ୍ୟର ଉତ୍ସବକୁ ସ୍ପର୍ଶ କରିପାରେ ନାହିଁ । କାଳର ଅବିରାମ ଓ ଅନନ୍ତ ଗତିରେ ଯେ ଅଳ୍ପ କେତେ ଜଣ ଅନାସକ୍ତ ଭାବରେ କର୍ମ କରିଯାନ୍ତି, ସେମାନଙ୍କୁ ବାଦ୍ ଦେଲେ ଜଗତରେ ପ୍ରାୟ ସମସ୍ତେ ଏହାର ପରିବର୍ତ୍ତନ ପ୍ରଭାବକୁ ଅନୁଭବ କରନ୍ତି । ପୁଣି କେବଳ ଗୋଟିଏ ଧାରାବାହିକ କର୍ମରେ ଜୀବନର ପୂର୍ଣ୍ଣତା ଆସିବ ବୋଲି ମନେ କରିବା ଠିକ୍ ନୁହେଁ; କାରଣ ଯୁଗ ଧାରାର ପରିବର୍ତ୍ତନରେ ଯନ୍ତ୍ରବତ୍ ଚାଳିତ ଜୀବନର ଗତି କାଳର ଶୂନ୍ୟତାକୁ ବେଶୀ ପରିମାଣରେ ପ୍ରକାଶ କରେ । କାଳର ଏହି ଶୂନ୍ୟତା-ବୋଧ ମନୁଷ୍ୟ ମନରେ ଆସୁ ନ ଥିଲେ ସେ ବିଶ୍ୱ ପ୍ରକୃତିଠାରୁ ନିଜକୁ କେଉଁଦିନୁ ଅସମ୍ପୃକ୍ତ ରଖି ପାରନ୍ତାଣି; ଅତୀତ ବର୍ତ୍ତମାନ ଓ ଭବିଷ୍ୟତର ସମ୍ବନ୍ଧ ମଧ୍ୟ ଲୋପ ହୋଇ ଯାଆନ୍ତାଣି; କିନ୍ତୁ ସୃଷ୍ଟିର ବିରାଟ-ବିଧାନରେ ମନୁଷ୍ୟ-ଜୀବନ ସେପରି କୌଣସି ଶୁଷ୍କ ଓ ପ୍ରାଣହୀନ ଉପାଦାନରେ ଗଠିତ ହୋଇ ନାହିଁ । ଯୁଗେ ଯୁଗେ ମନୁଷ୍ୟ କାଳ ଓ ପ୍ରକୃତିକୁ ଅନୁସରଣ କରିବ । ଏହି ଅନୁଭୂତିରେ ତାର ସ୍ମୃତିର ଦର୍ପଣ ଗୋଟିଏ ବିଶିଷ୍ଟ ନିସ୍ୱା ହୋଇ ରହିବ ।

ଆଜି ନବ-ବର୍ଷର ଆରମ୍ଭରେ କେତେ ସୁଖର କଳ୍ପନା ମନୁଷ୍ୟ ହୃଦୟରେ ପୁଞ୍ଜୀଭୂତ ହୋଇଉଠିଛି ଓ କେତେ ଭଗ୍ନ ହୃଦୟ ନୈରାଶ୍ୟର ଅତଳ ସ୍ପର୍ଶରେ କାଳର ଭୀଷଣତାକୁ ଅନାଇ ରହିଛି, କିନ୍ତୁ କାଳର ଗତିରେ ଏଥିର ପରିବର୍ତ୍ତନ ହୋଇଯିବ । ମନୁଷ୍ୟ ଆଜି ତା କର୍ମର ଯେଉଁ ପରି କଳ୍ପନା କରୁଛି, ତାହା ଅତୀତରେ ମିଶିଗଲା ପରେ କି ଆକାର ଧାରଣ କରିବ ସହଜରେ କହିହେବ ନାହିଁ । ଯାହାକୁ ସେ ସତ୍ୟ ଓ ପ୍ରକୃଷ୍ଟ ନୀତିର ପ୍ରତୀକ ବୋଲି ମନେ କରୁଛି, ତାହା ହୁଏତ ଗୋଟାଏ ଭିତ୍ତିହୀନ ସାମୟିକ ଉତ୍ତେଜନାପୂର୍ଣ୍ଣ କର୍ମପ୍ରେରଣାରୂପେ ମନୁଷ୍ୟକୁ କିଛି ସମୟ ପାଇଁ ଭୁଲାଇ ରଖିଛି; କିନ୍ତୁ କାଳର ପରିବର୍ତ୍ତନ ଧାରାରେ ତାର ଅସ୍ତିତ୍ୱ ଅଚିରେ ଲୋପ ପାଇଯାଇପାରେ । ନାନା ଅବାସ୍ତବ କଳ୍ପନା ମଧ୍ୟରେ ମନୁଷ୍ୟ ଜଗତକୁ ଠିକ୍ ଭାବରେ ଦେଖି ନ ପାରି, ତାର ଗତି ନିର୍ଣ୍ଣୟ ନ କଲା ପର୍ଯ୍ୟନ୍ତ ବିଶ୍ୱପ୍ରକୃତିର ମହୀୟସୀ ଶକ୍ତି ନିକଟରେ ଆତ୍ମସମର୍ପଣ କରିବା ସବୁଠାରୁ ପ୍ରଶସ୍ତ । ମନୀଷୀମାନଙ୍କ ପକ୍ଷରେ କର୍ମ ଓ କାଳର ଜଟିଳତା ଆଦୌ ଅନୁଭୂତ ହୋଇ ନ ପାରେ । ସେମାନେ ସାମାନ୍ୟ ମୁହୂର୍ତ୍ତ ଓ ଗୋଟିଏ ଦୀର୍ଘ ଯୁଗ ମଧ୍ୟରେ କୌଣସି ପାର୍ଥକ୍ୟ ଦେଖନ୍ତି ନାହିଁ । ସେମାନେ କାଳର ଶାଶ୍ୱତ ଗତିରୁ ଜଗତର ନିତ୍ୟ ପରିବର୍ତ୍ତନଶୀଳତାକୁ ବାଦ୍ ଦେଇ ଏକ ଅବିନାଶୀ ବିରାଟ ପୂର୍ଣ୍ଣତାରେ ସୌନ୍ଦର୍ଯ୍ୟ ଓ ଚୈତନ୍ୟର ସତ୍ତାକୁ ବିଶ୍ୱପ୍ରକୃତିର ବୈଚିତ୍ର୍ୟ ସଙ୍ଗେ ସର୍ବଦା ଜଡ଼ିତ ଥିବାର ଦେଖିପାରନ୍ତି ବୋଲି ଦିନ, ମାସ ଓ ବର୍ଷର ପାର୍ଥକ୍ୟବିଚାର ସେମାନଙ୍କଦ୍ୱାରା ସାଧାରଣତଃ ଉପେକ୍ଷିତ ହୋଇଥାଏ; କିନ୍ତୁ ସାଧାରଣ ସଂସାରବାସୀ ଏପରି ମହାର୍ଘ ଅନୁଭୂତିର ଅଧିକାରୀ ହୋଇପାରନ୍ତି ନାହିଁ । କାଳର ଅନନ୍ତ ମାର୍ଗରେ ପରିମିତ ଜୀବନକାଳକୁ ସମ୍ବଳ କରି ସେମାନଙ୍କୁ ଅଗ୍ରସର ହେବାକୁ ପଡ଼ିବ । କୌଣସି କ୍ଷୁଦ୍ର ଘଟଣା ସମ୍ପର୍କରେ ସମସ୍ତ ଜୀବନ ଅତିବାହିତ ହୋଇଯାଇପାରେ, କିନ୍ତୁ କର୍ମର କଳନା ଏଥିରୁ ଜଣାଯାଏ ନାହିଁ । ନିଜକୁ ଜଗତର ଅନିଶ୍ଚିତତାରେ ଭୁଲାଇଦେଲେ କର୍ମର ଉତ୍କର୍ଷ ସାଧନାରେ ସୌନ୍ଦର୍ଯ୍ୟାନୁଭୂତିର ପଥ ଅବରୁଦ୍ଧ ହୋଇଯାଏ । ଜଗତର ପରିବର୍ତ୍ତନ ସଙ୍ଗେ କର୍ମର ସାମଞ୍ଜସ୍ୟ ରକ୍ଷା କରିବାକୁ ହେବ । ଅତୀତର ଏକ ବିଶାଳ ସ୍ପର୍ଶକୁ ବିସ୍ମୃତିଗର୍ଭରେ ବିସର୍ଜନ ଦେଇ କର୍ମୀ ନୀରବ ରହିବ ନାହିଁ । କାଳର ଅବିଚ୍ଛିନ୍ନତାରେ ଗୋଟିଏ ଗୋଟିଏ କଳ୍ପିତ ଛେଦ ରହିଲେ ସୌନ୍ଦର୍ଯ୍ୟର କୌଣସି ହାନି ଘଟେ ନାହିଁ । ଘଟଣାର ବିଶେଷତ୍ୱରେ ଅତୀତକୁ ଆଙ୍କି ରଖିବା ପାଇଁ ଏହି ଛେଦଗୁଡ଼ିକ ଖୁବ୍ ସାହାଯ୍ୟ କରେ । ନବ-ବର୍ଷଟି ଆସିବ ଓ ଯିବ; କିନ୍ତୁ କାଳର ଅସୀମ ଗତିରେ ନୂତନତ୍ୱର ଯେଉଁ ସ୍ପର୍ଶଟିକ ତା ପାଇଁ ସୃଷ୍ଟି ହୋଇଅଛି, ତାକୁ ମନୁଷ୍ୟ କଦାପି ଭୁଲିପାରିବ ନାହିଁ । ମନୁଷ୍ୟର ଚିର ରହସ୍ୟମୟ ଗତିରେ କ୍ଷୁବ୍ଧ ହେବାର କୌଣସି କାରଣ ନାହିଁ । ଅନ୍ଧକାର ପଛରେ ନିଶ୍ଚୟ ଆଲୋକ ରହିଛି । ତା ନ ହୋଇ ଥିଲେ ଜଗତର ମିଥ୍ୟା କଳ୍ପନାରୁ ଏକ ଶାଶ୍ୱତ ବିରାଟ ଶକ୍ତିକୁ କେହି ସ୍ୱୀକାର କରିବାକୁ ଯାଆନ୍ତେ

ନାହିଁ । ନିଜ ଅନ୍ତର୍ନିହିତ ଶକ୍ତିର ସମ୍ୟକ ବିକାଶରେ ମାନବର ପ୍ରସାରିତ ଦୃଷ୍ଟିରେଖା ଯେତେବେଳେ ଜଗତର ସାମାନ୍ୟ ଅଣୁ-ପରମାଣୁଠାରୁ ଆରମ୍ଭ କରି ବିଶ୍ୱର ଅଚିନ୍ତନୀୟ ପରିବର୍ତ୍ତନରେ ସେହି ବିରାଟ ଶକ୍ତିର ବର୍ତ୍ତମାନତା ଦେଖି ପାରିବ, ସେତେବେଳେ ସେ ବୁଝିବ—ତାର କର୍ମଧାରାଟି ଶ୍ରେଷ୍ଠ ନୁହେଁ, ଅତି ମହତ୍ତ୍ୱ । ଯୁଗ ଯୁଗାନ୍ତରରୁ ଏହା ମନୁଷ୍ୟର ଅଲକ୍ଷରେ ବହି ଆସୁଛି ।

ବିଶ୍ୱକବିଙ୍କର କେତୋଟି ପଙ୍କ୍ତି ଏ ସମ୍ପର୍କରେ ଉଦ୍ଧାର କରାଗଲା—

"ଜୀବନେ ଯତ କାଜ୍ ହଲୋ ନା ସାରା
ଜାନି ହେ, ଜାନି ହେ ହଏ ନିହାରା ।
ଯେ ଫୁଲ୍ ନା ଫୁଟିତେ ଝରେଛେ ଧରଣୀତେ
ଯେ ନଦୀ ମରୁପଥେ ହାରାଲୋ ଧାରା
ଜାନି ହେ, ଜାନି ହେ ତାଓ ହଏ ନିହାରା ।"

( ରବୀନ୍ଦ୍ରନାଥ )

# ଯୁଗର ପରିବର୍ତ୍ତନ

କାଳର ଅନନ୍ତ ଗତିରେ ପାର୍ଥିବ ଘଟଣା-ଚକ୍ରର ରେଖାପାତ କରି ମନୁଷ୍ୟ କଳ୍ପନା ପ୍ରଭାବରେ ଯେଉଁ ପ୍ରତିବିମ୍ବଟିକୁ କରିବାକୁ ଚେଷ୍ଟା କରିଥାଏ, ତାକୁ ଯୁଗ ଆଖ୍ୟା ଦିଆଯାଇ ପାରେ । ମନୁଷ୍ୟର ସ୍ୱଭାବ ଚିରଦିନ ଏକା ପରି ରହିଛି । ଘଟଣା-ବହୁଳ ଅସ୍ଥାୟୀ ସାଂସାରିକ ଜୀବନଯାପନ କରି ସେ ତାର ଗତି ନିରୂପଣ କରିପାରୁ ନାହିଁ । ନିଜର ଅନ୍ତର୍ନିହିତ ବିକାଶକୁ ସେ କାଳର ପାର୍ଥକ୍ୟ ଛଳରେ ଯୁଗ ଉପରେ ଆରୋପ କରିଯାଇଛି । ଅବିଚ୍ଛିନ୍ନ କାଳ-ସ୍ରୋତ ସହିତ ମାନବିକତାର ବିକାଶ ଏକାପରି ରହିପାରେ ନାହିଁ; କାରଣ ମାନବ-ପ୍ରକୃତି ଅତି ଚଞ୍ଚଳ ଓ ବିଶାଳ । ପ୍ରକୃତିର ଜଟିଳତା ଭେଦ କରି ନ ପାରି ମନୁଷ୍ୟ କାଳ ଉପରେ ଯେଉଁ କାଳ୍ପନିକ ଛେଦ ଆଣେ, ତଦ୍ଦ୍ୱାରା ତା ଚରିତ୍ରର ଗୋଟିଏ ଗୋଟିଏ ବିଶିଷ୍ଟ ଚିତ୍ରଣ ପ୍ରକାଶ ପାଏ । ଦୂରଦୃଷ୍ଟିସମ୍ପନ୍ନ ମନୀଷୀମାନେ ଯୁଗପ୍ରଭାବକୁ ଅତିକ୍ରମ କରି ମନୁଷ୍ୟ ସ୍ୱଭାବରେ ଯେଉଁ ଐକ୍ୟ ଲକ୍ଷ୍ୟ କରିଥାନ୍ତି, ତାହା ଘଟଣାବଳୀର ପରିବର୍ତ୍ତନ ସଙ୍ଗେ ବିନଷ୍ଟ ହୁଏ ନାହିଁ । ଜୀବନର ଅନନ୍ତତା ସଙ୍ଗେ ଏହାର ସମ୍ପର୍କ ମାନବଜାତିକୁ ସର୍ବଦା କର୍ମ-ମାର୍ଗ ଅନୁସରଣ କରିବାକୁ ପ୍ରେରଣା ଦିଏ; କିନ୍ତୁ ପ୍ରକୃତିର ଚଞ୍ଚଳତା ଏହାକୁ ଇତସ୍ତତ କରି ଭିନ୍ନ ଭିନ୍ନ ଭୂମିକାରେ ମନୁଷ୍ୟର କର୍ମ-ଧାରାକୁ ବହୁମୁଖୀ କରେ । ଏଥିରେ ମନୁଷ୍ୟ ସ୍ୱଭାବର ନିଗୂଢ଼ତା ସହଜରେ ପ୍ରକଟିତ ହୁଏ ନାହିଁ । ଘଟଣା-ସମ୍ପାତରେ କାଳର ସମ୍ପର୍କ-ବିଧାନ ଯୁଗ ସୃଷ୍ଟିକୁ ସହଜ କରିଦେଇଛି । ଏଥିରେ ମନୁଷ୍ୟ ସ୍ୱଭାବର ବିଶେଷ ସମ୍ପର୍କ ନାହିଁ ।

ଘଟଣାମାନଙ୍କର ସୃଷ୍ଟି ଓ ପରିବର୍ତ୍ତନ ଅନେକ ସମୟରେ ଆକସ୍ମିକ ଭାବରେ ଘଟିଥାଏ । ମନୁଷ୍ୟର କର୍ମ ଓ ଭାବନା ଏମାନଙ୍କୁ ଅନୁସରଣ କରି ଯେଉଁ ଗତି ଅବଲମ୍ବନ କରେ, ସେଥିରେ ତାର ନିଜତ୍ୱ ପ୍ରାୟ କିଛି ରହେ ନାହିଁ । ପ୍ରତିକୂଳ-ଘଟଣା-ଚକ୍ରର ଶୃଙ୍ଖଳରେ ଆବଦ୍ଧ ହୋଇଗଲେ ତାର ଶକ୍ତି କ୍ରମଶଃ କ୍ଷୀଣ ହୋଇ ଆସେ । ଅତୀତ ଐଶ୍ୱର୍ଯ୍ୟର ଅନୁଭୂତି ତା ପ୍ରାଣରେ ସ୍ପନ୍ଦନ ମାତ୍ର ଆଣି ସେହି ଅତୀତରେ ବିଲୀନ ହୋଇଯାଏ । ତା ଦୃଷ୍ଟି ଆଗରେ ଗୋଟିଏ ଯୁଗର ପର୍ଦ୍ଦା ପଡ଼ିଯାଏ । କେବଳ ଘଟଣାମାନଙ୍କୁ ଦ୍ୱାହି ଦେଇ ସେ ନୀରବ ରହେ । ଏହିପରି ଯୁଗ ପରେ ଯୁଗ ବିତିଯାଏ; ମନୁଷ୍ୟର ସ୍ୱାତନ୍ତ୍ର୍ୟ ଘଟଣାମାନଙ୍କର ରହସ୍ୟରେ ଅଚ୍ଛନ୍ନ ହୋଇ ରହେ ।

ପ୍ରାଣର ବାସ୍ତବ ଉଦ୍ଦୀପନା ଯୁଗ-ସୀମାକୁ ଅତିକ୍ରମ କରି ଯେଉଁ ତଥ୍ୟ ଆବିଷ୍କାର କରେ, ତାହା ଯୁଗେ ଯୁଗେ ମାନବଜାତିକୁ ଅଭ୍ରାନ୍ତ ମାର୍ଗର ନିର୍ଦ୍ଦେଶ ଦିଏ । ପରିବର୍ତ୍ତନଶୀଳ ଘଟଣାଗୁଡ଼ିକ ଏହା ଉପରେ କୌଣସି ରେଖାପାତ କରିପାରନ୍ତି ନାହିଁ । କିନ୍ତୁ ସାମୟିକ କୌଣସି ବିପର୍ଯ୍ୟସ୍ତ ଅବସ୍ଥା ଆସି ମନୁଷ୍ୟର ଦୃଷ୍ଟିରେଖା ଆଚ୍ଛନ୍ନ କରିଦେଲେ ସେ ସଂଘଟିତ ଘଟଣାମାନଙ୍କୁ ଅତି ବଡ଼ ଦେଖେ ଓ ନିଜର ସ୍ୱାଧୀନ ପ୍ରୟାସରେ ଆସ୍ଥା ଦିଏ ନାହିଁ । ଜଗତର ଇତିହାସରେ ଏଥିର ଦୃଷ୍ଟାନ୍ତ ବିରଳ ନୁହେଁ । ବିଜିତ ଜାତି ବିଜେତାର ଶାସନକୁ ଯେତେବେଳେ ଅକାତରରେ ବରଣ କରିନିଏ, ସେତେବେଳେ କେତେଗୁଡ଼ିଏ ବିଶିଷ୍ଟ ଘଟଣା ଜାତୀୟ ଜୀବନଗତିରେ ସ୍ମରଣୀୟ ହୋଇ ରହେ । ଏହି ଘଟଣାମାନଙ୍କ ଆଶ୍ରୟରେ ଐତିହାସିକମାନେ ନୂତନ ଯୁଗର ଅବତାରଣା କରିଥାନ୍ତି; କିନ୍ତୁ ଜାତୀୟ ଉନ୍ମେଷ ଦିଗରେ ଏମାନେ କେତେ ଦୂର ସାହାଯ୍ୟ କରନ୍ତି, ସହଜରେ କହିହେବ ନାହିଁ । ଘଟଣାର ଚିତ୍ର ଅନେକ ସମୟରେ ଅତିରଞ୍ଜନ-ଦୋଷରେ ଦୂଷିତ ହୋଇଯାଏ । ବିଜେତାକୁ ଅନୁସରଣ କରି ଐତିହାସିକମାନେ ଅଧିକାଂଶ ସମୟରେ ସତ୍ୟର ଅପଲାପ କରିଥାନ୍ତି । ସୁତରାଂ ସେମାନେ ଯେଉଁ ଐତିହାସିକ ଯୁଗଗୁଡ଼ିକର ଆରମ୍ଭ କିମ୍ବା ଶେଷ ଦେଖାଇଥାନ୍ତି, ସେଥିରେ ଜାତୀୟ ବିକାଶମାର୍ଗର କର୍ମ ସୂଚନା ଥାଏ । ଯୁଗର ସୀମାକୁ

କେବଳ ସାମାଜିକ, ରାଜନୈତିକ କିମ୍ବା ଧର୍ମ ବିପ୍ଳବରେ ବାନ୍ଧି ରଖିଲେ ମନୁଷ୍ୟର ଦୃଷ୍ଟି ରେଖା ବେଶୀ ଦୂରକୁ ଯାଇପାରେ ନାହିଁ । ଆଧୁନିକ ପଣ୍ଡିତମାନେ ଭାରତବର୍ଷର କୌଣସି ଧାରାବାହିକ ଇତିହାସ ନାହିଁ ବୋଲି ଆକ୍ଷେପ କରିଥାନ୍ତି; କିନ୍ତୁ ପ୍ରାଗୈତିହାସିକ ଯୁଗମାନଙ୍କରେ ଭାରତବାସୀର ଜ୍ଞାନାନ୍ୱେଷଣ ଯେଉଁ ତଥ୍ୟ ସବୁ ଆବିଷ୍କାର କରିଯାଇଛୁ, ତାହା ଇତିହାସର ଲକ୍ଷ୍ୟ ସାଧନ କରୁଛି କି ନାହିଁ ଟିକିଏ ଭାବିବା ଦରକାର । ସାଧାରଣତଃ ଐତିହାସିକମାନେ ଇତିହାସର ପୁନରାବୃତ୍ତି ଘଟୁଛି ବୋଲି କହିଥାନ୍ତି; କାରଣ ଜାତୀୟ ଉତ୍ଥାନ ଓ ପତନ କଦାପି ସ୍ଥାୟୀ ହୋଇ ରହେ ନାହିଁ । ଆଜି ଯେଉଁ ଜାତିକୁ ଜଗତରେ ଅଦ୍ୱିତୀୟ ବୋଲି ଇତିହାସ ଲିପିବଦ୍ଧ କରିଯାଉଛି, ତାହା ପୁଣି କାଳକ୍ରମେ ଇତିହାସରେ ସ୍ଥାନ ସୁଦ୍ଧା ପାଇବ ନାହିଁ । କାଳ ଓ ଘଟଣାର ଚଞ୍ଚଳତା ସଙ୍ଗେ କିଏ ବଡ଼ କିଏ ଶ୍ରେଷ୍ଠ ଇତିହାସ ନିରୂପଣ କରିପାରିବ ନାହିଁ । ବଡ଼ ଓ ଶ୍ରେଷ୍ଠର ପରିବର୍ତ୍ତନ ଲାଗିଛି । ଉଭୟେ ଉଭୟଙ୍କର ସ୍ଥାନ ଅଧିକାର କରିବା ଦେଖି ଐତିହାସିକର ଦୃଷ୍ଟି ଘଟଣାର ପୁନରାବୃତ୍ତି ଆଡ଼କୁ ଯାଇଛି, କିନ୍ତୁ ସେ ମନୁଷ୍ୟ ଜୀବନର ଗତିପଥକୁ ବିଶ୍ଳେଷଣ କରିବାକୁ ଅବକାଶ ପାଇ ନାହିଁ । ଏହା ବୋଲି ଇତିହାସର କୌଣସି ମୂଲ୍ୟ ନାହିଁ, କୁହାଯାଇ ନ ପାରେ । ଇତିହାସ ପାଠ କଲାବେଳେ ଅତୀତ ଯୁଗର ବର୍ଣ୍ଣିତ ଘଟଣାବଳୀ ପ୍ରାଣରେ ଯେଉଁ ଉଦ୍ଦୀପନା ଆଣେ, ତାହା ପାଠକର ସଙ୍କୀର୍ଣ୍ଣ ଦୃଷ୍ଟିକୁ ବିସ୍ତାରିତ କରି ଦେଇପାରେ । ଗୋଟିଏ ଯୁଗର କାହାଣୀ ଅନ୍ୟ ଯୁଗର କର୍ମ ପ୍ରେରଣାରେ ପରୋକ୍ଷଭାବରେ ପ୍ରଭାବ ବିସ୍ତାର କରିଗଲେ ଇତିହାସର ଯଥାର୍ଥ୍ୟ ଜଣାପଡ଼େ; କିନ୍ତୁ ଏଥିରେ ଐତିହାସିକ ଯୁଗ-ସୀମାର କୌଣସି ଭିତ୍ତି ରହେ ନାହିଁ ।

ଯୁଗର ସୀମା ନିରୂପଣ କିମ୍ବା ପରିବର୍ତ୍ତନ କୌଣସି ସମୟର ନିର୍ଘଣ୍ଟକୁ ଅପେକ୍ଷା ରଖେ ନାହିଁ । ଗୋଟିଏ ଦୀର୍ଘ ଧାରାବାହିକ ଅବସ୍ଥାରେ ପରିବର୍ତ୍ତନ ମୁହୂର୍ତ୍ତିକେ ଆସିପାରେ । ଅନେକ ସମୟରେ ଦୁଷ୍ଟ ଲୋକ ସଂସାର-ଜଞ୍ଜାଳରେ ପଡ଼ି ଦିନଟିଏ ବିତିଗଲେ ଯୁଗଟିଏ ବିତିଗଲା ବୋଲି ମନେ କରେ; କାରଣ ଦୁଃଖର ଦିନଗୁଡ଼ିକ ଜୀବନର ଗତିରେ ଦାରୁଣ ପ୍ରତିବନ୍ଧକ ଆଣି ସମୟ ଓ ଘଟଣାସ୍ରୋତ ମଧ୍ୟରେ ଗୋଟାଏ ଅନାକାଙ୍କ୍ଷିତ ଅସାମଞ୍ଜସ୍ୟ ସୃଷ୍ଟି କରିଦିଏ । ଅନନ୍ତ କାଳ ତୁଳନାରେ ମନୁଷ୍ୟର ଜୀବନଟା କିଛି ନୁହେଁ, ତଥାପି ଘଟଣାବହୁଳ ସ୍ୱଳ୍ପ ଆୟୁଃକାଳର କେତୋଟି ବର୍ଷରେ କେତେ ଯୁଗାନ୍ତରର ଛବି ଅଙ୍କିତ ହୋଇ ରହିପାରେ । ଜଣେ ପୁରୁଷ କିମ୍ବା ନାରୀ ନିଜ ଜୀବନରେ ଅଲୌକିକ ଶକ୍ତିର ବିକାଶ ଦେଖାଇ ପ୍ରଚଳିତ ଯୁଗଧାରାକୁ ପରିବର୍ତ୍ତିତ କରି ଦେଇପାରେ, ଯାହାକି ଗୋଟିଏ ଜାତିର ସମୂହ ଚେଷ୍ଟାରେ ସମ୍ଭବ ହୁଏ ନାହିଁ । ଅଧିକାଂଶ ସମୟରେ ବ୍ୟକ୍ତିବିଶେଷଙ୍କ ଦ୍ୱାରା ଯୁଗ-ପରିବର୍ତ୍ତନ ହୋଇଥାଏ । ବିଶିଷ୍ଟ ଘଟଣା କିମ୍ବା ଅସାଧାରଣ କର୍ମପ୍ରଚେଷ୍ଟା ସମ୍ପର୍କରେ ଯୁଗଧାରାକୁ ଦେଖିବାକୁ ଗଲେ ତାହା ନିଶ୍ଚୟ ଅତି ବଡ଼ ଓ ବୈଚିତ୍ର୍ୟମୟ ହେବ । ସାଧାରଣ ବ୍ୟକ୍ତିଗତ ଜୀବନର ପ୍ରତିବିମ୍ବ ଏଥିରେ ପ୍ରାୟ ମିଳିବ ନାହିଁ, କିନ୍ତୁ ସୂକ୍ଷ୍ମ ଭାବରେ ଆଲୋଚନା କଲେ ଯୁଗପରିବର୍ତ୍ତନର ବିଶାଳ ଚକ୍ର ଅଲକ୍ଷରେ ସମସ୍ତଙ୍କ ପ୍ରାଣକୁ ସ୍ପର୍ଶ କରିଛି ବୋଲି ଅନୁଭୂତ ହେବ । କବି ଗାଇଛନ୍ତି—"ଆଜି ଯେ ରାଜେନ୍ଦ୍ରାସନେ, କାଲି ସେ ଫକୀର ।" ଜୀବନର ଗତିରେ ଏପରି ଗୋଟାଏ ବିରାଟ ପାର୍ଥକ୍ୟ କାହାରି ଅନୁଭୂତି ନୁହେଁ; କିନ୍ତୁ ଅବସ୍ଥାର ଅଧୀନରେ ମନୁଷ୍ୟ କେତେବେଳେ କିପରି ଭୂମିକାରେ ଉପନୀତ ହେବ, କେହି କହିପାରିବେ ନାହିଁ । ଜର୍ମାନର ଭୂତପୂର୍ବ କାଇଜର ଓ ଆବିସିନିଆର ସମ୍ରାଟଙ୍କ ଜୀବନରେ ଯେଉଁ ଉତ୍ଥାନ ଓ ପତନ ଦେଖାଗଲା, ତାହା ଗୋଟିଏ ଦୀର୍ଘ ଐତିହାସିକ ଯୁଗର ଅବସ୍ଥାନରେ ସୁଦ୍ଧା କୌଣସି ଜାତିର ଭାଗ୍ୟରେ ସମ୍ଭବ ହେବ ନାହିଁ । ଯୁଗ ପରିବର୍ତ୍ତନର ପ୍ରଭାବ ଜାତି ଓ ବ୍ୟକ୍ତିର ଜୀବନରେ ନିଶ୍ଚୟ ଆସିବ । କେବଳ ସମୟର ତାରତମ୍ୟରେ ଗୋଟାଏ ପାର୍ଥକ୍ୟ ରହିବ ।

ସତ୍ୟ ଓ ସୌନ୍ଦର୍ଯ୍ୟର ବିକାଶ ମଳିନ ହୋଇ ଆସିଲେ ସୃଷ୍ଟି ଧାରାରେ ପରିବର୍ତ୍ତନ ଦେଖାଦିଏ । ମନୁଷ୍ୟର ଅନ୍ତର୍ନିହିତ ବିକାଶ ଏ ଦୁଇ ବିଶିଷ୍ଟ ଆଧାରକୁ ସର୍ବଦା ଅନ୍ୱେଷଣ କରେ । ତାର ଦୃଷ୍ଟି ରେଖା ଘଟଣାପ୍ରଭାବରେ ଅତିମାତ୍ରାରେ ଆବୃତ ହୋଇଗଲେ ଏବଂ ସତ୍ୟ ଓ ସୌନ୍ଦର୍ଯ୍ୟକୁ ସେ ପ୍ରକୃତ ଭାବରେ ଅବଧାରଣ କରି ନ ପାରିଲେ ତାର ମଙ୍ଗଳ ପାଇଁ ବିଧିର ବିଧାନ ଗୋଟିଏ ପରିବର୍ତ୍ତନ ସୃଜନ କରେ । ଆଜିକାଲି ବସ୍ତୁବାଦୀମାନେ ଏପରି ବିଧାନକୁ ଅସ୍ୱୀକାର କରିପାରନ୍ତି; କିନ୍ତୁ ସମୟ ଆସୁଛି, ଯେତେବେଳେ ସେମାନେ ଏହାକୁ ମାନିବାକୁ ବାଧ୍ୟ ହେବେ । ମନୁଷ୍ୟ କେବଳ ନିଜ ଶକ୍ତି ଉପରେ ନିର୍ଭର କରି କାର୍ଯ୍ୟ ସମ୍ପାଦନ କଲାବେଳେ ଐଶୀ ଶକ୍ତିକୁ ଭୁଲିଯାଇ ପାରେ । ଘଟଣାମାନଙ୍କର ଅତି ଦ୍ରୁତଗତିରେ ପରିବର୍ତ୍ତନ ଓ

ସେଥିସଙ୍ଗେ କର୍ମର ସନ୍ନିଯୋଗ ମନୁଷ୍ୟକୁ ଏକ ବିଶିଷ୍ଟ ଶକ୍ତିର ବର୍ତ୍ତମାନଭାବରେ ଆସ୍ଥା ସ୍ଥାପନ କରିବାକୁ ଅବକାଶ ଦିଏ ନାହିଁ । ବର୍ତ୍ତମାନ ଯୁଗରେ ଯେ ଯେତେ ପରିମାଣରେ ଘଟଣାମାନଙ୍କର ପରିବର୍ତ୍ତନକୁ ଅନୁସରଣ କରି କର୍ମ ନିୟନ୍ତ୍ରଣ କରେ ସେ ସେତିକି ଉନ୍ନତ ଶ୍ରେଣୀର କର୍ମୀ ବୋଲି ବିବେଚିତ ହୁଏ । ଘଟଣାଚକ୍ର ସହିତ ନିଜକୁ ଯନ୍ତ୍ରବତ୍ ଚାଳନ କରିବାରେ କିଛି କ୍ଷତି ନାହିଁ; କିନ୍ତୁ ମନୁଷ୍ୟ ଯନ୍ତ୍ର ପରି ଜଡ଼ ହୋଇଗଲେ ଆତ୍ମବିକାଶର ପଥ ବନ୍ଦ ହୋଇଯାଏ । ପରିଣାମୀ ବସ୍ତୁ ସମ୍ପର୍କରେ କର୍ମୀର ଅନ୍ତର୍ଦୃଷ୍ଟି ଓ ବହିର୍ଦୃଷ୍ଟିର ଯଥାର୍ଥ ଭାବରେ କାର୍ଯ୍ୟ କରିବା ଉଚିତ । କର୍ମପନ୍ଥାର ଭବିଷ୍ୟତ ଚିନ୍ତା ପ୍ରତ୍ୟେକ କର୍ମୀକୁ କରିବାକୁ ହେବ; କାରଣ ଘଟଣାଚକ୍ରରେ ଏହାର ପରିବର୍ତ୍ତନ କିପରି ଆକାର ଧାରଣ କରିବ ଓ ସେଥିପାଇଁ ସେ କି ଉପାୟ ଅବଲମ୍ବନ କରିବେ, ପୂର୍ବରୁ ନିଶ୍ଚିତ ଭାବିବା ଆବଶ୍ୟକ । ଦୂରଦୃଷ୍ଟି ନ ଥିଲେ ଏପରି ଭାବନା ମନୁଷ୍ୟର ମନକୁ ସ୍ପର୍ଶ କରେ ନାହିଁ । ପ୍ରତିକୂଳ ଘଟଣା ଆସିଲାକ୍ଷଣି ସେ କିଂକର୍ତ୍ତବ୍ୟବିମୂଢ଼ ହୋଇପଡ଼େ । ଘଟଣାସ୍ରୋତରେ ଭାସିଯିବା ଛଡ଼ା ତାର ଉପାୟାନ୍ତର ରହେ ନାହିଁ । ଅନୁକୂଳ ଘଟଣା-ସ୍ରୋତରେ ମନୁଷ୍ୟର ନିଜତ୍ୱ ବାହାରକୁ ପ୍ରକାଶିତ ହୁଏ ନାହିଁ; କିନ୍ତୁ ଜୀବନର ଅସମାନ ଗତି ଏହାକୁ ବେଶୀଦିନ ଲୁଚାଇ ରଖେ ନାହିଁ । ପ୍ରତିକୂଳ ଘଟଣାମାନ ଆସିଲାକ୍ଷଣି ଜୀବନର ସନ୍ଧିସ୍ଥଳକୁ ଅତି ଭୀଷଣ ଆକାରରେ ଦେଖାଦିଏ । ଏପରି ଅବସ୍ଥାରେ ଦୂରଦୃଷ୍ଟି ପୂର୍ବରୁ ଅକର୍ମଣ୍ୟ ହୋଇ ରହିଥିଲେ ମନୁଷ୍ୟକୁ କାଳୋପଯୋଗୀ କର୍ମ-ପନ୍ଥା ସ୍ଥିର କରିବାକୁ ସୁବିଧା ମିଳେ ନାହିଁ । ସୁତରାଂ ଘଟଣାବହୁଳ ସଂସାରରେ ଅସଂଖ୍ୟ କର୍ମସମ୍ପାଦନ କଲାବେଳେ ମନୁଷ୍ୟର ଅନ୍ତର୍ଦୃଷ୍ଟି ସର୍ବଦା ଭବିଷ୍ୟତମୁଖୀ ଦିଗ୍‌ନିର୍ଣ୍ଣାୟକ କମ୍ପାସ ଯନ୍ତ୍ରର କଣ୍ଟା ପରି ସତ୍ୟ ଓ ସୌନ୍ଦର୍ଯ୍ୟ ଆଡ଼କୁ ଆକୃଷ୍ଟ ହୋଇ ରହିବା ଆବଶ୍ୟକ । ଯାହାର ପରିବର୍ତ୍ତନ କିମ୍ବା ବିନାଶ ନାହିଁ, ତାକୁ ଅବଲମ୍ବନ କରିପାରିଲେ ମନୁଷ୍ୟର ବସ୍ତୁମୋହ ସ୍ୱତଃ ଅପସାରିତ ହୋଇଯାଏ ଓ ଘଟଣା କ୍ରମରେ ସେ ଯୁଗ ପରିବର୍ତ୍ତନକୁ ଆଦୌ ଭୟ କରେ ନାହିଁ, ବରଂ ସତ୍ୟ ଓ ସୌନ୍ଦର୍ଯ୍ୟର ଆଧାରକୁ ଟିକିଏ ଭଲଭାବରେ ରୂପାନ୍ତରିତ ଅବସ୍ଥାରେ ଦେଖିବାକୁ ଅପେକ୍ଷା କରି ରହେ ।

ବର୍ତ୍ତମାନ ଆନ୍ତର୍ଜାତିକ ପରିସ୍ଥିତି ଅତି ଚମକପ୍ରଦ ହୋଇ ଉଠିଲାଣି । ଗୁରୁତର ଘଟଣାମାନଙ୍କର ଘନ ଘନ ପରିବର୍ତ୍ତନ ଓ ସେଥି ସଙ୍ଗେ ପୃଥିବୀର ପ୍ରଖ୍ୟାତନାମା ରାଜନୀତିଜ୍ଞମାନଙ୍କର ଅସ୍ଥିର ବାର୍ତ୍ତା ଆମ୍ଭମାନଙ୍କର ସମକ୍ଷରେ ଗୋଟିଏ ଜଟିଳ ସମସ୍ୟା ଶୀଘ୍ର ଉପସ୍ଥିତ ହେବାର ସୂଚନା ଦେଉଛି । 'ନାନା ମୁନିର ନାନା ମତ' ପରି ଏ ସମସ୍ୟା ସମ୍ବନ୍ଧରେ ବିଚକ୍ଷଣ ରାଜନୀତିଜ୍ଞମାନଙ୍କର ଅନୈକ୍ୟସିଦ୍ଧାନ୍ତ ପ୍ରକାଶିତ ହେଉଛି । ଘଟଣାର କ୍ରମ ଦେଖି କିମ୍ବା ଅତୀତର ଅବସ୍ଥା ସଙ୍ଗେ ତୁଳନା କରି ଭବିଷ୍ୟତ ସମ୍ବନ୍ଧରେ କୌଣସି ବିଷୟ ସ୍ଥିର ରୂପେ ନିର୍ଣ୍ଣୀତ ହୋଇ ପାରେ ନାହିଁ । ସମାନ ଘଟଣା ସବୁ ସମୟରେ ସମାନ ଫଳ ଦେଖାଏ ନାହିଁ । ଭବିଷ୍ୟତର ଅନ୍ଧକାରରେ କଣ ନିହିତ ଅଛି, ତାହା ତ୍ରିକାଳଜ୍ଞ ମନୀଷୀମାନଙ୍କ ବ୍ୟତୀତ ଅନ୍ୟ କେହି ଜାଣି ପାରନ୍ତି ନାହିଁ । ଆଜିକାଲି ଯୁଗରେ ସେମାନଙ୍କ ସଂଖ୍ୟା ବିରଳ କହିଲେ ଚଳେ । ରାଜନୀତିଜ୍ଞମାନଙ୍କ ପକ୍ଷରେ ଭବିଷ୍ୟତର ଅଭ୍ରାନ୍ତ ଚିତ୍ର ପ୍ରକାଶ କରିବା ଅସମ୍ଭବ । ସେମାନଙ୍କର ଦୃଷ୍ଟି ଘଟଣାର କ୍ରମରେ ନିବଦ୍ଧ ଥାଏ । ପୃଥିବୀର ବର୍ତ୍ତମାନ ପରିସ୍ଥିତି ଦେଖି କେତେକ ଚତୁର ରାଜନୀତିଜ୍ଞ କହନ୍ତି ଯେ, ସମର ଓ ଶାନ୍ତି ଗୋଟିଏ ଭୂମିକାରେ ଉପନୀତ ହେଲାଣି । କେତେବେଳେ କେଉଁଟି ପୃଥିବୀକୁ ଅଧିକାର କରି ବସିବ, ସେ ବିଷୟରେ ସେମାନେ ନୀରବ । ସାଧାରଣ ଲୋକମାନଙ୍କ ମଧ୍ୟରେ କେତେକ ସମରର ନିଶ୍ଚିତତା ଓ କେତେକ ଶାନ୍ତିର ପ୍ରତିଷ୍ଠା ଅନୁଭବ କରୁଛନ୍ତି । ନିଜର ସ୍ୱାଧୀନ ଭାବନା ବଳରେ ଦୁଇଟିରୁ ଗୋଟିଏ ଅନିବାର୍ଯ୍ୟ ଘଟଣା, ନିଶ୍ଚିତ ନିକଟ ଭବିଷ୍ୟତରେ ଘଟିବ—ମନୁଷ୍ୟ ଏ କଥା ଜାଣିପାରୁ ନାହିଁ । ଉନ୍ନତ ରାଜନୀତି, ଅର୍ଥନୀତି କିମ୍ବା ଐତିହାସିକ ଗବେଷଣା ଏ ଦିଗରେ ତାର ଦୃଷ୍ଟି ସଞ୍ଚାଳନ କରାଇ ପାରୁନାହିଁ । ଏତିକିମାତ୍ର ଅନୁମାନ କରାଯାଇପାରେ ଯେ, ପୃଥିବୀ-ବ୍ୟାପୀ ସମର ଲାଗିଲେ ବର୍ତ୍ତମାନ ଯୁଗର ଶେଷ ଯବନିକା ଶୀଘ୍ର ପଡ଼ିଯିବ ।

ବିଧିର ବିଧାନ ଅନୁସାରେ ଭବିଷ୍ୟତର କର୍ମପ୍ରେରଣା ସ୍ୱତଃ ମନୁଷ୍ୟ ହୃଦୟକୁ ଅଧିକାର କରିବ । ଜଗତର ସୃଷ୍ଟି, ସ୍ଥିତି ଓ ସଂହାରରେ ମନୁଷ୍ୟ କେବଳ ଉପଲକ୍ଷ୍ୟ ମାତ୍ର । ଆଜି ବିପ୍ଳବର ବହ୍ନି ଯେଉଁ ଆକାରରେ ଦେଖା ଦେଉଛି, ସେ ସମସ୍ତ ମୂଳରେ ମନୁଷ୍ୟର ହସ୍ତ କାର୍ଯ୍ୟ କରୁଛି । ସାମ୍ରାଜ୍ୟବାଦ, ସାମ୍ୟବାଦ, ଅହିଂସାବାଦ ପ୍ରଭୃତି ବିଭିନ୍ନ ନୀତିର ଆଶ୍ରୟରେ ରାଜନୀତିଜ୍ଞମାନେ ଜଗତରେ ଗୋଟାଏ ପରିବର୍ତ୍ତନ ଆଣି ନୂତନ ଯୁଗର ପ୍ରତିଷ୍ଠା ଲୋଡ଼ୁଛନ୍ତି; କିନ୍ତୁ ସେମାନଙ୍କ ପ୍ରସ୍ତାବରେ ସଫଳତା ବସ୍ତୁ-ଶକ୍ତିର ପ୍ରଭାବ ଉପରେ ନିର୍ଭର କରୁଛି । ତା ହୋଇ ନ ଥିଲେ କେତେଦିନୁ ସାମ୍ରାଜ୍ୟବାଦୀ ଶକ୍ତିମାନେ

ପୃଥିବୀକୁ ଅଧିକାର କରି ବସିଲେଣି । ମନେ ହୁଏ, ଗତ ପୃଥିବୀବ୍ୟାପୀ ସମର ପରେ ସଂହାର କ୍ରିୟାର କିଛି ସମୟ ପାଇଁ ବିରାମ ଆସିଥିଲା ବୋଲି ପୁଣି ଏକ ଭୀଷଣ ସଂଘର୍ଷ ଘନେଇ ଆସୁଛି । ଆନ୍ତର୍ଜାତିକ ସଂଘ ପ୍ରତିଷ୍ଠା କରି ପାଶ୍ଚାତ୍ୟ ଜାତିମାନେ ଭବିଷ୍ୟତର ଯୁଦ୍ଧ ବନ୍ଦ କରିଦେବେ ବୋଲି ଭାବିଥିଲେ; କିନ୍ତୁ ଯେତେଦିନ ପର୍ଯ୍ୟନ୍ତ କୂଟନୀତି ପ୍ରଭାବରେ ଅସତ୍ୟ ଓ ଅନ୍ୟାୟକୁ ପ୍ରଶ୍ରୟ ଦିଆଯାଉଥିବ, ସେତେଦିନ ପର୍ଯ୍ୟନ୍ତ ଜଗତରେ ସ୍ଥାୟୀ ଶାନ୍ତି ସ୍ଥାପନର ଆଶା ବୃଥା । ସତ୍ୟ ସଙ୍ଗେ ଅସତ୍ୟର ଗତିବିରୋଧ ଥିଲେ ସୁଦ୍ଧା ଆବହମାନ କାଳରୁ ମାନବ-ସମାଜରେ କୌଣସି ଗୋଟିକର ପୂର୍ଣ୍ଣ ପ୍ରତିଷ୍ଠା ହୋଇ ପାରିନାହିଁ । ପ୍ରତି ଯୁଗ-ପରିବର୍ତ୍ତନ ସମୟରେ ଏ ଦୁହେଁ ସଂଘର୍ଷକୁ ସାହାଯ୍ୟ କରିଆନ୍ତି ।

ବହିର୍ଦୃଷ୍ଟିରେ ଯେଉଁ ବିଷୟମାନ ଦେଖାଯାଏ, ସେମାନଙ୍କର ଗୂଢ଼ ଅର୍ଥ ଥାଏ ବୋଲି ମହାଭାରତକାର ଭଗବାନ କୃଷ୍ଣଦ୍ୱୈପାୟନ ବର୍ଣ୍ଣନା କରିଅଛନ୍ତି । ଘଟଣାମାନଙ୍କର ସଂଘଟନ ଅବିରତ ଲାଗିରହିଛି । ସେମାନଙ୍କର ଅନ୍ତର୍ନିହିତ କାରଣମାନ ନିର୍ଦ୍ଦେଶ କରି ଗୋଟିଏ ସାଧାରଣ ନିୟମରେ ଘଟଣା-ପରମ୍ପରାକୁ ବାନ୍ଧି ରଖିଲେ ଭବିଷ୍ୟତର ବର୍ଣ୍ଣନା ସହଜ ହୋଇପାରେ । ପ୍ରାଚୀନ ହିନ୍ଦୁ ମନୀଷୀମାନେ ଅନ୍ତର୍ଦୃଷ୍ଟି ବଳରେ ଘଟଣାମାନଙ୍କ ଉତ୍ପତ୍ତିର କାରଣ ନିର୍ଣ୍ଣୟ କରି ଯେଉଁ ଅଭ୍ରାନ୍ତ ତଥ୍ୟ ବେଦ, ବେଦାନ୍ତ, ମହାଭାରତ ପ୍ରଭୃତିରେ ଉଲ୍ଲେଖ କରି ଯାଇଅଛନ୍ତି, ତାହା ଅନ୍ୟଥା ହେବାର ସମ୍ଭାବନା ନାହିଁ । ଅଳ୍ପଦିନ ତଳେ ବଙ୍ଗ ଦେଶର ଦୁଇଜଣ ବିଖ୍ୟାତ ଜ୍ୟୋତିଷୀ ଭବିଷ୍ୟତ୍ ସମ୍ବନ୍ଧରେ ଗଣନା କରିବାକୁ ଯାଇ ମହାଭାରତରେ ବର୍ଣ୍ଣିତ ଇନ୍ଦ୍ରଦେବଙ୍କ ଦ୍ୱାରା ଦୃଷ୍ଟ ଭାବୀ ଯୁଦ୍ଧ ଚକ୍ରକୁ ଅବଲମ୍ବନ କରିଅଛନ୍ତି । ଆଖ୍ୟାୟିକା ଭାଗକୁ ବାଦ ଦେଇ ଜ୍ୟୋତିର୍ବିଦ୍ୱୟଙ୍କର ଗଣନା ବର୍ତ୍ତମାନ ଓ ମହାଭାରତ ଯୁଗରେ ଗୋଟିଏ ନିର୍ଦ୍ଦିଷ୍ଟ ତିଥିରେ ଗ୍ରହ ଓ ଉପଗ୍ରହମାନଙ୍କ ଅବସ୍ଥାନ ମଧ୍ୟରେ ସମାନତା ଦେଖି ପାରିଛି । ସେହି ଗଣନାନୁସାରେ ମାର୍ଚ୍ଚ ୧୯୩୯ ଅର୍ଥାତ୍ ଫାଲ୍‌ଗୁନ ଅମାବାସ୍ୟା ଦିନଠାରୁ ଗୋଟିଏ ଭୀଷଣ ଜାତୀୟ ସଂଘର୍ଷ ନିକଟ ହୋଇଆସିବ । ସ୍ପେନର ଅନ୍ତର୍ବିବାଦ ସମ୍ବନ୍ଧରେ ସେମାନେ ପୂର୍ବରୁ ଯେଉଁ ଭବିଷ୍ୟତ୍ ବାଣୀ ପ୍ରଚାର କରିଥିଲେ, ତାହା ସଫଳ ହୋଇଅଛି ବୋଲି ଦୈନିକ ଇଂରାଜି "ଅମୃତବଜାର ପତ୍ରିକା' କିଛି ଦିନ ତଳେ ପ୍ରକାଶ କରିଥିଲେ । ଜ୍ୟୋତିଷର ଗଣନାନୁସାରେ ଜାତି ବା ଜଗତର ଗତି ପରିବର୍ତ୍ତନ ଲକ୍ଷ୍ୟ କରିବା ସହଜ ନୁହେଁ । ଯାହା ହେଉ, ଯଦି ବଙ୍ଗୀୟ ଜ୍ୟୋତିର୍ବିଦ୍ୱୟଙ୍କର ଭବିଷ୍ୟତ୍ ବାଣୀ ସଫଳ ହୁଏ, ତାହା ହେଲେ ନିକଟ ଭବିଷ୍ୟତରେ ବର୍ତ୍ତମାନ ଯୁଗର ପରିବର୍ତ୍ତନ ଘଟିବ । ସେଥିରେ ଭାରତବର୍ଷର ଭାଗ୍ୟ ମଧ୍ୟ ଅନ୍ୟ ଆକାର ଧାରଣ କରିବ । ଦୁର୍ବଳ ଓ ସାଧୁ ପ୍ରକୃତିର ଲୋକମାନଙ୍କର ଅବରୁଦ୍ଧ ପଥ ମଧ୍ୟ ଉନ୍ମୁକ୍ତ ହୋଇଯିବ ।

ମନୁଷ୍ୟର ସ୍ୱଭାବବୈଚିତ୍ର୍ୟ ଓ କର୍ମର ଜଟିଳତାରେ ସତ୍ୟ ଓ ସୌନ୍ଦର୍ଯ୍ୟ ଚିରଦିନ ଆଚ୍ଛନ୍ନ ହୋଇ ରହିଛି । ଯୁଗର ପରିବର୍ତ୍ତନ ଆସେ—ମନୁଷ୍ୟର ପ୍ରଚଳିତ କର୍ମଧାରାକୁ ବଦଳାଇ ଦେଇ ଭିନ୍ନ ଭୂମିକାରେ ଆଉ ଗୋଟିଏ ନୂତନ ଚିତ୍ର ପ୍ରକାଶ କରିବ ବୋଲି । ନୂତନତ୍ୱରେ ସୌନ୍ଦର୍ଯ୍ୟର ସ୍ପର୍ଶ ଯୁଗ-ପ୍ରଭାବରେ ମନୁଷ୍ୟକୁ ଆକୃଷ୍ଟ କଲେ ତାର ଅନ୍ତର୍ନିହିତ ବିକାଶପଥ ସୁଗମ ହୁଏ । ଇତିହାସ ପାଠକମାନେ ଫରାସୀ ରାଷ୍ଟ୍ରବିପ୍ଳବ ଓ ଆମେରିକାର ସ୍ୱାଧୀନତା ସଂଗ୍ରାମ ବିଷୟ ବିସ୍ମୃତ ହୋଇ ନ ଥିବେ । ଉପର୍ଯ୍ୟୁକ୍ତ ଦୁଇଟି ସଂଘର୍ଷ ଯୋଗୁଁ ଯେଉଁମାନେ ଦୋଷଯୁକ୍ତ ବୋଲି ବିବେଚିତ ହେଉଥିଲେ, ସେହିମାନେ ପୁଣି ନିଜର ଶକ୍ତିର ପରାକାଷ୍ଠା ଦେଖାଇ ଦୁଇଟି ନୂତନ ଯୁଗର ଅବତାରଣା କରିପାରିଛନ୍ତି । ଯେଉଁ ଭାରତବାସୀ ବିପ୍ଳବବାଦୀ ବୋଲି ଘୃଣ୍ୟ ହେଉଥିଲା, ସେ ମଧ୍ୟ ଆଜି ଶକ୍ତିପରୀକ୍ଷା ଦେଇ ନୂତନଯୁଗ ସୃଷ୍ଟି କରିବାକୁ ଯାଉଅଛି ।

ଧୀର, ଦୁର୍ବଳ ଓ ନିପୀଡ଼ିତକୁ ଅତିମାତ୍ରାରେ ଦାସତ୍ୱ-ଶୃଙ୍ଖଳରେ ଆବଦ୍ଧ କରି ତାର ଅନ୍ତର୍ନିହିତ ବିକାଶକୁ ସମୂଳେ ଲୋପ କରିଦେଲେ ଗୋଟିଏ ପ୍ରତିକ୍ରିୟା ସ୍ୱତଃ ଆତ୍ମପ୍ରକାଶ କରେ—ଯାହାର ବିନାଶ ସାଧନ ପାଇଁ ଶତ କୌଶଳ ଅବଲମ୍ବନ ବୃଥା ହୁଏ । ଆତ୍ମଶକ୍ତି ଅବିନାଶୀ । ଏହାର ସାମୟିକ ଅବରୋଧ ଯୁଗ ପରିବର୍ତ୍ତନ କାଳରେ ଅନ୍ତର୍ହିତ ହୋଇଯାଏ । ଏହା ବିଶ୍ୱ-ଶକ୍ତିରୁ ପୃଥକ୍ ନୁହେଁ । ଶକ୍ତିମାନେ ଆନ୍ଦୋଳନର ପକ୍ଷପାତୀ । ଆଜି ପୃଥିବୀର ରାଜନୈତିକ ଆକାଶରେ ଯେଉଁ ଘନଘଟାର ସୃଷ୍ଟି ହେଲଣି ତାହା ପରିଷ୍କୃତ ହୋଇ ପୂର୍ବ ଅବସ୍ଥାକୁ ଫେରି ଆସିବା ଅସମ୍ଭବ । ନାନା ବିପ୍ଳବ ଓ ସଂଘର୍ଷ ମଧ୍ୟରେ ମନୁଷ୍ୟକୁ ନିଜର କର୍ମ-ପନ୍ଥା ସ୍ଥିର କରିବାକୁ ହେବ । ଆମ୍ଭେମାନେ ଏ ସମ୍ବନ୍ଧରେ ଯୁଗ-ପ୍ରବର୍ତ୍ତକ Lenin ଙ୍କ ଉକ୍ତି ଉଦ୍ଧାର କରିପାରୁଁ ।

Lenin କହିଛନ୍ତି—"Any and every Political Crisis is useful because it brings to the light what was hidden, reveals the actual forces involved in politics, it exposes lies, deceptive phrases and frictions; it demonstrates comprehensively the facts and forces on the people the understanding of what is the reality." ସାଧାରଣ ଲୋକଚକ୍ଷୁରେ ଯାହା ଅମଙ୍ଗଳ ବୋଲି ବିବେଚିତ, ତାହା ସମୂହ ଭାବରେ ଜଗତର ହିତ ସାଧନ କରିପାରେ । ସାଂସାରିକ ଘଟନାମାନଙ୍କର ଭଲ କିମ୍ବା ମନ୍ଦ ଅତି ଅଳ୍ପକାଳ ସ୍ଥାୟୀ; ସୁତରାଂ ଅବିନାଶୀର ବିକାଶପାଇଁ ଯେଉଁ ପରିବର୍ତ୍ତନ ଆସେ, ତାହା ସର୍ବଥା ବରଣୀୟ ।

# କର୍ମର ଅସାମଞ୍ଜସ୍ୟ

ଗୋଟାଏ ବିରାଟ ବ୍ୟାପକତାର ଅଧୀନରେ ସମାନତା ଓ ଅସମାନତାର ବ୍ୟବଧାନ-ବିଧାନ ମନୁଷ୍ୟର କର୍ମଧାରାକୁ ନିୟନ୍ତ୍ରଣ କରୁ ନ ଥିଲେ ପ୍ରକୃତିର ବୈଚିତ୍ର୍ୟ ଅନୁଭବ କରିବାପାଇଁ ଅବକାଶ ମିଳନ୍ତା ନାହିଁ । ମନେ ହୁଏ, ଏହି ବ୍ୟବଧାନର ପ୍ରଭାବ ଏକ ଅନନ୍ତ ଶକ୍ତିର ଯୋଜନା ପାଇଁ ଗୋଟିଏ ନିମିତ୍ତ ମାତ୍ର । ଜୀବନର ପୂର୍ଣ୍ଣ ବିକାଶରେ ସମାନତା କିମ୍ବା ଅସମାନତାର କୌଣସି ନିର୍ଦ୍ଦେଶ ନାହିଁ । କର୍ମର ଉଦାର ନିୟନ୍ତ୍ରଣ ମଧ୍ୟ କୌଣସି ଅସମାନତାର ବିରୋଧୀ ନୁହେଁ । କେବଳ ବିରୁଦ୍ଧ ଦୃଷ୍ଟିରେ ମନୁଷ୍ୟର ସାଂସାରିକ ଗତିପଥ ବଡ଼ ଜଟିଳ ହୋଇ ରହିଛି ।

ପୁଣି କର୍ମ ଓ ନୀତିର ଅସମାନତା ନ ଥିଲେ ଆଜି ସଭ୍ୟତମ ପାଶ୍ଚାତ୍ୟ ଜାତିମାନଙ୍କ ମଧ୍ୟରେ ସଂଘର୍ଷର ସମ୍ଭାବନା ସୁଦ୍ଧା ଥାଆନ୍ତା ନାହିଁ । ଏହି ସଂଘର୍ଷ ମଧ୍ୟରେ ମନୁଷ୍ୟର ଗୋଟିଏ ମାତ୍ର କାର୍ଯ୍ୟପ୍ରଣାଳୀର ସୂଚନା ଦେଖି ଅତିମାତ୍ରାରେ ଅଭିଭୂତ ହୋଇପଡ଼ିବା ସୁବିବେଚନା ନୁହେଁ । ବିଶେଷତଃ ରାଜନୀତି କ୍ଷେତ୍ରରେ ଅନୁକୂଳ ସାମୟିକ ଘଟଣାବଳୀ ସାଧାରଣ ଜନମତ ଗଠନ କରି ଯେପରି ପରିବର୍ତ୍ତନ ସାଧନ କରେ, ସେଥିରେ ଅନେକ ସମୟରେ କର୍ମୀ ନିଜକୁ ବିଶିଷ୍ଟ କରି ଏକଦେଶଦର୍ଶିତାର ପରିଚୟ ଦିଏ ଓ ତାର କର୍ମ-ମନ୍ତ୍ରରେ ଜନସାଧାରଣ ପ୍ରଣୋଦିତ ହୋଇଯାନ୍ତି । ତା ହୋଇ ନ ଥିଲେ ଜଣେ ହିଟଲରର ସମଗ୍ର ଜର୍ମାନୀକୁ ଇଙ୍ଗିତରେ ଚାଳିତ କରି ଧ୍ୱଂସର ସମ୍ମୁଖୀନ ହୋଇ ନ ଥାନ୍ତେ । ଅନୁକୂଳ ଘଟଣାବଳୀର କ୍ରମରେ ହିଟଲରଙ୍କର ଶକ୍ତି ସଞ୍ଚିତ ହୋଇ ଆଜି ତାଙ୍କୁ ଜଗତ ସମକ୍ଷରେ ବଡ଼ କରି ଦେଇଛି । ସେହି ଶକ୍ତି ବଳରେ ସେ ଜଗତର ଅସମାନତାରେ ବୈଚିତ୍ର୍ୟ ଲୋପ କରିଦେବାକୁ ଚାହାନ୍ତି ବୋଲି ଅନେକଙ୍କର ବିଶ୍ୱାସ । ହିଟଲରଙ୍କ ବ୍ୟକ୍ତିତ୍ୱରେ କେତେଗୁଡ଼ାଏ ଅସାମଞ୍ଜସ୍ୟ ଥାଇପାରେ ଏବଂ ମହାତ୍ମା ଗାନ୍ଧି ଓ ମିଷ୍ଟର ଚେମ୍ବରଲେନଙ୍କ ପରି ବିଚକ୍ଷଣ ରାଜନୀତିଜ୍ଞମାନେ ତାଙ୍କ ନୀତିର ଘୋର ବିରୋଧୀ ହୋଇପାରନ୍ତି; କିନ୍ତୁ ତାଙ୍କ ନୀତିର ଅସାରତା ଏ ପର୍ଯ୍ୟନ୍ତ ଦୂର ହୋଇନାହିଁ । ମନେହୁଏ ତାଙ୍କର ଦୁର୍ଦ୍ଦମନୀୟ କଳ୍ପନାର ପ୍ରଭାବ କର୍ମର ଅସମାନତାରେ ଜୀବନର ବାସ୍ତବ ସୌନ୍ଦର୍ଯ୍ୟ ଅନୁଭବ କରିବାକୁ ପ୍ରେରଣା ଦେଉନାହିଁ କିମ୍ବା ଯେଉଁମାନେ ତାଙ୍କର ବିରୋଧୀ, ସେମାନେ ତାଙ୍କୁ ଭଲ ଭାବରେ ବୁଝିନାହାନ୍ତି ।

ପ୍ରତ୍ୟେକ ନୀତି ସତ୍ୟାଶ୍ରୟୀ । ସତ୍ୟ ଓ ସୌନ୍ଦର୍ଯ୍ୟର ଅବିଚ୍ଛିନ୍ନ ଧାରା ପ୍ରକୃତିର ଅସମାନତାରେ ଜୀବନକୁ ସ୍ପର୍ଶ କରୁ ନ ଥିଲେ ମନୁଷ୍ୟର କର୍ମ ଓ ନୀତିର ମୂଲ୍ୟ ରହନ୍ତା ନାହିଁ । ହିଟଲରିଜମ୍ ଓ ତାର ବିରୋଧୀ ନୀତିମାନଙ୍କର ଅସମାନତାରେ ଆଜି ସଂଗ୍ରାମର ସୂତ୍ରପାତ ହୋଇଅଛି । ଏହି ଅସମାନତା ପ୍ରକୃତିର ଏକ ଭୀଷଣ ଲୀଳା ସୃଜନ କରିବ; କିନ୍ତୁ ନୀତି-ସୂତ୍ରରେ ସତ୍ୟ ଉପରେ ଯାହାର ପ୍ରତିଷ୍ଠା ଥିବ, ତାହାର ନିଶ୍ଚୟ ମୁକ୍ତି ଘଟିବ । ଅସତ୍ୟକୁ ସତ୍ୟ ନାମରେ କିମ୍ବା ଘଟଣାର କେବଳ ଅନୁକୂଳ ସଙ୍ଘାତରେ ପରିପୁଷ୍ଟ ନୀତିକୁ ସ୍ଥାୟୀ କରାଯାଇ ପାରେ ନାହିଁ । ପାରିପାର୍ଶ୍ୱିକ ଅବସ୍ଥାଭେଦ ନିୟମାନୁସାରେ ନୀତିର ପରିବର୍ତ୍ତନ ସ୍ୱାତନ୍ତ୍ର୍ୟ ବିଧାନ କଲେ ସୁଦ୍ଧା ସୌନ୍ଦର୍ଯ୍ୟର ବିଶେଷ ହାନି ଘଟାଏ ନାହିଁ । ସେହି ଦିଗରେ ଦେଖିବାକୁ ଗଲେ ବର୍ତ୍ତମାନ ମହାତ୍ମା ଗାନ୍ଧି ଓ ମିଷ୍ଟର ଚେମ୍ବରଲେନଙ୍କ ଦୃଷ୍ଟିରେ ହିଟଲରିଜମ୍ ଗୋଟାଏ ସାଧାରଣ ଚିତ୍ର ପ୍ରକାଶ କରୁଛି ଓ ସେଥିରେ ସେମାନେ ପାଶବିକ ନିର୍ମମତାର ଗୋଟାଏ ନିର୍ମମ ସ୍ପର୍ଶ ଦେଖୁଛନ୍ତି । ପାଶବିକ ନିର୍ମମତା ଜୀବନର ସୌନ୍ଦର୍ଯ୍ୟ ବୁଝେ ନାହିଁ । ସେ ଚାହେଁ ଗୋଟାଏ ଦାନବୀ ଶକ୍ତି ସାହାଯ୍ୟରେ ଜୀବନର ଗୋଟାଏ ତୃପ୍ତି ବିଧାନ କରିବ ବୋଲି । ଜୀବନର ତୃପ୍ତି କିମ୍ବା ଶାନ୍ତି ସୌନ୍ଦର୍ଯ୍ୟରୁ ପୃଥକ୍ ନୁହେଁ । ସତ୍ୟ ଓ ସୌନ୍ଦର୍ଯ୍ୟର ସମନ୍ୱୟରେ ପ୍ରତିଷ୍ଠିତ ନୀତି-ବିରୋଧୀ ପ୍ରବଳ କୃତ୍ରିମ ନୀତିର ବାହ୍ୟ ଆବରଣକୁ ନଷ୍ଟ କରି ଗୋଟାଏ ସମାନତାରେ ମନୁଷ୍ୟର କାର୍ଯ୍ୟ-ପ୍ରଣାଳୀକୁ ନିୟନ୍ତ୍ରିତ କରିବାକୁ ଉଦ୍ୟତ

ଥାଏ, କିନ୍ତୁ ସଂଘର୍ଷ ମାର୍ଗରେ ଗତି କରି ନ ଫେରିଲେ ଏହାର ମୂଲ୍ୟ ସାଧାରଣ ମନୁଷ୍ୟର ଧାରଣାକୁ ଆସେ ନାହିଁ । ମନୁଷ୍ୟ ସମାଜରେ ଅଧିକାଂଶ ବାହାର ଆବରଣଟାକୁ ଦେଖି ଚକିତ ହୋଇପଡ଼ନ୍ତି । ସତ୍ୟକୁ ବିଚାର ନ କରି ସେମାନେ ନୀତିକୁ ଅନୁସରଣ କରିଯାଆନ୍ତି । ବିରୁଦ୍ଧ ନୀତିମାନଙ୍କର ପରିଣତି ଶେଷରେ ସଂଘର୍ଷରେ ପହଞ୍ଚିବା ସ୍ୱାଭାବିକ ହୁଏ । ତେଣୁ ଉପସ୍ଥିତ ସଂଗ୍ରାମରେ ନୀତିର ତାତ୍ପର୍ଯ୍ୟ ପ୍ରମାଣ କରିବାକୁ ପଡ଼ିବ । ହିଟ୍‌ଲର କିମ୍ବା ଚେମ୍ବରଲେନ୍ କେହି ମନୁଷ୍ୟ ଜାତିକୁ ଚିରଦିନ ଭୁଲାଇ ରଖିପାରିବେ ନାହିଁ । ଧର୍ମର ସଂସ୍ଥାପନ ପାଇଁ ଯୁଗେ ଯୁଗେ ସତ୍ୟର ଆଶ୍ରୟ ନିଆଯାଇଅଛି । ଆଜି ଯଦି ମାନବ ଜାତିର ଦୃଷ୍ଟିରେଖାରେ କୌଣସି କଳଙ୍କର କାଳିମା ଥିବ, ତାହାହେଲେ ଉପସ୍ଥିତ ସଂଗ୍ରାମ ତାକୁ ନିଶ୍ଚୟ ଦୂର କରିଦେବ । ହିଟଲର କିମ୍ବା ଚେମ୍ବରଲେନ କେବଳ ଉପଲକ୍ଷ୍ୟ ମାତ୍ର ହେବେ ।

ପ୍ରକୃତିର ଅସମାନତା ଶାଶ୍ୱତ । ଏହି ଅସମାନତାରେ ସମାନତାର ସନ୍ଧାନ ନେବାକୁ ପଡ଼ିବ । ଜୀବନର ଅସହ୍ୟ ଜଟିଳତା ମଧ୍ୟରେ ସୌନ୍ଦର୍ଯ୍ୟର ସ୍ଫୁରଣ ବଡ଼ ଚଞ୍ଚଳ । ତାକୁ ମନୁଷ୍ୟ ସହଜରେ ଲକ୍ଷ୍ୟ କରିପାରେ ନାହିଁ । ନୀତିଯୁକ୍ତ ଶୁଷ୍କ କର୍ମନିର୍ଘଣ୍ଟ ମଧ୍ୟ ତାକୁ ଏ ଦିଗରେ ସାହାଯ୍ୟ ଦେଇପାରେ ନାହିଁ । ମନୁଷ୍ୟର ସ୍ୱାଧୀନ ପ୍ରେରଣା ଶିଳ୍ପୀ, ଚିତ୍ରକର କିମ୍ବା ଭାବୁକଙ୍କ ବାଣୀରେ ବେଶୀ ଆତ୍ମପ୍ରକାଶ କରେ । ସେଥିପାଇଁ ସମସାମୟିକ ବିଚକ୍ଷଣ ରାଜନୀତିଜ୍ଞମାନଙ୍କର ଭିନ୍ନ ଭିନ୍ନ ନୀତିର ପ୍ରତିଷ୍ଠା କଳାର ଆଶ୍ରୟ ଲୋଡ଼େ । ଯୁଗର ପରିବର୍ତ୍ତନ ଧାରାରେ କଳାର କାର୍ଯ୍ୟ ଅତି ଯଥାର୍ଥ ।

ଆହୁରି ମଧ୍ୟ କଳାର ପ୍ରକାଶ ନ ଥିଲେ ପ୍ରକୃତିର ଅସମାନତାରେ ସମାନତାର ଚିହ୍ନ ଦେଖାଇଦେବା ପାଇଁ ବିଚିତ୍ର କଳ୍ପନା ତୁଳିକାକୁ ଅପେକ୍ଷା ରହନ୍ତା ନାହିଁ । ଯୁଗର କୌଣସି ନିର୍ଦ୍ଦେଶ ନାହିଁ । କେବଳ କେତେଗୁଡ଼ିଏ କଳାର ବିଭିନ୍ନ ପ୍ରକାଶ ସଙ୍କେତ ସ୍ୱରୂପ ରହିଛି ଓ ରହିବ । କେତେବେଳେ ଏହା ଇତିହାସର ସତ୍ୟରୂପରେ, କେତେବେଳେ ଦର୍ଶନର ନିଗୂଢ଼ ତତ୍ତ୍ୱ ମଧ୍ୟରେ, କେତେବେଳେ କବିତାର ଉଚ୍ଛ୍ୱାସରେ, କେତେବେଳେ ବୈଜ୍ଞାନିକର ସୂକ୍ଷ୍ମ ଗବେଷଣା ମଧ୍ୟରେ କିମ୍ବା ରାଜନୀତିର ତୀବ୍ର ଜଟିଳତା ମଧ୍ୟରେ ଏହା ଭିନ୍ନ ଭିନ୍ନ ଭାବରେ ଆତ୍ମପ୍ରକାଶ କରି ସ୍ୱତନ୍ତ୍ର ଯୁଗ ନାମରେ ଆଖ୍ୟାତ ହେଉଥାଏ ।

ନୀତି-ଅନୁସୃତ କର୍ମ ସୌନ୍ଦର୍ଯ୍ୟକୁ ଅବଲମ୍ବନ କରି ମାନବ ଜୀବନର ଉତ୍କର୍ଷ ସାଧନ କରେ । ଜୀବନର ବିଶାଳତା ଅନେକ ସମୟରେ ତୀବ୍ର ନୀତିକୁ ଅନୁସରଣ କରି ବଡ଼ ଶୁଷ୍କ ହୋଇଯାଏ । ମନୁଷ୍ୟର କିଛି ସ୍ୱାତନ୍ତ୍ର୍ୟ ରହେ ନାହିଁ । ରାଜନୀତି କ୍ଷେତ୍ରରେ ଅଗ୍ରଣୀମାନଙ୍କର କର୍ମ-ନୀତିକୁ ସମର୍ଥନ କଲାବେଳେ ଅଧିକାଂଶ ସେଥିର ମର୍ମ ବୁଝନ୍ତି ନାହିଁ । କେବଳ ସମସାମୟିକ ଘଟଣାସ୍ରୋତରେ ସେମାନଙ୍କର ଆଦେଶ କିଛି ଦିନ ପାଇଁ ପାଳନ କରିଥାନ୍ତି । ସେଥିଯୋଗୁଁ ଜଗତରେ ନୀତି-ବିରୋଧ ସବୁଦିନେ ଲାଗି ରହିଥାଏ । ଆଜି ପାଶ୍ଚାତ୍ୟ ଭୂଖଣ୍ଡରେ ଯେଉଁମାନେ ହିଟଲରିଜମକୁ ଘୃଣା କରୁଛନ୍ତି କିମ୍ବା ପ୍ରାଚ୍ୟ ଖଣ୍ଡରେ ଗାନ୍ଧିବାଦକୁ ସମର୍ଥନ କରୁଛନ୍ତି, ସେମାନଙ୍କ ମଧ୍ୟରୁ କେତେଜଣ ପ୍ରକୃତ ଭାବରେ ହିଟ୍‌ଲର କିମ୍ବା ଗାନ୍ଧିଙ୍କର ନୀତି ବୁଝିଛନ୍ତି ସହଜରେ କୁହାଯାଇ ପାରିବ ନାହିଁ । ମହାତ୍ମାଗାନ୍ଧି ଓ ହର୍ ହିଟଲର ଦୁହେଁ ଦୁଇ ବିପରୀତ ନୀତିର ଚାଳକ ହୋଇଅଛନ୍ତି । ହିଟ୍‌ଲରଙ୍କ ନୀତିକୁ ସାମ୍ରାଜ୍ୟବାଦୀମାନେ ନିଜର ସ୍ୱାର୍ଥ-ସଂଶ୍ଳିଷ୍ଟ ଦୃଷ୍ଟିରେ ବିଚାର କରି ସେଥିର ବିରୁଦ୍ଧାଚରଣ କରୁଛନ୍ତି । ମହାତ୍ମା ଗାନ୍ଧିଙ୍କ ଅବଲମ୍ବିତ ମୌଳିକ ସନାତନ ନୀତିକୁ ସେମାନେ ଏ ପର୍ଯ୍ୟନ୍ତ ସ୍ଥିରଭାବରେ ବିଚାର କରି ନାହାନ୍ତି । ସମୟ ଓ ପରିସ୍ଥିତିର ଗୁରୁତ୍ୱ ଦୃଷ୍ଟିରେ ପାଶ୍ଚାତ୍ୟ ସାମ୍ରାଜ୍ୟବାଦୀ ଓ ସାମ୍ୟବାଦୀ ଜାତିମାନେ ବର୍ତ୍ତମାନ ତାଙ୍କର ନୀତିକୁ ଆଲୋଚନା କରିପାରନ୍ତି । ପ୍ରାଚ୍ୟବାସୀ ବିଶେଷତଃ ଭାରତବର୍ଷୀୟମାନେ ମହାତ୍ମାଙ୍କର ଆଦର୍ଶ ଅନୁସରଣ କରି ଆସୁଥିଲେ; କିନ୍ତୁ ବର୍ତ୍ତମାନ ଆନ୍ତର୍ଜାତିକ ପରିସ୍ଥିତି ଯେଉଁ ସଙ୍କଟ ସୃଷ୍ଟି କରିଦେଲଣି, ସେଥିରେ ସେହି ଆଦର୍ଶ କେତେଦୂର କାର୍ଯ୍ୟ କରିବ, ତାହା ନିଜେ ମହାତ୍ମା ଗାନ୍ଧି ସୁଦ୍ଧା ସ୍ଥିର ଭାବରେ କହିପାରିବେ ନାହିଁ । ମହାତ୍ମାଙ୍କ ଅହିଂସାବାଦର ଉଦ୍ଦେଶ୍ୟ ଯଦି ରାଜନୈତିକ ସ୍ୱାଧୀନତାରେ ପର୍ଯ୍ୟବସିତ ହୋଇ ରହେ, ତାହାହେଲେ ଜୀବନର ପୂର୍ଣ୍ଣତା ଦିଗରେ ଏହା ସଫଳ ନୁହେଁ ବୋଲି ଜାଣିବାକୁ ହେବ । ସନାତନ ପ୍ରାଚ୍ୟ ଆଦର୍ଶକୁ ମଧ୍ୟ ଏହା ବେଶୀ ଦିନ ଅନୁସରଣ କରିପାରିବ ନାହିଁ । କେବଳ ନିମିତ୍ତମାତ୍ର ହୋଇ ଭାରତବାସୀର ରାଜନୈତିକ ସ୍ୱାତନ୍ତ୍ର୍ୟ ସାଧନରେ ସାମୟିକ ଗୋଟାଏ ଅଗ୍ରଗତିର ସୂଚନା ଦେବ । ବିଶେଷତଃ ବର୍ତ୍ତମାନ ପରିସ୍ଥିତିରେ ଏହାର ଯଥାର୍ଥ ପ୍ରୟୋଜନୀୟତା ଜଣାପଡ଼ିବ । ଅନେକ ଦିନରୁ ଭାରତୀୟ କଂଗ୍ରେସ କର୍ମୀମାନେ ଦେଶବାସୀମାନଙ୍କୁ ଅହିଂସା ନୀତିର ପରାକାଷ୍ଠା

ଦେଖାଇବା ପାଇଁ ପ୍ରସ୍ତୁତ କରୁଥିଲେ । ଉପସ୍ଥିତ ୟୁରୋପୀୟ ସଂଗ୍ରାମରେ ଭାରତବର୍ଷ ଯୋଗ ଦେଉ ବୋଲି କେତେକ କଂଗ୍ରେସ ନେତା ଇଚ୍ଛା କରନ୍ତି । ସେମାନେ କିପରି ଭାବରେ ଅହିଂସା ନୀତିକୁ ଗ୍ରହଣ କରିଛନ୍ତି, ପରେ ପ୍ରକାଶ ପାଇବ । ଯୁଦ୍ଧ ଯଦି ବେଶୀ ଦିନ ସ୍ଥାୟୀ ହୁଏ ଓ ଅନ୍ୟାନ୍ୟ ଶକ୍ତିମାନେ ଯୋଗ ଦେବାକୁ ବାଧ୍ୟ ହୁଅନ୍ତି, ତାହାହେଲେ ପରିଣାମ କଣ ହେବ ଓ ସେହି ସମ୍ପର୍କରେ ଭାରତବର୍ଷର ରାଜନୈତିକ ପରିସ୍ଥିତି କି ଆକାର ଧାରଣ କରିବ, କେହି କହିପାରିବେ ନାହିଁ । ନେତାମାନେ ଅନେକ କଥା କହିପାରନ୍ତି, କିନ୍ତୁ ଦୃଢ଼ ଭାବରେ କାହାର ମତ ଗ୍ରହଣ କରାଯାଇ ନ ପାରେ । ପଣ୍ଡିତ ନେହରୁଙ୍କ ପରି ରାଜନୀତିଜ୍ଞ କୌଣସି ସ୍ଥିର ସିଦ୍ଧାନ୍ତରେ ଉପନୀତ ହୋଇ ନାହାନ୍ତି, ତାଙ୍କର ନିମ୍ନୋଲିଖିତ ଉକ୍ତିରୁ ଏହା ଅନୁମାନ କରାଯାଇପାରେ—"It seems to me to be true that democracy is likely to become more and more an issue in this war. It is possible a great force will be released by the combination of events and they may lead us to something which is not even envisaged by the leaders of France and England to day" ନେହେରୁଙ୍କ ଲକ୍ଷ୍ୟ ଅନିର୍ଦ୍ଦିଷ୍ଟ ଅନୁକୂଳ ଘଟଣାବଳୀରେ ରହିଛି ଓ ସେଥିରେ ସେ ଦେଶର ଭାବୀ ମଙ୍ଗଳ ଦେଖିପାରୁଥାନ୍ତି, କିନ୍ତୁ ସାଧାରଣ ଦେଶବାସୀ ତାଙ୍କୁ ଅନୁସରଣ କିପରି ବୋଧହୁଏ ନାହିଁ । ମହାତ୍ମା ଗାନ୍ଧି ଭାରତୀୟ ଜନମତକୁ ବିଶେଷ ଭାବରେ ପ୍ରଭାବିତ କରିଅଛନ୍ତି । ଏପରି ସନ୍ଧି ସ୍ଥଳରେ ତାଙ୍କୁ ପୂର୍ଣ୍ଣ ମାତ୍ରାରେ ଦେଶବାସୀମାନଙ୍କର ବିଶ୍ୱାସ କରିବା ସ୍ୱାଭାବିକ ଓ ସେ ଯେପରି କର୍ମର ନିର୍ଦ୍ଦେଶ ଦେବେ, ତାକୁ ସମସ୍ତେ ପାଳନ କରିବେ, କିନ୍ତୁ ସେ ନିଜେ ବୋଧହୁଏ ଏ ବିଷୟରେ ସନ୍ଦିହାନ ଅଛନ୍ତି । ତା ନ ହୋଇଥିଲେ ବଡ଼ଲାଟଙ୍କ ସମକ୍ଷରେ ସମଗ୍ର ଜାତିର ସମୂହ ମତ ବ୍ୟକ୍ତ କରିବାକୁ ପଶ୍ଚାତ୍ପଦ ହୁଅନ୍ତେ ନାହିଁ । ଯାହା ହେଉ ଏତିକି ମାତ୍ର କୁହାଯାଇ ପାରେ ଯେ, ମହାତ୍ମାଙ୍କ ନୀତି ରାଜନୀତିର କୁଟିଳତା ଦୃଷ୍ଟିରେ ନ୍ୟୂନ ହେଲେ ସୁଦ୍ଧା ସତ୍ୟ ଉପରେ ତାହାର ଦୃଢ଼ ପ୍ରତିଷ୍ଠା ଅଛି । ସଂସାରିକ କର୍ମ-ପନ୍ଥା ପାରିପାର୍ଶ୍ୱିକ ଓ ପ୍ରାକୃତିକ ଅବସ୍ଥା ଭେଦକୁ ଅନୁସରଣ କରେ ବୋଲି ଭାରତବର୍ଷ ଓ ଇଂଲଣ୍ଡର ଦୃଷ୍ଟିରେଖା ଭିନ୍ନ ହୋଇ ରହିଛି । ଉଭୟ ଦେଶ ଗଣତନ୍ତ୍ରବାଦକୁ ଅନୁମୋଦନ କରନ୍ତି, କିନ୍ତୁ ଆଦର୍ଶର ଭିନ୍ନତାରେ ଦୁଇଟି ସ୍ୱତନ୍ତ୍ର କର୍ମଧାରା ଦେଖା ଦେଲଣି । ରାଜନୀତିର ଜଟିଳ ଆବରଣ ଆଉ ବେଶୀ ଦିନ ସତ୍ୟକୁ ଘୋଡ଼ାଇ ରଖିପାରିବେ ନାହିଁ । ପ୍ରକୃତ ଗଣତନ୍ତ୍ର ସଂଗ୍ରାମର ବିରାମ ପରେ ଆତ୍ମପ୍ରକାଶ କରିବ । ଅହିଂସା-ନୀତି ଯଦି ଭାରତବର୍ଷରେ ଗୋଟିଏ ସ୍ୱତନ୍ତ୍ର କର୍ମପନ୍ଥା ଆବିଷ୍କାର କରେ, ତାହାହେଲେ ତାହା ଗାନ୍ଧିବାଦ ନାମରେ ଅଭିହିତ ହେବା ଉଚିତ; କାରଣ ମୌଳିକ ଅହିଂସା ନୀତି ପୂର୍ଣ୍ଣମାତ୍ରାରେ ଦେଶଦ୍ୱାରା ପାଳିତ ହୋଇ ନ ପାରେ । ରାଜନୈତିକ ଉଦ୍ଦେଶ୍ୟ ସାଧନ ସକାଶେ ଏହାକୁ ବର୍ତ୍ତମାନ ଆକାରରେ ଗ୍ରହଣ କରାଯାଇ ପାରେ । ପରାଧୀନ ଜାତିର ମୁକ୍ତିପଥରେ ଏହା ଏକ ଉତ୍କୃଷ୍ଟ ଅବଲମ୍ବନ । ଦେଶର ଭବିଷ୍ୟତ ଗଣତନ୍ତ୍ର ଶାସନ ପାଇଁ ଏଥିରୁ ଯଥେଷ୍ଟ ଉପାଦାନ ମିଳିପାରେ ।

ପକ୍ଷାନ୍ତରରେ ଗଣତନ୍ତ୍ର ନାମରେ ଯେଉଁ ୟୁରୋପୀୟମାନେ ଅଭିଯାନ ଚଳାଇଛନ୍ତି, ସେମାନଙ୍କର ସ୍ୱରୂପ ଅଳ୍ପ ଦିନେ ପ୍ରକାଶିତ ହେବ । ସ୍ୱାର୍ଥ-ସଂଶ୍ଳିଷ୍ଟ ପ୍ରତ୍ୟେକ ନୀତି ସବୁବେଳେ ଗୋଟାଏ ଜଟିଳ ଆବରଣରେ ଆବୃତ ରହିଥାଏ । ସାଧାରଣ ଜନମତକୁ ଏହା ସରଳ ଭାବରେ ସ୍ପଷ୍ଟ ହେବାକୁ ଦିଏ ନାହିଁ । ଏହି ଦୃଷ୍ଟିରେ ଦେଖିବାକୁ ଗଲେ ପ୍ରଚଳିତ ଗଣତନ୍ତ୍ର ୟୁରୋପରେ କେତେଦୂର ଉପଯୋଗୀ ହୋଇଅଛି ଓ ଭାରତବର୍ଷ ଏହାକୁ ଅନୁସରଣ କରି କେତେଦୂର ମୌଳିକତା ରକ୍ଷା କରି ପାରିବ; ଦୂର-ଦୃଷ୍ଟିସମ୍ପନ୍ନ ରାଜନୀତିଜ୍ଞମାନେ କହି ପାରିବେ । ଗଣତନ୍ତ୍ରର ପୁଷ୍ଟି ସାଧନରେ ସ୍ୱାର୍ଥସଂଶ୍ଳିଷ୍ଟ ସଂଘର୍ଷର ଅତି ଅଳ୍ପ ସମ୍ଭାବନା ଥାଏ । ପ୍ରତ୍ୟେକ ରାଜନୀତିଜ୍ଞ ଯେ କୌଣସି ନୀତିର ଅନୁବର୍ତ୍ତୀ ହୋଇ ସମୂହ ଦୃଷ୍ଟିରେ ଦେଶର କଲ୍ୟାଣ ସାଧନ କରି ପାରନ୍ତି, କିନ୍ତୁ ଦେଶ କିମ୍ବା ନୀତିରକ୍ଷା ସ୍ଥଳରେ ଅନ୍ୟ ଦେଶର ସ୍ୱାଧୀନତା ନଷ୍ଟ କରିବା ନୀତି ବିରୁଦ୍ଧ । ମିଷ୍ଟର ଚେମ୍ବରଲେନ ନୀତିରକ୍ଷା ନାମରେ ଇଂରେଜ ଜାତିକୁ ଯୁଦ୍ଧରେ ଯୋଗ ଦେବାକୁ ପ୍ରବର୍ତ୍ତାଇ ଅଛନ୍ତି । ସେ ଗଣତନ୍ତ୍ରର ଜଣେ ବିଖ୍ୟାତ ସମର୍ଥକ ବୋଲି ନିଜକୁ ପରିଚୟ ଦିଅନ୍ତି । ହିଟ୍‌ଲର ଅପର ଜାତିର ସ୍ୱାଧୀନତା ଅପହରଣ କରି ଆସିଲେ, ସତ୍ୟର ଦ୍ୱାହି ଦେଇ ଦୁର୍ବଳକୁ ନିପୀଡ଼ିତ କଲେ, କିନ୍ତୁ ମିଷ୍ଟର ଚେମ୍ବରଲେନ କିମ୍ବା ତାଙ୍କପରି ନୀତିବାଦୀମାନେ ସବୁ ନୀରବରେ ସହିଗଲେ । କେବଳ ପୋଲଣ୍ଡ ଆକ୍ରମଣ ହେଲାବେଳକୁ ଯୁଦ୍ଧ ଘୋଷଣା କରାଗଲା । ହିଟ୍‌ଲରଙ୍କ ନିମର ପଶୁତ୍ୱକୁ ବହୁପୂର୍ବରୁ ନଷ୍ଟ କରାଯାଇ ପାରିଥାନ୍ତା, ବିନା ଯୁଦ୍ଧରେ ମଧ୍ୟ ହିଟ୍‌ଲରଙ୍କ ଦୁର୍ଦ୍ଦମନୀୟ ପିପାସା ପ୍ରଶମିତ ହୋଇଥାନ୍ତା । ମୂଳରେ

ବୋଧହୁଏ ଗୋଟାଏ ଅବିଶ୍ୱାସରେ କାଳିମା ରହିଗଲା, ଯାହା ଯୋଗୁଁ ପୃଥିବୀକୁ ପୁଣି ଅଗ୍ନିପରୀକ୍ଷା ଦେବାକୁ ଆହ୍ୱାନ ଆସିଲା । କେତେଜଣ ରାଜନୀତିଜ୍ଞଙ୍କର ଦୂର-ଦୃଷ୍ଟି ଅଭାବରେ ସମଗ୍ର ମାନବ ଜାତି ଧ୍ୱଂସପଥରେ ଚାଲିଲା ହେଲାଣି । ବର୍ତ୍ତମାନ ସେମାନଙ୍କର ଦୋଷ ସ୍ପଷ୍ଟରୂପେ କହି ହେବ ନାହିଁ, କାରଣ ଗୋଟିଏ କୁହେଳିକାରେ ସମସ୍ତ ରାଜନୈତିକ ଆକାଶ ଆଚ୍ଛନ୍ନ ହୋଇପଡ଼ିଲାଣି । ବହୁଦିନବ୍ୟାପୀ 'ଆଙ୍ଗ୍ଲୋସୋଭିଏଟ୍‌ଫ୍ରେଞ୍ଚ୍' ଚୁକ୍ତି କେବଳ ଆଲୋଚନାରେ ଶେଷ ହୋଇଗଲା । ଏହି ଚୁକ୍ତିଟା ଯଦି କାର୍ଯ୍ୟରେ ପରିଣତ ହୋଇପାରିଥାନ୍ତା, ତାହାହେଲେ ଏହା ସମର ଘଟିବାର କୌଣସି ସମ୍ଭାବନା ନ ଥିଲା । ସୋଭିଏଟ୍‌ର ପ୍ରଧାନମନ୍ତ୍ରୀ ଏମ୍ ମୋଲଟଭଙ୍କର ଉକ୍ତି ଯଦି ସତ୍ୟ ହୋଇଥାଏ, ତାହାହେଲେ ମିଷ୍ଟର ଚେମ୍ବରଲେନଙ୍କ ଉଦ୍ଦେଶ୍ୟ ଭିନ୍ନ ପ୍ରକାର ଥିଲା ବୋଲି ଅନୁମିତ ହେବ ଓ ତାଙ୍କପାଇଁ ପୋଲାଣ୍ଡର ସ୍ଥିରମୀତ ବୁଝାଯାଇ ପାରିଲା ନାହିଁ । ସୋଭିଏଟ ପ୍ରଧାନ ମନ୍ତ୍ରୀଙ୍କ ଉକ୍ତି ନିମ୍ନରେ ଦିଆଗଲା ।

"True the initial proposals of the British Government were, as you know, entirely unacceptable. They ignored prime requisities for such negotiations—they ignored the principle of reciprocity and equality."

× × × ×

ପୁନଶ୍ଚ ସେ କହୁଛନ୍ତି—

"Attempts to overcome the objections of Poland met with no success. More the negotiations should that Great Britain was not anxious to overcome these objections of Poland, but on the country encouraged them.

ବାହାରେ ନିଜ ଜାତିର ଉଦ୍ଦେଶ୍ୟ ବୁଝାଇ ଦେବାପାଇଁ "ସୋଭିଏଟ୍‌ର" ପ୍ରଧାନମନ୍ତ୍ରୀ ଯାହା କହିଯାଇ ଅଛନ୍ତି, ତାକୁ ନିର୍ଘଟ ସତ୍ୟ ବୋଲି ଧରିଯାଇ ନ ପାରେ; କାରଣ ଗୋଟାଏ ଅଭିସନ୍ଧି ରଖି ସୋଭିଏଟ ଯୁଦ୍ଧର ଆୟୋଜନ ପାଇଁ ପ୍ରବଳ ଉଦ୍ୟମ ଆରମ୍ଭ କରିଦେଲାଣି । ମୋଟ ଉପରେ ଦେଖିବାକୁ ଗଲେ ଜଣାଯିବ ଯେ ୟୁରୋପର ରାଜନୀତି କ୍ଷେତ୍ରରେ ବର୍ତ୍ତମାନ ଭୟଙ୍କର ଅବିଶ୍ୱାସ ବ୍ୟାପିଯାଇଛି । ସେଥିପାଇଁ କୌଣସି ଜାତି ନିଜକୁ ନିରାପଦ ମନେ କରୁନାହିଁ । ଗୋଟିଏ ଜାତିର ଉଦ୍ଦେଶ୍ୟ ଅନ୍ୟ ଜାତି ପକ୍ଷରେ ବୁଝିବା ଦୁଷ୍କର ହୋଇଉଠୁଛି ।

ବର୍ତ୍ତମାନ ପ୍ରତ୍ୟେକ ଜାତିର ଆତ୍ମପରୀକ୍ଷା ଦେବାର ସମୟ ଆସିଛି । ହୁଏତ ଏହି ଯୁଦ୍ଧର ଅବସାନ ପରେ ପୃଥିବୀର ସଭ୍ୟତାରେ ଏକ ମହାପରିବର୍ତ୍ତନ ଆସିବ ଏବଂ ଯେଉଁ ଜାତିର ନୀତି, କର୍ମ କୁଶଳତା ସତ୍ୟାଶ୍ରୟୀ ଥିବ ସେହି ଜାତିର ଅଭ୍ୟୁତ୍ଥାନ ଘଟିବ । କର୍ମର ଅସାମଞ୍ଜସ୍ୟ, ପ୍ରକୃତିର ଅସମାନତାରେ ନିଜ ସ୍ୱାତନ୍ତ୍ର୍ୟ ରକ୍ଷା କରି ଜାତିଗତ ସ୍ୱାର୍ଥସଂଶ୍ଳିଷ୍ଟ ଭେଦଭାବକୁ ମନୁଷ୍ୟ ମନରୁ କିଛି ସମୟ ପାଇଁ ଦୂର କରିବ । ପ୍ରାଚ୍ୟ ଓ ପାଶ୍ଚାତ୍ୟର କର୍ମ ଭୂମିରେ ଦୁଇ ଭିନ୍ନ ଆଦର୍ଶ ସତ୍ୟ ଓ ସୌନ୍ଦର୍ଯ୍ୟକୁ ଅକ୍ଷୁର୍ଣ୍ଣ ରଖି ପାରିପାର୍ଶ୍ୱିକ ଅବସ୍ଥା ପ୍ରଭାବରେ ମାନବଜାତିକୁ ନୂତନ କର୍ମ-ପ୍ରେରଣା ଦେବ । ଯୁଗଧାରାର ଗତି ଅନ୍ୟ ଆକାର ଧାରଣ କରିବ । ଅସାମଞ୍ଜସ୍ୟ ସୃଷ୍ଟିର ବୈଚିତ୍ର୍ୟ ବିଧାନ କରି ମାନବର ସଙ୍କୁଚିତ ଦୃଷ୍ଟିକୁ ନୂତନ ଆଲୋକ ଦେବ ଓ ସେଥିରେ ସେ ଦେଖିବ—ସବଳ ଓ ଦୁର୍ବଳର ପାର୍ଥକ୍ୟ ଗୋଟାଏ ଅଳୀକ ଅସମାନତା । ଏଥିରେ ଉନ୍ନତ ମାନବିକତାର କୌଣସି ଉପାଦାନ ନାହିଁ । କର୍ମର ଅସାମଞ୍ଜସ୍ୟ ଓ ନୀତିଗତ ପାର୍ଥକ୍ୟ ଚିରଦିନ ରହିବ । ମନୁଷ୍ୟ ଆତ୍ମଶକ୍ତି ବଳରେ ନିଜ ମୁକ୍ତିର ପଥ ଅନ୍ୱେଷଣ କରିବ ।

# ବିପ୍ଳବ

କର୍ମ ଓ ନୀତିର ଜଟିଳତା ଭେଦ କରି ଶକ୍ତିର ଉତ୍କର୍ଷ ଜ୍ଞାପନ କରିବାପାଇଁ ବିପ୍ଳବର ସୃଷ୍ଟି । ଯୁଗର ପରିବର୍ତ୍ତନ ଧାରାରେ ସାଧାରଣତଃ ବିପ୍ଳବ ଆସିଥାଏ । ବିପ୍ଳବ ଆସେ, ଧାରାବାହିକ କର୍ମପନ୍ଥାକୁ ନୂତନ ଗ୍ରନ୍ଥନରେ ଗଢ଼ିଦିଏ ଓ ଜଗତ ଦେଖେ ଗୋଟିଏ ସ୍ୱତନ୍ତ୍ର ସୃଷ୍ଟି । ବିପ୍ଳବ ସୃଷ୍ଟିର ବିକାଶଧାରାରେ ଯେଉଁ ଭୂମିକାଟି ସୃଷ୍ଟି କରି ଚାଲିଯାଏ, ସେଥିରେ ମନୁଷ୍ୟର ସ୍ୱାଧୀନ କର୍ମପନ୍ଥା ଅବଲମ୍ବନ ପାଇଁ ଯଥେଷ୍ଟ ଉପକରଣ ଥାଏ । ବହୁକାଳବ୍ୟାପୀ ଶାସନତନ୍ତ୍ରର ପ୍ରତିଷ୍ଠା ଯେତେବେଳେ ବିପ୍ଳବସ୍ରୋତରେ ନଷ୍ଟ ହୋଇଯାଏ ଓ ମନୁଷ୍ୟର କର୍ମକ୍ଷେତ୍ରରେ କୌଣସି ନିର୍ଦ୍ଦିଷ୍ଟ ଅବଲମ୍ବନ ରହେ ନାହିଁ; ସେତେବେଳେ ସେ ନିଜକୁ ନିତାନ୍ତ ଅସହାୟ ମନେ କରିପାରେ; କିନ୍ତୁ ଏହି ସମୟରେ ତାକୁ ଶକ୍ତିର ବାସ୍ତବ ବିକାଶ ଦେଖିବା ଓ ସାଧନା ପାଇଁ ସୁବିଧା ମିଳିଥାଏ । ସାଧାରଣ ଲୋକ ବିପ୍ଳବକୁ ଭୟ କରେ; ତାର ଜାତୀୟ କର୍ମ-ନିୟନ୍ତ୍ରଣରେ ଯନ୍ତ୍ର ପରି ଗୋଟିଏ ଗତି ବଂଶପରମ୍ପରା ଅନୁସରଣ କରି ଯେଉଁ ତୃପ୍ତି ସେ ଅନୁଭବ କରୁଥାଏ, ତାହା ସହସା ଭାଙ୍ଗିଯାଏ ଓ କର୍ମର ଜଟିଳ ଆବର୍ତ୍ତ ମଧ୍ୟରେ ତାକୁ କୌଣସି ନିର୍ଦ୍ଦିଷ୍ଟ ପନ୍ଥା ମିଳେ ନାହିଁ । ଅଧିକାଂଶ ସମୟରେ ବିପ୍ଳବର ଧାରାରେ ଯେଉଁ ଧ୍ୱଂସ ଆସେ, ସେଥିର ସମ୍ମୁଖୀନ ହେବାପାଇଁ ମନୁଷ୍ୟ ବଡ଼ ଆତଙ୍କିତ ହୁଏ । ଜୀବଧର୍ମର ସହଜ ସୁଖାନ୍ୱେଷଣ ପ୍ରବୃତ୍ତି ମନୁଷ୍ୟକୁ ବିପ୍ଳବମାର୍ଗ ଦେଇ ଜଗତରେ ସତ୍ୟ ଓ ନୀତିର ପରାକାଷ୍ଠା ଦେଖାଇବା ପାଇଁ ପରାଙ୍ମୁଖ ହୁଏ । ସାଂସାରିକ ସୁଖ-ଲାଲସା ଅନ୍ୱେଷଣରେ ମନୁଷ୍ୟ ନିଜର ଶକ୍ତିଚାଳନାକୁ ଦୃଢ଼ଭାବରେ ଅବଲମ୍ବନ କରି ଯେତେବେଳେ ସଂସାରର ଯାବତୀୟ ଘାତ ପ୍ରତିଘାତ ମଧ୍ୟରେ ତାର ଆକାଙ୍କ୍ଷିତ ଲକ୍ଷ୍ୟ ଆଡ଼କୁ ଅଗ୍ରସର ହେଉଥାଏ, ସେତେବେଳେ ତାକୁ ସାଧାରଣତଃ ସହଜ ଗତି ମିଳେ ନାହିଁ । ନିଜର ଅଭୀଷ୍ଟ ସାଧନ କରିବାକୁ ଯାଇ ତାକୁ ଅନେକ ସମୟରେ ସଂଘର୍ଷର ସମ୍ମୁଖୀନ ହେବାକୁ ପଡ଼େ । ସଂଘର୍ଷରେ ଶକ୍ତିର ପରୀକ୍ଷା ହୁଏ । ବ୍ୟକ୍ତି କିମ୍ବା ଜାତିବିଶେଷର ସାଧନାକୁ ଲକ୍ଷ୍ୟ କଲେ ଏହାର ତାତ୍ପର୍ଯ୍ୟ ଅନୁଭୂତ ହୋଇପାରେ । ଯୁଗ ପରେ ଯୁଗ ଆସି ଚାଲିଯାଏ, ଜଗତ କେବଳ ଏକ ମହା ପରିବର୍ତ୍ତନର ଲୀଳା-ଭୂମି ରୂପେ ପଡ଼ିରହେ । ବ୍ୟକ୍ତି କିମ୍ବା ସମୂହ ଜାତିଗତ ଶକ୍ତିଚାଳନା ଚିରକାଳ ପାଇଁ କୌଣସି ନୀତିକୁ ରକ୍ଷା କରିପାରେ ନାହିଁ ।

ନୀତି-ପ୍ରତିଷ୍ଠା ବେଶୀ କାଳ ସ୍ଥାୟୀ ନୁହେଁ, କାରଣ ମନୁଷ୍ୟର ସଙ୍କୀର୍ଣ୍ଣ ଓ ସ୍ୱାର୍ଥ-ସଂଶ୍ଳିଷ୍ଟ ଦୃଷ୍ଟି ଏହାର ଅନ୍ତରାୟ ହୁଏ । ଏଥିପାଇଁ ମଧ୍ୟ ଜଗତରେ ପ୍ରତ୍ୟେକ ଜାତିର ଓ ଦେଶର କର୍ମ-ପ୍ରେରଣାରେ ଭିନ୍ନତା ଦେଖାଯାଏ । ଅନେକ ସମୟରେ ସତ୍ୟ ଓ ନୀତିକୁ ବାଦ ଦେଇ କେବଳ ଜାତୀୟ ସ୍ୱାର୍ଥ ଓ ପ୍ରଭୁତ୍ୱ ବିସ୍ତାର ଦିଗରୁ ଯେଉଁ କର୍ମ-ପ୍ରଚେଷ୍ଟା କରାଯାଏ, ତାହା ଅବିଳମ୍ବେ ଜଗତରେ ବିପ୍ଳବର ସୂତ୍ରପାତ କରେ । ନୀତିଗତ ଭିନ୍ନତାରେ ମନୁଷ୍ୟର ସ୍ୱାର୍ଥ ସଂଶ୍ଳିଷ୍ଟ ରହୁ ନ ଥିଲେ ଜାତି ଜାତି ମଧ୍ୟରେ ବିରୋଧ ଜନ୍ମିବାର ବିଶେଷ ସମ୍ଭାବନା ରହନ୍ତା ନାହିଁ । ମନୁଷ୍ୟର ଅପୂର୍ଣ୍ଣ କ୍ଷୁବ୍ଧ ବାସନା ଯେ ଏଥି ସକାଶେ ଦାୟୀ, ତାହା କେହି ସହଜରେ ବୁଝନ୍ତି ନାହିଁ ।

ସ୍ୱାର୍ଥରକ୍ଷା ବେଶୀ ଦିନ ନୀତିକୁ ଅନୁସରଣ କରାଇଦିଏ ନାହିଁ । ତେଣୁ ମନୁଷ୍ୟ ଅଧିକାଂଶ ସମୟରେ ହିଂସା-ପ୍ରଣୋଦିତ ହୋଇ ନିଜର ଲକ୍ଷ୍ୟ ଆଡ଼କୁ ଗତି କଲାବେଳେ ପଶୁବଳକୁ ବଡ଼ କରି ଦେଖେ ଓ ତାହାରି ସାହାଯ୍ୟରେ ଜଗତରେ ପ୍ରତିଷ୍ଠାବାନ୍ ହେବାକୁ ଚେଷ୍ଟା କରେ, କିନ୍ତୁ ବିପ୍ଳବ ଆସି ଶକ୍ତିର ପ୍ରକୃତ ପରିଚୟ ଦିଏ । ଆଜିକି ପ୍ରାୟ ୧୫୦ ବର୍ଷ ତଳେ ବିଶ୍ୱ-ବିପ୍ଳବୀ ନେପୋଲିୟନ ଜଡ଼ଶକ୍ତି ପ୍ରଭାବରେ ଜଗତରେ ପ୍ରତିଷ୍ଠା ଲୋଡ଼ିବାକୁ ଯାଇ ଯେଉଁ ପ୍ରଗତିର ଅଧୀନ ହୋଇଅଛନ୍ତି

ସେଥିରେ ନୀତି ବିରୁଦ୍ଧ, ହିଂସା-ଯୁକ୍ତ ଓ ସ୍ୱାର୍ଥସଂଶ୍ଳିଷ୍ଟ ପଶୁବଳର ହୀନତା ପ୍ରତିପାଦିତ ହୋଇଅଛି । ନେପୋଲିୟନ୍ ତାଙ୍କ ଜୀବନରେ ଜଡ଼ଶକ୍ତିର ପ୍ରକର୍ଷ ଦେଖିବାକୁ ଯାଇ ଶେଷରେ ଆତ୍ମ-ବଳର ପ୍ରାଧାନ୍ୟ ସ୍ୱୀକାର କରିଅଛନ୍ତି । ଊନବିଂଶ ଶତାବ୍ଦୀର ଅଦ୍ୱିତୀୟ ବୀର ନିଜର ତରବାରି ସାହାଯ୍ୟରେ ଜଗତକୁ ଚମତ୍କୃତ କରିଦେଇଥିଲେ ସୁଦ୍ଧା, ଶେଷରେ ଏକ ଭୂମା ଶକ୍ତିର ଶାଶ୍ୱତ ଅନୁଭୂତି ତାଙ୍କ ହୃଦୟ-ତନ୍ତ୍ରୀରେ ଧ୍ୱନିତ ହୋଇଉଠିଛି ଓ ସେ ବୁଝିପାରିଛନ୍ତି ଜଗତର ପୁଷ୍ଟି ଓ ରକ୍ଷା କେବଳ ଆତ୍ମ-ଶକ୍ତି ପ୍ରଭାବରେ ତାଙ୍କର ସାଧିତ ହେବ । ନିମ୍ନୋଦ୍ଧୃତ କତିପୟ ପଙ୍କ୍ତିରୁ ତାଙ୍କର ଧାରଣା ଜଣାପଡ଼ିବ । ନେପୋଲିୟନ୍ କହିଛନ୍ତି—What amazes me not more than anything else is the impotence of force to organise anything. There are only two powers in the world, the spirit and the sword In the long-run the world will always be conquered by the spirit. କର୍ମ ଓ ନୀତିର ଜଟିଳତା ମଧ୍ୟରେ ମନୁଷ୍ୟର ଲକ୍ଷ୍ୟ ସତ୍ୟାଶ୍ରୟୀ ନ ହେବା ପର୍ଯ୍ୟନ୍ତ ବିପ୍ଳବ ଯୁଗ-ଧାରାରେ ସର୍ବଦା ଆସୁଥିବ । ତାର କର୍ମ-ପ୍ରେରଣାକୁ ସୁନିୟନ୍ତ୍ରିତ କରିବା ପାଇଁ ମଧ୍ୟ ଏହା ଏକାନ୍ତ ଆବଶ୍ୟକ ।

ଯୁଗର ପରିବର୍ତ୍ତନ ବେଳେ ଶକ୍ତିର ସଂଘର୍ଷ ଘଟିବା ଅବଶ୍ୟମ୍ଭାବୀ । ଗୋଟିଏ ପ୍ରଚଳିତ ରୀତିକୁ ଅନୁସରଣ କରି ସାମାଜିକ କିମ୍ବା ଜାତିଗତ କର୍ମ-ପନ୍ଥା ନିୟନ୍ତ୍ରିତ ହେଉଥିଲା ବେଳେ କୁସଂସ୍କାର ଓ ସ୍ୱାର୍ଥପରତା ଆସି ଜାତୀୟ ଜୀବନର ସ୍ୱାଧୀନ ଗତିକୁ ବିଚଳିତ କରିଦିଏ । ପ୍ରତିଯୁଗ ଓ ପ୍ରତି ଦେଶର ଇତିହାସ ଆଲୋଚନା କଲେ ମନୁଷ୍ୟର କର୍ମ-ପ୍ରେରଣାରେ ଯେ ଭିନ୍ନତା ଦେଖାଯାଏ, ସେଥିରେ ତାର ଦୃଷ୍ଟି-ରେଖା କାଳ ଓ ଘଟଣା ସମ୍ପର୍କରେ ସାଧାରଣ କର୍ମ-ପନ୍ଥାକୁ କିପରି ନୂତନତ୍ୱର ସ୍ପର୍ଶ ଦେଇ ଉଦ୍ଭାବନ କରେ, ତାହା ସହଜରେ ଜଣାଯିବ । ପ୍ରାଚୀନ ଓ ଆଧୁନିକ କର୍ମ-ପ୍ରଣାଳୀରେ ଯେ ଭିନ୍ନତା ଦେଖାଯାଏ, ତାହା ଅଧିକାଂଶ ସମୟରେ ଯୁଗୋପଯୋଗୀ । କର୍ମର ଗୋଟିଏ ରୀତି ସବୁବେଳେ ମନୁଷ୍ୟକୁ ଆକର୍ଷଣ କରି ଏକ ନିର୍ଦ୍ଦିଷ୍ଟ ଧାରାରେ ତାର ଜୀବନକୁ ଅତିବାହିତ କରାଉଥିଲେ ଆଜି ଜଗତରେ ଜାତି କିମ୍ବା କାଳଗତ ପାର୍ଥକ୍ୟ ଦେଖିବାକୁ ମିଳନ୍ତା ନାହିଁ । ମନୁଷ୍ୟର ଚିନ୍ତାଧାରା ସର୍ବଦା ବହୁମୁଖୀ ହେବାରୁ କର୍ମ ଓ ନୀତିର ଜଟିଳତା ସ୍ୱତଃ ଆତ୍ମ-ପ୍ରକାଶ କରୁଛି । ଏହାକୁ ମନୁଷ୍ୟ-ଜାତିର ଅସ୍ତିତ୍ୱ ଥିବା ପର୍ଯ୍ୟନ୍ତ ଦୂର କରିହେବ ନାହିଁ । ଡେଣୁ ଗୋଟିଏ ରୀତି କିମ୍ବା ନୀତି ସହସ୍ର ବର୍ଷର ପରମାୟୁ ଘେନି ସମାଜରେ ମୃତ୍ତ ଟେକି ରହି ସମୟର ପରିବର୍ତ୍ତନ ମଧ୍ୟରେ ତାହାର ମୌଳିକତା ଦ୍ୱାରା ଜାତୀୟ ଜୀବନକୁ ଉଦ୍‌ବୁଦ୍ଧ କରିବା କୌଣସି ଦେଶ କିମ୍ବା ଜାତିର ଇତିହାସରେ କ୍ୱଚିତ୍ ଦେଖିବାକୁ ମିଳେ । ସନାତନ ନୀତିର ଆଶ୍ରୟରେ ଜାତୀୟ କର୍ମ-ପ୍ରଚେଷ୍ଟାର ଆରମ୍ଭ ହୋଇଥିଲେ ସୁଦ୍ଧା ମନୁଷ୍ୟର ସଙ୍କୀର୍ଣ୍ଣ ଓ ସ୍ୱାର୍ଥସଂଶ୍ଳିଷ୍ଟ ଦୃଷ୍ଟି ମୂଳନୀତିକୁ ବାଦ୍ ଦେଇ ନୂତନ କର୍ମ-ଧାରା ଉଦ୍‌ଭାବନ କରେ । ଅନେକ ସମୟରେ ଏଥିପାଇଁ କର୍ମ ଓ ନୀତିର କୌଣସି ସମ୍ପର୍କ ରହେ ନାହିଁ । କେବଳ ସାମାଜିକ କିମ୍ବା ଜାତିଗତ ସ୍ୱାର୍ଥରକ୍ଷା ଦିଗରୁ ଜାତୀୟ ଜୀବନର ଗତି ନିୟନ୍ତ୍ରିତ କରାଗଲେ ଅଳ୍ପଦିନ ମଧ୍ୟରେ ଗୋଟାଏ ପ୍ରତିକ୍ରିୟା ଦ୍ୱାରା ବିପ୍ଳବର ମାର୍ଗ ସରଳ ହୋଇଉଠେ । ପୃଥିବୀର ପ୍ରାଚୀନତମ ଧର୍ମ ଓ ନୀତିମାନଙ୍କରେ ଯେତେ ବିପ୍ଳବ ଓ ସଂସ୍କାର ଦେଖା-ଦେଲଣି, ସେମାନଙ୍କୁ ପରୀକ୍ଷା କଲେ ମନୁଷ୍ୟର ଶକ୍ତିଶାଳୀ ଓ ବହୁମୁଖୀ ଚିନ୍ତାଧାରାକୁ ଅନୁସରଣ କରିବାକୁ ପଡ଼ିବ । ମନୁଷ୍ୟର ଭାବନା ସବୁବେଳେ ଠିକ୍ ନ ଥାଏ । ଅନେକ ସମୟରେ ପାରିପାର୍ଶ୍ୱିକ ଅବସ୍ଥା ଓ ଅନୁକୂଳ ଘଟଣାକ୍ରମରେ ମନୁଷ୍ୟ ସତ୍ୟକୁ ଉପେକ୍ଷା କରି ସୁଦ୍ଧା ଯେ ନୀତି ପ୍ରଚାର କରେ, ସେଥିରେ ସାମାଜିକ ଓ ଜାତିଗତ ଜୀବନର ଗତି କିଛି ସମୟ ପାଇଁ ବଳିଷ୍ଠ ହୋଇଥାଏ । ଜଣକର ନିର୍ଦ୍ଦେଶାନୁସାରେ ଜାତୀୟ କର୍ମ-ମାର୍ଗ ସବୁ ବାଧା ଅତିକ୍ରମ କରି ଜାତୀୟ ଜୀବନରେ ଗୋଟିଏ ନୂତନ ଅଧ୍ୟାୟ ଆରମ୍ଭ କରେ; କିନ୍ତୁ ଏହାର ସ୍ଥାୟିତ୍ୱ ସମ୍ବନ୍ଧରେ କୌଣସି ଭରସା ରହେ ନାହିଁ । ସତ୍ୟ ଓ ପ୍ରକୃତ ନୀତିକୁ ଲକ୍ଷ୍ୟ ନ ରଖି କର୍ମ-ଧାରାରେ ଜାତୀୟ ଶକ୍ତିକୁ ଚାଳିତ କରିଦେଲେ, ତାହା ବେଶୀ ଦିନ ଆତ୍ମରକ୍ଷା କରିପାରେ ନାହିଁ । ଅନୀତି ଓ ଅସତ୍ୟରେ ପ୍ରତିଷ୍ଠିତ ଶକ୍ତି ପୁଣି ବିପ୍ଳବମୁଖୀ ହୁଏ । ଘଟଣାକ୍ରମ ବଦଳି ଯାଏ । ଅନ୍ୟ ଏକ ନୂତନ ଯୁଗର ଅବତାରଣାକୁ ମନୁଷ୍ୟ ଅପେକ୍ଷା କରି ରହେ । ସବୁବେଳେ ଯେପରି ଗୋଟିଏ ସତ୍ୟ କିମ୍ବା ନୀତିକୁ ଆଶ୍ରୟ କରି ମନୁଷ୍ୟ ରହିପାରେ ନାହିଁ, ସେହିପରି ଅସତ୍ୟ କିମ୍ବା ଅନୀତିକୁ ମାନି ବେଶୀ ଦିନ ଚଳିପାରେ ନାହିଁ । ମନୁଷ୍ୟର ଆତ୍ମ-ବିକାଶ ବିପ୍ଳବର ମାର୍ଗ ଦେଇ ଚିରଦିନ ପରିବର୍ତ୍ତନ ଅନ୍ୱେଷଣ କରିଆସିଛି ଓ ଏହି ପରିବର୍ତ୍ତନକ୍ରମରେ କେତେ ଯୁଗଆସି

ଅତୀତରେ ମିଶିଗଲଣି । ମାନବିକତାର ଚରମ ଉତ୍କର୍ଷ ନ ଆସିବା ପର୍ଯ୍ୟନ୍ତ ଯୁଗ-ଧର୍ମ ଅସମାନ ଗତିରେ ଚାଲିଥିବ; ସୁତରାଂ ବିପ୍ଳବ-ମୂଳରେ ସତ୍ୟ ଓ ନୀତିର ପରୀକ୍ଷା ପାଇଁ ଯେଉଁ ଚିରନ୍ତନ ମାର୍ଗ ଉନ୍ମୁକ୍ତ ରହିଛି, ତାକୁ ବନ୍ଦ କରିହେବ ନାହିଁ ।

ଧର୍ମ ଓ ନୀତିର ସଂସ୍ଥାପନ ପାଇଁ ମନୁଷ୍ୟ ବିପ୍ଳବବାଦୀ ହୁଏ । ଯୁଗଧର୍ମକୁ ଅତିରିକ୍ତ ପରିମାଣରେ ମନୁଷ୍ୟର ସ୍ୱାର୍ଥଜଡ଼ିତ ଓ କୁଟିଳତାପୂର୍ଣ୍ଣ କ୍ରିୟା ଅଧିକାର କଲେ ସ୍ୱତଃ ଗୋଟାଏ ବୈପ୍ଳବିକ ଶକ୍ତି ଏଦ୍ୱାରା ପ୍ରତିକୂଳାଚରଣ କରିବା ପାଇଁ ଅଗ୍ରସର ହୁଏ । ସମାଜ କିମ୍ବା ଜାତିରେ ଯେଉଁମାନେ ଅତି ନଗଣ୍ୟ ସ୍ତରରେ ଥାନ୍ତି ଓ ଯେଉଁମାନଙ୍କୁ ସମାଜ କିମ୍ବା ଜାତିର ନାୟକମାନେ ଇଙ୍ଗିତଦ୍ୱାରା ଚାଳିତ କରିଆସୁଥାନ୍ତି, ସେମାନେ ବିପ୍ଳବର ସ୍ରୋତରେ ସ୍ୱାତନ୍ତ୍ର୍ୟ ଲାଭ କରିବା ପାଇଁ ଅନେକ ସମୟରେ ସୁବିଧା ପାଇଥାନ୍ତି । ଫରାସୀ ରାଷ୍ଟ୍ରବିପ୍ଳବ, ଆମେରିକାର ସ୍ୱାଧୀନତା-ସଂଗ୍ରାମ, ରୁଷିଆରେ ସାମ୍ୟବାଦର ପ୍ରତିଷ୍ଠା ପ୍ରଭୃତି ଘଟଣାଦ୍ୱାରା ସମୃଦ୍ଧ ଜନଜାଗରଣରେ ବ୍ୟକ୍ତିଗତ ରାଜନୈତିକ ପ୍ରଭାବର ରକ୍ଷା ଓ ନୂତନ ଶାସନନୀତିର ସଂସ୍ଥାପନ ଯେପରି ସମ୍ଭବ ହୋଇଅଛି, ଭାରତବର୍ଷର ସ୍ୱତନ୍ତ୍ର ପରିସ୍ଥିତି ଦୃଷ୍ଟିରୁ ଏପରି ଘଟିବା ସମ୍ଭବ ନୁହେଁ । ବର୍ଣ୍ଣାଶ୍ରମ ଆଶ୍ରୟରେ ଶ୍ରେଣୀଗତ ବିଦ୍ୱେଷଭାବ ଯେଉଁଦିନୁ ଭାରତୀୟର ହୃଦୟରେ ସଙ୍କୀର୍ଣ୍ଣତା ଜନ୍ମାଇଲଣି ସେହିଦିନୁ ହିନ୍ଦୁସ୍ଥାନର ଜାତୀୟ ବିକାଶ-ମାର୍ଗରେ ଘୋର ଅନ୍ତରାୟ ଉପସ୍ଥିତ ହୋଇଅଛି । ଆଜି ଇଂରେଜଶାସନ ଅଧୀନରେ ଭାରତବାସୀ ନିଜର ସ୍ୱାଧୀନତା ଲାଭ କରିପାରୁ ନାହିଁ ବୋଲି ଆମ ଦେଶରେ ନାୟକମାନେ ଆକ୍ଷେପ କରୁଛନ୍ତି; କିନ୍ତୁ ଦେଶର ବର୍ତ୍ତମାନ ସାମାଜିକ ଅବସ୍ଥା ଓ କୁସଂସ୍କାରପୂର୍ଣ୍ଣ ଧର୍ମମତମାନଙ୍କୁ ଲକ୍ଷ୍ୟ କଲେ ଯେଉଁ ଅନ୍ତର୍ନିହିତ ଜାତୀୟ ଦୁର୍ବଳତା ଦୃଷ୍ଟ ହୁଏ, ସେଥିରେ ଇଂରେଜ ଶାସକ-ମାନଙ୍କୁ ସମ୍ପୂର୍ଣ୍ଣରୂପେ ଦାୟୀ କରିହେବ ନାହିଁ । ସହସ୍ରାଧିକ ବର୍ଷ ଅତୀତ ହୋଇଗଲା; ତଥାପି ଭାରତବର୍ଷର ଏକତା ପକ୍ଷରେ ଅନ୍ତରାୟ ଘଟାଇବା ବିରୁଦ୍ଧ-ଶକ୍ତିର ଅବସାନ ହେଲା ନାହିଁ । ଦେଶର ଏପରି ଦୀର୍ଘକାଳବ୍ୟାପୀ ଅଧଃପତନ ସକାଶେ ବିଭିନ୍ନ ସାମାଜିକ ଅନୁଷ୍ଠାନମାନଙ୍କର ଅବଲମ୍ବିତ ମୌଳିକ ଧର୍ମ ଓ ନୀତିକୁ ଅନୁସରଣ କଲେ ପ୍ରକୃତ ଅବନତିର କାରଣ ଜଣାଯିବ । ସମାଜର ସୀମାବଦ୍ଧ ପରିସ୍ଥିତି ଧର୍ମ କିମ୍ବା ନୀତିର କୌଣସି ବିରୋଧ ଜନ୍ମାଏ ନାହିଁ; ବରଂ ମୌଳିକତା ଓ ଶକ୍ତି-ସଂରକ୍ଷଣ ଦିଗରେ ଏହା ସମାଜକୁ ବଳଶାଳୀ କରିପାରେ । କିନ୍ତୁ ଯେତେବେଳେ ବିଭିନ୍ନ ସମାଜ ମଧ୍ୟରେ କ୍ଷୁଦ୍ର ସ୍ୱାର୍ଥରକ୍ଷା ନେଇ ଧର୍ମ ଓ ନୀତିକୁ ବାଦ ଦେବାକୁ ମନୁଷ୍ୟ କୁଣ୍ଠିତ ହୁଏ ନାହିଁ, ସେତେବେଳେ ପରସ୍ପରର ବିନାଶ-ସାଧନ ପାଇଁ ଦ୍ୱନ୍ଦ୍ୱର ସୂତ୍ରପାତ ହୁଏ । ଭାରତବର୍ଷ ପରି ଗୋଟିଏ ପ୍ରକାଣ୍ଡ ସାମ୍ରାଜ୍ୟରେ ଏପରି ସାମାଜିକ ଦ୍ୱନ୍ଦ୍ୱ ବହୁଦିନ ଲାଗିରହି ତାକୁ ଅନ୍ତଃସାରଶୂନ୍ୟ କରିଦେଇଛି । ତା ନ ହୋଇଥିଲେ ଯେଉଁ ଦେଶରେ ପ୍ରବଳପରାକ୍ରମୀ ହିନ୍ଦୁ ଓ ମୁସଲମାନ ରାଜାମାନେ ସାମ୍ୟ-ନୀତି ଅବଲମ୍ବନ କରି ଆଦର୍ଶ ସୁଶାସନ ପ୍ରତିଷ୍ଠିତ କରିପାରିଥିଲେ ଓ ଯେଉଁ ଦେଶବାସୀମାନେ ଦିନେ ଜଗତରେ ଧର୍ମ ଓ କର୍ମରେ ଶୀର୍ଷସ୍ଥାନ ଅଧିକାର କରିଥିଲେ, ସେ ଦେଶରେ ଏପରି ଅଧଃପତିତ ଅବସ୍ଥା ଆସନ୍ତା ନାହିଁ ।

ଦେଶର ଅନ୍ତର୍ନିହିତ ଦ୍ୱନ୍ଦ୍ୱ ଦୂର କରିବା ପାଇଁ ଆଜି ମହାତ୍ମା ଗାନ୍ଧି ପ୍ରଚାର କରୁଥିବା କର୍ମ-ମନ୍ତ୍ର କେତେଦୂର ସଫଳ ହେବ, ତାହା ଅବସ୍ଥାକ୍ରମରେ ଜଣାପଡ଼ିବ । ଇଂରେଜ ସରକାରଙ୍କର ସାମ୍ରାଜ୍ୟବାଦ ନୀତିରୁ ଭାରତବର୍ଷକୁ ଅସଂପୃକ୍ତ ରଖି ଗଣତନ୍ତ୍ରର ପ୍ରତିଷ୍ଠା ପାଇଁ ଗାନ୍ଧିଜୀ ଯେଉଁ ଅସହଯୋଗ ଆନ୍ଦୋଳନ ଚଳାଇ ଆସୁଛନ୍ତି, ତାହାର ମୂଳଭିତ୍ତି ଦୃଢ଼ ଅହିଂସା ନୀତି ଉପରେ, କିନ୍ତୁ ଆନ୍ଦୋଳନକାରୀମାନଙ୍କ ମଧ୍ୟରେ ଏହି ନୀତିର ପ୍ରଭାବ କିପରି ଭାବରେ କାର୍ଯ୍ୟ କରିଛି, ତାହା ଏ ପର୍ଯ୍ୟନ୍ତ ଦେଶବାସୀଙ୍କୁ ଜଣାଯାଇ ନାହିଁ । ଇଂରେଜ ଶାସନ ନୀତି ଅସହଯୋଗ ଆନ୍ଦୋଳନ ସପକ୍ଷରେ କିମ୍ବା ବିପକ୍ଷରେ ଗଲେ ସୁଦ୍ଧା ଆନ୍ଦୋଳନର ଭଲମନ୍ଦ ଫଳ ଜଣାପଡ଼ିବ ନାହିଁ । ଏଥିରେ ଅନ୍ୟାନ୍ୟ ପ୍ରତିବନ୍ଧକ ଆସିବାର ସମ୍ଭାବନା ରହିଛି । ଦେଶର ଗଣ୍ୟମାନ୍ୟ ଲୋକମାନେ ଆନ୍ଦୋଳନରେ ଯୋଗ ଦେବେ ନାହିଁ; କାରଣ ବର୍ତ୍ତମାନ ଅବସ୍ଥା ଦୃଷ୍ଟିରେ ସେମାନେ ସ୍ୱାର୍ଥହାନି ଭୟରେ ଅସଂପୃକ୍ତ ରହିବେ । ପ୍ରକୃତ ଶକ୍ତି ପରୀକ୍ଷା ଦେଇ ଅହିଂସା ନୀତିର ଶ୍ରେଷ୍ଠତ୍ୱ ପ୍ରମାଣ କରିବା ପାଇଁ ଯେଉଁମାନେ ଯିବେ, ସେମାନଙ୍କ ମଧ୍ୟରୁ ଅଧିକାଂଶ କୂଟନୀତିପରାୟଣ ନେତାମାନଙ୍କର ଆଧିପତ୍ୟକୁ ସ୍ୱୀକାର କରିବେ । କୁଟିଳତା ଓ ସ୍ୱାର୍ଥପରତା ନୀତିଚାଳକମାନଙ୍କ ମଧ୍ୟରେ ଦଳଗତ ଭାବ ଆଣି ପୁଣି ଦ୍ୱନ୍ଦ୍ୱର ସୂତ୍ରପାତ କରିବ । ଶେଷରେ ରାଜନୀତି ହେବ ସାମାଜିକ ପ୍ରତିଷ୍ଠାର ଗୋଟିଏ ଅବଲମ୍ବନ, କିନ୍ତୁ ଏହିସବୁ ପ୍ରତିକ୍ରିୟାକୁ ଅତିକ୍ରମ କରି ଚିନ୍ତା ଓ କାର୍ଯ୍ୟରେ ଦୃଢ଼ ଅହିଂସା ନୀତି ପାଳନ କରିବା ପାଇଁ ଦେଶବାସୀର ଯଥାର୍ଥ ଶକ୍ତି ରହିବା ଆବଶ୍ୟକ । ଏ ସମ୍ପର୍କରେ ଆହୁରି ଗୋଟିଏ କଥାକୁ ବିଶେଷ

ଭାବରେ ଲକ୍ଷ୍ୟ ରଖିବା ଆବଶ୍ୟକ । ଯଦି ଯୁଗଧାରାରେ ସମସ୍ତ ପୃଥିବୀର ପରିବର୍ତ୍ତନ ଆସୁଥାଏ, ତାହାହେଲେ ଭାରତବର୍ଷର ପାରିପାର୍ଶ୍ୱିକ ଅବସ୍ଥା ଭିତରେ ଏହା କିପରି ଆକାର ଧାରଣ କରିବ, ତାହା ପ୍ରତ୍ୟେକ ଅହିଂସା ନୀତିବାଦୀର ଆଲୋଚନା କରିବା ଉଚିତ । ଦେଶରେ ଗଣତନ୍ତ୍ରର ପ୍ରତିଷ୍ଠାଦ୍ୱାରା ଭାରତୀୟ ଆଦର୍ଶ ରକ୍ଷା ହେବ ବୋଲି ଯେଉଁମାନେ ଭାବୁଛନ୍ତି, ସେମାନେ ପୃଥିବୀର ପ୍ରଚଳିତ ନୀତିମାନଙ୍କ ଓ ପ୍ରାଚୀନ ଭାରତୀୟ ଆଦର୍ଶ ଶାସନତନ୍ତ୍ରର ନୀତିକୁ ଅନୁସରଣ କଲେ ବୋଧହୁଏ ହଠାତ୍ ଏ କଥାର ସମାଧାନ କରିପାରିବେ ନାହିଁ । ନିକଟଭବିଷ୍ୟତରେ ଗୋଟାଏ ମହାପରିବର୍ତ୍ତନ ଆସୁଛି ବୋଲି ଆମ ଦେଶରେ ଶ୍ରୀଯୁକ୍ତ ନେହ୍ରୁ ଓ ଅନ୍ୟାନ୍ୟ ନେତାମାନଙ୍କଠାରୁ ଆରମ୍ଭକରି ଇଉରୋପର ବିଶିଷ୍ଟ ରାଜନୀତିଜ୍ଞମାନେ ସ୍ୱୀକାର କଲେଣି । ଅଳ୍ପ ଦିନ ତଳେ ବ୍ରିଟିଶ ପାର୍ଲିଆମେଣ୍ଟରେ ବକ୍ତୃତା ଦେବା ସମୟରେ ସାର ସାମୁଏଲ ହୋର୍ ବର୍ତ୍ତମାନ ଯୁଦ୍ଧ ସମ୍ପର୍କରେ କହିବାକୁ ଯାଇ ଏହି ପରିବର୍ତ୍ତନର ସୂଚନା ଦେଇଥିଲେ । ଫ୍ରାନ୍ସ ଗଣତନ୍ତ୍ର ନାୟକ M. Leburnଙ୍କ ମତରେ ଯୁଦ୍ଧର ଅବସାନ ପରେ ସମରସମ୍ପୃକ୍ତ ଜାତିମାନଙ୍କର ପରିଣାମ କିଣ ହେବ, ତାହା ତାଙ୍କର ନିମ୍ନୋଦ୍ଧୃତ ବିବୃତ୍ତିରୁ ଜଣାପଡ଼ିବ । ସେ କହିଛନ୍ତି—In war and in this war more than any other; it is also a question of moral strength and victory will come to the most noble, most generous and most humane." ଯୁଦ୍ଧ ଯଦି ବେଶୀ ଦିନ ସ୍ଥାୟୀ ଓ ବ୍ୟାପକଭାବ ଧାରଣକରେ, ତାହାହେଲେ ଜଗତର ବର୍ତ୍ତମାନ ପରିସ୍ଥିତିର ପରିବର୍ତ୍ତନ ସଙ୍ଗେ ନୂତନ ନୀତିର ପ୍ରବର୍ତ୍ତନ ସମ୍ଭବ ହେବ, କିନ୍ତୁ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଆଦର୍ଶଗତ ଭିନ୍ନତା ଏଥିରୁ ବାଦ୍ ଯିବ ନାହିଁ । ମନୁଷ୍ୟର ସ୍ୱଭାବ-ବୈଷମ୍ୟ ଅତି ଜଟିଳ ଓ କଠିନ । ଦେଶ ଓ କାଳ ଏହାକୁ ଅତିକ୍ରମ କରି ଏ ପର୍ଯ୍ୟନ୍ତ କୌଣସି ସାଧାରଣ ପନ୍ଥା ଉଦ୍‌ଭାବନ କରିପାରି ନାହିଁ । ବିପ୍ଳବ ଆସିଛି, ସେଥିରେ କେବଳ ଜାତୀୟ କର୍ମ-ପରିଖା ଭିନ୍ନ ଆକାର ଓ ଗତି ଧାରଣ କରିଛି, କିନ୍ତୁ ଗୋଟିଏ ଚିରନ୍ତନ ନୀତି କିମ୍ବା ସତ୍ୟକୁ ପୂର୍ଣ୍ଣରୂପେ ସଂସ୍ଥାପିତ କରି ନାହିଁ । ମହାତ୍ମା ଗାନ୍ଧିଙ୍କର ପ୍ରଚାରିତ ଅହିଂସା ନୀତିରେ କିଛି ନୂତନତ୍ୱ ନାହିଁ । ଭାରତବାସୀର ମୂଳ ଆଦର୍ଶ ଅତି ପ୍ରାଚୀନ କାଳରୁ ଏଥିରେ ସମ୍ପୃକ୍ତ ରହିଛି । ହିନ୍ଦୁର ଚରମ ଲକ୍ଷ୍ୟ ଓ ତା ଧର୍ମ ଜୀବନର ଶେଷ ପରିଣତି ଯେଉଁ ମୁକ୍ତି ଅନାସକ୍ତ ଉପରେ ଆଜିକି ସହସ୍ର ସହସ୍ର ବର୍ଷ ନିର୍ଭର କରି ଆସିଲାଣି, ଅହିଂସା ସେହି ମହତ୍ତ୍ୱ ଆଦର୍ଶର ଏକ ବିଶିଷ୍ଟ ଅଙ୍ଗ, କିନ୍ତୁ ଯୁଗ-ଧାରାରେ ଏହା ଅତି ମଳିନ ହୋଇ ଯାଇଥିଲା । ପାଶ୍ଚାତ୍ୟବାସୀର ବସ୍ତୁବାଦ ନିକଟରେ ଶତାଧିକ ବର୍ଷ ହେଲା ମନୁଷ୍ୟର ଉନ୍ନତ ବିକାଶରେ ଏହାର କୌଣସି ମୂଲ୍ୟ ନ ଥିଲା । ମୌଳିକତା ଭୁଲିଯାଇ ଭାରତବାସୀ ମଧ୍ୟ ପାଶ୍ଚାତ୍ୟ ସଭ୍ୟତାକୁ ନିଜର ବୋଲି ଜ୍ଞାନ କଲା । ଦେଶରେ ନୂତନ ଯୁଗର ସୃଷ୍ଟି ହେଲା । ମୁସଲମାନ ରାଜତ୍ୱ ପରେ ଭାରତବର୍ଷରେ ଯେପରି ଅନ୍ତର୍ବିବାଦ ଆରମ୍ଭ ହୋଇ ଆସିଥିଲା, ସେଥିରେ ଇଂରେଜ ଶାସନ ଜଟିଳ ହେଲେ ସୁଦ୍ଧା ଯୁଗୋପଯୋଗୀ ହେଲା । ଶକ୍ତିଶାଳୀ ଇଂରେଜ ଜାତି ଭାରତବାସୀର କର୍ମ-ମାର୍ଗକୁ ଆଜି ପର୍ଯ୍ୟନ୍ତ ନିୟନ୍ତ୍ରିତ କରିଆସିଲେ, କିନ୍ତୁ ଆଦର୍ଶର ଭିନ୍ନତା ଓ ଜାତୀୟ ସ୍ୱାର୍ଥ-ରକ୍ଷାଦ୍ୱାରା ଗୋଟାଏ ପ୍ରତିକ୍ରିୟାର ଆରମ୍ଭ ହେଲା । ମୌଳିକ ଆଦର୍ଶକୁ ଅନୁସରଣ କରି ମହାତ୍ମା ଗାନ୍ଧି ଦେଶର ପ୍ରଚଳିତ ସଭ୍ୟତାର ପ୍ରତିକୂଳରେ ଗଲେ । ଦେଶରେ ଔପନିବେଶିକ ଶାସନ ପ୍ରତିଷ୍ଠାକୁ ଲକ୍ଷ୍ୟ ରଖି ପ୍ରାଦେଶିକ ସ୍ୱତନ୍ତ୍ରତା ଦେଲାବେଳେ ଅଧିକାଂଶ ଅସହଯୋଗ ଆନ୍ଦୋଳନକାରୀ ଇଂରେଜ ସରକାରଙ୍କ ସହିତ ସହଯୋଗ କଲେ, କିନ୍ତୁ ନୀତି ଓ ଲକ୍ଷ୍ୟ ଭିନ୍ନ ଅନୁମିତ ହେବାରୁ ସେମାନେ କେତେକ ପ୍ରଦେଶରେ ଶାସନ ଭାର ଗ୍ରହଣ କରି ପୁଣି ପ୍ରତ୍ୟାଖ୍ୟାନ କଲେ । ବର୍ତ୍ତମାନ ଆନ୍ତର୍ଜାତିକ ପରିସ୍ଥିତିରେ ଇଂଲଣ୍ଡ ଓ ଭାରତବର୍ଷର କୌଣସି ପରିବର୍ତ୍ତିତ କଲ୍ୟାଣପ୍ରଦ-ସମ୍ପର୍କକୁ ସମଗ୍ର ପୃଥିବୀ ନବଯୁଗର ସୂଚନା ରୂପେ ଗ୍ରହଣ କରିପାରେ, କିନ୍ତୁ ଅହିଂସା-ନୀତି ହିଂସାପ୍ରଣୋଦିତ ପ୍ରଚଣ୍ଡ ସମରଲିପ୍ସାକୁ କେତେ ଦୂର ପ୍ରଶମିତ କରିବ, ତାହା ଏ ପର୍ଯ୍ୟନ୍ତ ଜଣାପଡ଼ି ନାହିଁ । ପୃଥିବୀର ସମଗ୍ର ସଭ୍ୟତାର ପରିବର୍ତ୍ତନ ସଙ୍ଗେ ଯେଉଁ ନବ-ଯୁଗର ଆବିର୍ଭାବ ହେବ, ସେଥିରେ ଗାନ୍ଧିଙ୍କର ପ୍ରବର୍ତ୍ତିତ ଅହିଂସା ନୀତି ଯଦି ମୂଳ ଭିତ୍ତି ହୁଏ ଓ ପ୍ରତ୍ୟେକ ଦେଶର ପାରିପାର୍ଶ୍ୱିକ ଅବସ୍ଥାକୁ ଯେକି ଏହା ଭିନ୍ନ ଭାବରେ ମନୁଷ୍ୟ ଜାତିର ଭବିଷ୍ୟତ କର୍ମ-ପନ୍ଥା ନିୟନ୍ତ୍ରଣ କରେ, ତାହାହେଲେ ମହାତ୍ମା ଗାନ୍ଧି ନିଶ୍ଚୟ ଜଣେ ମହା-ମାନବର ସ୍ଥାନ ଅଧିକାର କରିବେ ଓ ସେଥି ସଙ୍ଗେ ଭାରତବର୍ଷ ଜଗତରେ ଆଦର୍ଶ ହେବ । ଗୋଟିଏ ଅତି ପ୍ରାଚୀନ ମୌଳିକ ନୀତି ମାନବ ଜାତିର କଲ୍ୟାଣସାଧନ ପାଇଁ ପୂର୍ଣ୍ଣ ଆତ୍ମ-ପ୍ରକାଶ କଲାବେଳେ ଅନେକ ଅନ୍ତରାୟ ଆସିବ, କେତେ ଆବର୍ଜନା ଆସି ତାର ବିସ୍ତୃତପଥ ରୋଧ କରିବ, କିନ୍ତୁ

ମନୁଷ୍ୟର ଅତି ଆନ୍ତରିକ ଜାଗୃତି ଯେତେବେଳେ ଏହାର ସ୍ପନ୍ଦନ ଅନୁଭବ କରିବ, ସେତେବେଳେ ମନୁଷ୍ୟର କର୍ମଧାରା ସ୍ୱତଃ ଏହି ନୀତିକୁ ଅବଲମ୍ବନ କରିବ ।

ଜଗତର ସୃଷ୍ଟି ଓ ସ୍ଥିତି ଯେଉଁ ବିଶ୍ୱଶକ୍ତିରୁ ସମ୍ଭୂତ ହୋଇଅଛି, ବିପ୍ଳବ ସେଥିର ଗୋଟିଏ କ୍ରମ ମାତ୍ର । ଶକ୍ତିର ବାସ୍ତବ ପ୍ରକାରରେ ପ୍ରକୃତିର ନିତ୍ୟନୂତନ ଅନୁଭୂତି ମାନବ ଅନ୍ତରକୁ ଯେତେବେଳେ ଅତି ବିଶାଳ କରିଦିଏ ଓ ତାର ଦୃଷ୍ଟିରେଖା ଦୈନନ୍ଦିନ ଅସ୍ଥାୟୀ ଘଟଣାମାନଙ୍କରୁ ଆରମ୍ଭ କରି ବିଶ୍ୱ-ବ୍ରହ୍ମାଣ୍ଡର ନୈସର୍ଗିକ ପରିବର୍ତ୍ତନ ପର୍ଯ୍ୟନ୍ତ ଅବଲୋକନ କରି ଏକ ପୂର୍ଣ୍ଣ ସତ୍ତାର ଅନୁଭୂତି ଆଣେ, ସେତେବେଳେ କ୍ଷେତ୍ରବିଶେଷରେ ଶକ୍ତିର ଉପଯୁକ୍ତ ବିକାଶ ଦେଖିବା ପାଇଁ ମନୁଷ୍ୟ ସମର୍ଥ ହୁଏ । ଶକ୍ତି-ପ୍ରକାରରେ ଅନ୍ତରର ଉନ୍ନତ ଅନୁଭୂତି ବସ୍ତୁର ଅବାସ୍ତବତା ଅବଲମ୍ବନରେ ସୁଦ୍ଧା ମାନବିକତାର ଶ୍ରେଷ୍ଠ ଉତ୍କର୍ଷ ଦେଖାଇପାରେ । ବର୍ତ୍ତମାନ ପାଶ୍ଚାତ୍ୟ ଜାତିମାନଙ୍କର କର୍ମ ସମ୍ପାଦନରେ ଏଥିର ନିଦର୍ଶନ ମିଳେ ।

ଜଗତର ପ୍ରତ୍ୟେକ ବିଷୟ ସୃଷ୍ଟି, ସ୍ଥିତି ଓ ପ୍ରଳୟର ଅଧୀନରେ ଯେଉଁ ଶାଶ୍ୱତ ନିୟମକୁ ପାଳନ କରୁଛି, ତାହା ବିଶ୍ୱ-ଶକ୍ତିରୁ ସମ୍ଭୂତ । ବସ୍ତୁର ଅବାସ୍ତବତା ଜ୍ଞାନ ମନୁଷ୍ୟ ମନର ଗୋଟାଏ ସୀମା ନିରୂପଣ ଛଡ଼ା ଅନ୍ୟ କିଛି ନୁହେଁ । କେତେ-ବେଳେ ଏହା କପରି ବିଶ୍ୱପ୍ରକୃତି ସହିତ ତାଳ ମିଳାଇ ଚାଲେ, ସହଜବୁଦ୍ଧିରେ କହିହେବ ନାହିଁ । ଅସ୍ଥାୟୀ ସଂସାରିକ ବିଷୟାକୃଷ୍ଟ ମନ ବିଶ୍ୱ ସମ୍ବନ୍ଧରେ ବିଚାର କରିବାକୁ ପ୍ରାୟ ଅବସର ପାଏ ନାହିଁ । କେବଳ ବିଶ୍ୱ-ପ୍ରକୃତିର ଅତି ନିମ୍ନସ୍ତରରେ ଦୃଷ୍ଟିର ଅତି ତୁଚ୍ଛ ଉପକରଣ ପରି ମାନବ ଜୀବନଟା ଦିନ କେତେଟାରେ ବିଲୀନ ହୋଇଯାଏ । ବିଶ୍ୱ-ଶକ୍ତି ସଙ୍ଗେ ବିଶ୍ୱପ୍ରାଣର ଅବିରାମ ଗତିକୁ ମନୁଷ୍ୟ ବୁଝେ ନାହିଁ । ଅଳୀକ କ୍ଷୁଦ୍ର ବାସନାଦୃଷ୍ଟି ଓ ସ୍ଥିତିର କ୍ରମରେ ପରିବର୍ତ୍ତନର ନୂତନ ଧାରାକୁ ବିପ୍ଳବ ଆଖ୍ୟା ଦେଇ ଦୂରରେ ରହେ । ପ୍ରଳୟର ବିଭୀଷିକା ଚଞ୍ଚଳ ମନର ଅସୁସ୍ଥତା ଆଣିବ ବୋଲି ମନୁଷ୍ୟ ବସ୍ତୁମାତ୍ରେ ପରିଣାମୀ, ଏ କଥା ଜାଣି ସୁଦ୍ଧା ସଂସାରର ବାହ୍ୟ ଚିତ୍ର ଦର୍ଶନରେ ନିଜକୁ ଭୁଲାଇ ଦିଏ; ତେଣୁ ତାର ଦୃଷ୍ଟିରେଖା ବିଶ୍ୱର ଅସୀମତାରେ ବେଶୀ କାଳ ନିବଦ୍ଧ ହୋଇ ରହିପାରେ ନାହିଁ ଓ ଶକ୍ତିର ବାସ୍ତବ ବିକାଶ ମଧ୍ୟ ତାର ଅନୁଭୂତିକୁ ଆସେ ନାହିଁ । ସୃଷ୍ଟି ଧାରାରେ ବିପ୍ଳବର କ୍ରମଟି ପ୍ରଳୟର ଗୋଟାଏ ତୀବ୍ର ସୂଚନା ଦେଖାଇ ମନୁଷ୍ୟକୁ ଶକ୍ତିସାଧନା ପାଇଁ ଜାଗ୍ରତ କରେ । ମନୁଷ୍ୟର ଗତି ଯେତେବେଳେ ଜଟିଳ ହୋଇ ଆସେ ଓ ଶକ୍ତି ଚାଳନା ପାଇଁ ତାକୁ କୌଣସି ପନ୍ଥା ମିଳେ ନାହିଁ, ସେତେବେଳେ ବିପ୍ଳବ ଆସି ଅବରୁଦ୍ଧ ଶକ୍ତିର ମାର୍ଗ ଉନ୍ମୁକ୍ତ କରିଦିଏ । ବ୍ୟକ୍ତିଗତ ଚେଷ୍ଟାଠାରୁ ଆରମ୍ଭ କରି ସମୂହ ଜାତୀୟ କର୍ମ ପ୍ରେରଣା ପର୍ଯ୍ୟନ୍ତ ବିଭିନ୍ନ ହେଲେ ସୁଦ୍ଧା ଶକ୍ତିବିକାଶର ନିର୍ଦ୍ଦିଷ୍ଟ ମାର୍ଗ ଅଛି । ଏ ମାର୍ଗର ଚିରନ୍ତନ ଗତି ନ ଥିଲେ ମନୁଷ୍ୟ ଶାଶ୍ୱତ ଶକ୍ତିର ବର୍ତ୍ତମାନତା ଓ ପ୍ରଭାବକୁ ସ୍ୱୀକାର କରନ୍ତା ନାହିଁ । ବିପ୍ଳବକୁ ସେ କେବଳ ଗୋଟାଏ ପାଶବିକ ବୁଭୁକ୍ଷାର ତୃପ୍ତି ପାଇଁ ଅନ୍ୱେଷଣ କରନ୍ତା । ଜଗତରେ ଧର୍ମ କିମ୍ବା ନୀତିଗତ ବିପ୍ଳବର ସ୍ଥାନ ରହନ୍ତା ନାହିଁ । ପ୍ରାଚ୍ୟ ଓ ପାଶ୍ଚାତ୍ୟର ଭିନ୍ନ ମୌଳିକତାକୁ କେହି ଲକ୍ଷ୍ୟ ରଖନ୍ତେ ନାହିଁ । ପୃଥିବୀରେ କୌଣସି ନୀତି କିମ୍ବା ଧର୍ମର ପ୍ରଚଳନ ଶକ୍ତିସାପେକ୍ଷ ହୁଅନ୍ତା ନାହିଁ । ମନୁଷ୍ୟର ସ୍ୱାଧୀନ କର୍ମପ୍ରଚେଷ୍ଟା ସର୍ବଦା ତାର ବିଶାଳ ଚିନ୍ତାଧାରାରେ ଶକ୍ତିକୁ ଅବଲମ୍ବନ କରି ସାଂସାରିକ ଯାବତୀୟ କର୍ମର ଜଟିଳତା ମଧ୍ୟରେ ଯେଉଁ ସ୍ୱାତନ୍ତ୍ର୍ୟ ସ୍ଥାପନ କରିବାକୁ ଯାଏ, ତାହା ବିପ୍ଳବମୁଖୀ ହେଲେ ସୁଦ୍ଧା ମନୁଷ୍ୟ ସେଥିପ୍ରତି ଦୃକ୍‌ପାତ କରେ ନାହିଁ । ନେପୋଲିୟନ, ଲେନିନ୍ କିମ୍ବା ଗାନ୍ଧି ନିଜ ଶକ୍ତିରେ ସ୍ୱାଧୀନ କର୍ମ ମାର୍ଗ ଉଦ୍‌ଘାଟିତ କରିବାକୁ ଯାଇ ବିପ୍ଳବକୁ ଭୟ କରି ନାହାନ୍ତି । ମାର୍ଗ ବିଭିନ୍ନ ହେଲେ ମଧ୍ୟ ପ୍ରତ୍ୟେକ ଯୁଗପ୍ରବର୍ତ୍ତକଙ୍କୁ ବିପ୍ଳବର ସମ୍ମୁଖୀନ ହେବାକୁ ପଡ଼ିବ; କାରଣ ଶକ୍ତିର ଉପଯୁକ୍ତ ଚାଳନାଦ୍ୱାରା ଜାତୀୟ ଅନିଷ୍ଟକାରୀ ପ୍ରତିବନ୍ଧକମାନଙ୍କୁ ନ ଏଡ଼ିବା ପର୍ଯ୍ୟନ୍ତ କୌଣସି ସତ୍ୟ କିମ୍ବା ନୀତିର ପ୍ରତିଷ୍ଠା ମାନବ ସମାଜରେ ସମ୍ଭବ ହୁଏ ନାହିଁ । ଶକ୍ତି-ସାଧନା ବିନା ବିପ୍ଳବର ଅବସାନ ପରେ ନୀତିସୂତ୍ରରେ ଜଗତରେ ଶାନ୍ତି ପ୍ରତିଷ୍ଠା ମଧ୍ୟ ସମ୍ଭବ ନୁହେଁ ।

# ଯୁଗଧାରାରେ ଯୁବଶକ୍ତି

ଯୁଗଧାରାରେ ମନୁଷ୍ୟ ଜୀବନର ଗତି ଅତି ନଗଣ୍ୟ । ସେଥିରେ ପୁଣି ତାର ଯୌବନର କଳ୍ପନା ଏକ ମାୟା-ପୁରୀର ଉଦ୍ଭିନ୍ନ ବିରାଟ ବିକାଶ । ଅତୀତର ବିଶାଳ ଗର୍ଭରେ ଯୁଗ ପରେ ଯୁଗ ଆସି ବିଲୀନ ହୋଇଯାଇଛି; କିନ୍ତୁ କ୍ଷୁଦ୍ର ମାନବର ହୃଦୟତନ୍ତ୍ରୀରେ ଯେଉଁ ସ୍ପନ୍ଦନଟି ତାର ସୃଷ୍ଟି ଦିନୁ ଆତ୍ମ-ପ୍ରକାଶ କରିଥିଲି, ତାହାର ବିଲୟ ହୋଇ ନାହିଁ । ଜୀବନର ମଧୁମୟ ବସନ୍ତରେ କଳ୍ପନାତୀତ ଚିରବସନ୍ତର ଶାଶ୍ୱତ ପ୍ରବାହ ସଙ୍ଗେ ମାନବ ଅନ୍ତରର ଏହି ସ୍ପନ୍ଦନଟି ଧ୍ୱନିତ ହୋଇ କିପରି ଆତ୍ମଗୋପନ କରେ, କେହି ଏହାକୁ ବୁଝନ୍ତି ନାହିଁ । ନଶ୍ୱର ଐଶ୍ୱର୍ଯ୍ୟର ଗରିମାରେ ମନୁଷ୍ୟର ଆତ୍ମବିସ୍ମୃତି ତାକୁ ଏହା ଶୁଣାଇ ଦିଏ ନାହିଁ । ଯୌବନରେ ପ୍ରାଣର ପ୍ରାଚୁର୍ଯ୍ୟ ଐଶ୍ୱର୍ଯ୍ୟ-ମୋହକୁ ଆହୁରି ବଢ଼ାଇଦିଏ । ତାର ଲକ୍ଷ୍ୟ ଦୂରକୁ ଚାଲିଯାଏ, ସେ ଦେଖିପାରେ ନାହିଁ ତାର ଗତି କେଉଁଆଡ଼େ ? ଜୀବନର ଶ୍ରେଷ୍ଠ ସାଧନା ଓ ମାନବିକତାର ଉନ୍ନତ ବିକାଶ ପାଇଁ ଯୌବନ ଯେ ଅତି ପ୍ରଶସ୍ତ, ଏ କଥା କେହି ଅସ୍ୱୀକାର କରିବେ ନାହିଁ । କିନ୍ତୁ କଳ୍ପନାର ଉତ୍ତୁଙ୍ଗ ଶିଖରରୁ ଯୁବକ ଯେଉଁ ଉପାଦାନ ସଂଗ୍ରହ କରି ଜଗତରେ ନିଜର ପ୍ରତିଷ୍ଠା ଆଣିବାକୁ ଚେଷ୍ଟା କରିଥାଏ, ତାହା ଅଧିକାଂଶ ସମୟରେ ଯଥାର୍ଥ ହୁଏ ନାହିଁ । ଯୌବନ-ସୁଲଭ ଚପଳତା ଓ ପାର୍ଥକ୍ୟ ଐଶ୍ୱର୍ଯ୍ୟ-ପ୍ରାପ୍ତିରେ ଯୁବଶକ୍ତିର ଅତ୍ୟଧିକ ବ୍ୟୟ ମାନବିକତାର ବିକାଶ-ମାର୍ଗରେ ଘୋର ଅନ୍ତରାୟ ଘଟାଏ । ଯେ କୌଣସି ସାମୟିକ ଘଟଣାସ୍ରୋତରେ ନିଜର ସ୍ୱାତନ୍ତ୍ର୍ୟକୁ ଛାଡ଼ିଦେବା ବ୍ୟତୀତ ମନୁଷ୍ୟର ଉପାୟନ୍ତର ରହେ ନାହିଁ । କାଳ ଓ ଘଟଣା ରଚିତ କେତେଗୁଡ଼ିଏ କର୍ମମାର୍ଗରେ ବିଚରଣ କରି ମର ଜୀବନର ଶେଷ ଯବନିକା ପତନ କରି ସେ ଚାଲିଯାଏ । ଯେଉଁ ଯୁଗଧାରାକୁ ଅନୁସରଣ କରି ସେ ଚାଲିଆସିଥାଏ, ତାହା ମଧ୍ୟ ଦିନେ ଅତୀତରେ ମିଶିଯାଏ ।

ଯୁବଶକ୍ତିର ଉଦ୍‌ବୋଧନରେ ବାସ୍ତବ ଜୀବନର ସନ୍ଧାନ ମିଳେ । ଯୁବକର ସରଳ ପ୍ରାଣରେ ଯେତେବେଳେ କଳ୍ପନା ବିଭବ ସୌନ୍ଦର୍ଯ୍ୟର ସୀମାତୀତ ସରଣୀକୁ ଉନ୍ମୁକ୍ତ କରିଦିଏ ଓ ସେ ତାର ସୁଖର ସଂସାରକୁ ଗଢ଼ିନେବାପାଇଁ ବ୍ୟଗ୍ର ହୋଇ ଉଠେ, ସେତେବେଳେ ତାର ଶକ୍ତିଚାଳନାର ଏକ ମହା ସନ୍ଧିସ୍ଥଳ ଉପସ୍ଥିତ ହୁଏ । କଳ୍ପନା ଓ ସୌନ୍ଦର୍ଯ୍ୟ ସଙ୍ଗେ ସତ୍ୟର ଅବିଚ୍ଛିନ୍ନ ସମ୍ବନ୍ଧ ବଡ଼ ରହସ୍ୟରେ ଆଚ୍ଛନ୍ନ । ଯୁବକପ୍ରାଣର ଚଞ୍ଚଳତା ଏହାକୁ ସହଜରେ ଅବଧାରଣ କରିପାରେ ନାହିଁ । କେବଳ କ୍ଷଣିକ ଘଟଣା ସ୍ରୋତରେ ବ୍ୟର୍ଥତାର ନିଦର୍ଶନ ଦେଖାଇବା ପାଇଁ ଏହା ଅନେକ ସମୟରେ ଉଚ୍ଛ୍ୱସିତ ହୋଇଉଠେ । ଯୌବନର ବ୍ୟର୍ଥତାରେ ଶକ୍ତିର ଅପଚୟ ମାନବର ଗତିପଥକୁ କଣ୍ଟକିତ କରିଦିଏ, ତେଣୁ ଯୁବକର ସତ୍ୟ ଓ ସୌନ୍ଦର୍ଯ୍ୟର ସଙ୍କେତକୁ ଅତି ଧୀରଭାବରେ ଅନୁସରଣ କରିବା ଉଚିତ । କାଳର କ୍ରୀଡ଼ା ପୁତ୍ତଳିକା ପରି ଯାବତୀୟ ଘଟଣା ରାଶିରେ ଆତ୍ମବିସ୍ମୃତ ହେବା ତାର ଧର୍ମ ନୁହେଁ । ସେ ନିଜର ଆଦର୍ଶ ନିଜେ ସୃଷ୍ଟି କରିବ । ସମାଜ, ନୀତି ଓ ଧର୍ମସଂସ୍କାରକ-ମାନଙ୍କଠାରୁ ତାର ଶିକ୍ଷଣୀୟ ବିଷୟ ଗ୍ରହଣ କରିପାରେ, କିନ୍ତୁ ସେମାନଙ୍କର ପ୍ରତ୍ୟେକ କଥାକୁ ବିଚାର ନ କରି କେବଳ ଆଶୁ ପରିବର୍ତ୍ତନକୁ ଲକ୍ଷ୍ୟ ରଖି ଗତି କଲେ ସୁବିବେଚନା ହେବନାହିଁ । ଜଗତର ମଙ୍ଗଳବିଧାନ ଓ ଯୁଗଧାରାର ପରିବର୍ତ୍ତନ ଆଣିବା ପାଇଁ ଯେଉଁ ମହାପୁରୁଷମାନେ ଜନ୍ମଗ୍ରହଣ କରିଥାନ୍ତି, ସେମାନଙ୍କ ପ୍ରଚାରିତ ବାଣୀରେ ସତ୍ୟର ଶାଶ୍ୱତ ବିକାଶ ବଡ଼ ସରଳ ଓ ହୃଦୟସ୍ପର୍ଶୀ । ମାନବର ହୃଦୟ ତନ୍ତ୍ରୀରେ ଏହି ବାଣୀର ଝଙ୍କାର ଚିର ନୂତନ ହୋଇ ରହିଛି ଓ ଜୀବନର ବାସ୍ତବ ସୌନ୍ଦର୍ଯ୍ୟାନୁଭୂତିରେ ଏହାର ନିଃସୃତ ସହସ୍ର ଯୁଗଧାରାକୁ ଅତିକ୍ରମ କରିଆସିଲାଣି; କିନ୍ତୁ ନୀତି କିମ୍ବା ସଭ୍ୟତାଗତ ପରିବର୍ତ୍ତନରେ ଏହାର ଲେଶମାତ୍ର ସ୍ଖଳନ ହୋଇ ନାହିଁ । କର୍ମ ଓ ନୀତିର ଜଟିଳତାରେ ମାନବର ଦୃଷ୍ଟିରେଖା ସଙ୍କୁଚିତ ହୋଇଗଲେ ଓ ଯୁଗଧର୍ମର ଅନୁସୃତିରେ ସେ କେବଳ ଯନ୍ତ୍ରବତ୍ ଚାଳିତ ହେଲେ ତା ଅନ୍ତରର ଉଦ୍‌ବୋଧନ ସେହି ଅମର

ବାଣୀର ପ୍ରତୀକ୍ଷାରେ ରହେ । ଯୌବନର ପ୍ରେରଣାରେ ବିଚଳିତ ଉଦ୍ଦାମ ଯୁବଶକ୍ତି ଏହାକୁ ଉପଲବ୍ଧି କରିପାରିଲେ ଜୀବନର ଶାନ୍ତିଗତି ସ୍ୱତଃ ସୂଚିତ ହୁଏ ।

ଯୁବକର ଉପଯୁକ୍ତ ଶକ୍ତି ନିୟନ୍ତ୍ରଣରେ ଯୁଗଧାରାର କୁସଂସ୍କାର ପୁଷ୍ଟ ଅତୀତ ବିଲୁପ୍ତ ହେଲେ ଭ୍ରମବଶତଃ ମନୁଷ୍ୟ ଯେଉଁ ରୀତି ଓ ପ୍ରଥାକୁ ଅନେକ ଦିନୁଁ ପୋଷଣ କରିଥାଏ, ସେଥିରୁ ନିଷ୍କୃତି ମିଳେ । ଯୁବଶକ୍ତିର ପ୍ରବର୍ତ୍ତନରେ ଜଗତର କର୍ମମାର୍ଗ ସର୍ବଦା ପରିବର୍ତ୍ତିତ ହୋଇଆସୁଛି ଓ ସେଥି ସଙ୍ଗେ ମାନବର ଦୃଷ୍ଟିରେଖା ପୁରାତନ ନିର୍ଦ୍ଦିଷ୍ଟ ସୀମାକୁ ଅତିକ୍ରମ କରି ସୃଷ୍ଟିର ବୈଚିତ୍ର୍ୟ ଅନୁଭବ କରିଛି । ଜଗତର ପରିବର୍ତ୍ତନଶୀଳତାରେ କାଳ ଓ କର୍ମ ଜୀବନର ସ୍ୱଚ୍ଛନ୍ଦ ଗତିରେ ଆଧିପତ୍ୟ ବିସ୍ତାର କରୁ ନ ଥିଲେ ମନୁଷ୍ୟର ଉପଯୁକ୍ତ ଶକ୍ତିଚାଳନା ଆବଶ୍ୟକ ହୁଅନ୍ତା ନାହିଁ । କୌଣସି ଦେଶ କିମ୍ବା ଜାତିର ଉତ୍ଥାନ ଓ ପତନକ୍ରମରେ ଯୁଗଧାରାକୁ ଆଲୋଚନା କଲେ ଯେଉଁ ଜାତୀୟ ମୌଳିକ ଭାବଧାରାର ସୂଚନା ମିଳେ, ସେଥିର ସଂସ୍କୃତି କାଳ ଓ କର୍ମର ଜଟିଳ ବେଷ୍ଟନୀର ବାହାରେ ଥାଏ । ଅତୀତର ଗୋଟାଏ ଯୁଗ ଯେତେ ବିଶାଳ ହେଲେ ସୁଦ୍ଧା ଇତିହାସ ତାର ସାମାନ୍ୟ କେତୋଟି ଘଟଣା ବ୍ୟତୀତ ଆଉ କିଛି ପ୍ରକାଶ କରେ ନାହିଁ । ଘଟଣାର ବିଶେଷତ୍ୱ ସଙ୍ଗେ ମନୁଷ୍ୟର କର୍ମପନ୍ଥାର ସ୍ୱାତନ୍ତ୍ର୍ୟ ଯୁଗ ସୃଷ୍ଟିକୁ ଯେତେ ଦୂର ଅଧିକାର କରିଅଛି, ଇତିହାସ ତହିଁର ସାକ୍ଷ୍ୟ ଦିଏ । ଧାରାବାହିକ ଏକ ନିର୍ଦ୍ଦିଷ୍ଟ କର୍ମମାର୍ଗ ଯୁଗଧାରାରେ ସୌଷ୍ଠବ ରକ୍ଷା କରିପାରେ, କିନ୍ତୁ ମାନବର ଶକ୍ତି ଚାଳନା ପାଇଁ ଏହା ପ୍ରଶସ୍ତ ନୁହେଁ । ମାନବିକତାର ବାସ୍ତବ ବିକାଶ ପ୍ରତିହତ ଗତିରେ ସର୍ବଦା ଆତ୍ମପ୍ରକାଶ କରେ । ଗୋଟିଏ ରୀତି କିମ୍ବା ପ୍ରଥା ସର୍ବଦା ସମାନ ଭାବରେ ଗତି କରିପାରେ ନାହିଁ । କର୍ମର ଜଟିଳତା ଏହାର ବିରୋଧ ଜନ୍ମାଏ । ସତ୍ୟାଶ୍ରୟୀ ନୀତି ଓ ରୀତିର ବିନାଶ ନାହିଁ । ଏହାର ମୌଳିକତା ଚିରକାଳ ମନୁଷ୍ୟ ସମାଜରେ ପ୍ରତିଷ୍ଠା ସ୍ଥାପନ କରିବ; କିନ୍ତୁ ମନୁଷ୍ୟର ଯାବତୀୟ କର୍ମ-ପ୍ରଣାଳୀରେ ଏହାର ସ୍ପର୍ଶ ବିସ୍ତାରିତ ହୋଇଗଲେ ତାର ଦୃଷ୍ଟିରେଖା ଏହାକୁ ସନ୍ଧାନ କରିପାରେ ନାହିଁ । ସେ କିଛି କାଳ ଗୋଟିଏ କାର୍ଯ୍ୟକ୍ରମକୁ ଅବଲମ୍ବନ କରି ଯନ୍ତ୍ରବତ୍ ଚାଳିତ ହୁଏ ଓ ସେଥିରେ ତାର ସ୍ୱତନ୍ତ୍ର ଗତିଟି ଅବରୁଦ୍ଧ ଦେଖିଲେ ସ୍ୱତଃ ବିଦ୍ରୋହୀ ହୋଇଉଠେ । ଯେ କେତୋଟି ବିଶିଷ୍ଟ ଘଟନାରେ ଇତିହାସର ପୃଷ୍ଠା ସଜୀବ ରହିଛି ଓ ଯାହାର ଅମର ବୃତ୍ତାନ୍ତ ଯୁଗଯୁଗାନ୍ତରରୁ ମନୁଷ୍ୟର ଭାବଧାରାକୁ ସର୍ବଦା ଉଦ୍‌ବୁଦ୍ଧ କରି ଆସିଲାଣି, ସେଥିର ଅଶ୍ରୁତ ବାଣୀ ମାନବ ଅନ୍ତରର ଜାଗୃତି ପାଇଁ ଚିରଦିନ ଲୋଡ଼ା । ଧର୍ମ ଓ ନୀତିର ସଂସ୍କାର ଛଳରେ ଯେଉଁମାନେ ଏଥିପ୍ରତି ଦୃଷ୍ଟି ନ ଦେଇ କେବଳ ନିଜ ଶକ୍ତି ବଳରେ ଯୁଗଧାରାର ପରିବର୍ତ୍ତନ ଇଚ୍ଛା କରିବେ, ସେମାନେ ସମୟ ସ୍ରୋତରେ ସାମାନ୍ୟ ବୁଦ୍‌ବୁଦ୍ ପରି ଲୀନ ହୋଇଯିବେ । ସେମାନଙ୍କ ପ୍ରଚାରିତ ଆଦର୍ଶବାଦକୁ କେହି ଅନୁସରଣ କରିବେ ନାହିଁ । ସତ୍ୟ ଓ ସୌନ୍ଦର୍ଯ୍ୟର ସମନ୍ୱୟରେ ଜୀବନର ଶାଶ୍ୱତ ଗତିକୁ ଯୁଗଧାରା ବିଚଳିତ କରିପାରେ ନାହିଁ । ଅନେକ ସମୟରେ ଉଦ୍‌ଭ୍ରାନ୍ତ ଯୁବଶକ୍ତି ଏହାର ମର୍ମ ବୁଝେ ନାହିଁ । ଅତୀତର ସମସ୍ତ ଘଟନାକୁ ଐତିହାସିକର କଳ୍ପନାପ୍ରସୂତିରେ ବିସର୍ଜନ ଦେଇ ଜଗତରେ ନୂତନ କର୍ମମାର୍ଗ ଉଦ୍‌ଘାଟନ କରିବ ବୋଲି ଅଗ୍ରସର ହୁଏ; କିନ୍ତୁ ଏହା ଅଚିରେ ଚଞ୍ଚଳ ଯୌବନ ସଙ୍ଗେ ବିଲୀନ ହୋଇଯାଏ । କୌଣସି ଆଦର୍ଶରେ ଆବଦ୍ଧ ନ ହୋଇ ଯୁବକ ନିଜର ଆଦର୍ଶ ସୃଷ୍ଟି କରିପାରେ; କିନ୍ତୁ ସତ୍ୟ ଓ ସୌନ୍ଦର୍ଯ୍ୟରୁ ବିଚ୍ୟୁତି ଘଟିଲେ ତାହାର ଶକ୍ତି ବୃଥା ଅପଚିତ ହୁଏ । ଯୌବନର କଳ୍ପନା ସଙ୍ଗେ ସୌନ୍ଦର୍ଯ୍ୟର ଚିର ନୂତନ ସ୍ପର୍ଶ ଯେତେ ଭିନ୍ନ ଆଦର୍ଶ ସୃଷ୍ଟି କରିବ, ସେ ସମସ୍ତରେ ଏକ ଚିରନ୍ତନୀ ବାଣୀ ମନୁଷ୍ୟର ଅଗ୍ରଗତି ସୂଚାଇବା ପାଇଁ ସଂଯୁକ୍ତ ରହିବ । ପ୍ରତିମାର ପ୍ରାଣ ପ୍ରତିଷ୍ଠାରେ ସାଧକର ଦୃଢ଼ ସାଧନ ଓ ସଂକଳ୍ପର ଅବିଚ୍ଛେଦ୍ୟ ସମ୍ବନ୍ଧ ସ୍ଥାପିତ ହେଲା ପରି ମହତ୍ ଆଦର୍ଶରେ ଯୁବକର ଆତ୍ମଶକ୍ତିର ସତ୍ତା ଚିରଦିନ ପାଇଁ ଲାଗିରହିବ ।

ଅତୀତର ଉଦ୍‌ବୋଧନରେ ଯୁବକର ପ୍ରେରଣା ପ୍ରଚଳିତ ଯୁଗଧାରାର ସୀମାକୁ ଅତିକ୍ରମ କରି ଯେଉଁ ଉପାଦାନ ସଂଗ୍ରହ କରେ, ତାହା ଅଳୀକ ନୁହେଁ । ସଂସାରର ନିଗଡ଼ରୁ ସ୍ୱାର୍ଥ-ଜଡ଼ିତ କର୍ମର ତାଡ଼ନାରେ ମନୁଷ୍ୟ ସାଧାରଣତଃ ବର୍ତ୍ତମାନ ଓ ଭବିଷ୍ୟତ ଚିନ୍ତା ବ୍ୟତୀତ ଅତୀତ ଆଡ଼କୁ ଦୃଷ୍ଟି ଫେରାଏ ନାହିଁ । କାଳର ଅନନ୍ତ ଓ ଅବିରାମ ଗତିରେ ବର୍ତ୍ତମାନ, ଭବିଷ୍ୟତ ଓ ଅତୀତ ମଧ୍ୟରେ ପାର୍ଥକ୍ୟ ମରଜୀବନର ଅସ୍ଥାୟିତ୍ୱ ସମ୍ପର୍କରେ ବିଚାର କରାଯାଇପାରେ, କିନ୍ତୁ ବିଶ୍ୱର ବିରାଟ ସତ୍ତା ସଙ୍ଗେ ମାନବୀୟ ପ୍ରେରଣାର ଅନନ୍ତ ଉତ୍ସକୁ ଲକ୍ଷ୍ୟ କଲେ ଏହାର କୌଣସି ମୂଲ୍ୟ ରହେ ନାହିଁ । କର୍ମ ଜୀବନର କେତେଗୁଡ଼ିଏ ପ୍ରତିବିମ୍ବ କାଳ-ସ୍ରୋତରେ ରେଖାପାତ କରି ଚାଲିଯାଉଛି । ସମସ୍ତଙ୍କର ଦୃଷ୍ଟି ସେ ଆଡ଼କୁ ଯାଉନାହିଁ । ବର୍ତ୍ତମାନର ଜଟିଳ

କର୍ମ-ଜାଲରେ ସେମାନେ ବିବ୍ରତ । ଯେ କେତେ ଜଣ କାଳ ସଙ୍ଗେ ଜୀବନର ଗତି ମିଳାଇ ଦେଖିବାକୁ ଯାଆନ୍ତି, ସେମାନଙ୍କ ମଧ୍ୟରୁ ଅତ୍ୟଳ୍ପ ମନୁଷ୍ୟର ବାସ୍ତବ ଲକ୍ଷ୍ୟ ନିର୍ଣ୍ଣୟ କରିପାରନ୍ତି । ଦେଶକାଳ ଓ ପାତ୍ର ବିବେଚନାରେ ଯୁଗୋପଯୋଗୀ କର୍ମପନ୍ଥା ଅବଲମ୍ବନ, ମନୁଷ୍ୟର ଚରମ ଲକ୍ଷ୍ୟ ନୁହେଁ । ଏହା ମନୁଷ୍ୟର ଅଗ୍ରଗତିରେ ସାହାଯ୍ୟ କରିପାରେ; କିନ୍ତୁ ତାର ପୂର୍ଣ୍ଣ ବିକାଶ ଦିଗରେ କୌଣସି ସୀମାର ନିରୂପଣ ନାହିଁ । ସୁଦୂର ଅତୀତରେ, କେତେ ସଂଖ୍ୟାତୀତ ଘଟଣା ଘଟିଯାଇଛି, କେହି ତାର କଳନା ରଖି ନାହିଁ; କିନ୍ତୁ ସେଥିମଧ୍ୟରୁ କେତୋଟି କାହିଁକି ଚିରସ୍ମରଣୀୟ ହୋଇ ମାନବସମାଜରେ ଆଜି ପର୍ଯ୍ୟନ୍ତ ରହିଛି ? କିଏ ସେହି ଘଟଣାଗୁଡ଼ିକୁ ଜୀବଦାନ ଦେଇ କି ଉଦ୍ଦେଶ୍ୟରେ ବଞ୍ଚାଇ ରଖିଛି ? ଏ ପ୍ରଶ୍ନଗୁଡ଼ିକର ଉତ୍ତର କହିବାକୁ ଗଲେ ମାନବ ଅନ୍ତରରେ ସେହି ଅବିକଳ୍ପ ସ୍ପନ୍ଦନ ଯେଉଁ ପ୍ରେରଣା ସୃଷ୍ଟି କରି ତା ଜୀବନର ରହସ୍ୟ ଭେଦ କରିବାକୁ ଚେଷ୍ଟା କରିଛି, ତାକୁହିଁ ଦାୟୀ କରାଯିବ । କବିତାର ଉଚ୍ଛ୍ୱାସରେ, ଆଲେଖ୍ୟର ଚାରୁ ଚିତ୍ରଣରେ ଓ ଭାବନାର ଗୁରୁ ଗାମ୍ଭୀର୍ଯ୍ୟରେ ଶତ ଯୁଗର ଅଶ୍ରୁତ କାହାଣୀ ମୁହୂର୍ତ୍ତିକେ ଏହାରି ବଳରେ ଆତ୍ମପ୍ରକାଶ କରି ମନୁଷ୍ୟକୁ ଯେଉଁ ସଙ୍କେତ ଦିଏ, ସେଥିରେ କାଳର ସୀମା-ଦୃଷ୍ଟି ଅତି ତୁଚ୍ଛ ବୋଧହୁଏ । ମାନବ ଅନ୍ତରରେ ସ୍ପନ୍ଦନ ଚିରକାଳ ସତ୍ୟ ଓ ସୌନ୍ଦର୍ଯ୍ୟର ଆଧାରରେ ପ୍ରକାଶ ଲୋଡ଼ି ଆସିଲାଣି । ଅତୀତର ମହିମାମୟ ବୃତ୍ତାନ୍ତରେ ଏ ଦୁହିଙ୍କର ସ୍ୱର୍ଣ୍ଣ ଯୌବନକୁ ଗୋଟାଏ ବିଶେଷତ୍ୱ ଦେଇଯାଏ । ପୁଣି ଜୀବନର ଗତି ଯେତେବେଳେ ଯୌବନରେ ପ୍ରଖର ହୋଇଉଠେ, କୌଣସି ଧାରାବାହିକ କର୍ମପନ୍ଥାକୁ ଅନୁସରଣ କରି ଯୁବକ ନିଜର ସ୍ୱାତନ୍ତ୍ର୍ୟକୁ ଲୋପ କରିବାକୁ ଇଚ୍ଛା କରେ ନାହିଁ, ଯୁଗଧାରାରେ କର୍ମ ନିୟନ୍ତ୍ରଣ ତାକୁ ଯନ୍ତ୍ରର ଚାଳନା ପରି ବୋଧହୁଏ ଓ ତାର ବିଚାର ଜ୍ଞାନ ସଙ୍କୁଚିତ ହୋଇଯାଏ, ସେତେବେଳେ ସେ ପ୍ରାଣର ରୁଦ୍ଧ ଆବେଗକୁ ସମ୍ଭାଳିପାରେ ନାହିଁ । ଏଥିପାଇଁ ଜଗତର ପ୍ରଚଳିତ ମାର୍ଗ ପରିବର୍ତ୍ତନରେ ଯାବତୀୟ ସଙ୍କଟଜନକ ପରିସ୍ଥିତି ଯୁବକଦ୍ୱାରା ସୃଷ୍ଟ ହୋଇଥାଏ । କାଳପରମ୍ପରା ଆଚରିତ ସମସ୍ତ ରୀତିକୁ ମାନିନେବା ମଧ୍ୟ ତାର ସ୍ୱାଭାବିକ ଧର୍ମ ମଧ୍ୟରେ ପରିଗଣିତ ହୁଏ ନାହିଁ । ଯୁବଶକ୍ତିର ଅଭିଯାନ ଉପଯୁକ୍ତ ଆଧାରରେ ନିୟନ୍ତ୍ରିତ ହୋଇ ଜଗତର କଲ୍ୟାଣ ସାଧିତ ହେଲେ ନବଯୁଗର ଆବିର୍ଭାବ ହୁଏ, କିନ୍ତୁ ଯେଉଁଠାରେ ଯୁବକ ଉଦ୍ଦାମ ଯୌବନର ଚଞ୍ଚଳତା ବଶତଃ ବିଚାର ଜ୍ଞାନକୁ ହରାଇବସେ, ସେହିଠାରେ ସେ ଜଗତର ହିତ ସାଧନ ପରିବର୍ତ୍ତେ ଯଥେଷ୍ଟ ଅହିତ କରେ । ଯେତେବେଳେ ପ୍ରଚଳିତ କର୍ମ ମାର୍ଗରେ ପୁଞ୍ଜୀଭୂତ ଆବର୍ଜନା ମନୁଷ୍ୟତ୍ୱର ଅବମାନନା କରି ସମାଜରେ ପ୍ରତିଷ୍ଠା ସ୍ଥାପନ କରେ, ବର୍ତ୍ତମାନ ଭବିଷ୍ୟତର କୌଣସି ଆଦର୍ଶ ରହେ ନାହିଁ, ମନୁଷ୍ୟ କିଂକର୍ତ୍ତବ୍ୟବିମୂଢ଼ ହୋଇ କାଳର ପୁତ୍ତଳିକା ପରି ଚାଳିତ ହୁଏ, ସେତେବେଳେ ଅତୀତ ଗର୍ଭରେ ସଞ୍ଚାଳିତ ହୋଇ ଜାତୀୟ ଜୀବନର ମୌଳିକତା ଅନ୍ୱେଷଣ କରିବା ଯୁବଶକ୍ତିର ବାଞ୍ଛନୀୟ । କେବଳ ନୂତନତ୍ୱର ପକ୍ଷପାତିତାରେ ଯାବତୀୟ କର୍ମର ଉଚ୍ଛେଦସାଧନ ଓ ସ୍ୱେଚ୍ଛାଚାର ପ୍ରଣୋଦିତ ସ୍ୱାବଲମ୍ବନ ଯୁବକର ଦୂରଦୃଷ୍ଟିର ପରିଚୟ ଦିଏ ନାହିଁ । ଆଦର୍ଶ ସୃଷ୍ଟି ମୂଳରେ ବିଚାର-ଜ୍ଞାନକୁ ନିୟନ୍ତ୍ରଣ କରି ନ ପାରିଲେ ଅତୀତର ଶତ ଉଦ୍ଦୀପନା ବୃଥା ହୋଇଯାଏ, ଯୁବକର କର୍ମ-ଭୂମି ଗୋଟାଏ ବିଭୀଷିକାର ଚିତ୍ର ସମାଜ ଆଗରେ ରଖିଦେଇଯାଏ ।

ପାର୍ଥିବ ଜୀବନର ଅସ୍ଥିରତା ଓ କର୍ମରାଶିର ଜଟିଳତା ମଧ୍ୟରେ ଯୁବକର ସ୍ଥିର ଲକ୍ଷ୍ୟ ନିର୍ଦ୍ଧାରିତ ହେବା ବଡ଼ କଠିନ । ହୃଦୟର ଆବେଗରେ ସେ ଅନେକ ସମୟରେ ଏକ ସ୍ଥାୟୀ ଅବଲମ୍ବନ ଆଶ୍ରୟରେ ନିଜର ଅଭୀଷ୍ଟସାଧନ କରିବାକୁ ଯତ୍ନଶୀଳ ହୋଇଥାଏ, କିନ୍ତୁ ଅଧିକାଂଶ ଅବଲମ୍ବନରେ ଯେଉଁ ଦୁର୍ବଳତା ପ୍ରଚ୍ଛନ୍ନରେ ଥାଏ, ତାକୁ ସେ ସରଳ ଦୃଷ୍ଟିରେ ଦେଖିପାରେ ନାହିଁ । କେତେବେଳେ ପୁଣି ଯୌବନର ତାର ଈପ୍ସିତ ଅବଲମ୍ବନକୁ ବାସ୍ତବ ଆକାରରେ ଦେଖାଏ ନାହିଁ । ଗୋଟାଏ ମୋହରେ ଯାହାକୁ ଅନୁସରଣ କରି ସେ ଜୀବନର ସୌନ୍ଦର୍ଯ୍ୟ-ଆଧାରକୁ ଉନ୍ମୁକ୍ତ କରିଦେଇଥାଏ, ତାହାରି ଅସାରତା ଦିନେ ତାକୁ ବିଦ୍ରୂପ କରି ଚାଲିଯାଏ, ଜୀବନଟା ବିତିଯାଏ, ସେ ନିଃସ୍ୱ ହୋଇ ଗୋଟିଏ ଯଥାର୍ଥ ମାର୍ଗକୁ ଧରିପାରେ ନାହିଁ । ଜୀବନର ଗତି ବଡ଼ ଚଞ୍ଚଳ ଚାଲିଛି, କର୍ମର ତାଡ଼ନା ସଙ୍ଗେ ଯୁଗଧାରାର ଅବିଚ୍ଛିନ୍ନ ସମ୍ପର୍କ ଲାଗିରହିଛି । କେତେବେଳେ କି ପରିବର୍ତ୍ତନ ଆସିବ, ତାହିଁର କିଛି ଠିକଣା ନାହିଁ, କିନ୍ତୁ ମନୁଷ୍ୟକୁ ଏ ସମସ୍ତ ଦୁର୍ନିବାର ଘଟଣାଚକ୍ର ମଧ୍ୟରେ ଲକ୍ଷ୍ୟ ସ୍ଥିର କରିବାକୁ ହେବ । କାତର ହେଲେ ଦୁନିଆରେ କେହି ତା ପ୍ରତି ଭ୍ରୂକ୍ଷେପ କରିବେ ନାହିଁ । କେବଳ ନିଜ ଜୀବନର ମମତା ଓ ସ୍ୱାର୍ଥ ଦୃଷ୍ଟିରେ କାର୍ଯ୍ୟ କରିଗଲେ ସଙ୍କଟଜନକ ପରିସ୍ଥିତିରୁ ପରିତ୍ରାଣ ପାଇବେ ବୋଲି ଯେଉଁମାନେ ଭାବନ୍ତି, ସେମାନେ କାଳର ଆବର୍ତ୍ତନରେ

ଶୋଷଣ ପରିବର୍ତ୍ତନକୁ ଦେଖିପାରନ୍ତି ନାହିଁ । ପ୍ରତିମୁହୂର୍ତ୍ତରେ କାଳର ଅବିରାମ ଗତି ସଙ୍ଗେ ମନୁଷ୍ୟଜୀବନର ଧାରା ବଦଳିଯାଉଛି; ଅଥଚ ଜଗତର ଅନିଶ୍ଚିତ ପାରିପାର୍ଶ୍ୱିକ ଅବସ୍ଥାରେ ସୁଖର ସଂସାର ଗଢ଼ି ଚିରକାଳ ପାଇଁ ଆଶାର ସ୍ୱପ୍ନ ଦେଖିବାର ଭ୍ରାନ୍ତି ତା ମନରୁ ଯାଉ ନାହିଁ । ସେ ବୁଝିଛି—ପାର୍ଥିବ ଭୋଗ-ବିଳାସ-ଲିପ୍ସା ଗୋଟାଏ ଅସ୍ଥାୟୀ ଆକର୍ଷଣ ଓ ଏହା ଜୀବନର ଚରମ ଲକ୍ଷ୍ୟ ନୁହେଁ; କିନ୍ତୁ କିଏ ପୁଣି ତାକୁ ସେ ଢଙ୍ଗରେ ଗତି କରାଉଅଛି ? ମନୁଷ୍ୟ ଅନେକ ସମୟରେ ପ୍ରମାଦକୁ ଜାଣିଶୁଣି ବରଣ କରିଥାଏ । ନିଜ ଜୀବନର ସଙ୍କଟ ନିଜେ ସୃଷ୍ଟି କରି, ସେଥିରୁ ନିଷ୍କୃତି ପାଇବାର ଚେଷ୍ଟା ଓ ତଦନୁଯାୟୀ କର୍ମରେ ତାର ଅଧିକାର ନ ଥିଲେ, ତାର ସ୍ଥାନ ଆଜି ଏତେ ଉଚ୍ଚରେ ହୋଇ ନ ଥାନ୍ତା । ଜୀବନର ଲକ୍ଷ୍ୟସିଦ୍ଧି ପୂର୍ବରୁ ମନୁଷ୍ୟକୁ ଜାଗତିକ ଅବସ୍ଥିତିରେ ଉତ୍କୃଷ୍ଟ କର୍ମର ପନ୍ଥା ଆବିଷ୍କାର କରିବାକୁ ପଡ଼ିବ । ନଚେତ୍ କେବଳ ମନର ସୁସ୍ଥତା ଆଣିବା ପାଇଁ କୌଣସି ଦୁର୍ବଳ ଅବଲମ୍ବନର ଆଶ୍ରୟରେ ଗତି କରିବାଦ୍ୱାରା ତାର ସ୍ୱାତନ୍ତ୍ର୍ୟ ନଷ୍ଟ ହୋଇଯିବ । ପ୍ରାଚୀନ କାଳରୁ ମନୀଷୀମାନେ ମନୁଷ୍ୟର ସ୍ୱାଭାବିକ ଭ୍ରମପ୍ରମାଦକୁ ଏଡ଼ିବା ପାଇଁ କେତୋଟି ସରଳ ମାର୍ଗ ନିର୍ଦ୍ଦେଶ କରିଦେଇଛନ୍ତି । ସେମାନେ ଦୂରଦୃଷ୍ଟି ବଳରେ ମନୁଷ୍ୟ ଅନ୍ତରର ଅବିନାଶୀ ସତ୍‌ପ୍ରେରଣାକୁ ଲକ୍ଷ୍ୟ କରି ତାହାର ସାହାଯ୍ୟରେ ସତ୍ୟ ଓ ସୌନ୍ଦର୍ଯ୍ୟକୁ ଯାବତୀୟ କର୍ମର ପରିଣାମ ସଙ୍ଗେ ସମ୍ପୃକ୍ତ କରିଅଛନ୍ତି । ତେଣୁ ସେମାନଙ୍କର ଆବିଷ୍କୃତ କର୍ମ-ମାର୍ଗ କଠିନ ହେଲେ ସୁଦ୍ଧା ଅସରଳ ହୋଇ ନାହିଁ । ଯୁଗ-ଧାରାରେ ସଙ୍ଗଠିତ କର୍ମ ଉପସ୍ଥିତ ପରିସ୍ଥିତିକୁ ପ୍ରଭାବିତ କରେ ଓ ମନୁଷ୍ୟର କୃତ୍ରିମ ଅବଲମ୍ବନ ସେହି ପ୍ରଭାବରେ ଗୋଟାଏ ଦୃଢ଼ତା ପ୍ରକାଶ କରେ । ପ୍ରତିଯୁଗରେ ଅବଲମ୍ବନର ବିଶେଷତ୍ୱ ମନୁଷ୍ୟର ଦୃଷ୍ଟିରେଖାର ପରିଚୟ ଦିଏ । ପ୍ରାଚୀନ ମନୀଷୀମାନେ ଯୁଗୋଚିତ କର୍ମରେ ଆବଦ୍ଧ ଥାଇ ସୁଦ୍ଧା ଜଗତର ଅନିତ୍ୟତା ସଙ୍ଗେ ଜୀବନର ଶେଷ ପରିଣତି ଦେଖି ନାହାନ୍ତି । ଜଗତର ଅବଲମ୍ବନକୁ ସେମାନେ ଚରମ ଲକ୍ଷ୍ୟରେ ଉପନୀତ ହେବା ପାଇଁ ସୋପାନ ସ୍ୱରୂପ ଗ୍ରହଣ କରିଛନ୍ତି । ଜଡ଼ତ୍ୱର ଆସକ୍ତି ସେମାନଙ୍କୁ ଭୁଲାଇ ରଖିପାରି ନାହିଁ । ପରମାର୍ଥ ଓ ବିଷୟଜ୍ଞାନର ପାର୍ଥକ୍ୟ ସ୍ପଷ୍ଟ ପ୍ରତୀତ ନ ହେବାଯାଏ ଜଗତର ଜଞ୍ଜାଳରେ ମନୁଷ୍ୟର ଅଗ୍ରଗତି ସମ୍ଭବପର ହୁଏ ନାହିଁ ବୋଲି ସେମାନେ ଘୋଷଣା କରିଯାଇଛନ୍ତି । ବିଷୟ-ବାସନା ମନୁଷ୍ୟକୁ ଜଗତର ବେଷ୍ଟନୀ ମଧ୍ୟରେ ଆକୃଷ୍ଟ କରି ରଖିଲାବେଳେ ତାର ଅନ୍ତର୍ଦୃଷ୍ଟି ଯେ ପାର୍ଥିବ ଜୀବନର ଅସ୍ଥାୟିତ୍ୱ ସମ୍ପର୍କରେ ଏହାକୁ ବିଚାର କରିବା ଉଚିତ । କେବଳ ବିଷୟ ବୁଦ୍ଧି ଲାଭ କଲେ ଜୀବନର ଲକ୍ଷ୍ୟ ଜଣାଯିବ ନାହିଁ । ଜଗତ ମନୁଷ୍ୟର ଶ୍ରେଷ୍ଠ କର୍ମ-ଭୂମି ହୋଇପାରେ; କିନ୍ତୁ ତା ଜୀବନର ଗତି ଏଠାରେ ସୀମାବଦ୍ଧ ନୁହେଁ । ଏ ସମ୍ପର୍କରେ ଆମ୍ଭମାନଙ୍କର ବର୍ତ୍ତମାନ ବଡ଼ଲାଟ ଲର୍ଡ଼ ଲିନ୍‌ଲିଥ୍‌ଗୋଙ୍କ ବାର୍ତ୍ତାର କିୟଦ୍ ଅଂଶ ଉଲ୍ଲେଖ କରାଯାଇପାରେ । ଫତେପୁର ଶିକ୍ରୀର ବିଶାଳ ତୋରଣମାର୍ଗ ଉପରେ ଆରବୀ ଭାଷାରେ ଖୋଦିତ ବାକ୍ୟକୁ ସେ ନିମ୍ନଲିଖିତ ମର୍ମରେ ଇଂରେଜୀରେ ଉଦ୍ଧାର କରିଛନ୍ତି—"Life is a bridge that you shall pass over, you shall not build your house upon it." ଜୀବନଟା ଗୋଟିଏ ସେତୁ ସଙ୍ଗେ ତୁଳନୀୟ । ମନୁଷ୍ୟର ଗତିସମ୍ପର୍କରେ ଏହାର ଉଦ୍ଦେଶ୍ୟକୁ ସୀମାବଦ୍ଧ କରିଦେଲେ ତାର ଦୃଷ୍ଟିରେଖା ପ୍ରତିହତ ହୋଇ ପଡ଼େ । ସଦା ପରିବର୍ତ୍ତନଶୀଳ ଜଗତରେ ଜୀବନର ଉଦ୍ଦେଶ୍ୟକୁ ଲକ୍ଷ୍ୟ ରଖି କର୍ମମାର୍ଗ ନିୟନ୍ତ୍ରଣ କରିବା ସମସ୍ତଙ୍କ ଦ୍ୱାରା ସମ୍ଭବ ହୁଏ ନାହିଁ; ସୁତରାଂ ଯୁବକ ଯେତେବେଳେ ଯୁଗଧାରାର ବାହାରେ ଦୃଷ୍ଟି ସଞ୍ଚାଳନ କରିବାକୁ ଯିବ, ସେତେବେଳେ ତାର ଲକ୍ଷ୍ୟ କୌଣସି ପାରିପାର୍ଶ୍ୱିକ ଦୁର୍ବଳ ଆଧାରରେ ନିବଦ୍ଧ ହୋଇରହିବା ବାଞ୍ଛନୀୟ ନୁହେଁ । ଯୌବନ ସଙ୍ଗେ ସୌନ୍ଦର୍ଯ୍ୟର ଅନାବିଳ ସମ୍ପର୍କ ଯୁବକ ହୃଦୟକୁ ଅଧିକାର ନ କଲେ ଲକ୍ଷ୍ୟଭ୍ରଷ୍ଟ ହେବା ସ୍ୱାଭାବିକ । ଯୁବ-ଶକ୍ତିର ପ୍ରଖରତାରୁ ଚଞ୍ଚଳତାକୁ ବାଦ୍ ଦେଇ ଲକ୍ଷ୍ୟ ସନ୍ଧାନ କରିବାକୁ ହେବ; କାରଣ ପ୍ରଚଳିତ ଯୁଗଧାରାର ସଂସ୍କାର ଆଣିବା ସାମାନ୍ୟ ସାଧନାର ବିଷୟ ନୁହେଁ । ଯୁବକର ପ୍ରଶାନ୍ତ ଭାବ ଓ ଅପ୍ରତିହତ ଦୃଷ୍ଟି ଉପରେ ଏହାର ସଫଳତା ଅନେକ ପରିମାଣରେ ନିର୍ଭର କରେ ।

ଯୁବଶକ୍ତିର ଯଥାର୍ଥ ନିୟନ୍ତ୍ରଣ ପାଇଁ ଉପଯୁକ୍ତ ଶିକ୍ଷା ଆବଶ୍ୟକ । ଶିକ୍ଷାପଦ୍ଧତି ଗଠନ କରିବା ଦାୟିତ୍ୱ ସାଧାରଣତଃ ଶିକ୍ଷିତ ବୟସ୍କମାନଙ୍କଠାରେ ଥାଏ । ଅନେକ ସମୟରେ ଏମାନଙ୍କର ଅଦୂରଦର୍ଶିତା ଶିକ୍ଷାପ୍ରଣାଳୀକୁ ଅତିମାତ୍ରାରେ ସଙ୍କୁଚିତ କରିଦିଏ । ଏମାନେ ଶିକ୍ଷାରେ ଆଦର୍ଶବାଦକୁ ନିଜର ରୁଚି ଅନୁଯାୟୀ ଗଢ଼ି ଯୁଗୋଚିତ କର୍ମ-ନିର୍ବାହରେ ତାହାର ସାର୍ଥକତା ଦେଖାଇ ଶ୍ରେଷ୍ଠ କରିଦିଅନ୍ତି । ଜୀବନର ଗତି ସଙ୍ଗେ ଏମାନଙ୍କ ଶିକ୍ଷା ପଦ୍ଧତିର ବିଶେଷ ସମ୍ବନ୍ଧ ରହେ ନାହିଁ । କେବଳ ପ୍ରଚଳିତ ସାମାଜିକ ପରିସ୍ଥିତିକୁ ଅନୁସରଣ କରି ଗୋଟିଏ ଧାରାବାହିକ ଶିକ୍ଷା-ପ୍ରଣାଳୀ ସହଜରେ ଆବିଷ୍କାର କରାଯାଇ ପାରେ, କିନ୍ତୁ

ଯୁବକ ଅନ୍ତରର ବିଶାଳ କଳ୍ପନା ଓ ସୌନ୍ଦର୍ଯ୍ୟବୋଧ ଏଥିରେ ଆବଦ୍ଧ ହୋଇ ରହେ ନାହିଁ । ବାଲ୍ୟକାଳରୁ ଯୌବନ ପର୍ଯ୍ୟନ୍ତ ମନୁଷ୍ୟର ଶିକ୍ଷା ବିଭିନ୍ନ ସୋପାନରେ ବିଭକ୍ତ ହୋଇ ଗୋଟିଏ ବିଶିଷ୍ଟ ଓ ମହତ୍ତ୍ୱ ଲକ୍ଷ୍ୟ ଆଡ଼କୁ ଗତି କରିବା ଆବଶ୍ୟକ; କିନ୍ତୁ ଶିକ୍ଷାର ଲକ୍ଷ୍ୟ ଯେପର୍ଯ୍ୟନ୍ତ ଦେଶ ଓ କାଳର ପରିସ୍ଥିତିକୁ ଅତିକ୍ରମ କରି ମନୁଷ୍ୟର ଯଥାର୍ଥ ବିକାଶ ଦେଖାଇବା ପାଇଁ ସମର୍ଥ ହୋଇ ନାହିଁ, ସେ ପର୍ଯ୍ୟନ୍ତ ଯୁଗଧାରା ସଙ୍ଗେ ଶିକ୍ଷା-ପ୍ରଣାଳୀର ସମ୍ପର୍କ ଲାଗି ରହିଥିବ । ଶିକ୍ଷାର ଆଦର୍ଶ ସ୍ପଷ୍ଟ ସୂଚିତ ନ ହେଲେ ଯେ କୌଣସି ପ୍ରଣାଳୀର ପ୍ରଚଳନ ନିରର୍ଥକ ହେବ । ଦେଶ କିମ୍ବା ଜାତିଗତ ସ୍ୱାର୍ଥକୁ ଦୃଢ଼ରୂପେ ଅନୁସରଣ କରି ଶିକ୍ଷା-ଦାନପଦ୍ଧତି ସୃଷ୍ଟି କଲେ ଯୁବ-ଶକ୍ତିର ଉପଯୁକ୍ତ ନିୟନ୍ତ୍ରଣ ହେବ ବୋଲି ଅନେକେ ମନେ କରିପାରନ୍ତି, କିନ୍ତୁ ବାସ୍ତବିକ ତାହା ନୁହେଁ । ସ୍ରଷ୍ଟାର ମନୋବୃତ୍ତି ଉନ୍ନତ ସାହିତ୍ୟ, ଦର୍ଶନ, ବିଜ୍ଞାନ ଓ ଅନ୍ୟାନ୍ୟ କଳାମାନଙ୍କର ସାଧନ ପାଇଁ ସବୁ ଦେଶରେ ସମାନ ଥାଏ । ଜାତୀୟ ଭାବର ସୃଷ୍ଟି ଶିକ୍ଷାର ଗୋଟିଏ ଅଙ୍ଗ ହୋଇପାରେ, କିନ୍ତୁ କେବଳ ଜାତୀୟ ସ୍ୱାର୍ଥ ସାଧନ ଦିଗରେ ଏହାକୁ ପୂର୍ଣ୍ଣମାତ୍ରାରେ ପ୍ରୟୋଗ କରାଗଲେ, ଜଗତର ଅକଲ୍ୟାଣ ହୁଏ । ଶିକ୍ଷାର ପରିସର ଶ୍ରେଷ୍ଠ ହୋଇଯାଏ । ଜାତି ଜାତି ମଧ୍ୟରେ ସଂଘର୍ଷ ଚିରଦିନ ଲାଗିରହେ । ଏଥିପ୍ରତି ଦୃଷ୍ଟି ନ ଦେଇ କେବଳ ଧାରାବାହିକ ଶିକ୍ଷା ପ୍ରଣାଳୀରେ ଯୁବକର ଚିନ୍ତାଧାରାକୁ ନିୟନ୍ତ୍ରିତ କଲେ ଯୁଗଧାରାର ଅବଶ୍ୟମ୍ଭାବୀ ପରିବର୍ତ୍ତନ ବେଳେ ଯୁବକ ଆତ୍ମନିର୍ଭରଶୀଳ ହୋଇ କୌଣସି ଉନ୍ନତ କର୍ମପନ୍ଥାକୁ ଅନୁସରଣ କରିପାରେ ନାହିଁ । ଶିକ୍ଷାର ଆଦର୍ଶ ସମ୍ବନ୍ଧରେ ଆମ ଦେଶର ବିଖ୍ୟାତ ଦାର୍ଶନିକ ଓ ପଣ୍ଡିତ ସାର୍ ରାଧାକୃଷ୍ଣନ୍ ଗତ ନିଖିଳ ଭାରତବର୍ଷ ଶିକ୍ଷା ସମ୍ମିଳନୀରେ ଲକ୍ଷ୍ନୌଠାରେ ଯାହା କହିଥିଲେ, ସେଥିର କେତେକ ଅଂଶ ଉଦ୍ଧାର କରାଗଲା । ସେ କହିଥିଲେ—"No educational system can do its duty either to the society and to its pupils if it has not a clear perception of what it is aiming at, what it is setting out to teach and what thing it considers its citizens ought to know; otherwise what we teach will be both pointless and wasted.

× × × ×

There is no such thing as Proletarian Mathematics or Nazi Chemistry or Jewish Physics. Culture is great and international. Science is cosmopolitan in its essence and reality. It raises an appeal universal and not partisan or nationalist.

In education we are above all politics. The fundamental principle of human development everywhere is the same. And yet it is possible for us to impart through education a definite bias.

× × ×

Nationalism, wherever may have been its justification in times gone by, is to-day a dying creed. Changes effected by industrial revolution require us to look upon the world as a single unit and make a real community of men possible.

× × ×

The tragedy of the world is due to the persistence in the old habits of living in a new world where they have no meaning. We are told that the Allies are fighting Hitler as they fought Kaiser twenty years ago. As the sacrifice of the last generation did not bring a saner world the defeat of Hitler to-day is not likely to serve humanity better.

The hopes of the present generation are likely to be betrayed again if our vision is limited to defeating the enemies; what we have to fight is not Hitler but the sick acquisitive society with its balance of power and unco-ordinated economic enterprise and unjust social order where the pride and prosperity of a few is built upon the sham subjection of many and the unjust international order which acquiesces in the degradation of many nations.

ବର୍ତ୍ତମାନ ଜଗତର ପରିସ୍ଥିତିକୁ ଲକ୍ଷ୍ୟ ରଖି ଶିକ୍ଷାର ଗଠନପ୍ରଣାଳୀକୁ ନିୟନ୍ତ୍ରଣ କରିବା ପାଇଁ ସାର୍ ରାଧାକୃଷ୍ଣନ୍ ଯେଉଁ ଭାଷଣ ଦେଉଛନ୍ତି, ସେଥିରେ ଯୁବକ ଛାତ୍ରମାନଙ୍କର ଅନେକ ଶିକ୍ଷଣୀୟ ବିଷୟ ଅଛି । ପୂର୍ବରୁ କୁହାଯାଇଅଛି ଯେ, ଯୁବକ ତାର ଆଦର୍ଶ ନିଜେ ସୃଷ୍ଟି କରିବ, ତାର ଚିନ୍ତା ଓ କର୍ମଧାରାର ସ୍ୱଚ୍ଛନ୍ଦ ଗତିରେ କୌଣସି ଅନ୍ତରାୟ ଆସି ବାଧା ଦେବା ଉଚିତ ନୁହେଁ । କିନ୍ତୁ ବିନା ଶିକ୍ଷାରେ ଆଦର୍ଶ-ସୃଷ୍ଟି ଯୁବକ ପକ୍ଷରେ ଅସମ୍ଭବ । କେବଳ ଶିକ୍ଷା ଓ ଆଦର୍ଶର ସମ୍ବନ୍ଧ ମଧ୍ୟରେ ଯେଉଁ ବ୍ୟବଧାନଟି ରହିବ, ତାକୁ ଲୋପ କରିଦେଲେ ଯୁବକର ସ୍ୱାଧୀନ ଗତିରେ ବାଧା ପଡ଼ିବ । ଶିକ୍ଷାପ୍ରଣାଳୀର ଭିନ୍ନଭାଗତ ସଙ୍କୀର୍ଣ୍ଣତା ଦୂର କରିବା ସହଜ ନୁହେଁ, ଦେଶ ବିଶେଷର ପାରିପାର୍ଶ୍ୱିକ ଅବସ୍ଥା ଏଥିରେ ସଂପୃକ୍ତ ଥାଏ । ଯେଉଁମାନେ ଶିକ୍ଷା-ପଦ୍ଧତି ସୃଷ୍ଟି କରି ଦେଶର ଛାତ୍ରସମାଜକୁ ଶିକ୍ଷା ଦେବା ଦାୟିତ୍ୱ ବହନ କରିବେ, ସେମାନେ କୌଣସି ସ୍ୱାର୍ଥବୁଦ୍ଧିରେ ପ୍ରଭାବିତ ହେବେ ନାହିଁ । ଛାତ୍ରମାନଙ୍କ ଅଗ୍ରଗତିରେ ଶିକ୍ଷକମାନେ ପଥପ୍ରଦର୍ଶକ ହୋଇପାରନ୍ତି, କିନ୍ତୁ ସେମାନଙ୍କର ଲକ୍ଷ୍ୟ ନିର୍ଣ୍ଣୟ କରିବାରେ ହସ୍ତକ୍ଷେପ କରିବା ବାଞ୍ଛନୀୟ ନୁହେଁ । ଛାତ୍ରର ଆଦର୍ଶ-ସୃଷ୍ଟି ପାଇଁ ଶିକ୍ଷକ ସହାୟ ମାତ୍ର ହୋଇ ପାରନ୍ତି । ମନୁଷ୍ୟ ଅନ୍ତରର ଉନ୍ମୁକ୍ତ ଭାବଧାରା ସଙ୍ଗେ ଶିକ୍ଷାର ଉଦାରତା ନ ରହିଲେ ଆଦର୍ଶ ଗଠନରେ ଯେଉଁ ପ୍ରତିବନ୍ଧକ ଜନ୍ମେ ସେଥିରେ ଛାତ୍ରର ଶିକ୍ଷକଙ୍କୁ ଅନୁସରଣ କରିବାର ପ୍ରବୃତ୍ତି ଆସେ ନାହିଁ । ଯୁଗଧାରାର ପରିବର୍ତ୍ତନ ବେଳେ ଏହି ପ୍ରତିବନ୍ଧକ ଗୋଟାଏ ବିଦ୍ରୋହ ଛାତ୍ର-ସମାଜରେ ସୃଷ୍ଟି କରି ଶିକ୍ଷାର ମହତ୍ ଉଦ୍ଦେଶ୍ୟକୁ ନଷ୍ଟ କରିଦିଏ । ଆଜି ଭାରତବର୍ଷର ବିଭିନ୍ନ ବିଦ୍ୟାପୀଠରେ ଶିକ୍ଷାର୍ଥୀ ଓ ଶିକ୍ଷକମାନଙ୍କ ମଧ୍ୟରେ ଯେଉଁ ଦ୍ୱନ୍ଦ୍ୱର ସୂତ୍ରପାତ ହୋଇଅଛି, ସେଥିର ମୂଳ କାରଣ ଆଦର୍ଶଜନିତ ବୋଲି ଅନୁମିତ ହୁଏ । ଅଧିକାଂଶଙ୍କ ମତରେ ଶିକ୍ଷକମାନେ ପ୍ରାଚୀନପନ୍ଥୀ ଓ ଛାତ୍ରମାନେ ନୂତନପନ୍ଥୀ ବୋଲି ଏ ବିରୋଧର ସୂତ୍ରପାତ ଘଟିଅଛି, କିନ୍ତୁ ବାସ୍ତବିକ ଦେଖିବାକୁ ଗଲେ ସେମାନଙ୍କ ମଧ୍ୟରେ ସେପରି କୌଣସି ଶ୍ରେଣୀଗତ ପାର୍ଥକ୍ୟ ନାହିଁ । ଆଜି ପର୍ଯ୍ୟନ୍ତ ଆମ୍ଭମାନଙ୍କ ଦେଶରେ ଯେଉଁ ଶିକ୍ଷାର ପ୍ରଚଳନ କରାଯାଇଥିଲା, ସେଥିରେ ମୌଳିକତା ବେଶୀ ପରିମାଣରେ ନ ଥିଲା ଓ ଯେଉଁ ଶିକ୍ଷକମାନେ ଶିକ୍ଷାଦାନ ଦାୟିତ୍ୱ ଗ୍ରହଣ କରିଥିଲେ, ସେମାନେ ଛାତ୍ରମାନଙ୍କୁ ଯନ୍ତ୍ର ପରି ଚାଳିତ କରିବାରେ ଅଭ୍ୟସ୍ତ ଥିଲେ । ବିଶ୍ୱବିଦ୍ୟାଳୟରୁ ବର୍ଷ ଶେଷରେ କେତେଗୁଡ଼ିଏ ଛାତ୍ର ଉତ୍ତୀର୍ଣ୍ଣ କରାଇ ପାରିଲେ ସେମାନଙ୍କର ଦାୟିତ୍ୱ ଶେଷ ହୋଇ ଯାଉଥିଲା । ଶିକ୍ଷା ସଙ୍ଗେ ଆଦର୍ଶ କଥା ଦୂରେ ଥାଉ ଛାତ୍ରର ଚରିତ୍ର କିମ୍ବା ଅନ୍ୟାନ୍ୟ ଉନ୍ନତି ପ୍ରତି ସେମାନଙ୍କର ବିଶେଷ ଲକ୍ଷ୍ୟ ରହୁ ନ ଥିଲା । ଶିକ୍ଷା ପ୍ରଣାଳୀର ଏପରି ଗୋଟାଏ ପ୍ରେରଣାଶୂନ୍ୟ ପ୍ରବର୍ତ୍ତନ ବେଶୀ ଦିନ ଯୁବକ ଛାତ୍ର ପ୍ରାଣକୁ ଅଧିକାର କରିବା ସମ୍ଭବ ହେଲା ନାହିଁ ବୋଲି ଆଜି ଶିକ୍ଷକ ଓ ଛାତ୍ରସମାଜ ମଧ୍ୟରେ ଏତେ ଅଶାନ୍ତି ଘଟିଅଛି । ଦେଶର ଶାସନଗତ ପ୍ରଭାବକୁ ଏଥି ସକାଶେ ଅନେକାଂଶରେ ଦାୟୀ କରାଯାଇ ପାରେ । ଦେଶର ଯୁବଶକ୍ତିକୁ ନିୟନ୍ତ୍ରଣ କରିବା ପାଇଁ ବୈଦେଶିକ ସ୍ୱାର୍ଥ-ସଂଶ୍ଳିଷ୍ଟ ଶିକ୍ଷାପଦ୍ଧତି ଆଦୌ ଉପଯୋଗୀ ନୁହେଁ । ଭାରତୀୟ ଯୁବକ ଛାତ୍ର ଦୃଷ୍ଟିରେ ଯେ ବିପ୍ଳବ ଦେଖା ଦେଲଣି ଓ ତାର ଶିକ୍ଷକମାନଙ୍କ ପ୍ରତି ଯେପରି ଅନାସ୍ଥା ଆସିଲଣି, ତାହା ଆଉ ଦୂର ହେବ ବୋଲି ମନେ ହୁଏ ନାହିଁ । ଜଗତର ଗୋଟାଏ ମହା ପରିବର୍ତ୍ତନ ନିକଟ ହୋଇ ଆସୁଛି । ଏହି ସନ୍ଧି ସ୍ଥଳରେ ଭାରତୀୟ ଯୁବକ ଛାତ୍ରସମାଜ କାହିଁକି ବିପ୍ଳବବାଦୀ ହୋଇ ଉଠୁଛି, ଭାବିଲେ ମନରେ ସ୍ୱତଃ ଗୋଟାଏ ଆଶଙ୍କା ଉଦିତ ହୁଏ । ଛାତ୍ରମାନେ କଣ ଯଥାର୍ଥ ଶିକ୍ଷାବଳରେ ସେମାନଙ୍କର ଆଦର୍ଶ ସ୍ଥିର କରି ବିପ୍ଳବ ବରଣ କରୁଛନ୍ତି ? ବୋଧହୁଏ ସେମାନେ କୌଣସି ଦୂରଦର୍ଶିତାର ବଶବର୍ତ୍ତୀ ନ ହୋଇ କେବଳ ସାମୟିକ ଉତ୍ତେଜନା ବଶତଃ କେତେ ଜଣଙ୍କର ପ୍ରରୋଚନାରେ ଏପରି ବିଭ୍ରାଟ ସୃଷ୍ଟି କରିବାକୁ ଯାଉଛନ୍ତି । ସେମାନଙ୍କର ଉନ୍ନତ କଳ୍ପନାବଳରେ ଯଦି ଥରେ ଅତୀତ ଆଦର୍ଶର ମୌଳିକତା ଆତ୍ମ-ପ୍ରକାଶ କରନ୍ତା, ତାହାହେଲେ ଯୁବ-ଶକ୍ତି ହଠାତ୍ ଏତେ ଚଞ୍ଚଳ ହୋଇ ଉଠନ୍ତା ନାହିଁ । କେବଳ ଶିକ୍ଷକମାନଙ୍କ ଉପରେ ଦୋଷାରୋପ କରି ଶିକ୍ଷାନୁଷ୍ଠାନମାନଙ୍କରେ ବିଦ୍ରୋହ ଆଚରଣ କରିବାଦ୍ୱାରା ଯୁବକର

ଶାନ୍ତ ଭାବନାର ପରିଚୟ ମିଳେ ନାହିଁ । ଯେଉଁ ଶିକ୍ଷା ଆଦର୍ଶ-ଗଠନ ଓ ଯୁବକର ଆତ୍ମବିକାଶ ଦିଗରେ ଅସମର୍ଥ ତାକୁ ସମୂଳେ ପରିବର୍ତ୍ତନ ନ କଲେ ପରିଣାମ ସମସ୍ତ ଦେଶବାସୀଙ୍କୁ ଭୋଗ କରିବାକୁ ପଡ଼ିବ । ଅସଂଯତ ଯୁବଶକ୍ତି ଦେଶ ଓ ଜାତିର ମଙ୍ଗଳ ସାଧନ କରିପାରିବ ନାହିଁ । ଏ ସମ୍ପର୍କରେ କଟକ କଲେଜର ଅଧ୍ୟକ୍ଷ ଶ୍ରୀଯୁକ୍ତ ପରିଜା ଶିକ୍ଷିତ ଯୁବକର ଅନ୍ତର୍ନିହିତ ଦୁର୍ବଳତାକୁ ଲକ୍ଷ୍ୟ କରି ତାଙ୍କର ଗତ ବାର୍ଷିକ ବିବରଣୀରେ ଯାହା ଉଲ୍ଲେଖ କରିଛନ୍ତି, ସେଥିର କିୟଦଂଶ ନିମ୍ନରେ ଉଦ୍ଧାର କରାଗଲା । "A University post like the headship of an institution of this type is an observation tower from which the teacher, comming in contact with generations of students may note the change in the mental outlook as time passes on. I have it from students themselves that the traditional religious outlook no longer exist in the minds of a larger section of the student-population. God does not enter into their thought and self with a capital has taken His place. ଯୁବକର ସ୍ୱାର୍ଥ-ପରତନ୍ତ୍ର-ଭାବ ଜୀବନର ଉନ୍ନତ ବିକାଶ ଆଣିପାରିବ ନାହିଁ । ତାର ଆଦର୍ଶ ସ୍ୱତଃ ଭ୍ରଷ୍ଟ ହୋଇଯିବ । ଯୁଗପରିବର୍ତ୍ତନର ବୈପ୍ଳବିକ ଧାରାରେ ତାର ସ୍ୱାତନ୍ତ୍ର୍ୟ ଲୋପ ହୋଇଯିବ । ନବଯୁଗର ଆବିର୍ଭାବରେ ତାକୁ ଜଗତ ଅଗ୍ରଦୂତ ବୋଲି ଗ୍ରହଣ କରିବ ନାହିଁ ।

# ଆକର୍ଷଣର ଅଭିବ୍ୟକ୍ତି

ଜଗତରେ ସମସ୍ତେ ଆକର୍ଷଣ ଅନୁଭବ କରୁଛନ୍ତି । ଏଥିରେ ପ୍ରକାରଭେଦ ଥାଇ ପାରେ, କିନ୍ତୁ ଏହା ନ ଥିଲେ ସୃଷ୍ଟିର ଲୀଳା ଅସହନୀୟ ଶୁଷ୍କତାରେ ପରିଣତ ହୁଅନ୍ତାଣି । ସାମାନ୍ୟ ଧୂଳିକଣା ବାୟୁ ଦ୍ୱାରା ଆକର୍ଷିତ ହୋଇ ବହୁଯୁଗ ପରେ ବିରାଟ ଭୂଧରରେ ପରିଣତ ହେଲାବେଳେ କିମ୍ବା ଅତି ସୂକ୍ଷ୍ମ ପୁଷ୍ପରେଣୁ ସ୍ଥାନାନ୍ତରରେ ମିଶିଯାଇ ମୁହୂର୍ତ୍ତିକର ମଳୟ ହିଲ୍ଲୋଳରେ ଏକ କମନୀୟ ସୁଗନ୍ଧର ପ୍ଲାବନ ଆଣିଲାବେଳେ ଆକର୍ଷଣର ସେହି ସରଳ ଓ ଅଲକ୍ଷିତ ଗତିକୁ କେହି ପ୍ରାୟ ଦେଖନ୍ତି ନାହିଁ । ଜଳ, ସ୍ଥଳ ଓ ଅନ୍ତରୀକ୍ଷରେ ଏହାର ପ୍ରଭାବ ସର୍ବଦା ବିଦ୍ୟମାନ ରହିଛି । ପକ୍ଷୀର କଳରବରେ, ସଙ୍ଗୀତର ମୂର୍ଚ୍ଛନାରେ, ମେଘର ଗର୍ଜନରେ, ଜଳଧିର ଉଚ୍ଛ୍ୱାସରେ, ଭୂକମ୍ପର ପ୍ରଳୟ କମ୍ପନରେ ଓ ନୃଶଂସ ହତ୍ୟାକାଣ୍ଡର ତାଣ୍ଡବ ଲୀଳାରେ ଆକର୍ଷଣ ତାର ବର୍ତ୍ତମାନତା ଘୋଷଣା କରୁଛି । ସୃଷ୍ଟି, ସ୍ଥିତି ଓ ଲୟ ଆକର୍ଷଣର ପ୍ରଭାବରେ ଚାଳିତ ହେଉଛି । ଆକର୍ଷଣର ମୂଳାଧାର ଏକ; କିନ୍ତୁ ଜଗତର ବହୁମୁଖୀ ଅଭିବ୍ୟକ୍ତିରେ ଏହା ବିଭିନ୍ନ ପରି ଜଣାପଡ଼େ । ଆଦମ କାଳରୁ ଆଜିପର୍ଯ୍ୟନ୍ତ ଜ୍ଞାନବିଜ୍ଞାନର ଉନ୍ନତ ସାଧନା ଆକର୍ଷଣର ସାଧାରଣ ଓ ଅସାଧାରଣ ଅଭିବ୍ୟକ୍ତିସବୁକୁ ଅନୁସରଣ କରି ଆସିଲାଣି; କିନ୍ତୁ ଏ ଅନୁସୃତିର ମାର୍ଗକୁ ଗୋଟାଏ କରି ପାରି ନାହିଁ ।

ଭିନ୍ନତାରେ ଏକତାର ସଂଯୋଜକ ସୂତ୍ର ଦେଖିବା ସମସ୍ତଙ୍କ ପକ୍ଷରେ ସମ୍ଭବ ନୁହେଁ । ଜଗତର ଜଟିଳ ଗତିରେ ମନୁଷ୍ୟର ଦୃଷ୍ଟିରେଖା ସାଧାରଣତଃ ସଙ୍କୁଚିତ ହୋଇଯାଏ । ଗୋଟାଏ ବିରାଟ ଅଭିବ୍ୟକ୍ତିରେ ଜଗତର ଯାବତୀୟ ଆକର୍ଷଣର କେନ୍ଦ୍ର ଏକ ବୋଲି ତାକୁ ଦେଖାଯାଏ ନାହିଁ । ମନୁଷ୍ୟର ବିଷୟାକୃଷ୍ଟ ମନ ବଡ଼ ଦୁର୍ବଳ । ସବୁବେଳେ ଶଙ୍କିତ ଭାବରେ ଜୀବନ-ଯାପନ କରିବା ଦ୍ୱାରା ସେ ଏପରି ଗୋଟାଏ ହୀନ ଅବସ୍ଥାର ଅଧୀନ ହୋଇ ପଡ଼େ ଯେ, କେବଳ ସ୍ୱାର୍ଥର ଆକର୍ଷଣଟା ତାକୁ ସବୁଠାରୁ ବଡ଼ ଦେଖାଯାଏ । ଆକର୍ଷଣର ପ୍ରଭାବ ଜୀବନର ଗତିକୁ ସ୍ୱତନ୍ତ୍ର ଧାରାରେ ବହିବାକୁ ସୁବିଧା ଦେଲେ ସୁଦ୍ଧା ଅନେକ ସମୟରେ ଏଥିର ବ୍ୟତିକ୍ରମ ଦେଖାଯାଇଥାଏ । ମନୁଷ୍ୟର ସାରା ଜୀବନର ଅନୁସୃତ ଗତି ମୁହୂର୍ତ୍ତିକେ ପରିବର୍ତ୍ତିତ ହେଲାବେଳେ ବ୍ୟତିକ୍ରମ-ନିୟମର ଏକ ପରିସ୍ଫୁଟ ଆଭାସ ମିଳେ । ପରିବର୍ତ୍ତନ-ଧାରାରେ ଜୀବନର ଭିନ୍ନତା ଏକତାର ଅନୁବର୍ତ୍ତୀ ବୋଲି ପ୍ରମାଣିତ ହୋଇପାରେ । ଏଥିପାଇଁ ସାଧନାର ଦୃଢ଼ତା ଥିବା ଆବଶ୍ୟକ । ଜୀବନଟା ଗୋଟାଏ ଆକର୍ଷଣର ଅଭିବ୍ୟକ୍ତି । ଆକର୍ଷଣର ତାରତମ୍ୟ ଓ ଦୃଷ୍ଟିରେଖାର ସଙ୍କୀର୍ଣ୍ଣତାରେ ଏକର ବହୁତ୍ୱ ଜଗତକୁ ମୁଗ୍ଧ କରି ରଖିଛି ଓ ଜୀବନର ଗତିକୁ ମଧ୍ୟ ବହୁମୁଖୀ କରି ଦେଇଛି ।

ବିଶ୍ୱ-ପ୍ରକୃତିରେ ଜଗତର ଅଭିବ୍ୟକ୍ତି ଯେଉଁ ଆକର୍ଷଣ ପ୍ରଭାବରୁ ସମ୍ଭବ ହୋଇଅଛି, ଜୀବନଟା ମଧ୍ୟ ସେଥିରୁ ବାଦ୍ ନୁହେଁ । ଗୋଟାଏ ବିରାଟ ଆକର୍ଷଣର ପ୍ରଭାବ ନାନା ଭାବରେ ଚାଳିତ ହେଉ ନ ଥିଲେ ବିଶ୍ୱର ବିଶାଳତାରେ ବୈଚିତ୍ର୍ୟ ପାଇଁ ସ୍ଥାନ ଆଦୌ ରହନ୍ତା ନାହିଁ । ବୈଚିତ୍ର୍ୟ ନ ଥିଲେ ଜୀବନର ସୌନ୍ଦର୍ଯ୍ୟବୋଧ ସହଜରେ ଆସନ୍ତା ନାହିଁ । ଜୀବନର ଗତି ଜଟିଳ ହୋଇପାରେ, କିନ୍ତୁ ଏହି ଜଟିଳତା ମଧ୍ୟରେ ଯେ ସାମଞ୍ଜସ୍ୟଟିକିକ ରହିଛି, ତାକୁ ଅନୁସରଣ କଲେ ସୃଷ୍ଟିର ବୈଚିତ୍ର୍ୟ ମଧ୍ୟରେ ଏକ ଅସୀମ ସୌନ୍ଦର୍ଯ୍ୟର ସନ୍ଧାନ ମିଳିପାରେ । ପ୍ରତ୍ୟେକ ଜୀବନ ବୈଚିତ୍ର୍ୟର ଗୋଟିଏ ଗୋଟିଏ ପ୍ରତୀକରୂପେ ସୃଷ୍ଟି ଧାରାରେ ପ୍ରବାହିତ ହୋଇ ଚାଲିଛି । ସତ୍ୟ, ଶିବ ଓ ସୌନ୍ଦର୍ଯ୍ୟର ମୂଳାଧାର ଏକ । ଜୀବନର ବୈଚିତ୍ର୍ୟରେ ଏମାନଙ୍କ ବିକାଶ ସବୁବେଳେ ଦୃଷ୍ଟିପାତ କରି ଚାଲିଯାଉଛି, ଅଥଚ କେହି ସହଜରେ ଅନୁସରଣ କରି ପାରୁ ନାହିଁ । ଧର୍ମ, ନୀତି, ସମାଜ ପ୍ରଭୃତି ଅଶେଷ ବିପ୍ଲବର ସମ୍ମୁଖୀନ ହେଲାଣି; କିନ୍ତୁ ମାନବ ଜୀବନ ଉପରେ ପ୍ରକୃତିର ଯେଉଁ ଆକର୍ଷଣ ପ୍ରଭାବ

ରହିଛି, ତଦ୍ୱାରା ଏମାନଙ୍କୁ ଜୀବନରୁ ବିଚ୍ଛିନ୍ନ କରି ହେଉ ନାହିଁ । ବିପ୍ଳବଟାଏ ଆସେ—ଗୋଟାଏ ନୂତନ ଯୁଗ ସୃଷ୍ଟି କରି ଚାଲିଯାଏ । ମନୁଷ୍ୟର ରୀତିନୀତି ବଦଳିଯାଏ । ଜାତି ଓ ସମାଜ ଭିନ୍ନ ପନ୍ଥା ଅନୁସରଣ କରେ; କିନ୍ତୁ ଜୀବନର ଗତିରେ ଭିନ୍ନତା ଆସେ ନାହିଁ । ପ୍ରକୃତିର ଆକର୍ଷଣ ସବୁବେଳେ ଜୀବନକୁ ଚିର ନୂତନ କରିବା ପାଇଁ ଟାଣି ରଖିଛି । ପରିବର୍ତ୍ତନ ଛଳରେ ଯେଉଁ ଭିନ୍ନତା ଆସେ, ତାହା ବାସ୍ତବତାର ବହୁ ଦୂରରେ ରହିଯାଏ । କୃତ୍ରିମତା ବେଶୀ ଦିନ ତିଷ୍ଠିପାରେ ନାହିଁ, ତେଣୁ ଆଜି ଜଗତରେ ଯାହା ସତ୍ୟ, ଶିବ ଓ ସୌନ୍ଦର୍ଯ୍ୟକୁ ଅନାଦର କରି ଗୋଟାଏ ବାହ୍ୟ ଆଡ଼ମ୍ବରରେ ମାନବ ପ୍ରାଣକୁ ମୋହିତ କରୁଛି, ତାହାର ସ୍ଥାୟିତ୍ୱ ପ୍ରାକୃତିକ କାର୍ଯ୍ୟଦ୍ୱାରା ଦିନେ ପୁଞ୍ଛିଯିବ । ହୁଏତ ଭିନ୍ନଭାବରେ ଆଉ ଗୋଟିଏ କୃତ୍ରିମ ପରିବର୍ତ୍ତନ ଆସି ମାନବ ଜାତିକୁ କିଛିଦିନ ପାଇଁ ଆକୃଷ୍ଟ କରି ରଖିପାରେ । ବିଶ୍ୱ ପ୍ରକୃତିରେ ଆକର୍ଷଣର କେନ୍ଦ୍ରଟି ଏପରି ସଂଲଗ୍ନ ହୋଇ ରହିଛି ଯେ, ମନୁଷ୍ୟ କଥା ଦୂରେ ଥାଉ ପ୍ରତ୍ୟେକ ସୃଷ୍ଟ-ବସ୍ତୁର ଗତି ସେହି କେନ୍ଦ୍ର ଆଡ଼କୁ ନିଶ୍ଚୟ ହେବ । କେନ୍ଦ୍ରର ଉପଲବ୍ଧି ମନରୁ ବସ୍ତୁତ୍ୱକୁ ଦୂର କରି ଦେଲାବେଳେ ସଂସାରର ଜଟିଳତା ସେଥି ସଙ୍ଗେ ଲୋପ ପାଇଯାଏ ।

ଜଗତର ବୈଚିତ୍ର୍ୟ ସଙ୍ଗେ ଜୀବନର ଆକର୍ଷଣ ଚିରଦିନ ସମ୍ପୃକ୍ତ ରହିବ । ଜୀବ-ସୃଷ୍ଟିର ଏହା ଗୋଟିଏ ବିଶେଷତ୍ୱ । ଏହି ବିଶେଷତ୍ୱଟିକିକ ନ ଥିଲେ ଜୀବର ଗତି-ପଥ ସହଜରେ ଧରା ପଡ଼ନ୍ତା ନାହିଁ । ଯାବତୀୟ ଜ୍ଞାନ-ବିଜ୍ଞାନ ମୂଳରେ ଏହାର କାର୍ଯ୍ୟକାରିତା ଲକ୍ଷ୍ୟ କରାଯାଇ ପାରେ । ଚୁମ୍ବକର ଲୌହକୁ ଆକର୍ଷଣ କରିବାରେ ଯେ ବିଶେଷତ୍ୱ ଅଛି, ଜୀବଜଗତରେ ବିଶେଷତଃ ମାନବର କର୍ମ ପ୍ରଚେଷ୍ଟାରେ ସେହିପରି ଗୋଟାଏ ବିଶେଷତ୍ୱ ତାକୁ ଅନ୍ୟମାନଙ୍କଠାରୁ ପୃଥକ୍ ରଖିଥାଏ । ଆକର୍ଷଣର ମୂଳାଧାର ଏକ ହେଲେ ସୁଦ୍ଧା ଜଗତର ବୈଚିତ୍ର୍ୟ ଉପଲବ୍ଧି କରିବା ପାଇଁ ଯେଉଁ ପାର୍ଥକ୍ୟ-ଜ୍ଞାନ ଜନ୍ମେ, ସେଥିରେ କର୍ମମାର୍ଗ ବିଭିନ୍ନ ହୋଇପଡ଼େ । କର୍ମ-ମାର୍ଗର ଭିନ୍ନତାକୁ ଦେଖି ଅନେକେ ସନ୍ଦିହାନ ହୋଇ ପଡ଼ନ୍ତି । ଜୀବନର ଲକ୍ଷ୍ୟ ଧରି ନ ପାରି ଜଗତର ଗତିକୁ ଜଟିଳ ମନେ କରିବା ଠିକ୍ ନୁହେଁ । ଅଧିକାଂଶ ସମୟରେ ଧର୍ମ ଓ ନୀତି ନାମରେ ଯେଉଁ ସବୁ ବିପ୍ଳବର ସୂତ୍ରପାତ କରାଯାଏ, ସେଥିରେ କୌଣସି ସାରମର୍ମ ନ ଥାଏ । ଜୀବନର ସରସତା ସଙ୍ଗେ କୌଣସି ନିର୍ଦ୍ଦିଷ୍ଟ ଧର୍ମ କିମ୍ବା ନୀତିବାଦର ସମ୍ପର୍କ ନାହିଁ । ସତ୍ୟ ଓ ସୌନ୍ଦର୍ଯ୍ୟର ଆକର୍ଷଣ ମାନବ ପ୍ରାଣରେ ଯେପରି ଅଭିବ୍ୟକ୍ତି ଆଣେ, ସେହିପରି ତାର ବୈଚିତ୍ର୍ୟାନୁସରଣ ହୋଇଥାଏ । ଧର୍ମ କିମ୍ବା ନୀତିଗତ ପାର୍ଥକ୍ୟକୁ ଏଥିରେ ଆରୋପ କରି ଦୋଷ ଗୁଣ ନିର୍ଣ୍ଣୟ କରିବା ଉଚିତ ନୁହେଁ ।

ପ୍ରତ୍ୟେକ ମନୁଷ୍ୟର କିଛି ବିଶେଷତ୍ୱ ଥାଏ । ଅନେକେ ସେମାନଙ୍କର ବିଶେଷତ୍ୱ ଜାଣି ନ ପାରି ଜୀବନର ସାର୍ଥକତା ନଷ୍ଟ କରି ଦିଅନ୍ତି । ଜଗତର ବୈଚିତ୍ର୍ୟ ସଙ୍ଗେ ଜୀବନର ଗତିକୁ ମିଳାଇ ନେଲାବେଳେ ବିଶେଷତ୍ୱ ପ୍ରତି ଦୃଷ୍ଟି ଦେବା ଆବଶ୍ୟକ । ଜଗତର ଯାବତୀୟ କାର୍ଯ୍ୟ ସମ୍ପାଦନ ପାଇଁ ମନୁଷ୍ୟର କ୍ଷମତା ଥିବା ଆବଶ୍ୟକ । କାରଣ କେତେବେଳେ କିପରି କର୍ମ ଆସି ସମ୍ମୁଖରେ ଦେଖାଦେବ, ତହିଁର କିଛି ଠିକଣା ନାହିଁ । କର୍ମର ମୁଖ୍ୟ ଓ ଗୌଣ ଅବସ୍ଥା ସମସ୍ତଙ୍କ ଦୃଷ୍ଟିରେ ଦେଖାଯାଏ ନାହିଁ । ଅତି ନଗଣ୍ୟ କର୍ମ ସମ୍ପାଦନରେ ଯେଉଁ ଉତ୍ସାହ ବ୍ୟୟିତ ହୁଏ, ତଦପେକ୍ଷା ସହସ୍ର ଗୁଣ ଉତ୍ସାହ ମହତ୍ କାର୍ଯ୍ୟରେ ବ୍ୟୟ କରାଯାଏ । କର୍ମୀର ସ୍ଥିର ବୁଦ୍ଧି ଥିଲେ ସେ ତାର ବିଶେଷତ୍ୱକୁ ଲକ୍ଷ୍ୟ ରଖି ସମସ୍ତ କାର୍ଯ୍ୟ ଯଥାର୍ଥ ଭାବରେ କରିଯାଏ । ଜଗତର ଶ୍ରେଷ୍ଠ କର୍ମବୀରମାନଙ୍କର କର୍ମ-ପ୍ରେରଣାରେ ଏଥିର ନିଦର୍ଶନ ମିଳେ । ଜୀବନରେ ସେମାନଙ୍କର ନାନା ବାଧା ଆସେ । ହୀନ କର୍ମୀମାନେ ଅଯଥା ଦୁରଭିସନ୍ଧି ସୃଷ୍ଟି କରି ସେମାନଙ୍କୁ ଲକ୍ଷ୍ୟଭ୍ରଷ୍ଟ କରିବାକୁ ଚେଷ୍ଟା କରନ୍ତି, କିନ୍ତୁ ସେମାନଙ୍କ ଅନ୍ତରରେ ଯେଉଁ ଶାନ୍ତ ସୌନ୍ଦର୍ଯ୍ୟର ପ୍ରବାହଟି ଖେଳୁଥାଏ, ତାହା କଦାପି ଲୁପ୍ତ ହୁଏ ନାହିଁ । ମହତ୍ ଭାବଧାରା ଭୂଷିତ କାର୍ଯ୍ୟାବଳୀ ଦ୍ୱାରା ବେଶୀ ଦିନ କଳୁଷିତ ହୋଇପାରେ ନାହିଁ । କର୍ମବୀରର ହୃଦୟରେ ସୌନ୍ଦର୍ଯ୍ୟର ଆକର୍ଷଣ ଏପରି ଗୋଟାଏ ଉତ୍କୃଷ୍ଟ ମାର୍ଗ ଖୋଲିଦିଏ ଯେ, ସଂସାରର ଆବର୍ଜନା ସ୍ୱତଃ ଅପହୃତ ହୋଇଯାଏ ଓ ସେ ସଂସାରର ଭଲ ମନ୍ଦ ମଧ୍ୟରେ ଲକ୍ଷ୍ୟାଭିମୁଖୀ ହୋଇ ଗତି କରୁଥାଏ ।

ଜୀବନର ପ୍ରତ୍ୟେକ ଆକର୍ଷଣର ଅଭିବ୍ୟକ୍ତିରୁ ମନୁଷ୍ୟକୁ ବିଚାର କରିବା ଉଚିତ ନୁହେଁ । ଅଧିକାଂଶ ସମୟରେ ମନୁଷ୍ୟହୃଦୟରେ କ୍ଷୁଦ୍ର କାମନାସବୁ ଜାଗତିକ କର୍ମ ପରିଖାରେ ପ୍ରକାଶିତ ହୋଇଥାଏ । ସାଧାରଣ ସଂସାରବାସୀ ଏଥିରେ

ବିଚଳିତ ହୋଇ ପ୍ରକୃତ କର୍ମୀକୁ ଚିହ୍ନି ପାରେ ନାହିଁ । ଅଥଚ ଅନେକ ହୀନକାମନା-ପରତନ୍ତ୍ର ବ୍ୟକ୍ତି ମହତ୍ତ୍ୱ ଦେଖାଇବା ଛଳରେ ନିଜହୃଦୟର ଅଭିବ୍ୟକ୍ତିକୁ ଗୋପନ ରଖନ୍ତି ଓ ଏପରି ଗୋଟାଏ ବାହ୍ୟ କର୍ମଚିତ୍ର ପ୍ରକାଶ କରନ୍ତି, ଯଦ୍ୱାରା ସେମାନେ ସଂସାରରେ ବଡ଼ ବୋଲି ବିବେଚିତ ହୁଅନ୍ତି । ଧାରାବାହିକ କର୍ମ-ପ୍ରବାହରେ ଉଚ୍ଚ ଓ ନୀଚ କର୍ମୀ ମଧ୍ୟରେ ପାର୍ଥକ୍ୟ ଜଣାଗଲେ ସୁଦ୍ଧା ଉପଯୁକ୍ତ ଦର୍ଶକ ଅଭାବରୁ ସଂସାରରେ ମହତ୍ତର ପରିଚୟ ବିଳମ୍ବରେ ଘଟେ । କ୍ଷୁଦ୍ର ଘଟଣାବଳୀମାନଙ୍କରେ ଶ୍ରେଷ୍ଠ କର୍ମୀର କାର୍ଯ୍ୟାନ୍ୱେଷଣ ସବୁବେଳେ ମହତ୍ତ୍ୱର ନିଦର୍ଶନ ଦେଖାଇପାରେ ନାହିଁ । ତେଣୁ ସାଧାରଣଙ୍କ ପକ୍ଷରେ ମହତ୍ତ୍ୱର ଧାରଣା ସହଜରେ ସମ୍ଭବ ହୁଏ ନାହିଁ । କର୍ମୀ ହୃଦୟର ଗୋଟାଏ ବାହ୍ୟ ଆକର୍ଷଣ ଦେଖି ତାଙ୍କୁ ଇତର ବୋଲି ବିବେଚନା କରିବା ଉଚିତ ନୁହେଁ । ଜଗତର କର୍ମବୀରମାନଙ୍କ ଚରିତ୍ରରେ କୌଣସି କଳଙ୍କର କାଳିମା ଥାଇପାରେ, କିନ୍ତୁ ତଦ୍ୱାରା ସେମାନଙ୍କ ବିଚାର କରାଯାଏ ନାହିଁ । ଯେଉଁମାନେ ମହତ ଓ ଯେଉଁମାନଙ୍କର ଦାନ ଜଗତରେ ଅତୁଳନୀୟ, ସେମାନଙ୍କୁ କଳଙ୍କର ଦୋହାଇ ଦେଇ ସାଧାରଣ ଶ୍ରେଣୀଭୁକ୍ତ କଲେ ମହତର ବାସ୍ତବ ଅନୁଭୂତି ସେହି କଳଙ୍କର କାଳିମାରେ ଆବୃତ ହୋଇ ରହିଯାଏ ।

ହୃଦୟର ଅଭିବ୍ୟକ୍ତିରେ ସୌନ୍ଦର୍ଯ୍ୟର ପ୍ରଚ୍ଛନ୍ନ ପ୍ରକାଶ ସମସ୍ତଙ୍କ ଦୃଷ୍ଟିରେ ଧରା ପଡ଼େ ନାହିଁ । ଅତି ମାତ୍ରାରେ ବିଷୟାକୃଷ୍ଟ ମନ ସଂସାରର ଜଞ୍ଜାଳ ମଧ୍ୟରେ ଏପରି ଜଡ଼ିତ ଥାଏ ଯେ, ସୌନ୍ଦର୍ଯ୍ୟ ବୋଧ ପାଇଁ ତାକୁ ପ୍ରାୟ ଆଦୌ ଅବସର ମିଳେ ନାହିଁ । ବିଷୟଲୋଭରେ ମନ ଯେତେବେଳେ ଇତସ୍ତତଃ ହୋଇପଡ଼େ, ସେତେବେଳେ ହୃଦୟର ନିଭୃତ ସୌନ୍ଦର୍ଯ୍ୟଉତ୍ସ ଧୀରେ ଧୀରେ ବନ୍ଦ ହୋଇ ଆସେ । କେବଳ ସୌନ୍ଦର୍ଯ୍ୟର ଗୋଟାଏ ରୁଚି ମନକୁ ଅସ୍ଥିର କରେ । ଜୀବନର ଅବଲମ୍ବନ ବାସ୍ତବତାକୁ ଛାଡ଼ିଦେଲେ ଲକ୍ଷ୍ୟ ଅସ୍ପଷ୍ଟ ହୋଇଯାଏ । ମନୁଷ୍ୟ ଆଉ ନିଜର ଗତି ଜାଣିପାରେ ନାହିଁ । ତାର କର୍ମ-ସମ୍ପାଦନର ବିଶେଷତ୍ୱ ମଧ୍ୟ ଜଗତର ବୈଚିତ୍ର୍ୟ ସଙ୍ଗେ ସମାନତା ରକ୍ଷା କରିପାରେ ନାହିଁ । ସେ ଗୋଟାଏ ଗଡ୍ଡଳିକାପ୍ରବାହରେ ଭାସିଯାଇ ନିଜକୁ ଭ୍ରଷ୍ଟ କରିଦିଏ । ଆଜି ପୃଥିବୀର ସଭ୍ୟତମ ଜାତିମାନଙ୍କର କାର୍ଯ୍ୟକୁଶଳତା ଗୋଟାଏ ଉନ୍ନତ ସୋପାନରେ ପହଞ୍ଚିଲାଣି ବୋଲି ସମସ୍ତେ ଅକୁଣ୍ଠିତ ଭାବରେ କହିବେ; କିନ୍ତୁ ସେମାନଙ୍କର ଜାତୀୟ ଜୀବନ ବାସ୍ତବ ସୌନ୍ଦର୍ଯ୍ୟ ଆଡ଼କୁ କିପରି ଭାବରେ ଗତି କରୁଛି, ନିର୍ଣ୍ଣୟ କରି ହେବ ନାହିଁ । ଜଣକର ଇଙ୍ଗିତକୁ ଅନୁସରଣ କଲେ କିମ୍ବା ପାଶବିକ ଶକ୍ତି ପରୀକ୍ଷାରେ ଶ୍ରେଷ୍ଠତ୍ୱ ଦେଖାଇଲେ ସୌନ୍ଦର୍ଯ୍ୟାନୁଭୂତି ଜନ୍ମେ ନାହିଁ । ଯନ୍ତ୍ରର ଚାଳନା ପରି ଜୀବନର ଗତି ହେଲେ ସୌନ୍ଦର୍ଯ୍ୟ ଗୋଟାଏ କୃତ୍ରିମତାରେ ଆଚ୍ଛନ୍ନ ହୋଇପଡ଼େ । ପରାକ୍ରମଶାଳୀ ଜାତିର କାର୍ଯ୍ୟପ୍ରଣାଳୀରେ ଗୋଟାଏ ସମୂହ ଆକର୍ଷଣର ପ୍ରଭାବ ଦେଖାଯାଏ; କିନ୍ତୁ ଏହାର ଅଭିବ୍ୟକ୍ତି ପାଇଁ ଜଣେ ମହାମନା ପୁରୁଷର ଶକ୍ତି ନିୟୋଜିତ ହୋଇଥାଏ । ଜଣେ ହିଟ୍‌ଲର କିମ୍ବା ଜଣେ ମୁସୋଲିନୀ ଜାତୀୟ ଭାବଧାରାରେ ଯେ ଉନ୍ନତ ଭାବ ଖେଳାଇଦିଅନ୍ତି, ତାହା ବ୍ୟକ୍ତିଗତ ଜୀବନକୁ କେତେକ ପରିମାଣରେ ମାତ୍ର ଅଧିକାର କରିଥାଏ । କେବଳ ଜଣେ ଶକ୍ତିମାନର ଆଦେଶ ପାଳନରେ ଜାତୀୟ ଜୀବନର ଉଦ୍‌ବୋଧନ ଆସିଲେ ସୁଦ୍ଧା ସମୂହ ଜାତିର ସୌନ୍ଦର୍ଯ୍ୟବୋଧ ଜଣାଯାଏ ନାହିଁ । ସୌନ୍ଦର୍ଯ୍ୟର ବିକାଶ ପାଇଁ ଶାନ୍ତି-ପ୍ରତିଷ୍ଠା ନିତାନ୍ତ ଆବଶ୍ୟକ । ବିଭିନ୍ନ ଜାତି-ସଂଘର୍ଷରେ ଆକର୍ଷଣର ଅଭିବ୍ୟକ୍ତି, ହିଂସା, ଦ୍ୱେଷ ପ୍ରଭୃତି ମାନବର ପାଶବିକ ପ୍ରବୃତ୍ତିମାନଙ୍କରେ ଆବଦ୍ଧ ହୋଇ ରହେ । ତେଣୁ ସତ୍ୟ ଓ ସୌନ୍ଦର୍ଯ୍ୟର ଉପଲବ୍ଧି ସହଜ ହୁଏ ନାହିଁ । ସୌନ୍ଦର୍ଯ୍ୟର ଅନୁଭୂତି ହୃଦୟର ଶାନ୍ତ ଅବସ୍ଥାରେ ସମ୍ଭବ ହୋଇଥାଏ ।

ଜଗତରେ ଐଶ୍ୱର୍ଯ୍ୟର ଆକର୍ଷଣ ସବୁଠାରୁ ବେଶୀ । କିଏ କିପରି ଭାବରେ ଐଶ୍ୱର୍ଯ୍ୟକୁ ଗ୍ରହଣ କରିବା ପାଇଁ ଅଗ୍ରସର ହେଉଛି, କଳନା କରି ହୁଏ ନାହିଁ । ଦରିଦ୍ରର ଦାରିଦ୍ର୍ୟ ଓ ବିଭବଶାଳୀର ବିଭବ ମଧ୍ୟରେ ଗୋଟାଏ ବାହ୍ୟିକ ପାର୍ଥକ୍ୟ ଅଛି; କିନ୍ତୁ ସେମାନଙ୍କର ଅନ୍ତର ଅବଲୋକନ କଲେ ଲାଳସାର ଯେ ଛବିଟି ପ୍ରକଟିତ ହୁଏ, ସେଥିରେ ଦୁହେଁ ଏକଶ୍ରେଣୀଭୁକ୍ତ ହୋଇଯାନ୍ତି । ବାହାରର ଅଭିବ୍ୟକ୍ତିଟା ସାଧାରଣ ଦୃଷ୍ଟିରେ ଭିନ୍ନ ଭାବରେ ପ୍ରତିପନ୍ନ ହୁଏ । ଅନ୍ତରର ଅନୁଭୂତି ସାଂସାରିକ ଅବଲମ୍ବନରେ ଲିପ୍ତ ହୋଇଗଲେ ମନୁଷ୍ୟ ଯେତେ ଉନ୍ନତ ହେଲେ ସୁଦ୍ଧା ଅସ୍ଥାୟୀ ଆକର୍ଷଣରେ ଆକୃଷ୍ଟ ହୁଏ । ଜଗତର ସାଧାରଣ କର୍ମସମ୍ପାଦନରେ କର୍ମୀର କର୍ମପ୍ରେରଣା କୌଣସି ଅସ୍ଥାୟୀ ବିଷୟ-ମୋହରୁ ଉତ୍ପତ୍ତି ଲାଭ କରିଥାଏ । ଐଶ୍ୱର୍ଯ୍ୟର ଜଡ଼ତ୍ୱ ଏଥି ସକାଶେ ସମ୍ପୂର୍ଣ୍ଣ ଦାୟୀ । ଐଶ୍ୱର୍ଯ୍ୟର ଆକର୍ଷଣ ଯେତେବେଳେ ବସ୍ତୁଜଗତକୁ ଛାଡ଼ିଦେଇ ଶୂନ୍ୟତାରେ ତାର ଅଭିବ୍ୟକ୍ତି ଲୋଡ଼େ, ସେତେବେଳେ ଜୀବନର ଗତି ବାସ୍ତବତା ଅଭିମୁଖୀ ହୁଏ । ସାଂସାରିକ ଅବଲମ୍ବନରେ ଯେ ଆକର୍ଷଣ ଅନୁଭୂତ ହୁଏ, ତାହା ପୂର୍ଣ୍ଣମାତ୍ରାରେ ମନୁଷ୍ୟର ଗତିପଥର ବିରୋଧୀ ନୁହେଁ । ପକ୍ଷାନ୍ତରରେ ଏହା ଅନେକ ସମୟରେ ମନୁଷ୍ୟକୁ ଭଲ

ଭାବରେ ଅଗ୍ରସର ହେବା ପାଇଁ ସୁବିଧା ହୁଏ । ଅନ୍ତରର ସତ୍ତ୍ୱବିକାଶ ଉପରେ ସଂସାରିକ ଅବଲମ୍ବନର ମୂଲ୍ୟ ନିର୍ଭର କରେ । ମନୁଷ୍ୟର ବିଷୟ-ଗ୍ରହଣ-ପ୍ରଣାଳୀ ଏଥିର ପରିଚୟ ଦିଏ । ପ୍ରତ୍ୟେକ ଜୀବନର ସୌନ୍ଦର୍ଯ୍ୟର ଅଲକ୍ଷିତ ପ୍ରଭାବ ଥାଏ । ଅବଲମ୍ବନ ବିଶେଷରେ ତାର ସ୍ୱରୂପ ପ୍ରକଟିତ ହୁଏ ଏହିଠାରେ ଯଦି ହୃଦୟର ଆକର୍ଷଣ ଅବଲମ୍ବନର ଜଡ଼ତ୍ୱରେ ଆବଦ୍ଧ ହୋଇ ରହିଯାଏ, ତାହାହେଲେ ଜୀବନର ଗତି ପ୍ରତିହତ ହୁଏ ।

ଆକାଙ୍‌କ୍ଷା ଓ ଅବଲମ୍ବନ ମଧ୍ୟରେ ବିରୋଧ ଜନ୍ମିବା ଉଚିତ ନୁହେଁ । ଅନ୍ତରର ଆକର୍ଷଣରେ ଗତି ଓ ମୁକ୍ତିର ନିୟନ୍ତ୍ରଣ ନିହିତ ଥାଏ । ମନୁଷ୍ୟ ଅଧିକାଂଶ ସମୟରେ ଅବଲମ୍ବନକୁ ଠିକ୍‌ରୂପେ ଧରିପାରେ ନାହିଁ କିମ୍ବା ଅପୂର୍ଣ୍ଣ ଆକାଙ୍‌କ୍ଷାର ତୀବ୍ରତାରେ ନିଜର ହୃଦୟକୁ ଦୁର୍ବଳ କରି ନୈରାଶ୍ୟର ଯେଉଁ ବିକଟ ଚିତ୍ର ଦେଖେ, ସେଥିରେ ସେ ଜୀବନର ଲକ୍ଷ୍ୟକୁ ଭୁଲିଯାଏ । ଅବଲମ୍ବନ ଯେତେଦିନ ପର୍ଯ୍ୟନ୍ତ ହୃଦୟରେ ଶକ୍ତି ସଞ୍ଚାର କରି ଉନ୍ନତ କର୍ମ-ପ୍ରେରଣା ଦେଉଥାଏ, ସେତେଦିନଯାଏ ମନୁଷ୍ୟର ଗତିପଥ ଠିକ୍ ଥାଏ । ଜୀବନରେ ନୈରାଶ୍ୟ ଆସେ, କିନ୍ତୁ ଏହା ଯଦି ଘନୀଭୂତ ଆକାରରେ ଅବଲମ୍ବନର ଅନ୍ତରାୟ ହୋଇଉଠେ, ତାହାହେଲେ ହୃଦୟର ଆକର୍ଷଣ ଗୋଟାଏ ଶୁଷ୍କ ଅଭିବ୍ୟକ୍ତିରେ ଦେଖାଦିଏ । ସରସ ଜୀବନର ସୂଚନା ସେଥିରେ ଆଦୌ ମିଳେ ନାହିଁ । ଅନେକ ପ୍ରତିଭାଶାଳୀ କର୍ମୀଙ୍କ ଜୀବନର ଗତି ଏହିପରି ଅବଲମ୍ବନ-ବିଭ୍ରାଟରେ ବୃଥା ହୋଇଯାଇଛି । ସାମାନ୍ୟ ଘଟଣାକ୍ରମରେ ଜୀବନର ଅବଲମ୍ବନଟି ଗଠିତ ହୋଇପାରେ, କିନ୍ତୁ ତାର ବିସ୍ତୃତି କମ୍ ନୁହେଁ । ମନୁଷ୍ୟର ପରକାଳକୁ ସୁଦ୍ଧା ଏହା ପ୍ରଭାବିତ କରିପାରେ । ଆକାଙ୍‌କ୍ଷାକୁ ଅନୁସରଣ କରି ଅବଲମ୍ବନ ସ୍ୱତଃ ଆସି ମନୁଷ୍ୟର ଗତିପଥରେ ଦେଖା ଦିଏ । ଯାହା ଦିନେ କଳ୍ପନାଚକ୍ଷୁରେ ବିଦ୍ୟୁତ୍‌ର ଗୋଟାଏ ଚମକ ପରି ପ୍ରାଣରେ ଆକସ୍ମିକ ସ୍ପନ୍ଦନ ଆଣି ଉଭେଇ ଯାଇଥାଏ, ତାହା ପୁଣି ସୌନ୍ଦର୍ଯ୍ୟର ସରଣୀ ରୂପରେ ଅବଲମ୍ବନରେ ଦେଖାଦିଏ । ଆକାଙ୍‌କ୍ଷାର ଅନୁଶୀଳନ ଓ ସୌନ୍ଦର୍ଯ୍ୟର ଅନୁଭୂତି ପାଇଁ ଅବଲମ୍ବନର ସୃଷ୍ଟି ।

ହୃଦୟର ଆକର୍ଷଣ ଅବଲମ୍ବନ ସାହାଯ୍ୟରେ ଅଭିବ୍ୟକ୍ତ ହୁଏ । ଜଗତର ଶ୍ରେଷ୍ଠ କର୍ମୀମାନଙ୍କର କର୍ମ-ପ୍ରେରଣାରେ ଅବଲମ୍ବନ ଗୋଟିଏ ବିଶିଷ୍ଟ ଉପାଦାନ । ଏହାକୁ ବାଦ୍ ଦେଲେ କର୍ମର ମହତ୍ତ୍ୱ ପ୍ରକାଶିତ ହୋଇପାରେ ନାହିଁ । ବୀରର ବୀରତ୍ୱ, ସାଧକର ସାଧନା, ଭାବୁକର ଭାବନା ଓ ଶିଳ୍ପୀର ଶିଳ୍ପ-ନୈପୁଣ୍ୟ ଏହାରି ସାହାଯ୍ୟରେ ଜଗତରେ ଖ୍ୟାତି ବିସ୍ତାର କରେ । ସମସ୍ତଙ୍କର ଅବଲମ୍ବନ କୌଣସି ଗୋଟିଏ ଆଧାରକୁ ଆଶ୍ରୟ କରେ ନାହିଁ । ରୁଚି ଓ ଆକାଙ୍‌କ୍ଷା ଏହାକୁ ଅନ୍ୱେଷଣ କରିନିଏ । ପ୍ରତ୍ୟେକ କର୍ମର ଭିତ୍ତି ଏହାରି ଉପରେ ସ୍ଥାପିତ ହୋଇଥାଏ । ଅବଲମ୍ବନର ଦୃଢ଼ତା କର୍ମମାର୍ଗର ସରଳତା ସୃଷ୍ଟି କରି ଜୀବନରୁ ନୈରାଶ୍ୟର ଅନ୍ଧକାରକୁ ଦୂର କରିଦିଏ । ସଂସାରର ଜଟିଳତା ଜୀବନରେ ବିଶେଷ ଆଘାତ ଦେଇପାରେ ନାହିଁ । ରାଜୈଶ୍ୱର୍ଯ୍ୟରୁ ବିଚ୍ୟୁତ ଘଟିଲେ ସୁଦ୍ଧା ମନୁଷ୍ୟ ସେଥିପ୍ରତି ଦୃକ୍‌ପାତ କରେ ନାହିଁ । ତା ଅନ୍ତରରେ ଯେଉଁ ଅମନ୍ଦ ମନ୍ଦାକିନୀ ବହୁଥାଏ, ତାହା ତାକୁ ସର୍ବଦା ଉଦ୍‌ବୁଦ୍ଧ କରୁଥାଏ । ଜାଗତିକ ପରିସ୍ଥିତିରେ ମନର ସ୍ଥିରତା ରହିପାରେ ନାହିଁ, କିନ୍ତୁ ଅବଲମ୍ବନଟି ଦୃଢ଼ ଥିଲେ ପରିସ୍ଥିତିର ପ୍ରଭାବ କାଳକ୍ରମେ ଶାନ୍ତ ହୋଇଯାଏ । ଗୋଟିଏ ବୃହତ୍ ଚୁମ୍ବକର ଆକର୍ଷଣ ପରି ଏହା ମନକୁ ତାହାରି ଆଡ଼କୁ ଟାଣି ରଖେ । କେବଳ ଟାଣି ରଖେ ନାହିଁ, ଏପରି ଏକ ଉତ୍ସ ଖୋଲିଦିଏ ଯେ, ସେଥିର ଧାରାଟି ଅନ୍ତରରେ ସର୍ବଦା ବହମାନା ହୋଇ ରହେ । ଏହି ଧାରାର ପ୍ଲାବନରେ ମନୁଷ୍ୟର କର୍ମକ୍ଷେତ୍ର ସରସ ହୋଇଯାଏ । ଜଗତର ସଂଖ୍ୟାତୀତ କ୍ଷଣିକ କ୍ଷୁଦ୍ର ଆକର୍ଷଣ ଏହି ପ୍ଲାବନର ବେଗ ସମ୍ଭାଳି ନ ପାରି ମନୁଷ୍ୟର ଗତିପଥରୁ ଅନ୍ତର୍ହିତ ହୋଇଥାଏ । ଯାବତୀୟ କର୍ମସମ୍ପାଦନରେ କର୍ମୀ ଅବଲମ୍ବନକୁ ନୀରବ ସାଥିରୂପେ ସଙ୍ଗରେ ରଖିଥାଏ । କାହାରିକୁ ସେ ଏହା ଜାଣିବାକୁ ସୁଦ୍ଧା ସୁବିଧା ଦିଏ ନାହିଁ । ଆକର୍ଷଣ ବିଶ୍ୱ-ଶକ୍ତିରୁ ସମ୍ଭୂତ ହୋଇ ଜଗତର ପ୍ରତ୍ୟେକ ଆଶ୍ରୟରେ ତା' ସତ୍ତା ପ୍ରକାଶ କରେ । ମାନବ-ହୃଦୟରେ ଯେ ଆକର୍ଷଣ ରହିଛି, ତାହା ଆଧାରର ବିଶେଷତ୍ୱ ଓ ଅବଲମ୍ବନର ସାହଚର୍ଯ୍ୟ ଘେନି ନାନା ଭାବରେ ଅଭିବ୍ୟକ୍ତ ହୋଇଥାଏ । ଆକର୍ଷଣର ପ୍ରତ୍ୟେକ ଅଭିବ୍ୟକ୍ତିରେ ବିଶ୍ୱଭାବର ଏକ ଅଲକ୍ଷିତ ସତ୍ତା ରହିଛି । ଯେ ଏହାକୁ ଦେଖିପାରେ, ସେ ଏ ସଂସାରରେ ଧନ୍ୟ ହୋଇ ଜୀବନ କଟାଇଦିଏ । ସଂସାରର ଜଞ୍ଜାଳ ତା ସମକ୍ଷରେ କୁଜ୍‌ଝଟି ପରି ଉଭେଇଯାଏ ।

# ପ୍ରତିମା

ବିକାଶର ପଥକୁ ସୁଗମ କରିବା ପାଇଁ ପ୍ରତିମାର ସୃଷ୍ଟି । ଆଦିମ କାଳରୁ ଆଜିପର୍ଯ୍ୟନ୍ତ ମାନବ-ସଭ୍ୟତାର କ୍ରମ-ବିକାଶରେ ପ୍ରତିମାର ପ୍ରତିଷ୍ଠା ଗୋଟିଏ ସ୍ୱତନ୍ତ୍ରତା ରକ୍ଷା କରି ଆସିଅଛି । କାଳ ଓ ରୁଚି ଭେଦରେ ଏହାର ଭିନ୍ନତା ପରିଲକ୍ଷିତ ହେଲେ ସୁଦ୍ଧା ମନୁଷ୍ୟର ମୌଳିକ ଭାବଧାରାରେ ଏହାର ପ୍ରତିବିମ୍ବ ପ୍ରାୟ ଅଚଞ୍ଚଳ । ଅତୀତର କାଳସ୍ରୋତରେ ସଂଖ୍ୟାତୀତ ପ୍ରତିମା ବିଲୀନ ହୋଇ ଗଲଣି । ଆଜି ମନୁଷ୍ୟ ଯାହାକୁ ପୁଣି ଚିର ନୂତନ ଓ ଅତି ରମଣୀୟ ବୋଲି ଗ୍ରହଣ କରୁଛି, ତାହା ଦିନେ ବିସ୍ମୃତିର ଅତଳ ଗର୍ଭରେ ବୁଡ଼ିଯିବ । ତେବେ ରହିବ ଆଉ କଣ ? ରହିବ—ଗୋଟିଏ ଶାଶ୍ୱତ ନିଶାଣର ଛବି ଓ ସୌନ୍ଦର୍ଯ୍ୟ ସୃଷ୍ଟିର ଏକ ଅମର ଉପାଦାନ । ସର୍ବବିଧ୍ୱଂସୀ କାଳର କରାଳ ତରଙ୍ଗ ଏହି ଛବିରେ ପ୍ରତିନିୟତ ଆଘାତ ଦେଇ ଚାଲିଥିବ; କିନ୍ତୁ ତାକୁ ଲୋପ କରିଦେଇ ପାରିବ ନାହିଁ । ଜାଗତିକ ପ୍ରତ୍ୟେକ ଆଧାରରେ ଏକ ବିରାଟ ସତ୍ତାର ଆଂଶିକ ପ୍ରକାଶ ବିଶ୍ୱ-ଚିତ୍ରଶାଳାର ସୌନ୍ଦର୍ଯ୍ୟ ବିଧାନରେ ଲୋଡ଼ା ହେଉ ନ ଥିଲେ ପ୍ରତିମାର ବିଶେଷତ୍ୱ କିମ୍ବା ଛବିର ଅମର ସଙ୍କେତ ପ୍ରତି କେହି ଦୃଷ୍ଟି ଦିଅନ୍ତେ ନାହିଁ । ପ୍ରତିମାର କେବଳ ଭଙ୍ଗା ଗଢ଼ା ରୀତି ଅନୁସରଣ କଲେ ଦୁନିଆର ଗତିଟା ଭଲ ଜଣାପଡ଼େ ନାହିଁ । ଚିତ୍ରକରର କଳାନୈପୁଣ୍ୟ ଅସଂଖ୍ୟ ଚିତ୍ର-ସମ୍ପଦ ମଧ୍ୟରେ ଯେ ସମାନତା ଓ ସୌନ୍ଦର୍ଯ୍ୟର ସ୍ଫୁରଣକୁ ଉଜ୍ଜୀବିତ ରଖିଥାଏ, ତାକୁ ଦେଶ କିମ୍ବା କାଳଗତ ପାର୍ଥକ୍ୟ ଦୂର କରିପାରେ ନାହିଁ । ସାଧାରଣ ଲୋକର ଗତିପଥରେ କଳାବିତ୍‌ର ସୌନ୍ଦର୍ଯ୍ୟ ଦୃଷ୍ଟି କିମ୍ବା ପ୍ରତିମାର ଚିନ୍ମୟୀ ପ୍ରଭାବ ପ୍ରାୟ ଆସେ ନାହିଁ । ଭାବର ଉନ୍ମେଷରେ ଧାରଣା ଗୋଟିଏ ଅବଲମ୍ବନ ଲୋଡ଼ିଲା ବେଳେ ହୃଦୟ ସ୍ୱତଃ ଚିତ୍ରସମ୍ପଦ ଆଡ଼କୁ ଆକୃଷ୍ଟ ହୁଏ । କିନ୍ତୁ ଅଧିକାଂଶ ସମୟରେ ଆକର୍ଷଣର ବିଭ୍ରାନ୍ତ ବସ୍ତୁ-ଜଗତର ସ୍ୱରୂପ ଦେଖାଇଦିଏ ନାହିଁ । ଗୋଟିଏ ମୋହ ମନୁଷ୍ୟର ମନକୁ ଅଧିକାର କରି ତାର ଧାରଣାକୁ ଦୁର୍ବଳ କରିଦେଲେ ପ୍ରତିମା-ଅବଲମ୍ବନ କେବଳ ଗୋଟିଏ ଦୈନ୍ୟର ପରିଚୟ ଦିଏ ।

ସାଧନା ଅନୁକୂଳରେ ପ୍ରତିମା-ସୃଜନ ଅଯଥାର୍ଥ ନୁହେଁ । ମାନବିକତାର ଚରମ ଉତ୍କର୍ଷ ବସ୍ତୁ ଜଗତର ଆକର୍ଷଣକୁ ପରାଭୂତ କରି ବିଶ୍ୱ-ପ୍ରକୃତିରେ ମିଶିଗଲା ବେଳେ ସୌନ୍ଦର୍ଯ୍ୟର ଯେଉଁ ଅମଳ ସଙ୍କେତକୁ ସମ୍ବଳ କରିଥାଏ, ତାହା ଅଧିକାଂଶ ସମୟରେ ପ୍ରତିମାପ୍ରସୂତ ବୋଲି ମନେ ହୁଏ । କର୍ମୀର କାମନା ଓ ଭାବୁକର ଭାବନା କଳ୍ପନା-ବୈଭବରେ ଚିରଦିନ ସରସ ଥାଏ । କଳ୍ପନାବିଭବର ସରସତା କୌଣସି ଚିନ୍ମୟୀ ପ୍ରତିମାର ଆଶ୍ରୟରେ ଏକ ସ୍ୱତନ୍ତ୍ର ଧାରା ଖୋଲିଦେଲେ ମନୁଷ୍ୟର ବନ୍ଧନ ଦଶା ଚାଲିଯାଏ । ଜଗତର ଜଟିଳତାରେ ସେ ନିଜର ମାର୍ଗକୁ ସ୍ପଷ୍ଟରୂପେ ଦେଖିପାରେ, ବସ୍ତୁମୋହ ତାକୁ ଭୁଲାଇ ରଖିପାରେ ନାହିଁ । ମନୀଷୀମାନଙ୍କର ପାର୍ଥିବଅବଲମ୍ବନରୁ ଏଥିର ଦୃଷ୍ଟାନ୍ତ ମିଳେ । ସାଧାରଣ ଲୋକ ବସ୍ତୁମୋହରେ ନିଜକୁ ପାଶୋରି ଦେଇ ଜୀବନର ଲକ୍ଷ୍ୟକୁ ଜଗତର ବେଷ୍ଟନୀରେ ଆବଦ୍ଧ କରେ । ତାର ଦୃଷ୍ଟିରେଖା ସଂସାରର ବାହାରକୁ ଯାଏ ନାହିଁ । ପ୍ରତିମାର ଜଡ଼ତ୍ୱ ସଙ୍ଗେ ଜୀବନର ଜଡ଼ତ୍ୱ ମିଶିଗଲେ ମନୁଷ୍ୟର ବନ୍ଧନ-ଦଶା ଆହୁରି ଦୃଢ଼ ହୋଇଯାଏ । ଅସ୍ଥାୟୀ ପାର୍ଥିବ ଐଶ୍ୱର୍ଯ୍ୟର ମୋହ ମନୁଷ୍ୟର ସ୍ୱାଧୀନ ଗତିରେ ବାଧା ଜନ୍ମାଏ । ତାର ଧାରଣାର ଅବଲମ୍ବନ ପ୍ରତିମାଟି ଏଥି ସଙ୍ଗେ ମଧ୍ୟ ଭ୍ରଷ୍ଟ ହୋଇଯାଏ, କିନ୍ତୁ ମନୀଷୀମାନଙ୍କର ଗତି ଭିନ୍ନ ପ୍ରକାର ହୁଏ । ସେମାନେ ଜଗତରୁ କଳ୍ପନାର ଉପାଦାନ ସଂଗ୍ରହ କଲେ ସୁଦ୍ଧା ପ୍ରତିମାର ଯେଉଁ ଚିନ୍ମୟୀ ଭାବ ଦେଖନ୍ତି, ସେଥିରେ ବସ୍ତୁ-ଜଗତ ସେମାନଙ୍କ ସମକ୍ଷରେ ଅତି ହେୟ ପରି ଅନୁମିତ ହୁଏ । ଯେପରି ଏକ ଉପାଦାନରେ ନିର୍ମିତ ଦୁଇ ଭିନ୍ନ ବସ୍ତୁ ନିର୍ମାଣ କୌଶଳର ସ୍ୱତନ୍ତ୍ରତା ଜ୍ଞାପନ କରେ, ସେହିପରି ପ୍ରତିମାର ଜଡ଼ କିମ୍ବା ଚିନ୍ମୟୀ

ଭାବ ଦ୍ରଷ୍ଟାର ବିଶେଷତ୍ୱ ପ୍ରମାଣ କରେ । ସାଧନାର ମାର୍ଗ ଚିରଦିନ ସରଳ, କିନ୍ତୁ ମନୁଷ୍ୟର ପାରିପାର୍ଶ୍ୱିକ ଅବସ୍ଥା ଏହାକୁ ଜଟିଳ କରେ ବୋଲି କେତେଗୁଡ଼ିଏ ସନାତନ ନୀତି ଆଶ୍ରୟରେ ତାର ଗତି ନିର୍ଣ୍ଣୟର ବିଧାନ ଅଛି । ପ୍ରତିମା-ସୃଷ୍ଟି କୌଣସି ସନାତନ ନୀତିର ବିରୋଧୀ ନୁହେଁ, ବରଂ ସତ୍ୟ ଓ ସୌନ୍ଦର୍ଯ୍ୟର ବିକାଶରେ ସାଧନାର ପଥକୁ ଏହା ସୁଗମ କରିଦିଏ ।

ମନୁଷ୍ୟର ଭାବଧାରାକୁ ବିକାଶର ସୂଚନା ମିଳେ । ଜନ୍ମକାଳରୁ ଏକ ପରିସ୍ଥିତିରେ ଲାଳିତ ଦୁଇଜଣଙ୍କ ଭାବର ଅସାମଞ୍ଜସ୍ୟ ଦୁହିଁଙ୍କୁ ଜଗତରେ ଭିନ୍ନ ଭିନ୍ନ ମାର୍ଗରେ ଗତି କରିବା ପାଇଁ ବାଧା ଦିଏ ନାହିଁ । ନିଜର ପାର୍ଥକ୍ୟ ଯେତେବେଳେ ମନୁଷ୍ୟ ଉପଲବ୍ଧି କରିପାରେ, ସେତେବେଳେ ସେ ଏକ ସ୍ୱତନ୍ତ୍ର ମାର୍ଗରେ ଗତି କରିବାକୁ ଆରମ୍ଭ କରେ । ସ୍ୱାତନ୍ତ୍ର୍ୟ ଯେପରି ମନୁଷ୍ୟର ଜଗତରେ ପ୍ରତିଷ୍ଠାଲାଭ ହୁଏ । ଐକ୍ୟରୁ ପାର୍ଥକ୍ୟର ବିକାଶ ଭାବଧାରାର ବିଶାଳତାକୁ ଅକ୍ଷୁର୍ଣ୍ଣ ରଖେ । ଜଗତର ସଙ୍ଖ୍ୟାତୀତ ଆଧାରରେ ସ୍ୱାତନ୍ତ୍ର୍ୟର ଚିହ୍ନିତ ସାଧନାର ବିଶେଷତ୍ୱକୁ ଅପେକ୍ଷା କରିଥାଏ । ତେଣୁ ଜଣେ ସାଧକ ପକ୍ଷରେ ଯାହା ଗ୍ରହଣୀୟ, ଅନ୍ୟ ଜଣକ ପକ୍ଷରେ ତାହା ବର୍ଜନୀୟ ହେଲେ କୌଣସି ଦୋଷ ଘଟେ ନାହିଁ । ସାଧନାର ପ୍ରଶସ୍ତ କ୍ଷେତ୍ରରେ ମନୁଷ୍ୟ ଅନେକ ସମୟରେ ଗୋଟାଏ ଅନୁକରଣ ପ୍ରବୃତ୍ତିର ଅଧୀନ ହୋଇପଡ଼େ । ଅନୁସୃତର ମାର୍ଗ ଯନ୍ତ୍ରର ଶୃଙ୍ଖଳା ପରି ଗୋଟାଏ ସମାନତା ଦେଖାଇ ପାରେ, କିନ୍ତୁ ଏକ ବିରାଟ ସତ୍ତାର ଜାଗୃତି ପାଇଁ ଏହା ଯଥେଷ୍ଟ ନୁହେଁ । ନିଜର ସ୍ୱତନ୍ତ୍ର ଭାବଧାରା କୌଣସି ବିଶିଷ୍ଟ ଆଶ୍ରୟରେ ପ୍ରତିବିମ୍ବିତ ହେଲେ ମନୁଷ୍ୟ ଯେ ପ୍ରେରଣା ପାଏ, ତାହା ସହସ୍ର ଲୋକର ଅନୁସୃତରେ ମିଳେ ନାହିଁ । ଭାବ ଅନୁଯାୟୀ ରୂପର ଅନ୍ୱେଷଣକୁ କେହି ସହଜରେ ବୁଝିନ୍ତି ନାହିଁ । କବିର କଳ୍ପନା ଅଂଶୁମାଳୀ ରବିକୁ କମଳ ସଙ୍ଗେ ମିଶାଇ ଦେଇଛି । କବି ଶୁଣିଛି, ବିଶ୍ୱ-ଛନ୍ଦରେ ରବି ଓ କମଳର ମିଳନ-ଗୀତିକା । ଏ ଦୁହିଁଙ୍କର ମିଳନରେ ସେ ଜଗତର ସବୁ ପାର୍ଥକ୍ୟକୁ ଦୂର କରି ଦେଇଛି । ଭାବର ପୁଷ୍ଟିରେ ପ୍ରତିମାର ସୃଷ୍ଟି କୌଣସି ପାର୍ଥିବ ନିୟମର ଅପେକ୍ଷା ରଖେ ନାହିଁ । ପ୍ରତିମା ସୃଜନର ଅଶେଷ ପ୍ରକାର ଗତି ଭାବଧାରାର ଅନୁକୂଳ ଗତିରେ ସ୍ୱତନ୍ତ୍ରତା ପ୍ରକାଶ କରେ । ଐକ୍ୟରୁ ପାର୍ଥକ୍ୟର ବିକାଶ ପାଇଁ ପ୍ରତିମା ବଡ଼ ସମର୍ଥ; କିନ୍ତୁ ସାଧନାର ଚରମ ସୋପାନ ଏହାର ବିଶିଷ୍ଟତାରେ ସଂଶ୍ଳିଷ୍ଟ ରହେ ନାହିଁ । ଜଗତର ବେଷ୍ଟନୀ ବାହାରେ ପ୍ରତିମାର ପ୍ରତିଷ୍ଠା ଲୋଡ଼ା ହୁଏ ନାହିଁ । କେବଳ ଗୋଟାଏ ଭାବର ଇଙ୍ଗିତରେ ଏହା ମନୁଷ୍ୟର ଗତିପଥକୁ ଦେଖାଇ ଦିଏ । ପୁଣି ଭାବର ବିକାଶରେ ସୌନ୍ଦର୍ଯ୍ୟର ଉପାଦାନକୁ ପ୍ରତିମା ସମ୍ପାଦ ରଖି ସାଧନାର କ୍ଷେତ୍ରକୁ ସରସ କରି ଦିଏ ।

ସୃଜନ-ଲୀଳାରେ ବିଶ୍ୱ-ପ୍ରକୃତିର ବିରାଟ ପ୍ରକଟ ମନୁଷ୍ୟର ଦୃଷ୍ଟିରେଖା ମଧ୍ୟରେ ସହଜରେ ଆସେ ନାହିଁ । କ୍ଷୁଦ୍ର ଆଶୟରେ ବିରାଟର ଭାବକୁ ଅନୁଭବ କରିବା କେବଳ ସାଧନା ଉପରେ ନିର୍ଭର କରେ । ଆଶୟର ବେଷ୍ଟନୀ ଅନ୍ତରର ଅନୁଭୂତିକୁ ଅନେକ ସମୟରେ ଗୋଟିଏ ସ୍ୱତନ୍ତ୍ର ଧାରାରେ ବହିବାକୁ ସୁବିଧା ଦେଇଥାଏ, ତେଣୁ ପ୍ରତିମା ଦୂରରେ ରହି ପ୍ରେରଣାର ଯେଉଁ ଉତ୍ସଟି ଖୋଲିଦିଏ, ତାହା ସାଧକକୁ କ୍ରମଶଃ ଉନ୍ନତି-ମାର୍ଗରେ ଗତି କରାଏ । ପ୍ରେରଣାର ସ୍ୱଚ୍ଛ ଧାରା ହୃଦୟର କଳୁଷ ଦୂର କରି ପ୍ରକୃତି ସଙ୍ଗେ ମିଶିଯିବା ପାଇଁ ମନୁଷ୍ୟକୁ ଯେଉଁ ନିର୍ଦ୍ଦେଶ ଦିଏ, ତାହା କବିର କଳ୍ପନା ନୁହେଁ । ସଂସାରର ଆସକ୍ତି ଦୃଷ୍ଟିରେଖାକୁ ସଙ୍କୁଚିତ କରିଥାଏ; କିନ୍ତୁ ଥରେ ଭାବର ପ୍ଲାବନରେ ଆସକ୍ତିର ମାତ୍ରା କମିଆସିଲେ ମନୁଷ୍ୟର ଗତିପଥ ସହଜ ହୋଇଯାଏ । ଜାଗତିକ ବିଷୟ-ଲୋଲୁପତା ହୃଦୟକୁ ସାଧାରଣତଃ ଭାବବିମୁଖ କରିଦିଏ । ସେଥିପାଇଁ ଅଧିକାଂଶ ଲୋକ ଭାବର ମର୍ମ ବୁଝିନ୍ତି ନାହିଁ । ଭାବର ଅଭାବରେ ପ୍ରେମ ଓ ଭକ୍ତିର ଉନ୍ମେଷ ସମ୍ଭବ ହୁଏ ନାହିଁ । କେବଳ ବିଷୟ-ଜ୍ଞାନ ଜନ୍ମିଲେ ମନୁଷ୍ୟ ଜନ୍ମର ସାର୍ଥକତା ଜଣାପଡ଼େ ନାହିଁ । ବିଷୟ ଜ୍ଞାନ ଯନ୍ତ୍ରର ଶୃଙ୍ଖଳା ପରି ଜଗତକୁ ଆବଦ୍ଧ କରି ରଖିଛି । ଯନ୍ତ୍ରର ଶୁଷ୍କତା ହୃଦୟର ନାହିଁ; ତଥାପି ମନୁଷ୍ୟ ଅନ୍ତରରେ ବିଷୟାସକ୍ତି ଏପରି ପ୍ରବଳ ଭାବରେ ରହିଛି ଯେ ତାହା ସ୍ୱତଃ ହୃଦୟର ସରସତାକୁ ଗ୍ରାସି ଦେଇ ମନୁଷ୍ୟକୁ ଗୋଟାଏ ସଙ୍କୀର୍ଣ୍ଣ ପରିସର ମଧ୍ୟରେ ଆବଦ୍ଧ କରିଦିଏ । ଅନ୍ୟ ପକ୍ଷରେ ପ୍ରକୃତି ସଙ୍ଗେ ଭାବଧାରାର ସଙ୍ଗମ ଉନ୍ନତ ମାନବିକତାର ପରିଚୟ ଦିଏ । ସ୍ରୋତସ୍ୱିନୀର କଲତାନରେ, ଗିରିଗହ୍ୱରର ପ୍ରତିଧ୍ୱନିରେ, ଗମ୍ଭୀର ନିଶୀଥିନୀର ରହସ୍ୟମୟ ଗର୍ଜନରେ, ଅସ୍ତଗାମୀ ରବିର ଶେଷ ରଶ୍ମି ରଞ୍ଜିତ ଦୂର ଦିଗ୍‌ବଳୟରେ ଏକ ଅନୁପମ ଅଣଦେଖା ଶାନ୍ତ ମୂର୍ତ୍ତି ଦର୍ଶନରେ ଯେ ମୁହୂର୍ତ୍ତିକପାଇଁ ନିଜକୁ ମିଶାଇ ଦେଇପାରେ, ସେ ନିଶ୍ଚୟ ସେହି କ୍ଷଣକପାଇଁ ଜଗତର ବନ୍ଧନକୁ ଭୁଲିଯାଏ । ଦୁର୍ବଳ ମନୁଷ୍ୟ ପକ୍ଷରେ ଏହି ବସ୍ତୁଟି ବଡ଼ ଆଦରଣୀୟ । ବିଶ୍ୱସୃଷ୍ଟିର ଅମର ସୌନ୍ଦର୍ଯ୍ୟ ଏହାରି ମଧ୍ୟରେ ଆତ୍ମପ୍ରକାଶ କରିଥାଏ ।

ପ୍ରତିମାର ରୂପଭେଦ ସାଧନାର ପୃଥକ୍ ମାର୍ଗ ଘୋଷଣା କରେ । ବିକ୍ଷୁବ୍ଧ ଅନ୍ତରର ତୀବ୍ର ଅନୁଭୂତି ଓ ଶାନ୍ତ ଭାବନାର ଚିର ଅନାସକ୍ତ ପ୍ରେରଣାର ଦୁଇଟି ସ୍ୱତନ୍ତ୍ର ଧାରା ଖୋଲି ଦେଇ ଜୀବନର ଗତିକୁ ତଦନୁଯାୟୀ କରିଦିଏ । ହୃଦୟର

ଭିନ୍ନତା ପ୍ରତିମାର ପାର୍ଥକ୍ୟ ସୃଷ୍ଟି କଲେ ସୁଦ୍ଧା ସାଧନାର ମାର୍ଗ ଏଥିରେ ବାଧା ପାଏ ନାହିଁ । ବରଂ ପ୍ରତିମା ଅବଲମ୍ବନ ଅସଂଯତ ଭାବଧାରାକୁ ଅନେକ ସମୟରେ ନିୟନ୍ତ୍ରିତ କରେ । ଭାବନାର ବିଭିନ୍ନ ସ୍ତର ସଙ୍ଗେ ସାଧନାର ଉପଯୁକ୍ତ ମାର୍ଗ ସମ୍ମିଳିଷ୍ଟ ରହିଲେ ମନୁଷ୍ୟର ଅଗ୍ରଗତି ସହଜ ହୁଏ । ରାଧାକୃଷ୍ଣଙ୍କର ଅଲୌକିକ ମିଳନ ପରକୀୟା ପ୍ରେମର ଯେ ଚିତ୍ର ପ୍ରକାଶ କରିଛୁ, ତାହା ପୃଥିବୀର ଅନ୍ୟ କୌଣସି ଜାତିର ପ୍ରେମ-ଚିତ୍ରରେ ଦେଖାଯାଏ ନାହିଁ । ରାଧାକୃଷ୍ଣଙ୍କର ମିଳନକୁ କେହି କେହି କୁତ୍ସିତ ବୋଲି ଭାବିଥାନ୍ତି । କିନ୍ତୁ ଅନ୍ତରର ବାସ୍ତବ ମିଳନ ଏଥିରେ ଯେପରି ସ୍ପଷ୍ଟ ହୋଇଉଠିଛି, ତାହା ଅନ୍ୟ କୌଣସି ସାଧାରଣ ନର କିମ୍ବା ନାରୀଙ୍କ ପକ୍ଷରେ ସମ୍ଭବପର ହୋଇ ନାହିଁ । ଯୁଗଳ ମୂର୍ତ୍ତିର ଅନାବିଳ ଭାବ ଜ୍ଞାନ ଓ ଭକ୍ତିର ମାର୍ଗକୁ ସରସ କରି ଦେଇଛି । ପରକୀୟା ଭାବର ଉପଲବ୍ଧି ଅତି କଠିନ, ତେଣୁ ସାଧାରଣ ମନୁଷ୍ୟ ଏ ଢଙ୍ଗରେ ଗତି କରିବାକୁ ସାହସ କରେ ନାହିଁ । ଶରୀର-ଜ୍ଞାନ ଥିବା ପର୍ଯ୍ୟନ୍ତ ପରକୀୟା ପ୍ରେମର ପ୍ରକୃତ ଅନୁଭୂତି ଆସେ ନାହିଁ ।

ପରକୀୟା ପ୍ରେମ କୌଣସି ପ୍ରତିମାରେ ଆବଦ୍ଧ ନୁହେଁ । ରୂପ ଗୋଟାଏ ଇଙ୍ଗିତ ମାତ୍ର । ଏହି ଇଙ୍ଗିତକୁ ଅନୁସରଣ କରି ଅନ୍ତରର ରୁଦ୍ଧ ଆବେଗ ଆସ୍ତେ ଆସ୍ତେ ଗୋଟିଏ ସ୍ୱଚ୍ଛଧାରା ଖୋଲିଦିଏ । ଧାରାଟି ଗତି କରି ଶେଷରେ ଅନନ୍ତ ପ୍ରେମ-ସିନ୍ଧୁରେ ମିଶିଯାଏ । ପ୍ରତିମା ଅନୁକୂଳରେ ନିଷ୍ଠାପର ଭାବଧାରାର ଅନୁଭୂତି ଜୀବନର ସକଳ ଦୈନ୍ୟ ଦୂର କରିଦିଏ, ଜୀବନର ବାସ୍ତବତା ଏହାର ଚିନ୍ମୟୀ ପ୍ରଭାବରେ ପରିସ୍ଫୁଟ ହୋଇ ଉଠେ । ଦିନ ଆସେ, ଯେତେବେଳେ ପ୍ରତିମା ସୀମାବଦ୍ଧକୁ ସୀମାହୀନରେ ମୁକ୍ତି ପ୍ରଦାନ କରେ । ସେତେବେଳେ ଭାବଧାରାର ସ୍ୱାତନ୍ତ୍ର୍ୟ ରହେ ନାହିଁ । ଏକ ବିଶାଳ ସମନ୍ୱୟରେ ପ୍ରେମ ଓ ସୌନ୍ଦର୍ଯ୍ୟର ମିଳନ ବାଧାଗ୍ରସ୍ତ ଜୀବନର ଗତିକୁ ଏହି ଅପୂର୍ବ ମିଳନରେ ମିଶିଯିବା ପାଇଁ ଆହ୍ୱାନ କରେ ।

ସୌନ୍ଦର୍ଯ୍ୟର ପ୍ରତୀକରୂପେ ପ୍ରତିମା ଅନ୍ତରର ଯେଉଁ ଉଦ୍‌ବୋଧନ ଆଣେ ସେଥିରେ ଜୀବନର ଧାରାବାହିକ ଗତି ସମ୍ପୂର୍ଣ୍ଣଭାବରେ ପରିବର୍ତ୍ତିତ ହୋଇଯାଇପାରେ । ଅନ୍ତର ସୌନ୍ଦର୍ଯ୍ୟାନୁଭୂତି ପାଇଁ ସର୍ବଦା ଉନ୍ମୁକ୍ତ ଥାଏ, କିନ୍ତୁ ଜଗତର ବୈଷୟିକ ଜଞ୍ଜାଳ ଏହାର ବିରୋଧୀ ହୁଏ । ତେଣୁ ସୌନ୍ଦର୍ଯ୍ୟର ସ୍ପର୍ଶ ହୃଦୟରେ ଲାଗିଲେ ସୁଦ୍ଧା ମନୁଷ୍ୟ ତାକୁ ପାଶୋରି ଦିଏ । ମିଳନ ଛନ୍ଦରେ ଓ ବିରହ ରାଗିଣୀରେ ସଙ୍ଗୀତର ପ୍ରାଣସ୍ପର୍ଶୀ ଲୟ ମନକୁ କିଛି ସମୟ ପାଇଁ ଅଧିକାର କରେ । ଅନୁପମ ପ୍ରତିମାର ଅନାବିଳ ଛବି କଳ୍ପନାରାଜ୍ୟରେ ତାର ପ୍ରଭାବ ବିସ୍ତାର କରି ମନକୁ ଏଥିସଙ୍ଗେ ସରସ କରିଦିଏ; କିନ୍ତୁ ଏ ପ୍ରଭାବ ଅଳ୍ପକାଳ ସ୍ଥାୟୀ ହୋଇ ପୁଣି ବିସ୍ମୃତି ଅନ୍ତରାଳରେ ଆଶ୍ରୟ ନିଏ । ସଂସାରର ନିଗଡ଼ ମନୁଷ୍ୟକୁ ବେଶୀ ସମୟ ପାଇଁ ସୁଖୀ ହେବାକୁ ସୁବିଧା ଦିଏ ନାହିଁ । ମିଳନରେ ସୌନ୍ଦର୍ଯ୍ୟାନୁଭୂତି ଦେବତାର ବାଞ୍ଛନୀୟ ହୁଏ । ମନୁଷ୍ୟ ପକ୍ଷରେ ଏହାର ପ୍ରାପ୍ତି ଅସମ୍ଭବ କହିଲେ ଚଳେ । ଜଗତ ଶାଶ୍ୱତ ମିଳନର ସ୍ଥାନ ନୁହେଁ । କ୍ଷଣିକ ଗୋଟାଏ କୃତ୍ରିମ ମିଳନର କ୍ଷୁଦ୍ର ଆଶା ଅନ୍ତରର ପିପାସାକୁ କେବଳ ବଢ଼ାଇଦିଏ । ଅବଶ୍ୟ ଶ୍ରେଷ୍ଠ ମାନବ ପକ୍ଷରେ ଏହା ଘଟି ନ ପାରେ । ସେ ସାଂସାରିକ ବାଧାକୁ ଉପେକ୍ଷା କରି କ୍ଷଣିକ ମିଳନରେ ଜୀବନକୁ ଧନ୍ୟ କରିପାରନ୍ତି । କ୍ଷୁଦ୍ରଧୀତା ପ୍ରତିମାକୁ ସୌନ୍ଦର୍ଯ୍ୟର ପ୍ରତୀକରୂପେ ଦେଖିବାକୁ ଅବସର ଦିଏ ନାହିଁ । ପ୍ରେମର ପ୍ରତିମାଟି ସୌନ୍ଦର୍ଯ୍ୟର ଉପାଦାନରେ ନିର୍ମିତ । ବିଷୟାକୃଷ୍ଟ ମନ ଲୋଲୁପତାବଶତଃ ଏହାର ଅନାବିଳ ଭାବ ଗ୍ରହଣ କରିପାରେ ନାହିଁ । ଥରେ ଯଦି ଶାନ୍ତ ଭାବନାର ଅନାସକ୍ତ ଉଚ୍ଛ୍ୱାସ ହୃଦୟକୁ ଅଧିକାର କରି ବସେ ଓ ପ୍ରତିମାଟି ଚିର ଶାନ୍ତିମୟୀ ମୂର୍ତ୍ତି ଧାରଣ କରି ଚିଦାକାଶରେ ଭାସିଉଠେ, ତାହାହେଲେ ମନୁଷ୍ୟର ଗତି ସ୍ୱତଃ ପରିବର୍ତ୍ତିତ ହୋଇଯାଏ । ସଂସାରର ସବୁ ଦୈନ୍ୟ ମଧ୍ୟ ଏଥି ସଙ୍ଗେ ଗୁଚିଯାଏ, ଉନ୍ମୁକ୍ତ ବିହଙ୍ଗ ପରି ମନୁଷ୍ୟ ବିଚରଣ କରେ ।

ଭାବୁକ କଳ୍ପନା ସାହାଯ୍ୟରେ ତାର ମାନସୀ ପ୍ରତିମାକୁ ଗଢ଼ି ନେଇଥାଏ । ଆକସ୍ମିକ ଘଟନା-ଚକ୍ରରେ ଯଦି କୌଣସି ସଂସାରବାସୀର ରୂପରେ ଏହାର ଆଂଶିକ ପ୍ରତିବିମ୍ବ ସେ ଦେଖିବାକୁ ପାଏ, ତାହାହେଲେ ସେହି ରୂପକୁ ଅନୁସରଣ କରେ । କେତେ କବି, ଚିତ୍ରକର, ଶିଳ୍ପୀ ଓ ଶ୍ରେଷ୍ଠ ଯୋଦ୍ଧାମାନଙ୍କ ଜୀବନରେ ଏହାର ପ୍ରଭାବ ଦେଖାଦେଇଛି । ସଂସାରର ଅସ୍ଥାୟୀ ରୂପରେ ମାନସୀ ପ୍ରତିମାର ପ୍ରତିବିମ୍ବ ସୌନ୍ଦର୍ଯ୍ୟର ଏକ ଅମର ଉତ୍ସ ଖୋଲି ଦେଇପାରେ, କିନ୍ତୁ ଭାବଧାରାର ଉଚ୍ଛୃଙ୍ଖଳ ଅବସ୍ଥା ପ୍ରତି ସାବଧାନ ହେବା ଆବଶ୍ୟକ । ଅନେକ ସମୟରେ ଉନ୍ନତ ଭାବନା ରୂପର ଅବଲମ୍ବନରେ ଅଲକ୍ଷରେ ନିମ୍ନଗାମୀ ହୋଇଯାଏ । କବିର କଳ୍ପନା, ଭାବୁକର ଭାବନା ଓ ଶିଳ୍ପୀର ଶିଳ୍ପ-ନୈପୁଣ୍ୟ ଆଉ ପୂର୍ବ ଗୌରବ ରକ୍ଷା କରିପାରେ ନାହିଁ । ଗୋଟାଏ ବୁଭୁକ୍ଷା ଆସି ଭାବନାର ଉନ୍ନତ ସ୍ତରକୁ ଅଧିକାର କରେ, କେବଳ କେତେଗୁଡ଼ାଏ ନୀଚ କାମନାର ଚିତ୍ର

ପ୍ରକାଶିତ ହୁଏ । ରୂପ-ସମ୍ପର୍କରେ ଥରେ ଦୃଷ୍ଟି-ରେଖା ସଙ୍କୁଚିତ ହୋଇଗଲେ, ତାକୁ ବିସ୍ତୀର୍ଣ୍ଣ କରିବା ସହଜ ହୁଏ ନାହିଁ । ରୂପବୁଭୁକ୍ଷା ଗୋଟାଏ ମୋହ; ସେଥିରେ ମାନସୀ ପ୍ରତିମାର ବିସର୍ଜନ ସ୍ପୃହଣୀୟ ନୁହେଁ । ଯେଉଁମାନଙ୍କର ଅସାଧାରଣ ସଂଯମ ଶକ୍ତି ଥିବ, ସେହିମାନେ ରୂପର ଆକର୍ଷଣକୁ ଦୂର କରି କେବଳ ଅନ୍ତରର ଅନାସକ୍ତ ଅନୁଭୂତିକୁ ସମ୍ବଳ କରି ଅଗ୍ରସର ହୋଇ ପାରନ୍ତି । ରୂପର ଅହଙ୍କାର ସାଧନାକୁ ବ୍ୟର୍ଥ କରି ମନୁଷ୍ୟର କଳ୍ପନାକୁ ଗୋଟାଏ ମରୀଚିକାରେ ଭୁଲାଇଦିଏ, ମନୁଷ୍ୟ ଏଣେ ତେଣେ ଲକ୍ଷ୍ୟହୀନ ହୋଇ ଗତି କରେ । ସୌନ୍ଦର୍ଯ୍ୟର ସମନ୍ୱୟ ପ୍ରେମ ସଙ୍ଗେ ଘଟେ ନାହିଁ । ରୂପର ମୋହରେ ମନୁଷ୍ୟ ଶେଷରେ ଗୋଟାଏ ବିଭୀଷିକାର ଚିତ୍ର ଦେଖି ହତାଶ ହୋଇ ପଡ଼େ ।

ହୃଦୟର ସରସତା ପ୍ରେମ ଓ ସୌନ୍ଦର୍ଯ୍ୟକୁ ଯେଉଁ ରୂପ ଦାନ କରେ, ତାହା କାଳ ଓ ରୁଚି ଭେଦରେ ପରିବର୍ତ୍ତିତ ହେଲେ ସୁଦ୍ଧା କଳା-ବିଭବର ଗୋଟିଏ ସଙ୍କେତ ଚିରଦିନ ପାଇଁ ରହିଯାଏ । ସୌନ୍ଦର୍ଯ୍ୟର ଗ୍ରହଣ ଓ ପ୍ରକାଶ ପ୍ରଣାଳୀ ଉପରେ କଳାର ଉତ୍କର୍ଷ ହୃଦୟର ସରସତା ଜ୍ଞାପନ କରେ । ରୂପ-ସୃଷ୍ଟି ଗୋଟାଏ ସଙ୍କେତ ମାତ୍ର । ଗୋଟିଏ ରୂପକୁ ଅବଲମ୍ବନ କରି ଶିଳ୍ପୀ ଜଗତର ଯାବତୀୟ ସୌନ୍ଦର୍ଯ୍ୟ-ଆଧାରରେ ସେହି ରୂପ ବିକାଶ ଦେଖିପାରେ । ନିଭୃତ ମୂର୍ତ୍ତି ବୃକ୍ଷଲତା-ଶୋଭିତ-ଦୂର-ନୀଳ ପର୍ବତଶ୍ରେଣୀର ରମଣୀୟତା ଓ ଫେନିଳ ନୀଳାମ୍ବୁର ଗାମ୍ଭୀର୍ଯ୍ୟ ଛବି ନୀଳବସନା ସୁନ୍ଦରୀର ଅଞ୍ଚଳରେ ପ୍ରତିବିମ୍ବିତ ହୋଇ ପାରେ । ରୂପର ଅବଲମ୍ବନ ସବୁବେଳେ ମନକୁ ତାହାର ଆଡ଼କୁ ଆକୃଷ୍ଟ କରି ରଖିଥାଏ । ଚିତ୍ରକରର ତୂଳିକା ପରି ଏହା କାର୍ଯ୍ୟ କରେ । ଭାବନାର ଗତି ସୌନ୍ଦର୍ଯ୍ୟ ଓ ପ୍ରେମ ଆଡ଼କୁ ଗତି କଲା ମାତ୍ରକେ ରୂପ ଆସି ଅଗ୍ରଦୂତ ହୁଏ । ରାଧାଙ୍କର ବିହ୍ୱଳ ଭାବରେ ରୂପର ଯେଉଁ ତନ୍ମୟତା ଅଛି, ତାହା ଶାରୀରିକ ଆକର୍ଷଣ ସମ୍ଭୂତ ନୁହେଁ । ହୃଦୟ ଗୋଟିଏ ରୂପର ପୂଜାରେ ସମସ୍ତ ବିଶ୍ୱର ଛବିକୁ ପ୍ରକାଶିତ କରିପାରିଛି । ପ୍ରେମରୂପିଣୀ ରାଧାଙ୍କ ବିଶ୍ୱସୌନ୍ଦର୍ଯ୍ୟର ମୂଳାଧାର ଶ୍ରୀକୃଷ୍ଣଙ୍କ ସହିତ ମିଳନରେ କବିର କଳ୍ପନା ଚରମ ଉତ୍କର୍ଷ ଦେଖାଇପାରିଛି । ସୌନ୍ଦର୍ଯ୍ୟ ଓ ପ୍ରେମ ଦୁହେଁ ସାଧନା ବଳରେ ଅଭିନ୍ନ ଓ ଏକ ହୋଇଯାନ୍ତି । ଦୁହିଙ୍କର ଉନ୍ନତ ବିକାଶ ପରେ ଆପଣା ଜ୍ଞାନ ଲୋପ କରିଦିଏ । କଳଙ୍କହୀନ ମାନବ ଚରିତ୍ର ଏ ମିଳନର କଳ୍ପିତ ଆଭାସ ଦେଇପାରେ ।

ପ୍ରାକୃତିକ ସୌନ୍ଦର୍ଯ୍ୟ ସଙ୍ଗେ ପ୍ରେମପ୍ରତିମାର ସାମଞ୍ଜସ୍ୟ ରହିବା ଆବଶ୍ୟକ । ଆସକ୍ତି ନ ଆସିବା ପର୍ଯ୍ୟନ୍ତ ହୃଦୟ ସାଂସାରିକ ଆଧାରରେ କୌଣସି ଆକର୍ଷଣ ଅନୁଭବ କରେ ନାହିଁ । ପାରିପାର୍ଶ୍ୱିକ ଅବସ୍ଥା କ୍ରମଶଃ ପ୍ରଭାବ ବିସ୍ତାର କରି କୌଣସି ନିର୍ଦ୍ଦିଷ୍ଟ ଆଶ୍ରୟରେ ମନକୁ ଆବଦ୍ଧ କରିଦେଲେ ମନର ସଙ୍କୁଚିତ ଭାବ ପ୍ରକୃତିକୁ ଅନୁସରଣ କରିପାରେ ନାହିଁ । ଜଣେ ରମଣୀର ବାହ୍ୟ ସୌନ୍ଦର୍ଯ୍ୟରେ ଆବଦ୍ଧ ପୁରୁଷ ପ୍ରାଣହୀନ ଦୁର୍ବଳତାର ପରିଚୟ ଦିଏ । ସୌନ୍ଦର୍ଯ୍ୟରୁ ମୋହର ଉତ୍ପତ୍ତି ରମଣୀ-ସମ୍ପର୍କରେ ସମ୍ଭବ ହୋଇପାରେ; କିନ୍ତୁ ପ୍ରକୃତିର ଅନାବିଳ ସୌନ୍ଦର୍ଯ୍ୟ ସନ୍ଦର୍ଶନରେ ମନର ଉନ୍ନତ ଅବସ୍ଥା ସ୍ୱତଃ ଆସିଥାଏ । ସୌନ୍ଦର୍ଯ୍ୟ ସମସ୍ତଙ୍କ ପକ୍ଷରେ ସମାନ ଭାବରେ ଉପଭୋଗ୍ୟ ନୁହେଁ । ସଂଯମୀ ପୁରୁଷ କିମ୍ବା ନାରୀ ଯେତେ ପରିମାଣରେ ସୌନ୍ଦର୍ଯ୍ୟ ଗ୍ରହଣ କରିପାରେ, କାମୁକ ପକ୍ଷରେ ସେତେଟା ସମ୍ଭବ ହୁଏ ନାହିଁ । ଦୂଷିତ ଦୃଷ୍ଟିରେ ସୌନ୍ଦର୍ଯ୍ୟର ଆଧାର ମ୍ରିୟମାଣ ହୋଇଯାଏ । ରୂପବତୀ ପ୍ରେମିକାର ସୁପ୍ତ ଭାବନାରାଶି ନିସ୍ତରଙ୍ଗ, ଅତି ବିସ୍ତୀର୍ଣ୍ଣ ଜଳଭାଗ ପରି ବଡ଼ ଅଚଞ୍ଚଳ । ପ୍ରକୃତିର ଶାନ୍ତ ବିରାଟ ସୌନ୍ଦର୍ଯ୍ୟ ନିକଟରେ ଏହା ସ୍ଥାନ ନୁହେଁ । ନାରୀ ଅନ୍ତରକୁ ଯେ ପର୍ଯ୍ୟନ୍ତ ପୁରୁଷ ବୁଝିପାରି ନାହିଁ, ସେ ପର୍ଯ୍ୟନ୍ତ ନାରୀ ସୌନ୍ଦର୍ଯ୍ୟକୁ କେବଳ ଅନୁସରଣ କଲେ ବିକାଶମାର୍ଗ ପାଇବା ଅସମ୍ଭବ । ପୁରୁଷ କୌଣସି ବିଶିଷ୍ଟ ରମଣୀପ୍ରତିମାକୁ କିଛି ସମୟ ପାଇଁ ଅନୁସରଣ କରିପାରେ; କିନ୍ତୁ ତା ଅନ୍ତରର ନିଭୃତ ବାଣୀ ଶୁଣି ନ ପାରିଲେ ଅନୁସୃତିର ମୂଲ୍ୟ କିଛି ରହେ ନାହିଁ ।

ପ୍ରତିମାର ପବିତ୍ରତା ପ୍ରତି ସର୍ବଦା ଦୃଷ୍ଟି ଦେବା ଆବଶ୍ୟକ । ଜ୍ଞାନ, ଭକ୍ତି ଓ ପ୍ରେମ ଏହି ତିନି ମାର୍ଗରେ ପ୍ରତିମାର ବୈଶିଷ୍ଟ୍ୟ ରହିଛି । ଜ୍ଞାନୀ, ଭକ୍ତ ଓ ପ୍ରେମିକ ପ୍ରତିମାକୁ ଅବଲମ୍ବନ କରନ୍ତି; କିନ୍ତୁ କିଏ କେଉଁ ରୂପରେ ପ୍ରତିମାକୁ ଗଢ଼ିନିଏ, ନିର୍ଣ୍ଣୟ କରିବା କଠିନ । ସାଧନା କୌଶଳ ଜନ୍ମଗତ ପ୍ରତିଭା ପ୍ରତିମାକୁ ଭିନ୍ନ ଭିନ୍ନ ଛାଞ୍ଚରେ ଗଢ଼ିନିଏ; କିନ୍ତୁ ପ୍ରତିମା ଗଠନର ମୂଳଭିତ୍ତି ପବିତ୍ରତା ଉପରେ ନିର୍ଭର କରେ । ସାଂସାରିକ ସଂଘର୍ଷରେ ପବିତ୍ରତା ଆତ୍ମପ୍ରକାଶ କରି ମନୁଷ୍ୟକୁ ତା ଗତିପଥରେ ଛାଡ଼ିଦେଲେ ସାଧନା ଓ ପ୍ରତିଭା ଆସି ତାର କର୍ମମାର୍ଗକୁ ନିୟନ୍ତ୍ରିତ କରନ୍ତି । ପ୍ରତିମା କର୍ମମାର୍ଗର ଅଧିଷ୍ଠାତ୍ରୀ ଦେବୀରୂପେ କର୍ମୀର ଜୟଲକ୍ଷ୍ମୀ ହୁଏ । ଅନାସକ୍ତ କର୍ମରେ ତାର ପୂର୍ଣ୍ଣ ପ୍ରତିଷ୍ଠା ହୁଏ ।

# ଯୁବକ ଓ ଜଗତ୍

ଆଦମ ଯୁଗରୁ ମନୁଷ୍ୟ କଳ୍ପନା ଓ ବାସ୍ତବତା ମଧ୍ୟ ଦେଇ ଜୀବନ ଅତିବାହିତ କରି ଆସୁଅଛି । ସୁଖାନ୍ୱେଷଣରେ କଳ୍ପନାକୁ ବାସ୍ତବତାର ଭିନ୍ନ ଭିନ୍ନ ଗ୍ରନ୍ଥିରେ ଗଢ଼ିନେବା ତାର ଗୋଟାଏ ସ୍ୱଭାବଗତ ଧର୍ମ । ଜ୍ଞାନ, ଧର୍ମ, କଳା ପ୍ରଭୃତିରେ ମାନବର ପ୍ରଚେଷ୍ଟା ଯେ ମାର୍ଗସବୁ ଅନୁସରଣ କରେ ସେଥିରେ କଳ୍ପନାର ପ୍ରଭାବ ଭିତ୍ତି ସ୍ୱରୂପ ହୁଏ । କଳ୍ପନା-ପ୍ରସୂତ କର୍ମ-ରାଶିରେ ଜଗତର ବୈଚିତ୍ର୍ୟ ରକ୍ଷା ହୁଏ ବୋଲି ଏହାକୁ ଅନେକ ମାୟା-ରଚିତ କହନ୍ତି । ବିଶ୍ୱର ଅସୀମତା ସହିତ ଜୀବନ ଓ ଜଗତର ସମ୍ପର୍କକୁ ତୁଳନା କଲେ ଯେ ରହସ୍ୟ ଜନ୍ମେ, ସେଥିରେ ମନୁଷ୍ୟର କଳ୍ପନାଶକ୍ତି ଓ ବାସ୍ତବ ଜ୍ଞାନ ନିତାନ୍ତ ହେୟ ବୋଧ ହୁଏ । ମନୁଷ୍ୟର ଜୀବନ-ବ୍ୟାପୀ କର୍ମ-ସମ୍ପାଦନ ଦ୍ୱାରା ଜଗତର ବିଶାଳତାରେ ତିଳେ ମାତ୍ର ପରିବର୍ତ୍ତନ ଲକ୍ଷିତ ହୁଏ ନାହିଁ । ସଂଖ୍ୟାତୀତ ପ୍ରାଣୀ ମୂହୂର୍ତ୍ତକେ ଧରାବକ୍ଷରୁ ଲୀନ ହୋଇଯାନ୍ତି, ସେମାନଙ୍କର କର୍ମର ଚିହ୍ନ ସୁଦ୍ଧା ରହେ ନାହିଁ, କିନ୍ତୁ ଜଗତ୍ ତାର ଧାରାବାହିକ ଗତିରେ ଅଗ୍ରସର ହେଉଥାଏ । କେତେ ଅଭିନବ ପନ୍ଥା ଆବିଷ୍କାର କରି ମନୁଷ୍ୟ ତାର ସ୍ୱାତନ୍ତ୍ର୍ୟ ପ୍ରମାଣିତ କରେ । ସେ ମନେ କରେ ସମସ୍ତ ଜଗତ୍ ତାକୁ ଅନୁସରଣ କରିବ, କିନ୍ତୁ ଯେଉଁ ବୈଚିତ୍ର୍ୟ ଯେନି ମନୁଷ୍ୟର ଜଗତ୍ ସଙ୍ଗେ ନିବିଡ଼ ସମ୍ପର୍କ, ତାହା କୌଣସି କର୍ମର ବିଶିଷ୍ଟତାକୁ ବେଶୀ ଦିନ ସ୍ଥାୟୀ କରାଇ ଦିଏ ନାହିଁ । ଏ ସବୁ ଦେଖି ମନେ ହୁଏ, ସାଂସାରିକ କର୍ମରାଶି କେବଳ ତରଙ୍ଗ ପରି ଏକ ଅବିରାମ ଗତିରେ ସଙ୍ଘଟିତ ହେଉଅଛି ।

ମନୁଷ୍ୟର ଜୀବନଟା କର୍ମ-ସ୍ୱରୂପ କେତେଗୁଡ଼ାଏ ତରଙ୍ଗର ସମଷ୍ଟି ମାତ୍ର । ଏହି ତରଙ୍ଗଗୁଡ଼ିକ ସବୁ ସମୟରେ ସମାନ ଭାବରେ ଉଠେ ନାହିଁ । ଉତ୍ପତ୍ତି ଓ ବିନାଶକୁ ବାଦ୍ ଦେଇ ମନୁଷ୍ୟର ଦୃଷ୍ଟିଶକ୍ତି ସଂଗୃହୀତ ହୋଇପାରେ ନାହିଁ । ଧ୍ୱଂସାବଶେଷରେ ଗଠନ-କ୍ରିୟା ଓ ନିର୍ମାଣ-ନିପୁଣତାରେ ପତନର ଆଶଙ୍କା ନ ଥିଲେ ମନୁଷ୍ୟର ଜଗତ୍ ସଙ୍ଗେ ଯେ ସମ୍ପର୍କଟା ଲାଗି ରହିଛି, ତାହା ଅନେକ ଦିନରୁ ଶିଥିଳ ହୋଇଯାଆନ୍ତାଣି । କର୍ମ-ସ୍ପୃହା ମନୁଷ୍ୟର ଜନ୍ମଗତ । ଏହା ଯଦି ସମସ୍ତଙ୍କଠାରେ ସମାନ ଭାବରେ ଥାନ୍ତା, ତାହାହେଲେ ଗୋଟାଏ କର୍ମପ୍ରବାହ ଜଗତକୁ ବ୍ୟାପି ରହିଥାନ୍ତା । ଆଶୟ ଭେଦରେ କର୍ମର ଯେ ସ୍ତରସବୁ ସଂଚିତ ହୁଏ, ତାହା ଉଚ୍ଚ ଓ ନୀଚ ସୋପାନ ସୃଷ୍ଟି କରି କର୍ମ-ଜଗତର ଶ୍ରୀ ସାଧନ କରେ । ଶୈଶବ, କୈଶୋର, ଯୌବନ ଓ ବାର୍ଦ୍ଧକ୍ୟରେ ମନୁଷ୍ୟ ଭିନ୍ନ ଭିନ୍ନ କର୍ମପନ୍ଥା ଅବଲମ୍ବନ କରେ । ଚିରଦିନ ଗୋଟାଏ ଅବଲମ୍ବନରେ ପ୍ରାଣର ଆକାଙ୍‌କ୍ଷା ନିବୃତ୍ତ ହୁଏ ନାହିଁ, ତେଣୁ ମନୁଷ୍ୟ ମାର୍ଗାନ୍ତରକୁ ଅନୁସରଣ କରୁଥାଏ । ସାଂସାରିକ ଜୀବନର ଅପୂର୍ଣ୍ଣତା ପ୍ରମାଣ କରିବା ପାଇଁ ଏହା ଗୋଟିଏ ଉତ୍କୃଷ୍ଟ ଉପାୟ । ପ୍ରତ୍ୟେକ ଜୀବନରେ ଆକର୍ଷଣର ପ୍ରଭାବ ରହିଛି । ଏହା ନ ଥିଲେ ଜୀବନର ଗତି ଆଦୌ ନିରୂପିତ ହୋଇପାରନ୍ତା ନାହିଁ । ଶିଶୁ-ପ୍ରାଣର ଉନ୍ମାଦନା ଯୌବନ କିମ୍ବା ବାର୍ଦ୍ଧକ୍ୟରେ ଭିନ୍ନ ଭାବ ଧାରଣ କରେ । ଶିଶୁର କ୍ରୀଡ଼ା ସାଧାରଣତଃ ଯୁବକ ଚକ୍ଷୁରେ ଉପେକ୍ଷିତ ହୋଇଥାଏ । ଯୁବକର ଦୃଷ୍ଟି ଯାଏ ଭିନ୍ନ ଦିଗରେ । ସାଂସାରିକ ପରିବର୍ତ୍ତନ ସର୍ବଦା ଲାଗିରହିଛି, କିନ୍ତୁ ମନୁଷ୍ୟର କର୍ମ ସେଥିରେ ବିଶେଷ ଭାବରେ ନିୟନ୍ତ୍ରିତ ହୁଏ ନାହିଁ । ହୃଦୟର ପ୍ରେରଣାରେ ମନୁଷ୍ୟ ଯେ କର୍ମ-କ୍ଷେତ୍ର ସୃଷ୍ଟି କରେ, ତାକୁ ଜଗତ୍ ଆକାଂକ୍ଷାରେ ଗ୍ରହଣ କରେ ।

ବର୍ତ୍ତମାନ ମନୁଷ୍ୟର ଅନ୍ୟାନ୍ୟ ଦଶା ବାଦ୍ ଦେଇ କେବଳ ଯୁବକର ଜଗତ୍ ସହିତ ସମ୍ପର୍କକୁ ଆଲୋଚନା କରାଯାଉ । ଶୈଶବରୁ ଜୀବନଧାରାଟି ମୃଦୁ ଗତିରେ ଆସୁଥାଏ । କେତେ ସୁଖ-ସ୍ୱପ୍ନରେ ହୃଦୟର ଆବେଗ ସଞ୍ଚିତ ହୋଇ ରହୁଥାଏ । କୈଶୋର ଆସେ—ସରଳ ପ୍ରାଣରେ ଟିକିଏ ଉଦ୍ଦାମତା ଖେଳିଯାଏ । ହୃଦୟର ସ୍ପନ୍ଦନ ଆସ୍ତେ ଆସ୍ତେ ଉଚ୍ଛ୍ୱସିତ

ହୋଇ ଉଠେ । ଯୌବନର ମାଙ୍ଗଳିକ ଗାନ କୈଶୋର ଆଗରୁ ଗାଇ ଦେଇଯାଏ । ଜୀବନର ଗୋଟାଏ ବିରାଟ ଅଧ୍ୟାୟର ଆରମ୍ଭ ପୂର୍ବରୁ ଯେଉଁ ସୂଚନା ସବୁ ଦେଖାଯାଏ, ସେଥିରେ ଭାବୀ ମଙ୍ଗଳ କିମ୍ବା ଅମଙ୍ଗଳର ଚିହ୍ନ ଅସ୍ପଷ୍ଟ ଆକାରରେ ଆତ୍ମପ୍ରକାଶ କରେ । ଜଣେ ଚିନ୍ତାଶୀଳ ବ୍ୟକ୍ତି କହିଅଛନ୍ତି—"Morning shows the day." ଏଥିର ଦୃଷ୍ଟାନ୍ତ ବିରଳ ନୁହେଁ । ବାଳକ ନେପୋଲିୟନ ଫ୍ରାନ୍ସର ଦୂରବସ୍ଥା ହୃଦୟଙ୍ଗମ କରି ଯେ ଅମୋଘ ବାଣୀ ଉଚ୍ଚାରଣ କରିଥିଲେ ତାହା ଦିନେ ତାଙ୍କରି ଜୀବନରେ ପ୍ରମାଣିତ ହେଲା । ଯଥାର୍ଥରେ ସେ ଫ୍ରାନ୍ସର ଭାଗ୍ୟ ପରିବର୍ତ୍ତନ କରି ଦେଇଥିଲେ । ବାଳକର ପ୍ରବଳ ଆକାଙ୍କ୍ଷା ନ ଥିଲେ ଯୁବକ ଏଡ଼େ ଅମିତ ବିକ୍ରମ ଦେଖାଇ ପାରନ୍ତା ନାହିଁ । କଳ୍ପନା-କଳିକାଟି ଯୌବନରେ ଫୁଟି ଉଠେ । କୁସୁମର ସବୁ ସୌରଭ ଆଗରୁ ସଂଚିତ ହୋଇଥାଏ । ସମୟ ହେଲାକ୍ଷଣି ଅନୁକୂଳ ସମୀରଣ ଆସି ତାର ଗନ୍ଧକୁ ଦିଗ୍‌ଦିଗନ୍ତରରେ ଖେଳାଇଦିଏ ।

ଯୌବନ ଆସିଲାକ୍ଷଣି ଜୀବନର ଉତ୍ସଟି ପୂର୍ଣ୍ଣରୂପେ ଉନ୍ମୁକ୍ତ ହୋଇଯାଏ । ଶତ ବାଧା ଓ ନିର୍ଯ୍ୟାତନା ଆସେ—ଯୁବକ ସେଥିପ୍ରତି ଦୃକ୍‌ପାତ କରେ ନାହିଁ । ସେ ଦେଖେ ସମସ୍ତ ଜଗତଟା ଯେପରି ଗୋଟାଏ ଭାବରେ ଅନୁପ୍ରାଣିତ । ଯୁବକ ନିଜେ ମୁଗ୍ଧ ହୋଇ ଜୀବନର ଯେ ସରସତା ଦେଖାଏ, ସେଥିରେ ସଂସାରର ଅଳୀକତା ଦୂର ହୋଇଯାଏ । ଆଶାର ବନ୍ଧନରେ ପ୍ରାଣର ଉଦ୍ଦାମତା ବୃଦ୍ଧିପାଏ । ଯୁବକ ତାର ମନୋଽଟ୍ଟାଳିକା ଗଢ଼ିବାକୁ ବସେ । ଅତୀତର ସ୍ମୃତି-ଚିହ୍ନରେ ଏହି ସୌଧର ସୌନ୍ଦର୍ଯ୍ୟ ସମ୍ପାଦନ କରି ସେ ମନେ କରେ ଜୀବନରେ ଆଉ କୌଣସି ଅଭାବ ନାହିଁ, କିନ୍ତୁ ସମୟ ସମୟରେ ଆକସ୍ମିକ ବିପଦର ଆବର୍ତ୍ତ ଆସି ସବୁ ବିପର୍ଯ୍ୟସ୍ତ କରିଦିଏ । ଯୁବକର ଆତ୍ମପ୍ରତ୍ୟୟ ଥିଲେ ସେ ପୁଣି ତାର କର୍ମ-କ୍ଷେତ୍ରରେ ଅଗ୍ରସର ହୁଏ । ବାଧା ଲଙ୍ଘି ଜୀବନର ଉପାଦେୟତା ଦେଖାଇପାରିଲେ ଯୌବନର ପ୍ରକୃତ ପରିଚୟ ମିଳେ । ଚିରଦିନ ଯୁବ-ଶକ୍ତି ଜଗତର ଚିନ୍ତା ଓ କାର୍ଯ୍ୟଧାରାର ପରିବର୍ତ୍ତନ କରି ଆସିଅଛି । ଯେ ଦେଶର ଯୁବକ ନିଜର କର୍ମ-ମାର୍ଗ ଅନୁସରଣ କରିପାରେ ନାହିଁ କିମ୍ବା ଅପରର ମୁଖାପେକ୍ଷୀ ହୋଇ ରହେ, ସେ ଦେଶର ଜଗତ୍ ସଙ୍ଗେ କୌଣସି ଜୀବନ୍ତ ସମ୍ପର୍କ ରହେ ନାହିଁ । ଦେଶ-ମାତୃକାର ଧମନୀରେ ଯୁବକର ଶକ୍ତି ମୃତସଞ୍ଜୀବନୀ ପରି କାର୍ଯ୍ୟ କରେ । ଜାତୀୟ ସ୍ୱାର୍ଥରକ୍ଷା ପାଇଁ ଯୁବକର ଆତ୍ମତ୍ୟାଗ ସବୁ ଦେଶରେ ସବୁ ସମୟରେ ଲୋଡ଼ା ହୋଇଥାଏ; କିନ୍ତୁ ନିସ୍ତେଜ ଜାତି ଏଥିର ମର୍ମ ବୁଝେ ନାହିଁ ।

ଜଗତର ରମଣୀୟତା ଉପଭୋଗ କରିବା ପାଇଁ ମନୁଷ୍ୟ ଜୀବନରେ ଯୌବନର ସୃଷ୍ଟି । ଆନନ୍ଦର ଉପକରଣଗୁଡ଼ିକ ଯୁବକ ଦୃଷ୍ଟିରେ ବିଶେଷ ଭାବରେ ଆଦୃତ ହୋଇଥାଏ । ସୌନ୍ଦର୍ଯ୍ୟର ମୂଲ୍ୟ ବୁଝେ ଯୁବକ । ହୃଦୟର ଉପାସନାରେ ଯୁବକର ଯେ ଆତ୍ମବିସ୍ମୃତି ଆସେ ଓ ଯେଉଁ ନିଭୃତ ଦାନରେ ତାର ମସ୍ତକ ଅବନତ ହୋଇପଡ଼େ, ତାହା ସୌନ୍ଦର୍ଯ୍ୟର କୁହୁକସ୍ପର୍ଶ ଛଡ଼ା ଅନ୍ୟ କିଛି ନୁହେଁ । ଅନ୍ତରର ଭାବବିନିମୟରେ ନିଜତ୍ୱ ଭୁଲିଯାଇ ଅପର ନିକଟରେ ଆତ୍ମତ୍ୟାଗର ଚରମ ନିଦର୍ଶନ ଦେଖାଇବା କେବଳ ଯୁବକ ପକ୍ଷରେ ସମ୍ଭବପର ହୋଇଥାଏ । ପ୍ରାପ୍ତି ସଙ୍ଗେ ଦାନ ତୁଳନା କଲେ ଜଗତରେ ଯୁବକର ସ୍ଥାନ ଅତି ଉଚ୍ଚରେ ନିର୍ଦ୍ଦେଶ କରାଯାଇ ପାରେ । ଯେତେ ଥର କିଛି ମହତ୍ କିମ୍ବା ଦୁଷ୍ପ୍ରାପ୍ୟ ବସ୍ତୁ ଗ୍ରହଣ କରିବାକୁ ଯୁବକର ପ୍ରେରଣା ଆସିଛି, ସେ ତାର ଉପଯୁକ୍ତ ମୂଲ୍ୟ ଦେବାରେ କୁଣ୍ଠିତ ହୋଇ ନାହିଁ । ହୃଦୟକୁ ପୂର୍ଣ୍ଣଭାବରେ ଉନ୍ମୁକ୍ତ କରିବାକୁ ସେ ପଶ୍ଚାତ୍‌ପଦ ହୁଏ ନାହିଁ । ହୃଦୟବଳରେ ସେ ପରକୁ ଆପଣାର କରିନିଏ । ପ୍ରେମବିତରଣ କରିବା ତାର ଗୋଟିଏ ସ୍ୱାଭାବିକ ଗୁଣ । ଜଗତର ଲାଞ୍ଛନା ଓ ପ୍ରବଞ୍ଚନା ଯୁବକପ୍ରାଣକୁ ଶତ ଆଘାତ କରେ । ଯାହା ନିକଟରୁ ସେ ଥରକପାଇଁ ଟିକିଏ ଆଶ୍ୱାସନା ପାଇଥାଏ, ସେ ତା ପ୍ରତି ନିର୍ମମ ବ୍ୟବହାର କରିପାରେ, କିନ୍ତୁ ଯୁବକ ପ୍ରାଣର ସରଳତାରେ ସବୁ ଭୁଲିଯାଏ । ମୁହୂର୍ତ୍ତିକର ଅନୁଭୂତି ହୃଦୟରେ ଯେ ଆବେଗ ଆଣେ ଓ ଅତି କ୍ଷୀଣ ଅବଲମ୍ବନରେ ଆଶାର ଯେ ସରସ କୁସୁମ ଫୁଟି ଉଠେ, ତାହା ଯୌବନ ଛଡ଼ା ଅନ୍ୟ ସମୟରେ ସମ୍ଭବପର ହୁଏ ନାହିଁ । ଜଗତରେ ଲଳନାକୁଳ ଯୁବକଠାରୁ ସାମାନ୍ୟ ଦାନ ପାଇ ନାହିଁ ।

ଯୌବନ ବୁଝେ ବନ୍ଧୁତ୍ୱର ନିଗୂଢ଼ ମର୍ମ । ସରସ ସମ୍ପର୍କର ସରସତା ଗ୍ରହଣ କରିବାପାଇଁ ଯୌବନ ଯେପରି ଉଦ୍‌ବିଗ୍ନ ହୋଇପଡ଼େ, ମନୁଷ୍ୟର ଅନ୍ୟ ଦଶାରେ ସେପରି ସମ୍ଭବପର ହୁଏ ନାହିଁ । ମୁହୂର୍ତ୍ତିକର ସ୍ପନ୍ଦନ ହୃଦୟରେ ଗୋଟାଏ ଅନୁଭୂତି ରଖିଦେଇଯାଏ । ଯୌବନରେ ଏହି ଅନୁଭୂତିର ପରିମାଣ ଓ ପ୍ରକାର ଭବିଷ୍ୟତ୍ ଜୀବନକୁ ବିଶେଷ ଭାବରେ ପ୍ରଭାବିତ କରେ ।

ନାନା ଭାବରେ ବିଡ଼ମ୍ବିତ ସଂସାରବର୍ତ୍ମ ଅତିକ୍ରମ କରିବା ପାଇଁ ମନୁଷ୍ୟ ସର୍ବଦା ଜଣେ ଅନ୍ତରଙ୍ଗ ବନ୍ଧୁର ଅନ୍ୱେଷଣରେ ଥାଏ । ଖୁବ୍ କମ ଲୋକ ଉପଯୁକ୍ତ ସାଥୀର ସଙ୍ଗ ଲାଭ କରନ୍ତି । ଅନ୍ତର ନ ମିଳିବା ଯାଏ କେହି କାହାର ଅନୁସରଣ କରେ ନାହିଁ । ହୃଦୟର ନିଭୃତ ବାସନା ପ୍ରକାଶ କରି ଯୌବନର ଉଦ୍ଦାମତା ମେଣ୍ଟାଇନେବା କେବଳ ଜଣେ ସାଥୀର ସାହଚର୍ଯ୍ୟରେ ଘଟେ । ଅନେକ ଯୁବକ ଅତିମାତ୍ରାରେ ଉଚ୍ଛୃଙ୍ଖଳ ସ୍ୱଭାବର ବଶବର୍ତ୍ତୀ ହୋଇ ଜୀବନର ସରସତାକୁ ହଳାହଳମୟ କରିଦିଅନ୍ତି । ସେମାନେ ପ୍ରବଳ ଲିପ୍ସାର ନିବୃତ୍ତି ପାଇଁ ବନ୍ଧୁର ସାହାଯ୍ୟ ଲୋଡ଼ନ୍ତି, କିନ୍ତୁ ଏହା ପ୍ରକୃତରେ ସହୃଦୟତାର ପରିଚୟ ଦିଏ ନାହିଁ । ଯେପରି ଫୁଲଟିଏ ଫୁଟି ସୁଗନ୍ଧ ବିତରଣ କରେ ଓ ମଧୁଲିପ୍ସୁମାନେ ଆସି ତାର ସୌରଭରେ ମଜ୍ଜି ଯାଆନ୍ତି, ସେହିପରି ବିକଶିତ ଯୌବନର ଗୁଣ ଗ୍ରହଣ କରି ଯୁବକକୁ ସତ୍‌ପଥ ଦେଖାଇବାରେ ଯେଉଁମାନେ ସହାୟ ହୁଅନ୍ତି, ସେହିମାନେ ଜଗତର ପ୍ରଭୂତ ମଙ୍ଗଳ କରନ୍ତି ।

ଯୁବକର ଶକ୍ତି ଉପଯୁକ୍ତ ଭାବରେ ନିୟୋଜିତ ହେଉଥିଲେ ଆଜି ଜଗତରେ ଅଶାନ୍ତିର ମାତ୍ରା ଅତି ଅଳ୍ପ ଦେଖାଯାନ୍ତା । ପ୍ରବଳ ବନ୍ୟାରେ ନଦୀବକ୍ଷ ଉଚ୍ଛ୍ୱସିତ ହୋଇଉଠେ, ବନ୍ୟାସ୍ରୋତ କିଛି ମାନିବାକୁ ଚାହେଁ ନାହିଁ; କିନ୍ତୁ ନଦୀର ପାର୍ଶ୍ୱବର୍ତ୍ତୀ ପ୍ରତିବନ୍ଧକମାନ ସ୍ରୋତର ଗତିକୁ ନିମ୍ନଗାମୀ କରି ସମୁଦ୍ର ଆଡ଼କୁ ପଥ ଦେଖାଇଦିଏ । ଜୀବନରେ ଯୌବନ ଗୋଟାଏ ଉତ୍ତୁଙ୍ଗ ଆକାର ଧାରଣ କରି ଆସେ—କେତେ କ୍ଷିପ୍ରତାର ନିଦର୍ଶନ ଦେଖାଏ—ସମାଜ, ଜାତି କିମ୍ବା ସମ୍ଭ୍ରମ ପ୍ରତି ଭ୍ରୂକ୍ଷେପ କରେ ନାହିଁ । ଗୋଟାଏ ମୋହରେ ମାତିଯିବା ତାର ଲକ୍ଷ୍ୟ ହୋଇ ପଡ଼େ । ଏହି ବିଷମ ସମୟରେ ହିତାକାଂକ୍ଷୀ ବନ୍ଧୁମାନେ ଆସି ଯୁବକର ଉଚ୍ଛୃଙ୍ଖଳ ଯୌବନକୁ ସଂଯତ କରି ନ ଦେଲେ ଅଗ୍ନିସ୍ଫୁଲିଙ୍ଗ ବିଚ୍ଛୁରିତ ହେଲାପରି ନଷ୍ଟ ଯୌବନ ମନୁଷ୍ୟ ଜାତିର ସବୁ ଦୁର୍ବଳତା ପ୍ରକାଶ୍ୟ ଭାବରେ ପ୍ରମାଣ କରି ଦେଇଯାଏ ।

ଗୋଟାଏ ଜଳ-ପ୍ରବାହକୁ ଚିରଦିନ ସକାଶେ ଆବଦ୍ଧ କରିଦେଲେ ତାର ପୂତିଗନ୍ଧ ସର୍ବତ୍ର ବ୍ୟାପିଯାଏ । ସୁସଂଯତ କରିବା ଛଳରେ ଯୌବନକୁ ସର୍ବଦା ସନ୍ଦେହ ଚକ୍ଷୁରେ ଦେଖି ଯୁବକ ପ୍ରତି ନିଷ୍ଠୁର ବ୍ୟବହାର କଲେ ଜୀବନର ସ୍ୱଚ୍ଛନ୍ଦ ଗତିରେ ବାଧା ଜନ୍ମେ । ଉତ୍‌ଫୁଲ୍ଲ ଯୁବକର ଆଶାକୁସୁମଟି ଅକାଳରେ ମଉଳି ପଡ଼େ । ଗୋଟାଏ ଗ୍ଲାନି ଆସି ତା ହୃଦୟକୁ ଗ୍ରାସିଯାଏ । ସେ ନିଜକୁ ଅଭିଶପ୍ତ ମନେ କରେ । ବେତାର ଯନ୍ତ୍ର ବାୟୁମଣ୍ଡଳରେ କୌଣସି ବଜ୍ରପାତ ହେଲାକ୍ଷଣି ଠିକ୍‌ରୂପେ କାର୍ଯ୍ୟ କରିପାରେ ନାହିଁ । ନାନା ଅବାନ୍ତର ତରଙ୍ଗ ଆସି ଯନ୍ତ୍ରରେ ଆଘାତ ଦିଏ । ଯୌବନର ଭାବ-ତରଙ୍ଗରେ ହଠାତ୍ ସେହିପରି ପ୍ରତିବନ୍ଧକସବୁ ସୃଷ୍ଟି କରିଦେଲେ ଗୋଟାଏ ବିଦ୍ରୋହ ଜନ୍ମି ସମସ୍ତ ଜୀବନକୁ ମରୁଭୂମିର ଭୀଷଣତାରେ ପୂର୍ଣ୍ଣ କରିଦିଏ ।

କର୍ମ-ଜୀବନକୁ ଯୌବନର ପ୍ରେରଣା ଅତ୍ୟଧିକ ଭାବରେ ନିୟନ୍ତ୍ରିତ କରେ । ଜଗତର ସୌନ୍ଦର୍ଯ୍ୟକୁ ସ୍ପଷ୍ଟରୂପେ ପ୍ରକାଶ କରିବାକୁ ଯୌବନ କେବଳ ସମର୍ଥ ହୋଇଯାଏ । ନୈସର୍ଗିକ ଶୋଭାସମ୍ପଦର ମହନୀୟତା ଉପଲବ୍ଧି କରି କ୍ଲିଷ୍ଟ ସଂସାରବାସୀ ମନରେ ଭୂସ୍ୱର୍ଗର ଅନିନ୍ଦ୍ୟ ଭାବ ସଞ୍ଚାର କରାଇବାରେ ଯୁବକର ଗୌରବ । ଯୁବତୀର ଅନ୍ତରର କଥା ଜାଣି ତାକୁ ଜୀବନର ସାଥୀ କରିନେବାକୁ ସେ ଯେପରି ସ୍ୱାର୍ଥତ୍ୟାଗର ନିଦର୍ଶନ ଦେଖାଏ, ତାହା କୈଶୋର କିମ୍ବା ବାର୍ଦ୍ଧକ୍ୟ ଶକ୍ତିର ବହିର୍ଭୂତ । ନାରୀଜାତିର ରକ୍ଷାଲାଗି ଯୁବକ ନିଜର ପ୍ରାଣ ପୁଣି ଅକାତରରେ ଦେଇପାରେ । ସରସ ପଦାର୍ଥଟିର ସରସତା ବୁଝିବାକୁ ଯୁବକ ସର୍ବଦା ବ୍ୟଗ୍ର ହୋଇ ପଡ଼େ । ମନୀଷୀମାନେ କହନ୍ତି—ନାରୀ ସ୍ୱଭାବ କୁଟିଳତାରେ ପୂର୍ଣ୍ଣ । ତାର ହୃଦୟର ଭାବ ଅବଧାରଣ କରିବା ପୁରୁଷ ପକ୍ଷରେ ସମ୍ଭବପର ନୁହେଁ । ଜଗତର ଅଧିକାଂଶ ଅହିତ ସକାଶେ ସେମାନେ ନାରୀଜାତିକୁ ଦାୟୀ କରନ୍ତି । ବାସ୍ତବରେ ଅତୀତର ଇତିହାସ ଉଦ୍‌ଘାଟନ କଲେ ଏଥିର ଦୃଷ୍ଟାନ୍ତ ମିଳିପାରେ । ଆମ୍ଭମାନଙ୍କର ମତରେ ସଂସାରର ଅକଲ୍ୟାଣ ସକାଶେ ନାରୀ ଏକାକୀ କାହିଁକି ଦାୟୀ ହେବ ? ପୁରୁଷ ଯେତେଥର ନାରୀପ୍ରତି ଅମର୍ଯ୍ୟାଦା ଦେଖାଇଛି କିମ୍ବା ତାର ସୌନ୍ଦର୍ଯ୍ୟ ପ୍ରତି ତୀବ୍ର କଟାକ୍ଷ କରି ନିଜର ଲୋଲୁପତା ମେଣ୍ଟାଇବାକୁ ଯାଇଛି, ସେତେଥର ଧରାବକ୍ଷ ନର-ଶୋଣିତରେ କଳୁଷିତ ହୋଇଅଛି । ଯେଉଁମାନେ ରମଣୀର ସୌନ୍ଦର୍ଯ୍ୟରେ ସ୍ୱର୍ଗର ସୁଷମା ଦେଖିପାରନ୍ତି ନାହିଁ, କେବଳ କାମ ପରିତୃପ୍ତିର ପ୍ରଧାନ ଅବଲମ୍ବନ ବୋଲି ତାକୁ ଗ୍ରହଣ କରନ୍ତି, ସେହିମାନେ ନାରୀଠାରୁ ପ୍ରକୃତ ପ୍ରେରଣା ପାଆନ୍ତି ନାହିଁ । ଯୁବକ ଯଦି ଶାନ୍ତଭାବରେ ନାରୀ ପ୍ରକୃତି ଆଲୋଚନା କରେ, ତାହାହେଲେ ସେ ତାଠାରୁ ଯଥେଷ୍ଟ ପାଇପାରେ । ଅନେକ ଉଦ୍‌ଭ୍ରାନ୍ତ

ଯୁବକଙ୍କ ଜୀବନ ରମଣୀର ପୂତ ଆକର୍ଷଣରେ ଉନ୍ନତିର ଚରମ ସୋପାନକୁ ବହୁବାର ଆନୀତ ହୋଇଅଛି । ଯୁବତୀର ମୋହ ଯୁବକକୁ ବର୍ତ୍ମ-ସ୍ଖଳିତ କରିପାରେ, କିନ୍ତୁ ଯେତେବେଳେ ଉଚ୍ଛ୍ୱସିତ ଯୌବନର ନୀରବ ଓ ନିଭୃତ ଭାବନା ଉଭୟ ଯୁବକ ଓ ଯୁବତୀର ହୃଦୟତନ୍ତ୍ରୀରେ ଖେଳିଯାଇ ଗୋଟାଏ ଅଚ୍ଛେଦ୍ୟ ବନ୍ଧନରେ ଦୁଇଟା ଜୀବନକୁ ମିଳାଇବାକୁ ବସେ, ସେତେବେଳେ ଜଗତ୍ ଓ ଜୀବନର ସାର୍ଥକତା ପ୍ରମାଣିତ ହୁଏ । ବୈଦ୍ୟୁତିକ ଶକ୍ତି ସାହାଯ୍ୟରେ ଜଗତ୍ ଆଜି ଅନେକ ଅଦ୍ଭୁତ ଘଟନା ଦେଖୁଛି । ଯାହା ଦିନେ କଳ୍ପନାର ଅତୀତ ଥିଲା ଓ ଯେଉଁ ବିଦ୍ୟୁତ୍ ପ୍ରାଣ-ସଂହାରକ ମାତ୍ର ଥିଲା, ମନୁଷ୍ୟ ଅକ୍ଳେଶରେ ତାର ସାହାଯ୍ୟରେ ଆଜି ଅନେକ କାର୍ଯ୍ୟ ସମ୍ପାଦନ କରୁଅଛି । ଯୁବକର ଶକ୍ତି ବିଦ୍ୟୁତ୍ ସଙ୍ଗେ ସମାନ କହିଲେ ଚଳେ । ଯୁବକ ବହୁବାର ଜଗତର ଧ୍ୱଂସ ସାଧନ କରିଛି, ରଣାଙ୍ଗନରେ ମୃତ୍ୟୁର କରାଳତା ସୃଷ୍ଟି କରିବାକୁ ଯୁବକର ପ୍ରଥମେ ଲୋଡ଼ା ହୁଏ; କିନ୍ତୁ ସେହି ଯୁବକର ଶକ୍ତି ଜ୍ଞାନର ଉତ୍କର୍ଷ ଦେଖାଇ ପୃଥିବୀର ବହୁସ୍ୱ ସମ୍ପାଦନ କରେ ବୋଲି ଜଗତର ଗୌରବ ରକ୍ଷିତ ହୋଇଅଛି । ମେରୁ ପ୍ରଦକ୍ଷିଣ, ଉତ୍ତୁଙ୍ଗ ପର୍ବତ ଶୃଙ୍ଗ ଆରୋହଣ ଓ ଭୀଷଣ ଜଳଧିବକ୍ଷରେ ବିଚରଣ କରିବା ଆଜି ସଭ୍ୟ ଯୁବକର ପ୍ରାଣର ଆକାଙ୍‌କ୍ଷା ହେଲାଣି । ସଭ୍ୟତାର ଅଗ୍ରଗତିରେ ଯୁବକ ଅଗ୍ରଦୂତ, ତାକୁ ବାଦ୍ ଦେଲେ ଜଗତରେ ଶୌର୍ଯ୍ୟ କିମ୍ବା ସମ୍ପଦ କିଛି ଦେଖିବାକୁ ମିଳିବ ନାହିଁ ।

# ଭାରତର ଜାଗରଣ

"He who rules, high and wise,
Nor flatters in his plan,
will take the stars out of the skies
Ere freedom out of Man ?"

—Emerson.

ମନୁଷ୍ୟ ଜାତିର ଇତିହାସ ଆଲୋଚନା କଲେ ଦେଖାଯିବ ଯେ, ଆଦିମ ଯୁଗରୁ ପ୍ରତ୍ୟେକ ଦେଶବାସୀ ନିଜର ସ୍ୱାଧୀନତା ଓ ଉନ୍ନତି ପାଇଁ ସର୍ବଦା ଚେଷ୍ଟିତ । ଏହି ଚେଷ୍ଟା କେଉଁ ଦେଶବାସୀ ଦ୍ୱାରା କିପରି ଭାବରେ ନିୟନ୍ତ୍ରିତ ହେଉଛି, ତାହା ନିର୍ଦ୍ଦେଶ କରିବା ଆମ୍ଭମାନଙ୍କର ଉଦ୍ଦେଶ୍ୟ ନୁହେଁ । ସ୍ଥୂଳତଃ ଏତିକି କୁହାଯାଇପାରେ ଯେ, ଜାତିଗତ ଉନ୍ନତି ପାଇଁ ସମସ୍ତ ପୃଥିବୀବାସୀ ବ୍ୟଗ୍ର ଭାବରେ ଧାଇଁଛନ୍ତି ।

ବିଂଶ ଶତାବ୍ଦୀର ଏହି ମହାଜାଗରଣ ସମୟରେ ଭାରତ ପକ୍ଷରେ ନୀରବ ହୋଇ ରହିବା କଦାପି ଶୋଭନୀୟ ହୋଇ ନ ଥାନ୍ତା । ଦିନ ଥିଲା ଯେତେବେଳେ ଭାରତ ପୃଥିବୀର ସର୍ବଶ୍ରେଷ୍ଠ ଧର୍ମ, ସାହିତ୍ୟ ଓ ଦର୍ଶନ ପ୍ରକାଶ କରିବାକୁ କ୍ଷମ ହୋଇଥିଲା । ସଭ୍ୟତାର ପ୍ରଥମ ଆଲୋକ ଆଜକୁ ପ୍ରାୟ ୩୦୦୦ ବର୍ଷ ପୂର୍ବେ ଭାରତ ଜଗତ୍ ସମକ୍ଷରେ ଉଦ୍ଭାସିତ କରିଥିଲା । କିନ୍ତୁ ସେ ଗୌରବ ଆଜି ଲୁପ୍ତ । ଲୁପ୍ତ ଗୌରବ ଉଦ୍ଧାର କରିବାରେ ଭାରତସନ୍ତାନକୁ ବ୍ରତୀ ଦେଖିଲେ କାହା ମନରେ ଆନନ୍ଦ ଓ ଆଶାର ସଞ୍ଚାର ନ ହୁଏ ? ଜଗଦ୍‌ବାସୀ ସମ୍ମୁଖରେ ଭାରତବାସୀ ନିଜର ଆତ୍ମପ୍ରକାଶ କରିବାକୁ ଯାଇ ଯଦି ଦୁର୍ବଳ ବିବେଚିତ ହୁଏ, ତାହାହେଲେ ସେଥିରୁ କ୍ଷାନ୍ତ କରିବା କଅଣ ଅନ୍ୟାନ୍ୟ ସଭ୍ୟଜାତିମାନଙ୍କ ପକ୍ଷରେ ଶୋଭନୀୟ ? ଦୁର୍ବଳକୁ ବଳଦାନ କରିବା ଯଦି ମନୁଷ୍ୟର ଧର୍ମ ହୁଏ, ତାହାହେଲେ ଆଧୁନିକ ସଭ୍ୟଜାତିମାନେ ଭାରତର ଜାତୀୟ ଜାଗରଣରେ ସହାୟ ହେବେ । ଏହାଦ୍ୱାରା କେବଳ ଭାରତର କାହିଁକି, ସମଗ୍ର ପୃଥିବୀର କଲ୍ୟାଣ ସାଧିତ ହେବ । ଗୋଟିଏ ଅଙ୍ଗ ଅବଶ ହେଲେ ଯେପରି ସମଗ୍ର ଶରୀରର ପୁଷ୍ଟିସାଧନ ପକ୍ଷରେ ବାଧା ଜନ୍ମେ, ସେହିପରି ଗୋଟିଏ ବିଶାଳ ଜାତିର ଅବନତିରେ ପୃଥିବୀର ସଭ୍ୟତାରେ ବାଧା ଆସିବା ଅସମ୍ଭବ ନୁହେଁ । ଏହି ବାଧା ଆସିବା ଦ୍ୱାରା ନାନା ଅତ୍ୟାଚାର ଓ ଅପକର୍ମର ଉତ୍ପତ୍ତି ହୁଏ । ଦୃଷ୍ଟାନ୍ତ ସ୍ୱରୂପ ଆମ୍ଭେମାନେ କହିପାରୁଁ ଯେ, ଗ୍ରେଟ୍‌ବ୍ରିଟେନ୍ ଭାରତକୁ ପୂର୍ବରୁ ସ୍ୱାୟତ୍ତ ଶାସନ ଦେଇଥିଲେ ଗତ ମହାସମର ଏପରି ପ୍ରବଳ ଆକାର ଧାରଣ କରି ନ ଥାନ୍ତା । ଜର୍ମାନର ଲୋଲୁପ ଦୃଷ୍ଟି ଭାରତ ଉପରେ ଅନେକ ଦିନରୁ ପଡ଼ିଥିଲା ଓ ସେ ତାର ପରାଧୀନତା ଓ ଦୁର୍ବଳତାକୁ ଲକ୍ଷ୍ୟ କରି ବର୍ଲିନ ଠାରୁ ବିସ୍ତୃତ ରେଲବର୍ତ୍ମ ପ୍ରସ୍ତୁତ କରିବା ପାଇଁ କଳ୍ପନା କରିଥିଲା । ଗ୍ରେଟ୍‌-ବ୍ରିଟେନ୍ ମଧ୍ୟ ପୂର୍ବରୁ ଏଥିପ୍ରତି ସାବଧାନ ହୋଇ ରୁଷ୍ ସହିତ ମିଳିତ ହେବା ଆବଶ୍ୟକ ମନେ କରିଥିଲା । ପାରସ୍ୟ ପ୍ରତି ଗ୍ରେଟ୍ ବ୍ରିଟେନ୍‌ର ସନ୍ଦେହ ଜନ୍ମିବା ସ୍ୱାଭାବିକ ହେଲା । ସାମାନ୍ୟ ସୁବିଧା ପାଇ ଜର୍ମାନ ନିଜର ଅଭୀଷ୍ଟ ସାଧନ ପାଇଁ ସମର କ୍ଷେତ୍ରରେ ଦଣ୍ଡାୟମାନ ହେଲା । ଗ୍ରେଟ୍ ବ୍ରିଟେନ୍‌ର ଆଉ ଅନ୍ୟ ଉପାୟ ନଥିଲା । ଅନ୍ୟ ପକ୍ଷରେ ଯଦି ଗ୍ରେଟ୍ ବ୍ରିଟେନ ମହାମତି Herbert Spencer ଓ John Stuart Mill ଙ୍କ ଉପଦେଶ ବାଣୀ ଶୁଣି ଭାରତକୁ ପୂର୍ବରୁ ସ୍ୱାଧୀନତା ଦେଇ ନ ଥାନ୍ତା ତାହାହେଲେ ଯୁଦ୍ଧ ଏତେ ଭୀଷଣ ଭାବ ଧାରଣ କରି ନ ଥାନ୍ତା ।

ଭାରତକୁ ରକ୍ଷା କରିବାକୁ ହେଲେ ତାକୁ ନିଜ ସହିତ ସମାନ ଆସନ ଦେଇ ଉପଯୁକ୍ତ ଶିକ୍ଷା ଦେବା ଗ୍ରେଟ୍‌ବ୍ରିଟେନ୍‌ର ପ୍ରଧାନ କର୍ତ୍ତବ୍ୟ । ଏ ସମ୍ପର୍କରେ ଆମ୍ଭେମାନେ Professor Parker T. Moonଙ୍କ ମତ ଉଦ୍ଧାର କରିପାରୁଁ—"India occupies a most important place both in British empire and in world politics." ପୃଥିବୀର ପ୍ରତ୍ୟେକ ସ୍ୱାଧୀନଚେତା ବ୍ୟକ୍ତି ଶାନ୍ତି ଓ ନ୍ୟାୟର ପକ୍ଷପାତୀ । ଯେତେଦିନ ପର୍ଯ୍ୟନ୍ତ ପ୍ରବଳ ଜାତି ଦୁର୍ବଳ ଜାତି ଉପରେ ଆଧିପତ୍ୟ ବିସ୍ତାର କରିବ, ସେତେଦିନ ପର୍ଯ୍ୟନ୍ତ ସାମ୍ୟଭାବ ମନୁଷ୍ୟ ମଧ୍ୟରେ ଆସିବା ଅସମ୍ଭବ । ଏହି ମତର ପୋଷକତାରେ ଆମ୍ଭେମାନେ ବ୍ରିଟିସ୍ ମନ୍ତ୍ରୀ Mr. Leoyd Georgeଙ୍କର ଯୁଦ୍ଧର ପ୍ରଧାନମନ୍ତ୍ରୀ ନିକଟ ୧୪ ଜୁଲାଇ ୧୯୧୭ର ତାର ସମ୍ବାଦ ପ୍ରକାଶ କରିପାରୁ—"There can be no lasting peace until the responsibility of governments to their people is clearly established from one end of Europe to the other." ଯଦି ଏହି ନୀତି ଦ୍ୱାରା ସୁସଭ୍ୟ ଇଉରୋପିୟାନ୍‌ମାନେ ପ୍ରଣୋଦିତ ହୁଅନ୍ତି, ତାହାହେଲେ ସେମାନେ ଭାରତର ନ୍ୟାଯ୍ୟ ଦାବୀରେ କୁଣ୍ଠିତ ହେବେ ନାହିଁ । ଗ୍ରେଟ୍‌ବ୍ରିଟେନ୍ ଭାରତକୁ ସ୍ୱାଧୀନତା ଦେବା ସମ୍ବନ୍ଧରେ କୁଣ୍ଠାବୋଧ କରେ, ଏପରି କହିବା ମଧ୍ୟ ଆମ୍ଭମାନଙ୍କର ସବୁ ସମୟରେ ଉଚିତ ନୁହେଁ, କାରଣ Mr. Mac Donald ୯ ଜୁଲାଇ ୧୯୨୮ରେ ଏ ସମ୍ବନ୍ଧରେ ବ୍ରିଟିସ୍ ଶ୍ରମିକମଣ୍ଡଳୀରେ ନିମ୍ନକ୍ରମେ କହିବାର ପ୍ରକାଶ "I hope that within the period of a few months, rather than years there will be a new dominion added to the Commonwealth to our nations, a dominion that will find self-respect as an equal within the Commonwealth." Mr. Mac Donaldଙ୍କର ଏହି ଆଶାବାଣୀ ଶୁଣିଲେ ପ୍ରତ୍ୟେକ ଭାରତୀୟ ମନରେ ଉତ୍ସାହ ଓ ଆନନ୍ଦ ଜନ୍ମେ; କିନ୍ତୁ ପର ମୁହୂର୍ତ୍ତରେ ଯେତେବେଳେ ଆମ୍ଭେମାନେ ଭାରତ ସଚିବ Lord Birkenheadଙ୍କର ୭ ଜୁଲାଇ ୧୯୨୫ର ବକ୍ତୃତାରେ "I am not able in any foreseeable future to discern a moment when we may safely either to ourselves or India abandon our trust." ପ୍ରକାଶିତ ମତ କଥା ମନେ ପଡ଼େ, ସେତେବେଳେ ଆମ୍ଭମାନଙ୍କ ପ୍ରତି ଗ୍ରେଟ୍‌ବ୍ରିଟେନ୍‌ବାସୀଙ୍କର କିପରି ଧାରଣା ସହଜରେ ଅନୁମାନ କରିହୁଏ ନାହିଁ ।

ଅନେକଙ୍କ ମତରେ ଭାରତର ବିଭିନ୍ନ ଜାତି, ଧର୍ମ ଓ ଭାଷା ଦୃଷ୍ଟିରେ ତାକୁ ସ୍ୱାଧୀନତା ଦେବା ଉଚିତ ନୁହେଁ; କାରଣ ତଦ୍ଦ୍ୱାରା ଭେଦବୁଦ୍ଧି ଓ ଅହଙ୍କାର ପରସ୍ପର ମଧ୍ୟରେ ଜନ୍ମି ସମସ୍ତ ଜାତୀୟ ଭାବକୁ ନଷ୍ଟ କରି ଦେଇପାରେ । ଏପରି ଭାବ ଭାରତକୁ ଉପେକ୍ଷା କରିବା ନିତାନ୍ତ ଅନ୍ୟାୟ । ଯଦି ଜାତୀୟ ଭାବର ପୁଷ୍ଟି ସାଧନ ସକାଶେ ଏସବୁ ଅନ୍ତରାୟ ହୋଇପାରେ, ତାହାହେଲେ କାନାଡ଼ାକୁ କାହିଁକି Dominion status ଦିଆଗଲା ? ବିଭିନ୍ନ ଜାତି ଓ ଭାଷାନିର୍ବିଶେଷରେ ସେମାନଙ୍କର ସମସ୍ତ ଜାତୀୟ ଭାବ ନଷ୍ଟ ନ ହୋଇ, ବରଂ ଏହାଦ୍ୱାରା ବୃଦ୍ଧି ଲାଭ କରିଛି । ଆହୁରି ମଧ୍ୟ କୁହାଯାଇ ପାରେ ଯେ, ଉପଯୁକ୍ତ ଶିକ୍ଷା ଅଭାବରେ ଭାରତୀୟମାନଙ୍କୁ ବର୍ତ୍ତମାନ ଶାସନ କ୍ଷମତା ଦିଆଯିବା ଉଚିତ ନୁହେଁ ।

ଭାରତର ଜନସଂଖ୍ୟା ତୁଳନାରେ ତାର ଶିକ୍ଷିତ ଲୋକଙ୍କ ସଂଖ୍ୟା ଅଳ୍ପ ବିବେଚିତ ହୋଇପାରେ କିନ୍ତୁ ୧୯୨୭ ମସିହାରେ Statesman's Year Bookରୁ ଆମ୍ଭେମାନେ ଦେଖିବାକୁ ପାଉଁ ଯେ ୨୫୦୦,୦୦୦ ଭାରତବାସୀ କେବଳ ଇଂରେଜୀ ଶିକ୍ଷା ପାଇଛନ୍ତି ।

ଏହାଛଡ଼ା ଦେଶୀୟ ଭାଷାରେ ୨୨୬୦୦୦୦୦ ଜଣ ଶିକ୍ଷିତ ଅଛନ୍ତି । ଭାରତର ସର୍ବମୋଟ ଶିକ୍ଷିତଲୋକଙ୍କ ସଂଖ୍ୟା England, Wales ଓ Scotlandର ଶିକ୍ଷିତ ଲୋକମାନଙ୍କ ସଂଖ୍ୟା ସହିତ ସମାନ ଧରାଯାଇପାରେ । ଶିକ୍ଷାଦ୍ୱାରା ମନୁଷ୍ୟର ଉତ୍କର୍ଷ ସାଧିତ ହୋଇପାରେ; କିନ୍ତୁ ଶାସନ ପ୍ରଣାଳୀ ଚାଳନ ପକ୍ଷରେ ଏହା ଏକମାତ୍ର ଉପାୟ ବୋଲି ଧରାଯାଇ ନପାରେ । ଆଧୁନିକ ସଭ୍ୟ ଜାତିମାନେ ପୁସ୍ତକଗତ ବିଦ୍ୟାଭ୍ୟାସ ଓ ତଜ୍ଜନିତ ଜ୍ଞାନାର୍ଜନକୁ ଶିକ୍ଷା ଅର୍ଥରେ ଗ୍ରହଣ କରିଥାନ୍ତି । ଅତୀତର ଇତିହାସ ଦେଖିଲେ ଏହାର ସତ୍ୟତା ବେଶି ଉପଲବ୍ଧ ହୁଏ ନାହିଁ । ଆଜିପର୍ଯ୍ୟନ୍ତ ଯେତେ ମହାପୁରୁଷଙ୍କର ଆବିର୍ଭାବ ହୋଇଅଛି, ସେମାନଙ୍କ ମଧ୍ୟରୁ କେହି ଲୋକଶିକ୍ଷା ପାଇଁ ପୁସ୍ତକ କିମ୍ବା ଆଧୁନିକ ଶିକ୍ଷା ପ୍ରଣାଳୀର ଆଶ୍ରୟ ନେଇନାହାନ୍ତି । ଯୀଶୁ, ବୁଦ୍ଧ, ପ୍ଲାଟୋ ଓ ସକ୍ରେଟିସ୍ ପ୍ରଭୃତି ମନୀଷୀମାନେ ବକ୍ତୃତା ଦ୍ୱାରା ଲୋକସମାଜକୁ ଶିକ୍ଷା ଦେଇଅଛନ୍ତି । ଯେତେବେଳେ

ଗ୍ରେଟ୍‌ବ୍ରିଟେନ୍‌ରେ Magna Charta ଲେଖାଯାଇ ବ୍ରିଟିଶ୍ Parliament ସ୍ଥାପିତ ହେଲା, ସେତେବେଳେ ତାର ଅତି ଅଳ୍ପ ଲୋକ ଶିକ୍ଷିତ ଥିଲେ ସୁଦ୍ଧା ସେହି ଶିକ୍ଷାର ଅଭାବହିଁ ଶାସନ ପଦ୍ଧତି ଉପରେ କୌଣସି ବ୍ୟତିକ୍ରମ ଆଣି ନ ଥିଲା । ଶତକଡ଼ା ୮୦ ଜଣ ଅଶିକ୍ଷିତ ଗ୍ରାମ୍ୟଲବାସୀ ଯଦି ତାଙ୍କର ଶାସନ ଚଳାଇପାରନ୍ତି, ତେବେ ଭାରତବାସୀ କାହିଁକି ଅନୁପଯୁକ୍ତ ବିବେଚିତ ହେବେ ? ମୋଗଲ-ସମ୍ରାଟ ଆକବର ଶିକ୍ଷିତ ନ ହୋଇ ଯେଉଁ ସାମ୍ୟଭାବ ପ୍ରଚାର କରି ଭାରତ ଶାସନ କରିପାରୁଥିଲେ, ଭାରତବାସୀ ସେହି ଆଦର୍ଶରେ ନିଜକୁ ଗଢ଼ି ସ୍ୱାୟତ୍ତ ଶାସନ ପାଇଁ ଉପଯୁକ୍ତ ହେବେ ।

Max Muller ସାହେବ ତାଙ୍କର "What India can teach us" ନାମକ ପୁସ୍ତକରେ ଭାରତବାସୀ-ମାନଙ୍କ ସାମାଜିକ ଶିକ୍ଷାକୁ ଲକ୍ଷ୍ୟ ରଖି କହିଛନ୍ତି—"There is such a thing as social education outside of books, and this education is distinctly higher in India than in any part of Christendom." ଯେଉଁ ଦେଶର ସାମାଜିକ ଅବସ୍ଥା ଯେତେ ଉନ୍ନତ କରେ, ସେ ଦେଶର ଶାସନ ପଦ୍ଧତି ସେହି ପରିମାଣରେ ମାର୍ଜିତ ହୁଏ । ଭାରତୀୟ ସମାଜ ସେହି ଉନ୍ନତ ପ୍ରାଚୀନ ଆଦର୍ଶକୁ ଭୁଲିବାକୁ ବସିଲାଣି । ଗ୍ରେଟ୍‌ବ୍ରିଟେନ୍ ବର୍ତ୍ତମାନ ଭାରତର ଭାଗ୍ୟନିୟନ୍ତା । ମନେହୁଏ ଯେତେବେଳେ ଭାରତ ଗ୍ରେଟ୍‌ବ୍ରିଟେନ୍‌ଠାରୁ ନିକଟ ଭବିଷ୍ୟତରେ ଶାସନଭାର ନିଜ ହାତରେ ପାଇବ, ସେ ତାହାର ଆଦର୍ଶକୁ ଲକ୍ଷ୍ୟ କରି ସମାଜ ଗଢ଼ିବ ଓ ପୃଥିବୀର ସଭ୍ୟ ଜାତିମାନଙ୍କ ମଧ୍ୟରେ ନିଜର ସ୍ଥାନ ପାଇବ ।

ଏହି ଜାତୀୟ ଜାଗରଣ ଦିନରେ ଭାରତୀୟ ନାରୀ ତାର କର୍ତ୍ତବ୍ୟ ଭୁଲିନାହିଁ । ଜନ୍ମଭୂମିର କଲ୍ୟାଣ କାମନା କରି ସେ ଅକାତରରେ କାରାବାସ ବରଣ କରିଅଛି ଓ କରୁଅଛି ।

କେବଳ ବୀରତ୍ୱର ପରାକାଷ୍ଠା ଦେଖାଇଲେ ନାରୀର ଜନ୍ମ ସାର୍ଥକ ବୋଲି ଧରିବାକୁ ହେବ ନାହିଁ; ତାର କାର୍ଯ୍ୟ ସ୍ୱତନ୍ତ୍ର । ସେ ଯଦି ବୀରର ମାତା ହୋଇପାରେ, ତାହାହେଲେ ଜାତିର ମହତ୍ତ୍ୱ କଲ୍ୟାଣ ସାଧନ କରିବ । ରାଣୀ ଦୁର୍ଗାବତୀ ଓ ପଦ୍ମିନୀ ପୁଣି ଭାରତରେ ଦେଖାଦେବେ । ହିନ୍ଦୁ ରମଣୀର ତ୍ୟାଗ ଓ ସତୀତ୍ୱ ତେଜରେ ଜଗତ୍ ନୂତନ ଆଲୋକ ପାଇବ । କର୍ମକ୍ଷେତ୍ରରେ ପୁରୁଷ ତାର ପ୍ରଭାବରେ ପ୍ରଣୋଦିତ ହୋଇ ଆଦର୍ଶରୁ ତିଳେମାତ୍ର ଘୁଞ୍ଚିବ ନାହିଁ ।

ଭାରତରେ ନବଯୁଗର ଆବିର୍ଭାବ ହେଲାଣି । ତମିସ୍ରାଚ୍ଛନ୍ନ ଭାରତ ଆକାଶରେ ସାହାନ୍ତ ତାରା ଉଦିତ ହେଲାଣି । ଅଚିରେ ଭାରତର ଅସ୍ତମିତ ଗୌରବରବିର ପୁଣି ଉଦୟ ହେବ । ସୁପ୍ତ ଭାରତବାସୀ ଜାଗ୍ରତ ହେବେ । ଉଷାଦେବୀଙ୍କର ଆଗମନ କାଳ ସୂଚିତ ହେଲାଣି । ଆସ ଭାରତନାରୀ, ଦେବୀଙ୍କର ବନ୍ଦାପନା କରିବାକୁ ପ୍ରସ୍ତୁତ ହୁଅ । ତୁମରି କପୋଳାଙ୍କିତ ସିନ୍ଦୂରବିନ୍ଦୁ ଉପରେ ଉଷାଦେବୀଙ୍କର ପ୍ରଥମ ଆଲୋକରେଖା ପଡ଼ୁ; ରକ୍ତିମ ଆଭା ତୁମରି ମୁଖରୁ ଝଲସି ଉଠୁ । ଜଗଦ୍‌ବାସୀ ପ୍ରଥମେ ଦେଖୁ ଭାରତୀୟ ନାରୀର ସେହି ଚିର ଆଦରର "ରକ୍ତିମ ସିନ୍ଦୂର ଟୋପାଟି"—ତାର ସତୀତ୍ୱର ଚିହ୍ନ, ତାର ଧମନୀର ରକ୍ତ ଦେଇ କିଣା ।

ଭାରତବାସୀ, ନାରୀର ମର୍ଯ୍ୟାଦା ଅକ୍ଷୁଣ୍ଣ ରଖ । ଉପଯୁକ୍ତ ମାତାର ଉପଯୁକ୍ତ ସନ୍ତାନ ହୁଅ । ସିଂହୀର ଶାବକ ହୋଇ ଶୃଗାଳ ପରି ଆଚରଣ କର ନାହିଁ । ତୁମରି ପରୀକ୍ଷାର ଦିନ ଆସିଛି । ନୀଳାଚଳରେ ଏକତ୍ର ହେବାପାଇଁ ଉତ୍କଳମାତାର ଆହ୍ୱାନ ଆସିଛି । ଭକ୍ତିପୂତ ହୃଦୟରେ ଜଗତ୍‌ପତି ଜଗନ୍ନାଥଙ୍କ ଜାତିର କଲ୍ୟାଣ ଭିକ୍ଷା କର । ଜାତୀୟ ମହାଜାଗରଣର ଶାନ୍ତ ହିଲ୍ଲୋଳ ଫେନିଳ ନୀଳାମ୍ବୁରାଶି ଉପରେ ଖେଳିଯାଉ । ଜଗଦ୍‌ବାସୀ ଦେଖୁ **ଭାରତ ଆଜି ଜାଗ୍ରତ** !

# ଭାରତର ସମସ୍ୟା

କାଳସ୍ରୋତ ଅବିରାମ ଗତିରେ ଚାଲିଛି । କର୍ମମୟ ଜଗତରେ ଉତ୍ଥାନ ଓ ପତନ ଲାଗି ରହିଛି । କ୍ଷଣସ୍ଥାୟୀ ମାନବ-ଜୀବନ ଅନନ୍ତ କାଳଗର୍ଭରେ ବୁଦ୍‌ବୁଦ ପରି ପ୍ରତୀୟମାନ ହେଲେ ସୁଦ୍ଧା ନିରର୍ଥକ ନୁହେ । ବିଶ୍ୱବ୍ରହ୍ମାଣ୍ଡ ତୁଳନାରେ ମନୁଷ୍ୟ ଅତି କ୍ଷୁଦ୍ର ରେଣୁକଣାଠାରୁ ହୀନ ହୋଇପାରେ; କିନ୍ତୁ ତାର ନିଜତ୍ୱ ଓ ମହତ୍ତ୍ୱ ଅଛି । ସାମାନ୍ୟ ଜଣେ ମନୁଷ୍ୟ ନିଜର କାର୍ଯ୍ୟକାଳ ମଧ୍ୟରେ ଜଗତର ଯଥେଷ୍ଟ ମଙ୍ଗଳ ସାଧନ କରିପାରେ—ଏହାର ଜ୍ୱଳନ୍ତ ଉଦାହରଣ ମଧ୍ୟ ଆମ୍ଭମାନଙ୍କ ଅବିଦିତ ନାହିଁ । ବ୍ୟକ୍ତିଗତ ଉନ୍ନତିରେ ଦେଶର କଲ୍ୟାଣ ଅବଶ୍ୟମ୍ଭାବୀ । ଏପରି ଅବସ୍ଥାରେ ନିଜକୁ ହେୟ ମନେ କରି କୌଣସି କଲ୍ୟାଣକର ଅନୁଷ୍ଠାନଠାରୁ ଦୂରେଇ ରହିବା କିମ୍ବା ସେଥିପ୍ରତି ଅନାସ୍ଥା ପ୍ରଦର୍ଶନ କରିବା ଆମ୍ଭମାନଙ୍କର ନିତାନ୍ତ ଅନ୍ୟାୟ । ନୈରାଶ୍ୟର ଛାୟା ହୃଦୟକୁ ଗ୍ରାସ କଲେ—Life is an empty dream ଭାବ ସ୍ୱତଃ ଜାଗରୂକ ହୁଏ । ଅତ୍ୟଧିକ ବୈଷୟିକ ଚିନ୍ତା ମଧ୍ୟ ସତ୍ ପ୍ରବୃତ୍ତିମାନଙ୍କ ତୁଳନାରେ ଅନ୍ତରାୟ ହୋଇପାରେ; କିନ୍ତୁ ଯେଉଁମାନେ ନିଜର ତଥା ଜାତିର ମଙ୍ଗଳ କାମନା କରନ୍ତି, ସେମାନେ ଏସବୁ ବାଧା ସହଜରେ ଏଡ଼ିଦେଇପାରନ୍ତି । ଦୁର୍ବଳତାକୁ ଦୂର କଲେ ମନୁଷ୍ୟ ଏ ପଥରେ ଅଗ୍ରସର ହୋଇପାରେ ।

ତ୍ୟାଗ ମନୁଷ୍ୟର ପ୍ରାଚୀନ ଧର୍ମ । ଯେ ଜାତି ତ୍ୟାଗ କରିବାକୁ ଶିଖିନାହିଁ, ସେ ଜାତିର ପତନ ଅନିବାର୍ଯ୍ୟ । ଦିନେ ଭାରତ ଏହି ତ୍ୟାଗଧର୍ମରେ ଦୀକ୍ଷିତ ହୋଇ ଦେବତାର ଆବାସଭୂମି ରୂପେ ପରିଗଣିତ ହେଉଥିଲା । ରାଜର୍ଷି ଜନକଙ୍କ ପରି ତ୍ୟାଗୀ କ୍ଷତ୍ରିୟ ଯେଉଁ ଜାତି ଓ ଦେଶକୁ ଶାସନ କରୁଥିଲେ, ସେହି ଜାତି ଓ ଦେଶ ଅତୁଳନୀୟ ହେବା ଆଶ୍ଚର୍ଯ୍ୟର ବିଷୟ ନୁହେଁ । ଆଜି ଆମ୍ଭେମାନେ ସେହି ଆଦର୍ଶରୁ ବିଚ୍ୟୁତ ହୋଇ କପଟ ଭୀରୁ ଓ ସ୍ୱାର୍ଥପର ଭାବରେ ପରସ୍ପର ଛିଦ୍ରାନ୍ୱେଷଣ କରିବାରେ ବ୍ୟସ୍ତ ଅଛୁ, ଚିନ୍ତାକଲେ ମାନବ ମନରେ ଭୟଙ୍କର ଗ୍ଲାନି ଆସେ । ଆଦର୍ଶଭ୍ରଷ୍ଟ ଦରିଦ୍ର ଭାରତ ସନ୍ତାନ ସବୁ ଭୁଲି ଗଲାଣି । ତାର ପୂର୍ବର ସେହି ଆତ୍ମନିର୍ଭରଶୀଳତା ଆଉ ନାହିଁ । ନୈରାଶ୍ୟଜଡ଼ିତ ଭାରତବାସୀର ମୁଖରେ ଆଶାର ଆଲୋକ ଦେଖାଯାଉନାହିଁ । କିଏ କହିପାରେ ଭାରତର ଅଦୃଷ୍ଟରେ କଣ ଅଛି ? ଦୁଃସମୟରେ ହତାଶ ହୋଇ ନୀରବ ରହିବା ପୁରୁଷର କାର୍ଯ୍ୟ ନୁହେଁ । ସୁଷୁପ୍ତିର ସମୟ ଅତିବାହିତ ହୋଇଗଲାଣି । ବର୍ତ୍ତମାନ ଛିଡ଼ାହୋଇ ସତ୍ୟର ପକ୍ଷ ଅବଲମ୍ବନ କରି ସମାଜର ପୁନର୍ଗଠନ କରିବାକୁ ହେବ । ଐକ୍ୟଭାବ ଆଣିବାକୁ ହେଲେ ପ୍ରତ୍ୟେକ ଭାରତବାସୀକୁ "Union in purity and truth" ମନ୍ତ୍ରର ଅଧୀନ ହୋଇ କାର୍ଯ୍ୟ କରିବାକୁ ହେବ ।

କାର୍ଯ୍ୟର ପନ୍ଥା ଅବଲମ୍ବନ କରିବା ପୂର୍ବରୁ ଆଦର୍ଶ କର୍ମୀଙ୍କୁ ଅଗ୍ରଣୀ କରି ତାଙ୍କଠାରୁ ପ୍ରେରଣା ନେବା ଆବଶ୍ୟକ । ପ୍ରକୃତ କର୍ମୀ ସମ୍ପଦ ଓ ବିପଦରେ, ସୁଖ ଓ ଦୁଃଖରେ କଦାପି ମୁହ୍ୟମାନ ହୁଅନ୍ତି ନାହିଁ । ତାଙ୍କର ଲକ୍ଷ୍ୟ ନିରର୍ଥକ ନୁହେଁ । ତାଙ୍କର ଚିନ୍ତାସ୍ରୋତ ସମସ୍ତ ଜାତିକୁ ଉଦ୍‌ବୁଦ୍ଧ କରିପାରେ । ଯେଉଁ ଜାତିର ଅଧିକାଂଶ ଲୋକ ଏହିପରି ମହାମନା ମନୀଷୀମାନଙ୍କ କାର୍ଯ୍ୟ ଓ ଭାବଦ୍ୱାରା ଅନୁପ୍ରାଣିତ, ସେ ଜାତିକୁ ନିର୍ଜୀବ ବୋଲି ଭାବିବା କଦାପି ଉଚିତ ନୁହେଁ । ଭାବନା କର୍ମର ନିୟାମକ । କୌଣସି ଲୋକର ଭାବନାକୁ ଉପେକ୍ଷା କରିବା ଉଚିତ ନୁହେଁ, କାରଣ କର୍ମ ଜଗତରେ ଚିନ୍ତା ସ୍ରୋତକୁ ବୃଥା ବାଧା ଦେଲେ ଅନିଷ୍ଟ ଘଟିବାର ସମ୍ଭାବନା । ଜଣେ ସ୍ୱାମୀଜୀ ଏହି ସମ୍ପର୍କରେ କହିଛନ୍ତି—"A Country is strenghened not by great men with small views but small men with great views." ଆଜି ଭାରତରେ ଚିନ୍ତାସ୍ରୋତ

ଯେପରି ପ୍ରବଳ ଉଚ୍ଛ୍ୱାସ ଧାରଣ କରିଚ, ସେଥିରେ କର୍ମର ପନ୍ଥା ଅବଲମ୍ବନ କରିବା ସମସ୍ତଙ୍କ ପକ୍ଷରେ ସହଜ ହେଉନାହିଁ । ଅନେକ କେବଳ ତୋଢ଼ ଗଣିବାରେ ବ୍ୟସ୍ତ । ପ୍ରକୃତ ତ୍ୟାଗୀ କର୍ମୀ କେତେ ଜଣ ? ଦେଶର ଦୁହାଇ ଦେଇ ଆତ୍ମଗୋପନ କରିବା ଦେଶସେବା ନୁହେଁ—କେବଳ ଚକ୍ଷୁକଡା । ପରୀକ୍ଷାର ସମୟ ଆସିଛି । ଜନତାର ପରିଚୟ ଦେବାକୁ ହେବ । ପ୍ରକୃତ ଜ୍ଞାନୀ ଓ କର୍ମୀଙ୍କର ବର୍ତ୍ତମାନ ସନ୍ଧିସ୍ଥଳରେ ନୀରବ ରହିବା ଦୂଷଣୀୟ । ଏମାନେ ଯଦି ଏପରି କରନ୍ତି, ତାହାହେଲେ ଆମ୍ଭେମାନେ କହିବା ଯେ—"You keep your light beneath a bushel when the people are stumbling in the dark is worse than if you had no light."

ଆମ୍ଭେମାନେ ଆଉ ଗୋଟିଏ ବିଷୟ ପ୍ରତି ଦୃଷ୍ଟି ଦେବା । ଭାରତର ବର୍ତ୍ତମାନ ସମସ୍ୟାରେ ତାର ଜନସଂଖ୍ୟା ଉତ୍ତରୋତ୍ତର ବୃଦ୍ଧି ପାଇବା ଶୁଭଲକ୍ଷଣ ନୁହେଁ । ମନୁଷ୍ୟର ପ୍ରଜନନ କ୍ରିୟାକୁ ବିଶୃଙ୍ଖଳ ଭାବରେ ଗ୍ରହଣ କରାଗଲେ ଲୋକସଂଖ୍ୟା ବୃଦ୍ଧି ସଙ୍ଗେ ସଙ୍ଗେ ମହା ଅନିଷ୍ଟ ସମାଜକୁ ଗ୍ରାସ କରିବ । ଭାରତର ସେହି ସଙ୍କଟ ସମୟ ଉପସ୍ଥିତ ହେଲଣି । ଗତ ଜନଗଣନାରେ ଦେଖାଯାଇଚି ଯେ ଲୋକସଂଖ୍ୟା ପୂର୍ବାପେକ୍ଷା ଶତକଡ଼ା ୧୦.୬ ବୃଦ୍ଧି ପାଇଚି । ଏଥିରୁ କଅଣ ଅନୁମିତ ହୁଏ ? ଏହା ସ୍ୱୀକାର କରିବାକୁ ହେବ ବିପଦ ଆସନ୍ନ । ଏଥିରୁ ରକ୍ଷା ପାଇବାକୁ ହେଲେ କୌଣସି ଉପାୟ ଅବଲମ୍ବନ କରିବା ଦରକାର ।

ପ୍ରଥମତଃ ଦେଖିବାକୁ ହେବ, କିପରି ଭାବରେ ଆଉ ଜନ ସଂଖ୍ୟା ବୃଦ୍ଧି ନ ପାଏ । ପୃଥିବୀର ଅଧିକାଂଶ ଦେଶରେ ପ୍ରସବ ନିବାରଣର ବୈଜ୍ଞାନିକ ଉପାୟ ଲୋକେ ଅବଲମ୍ବନ କରୁଛନ୍ତି । ଦୁର୍ଦ୍ଦଶାଗ୍ରସ୍ତ ଭାରତବାସୀର ସେ ଦିଗରେ ଦୃଷ୍ଟି ନାହିଁ । ଯେଉଁ ଦେଶର ଲୋକେ ପ୍ରସବ ନିବାରଣ କରି ଜନସଂଖ୍ୟାବୃଦ୍ଧିରେ ସହାୟତା କରୁନାହାନ୍ତି, ସେମାନେ ଆମ୍ଭମାନଙ୍କ ଅପେକ୍ଷା ପୃଥିବୀର ବେଶୀ ମଙ୍ଗଳ ସାଧନ କରୁଅଛନ୍ତି । ଅନେକ କହିପାରନ୍ତି ଯେ ଆମ୍ଭେମାନେ ପ୍ରକୃତିବିରୁଦ୍ଧ କାମ କରିବାକୁ କହୁଅଛୁଁ ; କିନ୍ତୁ ପ୍ରକୃତରେ ତାହା ନୁହେଁ । ଏ ସମ୍ବନ୍ଧରେ ଆମ୍ଭେମାନେ Marie Stopesଙ୍କର ନିମ୍ନଲିଖିତ ମତ ପ୍ରକାଶ କରିପାରୁ—Even when a child is allowed to grow in its mother, all the hundreds of millions of sperms are inevitably and naturally destroyed everytime the man has an emission and to add one more to these millions sacrificed by nature is no crime.

ତରୁଣ ଭାରତୀୟ ଉପରେ ଏ ସମସ୍ୟାର ଭାର ଦିଆଯାଉ । ସେ ଆଲୋଚନା କରି ଦେଖନ୍ତୁ, କିପରି ଯୌବନର ପ୍ରେରଣା ଶିକ୍ଷା ଓ ସାହସ ପ୍ରଭୃତି ସଦ୍‌ଗୁଣ ସବୁ ବୁଭୁକ୍ଷୁ ସନ୍ତାନମାନଙ୍କର ରକ୍ଷା ଓ ଲାଳନ କରିବାରେ ଲୋପ ପାଏ । ନାରୀର ମାତୃତ୍ୱ ଅନେକ ଗୁଡ଼ିଏ ସନ୍ତାନ ଉତ୍ପାଦନ କଲେ ପ୍ରମାଣିତ ହୁଏ ନାହିଁ । ବରଂ ସେ ମହତ୍ତ୍ୱଭାବଟି କ୍ରମଶଃ କ୍ଷୀଣତର ଓ ମ୍ରିୟମାଣ ହୋଇ ଆସେ । ଅନାହାରୀ ଓ ଅର୍ଦ୍ଧାହାରୀ ଭାରତବାସୀ ଏତେ କଷ୍ଟ ପାଇ ମଧ୍ୟ ବିବାହ କରି ସନ୍ତାନ ମୁଖ ଦେଖିବାକୁ ସର୍ବଦା ବ୍ୟଗ୍ର । ଅବଶ୍ୟ ସବୁ ସମୟରେ ଏହା ନିନ୍ଦନୀୟ ନୁହେଁ । ବଳିଷ୍ଠ ଓ ଶକ୍ତି-ସଂପନ୍ନ ସନ୍ତାନମାନେ ଦେଶର ଗୌରବ । ପୂର୍ବୋକ୍ତ ସ୍ୱାମୀଜୀଙ୍କ ମତ ଏଠାରେ ଦିଆଯାଉ—"If the population problem is to be left unsolved, all talk about national unity and natural amity will remain a Utopian Chimera." Malthusଙ୍କ ମତାନୁସାରେ ଯଦି ନିର୍ବିରୋଧରେ ଜନସଂଖ୍ୟା ବୃଦ୍ଧି ପାଏ, ତାହେଲେ ମହାମାରୀ, ଦୁର୍ଭିକ୍ଷ ପ୍ରଭୃତି ଦ୍ୱାରା ତାର ଉଚ୍ଛେଦ ସାଧିତ ହେବ । ଏହା ପ୍ରାକୃତିକ ନିୟମ । ପ୍ରକୃତ ସଂହାର କରିବା ପୂର୍ବରୁ ମନୁଷ୍ୟର କଅଣ ସାବଧାନ ହେବା ଉଚିତ ନୁହେଁ ।

ଭାରତବାସୀ ପୂର୍ବପୁରୁଷର ଆଦର୍ଶରେ ଜୀବନ ଗଢ଼ିବାକୁ ବର୍ତ୍ତମାନ କ୍ଷମ ନୁହେଁ । ସେ ନିତାନ୍ତ ଦୁର୍ବଳ । କାଳର ପ୍ରତିକୂଳରେ ଯିବା ତା ପକ୍ଷରେ ଅସମ୍ଭବ । ବ୍ରହ୍ମଚର୍ଯ୍ୟ ଅବଲମ୍ବନ କରି ପ୍ରସବ ନିବାରଣ କରିବା ମଧ୍ୟ ସହଜ ନୁହେଁ ।

ଅନ୍ୟ ଦେଶବାସୀମାନଙ୍କୁ ଏ ବିଷୟରେ ଅନୁସରଣ କଲେ ଆମ୍ଭମାନଙ୍କର କିଛି କ୍ଷତି ନାହିଁ । ଜାତୀୟ ଆନ୍ଦୋଳନର ଅଙ୍ଗ ସ୍ୱରୂପ ଧରି ଏଥି ପ୍ରତି ସୁବିଚାର କରିବା ପ୍ରତ୍ୟେକ ହିତୈଷୀଙ୍କର କର୍ତ୍ତବ୍ୟ ।

# ସମାଲୋଚନା ଓ ସ୍ୱାତନ୍ତ୍ର୍ୟ

ସଭ୍ୟତାର କ୍ରମବିକାଶ ଓ ସମାଜର ଉତ୍କର୍ଷ ସାଧନରେ ସମାଲୋଚନାର ସ୍ଥାନ ନିରୂପଣ କରିବା ସହଜ ନୁହେଁ । ବସ୍ତୁମାନେ ପରିଣାମୀ, ସୁତରାଂ ତାର ଖରାପ ଅଂଶଟିକୁ ଦେଖି ଭଲଗୁଡ଼ିକୁ ବାଦ୍ ଦେବା ସମାଲୋଚକର କାର୍ଯ୍ୟ ନୁହେଁ । ଏପରି ଯେଉଁମାନେ କରନ୍ତି ସେମାନଙ୍କର ମତ ଉପେକ୍ଷଣୀୟ । ସମାଜର ମଙ୍ଗଳକାମୀ, ସତ୍ୟନିଷ୍ଠ ଓ ସାହସୀ ପୁରୁଷ ସମାଲୋଚକର ସ୍ଥାନ ଅଧିକାର କଲେ କୌଣସି ଭୟର କାରଣ ନାହିଁ । କିନ୍ତୁ ଆଜିକାଲି ସେମାନଙ୍କ ସଂଖ୍ୟାର ଅଳ୍ପତା ହେତୁ ସାମାଜିକ ଅନେକ ସଂକୀର୍ଣ୍ଣତା ସମସ୍ତ ସମୟରେ ଦଳ ମଧ୍ୟରେ ପୁଷ୍ଟିସାଧନ କରି ଦେଶର ଅକଲ୍ୟାଣ କରେ । ନୈତିକ ଅବନତିରେ ଏହାର ଉତ୍ପତ୍ତି ।

ପକ୍ଷାନ୍ତରେ ସଦ୍‌ବିଧ କର୍ମକୁ ସମାଲୋଚନାର ଦ୍ୱାହିଦେଇ ସେମାନଙ୍କର ଅପୁଷ୍ଟ ଅଙ୍ଗଗୁଡ଼ିକୁ ଲୋକଚକ୍ଷୁରେ ଦେଖାଇବା ସତ୍‌ସାହସ ନୁହେଁ । ଅନେକ ସଦନୁଷ୍ଠାନ ବୃଥା ନିନ୍ଦାବାଦରେ ଅକାଳରେ ବିଲୀନ ହୋଇଯାଇଛି । ଦେଶର ଦୁର୍ଦ୍ଦିନ ଆସିଲେ ବାହ୍ୟଦୃଷ୍ଟି ସମାଜରେ ପ୍ରବଳ ହୋଇଉଠେ । କର୍ମୀର କର୍ମ ଓ ଚରିତ୍ର ପ୍ରତି କାହାର ଲକ୍ଷ୍ୟ ସହଜରେ ରହେ ନାହିଁ । ସ୍ୱାମୀ କୃଷ୍ଣାନନ୍ଦଙ୍କପରି ନିଷ୍ଠାବାନ କର୍ମୀଙ୍କୁ ଦିନେ ବୃଥା ନିନ୍ଦା ସହିବାକୁ ପଡ଼ିଥିଲା । ଛିଦ୍ରାନ୍ୱେଷଣଦ୍ୱାରା ଅନେକ ସମୟରେ ଚରିତ୍ର-ଗଠନ ପକ୍ଷେ ବାଧା ଜନ୍ମେ । "Call one a thief and he will steal." ବ୍ୟକ୍ତିଗତ ଦୋଷକୁ ସମାଜ ଆଗରେ ଆଙ୍କି ଦେବା ବୁଦ୍ଧିମାନର କାର୍ଯ୍ୟ ନୁହେଁ । ସମାଜର ଯେଉଁମାନେ ହିତସାଧନ କରନ୍ତି, ସେମାନଙ୍କର ଦୋଷ ଥାଇପାରେ ଓ ସେଥି ସକାଶେ ସେମାନେ ଦାୟୀ ହେବେ । ସମାଲୋଚକ ଯେଉଁ ଉତ୍ସାହଟିକି ସମାଲୋଚିତର ଚରିତ୍ର ଚିତ୍ରଣରେ ନଷ୍ଟ କରନ୍ତି, ତାକୁ ଯଦି ତାଙ୍କର ଆତ୍ମୋନ୍ନତିରେ ଲଗାଇ ପାରନ୍ତେ, ତାହାହେଲେ ଯଥେଷ୍ଟ ହୁଅନ୍ତା । ବାହ୍ୟ ପରିବର୍ତ୍ତନ ଦ୍ୱାରା ନୈତିକ ଉନ୍ନତି ସହଜ ନୁହେଁ । କେବଳ ଲୋକମାନଙ୍କ ପ୍ରଶଂସା ଉପରେ ଯେଉଁ ଚରିତ୍ରର ପବିତ୍ରତା ନିର୍ଭର କରେ, ତାହା ନିଷ୍ଠାପର ନୁହେଁ—କେବଳ ଦୁର୍ବଳତାପୂର୍ଣ୍ଣ ।

ମନୁଷ୍ୟର ବାହ୍ୟ ବ୍ୟବହାର ସଙ୍ଗେ ଶିକ୍ଷଣୀୟ ବିଷୟମାନଙ୍କର କିଛି ସମ୍ପର୍କ ନାହିଁ । ବିଂଶ ଶତାବ୍ଦୀର ଏହି ମହା ଜାଗରଣରେ ଆମ୍ଭମାନଙ୍କୁ ବିବେକାନୁମୋଦିତ ହୋଇ ଅଗ୍ରସର ହେବାକୁ ପଡ଼ିବ । ବ୍ୟକ୍ତିଗତ ଆଚାର ବ୍ୟବହାର ସଙ୍ଗେ କର୍ମ-ମନ୍ତ୍ରର କିଛି ସମ୍ବନ୍ଧ ନାହିଁ । ସ୍ୱାମୀ ବିବେକାନନ୍ଦଙ୍କର ଖାଦ୍ୟପେୟର ବିଚାର କରିବାକୁ ଯାଇ ତାଙ୍କର ଅମୂଲ୍ୟ ଉପଦେଶ ବାଣୀ ବିସ୍ମୃତ ହେବା ଉଚିତ ନୁହେଁ । ପଙ୍କିଳ ସରୋବରରେ ଜନ୍ମ ବୋଲି ପଦ୍ମକୁ କେହି ତ ହତାଦର କରେ ନାହିଁ ? ମୃତ ଜନ୍ତୁର ଅସ୍ଥି ସ୍ପର୍ଶରେ ଭାରତୀୟ ହିନ୍ଦୁ ନିଜକୁ ଅପବିତ୍ର ମନେ କରେ; କିନ୍ତୁ ୟୁରୋପୀୟ ତାକୁ କାର୍ଯ୍ୟରେ ଲଗାଇ ଧନବାନ୍ ହୁଏ । ଯେଉଁ ନାମୋଚ୍ଚାରଣ କରି ଆମ୍ଭେମାନେ ମନରେ ପବିତ୍ର ଭାବ ଆଣୁ, ସେହି ପୁଣ୍ୟଶ୍ଳୋକ ନରପତି ଶ୍ରୀରାମଚନ୍ଦ୍ର ଲଙ୍କା ବିଜୟ ସମୟରେ ସାମାନ୍ୟ ମର୍କଟ ସେନା ନେଇ ସ୍ୱକାର୍ଯ୍ୟ ସାଧନ କରିଥିଲେ । ସମସ୍ତେ ଧାର୍ମିକମାନଙ୍କ ସହିତ ଶାନ୍ତିରେ ରହିପାରିବେ; କିନ୍ତୁ ମହତ୍ତ୍ୱର ପରିଚୟ ଦେବାକୁ ହେଲେ ନୀଚ ଓ ଅଧର୍ମାଚାରୀମାନଙ୍କୁ ସଙ୍ଗରେ ନେଇ ଅଗ୍ରସର ହେବାକୁ ପଡ଼େ ।

ଜୀବର ଉନ୍ମେଷ ଓ ଲୟ କେବଳ ବିଶ୍ୱବ୍ରହ୍ମାଣ୍ଡର ଏକ ସ୍ତରରୁ ଅନ୍ୟ ସ୍ତରକୁ ଗମନମାତ୍ର । ମନୁଷ୍ୟର ଅଧିଭୌତିକ ଶରୀରର ପରିବର୍ତ୍ତନ ଯେପରି ଅପରିହାର୍ଯ୍ୟ, ସେହିପରି ମଧ୍ୟ ତାର ଆଧ୍ୟାତ୍ମିକ ଓ ନୈତିକ ଭାବର ବିକାଶ ଘଟିଥାଏ । ସ୍ୱାମୀ

ରାମତୀର୍ଥ ଏହି ସମ୍ପର୍କରେ କହିଛନ୍ତି—"The so called Sinners are my moral babies and has not a baby beauty of its own ? Those that you miscall flesh has not risen yet."

ସୌନ୍ଦର୍ଯ୍ୟର ଉପଲବ୍ଧିରେ ପ୍ରେମର ବିକାଶ । ଅନ୍ତର ଆଲୋକିତ କରି କୁତ୍ସିତ ଓ ଅନ୍ଧକାର ଦୃଶ୍ୟକୁ ଲୋପ କଲେ ସୌନ୍ଦର୍ଯ୍ୟର ସତ୍ତା ପ୍ରକାଶ ପାଏ । ଯେଉଁମାନେ କହନ୍ତି, ପାପକୁ ଘୃଣାକର ପାପୀକୁ ପ୍ରେମଦାନ କରିବାକୁ ହେବ, ସେମାନେ ବୋଧହୁଏ ଜାଣନ୍ତି ନାହିଁ ଯେ, କଦର୍ଯ୍ୟ ଭାବ ମନରେ ଆଶ୍ରୟ କରିଥିବା ଯାଏ ପ୍ରେମର ସ୍ଫୁରଣ ଅସମ୍ଭବ । ମନର ମଳିନତାକୁ ଦୂର କରି ସଦ୍‌ଗୁଣର ଶ୍ରେଷ୍ଠତା ପ୍ରତିପାଦନ କଲେ ସମାଲୋଚନାର ବିଶେଷତ୍ୱ ସହଜରେ ଜଣାପଡ଼େ ।

ପୃଥିବୀରେ ନିନ୍ଦାବାଦ କାହିଁକି ଏତେ ପ୍ରବଳ ? ବୋଧହୁଏ ଆତ୍ମରକ୍ଷା ପାଇଁ ଏହାର ସୃଷ୍ଟି । କୌଣସି କୁକ୍ରିୟାକୁ ପ୍ରତିବାଦ କରିବାଦ୍ୱାରା ତାର ବିସ୍ତାରରେ ଗତିରୋଧ କରାଯାଏ । ଭବିଷ୍ୟତ ଅନିଷ୍ଟରୁ ମଧ୍ୟ ଲୋକମାନଙ୍କୁ ସାବଧାନ କରି ଦିଆହୁଏ । ଯେଉଁମାନେ ନିନ୍ଦିତ ହୁଅନ୍ତି, ସେମାନଙ୍କୁ କେହି ସମର୍ଥନ କରନ୍ତି ନାହିଁ । ଏପରି କରିବା ଦ୍ୱାରା ସେମାନଙ୍କର ବେଶୀ ଶୀଘ୍ର ପତନ ହୋଇପାରେ, କିନ୍ତୁ ଏହି ସମୟରେ ହିଁ ସେମାନଙ୍କୁ ସତର୍କିତ କରିବା ଉଚିତ । ଶୀଳାବନ୍ଧୁର ନଦୀଗର୍ଭରେ ନିଜର କ୍ଷୁଦ୍ର ତରଣୀଟି ବାହିନେବା ବେଳେ ହଠାତ୍ କୌଣସି ଆଘାତ ଲାଗିଲେ ଯେପରି ନାବିକ ଆତ୍ମରକ୍ଷା କରିବାକୁ ଉଦ୍‌ଗ୍ରୀବ ହୋଇ ଉଠେ, ସେହିପରି କୁକ୍ରିୟାର ନିନ୍ଦା ଶୁଣି ଉଦ୍‌ବିଗ୍ନ ହେବା ଉଚିତ । ଶତ୍ରୁଠାରୁ କିମ୍ବା ମିତ୍ରଠାରୁ ନିଜର କୁକ୍ରିୟାର କଠୋର ଅପବାଦ ଶୁଣି ଆତ୍ମବୋଧ ଆଣିବାକୁ ସତତ ଚେଷ୍ଟିତ ହେବା ନିନ୍ଦିତର କାର୍ଯ୍ୟ । ଥରେ ଆତ୍ମବିକାଶ ହେଲେ ପତନର ଭୟ ଥାଏ ନାହିଁ ।

ପତିତ ଚରିତ୍ରକୁ ଉଦ୍ଧାର କରିବାକୁ ହେଲେ, ସଂସ୍କାରକଙ୍କର ପ୍ରଶସ୍ତ ହୃଦୟ ଥିବା ଆବଶ୍ୟକ । ପ୍ରେମ ଓ ଆତ୍ମବଳ ଦ୍ୱାରା ଦୁଷ୍ଟ ଲୋକର ଅନ୍ତଃକରଣ ବୃତ୍ତି ପ୍ରବାହକୁ କୁମାର୍ଗ ପରିତ୍ୟାଗ କରାଇ ଆତ୍ମାଭିମୁଖୀ କରାଇବା କଷ୍ଟକର ହୋଇପାରେ; କିନ୍ତୁ ଥରେ କୃତକାର୍ଯ୍ୟ ହୋଇ ପାରିଲେ ନୂତନତ୍ୱ ଓ ପବିତ୍ରତା ସେହି ଦୂଷିତ ଚରିତ୍ରରେ ଶୀଘ୍ର ଫୁଟି ଉଠେ । କର୍କଶ ଭାବ ଧରି କୁମାର୍ଗଗାମୀକୁ ନିୟନ୍ତ୍ରଣ କରିବା ଦ୍ୱାରା ଅଧିକାଂଶ ସମୟରେ କୁଫଳ ଜନ୍ମିଥାଏ । ଅନେକ ନିଜର ଚରିତ୍ରହାନି ଭୟରେ ଦୁଷ୍ଟ ଲୋକର ସଂସର୍ଗ ପରିତ୍ୟାଗ କରିଥାନ୍ତି । ଅବଶ୍ୟ ସେମାନଙ୍କର କାର୍ଯ୍ୟ ନିନ୍ଦନୀୟ ନୁହେଁ । ନାରଦ ଭକ୍ତିସୂତ୍ରରେ ଆଦେଶ ଅଛି—"ଓଁ ଦୁଃସଙ୍ଗଃ ସର୍ବଥୈବ ତ୍ୟାଜ୍ୟଃ" । ନିଜର ଚରିତ୍ର ଗଠନ କରୁଥିବାବେଳେ ଏପରି ସାବଧାନ ହେବା ଉଚିତ । ମହତ୍ତ୍ୱ ଚରିତ୍ରରେ କୌଣସି ପତନର କାରଣ ନ ଥାଏ । ହୃଦୟକୁ ଉଦାର କଲେ ମହତ୍ତ୍ୱ ନଷ୍ଟ ହୁଏ ନାହିଁ; ବରଂ ସଙ୍କୀର୍ଣ୍ଣତା ଦ୍ୱାରା ଉଦ୍ଦେଶ୍ୟ ସାଧନ ପକ୍ଷେ ବାଧା ଜନ୍ମେ ।

ଯେଉଁ ଆଦର୍ଶ ଚରିତ୍ର ଜଗତରେ କଲ୍ୟାଣ କରେ, ତାହା କେବଳ ପ୍ରେମ ବିନିମୟରେ ନୀଚତାକୁ ଲୋପ କରିଥାଏ । ମନୁଷ୍ୟ ନିଜର ସାଧନା ଓ ଅଭିଜ୍ଞତା ଦ୍ୱାରା ପୁଣ୍ୟଭାବ ହୃଦୟରେ ଜନ୍ମାଇପାରେ । ବାହ୍ୟ ଶୁଚି ଓ ଅନ୍ୟପ୍ରତି ବିଜାତୀୟଭାବ ମନରେ ସ୍ଥାନ ଦେଲେ, ଏ ମହତ୍ ଭାବର ବିକାଶ ହୁଏ ନାହିଁ । ପାଶବିକତା ପ୍ରବଳ ହେଲେ ମନୁଷ୍ୟ ହୃଦୟ ସ୍ୱତଃ ଦେବଭାବରୁ ବଞ୍ଚିତ ହୁଏ । ଏଥିରୁ ଶାନ୍ତି ପାଇବାକୁ ହେଲେ, ମନକୁ ସର୍ବଦା ଉଚ୍ଚ ଆଦର୍ଶ ଆଡ଼କୁ ଟାଣିରଖି ଉତ୍ସାହକୁ ସୁକାର୍ଯ୍ୟ ସାଧନରେ ଲଗାଇବାକୁ ହେବ । ଅନ୍ୟ ଜଣେ କେତେଗୁଡ଼ିଏ ନୀତିବାଣୀ ଶୁଣାଇଲେ; କିମ୍ବା ଧର୍ମଶିକ୍ଷା କରିବାର ଗୋଟିଏ ନିର୍ଘଣ୍ଟ କରିଦେଲେ ଉପଯୁକ୍ତ ଫଳ ମିଳିବାର ଆଶା କରାଯାଏ ନାହିଁ । ପ୍ରଥମେ ଗୁପ୍ତ ରହୋଦ୍ଧାର କରିବାପରି ମନୁଷ୍ୟ ନିଜେ ତାର ଅନ୍ତର୍ନିହିତ ଶକ୍ତିକୁ ଉନ୍ମେଷ କରି ଦେଖିବ—ତା ପତନର କାରଣ କେଉଁଠି ? ଯେତେବେଳେ ମନ କେତେକ ପରିମାଣରେ ଅନ୍ତର୍ମୁଖୀ ହୋଇ ବାହ୍ୟ ପାର୍ଥିବ ସୌନ୍ଦର୍ଯ୍ୟରେ ମୁଗ୍ଧ ନ ହୋଇ ଚଞ୍ଚଳତାକୁ କ୍ରମଶଃ ଲୋପ କରିବାକୁ ଶିଖେ ଓ ଅନ୍ୟର ନିନ୍ଦା କିମ୍ବା ପ୍ରଶଂସାରେ ନିଜକୁ ପୂର୍ବପରି ହେୟ ମନେ ନ କରି ନିଜ ଉପରେ ବିଶ୍ୱାସ କରେ, ସେତେବେଳେ ତାର ସ୍ୱାଧୀନତା ଜନ୍ମେ । ଏ ସ୍ୱାଧୀନତା କିମ୍ବା ସ୍ୱାତନ୍ତ୍ର୍ୟ ବିକାଶରେ ଯେଉଁମାନେ ସହାୟ ହୁଅନ୍ତି, ସେହିମାନେ ପତିତର ଗୁରୁ ବୋଲି ସମାଜରେ ଶ୍ରେଷ୍ଠ ଆସନ ଅଧିକାର କରନ୍ତି । ସତ୍ ଚରିତ୍ରର ଅଙ୍କୁରୋଦ୍‌ଗମ ହେବାବେଳେ ପ୍ରେମମନ୍ଦାକିନୀର ଶୀତଳ ବାରି ବିତରଣ କରନ୍ତି, ଏହି ଧ୍ରୁବତାରାରୂପୀ ସମାଜର ନାୟକମାନେ । ଏହିମାନେ ପ୍ରକୃତ ସମାଲୋଚକ ଓ ସମାଜ-ସଂସ୍କାରକ, ସମାଜ

ଜାତି ଓ ଧର୍ମର ଉତ୍ଥାନ ଏମାନଙ୍କ ଦ୍ୱାରା ସାଧିତ ହୁଏ । ଦିନେ ଶ୍ରୀଚୈତନ୍ୟଦେବ ପତନଶୀଳ ହିନ୍ଦୁସମାଜକୁ ପ୍ରେମ-ମନ୍ତ୍ରରେ ଦୀକ୍ଷିତ କରାଇ ଦେବତ୍ୱର ପରାକାଷ୍ଠା ଦେଖାଇଥିଲେ । ତାଙ୍କର ପ୍ରଦର୍ଶିତ ଆଲୋକ ଆଜି ସୁଦ୍ଧା ଦେଶରୁ ଲିଭିନାହିଁ । ପୁଣ୍ୟଭୂମି ଭାରତ, ତୋର ନାମୋଚ୍ଚାରଣରେ କେତେ ମନୀଷୀ ଓ ଭକ୍ତ ବୀରମାନଙ୍କର ନାମ ସ୍ୱତଃ ମନରେ ଉଦିତ ହୁଏ ! ବୁଭୁକ୍ଷୁ କୋଟି କୋଟି ସନ୍ତାନ ତୋର ନୈରାଶ୍ୟର ଅତଳ ଘୂର୍ଣ୍ଣିରେ ପଡ଼ି ଧର୍ମ କର୍ମ ସବୁ ଭୁଲିଗଲେଣି । ପୀଡ଼ିତ ଭାରତୀୟମାନଙ୍କର ଶେଷ ନିଶ୍ୱାସ ରହିବାକୁ ଆରମ୍ଭ କଲଣି । ଜଗତ୍‌ବାସୀଙ୍କ ଚକ୍ଷୁରେ ସେମାନଙ୍କର ଧର୍ମ, ଧନ ଓ ପୁରୁଷତ୍ୱ ନାହିଁ । ଅଛି କେବଳ ଗୋଟିଏ ଆଶ୍ୱାସନା—ସେମାନେ ଭାରତୀୟ । ଏହି ନାମଟି ମାତ୍ର ଜୀବନର ଶେଷ ଯବନିକାରେ ଆଶାର ଆଲୋକ । ଏ ତ ମାୟାବିନୀର ଐନ୍ଦ୍ରଜାଲିକ ଆଲୋକ ନୁହେଁ, ଅଥବା ମୁମୂର୍ଷୁର ଭ୍ରମଦୃଷ୍ଟିରୁ ଏହାର ଜନ୍ମ ନୁହେଁ । ତେବେ ଏହାର ଉତ୍ପତ୍ତି କେଉଁଠି ? କାହିଁକି ଅବା ଏ ନାମ-ମାଧୁରୀ, ଏତେ ହୃଦୟ-ସ୍ପର୍ଶୀ ? ନିର୍ଯ୍ୟାତନା ଓ ଲାଞ୍ଛନାର ସୀମା ନାହିଁ; ତଥାପି ଭାରତୀୟ ବୋଲି ସ୍ମରଣ କଲେ କାହିଁକି କ୍ଷୁବ୍ଧ ହୃଦୟ ଶାନ୍ତ ଭାବ ଧାରଣ କରି ସେହି ଶେଷ ଯବନିକାଟାକୁ ହଠାତ୍ ନ ପକାଇ ଉତ୍ତାଳ ଜୀବନ-ସମୁଦ୍ରରେ ନିଜର ସ୍ୱାତନ୍ତ୍ର୍ୟ ରଖିବାକୁ ଚେଷ୍ଟା କରେ ?

ଭାରତର ଦୁର୍ଦ୍ଦଶା ଦେଖି ତାର ସାମାଜିକ ସଂସ୍କାର ପ୍ରୟାସୀ କେହି ଆଧୁନିକ ସମାଲୋଚକ କହିପାରନ୍ତି, ତାର ପତନ ଅନିବାର୍ଯ୍ୟ । ନିପୀଡ଼ିତ ଭାରତୀୟ ଆଜି ତାର ପତନର କଥା ଶୁଣିବାକୁ ଚାହେଁ ନାହିଁ । ଦେଶମାତୃକାର ପବିତ୍ର ନାମୋଚ୍ଚାରଣ କରି ସେ ମୃତ୍ୟୁ ବରଣ କରିପାରେ । ତାର ସବୁ ଯାଇଛି; ଅଛି କେବଳ ଧର୍ମର ଆଶ୍ୱାସନା । ଗୀତାର ପବିତ୍ର ମନ୍ତ୍ର ତାକୁ ସ୍ମରଣ କରାଇ ଦେଉଛି—"ଶରୀରଂ ଯଦ୍ ବାପ୍ନୋତି ଯଚ୍ଚାପ୍ୟୁତ୍କ୍ରାମତୀଶ୍ୱରଃ; ଗୃହୀତ୍ୱୈତାନି ସଂଯାତି ବାୟୁର୍ଗନ୍ଧାନିବାଶୟାତ୍ ।" ସ୍ଥୂଳ ଶରୀର ନଷ୍ଟ ହେଲେ ସୁଦ୍ଧା ମନୁଷ୍ୟର ଇନ୍ଦ୍ରିୟଶକ୍ତି ମନ ସହିତ ଅନ୍ୟ ଦେହ ଧାରଣ କରେ । ପଞ୍ଚଭୂତ ଦେହ ଧାରଣ କରି କର୍ମସୂତ୍ର ଅବଲମ୍ବନ ମନୁଷ୍ୟ ପକ୍ଷରେ ସ୍ୱାଭାବିକ ହୁଏ । ତେଣୁ ଜୀବନର ଶେଷ ଯବନିକା ପତନରେ ଭାରତୀୟ ତାର ବିଶେଷତ୍ୱ ଜଗତ୍ ସମ୍ମୁଖରେ ଦେଖାଇଦେବାକୁ ଚାହେଁ । ସେ ଚିରଦିନ ସ୍ୱାତନ୍ତ୍ର୍ୟ ରଖି ଆସିଛି ଓ ଭବିଷ୍ୟତରେ ମଧ୍ୟ ରଖିବ । ଲୌକିକ ଚରିତ୍ରର ମହାତ୍ମ୍ୟ ଦେଖାଇ ଭାରତ ଅନ୍ୟାନ୍ୟ ଦେଶର ଆଦର୍ଶ ହୋଇ ପାରିଲେ ଲୁପ୍ତ ଗୌରବ ପୁଣି ଫେରିଆସିବ ।

ଯେଉଁମାନେ ଉପର୍ଯ୍ୟୁକ୍ତ ମତର ପୋଷକତା ନ କରି ଭବିଷ୍ୟତ ଭାରତକୁ କେବଳ ପାଶ୍ଚାତ୍ୟ ଆଦର୍ଶରେ ଗଢ଼ିବାକୁ ଚାହାନ୍ତି, ସେମାନଙ୍କର ମତ ପ୍ରଶସ୍ତ ବୋଲି ମନେ ହୁଏ ନାହିଁ । ଆମ୍ଭେମାନେ କହୁଁ ନାହୁଁ ଯେ ପ୍ରାଚ୍ୟ ଓ ପାଶ୍ଚାତ୍ୟର ସମ୍ମିଳନ ଅସମ୍ଭବ; ବରଂ ଉଭୟଙ୍କର ମିଳନରେ ଜଗତର ପ୍ରଭୂତ ଉପକାର ହୋଇପାରେ । ଜାତିଧର୍ମ ନିର୍ବିରୋଧରେ ସ୍ୱାତନ୍ତ୍ର୍ୟ ଲୋପ କରିବା ଆମ୍ଭମାନଙ୍କର ଉଦ୍ଦେଶ୍ୟ ନୁହେଁ । ସାମ୍ୟଭାବ ସ୍ଥାପନ କେବଳ ଅବଲମ୍ବନୀୟ । ଯେଉଁ ପାଶ୍ଚାତ୍ୟମାନେ ଆଜି ପର୍ଯ୍ୟନ୍ତ ବିଜ୍ଞାନର ମୋହରେ ମୁଗ୍ଧ ହୋଇ ଭାରତର ଅଧ୍ୟାତ୍ମ ତତ୍ତ୍ୱକୁ ତୁଚ୍ଛ ମନେ କରୁଥିଲେ, ସେମାନେ କ୍ରମଶଃ ସେମାନଙ୍କର ବୈଜ୍ଞାନିକ ତତ୍ତ୍ୱର ସାରହୀନତା ଉପଲବ୍ଧି କଲେଣି । Newtonଙ୍କ ଅଭ୍ରାନ୍ତ Law of gravitation ଠିକ୍ ନୁହେଁ ବୋଲି ଅନେକ କହିଲେଣି । ବ୍ରିଟିଶ୍ ବୈଜ୍ଞାନିକ ମଣ୍ଡଳୀର ଗତ ସେପ୍‌ଟେମ୍ବର ମାସ ଅଧିବେଶନରେ ପ୍ରଦତ୍ତ ବକ୍ତୃତାରେ General Smuts ପୃଥିବୀର ସୃଷ୍ଟି ବିଷୟରେ ଆଲୋଚନା କରି ଯାହା କହିଛନ୍ତି, ସେଥିରେ ବିଜ୍ଞାନ ଉପରେ ଆସ୍ଥା ଥିଲା ପରି ମନେ ହୁଏ ନାହିଁ । ତାଙ୍କ ମତରେ ଏହି ପୃଥିବୀ "The outcome of definite measurable conditions of curvatue is the structure of space and time." ଯଦି General ମହାଶୟ ତାଙ୍କର ଗବେଷଣାକୁ ଆଉ ଟିକିଏ ସମ୍ପ୍ରସାରିତ କରି ଭାରତର ପ୍ରାଚୀନ ଗ୍ରନ୍ଥ ଉପନିଷଦ୍ ଆଦି ଅଧ୍ୟୟନ କରନ୍ତେ, ତାହାହେଲେ ମାୟିକ କିମ୍ବା ସମ୍ଭୂତ ଉତ୍ପତ୍ତିରେ ତାଙ୍କର ବିଶ୍ୱାସ ହୋଇପାରନ୍ତା । ପାଶ୍ଚାତ୍ୟ ବିଜ୍ଞାନର ଯେପରି ଗତି ହେଉଛି, ସେଥିରୁ ଅନୁମିତ ହୁଏ, ଅଳ୍ପ ସମୟ ମଧ୍ୟରେ ତତ୍ରତ୍ୟ ପଣ୍ଡିତମାନେ ସେମାନଙ୍କର ଜ୍ଞାନ ଲିପ୍ସା ତୃପ୍ତି କରିବା ପାଇଁ ପ୍ରାଚ୍ୟ ଅଧ୍ୟାତ୍ମତତ୍ତ୍ୱର ଆଶ୍ରୟ ନେବେ ।

ସେହି ହେତୁ ଆମ୍ଭେମାନେ କହୁ, ଆମର ଯାହା ଅଛି, ତାକୁ ନ ଦେଖି ବାହାରକୁ ଯିବା ଉଚିତ ନୁହେଁ । କେବଳ ପରିବର୍ତ୍ତନ ପ୍ରୟାସୀ ହୋଇ ଦେଶର ଯାବତୀୟ ଅନୁଷ୍ଠାନମାନଙ୍କୁ ପୁରାତନ କହି ବର୍ଜନ କରିବା ସଂସ୍କାରକର ନିଦର୍ଶନ ନୁହେଁ । ଅଧିକାଂଶ ସାମୟିକ ଉତ୍ତେଜନାର ବଶବର୍ତ୍ତୀ ହୋଇ ସମାଜରେ ଗୋଟିଏ ନୂତନତ୍ୱ ଦେଖାଇବା ପାଇଁ ଏପରି କରିଥାନ୍ତି । ଭାରତର ଜାତି ଓ ଧର୍ମ ସନାତନ; ଏମାନଙ୍କର ଉଚ୍ଛେଦ ସାଧନ କରି ଦେଶକୁ ଅନ୍ୟ ଦିଗରେ ନେବା କେବଳ ଭ୍ରାନ୍ତ ଧାରଣା । ଜାତୀୟତା ଗଠନରେ ସ୍ୱାତନ୍ତ୍ର୍ୟ ସର୍ବାଦୌ ରକ୍ଷଣୀୟ । ହିନ୍ଦୁର କୁଳାଗ୍ରର ପ୍ରଥାମାନଙ୍କୁ ଅକାତରରେ ତ୍ୟାଗ କରିବାକୁ ହେବ ନାହିଁ । ଆମ ଜାତିର ମହତ୍ତ୍ୱ ଆମ ଧର୍ମ ଓ କର୍ମରୁ ଦେଖା ଦେବ ।

# ଅଦୃଷ୍ଟ

ଜୀବନ-ସ୍ରୋତ, ସୁଖ ଓ ଦୁଃଖ, ଆଲୋକ ଓ ଅନ୍ଧକାର ଆଶା ଓ ନୈରାଶ୍ୟର ମଧ୍ୟ ଦେଇ ସର୍ବଦା ଧାବିତ । ଅନନ୍ତ-କାଳ-ସମୁଦ୍ର ବିଶ୍ୱ-ଗ୍ରାସୀ ମୁଖବ୍ୟାଦାନ କରି ଏହି ସ୍ରୋତସ୍ୱତୀକୁ ନିଃଶେଷରେ ପାନ କରିବା ପାଇଁ ସତୃଷ୍ଣ ନୟନରେ ଅନାଇ ରହିଅଛି । ସଙ୍ଖ୍ୟାତୀତ ସୁଖ ସୌଧ ତାର ଅତଳ ଗର୍ଭରେ ବିଲୀନ ହୋଇଯାଇଛି । ସେମାନଙ୍କର ସାମାନ୍ୟ ଚିହ୍ନ ସୁଦ୍ଧା ନାହିଁ । ମର୍ତ୍ତ୍ୟବାସୀର ସମ୍ପତ୍ତି କାଳ ଚକ୍ଷୁରେ ଅସାର ଓ ମୂଲ୍ୟହୀନ ।

ଅଲୀକ ସୁଖ ପ୍ରୟାସୀ, ମୋହାନ୍ଧ ମାନବ ସଂସାରକୁ ସାର ମନେ କରି ଜୀବନ କଟାଇବା ପାଇଁ ସର୍ବଦା ବ୍ୟଗ୍ର । ଜୀବନର ସୁଖ ଦୁଃଖ ଛାୟାଚିତ୍ର ପରି ଆସି ଚାଲିଯାଏ; କ୍ଷଣିକ ଉନ୍ମାଦନା ମନର ଶୃଙ୍ଖଳା ବଢ଼ାଇ ଦିଏ । ବସନ୍ତର ସନ୍ଧ୍ୟାରେ ପତ୍ରର ମର୍ମର ସଙ୍ଗେ ନିଭୃତ ପ୍ରାନ୍ତରର ବଂଶୀ-ସ୍ୱନ ମଳୟ ଦୂତ ପରି ଆସି ବିରହିଣୀର ପ୍ରେମ ସନ୍ଦେଶ ଦେବା ଛଳରେ ଦୂରଦେଶୀ କର୍ମକ୍ଳିଷ୍ଟ ଅବସନ୍ନ ମନୁଷ୍ୟ କର୍ଣ୍ଣରେ ଅମିୟ ଢାଳିଦେଇ ଚାଲିଯାଏ । ସେତେବେଳେ ସେ ଭାବେ—ସେ ସନ୍ତ୍ରାବିତ, ତା ଆଶା-କାନନରେ ଅଳିର ଗୁଞ୍ଜନ ଚିରଦିନ ଲାଗି ରହିବ; କିନ୍ତୁ ବିଧିର କି ବିଡ଼ମ୍ବନା ! ଯୌବନର ଉଦ୍ଦାମ ପ୍ରେମ ଓ ଚମ୍ପକବରଣୀର ହାସ୍ୟଚ୍ଛଟା—ଯାହା ନିକଟରେ ଥରେ ସେ ଆତ୍ମହରା ହୋଇ ସମସ୍ତ ପାର୍ଥିବ ପଦାର୍ଥକୁ ତୁଚ୍ଛ ମନେ କରିଥିଲି, ତାର ପରିଣାମ ଏବେ ଭୟାବହ ! ଚିତାଗ୍ନି ଧୂ ଧୂ ହୋଇ ଜଳିଉଠିଛି—ସେଥି ସଙ୍ଗେ ମିଶିଯାଇଛି ତା ହୃଦୟର ଆରାଧ୍ୟା ଦେବୀ । ଶୂନ୍ୟ-ହୃଦୟ, ଝଞ୍ଜା ଗୃହଆଡ଼ୁ ବହୁଛି ଓ ଗୋଟିଏ ସ୍ତବ୍ଧତା ଗ୍ରାସିଯାଇଛି—ମନୁଷ୍ୟର ଏକମାତ୍ର ଭାବନା, ଏ ନିଷ୍ଠୁରତା ପାଇଁ ସେ କାହାକୁ ଦାୟୀ କରିବ ? ସମସ୍ତଙ୍କ ଭାଗ୍ୟରେ ଏହାର ସମତା ଦେଖାଯାଏ ନାହିଁ । ଏ ଅସାମଞ୍ଜସ୍ୟର କାରଣ କଣ ? ଅଧିକାଂଶ ସମୟରେ ମନୁଷ୍ୟ ତାର ହତାଶ-ଭାବକୁ ଗୋପନ କରିବାକୁ ଯାଇ କହେ– ତାର ସବୁ 'ଅଦୃଷ୍ଟ' ! ଅଦୃଷ୍ଟ ଉପରେ ମର୍ମପୀଡ଼ା ଆରୋପ କରି ନୀରବ ରହିଲେ ମନୁଷ୍ୟ ଜୀବନର ଅସାରତା କ୍ରମଶଃ ବୃଦ୍ଧି ପାଇବ । ସ୍ୱଭାବତଃ କ୍ଷଣ-ଭଙ୍ଗୁର, ସେଥିରେ ପୁଣି ଗୋଟିଏ ଶୂନ୍ୟତାର ଛାୟା ପଡ଼ିଲେ ଜୀବନର ବୈଚିତ୍ର୍ୟ ଓ ମାଧୁରୀ ନଷ୍ଟ ହୋଇଯାଏ ।

ବେଦାନ୍ତ ମତରେ ଏହି ଅଦୃଷ୍ଟ ମନୁଷ୍ୟର ସ୍ୱକୃତ । ସାଧାରଣତଃ ଅନେକ କହିଥାଆନ୍ତି ଯେ, ମନୁଷ୍ୟ ଇହଜଗତରେ ଜନ୍ମଗ୍ରହଣ କରି ଯେତେ ଦୁରବସ୍ଥାରେ ପଡ଼ୁ ପଛେ, ସେ ତାର ଉନ୍ନତି ବିଧାନ କରିପାରିବ । ଉଦାହରଣ ସ୍ୱରୂପ, ନେପୋଲିଅନ୍ ଓ ସେକ୍‌ସପିୟାର ପ୍ରଭୃତିଙ୍କ ଜୀବନର ଘଟଣାବଳୀ ଗ୍ରହଣ କରାଯାଇପାରେ । ଏହାଛଡ଼ା ବେଦାନ୍ତ କହନ୍ତି ଯେ, ମନୁଷ୍ୟ ନିଜର ଜନ୍ମ, ସୁଖ ଓ ଦୁଃଖ ନିଜେ ନିର୍ଦ୍ଧାରଣ କରେ । ଏ ବିଷୟଟିର ଗୁରୁତ୍ୱ ସମ୍ବନ୍ଧରେ ପୁଙ୍ଖାନୁପୁଙ୍ଖ ରୂପେ ଆଲୋଚନା କରି ବେଦାନ୍ତ ମତ ପ୍ରତିପାଦିତ କରିପାରିଲେ ଅଦୃଷ୍ଟର ସୃଷ୍ଟି ଶୂନ୍ୟଭାବ ମନରୁ ଅପସାରିତ ହୋଇପାରେ ।

ମୃତ୍ୟୁପରେ ମନୁଷ୍ୟର କି ପରିବର୍ତ୍ତନ ଘଟେ ? "Earth to earth returneth"—"ମାଟିର ଏ ଦେହ ନିଶ୍ଚେ ମାଟିରେ ମିଶିବ ।" ପାର୍ଥିବ ଶରୀରର ଆବଶ୍ୟକତା ମୃତ୍ୟୁପରେ ସମୂଳେ ଲୋପ ପାଏ ନାହିଁ ! ଭିନ୍ନ ଅବସ୍ଥାରେ ଅନ୍ୟ ଆକାର ଧାରଣ କରେ । ସମାଧିସ୍ଥ ଶରୀର ମୃତ୍ତିକା ସଙ୍ଗେ ମିଶି ସୁଗନ୍ଧ ଗୋଲାପର ପୁଷ୍ଟି ସାଧନ କରିପାରେ । ବର୍ତ୍ତମାନ ମନ ଓ ଇନ୍ଦ୍ରିୟମାନଙ୍କର ବିଷୟ ଆଲୋଚନା କରାଯାଉ । ପ୍ରଥମେ ଦେଖିବାକୁ ହେବ, ମନ ଯାହାକି ଇହଜଗତରେ କାର୍ଯ୍ୟକାରଣୀ ଶକ୍ତିର କ୍ରିୟାତ୍ମକ ସ୍ୱରୂପ ଧରାଯାଇପାରେ, ତାର ପରିଣାମ କଅଣ ହୋଇପାରେ ? ବିଜ୍ଞାନ ପ୍ରମାଣ କରେ ସଂସାରରେ କୌଣସି ପଦାର୍ଥ କିମ୍ବା ଶକ୍ତି ବିନାଶ ହୁଏ ନାହିଁ । "The law of conservation of Energy" ଓ "The law of

persistence of force" ଅସ୍ମମାନଙ୍କ ମତର ପୋଷକତା କରେ । ଯଦି ଜଡ଼ ଶରୀର ଲୋପ ନ ପାଏ ଓ ଜୀବାତ୍ମାର ବିନାଶ ନ ହୁଏ; ତାହା ହେଲେ ମନ ଓ ଇନ୍ଦ୍ରିୟମାନେ କାହିଁକି ବିନାଶ ପାଇବେ ? ସେମାନେ ଗୋଟିଏ ଆଶ୍ରୟ ତ୍ୟାଗ କରି, ମୃତ୍ୟୁପରେ ଅନ୍ୟ ଆଶ୍ରୟର ଆଶ୍ରୟ ଗ୍ରହଣ କରନ୍ତି । ସ୍ଥୂଳ ଦୃଷ୍ଟିରେ ସାଧାରଣ ମନୁଷ୍ୟ ଏହା ଦେଖିପାରେ ନାହିଁ । ଯେପରି ଖଣ୍ଡିଏ ମହମବତୀରେ ଅଗ୍ନି ସଂଯୋଗ କଲେ କିଛିକ୍ଷଣ ପରେ ଦେଖାଯାଏ ଯେ ତାର ପୂର୍ବାକାର ନଷ୍ଟ ହୋଇ କେତେଗୁଡ଼ିଏ ପୋଡ଼ା ମହମ ମାତ୍ର ପଡ଼ିରହିଛି ଓ ଧୂମାକାରରେ ଅନ୍ୟାନ୍ୟ ଅଂଶ ଉଡ଼ିଯାଇଛି; କିନ୍ତୁ ରାସାୟନିକ ପ୍ରକ୍ରିୟାରେ ପ୍ରମାଣ କଲେ ଦେଖାଯାଏ, ତାହା ଆମ ଚକ୍ଷୁରେ ଦେଖାଯାଉ ନ ଥିଲା; ତାହା ଅନ୍ୟ ଆକାରରେ ବକ୍ରାକୃତି କାଚନଳ (bent-test tube)ରେ ଧରାଯାଇଅଛି । ଜଳ ଉତ୍ତାପ ପାଇଲେ ବାଷ୍ପାକାରରେ ଶୂନ୍ୟକୁ ଚାଲିଯାଏ । ସାଧାରଣ ଲୋକ କହିବେ ତାହା ନଷ୍ଟ ହୋଇଗଲା; କିନ୍ତୁ ପଦାର୍ଥ ବିଜ୍ଞାନବିତ୍ ପ୍ରମାଣ କରିବେ, ସେହି ଜଳ ବାୟୁରେ ଅବସ୍ଥାନ କରିଛି ।

ମନୋବୃତ୍ତିର ବିନାଶ ଯଦି ଅସ୍ୱୀକାର କରାଯାଏ, ତାହାହେଲେ ମୃତ୍ୟୁ ପରେ ତାର କିପରି ଗତି ହୁଏ ? ମନୁଷ୍ୟର ଜନ୍ମ ଓ ମରଣ ପୁନରାବୃତ୍ତିପରି ଲାଗି ରହିଛି ! ସେଥି ସଙ୍ଗେ ମଧ୍ୟ ମନ ଓ ଇନ୍ଦ୍ରିୟମାନେ ତାକୁ ଅନୁସରଣ କରୁଛନ୍ତି । ସଂସାରରେ ପ୍ରତ୍ୟେକ ମନୁଷ୍ୟଠାରେ କାହିଁକି ପାର୍ଥକ୍ୟ ଲକ୍ଷିତ ହୁଏ ? ଏକ ପିତାମାତାଙ୍କ ଔରସରୁ ଜାତ ସନ୍ତାନମାନଙ୍କର ସମସ୍ୱଭାବ ଦେଖାଯାଏ ନାହିଁ; ଜଣକର ବିଚକ୍ଷଣ ବୁଦ୍ଧି ଦେଖାଦେଲେ, ଅପରର କାହିଁକି ଦୁର୍ବଳ ମସ୍ତିଷ୍କର ପରିଚୟ ମିଳେ ? ଏହି ଅସାମଞ୍ଜସ୍ୟର ମୂଳ ତଥ୍ୟ ନିରୂପଣ କରିବାକୁ ହେଲେ ଆମ୍ଭମାନଙ୍କୁ ଜନ୍ମାନ୍ତରୀଣ ସଂସ୍କାରର ଆଶ୍ରୟ ନେବାକୁ ହେବ । ଭିନ୍ନ ଭିନ୍ନ କାମନାର ଅଧୀନ ହୋଇ ମନୁଷ୍ୟ କର୍ମଜଗତରେ ବିଚରଣ କରେ । ଏହି କାମନାସବୁ ତାର ପୂର୍ବ ଜନ୍ମର ଆକାଙ୍କ୍ଷା ଓ କର୍ମ ଉପରେ ଅନେକ ପରିମାଣରେ ଗଠିତ ହୋଇଥାଏ । ଅଲକ୍ଷିତରେ ସେଗୁଡ଼ିକ ତାର ଇହଜଗତର କର୍ମଜୀବନକୁ ନିୟନ୍ତ୍ରିତ କରୁଥାନ୍ତି । ବେଦାନ୍ତ କହନ୍ତି, ମନୁଷ୍ୟର ଅପୂର୍ଣ୍ଣ ବାସନା ମୃତ୍ୟୁପରେ ସୂକ୍ଷ୍ମ ଜୀବିତ ଥାଏ । କାମନାର ସ୍ଥୂଳତା ଓ ତନ୍ନିବନ୍ଧନ ମନୁଷ୍ୟ ଶରୀରକୁ ଲକ୍ଷ୍ୟକରି ସିଦ୍ଧାର୍ଥ ଗୌତମ ତାଙ୍କର ସତ୍ୟ ପ୍ରକାଶ କରିଯାଇଛନ୍ତି; ହିନ୍ଦୁର କର୍ମସୂତ୍ର ମଧ୍ୟ ଏହା ଉପରେ ଭିତ୍ତି ସ୍ଥାପନ କରିଛି । ଯଦି କୁହାଯାଏ ଯେ, ଆମ୍ଭମାନଙ୍କର ସ୍ମୃତି ଜନ୍ମାନ୍ତରରେ ନଷ୍ଟ ହୁଏ ନାହିଁ, ତାହାହେଲେ କାହିଁକି ପୂର୍ବଜନ୍ମର ବୃତ୍ତାନ୍ତ ଇହଜନ୍ମରେ ସ୍ମରଣ ହୁଏ ନାହିଁ ? ସ୍ମୃତି ଶକ୍ତି କଣ ଏହାକୁ ପ୍ରକାଶ କରିବାରେ ଅସମର୍ଥ ? ଅନେକ ସମୟରେ ଆମ୍ଭେମାନେ ଦେଖୁଁ ଯେ, ନାନା ଭାଷାଭିଜ୍ଞ ପଣ୍ଡିତ ଗୋଟିଏ ଭାଷାରେ କଥା କହିଲାବେଳେ ଅନ୍ୟ ଭାଷାରେ ତାଙ୍କର କଥା କହିବାର ଶକ୍ତି ଅଛି ବୋଲି ଜଣା ପଡ଼େ ନାହିଁ, କିନ୍ତୁ ସ୍ମୃତି ଶକ୍ତିକୁ ସାମାନ୍ୟ ଆଲୋଡ଼ନ କଲେ ପୂର୍ବାଭ୍ୟସ୍ତ ଭାଷାସବୁ ତାଙ୍କର ସ୍ୱତଃ ପ୍ରକାଶପାଏ । ସେହିପରି ବେଦାନ୍ତ କହନ୍ତି—ଗତ ଜୀବନର ଘଟଣାବଳୀ ଚିତ୍ତବୃତ୍ତିର ଅନ୍ତରାଳରେ ଆତ୍ମଗୋପନ କରିଥାଏ, ସହଜରେ ସ୍ମୃତିପଥାରୂଢ଼ ହୁଏ ନାହିଁ । କେହି ଏଥିରୁ ଅନୁମାନ କରିବେ ନାହିଁ ଯେ ଗତ ଜୀବନର ବିଷୟ ଜାଣିବା ସାଧନାର ଅତୀତ । Law of Evolution ଅନୁଯାୟୀ ଆମ୍ଭମାନଙ୍କୁ ସର୍ବଦା ଅଗ୍ରସର ହେବାକୁ ପଡ଼ିବ; ସୁତରାଂ ବର୍ତ୍ତମାନ ଜୀବନର ମଙ୍ଗଳ କାମନା ଓ ସିଦ୍ଧିରେ ଯେଉଁ ଉତ୍ସାହ ଆବଶ୍ୟକ, ତାକୁ ଅନ୍ୟ ମାର୍ଗରେ ନଷ୍ଟ କରିବା ଉଚିତ ନୁହେଁ । ଭଗବାନ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ନରଦେହର ନଶ୍ୱରତା ଓ ବାସନା କ୍ଷୟ ନ ହେଲେ ତାର ପୁନରାଗମନର ନିଶ୍ଚୟତା ସ୍ମରଣ କରାଇ କହିଲେ—

"ଜାତସ୍ୟହି ଧ୍ରୁବୋ ମୃତ୍ୟୁ ଧ୍ରୁବୋ ଜନ୍ମ ମୃତସ୍ୟଚ
ତସ୍ମାଦପରିହାର୍ଯ୍ୟେଽର୍ଥେ ନ ତ୍ୱଂ ଶୋଚିତୁମର୍ହସି ।"

ଜୀବର ଜନ୍ମ ଓ ମରଣ ଦେହାନ୍ତର ପ୍ରାପ୍ତିର ସୋପାନ ସ୍ୱରୂପ । ପାର୍ଥିବ ପଦାର୍ଥର ଆକର୍ଷଣ, ସୌନ୍ଦର୍ଯ୍ୟରେ ଆସକ୍ତି ଓ ନୈସର୍ଗିକ ଶୋଭାରେ ଆନନ୍ଦ ମନୁଷ୍ୟ ପୂର୍ବଜନ୍ମର ବାସନାର ବଶବର୍ତ୍ତୀ ହୋଇ ଉପଭୋଗ କରେ । ପ୍ରୟସୀ ସଙ୍ଗେ ଅଭେଦ-ଭାବ ଏକଜନ୍ମର ସଂପର୍କରୁ ସୃଷ୍ଟ ହୁଏ ନାହିଁ । ମନୁଷ୍ୟ କାହିଁକି ଗୋଟିଏ ପଦାର୍ଥ କିମ୍ବା ଗୋଟିଏ ବିଶିଷ୍ଟ ପ୍ରାଣୀ ସହିତ ନିଜର ଆତ୍ମୀୟତା ସ୍ଥାପନ କରିବାକୁ ସର୍ବଦା ପ୍ରୟାସୀ ହୁଏ ? ମନ ତାର ଜଣକ ପ୍ରତି କାହିଁକି ଶତ ବାଧା ନ ମାନି ଆକୃଷ୍ଟ ହୁଏ ? ଅନ୍ତରର ନିଭୃତତମ ପ୍ରଦେଶରେ କିଏ ଜଣେ ଅନାହୂତ ଆଗନ୍ତୁକକୁ ଜୀବନର ସାଥୀ କରିବାକୁ ପ୍ରେରଣା ଦିଏ ? ଲକ୍ଷାଧିକ

ନରନାରୀ ମଧ୍ୟରେ କାହିଁକି ଜଣକୁ ବାଛିନିଏ ତା ହୃଦୟର ସର୍ବସ୍ୱ ତା ନିକଟରେ ଅକୁଣ୍ଠିତଭାବେ ଅର୍ପଣ କରିବା ପାଇଁ ? ଏହା ସେହି ଅଦୃଷ୍ଟର କାର୍ଯ୍ୟ ନୁହେଁ କି ? ବିନ୍ଦୁ ଗର୍ଭରେ ପୂର୍ବଜନ୍ମର କର୍ମଫଳ 'ଅଦୃଷ୍ଟ' ସଞ୍ଚୟ କରିଥାଏ, ମନୁଷ୍ୟ ଏହାକୁ ସମ୍ୟକ୍‌ରୂପେ ବିଗ୍ଭର ନ କରି କୌଣସି ଆକସ୍ମିକ ଦୁର୍ଘଟଣାରେ ନିଜକୁ ହରାଇ କ୍ଷିପ୍ତତାର ପରିଚୟ ଦିଏ ।

ଯଦି ଆମ୍ଭେମାନେ ନିଜ ଅଦୃଷ୍ଟର କର୍ତ୍ତା ବୋଲି ବିବେଚିତ ହେଉ, ତାହାହେଲେ କାହିଁକି ଆମ୍ଭମାନଙ୍କ ମଧ୍ୟରେ ଦୈନ୍ୟର ପ୍ରାଦୁର୍ଭାବ ହୁଏ ? ନିଜ ଇଚ୍ଛାରେ କେହି ଅଶୁଭ କାମନା କରେ ନାହିଁ । ସମସ୍ତେ ଧନୀ ହେବାକୁ ଇଚ୍ଛା କରନ୍ତି—ନିର୍ଦ୍ଧନ ହେବା କାହାରି ବାସନା ନୁହେଁ । ତଥାପି ଏତେ ଲୋକ କାହିଁକି ଦରିଦ୍ର ହୋଇ ଦିନ ଯାପନ କରନ୍ତି ? ମନୁଷ୍ୟର ଇଚ୍ଛା ଅନେକ ସମୟରେ ଦୁଇ ବିପରୀତ ଦିଗରେ ଯିବାକୁ ଚାହେଁ । ମନ ଓ ଇନ୍ଦ୍ରିୟମାନେ ବଡ଼ ପ୍ରବଳ, ସେମାନଙ୍କୁ ସଂଯତ କରି ନ ପାରିଲେ, ମନୁଷ୍ୟକୁ ସେମାନଙ୍କର ଅଧୀନ ହୋଇ ରହିବାକୁ ହୁଏ । ଯେତେବେଳେ ଯେପରି କାମନାର ଉଦ୍ରେକ ହୁଏ, ସେତେବେଳେ ତଦ୍ଦ୍ୱାରା ଚାଳିତ ହୋଇ ଭଲମନ୍ଦ ବିଗ୍ଭର ନକରି ମନୁଷ୍ୟ ଅଗ୍ରସର ହୁଏ ଓ ପରିଣାମରେ ଦୁର୍ଦ୍ଦଶା ଆସିଲେ ଆଉ ଉପାୟ ନ ଥାଏ; ସୁତରାଂ ବାଧ୍ୟ ହୋଇ ସେ ସ୍ୱକୃତର ଫଳ ଭୋଗ କରେ ।

ଯଦି ଜଣେ ଲୋକ କେବଳ ଉତ୍କଟ କାମଲିପ୍ସାରେ ଚାଳିତ ହୋଇ ଧର୍ମ, ନୀତି କିମ୍ବା ପରମାର୍ଥତତ୍ତ୍ୱକୁ ଅସାର ମନେ କରେ ଓ ସର୍ବଦା କାମ ପ୍ରବୃତ୍ତି ଚରିତାର୍ଥ କରିବାରେ ମତ୍ତ ହୁଏ; ତାହାହେଲେ ବେଦାନ୍ତ ମତରେ ମୃତ୍ୟୁପରେ ତାର ଜନ୍ମ ଶୂକର କିମ୍ବା କୁକୁର ଯୋନିରୁ ହେବା ସ୍ୱାଭାବିକ ହୁଏ । ସଂସାରିକ ପ୍ରାଣୀ କୌଣସି ଅଭିଳାଷ ପୋଷଣ କଲାବେଳେ ତାର ଯାଥାର୍ଥ୍ୟ ଅନୁଭବ କରିବା ଉଚିତ । ଏ ପ୍ରସଙ୍ଗରେ ଆମ୍ଭେମାନେ ଗୋଟିଏ ଆଖ୍ୟାୟିକାର ସାରାଂଶ ଦେଇପାରୁଁ ।

ଜଣେ ବୃଦ୍ଧଲୋକ ପ୍ରଚଣ୍ଡ ଗ୍ରୀଷ୍ମ ସମୟରେ ଗୋଟିଏ ବୃହତ୍ ଭାର ବହନ କରି ଯାଉଥିଲା । ଭାରର ଗୁରୁତ୍ୱ ଓ ସୂର୍ଯ୍ୟର ପ୍ରଖର ଉତ୍ତାପ ବଡ଼ କଷ୍ଟ ଦେବାରୁ ସେ ଗୋଟିଏ ବୃକ୍ଷ ମୂଳରେ ବିଶ୍ରାମ ନେଲା, ନିଜ ଜୀବନକୁ ବ୍ୟର୍ଥ ମନେ କରି ଅସହ୍ୟ ଦୁଃଖରୁ ରକ୍ଷା ପାଇବା ପାଇଁ ମୃତ୍ୟୁକୁ ଆହ୍ୱାନ କଲା । ମୃତ୍ୟୁ ଭୀଷଣ ମୂର୍ତ୍ତି ଧାରଣ କରି ତା ସମ୍ମୁଖରେ ଆସି ଦଣ୍ଡାୟମାନ ହେଲା । ତହୁଁ ବୃଦ୍ଧର ରୋମାଞ୍ଚ ଜାତ ହେଲା । ସେ ମୃତ୍ୟୁକୁ ପଚାରିଲା—"ତୁମେ କୁଆଡ଼େ ଆସିଲ ?" ମୃତ୍ୟୁ କହିଲା—"ତୁମେ ଡାକିଥିଲ, ତୁମ ଆଶା ପୂର୍ଣ୍ଣ କରିବା ପାଇଁ ଆସିଛି ।" ବୃଦ୍ଧ ତତ୍‌କ୍ଷଣାତ୍ ନିଜ କାମନାର ତାତ୍ପର୍ଯ୍ୟ ବୁଝିପାରି କହିଲା—"ନା, ମୁଁ ଇହସଂସାରରୁ ଯିବା ପାଇଁ ତୁମକୁ ଆହ୍ୱାନ କରି ନଥିଲି, କେବଳ ଏ ଦୁର୍ବହ ଭାର ବହନ କରିବାକୁ ଚାହିଁଥିଲି ।"

ଜୀବନରେ ଏହିପରି ନାନା ଦୁଃଖ ଓ କଷ୍ଟ ମନୁଷ୍ୟ ନିଜ କାମନାର ବଶବର୍ତ୍ତୀ ହୋଇ ଆହ୍ୱାନ କରିଥାଏ । ଅଶ୍ୱର ବଲ୍‌ଗାକୁ ଶିଥିଳ କରିଦେଇ ତାକୁ ସ୍ୱଚ୍ଛନ୍ଦରେ ଦୌଡ଼ିବାକୁ ଛାଡ଼ିଦେଲେ ତତ୍‌ସଂଯୁକ୍ତ ଯାନ ସ୍ୱତଃ ଧାବିତ ହୁଏ । ସୁତରାଂ ଥରେ କୌଣସି ଅଦମ୍ୟ କାମନାର ବଶବର୍ତ୍ତୀ ହେଲେ, ତହିଁର ଫଳ ନିଶ୍ଚୟ ଭୋଗ କରିବାକୁ ହେବ । ବେଦାନ୍ତ କହନ୍ତି ପ୍ରତ୍ୟେକ ମନୁଷ୍ୟ ଆତ୍ମଘାତୀ; କାରଣ ଜରାଜୀର୍ଣ୍ଣ ଅବସ୍ଥାରେ ପଡ଼ି ଅତ୍ୟନ୍ତ କଷ୍ଟ ପାଇଲେ ମନୁଷ୍ୟ ବ୍ୟାକୁଳ ହୋଇ ଯନ୍ତ୍ରଣାରୁ ରକ୍ଷା ପାଇବା ସକାଶେ ମୃତ୍ୟୁକୁ ଡାକିଥାଏ । ମୃତ୍ୟୁ ସମସ୍ତଙ୍କୁ ଉଦ୍ଧାର କରେ । ଆତ୍ମାର ମଧ୍ୟ ପାରିପାର୍ଶ୍ୱିକ ଅବସ୍ଥାରେ କ୍ଷୁବ୍ଧ ହେଲେ ପରିବର୍ତ୍ତନ ଅବଶ୍ୟମ୍ଭାବୀ । କାମନା କଲେ ମୃତ୍ୟୁ ଯୌବନରେ ସୁଦ୍ଧା ଆସି ଦୁଃସ୍ଥ ଲୋକକୁ ଉଦ୍ଧାର କରେ । ବର୍ତ୍ତମାନ ଦେଖାଯାଉ ମନୁଷ୍ୟର ପରସ୍ପରବିରୁଦ୍ଧ ଇଚ୍ଛାଗୁଡ଼ିକ କିପରି କାର୍ଯ୍ୟ କରେ । ଜଣକର ପ୍ରବଳ ଇଚ୍ଛା ବକ୍ତା ହୋଇ ବିପୁଳ ଖ୍ୟାତି ଅର୍ଜନ କରିବ । ସେଥି ସଙ୍ଗେ ଅନ୍ୟ ଇଚ୍ଛା ଆସି ତାକୁ କାମାନ୍ଧ କରି କାମ ପ୍ରବୃତ୍ତିରେ ମଜ୍ଜି ରହିବାକୁ ପ୍ରବର୍ତ୍ତିନା ଦିଏ । ଅତଏବ ଦୁଇ ବିପରୀତ କାମନାର ଅଧୀନ ଲୋକର କି ଦଶା ଘଟିପାରେ ? ଉଭୟ କାମନା ପୂର୍ଣ୍ଣ ହୁଏ । ଯେତେବେଳେ ଗୋଟିକର ତୃପ୍ତି ସାଧିତ ହୁଏ, ଅପରଟି ଭୋଗ ବଞ୍ଚିତ ହୋଇ କଷ୍ଟ ପାଏ । ଏହିପରି ମନୁଷ୍ୟ ଦୁଃଖ ଓ କ୍ଳେଶରେ ପଡ଼ି ନିଜର କାମନା ସବୁ ପୂର୍ଣ୍ଣ କରେ । ପ୍ରକୃତ ସୁଖ ଓ ଶାନ୍ତି ପାଇବାକୁ ଇଚ୍ଛା ଥିଲେ ଆତ୍ମମାନଙ୍କର କାମନା-ଅଧୀନ ହୋଇ ରହିବା ଉଚିତ ନୁହେଁ । ନୀଚ ଓ ଉଚ୍ଚ ପ୍ରବୃତ୍ତି ପ୍ରତ୍ୟେକ ମନୁଷ୍ୟର ଅଛି । ଅହରହ ଏମାନଙ୍କ ମଧ୍ୟରେ ଦ୍ୱନ୍ଦ୍ୱ ଲାଗି ରହିଛି । ପ୍ରାକୃତିକ ନିୟମ ଅନୁସାରେ ପ୍ରବଳର ଜୟ ହୋଇଥାଏ । ଏହି ପ୍ରବୃତ୍ତିମାନଙ୍କ ମଧ୍ୟରେ ଯେ ସତ୍ୟ ଉପରେ ପ୍ରତିଷ୍ଠିତ, ତାର ଶକ୍ତି ଅଧିକ ଏବଂ

ଶେଷରେ ସେହି ପ୍ରବୃତ୍ତି ଜୟଲାଭ କରି ମନୁଷ୍ୟ ହୃଦୟକୁ ଅଧିକାର କରେ ଓ ମନୁଷ୍ୟ କ୍ରମଶଃ ଉନ୍ନତର ସୋପାନରେ ଆରୋହଣ କରେ । କେହି ଚିରଦିନ କୁପ୍ରବୃତ୍ତିମାନଙ୍କ ଦ୍ୱାରା ଶୃଙ୍ଖଳିତ ହୋଇ ନିଜର ଅନିଷ୍ଟ କରେ ନାହିଁ । ଦିନ ଆସେ, ଯେତେବେଳେ ସେ ତାର ସବୁ କଳଙ୍କର କାଳିମା ପୋଛିନେଇ ପରମାନନ୍ଦ ଭୋଗ କରେ । ଏ ଅବସ୍ଥାଟି ପ୍ରକାଶ କରି କର୍ମସୂତ୍ର ନୀରବ ରହେ । ଅନନ୍ତ ଜୀବନ-ସମୁଦ୍ରରେ ମାନବର ଶରୀର ଧାରଣ ଓ କାମନାରାଶିର ଉପଭୋଗ କେବଳ ତରଙ୍ଗ ମାତ୍ର । ମୁହୂର୍ତ୍ତକ ମଧ୍ୟେ ବିଶ୍ୱବ୍ରହ୍ମାଣ୍ଡରେ ପ୍ରଳୟ ଘଟିପାରେ, କିନ୍ତୁ ସତ୍ୟ ଅନନ୍ତ କାଳଗର୍ଭରେ ସର୍ବଦା ବିରାଜିତ । ତାର ବିଲୟ ନାହିଁ । ମାୟାର ପ୍ରହେଳିକା ଦୂର କରି ନ ପାରି, ଭ୍ରାନ୍ତ ମନୁଷ୍ୟ ଇନ୍ଦ୍ରିୟ ଓ ପ୍ରବୃତ୍ତିମାନଙ୍କ ଦ୍ୱାରା ଶୃଙ୍ଖଳିତ ହୋଇ ସ୍ୱରୂପ ଜ୍ଞାନ ସହଜରେ ଲାଭ କରିପାରେ ନାହିଁ । କ୍ଷଣିକ ତୃପ୍ତି ପ୍ରୟାସୀ ହୋଇ ସେ ସତ୍ୟ ପଥରୁ ବିଚ୍ୟୁତ ହୁଏ । ଭବିତବ୍ୟ ଦ୍ୱାର ଉନ୍ମୁକ୍ତ କରିବାରେ କିଛି ଆବଶ୍ୟକ ନାହିଁ ମନୁଷ୍ୟ ଦୁର୍ବଳ, କାଳ ସମୁଦ୍ର ପାର ହେବାକୁ ଇଚ୍ଛା କଲେ କେବଳ ବିଭୁପାଦ ଆଶ୍ରୟ ଛଡ଼ା ତାର ଅନ୍ୟ ଉପାୟ ନାହିଁ ।

# ବିଚାର

ସାଧାରଣ ଜାଗତିକ କ୍ରିୟା କୌଶଳ ମଧ୍ୟରେ ବିଚାରକୁ ଗୋଟିଏ ବିଶିଷ୍ଟ ସ୍ଥାନ ଦିଆ ହୋଇଥାଏ । ସମାଜରେ ଯେ ନୀତିଗୁଡ଼ିକ ପ୍ରଚଳନ କରାଯାଏ, ସେଗୁଡ଼ିକ ମନୁଷ୍ୟର ବିଚାର ବୁଦ୍ଧିରୁ ଉତ୍ପତ୍ତି ଲାଭ କରେ । ମନୁଷ୍ୟ ସ୍ୱତଃ ପ୍ରଣୋଦିତ ହୋଇ ସ୍ୱକୃତ କର୍ମର ପରିଣାମ ଦେଖିବାକୁ ମନ ବଳାଇ ଥାଏ । ଯେତେବେଳେ ସେ କୌଣସି କର୍ମର ଫଳ ଭୋଗ କରି ମନସ୍ତାପ ପାଏ, ସେତେବେଳେ ତାର ଦୃଷ୍ଟି ଧାରାବାହିକ ଦିଗରୁ ଫେରିଯାଏ । ତେଣୁ କର୍ମ-ନିୟନ୍ତ୍ରଣରେ ମନୁଷ୍ୟର ବିଚାରକୁ ଆଶ୍ରୟ କରିବା ଗୋଟିଏ ସ୍ୱଭାବ ହୋଇପଡ଼େ ।

ବିଚାର କଲାବେଳେ ଭିନ୍ନ ଭିନ୍ନ ମନୁଷ୍ୟ ଏକ ବିଷୟରେ ସମଦୃଷ୍ଟିର ଅଧୀନ ହୁଅନ୍ତି ନାହିଁ । ଜଣେ ଯେ ବିଷୟକୁ ତନ୍ନ ତନ୍ନ କରି ଦେଖେ ଓ ନିଜର ସୂକ୍ଷ୍ମ ବୁଦ୍ଧି ସାହାଯ୍ୟରେ ସେହି ବିଷୟର ଜଟିଳତା ସମାଧାନ କରେ, ଅନ୍ୟ ଜଣକ ପକ୍ଷରେ ସେହି ରୀତି ଅନୁସରଣ କରିବା ସ୍ୱଭାବବିରୁଦ୍ଧ ହୋଇପାରେ । କୌଣସି ନିର୍ଦ୍ଦିଷ୍ଟ କାର୍ଯ୍ୟର ସଫଳତା ଦେଖି ବିଭିନ୍ନ ମତ ପ୍ରକାଶ କରିବା ଦ୍ୱାରା ମନୁଷ୍ୟ ବୁଦ୍ଧିର ପ୍ରକର୍ଷ ଜଣାଯାଇପାରେ, କିନ୍ତୁ ତଦ୍ଦ୍ୱାରା ଚିନ୍ତାଧାରାର ବହିରବସ୍ଥା ସମାନତାର ଅନ୍ତର୍ଭୁକ୍ତ ନୁହେଁ ବୋଲି ପ୍ରତିପନ୍ନ କରାଯାଏ । ବିଷୟର ଗୁରୁତ୍ୱ ପ୍ରତି ଲକ୍ଷ୍ୟ ନରଖି ଗୋଟିଏ ପ୍ରଚଳିତ ବିଶ୍ୱାସର ବଶବର୍ତ୍ତୀ ହୋଇ ମନୁଷ୍ୟ ହଠାତ୍ ଗୋଟିଏ ଅଭିମତ ପ୍ରକାଶ କଲେ ସମାଜର କ୍ଷତି ଘଟେ । ବାହ୍ୟ ଦୃଷ୍ଟିରେ କିମ୍ବା ଅପର ଦ୍ୱାରା ପ୍ରଣୋଦିତ ହୋଇ ଯେ ବିଚାର ବୁଦ୍ଧି ଲାଭ କରାଯାଏ, ତାକୁ କାର୍ଯ୍ୟ ନିର୍ଦ୍ଧାରଣରେ ବ୍ୟବହାର କରିବା ଉଚିତ ନୁହେଁ । ଜଣକର କାର୍ଯ୍ୟକୁ ଉପଯୁକ୍ତ ଭାବେ ଆଲୋଚନା ନ କରି କୌଣସି ସିଦ୍ଧାନ୍ତରେ ଉପନୀତ ହେଲେ ନିଜର ଓ ଆଲୋଚିତ ବ୍ୟକ୍ତିର ଯଥେଷ୍ଟ ଅନିଷ୍ଟ ସାଧନ କରନ୍ତି । ଅସଙ୍ଗତ ଭାବରେ ବିଚାରବୁଦ୍ଧି ପ୍ରୟୋଗ କରି ଯେ ମତ ସୃଷ୍ଟି କରାଯାଏ, ତାହା ଲୋକହିତକର ହୁଏ ନାହିଁ । ସଙ୍କୀର୍ଣ୍ଣ କିମ୍ବା ମିଥ୍ୟା ପ୍ରସଙ୍ଗରେ ଗୋଟିଏ ଉକ୍ତି ପ୍ରଚାର କରାଇଲେ, ସମାଜ ତାକୁ ସହଜେ ଗ୍ରହଣ କରେ ଓ ତଦନୁଯାୟୀ ବର୍ଣ୍ଣିତ ବ୍ୟକ୍ତିର ଚରିତ୍ରକୁ ବିଚାର କରେ । ଉକ୍ତିଟା ଯେ ସମ୍ପୂର୍ଣ୍ଣ ଅମୂଳକ, ସେଥିପ୍ରତି କାହାରି ଲକ୍ଷ୍ୟ ନ ଥାଏ । ଥରେ ଗୋଟିଏ କଥା ପ୍ରକାଶ କରି ତାକୁ ପ୍ରତ୍ୟାହାର କରିବା ସହଜ କଥା ନୁହେଁ । ଯେଉଁମାନେ ଉପଯୁକ୍ତ ଭାବେ ଭଲ କିମ୍ବା ମନ୍ଦ ବିଚାର ନ କରି କଥା ପ୍ରସଙ୍ଗରେ ଅନେକ କଥା କହିପକାନ୍ତି, ସେମାନଙ୍କର ସାବଧାନ ହେବା ଆବଶ୍ୟକ । ଜଗତର ଆବିଳତା ବୃଦ୍ଧି ସକାଶେ ସେମାନେ ବିଶେଷ ରୂପେ ଦାୟୀ ଅଟନ୍ତି । ମନୁଷ୍ୟର ସ୍ୱଭାବ ବଡ଼ ଜଟିଳ । ଏଥିପ୍ରତି ଉଦାସୀନ ହେବା ବିଚାରକଙ୍କର ଉଚିତ ନୁହେଁ । କୌଣସି ବ୍ୟକ୍ତିର କାର୍ଯ୍ୟ ପରୀକ୍ଷା କରିବା ପୂର୍ବରୁ ମନେ ରଖିବାକୁ ହେବ ଯେ, ଖୁବ୍ କମ୍ ଲୋକଙ୍କର ନିଜର ଚରିତ୍ର ସମ୍ବନ୍ଧରେ ପ୍ରକୃତ ଜ୍ଞାନ ଜନ୍ମି ଥାଏ । ନିଜର ସ୍ୱଭାବ ନ ଜାଣି ଅପର ବିଷୟରେ ଧାରଣା କରିବା କିପରି କଠିନ, ତାହା ସହଜରେ ଅନୁମେୟ । ଆପଣାର ସ୍ୱଭାବ ଜାଣିଥିଲେ ସୁଦ୍ଧା ଠିକ୍ ରୂପେ ପ୍ରକାଶ କରିବା ଆଉ ଏକ କଠିନ ବ୍ୟାପାର । ମନୁଷ୍ୟ କଥା ବାଦ୍ ଦେଇ ଯଦି ଉଦ୍ଭିଦ ଜଗତ ସମ୍ବନ୍ଧରେ ଆଲୋଚନା କରାଯାଏ, ତାହାହେଲେ ମନୁଷ୍ୟର ଜ୍ଞାନ ସେ ବିଷୟରେ କେତେ ଅଳ୍ପ, ତାହା ସ୍ପଷ୍ଟ ରୂପେ ଅନୁମିତ ହେବ । ପ୍ରତିମୁହୂର୍ତ୍ତରେ ଆମେ ବଗିଚାରେ କେତେ ପ୍ରକାର ଫୁଲ ଦେଖୁଁ, ସେଗୁଡ଼ିକର ବର୍ଣ୍ଣ ଓ ଆକାର ସମ୍ବନ୍ଧରେ ଆମ୍ଭମାନଙ୍କର କୌଣସି ଧାରଣା କରିବାରେ କିଛି ବାଧା ନ ଥାଏ; ତଥାପି ଫୁଲଟିଏ ଦେଖି ତାର ବିଶିଷ୍ଟତା ପ୍ରକାଶ କରିବା ଆମ୍ଭମାନଙ୍କ ପକ୍ଷରେ କାହିଁକି କଷ୍ଟକର ହୁଏ ?

ଉଦ୍ଭିଦ-ତତ୍ତ୍ୱବିଦ୍ ଫୁଲ ସମ୍ବନ୍ଧରେ ଯାହା ଜାଣି ପାରନ୍ତି, ଅପର ସାଧାରଣ ଦର୍ଶକ ପକ୍ଷେ ସେହି ଜ୍ଞାନ ଲାଭ କରିବା ସହଜ ନୁହେଁ । ଗୁଳ୍ମଲତା ପ୍ରକୃତିରେ ମନୋନିବେଶ ନ କରି ସେମାନଙ୍କର ଉପକାରିତା କିମ୍ବା ଅନିଷ୍ଟକାରିତା ବିଷୟ

ମନୁଷ୍ୟ ବୁଝିପାରେ ନାହିଁ; କିନ୍ତୁ ମନୁଷ୍ୟ ସ୍ୱଭାବକୁ ଏପରି ସହଜ ମନେ କରେ ଯେ, ହଠାତ୍ ଗୋଟିଏ ମତ ପ୍ରକାଶ କରିବାକୁ କୁଣ୍ଠାବୋଧ କରେ ନାହିଁ । ପଦେ କଥାରେ ଆମ୍ଭେମାନେ ଜଣକର ଚରିତ୍ର ଭଲ କି ମନ୍ଦ କହିପାରୁଁ; କିନ୍ତୁ ଭାବିବା ଦରକାର— ଆମ୍ଭେମାନେ ଯାହା ବ୍ୟାଖ୍ୟାନ କରୁଁ, ତାର ଭିତ୍ତି କେଉଁଠାରେ ନିହିତ ଅଛି ।

ମନୁଷ୍ୟ କୌଣସି ଅମୂଳକ ମତ ପ୍ରଚାର ନ କଲେ ସୁଦ୍ଧା ଅନେକ ସମୟରେ ଅବାନ୍ତର କଥାଗୁଡ଼ିକ ଦୃଢ଼ତାର ସହିତ ଗ୍ରହଣ କରେ । ଏପରି ସରଳ ବିଶ୍ୱାସ ପୋଷଣ କରି ଯୁକ୍ତିଯୁକ୍ତ ବିଚାରର ନିଦର୍ଶନ ଦେଖାଇବା କଠିନ ନୁହେଁ । ସାଧାରଣ ପ୍ରଚଳିତ ଲୋକମତକୁ ପରୀକ୍ଷା କରିନେବା ଆବଶ୍ୟକ । ଏହା ନ କଲେ ଆମ୍ଭେମାନେ ବିଷମ ଭ୍ରମରେ ପଡ଼ିପାରୁଁ । ଲୋକମୁଖରେ ଗୋଟିଏ କଥା ଶୁଣି ତାକୁ ପୁଣି ନିର୍ବିଚାରରେ ସମାଜରେ ରାଷ୍ଟ୍ର କରାଇବାଦ୍ୱାରା ବୁଦ୍ଧିର ଲଘୁତା ଜଣାପଡ଼େ । ଯେଉଁମାନେ ଅନ୍ୟର କଥା କହି ବୁଲନ୍ତି, ସେମାନେ ପ୍ରାୟ ସେହି କଥାକୁ ଉପଯୁକ୍ତଭାବେ ଆଲୋଚନା କରି ନ ଥାନ୍ତି ! କୌଣସି ବିଷୟରେ ଅଭିଜ୍ଞତା ନ ଥିଲେ, ସେ ବିଷୟରେ ନିଜକୁ ଅସଂପୃକ୍ତ ରଖିବା ବାଞ୍ଛନୀୟ । ପ୍ରଚଳିତ କଥାକୁ ଯଦି ବିଚାର ବୁଦ୍ଧି ଠିକ୍ ବୋଲି ଗ୍ରହଣ କରେ, ତଥାପି ସେହି କଥାର ପ୍ରଚାରରେ ସହାୟତା କରିବା ସବୁବେଳେ ସମୀଚୀନ ହୁଏ ନାହିଁ । ମନୁଷ୍ୟ ଚରିତ୍ରକୁ ବିଶ୍ଳେଷଣ କଲେ କେତୋଟି ବିଷୟ ସହଜରେ ଉପଲବ୍ଧ ହୋଇପାରେ; କାରଣ ଅବସ୍ଥା ଓ ସ୍ଥଳବିଶେଷରେ ଏହାର ଜଟିଳତା ଅନେକ ପରିମାଣରେ ଦୂର ହୋଇଥାଏ । ସମାଜ ଚକ୍ଷୁରେ ଯେଉଁମାନଙ୍କର କାର୍ଯ୍ୟ ସର୍ବଦା ସମ୍ପାଦିତ ହେଉଥାଏ, ସେମାନଙ୍କ ବିଷୟରେ ଗୋଟିଏ ବିଚାର କରିବାକୁ ବେଶୀ ସମୟ ଲାଗେ ନାହିଁ । ସେମାନଙ୍କ କାର୍ଯ୍ୟରୁ ଚରିତ୍ର-ଚିତ୍ରଣ ପାଇଁ ଯଥେଷ୍ଟ ଉପାଦାନ ମିଳେ । ଏହାବୋଲି ଲୋକମୁଖରୁ ଶୁଣି ବ୍ୟକ୍ତିଗତ ଚରିତ୍ର ସମ୍ବନ୍ଧରେ ବିଚାର କରିବା ନିରାପଦ ନୁହେଁ । ଅନେକ ସମୟରେ ବର୍ଣ୍ଣିତ ଚରିତ୍ରରେ ଦୋଷ ଥାଏ, ସେଥିଯୋଗୁଁ ବୁଦ୍ଧିମାନ ଲୋକ ଦୋଷକୁ ଉପେକ୍ଷା କରି ଗୁଣକୁ ଗ୍ରହଣ କରନ୍ତି । କଥାର ସତ୍ୟତା ବିଚାର ଶକ୍ତିକୁ ସଂପୂର୍ଣ୍ଣ ନିର୍ଦ୍ଦେଶ କରିପାରେ ନାହିଁ । କଥାଟିଏ ସତ୍ୟ ହେଲେ ସୁଦ୍ଧା ଅଯଥା ବିଶିଷ୍ଟତାର ଆରୋପ କରି ଆମ୍ଭେମାନେ ଗୋଟିଏ ଭ୍ରମ ଧାରଣାର ବଶବର୍ତ୍ତୀ ହେଉଁ । ସମାଜର ଅଧିକାଂଶ ଲୋକ ଯେଉଁ କଥାକୁ ସମର୍ଥନ କରନ୍ତି, ତାହା ଯେ ସମ୍ପୂର୍ଣ୍ଣ ପ୍ରମାଦଶୂନ୍ୟ ଏପରି ଭାବିବା ମଧ୍ୟ ସଙ୍ଗତ ନୁହେଁ । ଜଣକ ପକ୍ଷରେ ବିଚାର କରି ଗୋଟିଏ ଦୋଷଶୂନ୍ୟ କଥା ପ୍ରକାଶ କରିବା ଯେପରି କଷ୍ଟକର ହୁଏ, ସେହିପରି ସମାଜର ଅନ୍ୟମାନଙ୍କ ପକ୍ଷରେ ମଧ୍ୟ ଘଟିଥାଏ । ଲୋକମାନଙ୍କ ସଂଖ୍ୟା ଆଧିକ୍ୟରେ ବିଚାରର ଗୁରୁତ୍ୱ ନିର୍ଭର କରେ ନାହିଁ । ସମାଜର ନେତୃସ୍ଥାନୀୟ ଲୋକମାନେ କୌଣସି କଥାରେ ବେଶୀ ଆସ୍ଥା ରଖନ୍ତି ବୋଲି ପ୍ରତ୍ୟେକ ବ୍ୟକ୍ତି ତାକୁ ନତମସ୍ତକରେ ଗ୍ରହଣ କରିବେ, ଏପରି କିଛି କାରଣ ନାହିଁ ।

ସାଧାରଣ ଲୋକଚରିତ୍ର ସମ୍ବନ୍ଧରେ ଯେ ଅଭିମତ ସବୁ ଶୁଣାଯାଏ, ସେଗୁଡ଼ିକୁ ବିଚାର କଲେ ଅନେକ ଦୋଷ ଦେଖାଯାଏ । ଅବଶ୍ୟ ନିନ୍ଦାବାଦର ଏଥିରେ କୌଣସି ସମ୍ପର୍କ ନାହିଁ । କୁ-ଉଦ୍ଦେଶ୍ୟର ଅଧୀନ ହୋଇ ସୁଦ୍ଧା ମନୁଷ୍ୟ ଅନେକ ସମୟରେ ଭ୍ରମ ମତ ପୋଷଣ କରେ । ଅନିର୍ଦ୍ଦିଷ୍ଟ ସମ୍ବାଦ କିମ୍ବା ଭ୍ରମ ବିଚାରରେ ଲୋକ-ମତ ବେଶୀ ସଂଗଠିତ ହୋଇଥାଏ । ଅନେକ ସମୟରେ ବିଚାରପତିମାନଙ୍କର ସ୍ୱଭାବଗତ ଦୁର୍ବଳତା କିମ୍ବା ତୀକ୍ଷ୍ଣ ମେଧା ବିଚାର୍ଯ୍ୟ ଚରିତ୍ରକୁ ପ୍ରଭାବିତ କରିଥାଏ । କଥା ପ୍ରସଙ୍ଗରେ ଯେପରି ବିଷୟମାନ ଉପସ୍ଥାପିତ କରାଯାଏ, ସେଗୁଡ଼ିକର ସାରବତ୍ତା ବିଷୟରେ ମନୁଷ୍ୟର ସାଧାରଣତଃ ସନ୍ଦେହ ଜନ୍ମେ ନାହିଁ । କାରଣ ସେ ମନେ କରେ ପ୍ରତ୍ୟେକ କଥାର ଭିତ୍ତି ସୁବିଚାର ଉପରେ ନିର୍ଭର କରେ । ତାକୁ ପ୍ରକାଶ କରିବାକୁ ସେ ଯଥେଷ୍ଟ ଶ୍ରମସ୍ୱୀକାର କରିଥାଏ । ଏହିପରି ନାନା କାରଣରୁ ଲୋକମତ ସୃଷ୍ଟ ହେଲେ ମନୁଷ୍ୟ ଚରିତ୍ର ସମ୍ବନ୍ଧରେ ଠିକ୍ ଧାରଣା ଜନ୍ମିବା ପକ୍ଷେ ବାଧା ପଡ଼େ ।

ମନୁଷ୍ୟର ସୁନାମ କିମ୍ବା ଦୁର୍ନାମ ନିମ୍ନଶ୍ରେଣୀର ଲୋକମାନଙ୍କ ଉପରେ ଅଧିକ ନିର୍ଭର କରେ । ଗୋଟିଏ କଥାକୁ ସମସ୍ତଙ୍କ ଆଗରେ କହିବୁଲିବା ସେମାନଙ୍କର ସ୍ୱଭାବ । ବିଶେଷତଃ ଯଥାଯଥ ଭାବରେ ଘଟଣାଗୁଡ଼ିକୁ ବର୍ଣ୍ଣନା କରିବା ଖୁବ୍ କମ୍ ଲୋକଙ୍କର ଆୟତ୍ତ ଥାଏ । ଲୋକ ଅନେକ ସମୟରେ ଏପରି ଆଚରଣ କରେ ଯେ, ତାହା ସାଧାରଣ ବିଚାର ଦୃଷ୍ଟିକୁ ଆସେ ନାହିଁ । ଜଣେ ସେ ବିଷୟକୁ ଅବଲମ୍ବନ କରି ନିଜର ଚରିତ୍ରକୁ ଗଠନ କରୁଥାଏ; ତାକୁ ଯଦି ସେ ଲୋକ ସମକ୍ଷରୁ ଗୋପନ କରେ, ତାହାହେଲେ ତାର ଚରିତ୍ର-ବିଚାର ସମୟରେ ଉପଯୁକ୍ତ ନିଦର୍ଶନ ଅଭାବରୁ ଗୋଟିଏ ଭ୍ରମ ମତ ପ୍ରକାଶିତ ହେବା

ଅସମ୍ଭବ ନୁହେଁ । ବିଚାରକମାନଙ୍କର ଦୃଷ୍ଟି ଓ ଭାବ ଆଲୋଚିତ ବ୍ୟକ୍ତିଦ୍ୱାରା ଅନୁଭୂତ ନ ହେଲେ ବିଚାର ନିର୍ଦ୍ଦୋଷ ହେବା ପକ୍ଷେ ବାଧା ଜନ୍ମିପାରେ । ଅନ୍ୟର ଦୁର୍ବଳତାକୁ ଠିକ୍ ରୂପେ ଦେଖି ସୁବିଚାର କରିବା ସବୁ ସମୟରେ ସମ୍ଭବ ହୁଏ ନାହିଁ । ନିଜର ସ୍ୱଭାବଗତ ବିଶ୍ୱାସ ବଳରେ ବିଚାର୍ଯ୍ୟ କାର୍ଯ୍ୟକୁ ତୁଳନା କଲେ ପ୍ରତ୍ୟକ୍ଷ ଜ୍ଞାନର ପରିଚୟ ମିଳେ ନାହିଁ; କାରଣ ଗୋଟିଏ ଉଦ୍ଦେଶ୍ୟ ସମସ୍ତଙ୍କ ନିକଟରେ ସମଭାବରେ ପ୍ରତିପନ୍ନ ହୋଇ ନ ପାରେ । ନିଃସ୍ୱାର୍ଥ ଭାବରେ କଳ୍ପନା ଶକ୍ତିକୁ ଅନ୍ୟର କାର୍ଯ୍ୟ ସମାଲୋଚନାରେ ପ୍ରୟୋଗ କରିବା ଅତ୍ୟଳ୍ପ ଲୋକ ପକ୍ଷରେ ସମ୍ଭବ ହୋଇଥାଏ । କଳ୍ପନା ବଳରେ ଲୋକ ସବୁବେଳେ ନିଜର ସୁଖସୌଧ ନିର୍ମାଣ କରି ଚାଲିଥାଏ । ବିନା ଆୟାସରେ ନିଜ ସ୍ୱାର୍ଥକୁ ବଜାୟ ନ ରଖି ଅପର କଥା ଭାବିବା କିମ୍ବା ଲୋକଚରିତ୍ରର ମହନୀୟତା ପ୍ରମାଣ କରିବାକୁ କେହି ମନ ବଳାନ୍ତି ନାହିଁ । କଥାଟିଏ ଶୁଣି ତାକୁ ହୃଦୟଙ୍ଗମ କରିବାକୁ ହେଲେ ଭାବନାର ପ୍ରଭାବ ଆବଶ୍ୟକ ହୁଏ; ତେଣୁ ଲୋକ ଯାହା ଶୁଣେ ତାକୁ ନିର୍ବିଚାରରେ କହିଦିଏ; ସେଥିରେ କିଛି ଭଲ ଓ ମନ୍ଦ ବିଚାର କରେ ନାହିଁ, କୌଣସି ଚରିତ୍ରର ମହତ୍ତ୍ୱ ପ୍ରମାଣ ପାଇ ସୁଦ୍ଧା ପ୍ରକାଶ କରିବାକୁ ଅନେକ କୁଣ୍ଠାବୋଧ କରନ୍ତି; କାରଣ ଲୋକମତ ତାକୁ ପୂର୍ବରୁ ଦୂଷଣୀୟ ବୋଲି ଗ୍ରହଣ କରିଥାଏ । ଲୋକମତ ବିରୁଦ୍ଧରେ ଯାଇ ନିଜର ସ୍ୱାଧୀନ ମତବ୍ୟକ୍ତ କରିବା ବ୍ୟକ୍ତି ଆଜିକାଲି ସମାଜରେ ବିରଳ କହିଲେ ଚଳେ, ଧନୀ ଓ ସମ୍ଭ୍ରାନ୍ତ ବ୍ୟକ୍ତିମାନଙ୍କ ପଦାଙ୍କ ଅନୁସରଣ କରି ସେମାନଙ୍କ ମତର ପୋଷକତା କରିବା ଗୋଟିଏ ପ୍ରଚଳିତ ଧର୍ମରେ ପରିଣତ ହେଲାଣି । ଏହାଦ୍ୱାରା ସମାଜରୁ ନୈତିକ ବଳ ଦିନକୁଦିନ କମି ଆସୁଛି ବିଚାରଦଣ୍ଡ ମଧ୍ୟ ସେହି ଅନୁପାତରେ ଚାଳିତ ହେଉଅଛି । ବିଶେଷତଃ ଆଧୁନିକ ଯୁଗରେ ସମ୍ବାଦପତ୍ରଗୁଡ଼ିକ ଯେ ସ୍ରୋତ ବୁହାଇ ଦେଉଛନ୍ତି, ସେଥିରେ ଭାସିଯିବା ସାଧାରଣଙ୍କର ସ୍ୱଭାବ ହୋଇ ପଡ଼ିଲାଣି । ବ୍ୟକ୍ତିଗତ ସ୍ୱତନ୍ତ୍ର ବିଚାର ବୁଦ୍ଧିକୁ ବାହ୍ୟ ପ୍ରଭାବ ପ୍ରାୟ ନିସ୍ତେଜ କରି ଦେଲାଣି ।

ସମ୍ବାଦପତ୍ର ଖଣ୍ଡିକରେ ବ୍ୟକ୍ତିବିଶେଷଙ୍କର କାର୍ଯ୍ୟର ସମାଲୋଚନା ଦେଖି ତାଙ୍କ ସମ୍ବନ୍ଧରେ ଗୋଟିଏ ମତ ହଠାତ୍ ପ୍ରକାଶ କରିବାକୁ ଆଜିକାଲି କେହି ପଶ୍ଚାତ୍ପଦ ନୁହଁନ୍ତି । ଯୁଗଧର୍ମ ଏପରି ହେଲାଣି ଯେ, ସମ୍ବାଦପତ୍ରରେ ନିଜର ନାମ ଜାହିର କରି ଦେଶ-ନେତା ହେବାକୁ ଅଧିକାଂଶ ଶିକ୍ଷିତମ୍ମନ୍ୟ ଭଦ୍ରବ୍ୟକ୍ତି ବ୍ୟାକୁଳ ହୋଇପଡ଼ିଲେଣି । ଯାବତୀୟ ଦୋଷର ଆକର ହୋଇ ଯଦି ସମ୍ବାଦପତ୍ରରେ ଜଣେ ନିଜର ପ୍ରଶଂସା ପ୍ରକାଶ କରାଇ ପାରିଲା, ତାହାହେଲେ ସେ ହେଲା ଦେଶପୂଜ୍ୟ ନେତା ! ତାଙ୍କୁ ଅନୁସରଣ କରିବେ ଯେଉଁମାନେ, ସେମାନେ କଅଣ ହେବେ ? ସମ୍ବାଦପତ୍ର ପ୍ରସାଦରୁ ଆଜି ଦେଶରେ କବି ଓ ନେତା-ମାନଙ୍କର ଅଭାବ ନାହିଁ ।

ବିଚାରରେ ଉଦ୍ଦେଶ୍ୟକୁ ଅନୁସରଣ କରିବା କଠିନ । ସାମାନ୍ୟ ପାର୍ଥକ୍ୟ ରହିଲେ ବିଚାର କେତେଦୂର ବିଚଳିତ ହୋଇପାରେ, ତାହା ସୂକ୍ଷ୍ମଦର୍ଶୀ ମାନେ ସ୍ୱୀକାର କରିବେ । କୌଣସି କାର୍ଯ୍ୟର ସମୀଚୀନତା ବା ଦୋଷ ଦେଖାଇଲାବେଳେ ଲୋକ ପ୍ରଥମେ କର୍ମୀର ସ୍ୱାର୍ଥ ଆଡ଼କୁ ଦୃଷ୍ଟି ଦିଏ । ପ୍ରତ୍ୟେକ ଲୋକ ଯେ ସ୍ୱାର୍ଥପ୍ରଣୋଦିତ ହୋଇ ଯାବତୀୟ କାର୍ଯ୍ୟ କରନ୍ତି, ଏପରି ଭାବିବା ମଧ୍ୟ ବିଚାରକଙ୍କର ଉଚିତ ନୁହେଁ । କର୍ମୀର ସ୍ୱାର୍ଥସିଦ୍ଧିକୁ ଏକମାତ୍ର ଅବଲମ୍ବନ କରି ଯେଉଁମାନେ ବିଚାର କରନ୍ତି, ସେମାନେ ବୋଧହୁଏ ଜାଣନ୍ତି ନାହିଁ ଯେ, କାହାର ସ୍ୱାର୍ଥ କିପରି ମାର୍ଗରେ ଚାଳିତ ହୋଇଥାଏ । ଅଧିକାଂଶ ସମୟରେ ମନୁଷ୍ୟର ସ୍ୱାର୍ଥ କଳ୍ପନା, ହିଂସା ପ୍ରଭୃତି ଦ୍ୱାରା ପ୍ରତିହତ ହୋଇଥାଏ । ସ୍ୱାର୍ଥକୁ ଲକ୍ଷ୍ୟ ନ ରଖି ମନୁଷ୍ୟ ହିଂସା—ପ୍ରଣୋଦିତ ହୋଇ ନିଜର ଅନିଷ୍ଟ ମୁହୂର୍ତ୍ତିକେ କରିପାରେ; ସୁତରାଂ ଏପରି ସ୍ଥଳରେ ସ୍ୱାର୍ଥର ସ୍ଥାନ ଆଉ କେଉଁଠି ରହିଲା ? ଆହୁରି ମଧ୍ୟ କାର୍ଯ୍ୟସାଧନ ସ୍ଥଳରେ ସେ କେତେକ କାର୍ଯ୍ୟ କରେ, ଯଦ୍ଦ୍ୱାରା ତାର ଉଦ୍ଦେଶ୍ୟଟି ଅତି ଗୋପନରେ ରହିଯାଏ । ଉଦ୍ଦେଶ୍ୟ ପ୍ରକାଶ କଲେ ହୁଏତ ସେ ନିନ୍ଦନୀୟ ହୋଇପାରିଥାନ୍ତା; କିନ୍ତୁ ସ୍ୱାର୍ଥ ଆବରଣରେ ତାର କର୍ମଟି ଭିନ୍ନ ଆକାର ଧାରଣ କରେ ଏବଂ ବିଚାରକର ବୁଦ୍ଧି ତଦନୁଯାୟୀ ଗତି ଅନୁସରଣ କରେ । ଉପର୍ଯ୍ୟୁକ୍ତ ବିଷମତା ଦୃଷ୍ଟିରେ ବିଚାରର ଗୁରୁତ୍ୱ ସହଜରେ ଉପଲବ୍ଧ ହେଲେ ସୁଦ୍ଧା ଏହାର ଉପକାରିତା ସ୍ୱୀକାର କରିବା ପାଇଁ ଆମ୍ଭେମାନେ ବାଧ ହେବୁ । ସାଂସାରିକ ଜୀବନ ଅତିବାହିତ କରିବାକୁ ହେଲେ ବିଚାର ବୁଦ୍ଧିର ଆଶ୍ରୟ ପ୍ରତ୍ୟେକ ବିବେକୀ ଲୋକଙ୍କୁ ନେବାକୁ ପଡ଼ିବ । ସମସ୍ତ ସମୟରେ ଅବସ୍ଥା ଦୃଷ୍ଟିରେ ଶୀଘ୍ର ବିଷୟ-ବିଶେଷର ବିଚାର ଆବଶ୍ୟକ ହୁଏ, ପୂର୍ବେ କୁହାଯାଇଅଛି ଯେ, ଚରିତ୍ରଗତ ବିଚାରରେ ଅନେକ ବିଷୟ ଅଜ୍ଞାତରେ ରହିଯାଏ, ସବୁ ସମୟରେ ଏପରି ଧାରଣାର ବଶବର୍ତ୍ତୀ ହେବା ଉଚିତ ନୁହେଁ । ଚଞ୍ଚଳ ଓ ଅସାବଧାନ

ବିଚାରପତି ଅନେକ ସମୟରେ ପ୍ରକୃତ ବିଚାର୍ଯ୍ୟ ବିଷୟକୁ ଉପେକ୍ଷା କରି ଚାଲିଯାନ୍ତି ଓ କେତେଗୁଡ଼ିଏ ଅସଂପୃକ୍ତ କଥାକୁ ଆଲୋଚନା କରି ନିଜର ଅଭିବ୍ୟକ୍ତି ପ୍ରକାଶ କରନ୍ତି । ବିଷୟର ମର୍ମ ନ ବୁଝିପାରିଲେ ଆଲୋଚନା ଦିଗରେ ଅଗ୍ରସର ହେବା ଆଦୌ ଉଚିତ ନୁହେଁ । ଏପରି ଅନେକ ସ୍ଥଳରେ ଦେଖାଯାଇଅଛି ଯେ, ସାମାନ୍ୟ କାର୍ଯ୍ୟ ସଂପାଦନରେ ସୁଦ୍ଧା ଲୋକର ଚରିତ୍ର ସମ୍ବନ୍ଧରେ ଉପଯୁକ୍ତ ବିଚାର କରାଯାଇପାରେ । ଏପରି ଭାବିବାର ମଧ୍ୟ କାରଣ ଅଛି, ଅତି ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟ କଲାବେଳେ ମନୁଷ୍ୟ ଖୁବ୍ ସାବଧାନ ଥାଏ ଏବଂ ତାର ଚରିତ୍ରଗତ ଦୋଷ କିମ୍ବା ଗୁଣ ସହଜରେ ଜଣାପଡ଼େ ନାହିଁ । କିନ୍ତୁ ସାମାନ୍ୟ କାର୍ଯ୍ୟ କଲାବେଳେ ସେ ଅନେକ ପରିମାଣରେ ନିଜର ଭାବକୁ ଉନ୍ମୁକ୍ତ ରଖିଥାଏ; ଏଥିଯୋଗୁ ତାର ଚରିତ୍ରର ବିଶେଷତ୍ୱ ଜଣାପଡ଼େ । ଜଣକର ଗତ ଜୀବନର ବିବୃତି ଶୁଣି ଯେ ଧାରଣା ହୁଏ, ତା ଅପେକ୍ଷା ସେହି ଲୋକ ସହିତ କିଛି ସମୟ କଥାବାର୍ତ୍ତା କରିପାରିଲେ ଅଧିକ ଧାରଣା ଜନ୍ମିପାରେ । ଜୀବନ ଚରିତରେ କେବଳ ବିଶିଷ୍ଟ ଘଟନାଗୁଡ଼ିକ ଲିପିବଦ୍ଧ କରାଯାଇଥାଏ ।

ଲୋକର ଆକୃତି ଓ ବ୍ୟବହାର ପ୍ରଭୃତିରେ ଯାହା ପ୍ରକାଶ ପାଏ, ତାହା ତାର କୌଣସି ବିଶିଷ୍ଟ କାର୍ଯ୍ୟରୁ ଜଣାଯାଏ ନାହିଁ ବୋଲି କେତେକ ଚିନ୍ତାଶୀଳ ବ୍ୟକ୍ତିଙ୍କର ଅଭିମତ ।

କେତେକ ବିଷୟରେ ମନୁଷ୍ୟର ବୁଦ୍ଧି ଓ ନୈତିକ ବଳକୁ ବିଚାର କରିବା ପାଇଁ କୌଣସି ବାଧା ଜନ୍ମେ ନାହିଁ; କିନ୍ତୁ ଅନେକ ସମୟରେ ଏପରି ସମସ୍ୟା ଆସେ, ଯଦ୍ଦ୍ୱାରା ଗୋଟିଏ ଯଥାର୍ଥ ମତ ସହଜରେ ପ୍ରତିଷ୍ଠିତ ହୋଇପାରେ ନାହିଁ । ସୁତରାଂ ଉଭୟ ଦିଗକୁ ଲକ୍ଷ୍ୟ ରଖି ବିଚାରପତିଙ୍କର ଅଗ୍ରସର ହେବା ଆବଶ୍ୟକ । ତୀକ୍ଷ୍ଣ ମେଧା ଓ ସୂକ୍ଷ୍ମ ଆଲୋଚନାଦ୍ୱାରା ବୁଦ୍ଧିର ପରିଚୟ ମିଳିପାରେ; କିନ୍ତୁ ଉତ୍କୃଷ୍ଟ ଓ ନିର୍ଦ୍ଦୋଷ ମତ ପୋଷଣ କରିବାରେ ଯେ ବିଚାର ଶକ୍ତି ଲୋଡ଼ା ହୁଏ, ସେଥିରେ ଟିକିଏ ପାର୍ଥକ୍ୟ ଥିଲାପରି ଜଣାପଡ଼େ । ସାଂସାରିକ କାର୍ଯ୍ୟରେ ଯେ ବୁଦ୍ଧି ପ୍ରୟୋଗ କରାଯାଏ, ତାକୁ ବିଚାର କରିବା ପାଇଁ ଯଥେଷ୍ଟ ଆୟାସ ଆବଶ୍ୟକ ହୁଏ । କେତେଗୁଡ଼ାଏ ଗୁଣର ସମବାୟରେ ଜାଗତିକ କାର୍ଯ୍ୟର ସମୁଚିତ ନିର୍ବାହ ନିର୍ଭର କରେ; ତେଣୁ ସଂସାରର ଭଲ ଓ ମନ୍ଦ ବିଚାରରେ ପ୍ରଭୂତ ଦୂରଦୃଷ୍ଟି ଆବଶ୍ୟକ ହୁଏ ବୋଲି ଆମ୍ଭମାନଙ୍କର ବିଶ୍ୱାସ । କେବଳ ନୈତିକ ବିଷୟ ବିଚାର କଲେ ଅହଙ୍କାର, ଅତିରଞ୍ଜନ, ଔଦାସୀନ୍ୟ ପ୍ରଭୃତି ବ୍ୟକ୍ତିଗତ ଚରିତ୍ରରୁ ପ୍ରମାଣିତ ହୋଇପାରେ । ଏହାଛଡ଼ା ମନୁଷ୍ୟ ଯେ ରୁଚିର ଅଧୀନ ହୋଇ କାର୍ଯ୍ୟ କରେ, ତାକୁ ସେ ସବୁ ସମୟରେ ପ୍ରକାଶ କରିବାକୁ ଇଚ୍ଛା କରେ ନାହିଁ । ଏପରି କେତେକ ଲୋକ ଅଛନ୍ତି—ଯେଉଁମାନଙ୍କର ଅଭିଳାଷ ଜନସାଧାରଣ ଜାଣି ପାରନ୍ତି ନାହିଁ । କାରଣ ସେମାନେ ମନେ କରନ୍ତି ଯେ, ସେମାନଙ୍କର ଉଦ୍ଦେଶ୍ୟଟି ସର୍ବଜନାଦୃତ ନ ହେଲେ ଲଜ୍ଜା ଭୋଗ କରିବାକୁ ପଡ଼ିବ । ଜଣକର ଅନୁସୃତ ମାର୍ଗ ଅପର ଦ୍ୱାରା ଅବଲମ୍ବିତ ହୋଇପାରେ ନାହିଁ । ରୁଚିଗତ ପାର୍ଥକ୍ୟ ଦୁଇଜଣଙ୍କୁ ସମାନ ଅବସ୍ଥାରେ ରଖାଇ ଦିଏ ନାହିଁ । ଜାତୀୟ ଚରିତ୍ରରେ ଏହି ଦୋଷ ମଧ୍ୟ ଲକ୍ଷିତ ହୋଇଥାଏ । ଜଣେ ଯେ ଭାବର ଅଧୀନ ହୋଇ ଗୋଟାଏ ଆଚରଣ କରେ, ଅପର ତଦନୁବର୍ତ୍ତୀ ନ ହେବା କିଛି ବିସ୍ମୟକର ବ୍ୟାପାର ନୁହେଁ । ରୁଚିଗୁଡ଼ିକର ପୂର୍ଣ୍ଣ ପରିଚୟ ସବୁବେଳେ ମିଳେ ନାହିଁ । ଅନୁଭୂତିର ସାମଞ୍ଜସ୍ୟ ଯେନ ରୁଚିର ଭିନ୍ନତା ଚରିତ୍ରକୁ ପ୍ରଭାବିତ କରେ ।

ଅବସ୍ଥାର ବିଶେଷତ୍ୱ ଯେନ ବିଚାର ଠିକ୍ ରୂପେ ହୋଇପାରେ ନାହିଁ । ମନୁଷ୍ୟର ବାହ୍ୟ ବ୍ୟବହାର ଦେଖି ତାର ଚରିତ୍ର ସମ୍ବନ୍ଧରେ ଗୋଟାଏ ସିଦ୍ଧାନ୍ତରେ ଉପନୀତ ହେବା କଠିନ ବୋଧହୁଏ । କେତେକ ଲୋକର ଆଚରଣରୁ ଘୃଣାଭାବ ପ୍ରକାଶ ପାଇବାର ଜଣାଯାଏ, କିନ୍ତୁ ପ୍ରକୃତରେ ସେମାନଙ୍କର ସ୍ୱଭାବ ସେପରି ନୁହେଁ । ବାହାରର ରୁକ୍ଷ ବ୍ୟବହାର ଦେଖିଲେ ଅନ୍ତର୍ନିହିତ କୋମଳତାର ପ୍ରମାଣ ମିଳେ ନାହିଁ । ଅନେକ ସମୟରେ ଜଣକର ସମ୍ପର୍କଶୂନ୍ୟ ଭାବ ଦେଖି ଆମ୍ଭେମାନେ ସାଧାରଣତଃ ତାକୁ ଅବହେଳା କରିଥାଉଁ । ତାର ଯେ ପୂର୍ଣ୍ଣ ସହାନୁଭୂତି ଆମ୍ଭମାନଙ୍କ ପାଇଁ ଥାଏ, ଏ କଥା ଆମ୍ଭମାନଙ୍କର ଧାରଣାକୁ ସୁଦ୍ଧା ଆସେ ନାହିଁ । ବିଚାର୍ଯ୍ୟ ଚରିତ୍ରର ସୁଲଭଗୁଣ କିମ୍ବା ଦୋଷଗୁଡ଼ିକ ବିଚାରର ଦୃଷ୍ଟିରେ - ସହଜରେ ପଡ଼ିଯାଏ । ସେଗୁଡ଼ିକ ଦେଖି ବିଚାରକ ଆଶଙ୍କା ପୋଷଣ କରିପାରନ୍ତି; କାରଣ ଉପର୍ଯ୍ୟୁକ୍ତ ଚରିତ୍ରର ମହତ୍ତ୍ୱ ବିଚାରପତିର ଚରିତ୍ରଠାରୁ ବଡ଼ ବୋଲି ପ୍ରମାଣିତ ହୋଇପାରେ । ଆହୁରି ମଧ୍ୟ ଦୂଷଣୀୟ ଅଂଶକୁ ଦେଖି ଚରିତ୍ରର ଉତ୍କର୍ଷ ଆଡ଼କୁ ଲକ୍ଷ୍ୟ ନ ରଖିବା ସାଧାରଣ ବିଚାରପତିର ଦୋଷ ବୋଲି ଧରିନେବାକୁ ହେବ ।

ମନୁଷ୍ୟ ମହତ୍ତ୍ୱ ଜ୍ଞାପନ କରିବାକୁ ଯାଇ ନିଜକୁ ଏପରି ଏକ ଆବରଣରେ ଘୋଡ଼ାଇ ରଖେ । ଏପରି ଅବସ୍ଥାରେ ତାର ସ୍ୱାଧୀନ ଭାବ ବିଚାର-ସୀମାର ବାହାରେ ରହିଯାଏ । ଚରିତ୍ରଗତ ପାର୍ଥକ୍ୟଦ୍ୱାରା ବିଚାରବୁଦ୍ଧି ମଳିନ ହେବା ଅସ୍ୱାଭାବିକ ନୁହେଁ । ଗମ୍ଭୀର ଭାବାପନ୍ନ ବିଚାରପତିଙ୍କ ପକ୍ଷରେ ଜୀବନର ସରସତା ଓ ସ୍ଫୂର୍ତ୍ତି ଉଦାରତାର ସହିତ ଗୃହୀତ ହୋଇପାରେ ନାହିଁ ।

ବନ୍ଧୁ ଓ ଆତ୍ମୀୟମାନଙ୍କର ଚରିତ୍ରାଲୋଚନା କଲାବେଳେ ବିଚାର-ଦଣ୍ଡ ବିଚଳିତ ହେବାର ସମ୍ଭାବନା ଥାଏ । ସମ୍ପର୍କୀୟ ବ୍ୟକ୍ତିମାନଙ୍କର ଚରିତ୍ର ବିଷୟ ବିଚାରପତିଙ୍କର ଅଜ୍ଞାତ ରହିବ ନାହିଁ ବୋଲି ସେମାନଙ୍କର ବିଶ୍ୱାସ; ତେଣୁ ଗୋଟିଏ ଧାରଣା ସେମାନଙ୍କର ମନରେ ବଦ୍ଧମୂଳ ହୋଇଯାଏ । ଏହି ଧାରଣାର ବଶବର୍ତ୍ତୀ ହୋଇ ସେମାନେ ଯେପରି ଆଚରଣ କରନ୍ତି; ତଦ୍ଦ୍ୱାରା ସେମାନଙ୍କର ପ୍ରକୃତ ସ୍ୱଭାବ ଜଣାପଡ଼େ ନାହିଁ । ଅଧିକାଂଶ ସମୟରେ ଅଧୀନ ଆତ୍ମୀୟମାନେ ପରିବାରର କର୍ତ୍ତାଙ୍କୁ ଭୟକରି ସେମାନଙ୍କର ମନୋଭାବ ଗୋପନ କରନ୍ତି । ଭ୍ରମବଶତଃ କୌଣସି ପ୍ରମାଦଜନକ କାର୍ଯ୍ୟ କଲେ କର୍ତ୍ତାଙ୍କର ସହାନୁଭୂତି ପାଇବେ ନାହିଁ ବୋଲି ସେମାନେ ମନେ କରନ୍ତି । ଗାର୍ହସ୍ଥ୍ୟ ଜୀବନରେ ଏଥିର ପ୍ରମାଣ ଯଥେଷ୍ଟ ମିଳେ । ଏପରିକି ସ୍ୱାମୀ ଓ ସ୍ତ୍ରୀ ମଧ୍ୟରେ ପରସ୍ପରର ଆତ୍ମଭାବ ଗୋପନ କରିବା ଦୃଷ୍ଟାନ୍ତ ମଧ୍ୟ ବିରଳ ନୁହେଁ । ଜଣେ ଯେ ଦୃଷ୍ଟିରେ ଗୋଟିଏ ବିଷୟକୁ ଦେଖେ, ଅପର ସେପରି ଭାବରେ ଦେଖିପାରେ ନାହିଁ ବୋଲି ନିଜର ମନୋଭାବ କେହି କାହାରି ନିକଟରେ ପ୍ରକାଶ କରନ୍ତି ନାହିଁ । ସରଳ ପ୍ରାଣରେ କଥାଟିଏ ବ୍ୟକ୍ତକରି ଯଦି ପରିଣାମଟା ଭୟାଭୟ ଦେଖାଗଲା, ତାହା ହେଲେ ହୃଦୟର ମୁକ୍ତ ପଥଟି ସଙ୍କୁଚିତ ହେଲେ ମନୁଷ୍ୟକୁ କାହିଁକି ଦୋଷୀ କରାଯିବ ? ଉପର୍ଯ୍ୟୁକ୍ତ ଅବସ୍ଥା ଦୃଷ୍ଟିରେ ମନୁଷ୍ୟର ଅଧିକାଂଶ ପ୍ରସଙ୍ଗକୁ ପ୍ରହେଳିକା ବିବୃତି ସଙ୍ଗେ ତୁଳନା କଲେ କିଛି ଦୋଷ ନାହିଁ । ଜଟିଳ ସଂସାରବର୍ତ୍ମରେ ମନୋବୃତ୍ତିକୁ ଅବଲମ୍ବନ କରି ଯେ ସବୁ ବିଚାର କରାଯାଏ; ସେଥିରେ ଅଧିକାଂଶ ଯେ ଦୂଷିତ, ଏଥିରେ ଆଉ ସନ୍ଦେହ ନାହିଁ । ହୃଦୟ ଖୋଲି ପଦେ କଥା କହିଲେ ଯଦି ତାକୁ କେହି ସନ୍ଦିଗ୍ଧ ଚିତ୍ତରେ ଗ୍ରହଣ କରେ, ତେବେ ସରଳତାର ସ୍ଥାନ ଆଉ କେଉଁଠି ରହିଲା ? ବିଚାରକୁ ଦୋଷମୁକ୍ତ କରିବା ବଡ଼ କଠିନ; ତା ନ ହୋଇଥିଲେ ଜଣେ ଯାହା ବିଚାର କରେ ଅନ୍ୟଦ୍ୱାରା ତାହା କାହିଁକି ପରିବର୍ତ୍ତିତ ହୋଇଯାଏ ? ଏହି ସବୁ ଘଟଣା ଦେଖି ବିଚାର ପ୍ରତି ସବୁବେଳେ ଆସ୍ଥା ସ୍ଥାପନ କରିବାକୁ ଲୋକେ ଆଗ୍ରହାନ୍ୱିତ ହୁଅନ୍ତି ନାହିଁ । ମନୁଷ୍ୟର ଦୁର୍ବଳତା ଥିବା ପର୍ଯ୍ୟନ୍ତ ତାର ଚରିତ୍ର ବିଚାରାଧୀନ ରହିବ; କିନ୍ତୁ ବିଚାର ଯେ ନିର୍ଦ୍ଦୋଷ ହେବ—ଏପରି ଭାବିବା ମଧ୍ୟ ସଙ୍ଗତ ନୁହେଁ ।

# ଧର୍ମ

ଆଦିମ ଯୁଗରୁ ମନୁଷ୍ୟ ବହୁବିଧ ଉପାୟରେ ସତ୍ୟ ସନ୍ଧାନ କରି ଆସୁଅଛି । ସତ୍ୟ ପ୍ରକାଶରେ ଅନେକ ପନ୍ଥାର ଆଶ୍ରୟ ଗ୍ରହଣ କରାଯାଉଥିଲେ ସୁଦ୍ଧା ମନୁଷ୍ୟର ଦୃଷ୍ଟି ସଞ୍ଚାଳନ ଓ ରୁଚିଭେଦରେ ଯେଉଁ ପାର୍ଥକ୍ୟ ଦେଖାଯାଏ, ସେଥିର ମୂଳ କେହି ପ୍ରାୟ ନିରୂପଣ କରନ୍ତି ନାହିଁ । କେବଳ ଭେଦଭାବ ସୃଷ୍ଟି କରି ମନୁଷ୍ୟ ଜାତିସୁଦ୍ଧା ମଧ୍ୟରେ ନିଜକୁ ସଙ୍କୀର୍ଣ୍ଣ କରିଦିଏ । ସତ୍ୟ, ସୌନ୍ଦର୍ଯ୍ୟ ଓ ପ୍ରେମର ଆକର୍ଷଣରେ ଅନ୍ତରର ଯେ ସ୍ୱାଭାବିକ ପିପାସା ଜନ୍ମେ, ତାକୁ ମନୁଷ୍ୟ ଉପେକ୍ଷା କରିପାରେ ନାହିଁ; ତେଣୁ ସେ ଐହିକ ସୁଖର ଅସାରତା ଉପଲବ୍ଧି କରି କ୍ରମଶଃ ତାର ଅନ୍ତର୍ନିହିତ ଶକ୍ତିକୁ ବିକଶିତ କରି ଦେଖିଲା – ସେ କ୍ଷୁଦ୍ର ନୁହେଁ । ସାଧାରଣ କ୍ଷୁଧା ପିପାସାରେ ନିଜର ଆସ୍ଥାସବୁ ସମ୍ପୃକ୍ତ ରଖି ସେ ପୂର୍ଣ୍ଣ ଆନନ୍ଦ ପାଇଲା ନାହିଁ । ପଶୁଭାବ ମନୁଷ୍ୟ-ଠାରେ ଅଛି; କିନ୍ତୁ ଏହିଠାରେ ଯେ ବିଶେଷତ୍ୱ ଦେଖାଗଲା, ତାହା ତାକୁ ଇତର ପ୍ରାଣୀ ଅପେକ୍ଷା ଉଚ୍ଚ ଆସନ ଦେଲା । ଯେଉଁ ଦିନୁ ମନୁଷ୍ୟ ପଶୁତ୍ୱକୁ ଦୂର କରି ଅଗ୍ରଗତିକୁ ଲକ୍ଷ୍ୟ ରଖିଲା, ସେହିଦିନୁ ତାର ଜ୍ଞାନ ଓ ଧର୍ମ ଉପାର୍ଜନର ଭିତ୍ତି ସ୍ଥାପିତ ହେଲା ।

ସୂକ୍ଷ୍ମ ଦୃଷ୍ଟିରେ ଦେଖିଲେ ଜଣାଯାଏ ଯେ, ଜ୍ଞାନ ଓ ଧର୍ମ ମଧ୍ୟରେ ପାର୍ଥକ୍ୟ ନାହିଁ—କେବଳ ମାର୍ଗର ଭିନ୍ନତା ଥାଇପାରେ । ଜୀବନଟାରେ ଯେ ପରିବର୍ତ୍ତନ ସବୁ ଆସେ, ସେଥିରେ ମନୁଷ୍ୟଙ୍କୁ ସୁଖୀ କିମ୍ବା ଦୁଃଖୀ ବୋଲି ଧରି ହେବ ନାହିଁ । କେତେବେଳେ ଐଶ୍ୱର୍ଯ୍ୟ ମୋହରେ ସେ ସୁଖାଶାବାଦୀ ହୋଇ କେବଳ ସୁଖ-ସ୍ୱପ୍ନ ଦେଖୁଛି । ପୁଣି ପର ମୁହୂର୍ତ୍ତରେ ନୈରାଶ୍ୟବାଦ ଅବଲମ୍ବନ କରି ସଂସାରକୁ ଅତି ତୁଚ୍ଛ ମନେ କରୁଛି । ଜୀବନ ସ୍ରୋତ ଅବିରାମ ଗତିରେ ଚାଲିଛି । ଅନାଦି କାଳରୁ ଯେଉଁ ଧ୍ୱଂସ ଓ ସୃଷ୍ଟିର କ୍ରିୟା ଲାଗି ରହିଛି, ତାହାରି ଅଧୀନରେ ଅଣୁ ପରମାଣୁଠାରୁ ଆରମ୍ଭ କରି ନଗର ଓ ସାମ୍ରାଜ୍ୟ ପର୍ଯ୍ୟନ୍ତ ସମସ୍ତଙ୍କର ଉତ୍ଥାନ ଓ ପତନ ସାଧିତ ହେଉଅଛି । ଯେଉଁ ନିୟମରେ ବିଶ୍ୱ ପରିଚାଳିତ, ତାର ଅସ୍ତିତ୍ୱ ସ୍ୱୀକାର କରିବାକୁ ଆମ୍ଭେମାନେ ଗୋଟାଏ ଅଖଣ୍ଡ ଶକ୍ତିର ବର୍ତ୍ତମାନତା ଉପରେ ନିର୍ଭର କରୁ । ଐଶ୍ୱର୍ଯ୍ୟର ଲକ୍ଷ୍ୟ ସବୁବେଳେ ନଶ୍ୱରତା ଉପରେ ପଡ଼ିଥାଏ । ସ୍ୱରୂପଜ୍ଞାନ ନ ଜନ୍ମିବାଯାଏ କେତେଗୁଡ଼ାଏ ପଦାର୍ଥରେ ମନୁଷ୍ୟର ମନ ଆନନ୍ଦ ଅନୁଭବ କରୁଥାଏ । ଏହି ଆନନ୍ଦ ପରିଣାମୀ । ଯାହାର ସ୍ଥାୟିତ୍ୱ ଗୋଟିଏ ସୀମା ମଧ୍ୟରେ ନିହିତ, ତାକୁ ଅବଲମ୍ବନ କରି ସେ ଚିରଦିନ ରହିପାରେ ନାହିଁ । ମୃତ୍ୟୁ ଓ ଅନ୍ୟ ଧ୍ୱଂସ କ୍ରିୟା ଦେଖି ସେ ମନେ କରେ ତାର ଐଶ୍ୱର୍ଯ୍ୟାନୁସରଣ କେବଳ ଗୋଟିଏ ମରୀଚିକା ଭ୍ରମଣ ସଙ୍ଗେ ସମାନ; ତଥାପି ଏ ଜୀବନ ପ୍ରତି କାହିଁକି ଏତେ ମମତା ହୁଏ ? ଜ୍ଞାନୀମାନେ ଏହାକୁ ମାୟା ବୋଲି କହିଥାନ୍ତି । ମନୁଷ୍ୟର ସମସ୍ତ ସାଧନା ଓ କର୍ମ ଏହି ମାୟା ନିକଟରେ ପରାଜୟ ସ୍ୱୀକାର କରିଥାଏ । ଜୀବର ସ୍ୱରୂପ ଜ୍ଞାନ ସହଜରେ ପ୍ରକାଶିତ ହେଉଥିଲେ ମାୟାକୁ କେହି ଭୟ କରନ୍ତେ ନାହିଁ କିମ୍ବା ମାୟା-ଆବରଣ ଭେଦ କରିବା ପାଇଁ ଜ୍ଞାନ ଓ ଧର୍ମର ସମନ୍ୱୟ ଆବଶ୍ୟକ ହୁଅନ୍ତା ନାହିଁ ।

ଯେଉଁ ମହତ୍ କ୍ରିୟା ସମ୍ପାଦନ ବିଷୟ ପୂର୍ବରୁ ଉଲ୍ଲେଖ କରାଗଲା, ଏହା ମାୟା ଅନ୍ତରାଳରେ ସମ୍ପନ୍ନ ହେଉଅଛି । ସେଥିଯୋଗୁ ସମୁଦାୟ ଜୀବ ଦୃଷ୍ଟି ଗୋଟିଏ ପ୍ରବାହରେ ଭସି ଯାଉଥିଲେ ସୁଦ୍ଧା ସେପରି ଅନୁମିତ ହୁଏ ନାହିଁ । ସୁଖ ଓ ଦୁଃଖ ସଂସାରୀ ଚକ୍ଷୁରେ ଖୁବ୍ ବଡ଼ ଦେଖାଯାଇପାରେ; କିନ୍ତୁ ଆଲୋଚନା କଲେ ଜଣାଯିବ ଯେ ଉଭୟ ଏକ ମୁଦ୍ରାର ଦୁଇପାଖ । ଅବସ୍ଥାବିଶେଷରେ ଯାହା ଦୁଃଖ ବୋଲି ପ୍ରତିପନ୍ନ ହୋଇଥାଏ, ତାହା ପୁଣି କାଳକ୍ରମେ ସୁଖପ୍ରସୂ ହୁଏ । ସାଂସାରିକ କାର୍ଯ୍ୟ-ମାନଙ୍କୁ ତନ୍ନ ତନ୍ନ କରି ଦେଖିବାକୁ ମନୁଷ୍ୟ ମନ ବଳାଏ ନାହିଁ । ନଚେତ୍ ସେ ଦେଖନ୍ତା—ଜଗତଟା ସତ୍ ଓ ଅସତ୍ର ସଂମିଶ୍ରଣ । ଯେଉଁଠାରେ ମଙ୍ଗଳ, ସେହିଠାରେ ପୁଣି ଅମଙ୍ଗଳ; ଯେ କାନ୍ଦୁଛି, ସେ ହସିବ; ଯେ ହସୁଛି, ସେ କାନ୍ଦିବ—ଏହି

ମାୟିକ ନିୟମର ପରିବର୍ତ୍ତନ ସହଜରେ ଘଟିବ ନାହିଁ । ସୁଖୋଦ୍ଦୀପକ ଓ ଦୁଃଖଦାୟିକା ଶକ୍ତିକୁ ପରସ୍ପରଠାରୁ ଅନ୍ତର କରି ହେବ ନାହିଁ ।

ଯଦି ସଂସାର ସତ୍ତ୍ୱ ଓ ଅସତ୍ତ୍ୱର ସମିଶ୍ରଣ ହୁଏ, ତାହାହେଲେ ଧର୍ମର ଆବଶ୍ୟକତା କଅଣ ? ବିଶେଷତଃ ଶୁଭ କର୍ମ କରି ଅମଙ୍ଗଳ-ଭାଗୀ ହେଲେ ମନୁଷ୍ୟ କାହିଁକି ଧର୍ମ ଉପରେ ଆସ୍ଥା ସ୍ଥାପନ କରିବ ? ୟୁରୋପୀୟ ଦାର୍ଶନିକ ପଣ୍ଡିତମାନଙ୍କ ମତରେ ଶୁଭକର୍ମଦ୍ୱାରା ଅନନ୍ତ କ୍ରମଶଃ ସାନ୍ତଭାବ ଧାରଣ କରିବେ ଏବଂ ଜଗତରୁ ଅମଙ୍ଗଳ ଲୋପ ପାଇଯିବ; କିନ୍ତୁ ଏହି ମତ ଭ୍ରାନ୍ତ ବୋଲି ଅନୁମିତ ହୁଏ । ବିବିଧ ଜାତିମାନଙ୍କର କାର୍ଯ୍ୟାବଳୀ ଆଲୋଚନା କଲେ ଜଣାଯିବ ଯେ, ଏକ ଜାତି ଗୋଟାଏ ଦୋଷ ତ୍ୟାଗ କରିବାକୁ ଯେ ଉପାୟ ଅବଲମ୍ବନ କରିଛି, ଅନ୍ୟ ଜାତି ତାକୁ ଅନ୍ୟ ଉପାୟରେ ତ୍ୟାଗ କିମ୍ବା ଗ୍ରହଣ କରିଛି; କିନ୍ତୁ କେହି କୃତକାର୍ଯ୍ୟ ହୋଇପାରିନାହାନ୍ତି । ହିନ୍ଦୁମାନେ କାଳସ୍ଥ ଜୀବନରେ ସତୀତ୍ୱ ଧର୍ମ ଉତ୍ପାଦନ ପାଇଁ ସେମାନଙ୍କର ସନ୍ତାନମାନଙ୍କୁ ବାଲ୍ୟ ବିବାହ ଦେଉଥିଲେ । ତଦ୍ଦ୍ୱାରା ଜାତିର ଅଧୋଗତି ହେଲା । ସତୀତ୍ୱ ଧର୍ମ ଅନେକାଂଶରେ ପାଳିତ ହେଲା; କିନ୍ତୁ ଭୟଙ୍କର ଶାରୀରିକ ଅବନତି ହେଲା । ଅପର ପକ୍ଷରେ ଇତିହାସ ସାକ୍ଷ୍ୟ ଦିଏ—ଜାତିର ମୃତ୍ୟୁ ଚିହ୍ନ ଅସତୀତ୍ୱ ମଧ୍ୟ ଦେଇ ଆସିଥାଏ, ଜ୍ଞାନ ପୂର୍ବକ କିମ୍ବା ଅଜ୍ଞାନତା ପୂର୍ବକ ମନୁଷ୍ୟ କାର୍ଯ୍ୟକରି ଚାଲିଛି । ଗୋଟାଏ ଅସମ୍ପୂର୍ଣ୍ଣଭାବ ତାର ମନକୁ ଗ୍ରାସ କରି ରହିଛି । ଏପରି ଅବସ୍ଥାରେ ତାକୁ ମାୟାଗ୍ରସ୍ତ ବୋଲି କୁହାଯାଇପାରେ; କାରଣ ତାର ଗତି ଅନିର୍ଦ୍ଦିଷ୍ଟ । ବାହ୍ୟ ଜଗତରେ ମନୁଷ୍ୟ ଯେତେ ଆବଦ୍ଧ ହେଉ ପଛକେ, ସମୟ ଆସେ ଯେତେବେଳେ ତା ମନରେ ସ୍ୱତଃ ଗୋଟାଏ ପ୍ରଶ୍ନ ଉଠେ—''ଜଗତ୍ କଅଣ ସତ୍ୟ ?'' ଆପଣାକୁ ସୁଖୀ କରିବା ପାଇଁ ମନୁଷ୍ୟ ଇନ୍ଦ୍ରିୟମାନଙ୍କୁ ଚରିତାର୍ଥ କରେ । ମନେ କରେ, ଜଗତଟା ସମ୍ଭୋଗର ସ୍ଥଳୀ । ବାର୍ଦ୍ଧକ୍ୟ ଆସେ, ସୌଭାଗ୍ୟ ଲକ୍ଷ୍ମୀଙ୍କର ବଞ୍ଚନାରେ ସେ ହତାଶ ହୋଇପଡ଼େ, ଜଗତ୍ ଶୂନ୍ୟ ବୋଧହୁଏ । ସଂସାରର ଅସାରତା ଉପଲବ୍ଧ ହେଲେ ମନୁଷ୍ୟ ପଛକୁ ଦୃଷ୍ଟି ଫେରାଏ । ସେ ବୁଝେ—ତ୍ୟାଗରେ ଆନନ୍ଦର ସ୍ୱରୂପ ବିଦ୍ୟମାନ । ଏହିଠାରୁ ତାର ଧର୍ମଜୀବନ ଆରମ୍ଭ ହୁଏ । ଆସକ୍ତିର ମାତ୍ରା ବର୍ଦ୍ଧିତ ହେଉଥାଏ; କିନ୍ତୁ ଥରେ ବାଧା ପାଇ ନିମ୍ନଗାମୀ ହେଲେ ନିବୃତ୍ତି ତାର ସ୍ଥାନ ଅଧିକାର କରେ । ଧର୍ମକ୍ଷେତ୍ରଟି ପ୍ରତିଭାତ ହୋଇଉଠେ ।

ଧର୍ମ ବ୍ୟପଦେଶରେ ମନୁଷ୍ୟର ମନ ଅନେକ ସମୟରେ କୁସଂସ୍କାରରେ ଆଚ୍ଛନ୍ନ ହୋଇପଡ଼େ । ପୃଥିବୀର ଯାବତୀୟ ଧର୍ମମାନଙ୍କର ନୀତି ଗୋଟାଏ ସତ୍ୟ ପ୍ରମାଣ କରିବାକୁ ଚେଷ୍ଟିତ; କିନ୍ତୁ ପ୍ରଣାଳୀ ଭେଦରେ ବିଭିନ୍ନ ସମ୍ପ୍ରଦାୟ ସୃଷ୍ଟି ହୋଇଥାଏ । ମର୍ମର ପ୍ରକୃତ ଧର୍ମ ନ ବୁଝି ସାମ୍ପ୍ରଦାୟିକ କଳହରେ ଧର୍ମର ମହତ୍ତ୍ୱ ନଷ୍ଟ କରାଯାଏ । ପ୍ରାଚୀନ ଜାତିମାନଙ୍କ ମଧ୍ୟରେ ଯେ ଧର୍ମଭାବ ଥିଲା, ବର୍ତ୍ତମାନ ଆମ୍ଭେମାନେ ତାକୁ ଅନ୍ୟ ଦୃଷ୍ଟିରେ ଦେଖୁଅଛୁଁ । ପୂର୍ବକାଳରେ ଧର୍ମର କୁସଂସ୍କାର ମନୁଷ୍ୟ ମନକୁ ବିଶେଷ ଭାବରେ ପ୍ରଭାବିତ କରୁଥିଲା; କିନ୍ତୁ ଆଜି ବିଜ୍ଞାନମୋହ ତାକୁ ଦୂର କରି ଦେଇଛି । ପୂର୍ବର କୁସଂସ୍କାର ଭିତରେ ଜୀବନପ୍ରଦ ଆଧ୍ୟାତ୍ମିକ ଭାବ ପ୍ରବଳ ଥିଲା । ବିଜ୍ଞାନ ଯେ ଶିକ୍ଷା ଦେଲା, ସେଥିରେ କାମ ଓ ଲୋଭର ମାତ୍ରା ପ୍ରଖର ହୋଇଉଠିଲା । ଆଧୁନିକ ବିଜ୍ଞାନ କ୍ରମବିକାଶବାଦକୁ ଅନୁସରଣ କରିଥାଏ । ଯେ ଶକ୍ତି ଧୀରେ ଧୀରେ ନାନା ସୋପାନ ଅତିକ୍ରମ କରି ପୂର୍ଣ୍ଣ ମନୁଷ୍ୟରେ ପରିଣତ ଦେଖାଏ, ତାହା କଦାପି ଶୂନ୍ୟରୁ ଉତ୍ପନ୍ନ ହୋଇ ନ ପାରେ । ଚିନ୍ତା ଶକ୍ତି ଉପରେ ଶରୀରର ପ୍ରକାଶ ନିର୍ଭର କରେ; ଏହା ଅଧିକାଂଶ ଧର୍ମର ମତ; କିନ୍ତୁ ଆଧୁନିକ କେତେକ ସମ୍ପ୍ରଦାୟ ଚିନ୍ତାଶକ୍ତି କେବଳ ଶରୀର ଯନ୍ତ୍ରର ବିଭିନ୍ନ ଅଂଶବିଶେଷ ସନ୍ନିବେଶରେ ଉତ୍ପନ୍ନ ବୋଲି ସ୍ଥିର କରିଛନ୍ତି । ଶେଷୋକ୍ତ ମତ ଗ୍ରହଣ କଲେ ଆତ୍ମା ବା ମନର ଅସ୍ତିତ୍ୱ ସ୍ୱୀକାର କରିବାକୁ ଆମ୍ଭେମାନେ ଭୌତିକ ପଦାର୍ଥମାନଙ୍କର ଆଶ୍ରୟ ନେବୁ । ଉପକାର ବା ପ୍ରୟୋଜନାନୁସାରେ ସତ୍ୟନିର୍ଣ୍ଣୟର ପଥ ଆବିଷ୍କୃତ ହେବା ଉଚିତ ନୁହେଁ । ପ୍ରକୃତ ଧର୍ମ ଶିକ୍ଷାରେ ଭୌତିକ ଜ୍ଞାନର ସାରବତ୍ତା ପ୍ରମାଣ କରାଯାଏ ନାହିଁ । ଧର୍ମର ଚରମ ଲକ୍ଷ୍ୟ ଆତ୍ମଜ୍ଞାନ ଲାଭ ।

ଆତ୍ମା ସମ୍ବନ୍ଧରେ ଦୁଇଟି ପ୍ରଧାନ ମତ ପ୍ରଚଳିତ ହୋଇଅଛି । ଏହି ମତଦ୍ୱୈଧ ଯୋଗୁଁ ଧର୍ମ ଜଗତରେ ଅନେକ ପ୍ରକାର ଯୁକ୍ତି ଦେଖାଯାଏ । ଦ୍ୱୈତବାଦୀମାନେ ଆତ୍ମାକୁ ସଗୁଣ ବୋଲି ସ୍ଥିର କରନ୍ତି । ସେମାନଙ୍କ ମତରେ ଭୋଗ, ସୁଖ ଓ ଦୁଃଖ ସମସ୍ତ ଆତ୍ମାର ଯଥାର୍ଥ ଧର୍ମ । ଅଦ୍ୱୈତବାଦୀମାନେ ଆତ୍ମାକୁ ନିର୍ଗୁଣ ବୋଲି କହନ୍ତି । ପ୍ରତ୍ୟେକ ବ୍ୟକ୍ତିକୁ ନିଜ ଆଦର୍ଶାନୁସାରେ ବିଚାର କରିବାକୁ ହେବ । ଗୀତାରେ ଉଲ୍ଲେଖ ଅଛି—ଭିନ୍ନ ଭିନ୍ନ ମଣି ଯେପରି ଏକ ସୂତ୍ରରେ ଗ୍ରଥିତ, ସେହିପରି

ଏହିସବୁ ଭାବ ମଧ୍ୟରେ ଗୋଟିଏ ସୂକ୍ଷ୍ମ ରହିଅଛି । ମନୁଷ୍ୟର ଯେ ପ୍ରକୃତ ସ୍ୱରୂପ ଅଛି, ତାହା ଅଚଳ, ଅପରିଣାମୀ, ଶୁଦ୍ଧ ଓ ନିତ୍ୟମୁକ୍ତ । ଆଂଶିକ ପ୍ରକାଶ ସର୍ବଦା ପରିଣାମଶୀଳ । ଜଗତର ଅସାମଞ୍ଜସ୍ୟ ସକାଶେ ଆତ୍ମା ଦାୟୀ ନୁହନ୍ତି । ଆମ୍ଭେମାନେ ଜଗତ୍ ସମ୍ବନ୍ଧରେ କିଛି ଜାଣିପାରୁନାହୁଁ । ବସ୍ତୁଗୁଡ଼ିକର ଆକାର ମନମଧ୍ୟରେ ଯେ ଉଦ୍ଦୀପନା ଆଣେ, ତାହା ମାୟାର ଅନ୍ତର୍ଗତ । କୌଣସି ବିଷୟର ସତ୍ୟତା ଜଣା ନ ଗଲେ ମନୁଷ୍ୟର ଉପଯୁକ୍ତ ଜ୍ଞାନାନୁଶୀଳନ ହୁଏ ନାହିଁ । ଧର୍ମ ବିଷୟରେ ସ୍ୱାଧୀନତା ଦେବା ଏକାନ୍ତ ଆବଶ୍ୟକ । ଆଧ୍ୟାତ୍ମିକ, ନୈତିକ ବା ସାମାଜିକ ଉନ୍ନତି ଭିତରେ ଯେ ଏକତ୍ୱ ଅଛି, ତାହା ଗ୍ରହଣ କରିବା ସମସ୍ତ ଧର୍ମର ଲକ୍ଷ୍ୟ ହେବା ଆବଶ୍ୟକ । ଦ୍ୱୈତବାଦ କିମ୍ବା ଅଦ୍ୱୈତବାଦ ନେଇ ବିରୁଦ୍ଧମତମାନ ପ୍ରଚାର କଲେ ଉନ୍ନତି ସାଧିତ ହୋଇପାରିବ ନାହିଁ । ଜଗତର ଶ୍ରେଷ୍ଠ ଆଚାର୍ଯ୍ୟମାନେ କହିଯାଇଛନ୍ତି ଯେ, ଆମ୍ଭେମାନେ କିଛି ନଷ୍ଟ କରିବାକୁ ଆସିନାହୁଁ । ପୂର୍ବେ ଯାହା ଥିଲା, ସେଗୁଡ଼ିକର ସୌଷ୍ଠବ ସମ୍ପାଦନ ଆମ୍ଭମାନଙ୍କର ପ୍ରଧାନ କର୍ତ୍ତବ୍ୟ ହେବା ଉଚିତ୍ । ମାୟାର ସୁଦୃଢ଼ ବନ୍ଧନ ଛେଦନ କରିବା ସହଜ ନୁହେଁ । ସେଥିପାଇଁ ଗୀତା କହିଛନ୍ତି—"ଦୈବୀ ହ୍ୟେଷା ଗୁଣମୟୀ ମମ ମାୟା ଦୁର-ତ୍ୟୟା । ମାମେବ ଯେ ପ୍ରପଦ୍ୟନ୍ତେ ମାୟାମେତାଂ ତରନ୍ତି ତେ ।" ମନୁଷ୍ୟ ଏହା ଯୁଗେ ଯୁଗେ ଶୁଣି ଆସିଲାଣି । ସେ ଯେତେବେଳେ ଭଗ୍ନମନୋରଥ ହୋଇପଡ଼େ, ନିଜ ବଳ ପ୍ରତି ଆଉ ବିଶ୍ୱାସ ରଖେ ନାହିଁ । ଜୀବନଟା ଗୋଟାଏ ଭଗ୍ନ ସ୍ତୁପ ପରି ପ୍ରତୀୟମାନ ହୁଏ । ସେତେବେଳେ ସେ ଏହି ଅମୃତବାଣୀ ଶୁଣିବାକୁ ପାଏ । ଏହାହିଁ ଧର୍ମ । ଜୀବନର ବର୍ତ୍ତମାନ ଅବସ୍ଥାରେ ଭୟଙ୍କର ଅଶାନ୍ତି ଉପସ୍ଥିତ ହେଲେ, ମିଥ୍ୟା ପ୍ରବଞ୍ଚନା ପ୍ରତି ବିତୃଷ୍ଣା ଜନ୍ମିଲେ ଧର୍ମ ଜୀବନ ଆରମ୍ଭ ହୁଏ ଓ ସଂସାର ଅବଲମ୍ବନକୁ ଅସାର ମନେ କରି ମନୁଷ୍ୟ ଚିର ଶାନ୍ତି ପାଇବା ପାଇଁ ବ୍ୟାକୁଳ ହୋଇ ଉଠେ । ଧାର୍ମିକ ହେବା ପାଇଁ ବାହାର ଆଶ୍ରୟ ନେବା ଠିକ୍ ନୁହେଁ; ନିଜର ପଥ ନିଜେ ଠିକ୍ କରିନେବା ବୁଦ୍ଧିମାନର କାର୍ଯ୍ୟ । ଧର୍ମ ପଥ କଠିନ ବୋଧ ହୋଇପାରେ; କିନ୍ତୁ ନିରାଶ ହେବାର କୌଣସି କାରଣ ନାହିଁ । ଧର୍ମକୁ ନିଜ ଆଦର୍ଶରେ ଦୃଢ଼ ପ୍ରତିଷ୍ଠିତ କରାଯାଇପାରେ, କିନ୍ତୁ ସଂସାର ସହିତ ସାମଞ୍ଜସ୍ୟ ବିଧାନ କରିବାକୁ ଯାଇ ଏହି ଆଦର୍ଶକୁ ଭ୍ରଷ୍ଟ କରିବା ଆଦୌ ଉଚିତ ନୁହେଁ । ସାଂସାରିକ ସୁଖ ଓ ଦୁଃଖ ଚଳଚିତ୍ର ପରି ପରିବର୍ତ୍ତନଶୀଳ । ଜଗତଟା ବାସ୍ତବରେ କଅଣ, କେଉଁଠାରୁ ଏହାର ଉତ୍ପତ୍ତି ଓ କେଉଁଠାରେ ଏହାର ଲୟ ହେବ ? ଜ୍ଞାନୀମାନେ ବିଚାର କରି ଦେଖିଛନ୍ତି—ମୁକ୍ତିରୁ ଏହାର ଉତ୍ପତ୍ତି ଓ ପୁଣି ମୁକ୍ତିରେ ଏହାର ଲୟ । ଜ୍ଞାତସାରରେ କିମ୍ବା ଅଜ୍ଞାତ-ସାରରେ ଆମ୍ଭେମାନେ ମୁକ୍ତି ପାଇଁ ଧାବିତ । ସୁତରାଂ ସମଗ୍ର ମାନବ-ଜୀବନ ସେହି ମୁକ୍ତାବସ୍ଥା ଅଭିବ୍ୟକ୍ତ କରିବାକୁ ଚେଷ୍ଟା କରୁଛି ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ସତ୍ ଚିନ୍ତା ଏବଂ ସତ୍ କର୍ମ କାହିଁକି ସମସ୍ତ ଧର୍ମର ମୂଳଭିତ୍ତି ? ଆତ୍ମା ସହିତ ମନ କିମ୍ବା ଶରୀରର ଘନିଷ୍ଠ ସମ୍ବନ୍ଧ ନାହିଁ । ଆତ୍ମା ସ୍ୱପ୍ରକାଶ । ତାହାର ଧ୍ୱଂସ ନାହିଁ । ମନରେ ଯେ ଆଲୋକ ପ୍ରକାଶିତ ହୁଏ, ତାହା ମନରେ ନୁହେଁ । ମନ କେବଳ ଆତ୍ମାର ପ୍ରତିବିମ୍ବ ପରି କାର୍ଯ୍ୟ କରେ । ଗୁଣ ଓ ଗୁଣୀର ପ୍ରଭେଦ ପରି ଆତ୍ମା ଓ ମନର ସମ୍ପର୍କକୁ ପୃଥକ୍ କରାଯାଇ-ପାରେ । ଆତ୍ମାର ଜନ୍ମ ଓ ମୃତ୍ୟୁ ନାହିଁ । ଏହା କେବଳ ବିଭିନ୍ନ ସୋପାନ ମଧ୍ୟରେ ଅଗ୍ରସର ହେଉଥାଏ । ଆତ୍ମଶକ୍ତି ମନକୁ ମାର୍ଗ ସ୍ୱରୂପ କରି ଶରୀର ଉପରେ କାର୍ଯ୍ୟ କରେ ।

ଶରୀରଦ୍ୱାରା ଆତ୍ମା ବହିର୍ଜଗତକୁ ଗ୍ରହଣ କରନ୍ତି । ଗୋଟିଏ ଶରୀର ଧାରଣ କରି କିଛିଦିନ ବ୍ୟବହାର କଲା ପରେ ଅନ୍ୟ ଶରୀରର ପ୍ରୟୋଜନ ହୁଏ; ତେଣୁ ହିନ୍ଦୁମାନେ ଜନ୍ମାନ୍ତରରେ ବିଶ୍ୱାସ କରନ୍ତି । ଜ୍ଞାନ ଓ ଆନନ୍ଦ ଆତ୍ମାର ସ୍ୱପ୍ରକାଶ । ସତ୍କର୍ମଦ୍ୱାରା ଜୀବନର ପଥ ନିୟନ୍ତ୍ରିତ ହେଲେ ଜ୍ଞାନ ଓ ଆନନ୍ଦର ମାତ୍ରା ବର୍ଦ୍ଧିତ ହୁଏ । ଜଗତ ଚକ୍ଷୁରେ ଯେ ଅସାମଞ୍ଜସ୍ୟ ଦେଖାଯାଏ, ସେଥିରେ ଚିନ୍ତାଶକ୍ତିର ତାରତମ୍ୟକୁ ମୂଳ ବୋଲି ଧରାଯାଇପାରେ । ମନର ଭାବ ଦେଇ କର୍ମ ଜଗତର ଉତ୍ପତ୍ତି । ମୃତ୍ୟୁ ପରେ ସୁଦ୍ଧା ମନୁଷ୍ୟ ତାର ଭାବନାଗୁଡ଼ିକୁ ସଙ୍ଗରେ ଧରି ଚାଲିଥାଏ । ଉପଯୁକ୍ତ ଶରୀର ଅପେକ୍ଷାରେ ଥାଏ । ଆକାଂକ୍ଷାନୁସାରେ ଶରୀର ପାଇଲେ ସେ ଜନ୍ମ ଗ୍ରହଣ କରେ ଓ ଅତୀତ ଜୀବନର ଭାବନାକୁ କାର୍ଯ୍ୟରେ ଲଗାଇଦିଏ । ପ୍ରତ୍ୟେକ ଚିନ୍ତା ଓ କର୍ମ ସଞ୍ଚିତ ହୋଇ ରହେ । ସାଧାରଣତଃ ଯାହାକୁ ଜଗଦ୍ବାସୀ ଅଦୃଷ୍ଟ ବୋଲି କହନ୍ତି, ତାହା ଏହି ଚିନ୍ତା ଓ କର୍ମର ସମଷ୍ଟି । ମନୁଷ୍ୟ କଷ୍ଟ ଭୋଗ କଲାବେଳେ ଦୋଷ ଅନ୍ୟ ଉପରେ ଆରୋପ କରିଥାଏ; କିନ୍ତୁ ଏପରି ଭାବିବା ଭୁଲ୍ । ଆମ୍ଭେମାନେ ଯାହା ନିଜେ ବପନ କରୁ, ତାର ଫଳ ଭୋଗ କରୁ । ଗତ ଜନ୍ମର ଧାରଣା ଅନୁସାରେ ଇହଜନ୍ମର ସଂସ୍କାର

ଦେଖାଦିଏ । ତା ନ ହୋଇଥିଲେ କାର୍ଯ୍ୟବହୁଳ ସଂସାରରେ ଏତେ ଭିନ୍ନତା ଦେଖାଯାଆନ୍ତା ନାହିଁ । ପ୍ରତ୍ୟେକ ଅସତ୍ ଚିନ୍ତା ଓ କର୍ମ ମନୁଷ୍ୟର ଭାବୀ ଅମଙ୍ଗଳ ଆନୟନ କରେ । ଧର୍ମ ପ୍ରବର୍ତ୍ତକମାନେ ମନୁଷ୍ୟକୁ ଏହି ଅମଙ୍ଗଳରୁ ରକ୍ଷା କରିବା ପାଇଁ ଗୋଟିଏ ଗୋଟିଏ ସୁନ୍ଦର ପଥ ଉଦ୍‌ଘାଟନ କରିଦେଇ ଯାଇଛନ୍ତି । ପଥ ବିଭିନ୍ନ ହେଲେ ସୁଦ୍ଧା ଗନ୍ତବ୍ୟ ସ୍ଥଳ ଏକ ।

ପୃଥିବୀର କେତେକ ଧର୍ମ ଜନ୍ମାନ୍ତରରେ ବିଶ୍ୱାସ କରେ ନାହିଁ । ହିନ୍ଦୁର ଅଦ୍ୱୈତବାଦ ମଧ୍ୟ ଏ ମତର ବିରୋଧୀ ନୁହେଁ । ଜନ୍ମ ଓ ମୃତ୍ୟୁ କାହାର ହୁଏ ? ଅଜ୍ଞାନତାରେ ଆଚ୍ଛନ୍ନ ମାନବହୃଦୟ ଶରୀରର ଧ୍ୱଂସ ଦେଖି ଯାହା କଳ୍ପନା କରେ, ତାହା ସମ୍ପୂର୍ଣ୍ଣ ଭ୍ରମାତ୍ମକ । ମନ ଓ ଶରୀର ଆତ୍ମା ଉପରେ ଅବସ୍ଥାନ କରନ୍ତି । ଆତ୍ମା ସର୍ବଦା ବିଦ୍ୟମାନ ରହିଛନ୍ତି; ତେବେ ପୁନର୍ଜନ୍ମ କାହାର ହେବ ? ଆମ୍ଭମାନଙ୍କ ଭିତରେ ସର୍ବପ୍ରକାର ଜ୍ଞାନ, ଶକ୍ତି ଓ କଲ୍ୟାଣ ନିହିତ ଅଛି; ସୁତରାଂ ବାହାରେ ଅନ୍ୱେଷଣ କଲେ ଲାଭ ନାହିଁ । ମନୁଷ୍ୟ ନିଜକୁ ବିଶ୍ୱସତ୍ତା ସହିତ ଅଭିନ୍ନ ଦେଖିଲେ ଆଉ ଭୟର କାରଣ ରହେ ନାହିଁ । ଏହି ବହୁତ୍ୱପୂର୍ଣ୍ଣ ଓ ପରିବର୍ତ୍ତନଶୀଳ ଜଗତରେ ଅବସ୍ଥିତ ନିତ୍ୟପୁରୁଷଙ୍କୁ ନିଜ ଆତ୍ମାର ଆତ୍ମା ବୋଲି ଜାଣି ପାରିଲେ ନିଜର ସ୍ୱରୂପ ଜ୍ଞାନ ଜନ୍ମେ । ଏପରି ଅବସ୍ଥା ଆସିଲେ ମନୁଷ୍ୟ କୌଣସି ବିଶିଷ୍ଟ ଧର୍ମକୁ ଅପେକ୍ଷା ରଖେ ନାହିଁ । କୁଚିନ୍ତା କିମ୍ବା କୁକର୍ମ ଆମ୍ଭମାନଙ୍କୁ ଦୁର୍ବଳ କରେ ବୋଲି ଅଶୁଭ । ଦୁର୍ବଳତା ଆସିଲେ ମନୁଷ୍ୟ ହୃଦୟରେ ଭୀତି ସଞ୍ଚରିତ ହୁଏ । ଅଜ୍ଞାନତା ଓ ଭ୍ରମ ଦୁର୍ବଳତାର ନାମାନ୍ତର ମାତ୍ର । ଶୁଦ୍ଧ ସ୍ୱରୂପ ନିତ୍ୟାନନ୍ଦମୟ ଆତ୍ମାଙ୍କୁ ଏମାନେ ଆବଦ୍ଧ ରଖି ପାରନ୍ତି; କିନ୍ତୁ ତାଙ୍କର ସ୍ୱରୂପର ଲୋପ ସାଧନ କେହି କରିପାରିବେ ନାହିଁ । ସ୍ୱାମୀ ବିବେକାନନ୍ଦଙ୍କ ମତରେ ପାପ ବୋଲି କିଛି ନାହିଁ । ଭଲ ଓ ମନ୍ଦ ପରି ପାପ ପୁଣ୍ୟର କୌଣସି ଦୃଢ଼ ଭିତ୍ତି ନାହିଁ । ଦୁର୍ବଳତା ସମସ୍ତଙ୍କର ମୂଳରେ କାର୍ଯ୍ୟ କରିଥାଏ । ଆତ୍ମାର ସ୍ୱରୂପ ଜ୍ଞାନ ଜନ୍ମିଲେ ଦୁର୍ବଳତା ଦୂର ହୋଇଯାଏ ।

ଧର୍ମ କାମ୍ୟ ବସ୍ତୁରେ ନାହିଁ । ଜଗତରେ ଲିପ୍ତ ରହି ମନୁଷ୍ୟ ସାରା ଜୀବନଟା ସ୍ୱପ୍ନରେ କଟାଇ ଦିଏ । ଆପାତଭିନ୍ନ-ପ୍ରତୀୟମାନ ବାହ୍ୟ ଜଗତରେ ଏକତ୍ୱ ଆବିଷ୍କାର ନ କରିବାଯାଏ ଏହି ସ୍ୱପ୍ନର ବିରାମ ଆସେ ନାହିଁ । ଜୀବନର ରହସ୍ୟ ଦୁର୍ଭେଦ୍ୟ ପ୍ରତୀୟମାନ ହୋଇପାରେ; ତଥାପି ସାହସ ପୂର୍ବକ ପଥ ଅନ୍ୱେଷଣ କରିବାକୁ ହେବ । ଧର୍ମ ଏହି ପଥ ଆବିଷ୍କାର କରେ ବୋଲି ମାନବଜାତି ତାର ଉପାଦେୟତାକୁ ସବୁଠାରୁ ବେଶୀ ମନେକରେ । ଜଗତକୁ ତ୍ୟାଗ କରି ଧର୍ମ-ସାଧନ କରାଯାଏ ନାହିଁ । ଅଶାନ୍ତି ଓ ବିଶୃଙ୍ଖଳା ମଧ୍ୟରେ ନିଜର ଚିରାକାଂକ୍ଷିତ ମାର୍ଗଟି ସ୍ଥିର କରିବାକୁ ହେବ । ସେଥିପାଇଁ କଠୋପନିଷଦ ଉଲ୍ଲେଖ କରିଛନ୍ତି, "ନିତ୍ୟୋଽନିତ୍ୟାନାଂ ଚେତନ ଶ୍ଚେତନାନାମେକୋ ବହୂନାଂ ଯେ ବିଦଧାତି କାମାନ୍ । ତମାତ୍ମସ୍ଥଂ ଯେଽନୁପଶ୍ୟନ୍ତି ଧୀରା ସ୍ତେଷାଂ ଶାନ୍ତିଃ ଶାଶ୍ୱତୀ ନେତରେଷାଂ ।" ଜ୍ଞାନୀମାନେ ଗୋଟିଏ ଅଖଣ୍ଡ ଶକ୍ତିକୁ ଯାବତୀୟ ପଦାର୍ଥରେ ଦର୍ଶନ କରି ନିତ୍ୟ ଶାନ୍ତି ଅନୁଭବ କରନ୍ତି । ଆତ୍ମବୋଧ ହେଲେ ମନୁଷ୍ୟ କୌଣସି ମନ୍ଦିରର ଉପକାରିତା ପ୍ରତି ଲକ୍ଷ୍ୟ ରଖେ ନାହିଁ ।

ଧର୍ମରେ ଆଦର୍ଶବାଦକୁ ଉଚ୍ଚ ସ୍ଥାନ ଦେବା ଆବଶ୍ୟକ । ମନୁଷ୍ୟମାତ୍ରେ ଭ୍ରମପ୍ରମାଦର ଅଧୀନ । ଆଦର୍ଶ ଥିଲେ ସେ ଲକ୍ଷ୍ୟଭ୍ରଷ୍ଟ ହୋଇପାରେ; କିନ୍ତୁ ଚିରଦିନ ବିପଥଗାମୀ ହେବ ନାହିଁ । ଯେତେଦିନ ପର୍ଯ୍ୟନ୍ତ ଆଦର୍ଶ ହୃଦୟକୁ ସ୍ପର୍ଶ କରିନାହିଁ, ସେତେଦିନଯାଏ ଆମ୍ଭମାନଙ୍କର ଆଦର୍ଶ ସମ୍ବନ୍ଧରେ ଶୁଣିବା ଓ ଭାବିବା ଦରକାର । ଚିନ୍ତା ଆମ୍ଭମାନଙ୍କର କାର୍ଯ୍ୟ-ପ୍ରବୃତ୍ତିର ନିୟାମକ । ମନକୁ ସର୍ବୋଚ୍ଚ ଚିନ୍ତାଦ୍ୱାରା ପୂର୍ଣ୍ଣ କରିବାକୁ ହେବ । ପ୍ରାଥମିକ ଚେଷ୍ଟାରେ ସଫଳକାମ ନ ହେଲେ କ୍ଷତି ନାହିଁ । ବିଫଳତା ସମ୍ପୂର୍ଣ୍ଣ ସ୍ୱାଭାବିକ ! ଏହା ମାନବ ଜୀବନର ସୌନ୍ଦର୍ଯ୍ୟ ସ୍ୱରୂପ । ଜୀବନରେ ଯେସବୁ ପତନ ଆସେ, ସେଥିରେ ଅନେକ ଶିକ୍ଷଣୀୟ ବିଷୟ ଥାଏ । ଥରେ ତ୍ରୁଟି ଦେଖି ପାରିଲେ ଭବିଷ୍ୟତରେ ସାବଧାନ ହେବା ପାଇଁ ବିଶେଷ ସୁବିଧା ମିଳେ । ପତନ ସମୟରେ ମନରେ ଅବସାଦ ଆସିପାରେ; କିନ୍ତୁ ହତାଶ ନ ହୋଇ ଯେଉଁ ଆଦର୍ଶ ପୂର୍ବରୁ ନିର୍ଦ୍ଦିଷ୍ଟ ଥାଏ ସେହି ଆଡ଼କୁ ଦୃଷ୍ଟି ଦେବା ସବୁଠାରୁ ପ୍ରଶସ୍ତ ବୋଧହୁଏ ।

ଧର୍ମର ମର୍ମ ବୁଝିବାକୁ ଅତ୍ୟଳ୍ପ ଲୋକ ସମର୍ଥ ହୁଅନ୍ତି । ନାନା ପ୍ରକାର ଶ୍ଲୋକ-ବ୍ୟାଖ୍ୟା, ସୁନ୍ଦର ପଦ-ଯୋଜନା ଓ ଆଳଙ୍କାରିକ ବର୍ଣ୍ଣନାରେ ମଧ୍ୟ ଏହି ଉଦ୍ଦେଶ୍ୟ ସାଧିତ ହୋଇପାରେ ନାହିଁ । ଆମ୍ଭମାନଙ୍କର ସାଧାରଣ ନୀତିପରାୟଣତାରେ କିଛି

ମୂଲ୍ୟ ଥିବାର ଜଣାଯାଏ ନାହିଁ । ସାମାଜିକ ନିୟମକୁ ଶିଥିଳ କରିଦେଲେ ମନୁଷ୍ୟ ସ୍ୱଭାବଟା ଜଣାପଡ଼ନ୍ତା । ସାମାଜିକ ପ୍ରତିପତ୍ତି ଲୋପ ଆଶଙ୍କାରେ ଆମ୍ଭେମାନେ ମିଥ୍ୟାପରାୟଣ ହୋଇଥାଉଁ । ନିଭୃତରେ ନିଜ ଅନ୍ତରଟା ଅନୁସନ୍ଧାନ କଲେ ଉପର୍ଯ୍ୟୁକ୍ତ ବିଷୟର ସତ୍ୟତା ସହଜରେ ଜଣାଯିବ । ସୁତରାଂ କପଟତା ତ୍ୟାଗ ନ କରି ଧର୍ମର ନାମ ପର୍ଯ୍ୟନ୍ତ ଉଚ୍ଚାରଣ କରିବା ଉଚିତ ନୁହେଁ । ଧର୍ମ ଆନନ୍ଦ ତ୍ୟାଗ କରିବାକୁ ଶିକ୍ଷା ଦିଏ ନାହିଁ—ପ୍ରକୃତ ଆନନ୍ଦ କଅଣ, ତାହାହିଁ ଶିକ୍ଷା ଦିଏ । ମୋଟ କଥା, ଯେଉଁମାନଙ୍କର ନିମ୍ନସ୍ତର-ଭୋଗବାସନା ଶେଷ ହେଲାଣି, ସେମାନଙ୍କ ପକ୍ଷରେ ଧର୍ମାଚରଣ ସମ୍ଭବ । ଅପରିପକ୍ୱ ଅବସ୍ଥାରେ ଜୀବନଟା କେବଳ ଶିକ୍ଷାକ୍ଷେତ୍ରପରି ଅନୁମିତ ହୁଏ । ଧର୍ମ ଏ କ୍ଷେତ୍ରରେ ଶୁଭ ସଙ୍କେତ ।

ଧର୍ମରେ ଶକ୍ତିର ବର୍ତ୍ତମାନତା ଏକାନ୍ତ ଆବଶ୍ୟକ । ମନୁଷ୍ୟ ସ୍ୱାଭାବିକ ଦୁର୍ବଳ ନୁହେଁ । କେତେଗୁଡ଼ିଏ ବାହ୍ୟ ଆବରଣରେ ସେ ନିଜକୁ ଦୁର୍ବଳ ମନେ କରୁଛି । ଶରୀରଟା ସମ୍ପୂର୍ଣ୍ଣ ଆଚ୍ଛାଦିତ ଥିଲେ କିମ୍ବା କୌଣସି ଅଙ୍ଗ ସାମାନ୍ୟ ଦୃଷ୍ଟି-ଗୋଚର ହେଉଥିଲେ ଶରୀରର ବର୍ତ୍ତମାନତା ଅସ୍ୱୀକାର କରାଯାଏ ନାହିଁ । ସେହିପରି ଅପକର୍ମୀର ଆତ୍ମା ମୋହାବୃତ ଥିଲେ ସୁଦ୍ଧା ଆତ୍ମାର ଅସ୍ତିତ୍ୱ ମାନିବାକୁ ହେବ । ଧର୍ମ ଯେନ ନାନା ମତବାଦ ଶୁଣାଯାଏ । ଅନେକ ସମୟରେ ଆଧ୍ୟାତ୍ମିକ ଶିକ୍ଷା-ପ୍ରଣାଳୀରେ ଦୁର୍ବଳତା ଲକ୍ଷିତ ହୁଏ । ସତ୍ୟ ପ୍ରତି ଯେ ଧର୍ମ ବିମୁଖ, ତାକୁ ଆଦୌ ଗ୍ରହଣ କରିବା ଉଚିତ ନୁହେଁ । ଅସତ୍ୟରେ ଶକ୍ତିର ବିନାଶ ସମ୍ଭବ ନୁହେଁ । ସତ୍ୟ ଏକମାତ୍ର ସଞ୍ଜୀବନୀ ଶକ୍ତି । ସତ୍ୟ ଧର୍ମର ନାମାନ୍ତର ମାତ୍ର ।

ଧର୍ମାଚରଣ ପାଇଁ ବିଶିଷ୍ଟ ସ୍ଥାନ ବା ଅବସ୍ଥା ନିରୂପିତ ହୁଏ ନାହିଁ । ବାର୍ଦ୍ଧକ୍ୟରେ ଧର୍ମାନ୍ୱେଷଣ ସୁବିଧାଜନକ ବୋଲି କେହି କେହି ଭାବିପାରନ୍ତି । ଗୁରୁତର ସାଂସାରିକ କାର୍ଯ୍ୟ ସମ୍ପାଦନ କରି ଧର୍ମର ନିଗୂଢ଼ ତତ୍ତ୍ୱ ଆଲୋଚନା କରିପାରିଲେ ଜୀବନର ଅଂଶବିଶେଷକୁ ଏଥିପାଇଁ ନିୟୋଜିତ କରିବା କେତେଦୂର ସଙ୍ଗତ, ତାହା ସହଜରେ ଅନୁଭୂତ ହେବ । ପୂର୍ବକାଳରେ ଲକ୍ଷ ଲକ୍ଷ ପ୍ରଜା ପାଳନ କରି ରାଜାମାନେ ଯେପରି ଧର୍ମଜ୍ଞାନ ଲାଭ କରୁଥିଲେ, ଆଜି ତାହା ଲୋକମାନଙ୍କର ଧାରଣାର ଅତୀତ । ପ୍ରାଚୀନ ରାଜାମାନେ ଅନେକ ସମୟରେ ଆଜନ୍ମତ୍ୟାଗୀ ସନ୍ନ୍ୟାସୀମାନଙ୍କୁ ଯେ ଉପଦେଶ ଦେଇଥିଲେ, ତାହା କେବଳ ଭାରତ ଛଡ଼ା ପୃଥିବୀରେ ଅନ୍ୟତ୍ର ବିରଳ । ତୀବ୍ର କର୍ମଶୀଳତା ମଧ୍ୟରେ ଅନନ୍ତ ଶାନ୍ତଭାବ ଅନୁଭବ କରିବାକୁ ସେହି ମହାମନା ରାଜର୍ଷିମାନେ କ୍ଷମ ହୋଇଥିଲେ । ଏହି କର୍ମ ରହସ୍ୟ ଭେଦ କରିବା ବେଦାନ୍ତର ଲକ୍ଷ୍ୟ ଥିଲା । ସେ ଆଦର୍ଶ ଆଜି ଭାରତରେ ନାହିଁ । ସୌଭାଗ୍ୟ ଆସିଲେ ସେ ଧନ ଫେରିପାରେ । ମନର ଶାନ୍ତ-ଭାବ କାର୍ଯ୍ୟ ସମ୍ପାଦନରେ ଯଥେଷ୍ଟ ସାହାଯ୍ୟ କରେ । କେବଳ ଭାବାବେଶରେ ପରିଚାଳିତ ହେଲେ ଶକ୍ତି ଅପବ୍ୟୟିତ ହୁଏ; ସ୍ନାୟୁମଣ୍ଡଳୀରେ ଗୋଟିଏ ହଠାତ୍ ପରିବର୍ତ୍ତନ ଆସେ; ମନ ମଧ୍ୟ ସଙ୍ଗେ ସଙ୍ଗେ ଚଞ୍ଚଳ ହୋଇଉଠେ; କିନ୍ତୁ କାର୍ଯ୍ୟ ଖୁବ୍ କମ୍ ପରିମାଣରେ ଅନୁଷ୍ଠିତ ହୁଏ । ଜଗତରେ କାର୍ଯ୍ୟକୁଶଳ ବ୍ୟକ୍ତିମାନଙ୍କର ଜୀବନୀ ପାଠ କଲେ ଜଣାଯାଏ ଯେ, ସେମାନେ ଅଦ୍ଭୁତ ଶାନ୍ତ ପ୍ରକୃତିର ଲୋକ ଥିଲେ । ସେମାନଙ୍କର ଚିତ୍ତର ସାମଞ୍ଜସ୍ୟ ଆଦୌ ବିଚଳିତ ହେଉ ନ ଥିଲା । କ୍ରୋଧୀ ଲୋକମାନେ ହଠାତ୍ କ୍ରୋଧ-ପରବଶ ହୋଇ କର୍ମର ମହତ୍ତ୍ୱ ନଷ୍ଟ କରନ୍ତି । ସେମାନେ ବେଶୀ କିଛି କରିପାରନ୍ତି ନାହିଁ । କ୍ରୋଧ, ଘୃଣା କିମ୍ବା ଅନ୍ୟ କୌଣସି ରିପୁର ବଶୀଭୂତ ଲୋକ ଜଗତରେ ମହତ୍ କାର୍ଯ୍ୟ କରିବାକୁ ଅକ୍ଷମ ହୋଇଥାଏ । କେବଳ ଶାନ୍ତ, କ୍ଷମାଶୀଳ, ସ୍ଥିରଚିତ୍ତ ବ୍ୟକ୍ତିମାନେ ସର୍ବାପେକ୍ଷା ଅଧିକ କାର୍ଯ୍ୟ କରିଥାନ୍ତି । ଧର୍ମଜୀବନ ସହିତ କର୍ମ-ଜୀବନର ପାର୍ଥକ୍ୟ ନାହିଁ । ତ୍ୟାଗୀ ଅର୍ଥରେ ଅନେକେ କର୍ମତ୍ୟାଗକୁ ଲକ୍ଷ୍ୟ କରନ୍ତି; କିନ୍ତୁ ପ୍ରକୃତରେ ତାହା ନୁହେଁ ।

ସମ୍ପ୍ରଦାୟଗତ ଧର୍ମ-ଭାବରେ ସଙ୍କୀର୍ଣ୍ଣତା ପୁଷ୍ଟ ହୋଇଥାଏ । ବଳପୂର୍ବକ ମନୁଷ୍ୟ ମନରେ ଏହାକୁ ପ୍ରବେଶ କରାଇଲେ ଦୁର୍ବଳତା ବର୍ଦ୍ଧିତ ହୁଏ । ମନୁଷ୍ୟ ଭ୍ରମପ୍ରମାଦର ଅଧୀନ । ସେ ପାପୀ, ଏପରି ସର୍ବଦା ସ୍ମରଣ କରାଇ ଯେଉଁ ଧର୍ମ ପ୍ରଚାର କରାଯାଏ, ତାହା ମନୁଷ୍ୟର କ୍ଲେଶ ଦୂର ନ କରି ବଢ଼ାଇ ଦିଏ । ତାହାକୁ ଅଜ୍ଞାନାନ୍ଧକାରରୁ ଆଲୋକକୁ ଆଣିବା ପାଇଁ ଧର୍ମର ସହାୟତା ଲୋଡ଼ା ହୁଏ । କିନ୍ତୁ ହୃଦୟରେ ଗାଢ଼ ସଂସ୍କାର କରାଇଦେଲେ ମନୁଷ୍ୟ ଆଲୋକ ଦେଖି ସୁଦ୍ଧା ଭୟ କରେ । ଆତ୍ମବିଶ୍ୱାସ ଜନ୍ମିଲେ ଧର୍ମର କାର୍ଯ୍ୟକାରିତା ଜଣାପଡ଼େ । ଜଗତରେ ଯେଉଁମାନେ ମହତ୍ କାର୍ଯ୍ୟ ସାଧନ କରନ୍ତି, ସେମାନେ ଶ୍ରେଷ୍ଠ ହୋଇପାରିବେ ବୋଲି ଧାରଣା କରିଥାନ୍ତି । ଦୃଢ଼ ପ୍ରତ୍ୟୟ ଆତ୍ମଜ୍ଞାନରୁ ଲାଭ ହୋଇଥାଏ । କ୍ଷୁଦ୍ରମତାନୁସରଣ କଲେ ଅବନତି ସ୍ୱତଃ ଆସେ ।

ଯେଉଁ ଧର୍ମ କହେ, ତାର ପଥ ଏକମାତ୍ର ଅବଲମ୍ବନୀୟ ଏବଂ ଅନ୍ୟ ଧର୍ମ ଆଶ୍ରୟରେ ମନୁଷ୍ୟର ପତନ ଅନିବାର୍ଯ୍ୟ, ଏପରି ଧର୍ମର ପୋଷକତା କରିବା ବିବେକୀ ଲୋକର କର୍ତ୍ତବ୍ୟ ନୁହେଁ । ପ୍ରେମଧର୍ମ କୌଣସି ଧର୍ମର ବିରୋଧୀ ନୁହେଁ; ବରଂ ଅନ୍ୟ ଧର୍ମମାନଙ୍କୁ ଏହା ଯଥେଷ୍ଟ ସାହାଯ୍ୟ କରେ । ବିଶ୍ୱପ୍ରେମରେ ଧର୍ମର ସାର୍ଥକତା ପ୍ରମାଣିତ ହୁଏ । ପଶୁପକ୍ଷୀ ସୁଦ୍ଧା ଏହାର ଜୟ ଘୋଷଣା କରନ୍ତି ।

ସତ୍ୟ ଉପରେ ଧର୍ମର ପ୍ରତିଷ୍ଠା । ସତ୍ୟପାଳନ କରିବା କଷ୍ଟକର ବୋଧ ହୋଇପାରେ; କିନ୍ତୁ ତାର ଚରମ ସୀମାରେ ଯେ ଶାନ୍ତି ନିହିତ ଥାଏ, ତାହା ପୂର୍ଣ୍ଣ ଆନନ୍ଦର ଉତ୍ସ ସ୍ୱରୂପ । ମନୁଷ୍ୟର ସ୍ୱଭାବ ଅନେକ ସମୟରେ ସ୍ଥିତିଶୀଳ ହୋଇପଡ଼େ । ଅଭ୍ୟାସବଶତଃ କୌଣସି କାର୍ଯ୍ୟରେ ଲିପ୍ତତା ଜନ୍ମିଲେ ତାକୁ ତ୍ୟାଗ କରିବା ତା ପକ୍ଷରେ କଠିନ ବୋଧହୁଏ । ସେଥିଯୋଗୁ ମନ ନୂତନ ଚିନ୍ତା ଗ୍ରହଣ କରିବାକୁ କଷ୍ଟ ଅନୁଭବ କରେ । ଏପରି ଅବସ୍ଥାରେ ସତ୍ୟାନୁସରଣ ସହଜ ହୁଏ ନାହିଁ । ଧର୍ମର ଦ୍ୱାହି ଦେଇ ମତର ସ୍ୱଚ୍ଛନ୍ଦ ଗତିରେ ଅଯଥା ବାଧା ଆଣିଲେ ମନୁଷ୍ୟ ଲକ୍ଷ୍ୟଭ୍ରଷ୍ଟ ହୁଏ । ଧର୍ମ ନାମରେ ସଙ୍କୀର୍ଣ୍ଣତା ଆଚରଣ କଲେ ଶଠତା ହୃଦୟକୁ ଅଧିକାର କରେ । ସ୍ୱାର୍ଥ ସୀମା ମଧ୍ୟରେ ଆବଦ୍ଧ ଧର୍ମ ବେଶୀଦିନ ସ୍ଥାୟୀ ହୋଇ ରହେ ନାହିଁ । ଜାତି, କୁଳ-ପ୍ରଚଳିତ ପ୍ରଥାମାନଙ୍କୁ ଧର୍ମ ସହିତ ସମ୍ପୃକ୍ତ ରଖିବା ଉଚିତ ନୁହେଁ । ଧର୍ମ ସତ୍ୟର ରୂପାନ୍ତର ମାତ୍ର । ଯାହା ସତ୍ୟ, ତାହା ନିତ୍ୟ । ମାନବ ଜାତି ଯାହାକୁ ପାଇବା ପାଇଁ ପ୍ରାଣର ସହିତ ଆଦିମ ଯୁଗରୁ ଚେଷ୍ଟା କରି ଆସୁଛି ଓ ତାର ଅସ୍ତିତ୍ୱ ଥିବା ପର୍ଯ୍ୟନ୍ତ କରୁଥିବ, ତାକୁ ଧର୍ମ ନିର୍ଦ୍ଦେଶ କରିଦିଏ ନାହିଁକି ? ଅତ୍ୟନ୍ତ ସୁଖ ଭୋଗ କଲେ ସୁଦ୍ଧା ମନୁଷ୍ୟ ତା ହୃଦୟରେ ଗୋଟାଏ ଅଭାବ ଅନୁଭବ କରେ । ଦିନ ଆସେ, ଯେତେବେଳେ ତା ଦୃଷ୍ଟି ସମକ୍ଷରୁ ପର୍ଦ୍ଦାଟି ଖୋଲିଯାଏ ଏବଂ ସେ ଦେଖେ ତାର ଅନ୍ୱେଷିତ ବିଷୟ-ସୁଖ ସତ୍ୟ ନୁହେଁ—ଗୋଟାଏ ଛାୟା ମାତ୍ର । ସେହି ଛାୟା ମଧ୍ୟ ଦେଇ ଛାୟାର ଉତ୍ପତ୍ତି ସ୍ଥାନ ଆଡ଼କୁ ଟାଣି ନିଏ ବୋଲି ଏହା ଏଡ଼େ ସୁମହତ୍ । ✻

---

✻ ୯ । ୧ । ୩୪ ତାରିଖରେ ଉତ୍କଳ ସାହିତ୍ୟ ସମାଜର ଏକ ବିଶେଷ ଅଧିବେଶନରେ ଶ୍ରୀରାମଚନ୍ଦ୍ର ଭବନରେ ପଠିତ ଏବଂ ଅପ୍ରେଚିତ ।

# ନାରୀ ଓ ସମାଜ

ସଭ୍ୟତାର କ୍ରମବିକାଶରେ ସମାଜର ଉତ୍ପତ୍ତି ହେଲାବେଳେ ପୁରୁଷ ଓ ନାରୀ ମଧ୍ୟରେ ଯେଉଁ ବ୍ୟବଧାନ ଆସି ଦେଖାଦେଲା, ତାହା ମନୁଷ୍ୟର ଆଦିମ ଅବସ୍ଥାରୁ ଗୋଟିଏ କ୍ଷୀଣ ପ୍ରେରଣା ପାଇଥିଲା । ସ୍ତ୍ରୀ ଓ ପୁରୁଷର ଜନ୍ମଗତ ପାର୍ଥକ୍ୟ କ୍ରମଶଃ ଉଭୟଙ୍କୁ ବିଭିନ୍ନ ଢଙ୍ଗରେ ଚାଳିତ କଲା । ଶେଷରେ ସମାଜ ଆସି ଦୁହିଙ୍କୁ ପୃଥକ୍ ସୀମା ମଧ୍ୟରେ ଆବଦ୍ଧ କରିବାକୁ ଚେଷ୍ଟା କଲା । ଜାତି, ଧର୍ମ, ଦେଶ ଓ ଯୁଗୋଚିତ ବୈଷମ୍ୟରେ ସମାଜ ସର୍ବଦା ପ୍ରଭାବିତ ହେଲେ ସୁଦ୍ଧା ନାରୀ ଓ ନରର ଧର୍ମକୁ ସମାଜ ପୃଥକ୍ ଭାବରେ ପ୍ରକାଶ କରିଅଛି । ମନୁଷ୍ୟର ସ୍ୱାଭାବିକ ଧର୍ମ ପାଳନରେ କେତେଗୁଡ଼ିଏ ପ୍ରତିବନ୍ଧକ ଥାଏ, ଯାହାକୁ ଦୂର କରିବାକୁ ଯାଇ ଉଭୟ ସ୍ତ୍ରୀ ଓ ପୁରୁଷ ସାମାଜିକ ନିୟମମାନଙ୍କର ଆଶ୍ରୟ ଗ୍ରହଣ କରନ୍ତି । ତେଣୁ ଜୀବନର ସ୍ୱାଚ୍ଛନ୍ଦ୍ୟ ବିଧାନରେ ସମାଜର ସୃଷ୍ଟି ଓ ସ୍ଥିତି ସବୁ ସମୟରେ ନିର୍ଭର କରି ଆସିଅଛି । ଆଜି ମଧ୍ୟ ପୃଥିବୀର ଯାବତୀୟ ସମାଜମାନଙ୍କର ବହୁମୁଖୀ ଗତି ଦେଖିଲେ ଉପର୍ଯ୍ୟୁକ୍ତ ଉକ୍ତିର ସତ୍ୟତା ସହଜରେ ଜଣାଯାଇପାରେ ।

ବର୍ତ୍ତମାନ ପୁରୁଷକୁ ବାଦ୍‌ଦେଇ ସମାଜରେ କେବଳ ନାରୀର ବୈଶିଷ୍ଟତା ପ୍ରତି ଦୃଷ୍ଟି ଦିଆଯାଉ । ଅବହମାନ କାଳରୁ ନାରୀର ଆଦର୍ଶ ଗୋଟିଏ ସ୍ୱାତନ୍ତ୍ର୍ୟ ରକ୍ଷା କରି ଆସୁଅଛି । ତାର ଏ ପ୍ରୟାସ ସବୁବେଳେ କୌଣସି ଅବଲମ୍ବନରେ ଆରୋପିତ ହୋଇନାହିଁ । ସମୟ ଓ ସଭ୍ୟତାର ପ୍ରଭାବ ସେହି ଆଦର୍ଶକୁ ଭିନ୍ନ ଭିନ୍ନ ରୂପରେ ଗଢ଼ି ଦେଇଅଛି । ନାରୀ ହୃଦୟର ନିଗୂଢ଼ ରଚନାରେ ଯେ ବିଶେଷତ୍ୱ ପରିଲକ୍ଷିତ ହୁଏ, ତଦ୍ଦ୍ୱାରା ସମାଜରେ ଗଠନ କ୍ରିୟାରେ ଗୋଟିଏ ନୂତନତ୍ୱ ଓ ସୌନ୍ଦର୍ଯ୍ୟର ଆଭାସ ମିଳେ । ନାରୀ ଯେବେ ସମାଜକୁ କିଛି ଦାନ କରୁ ନ ଥାନ୍ତା କିମ୍ବା ତା ଦାନରେ ସମାଜର ଗୋଟିଏ ଅତି ବଡ଼ ଅଭାବ ଦୂର ହେଉ ନ ଥାନ୍ତା, ତାହାହେଲେ ସମାଜ ତାକୁ ଅନେକ ଦିନୁ ଉପେକ୍ଷା କରି ସାରନ୍ତାଣି । ନାରୀ ନ ଥିଲେ ସମାଜର ଅସ୍ତିତ୍ୱ ରହନ୍ତା ନାହିଁ । ନିଜର ଉତ୍କର୍ଷ ବଳରେ ଯେ ପ୍ରତିଷ୍ଠା ସ୍ଥାପିତ ହୁଏ, ତାହା କାହାରି ଅନୁଗ୍ରହ ଉପରେ ନିର୍ଭର କରେ ନାହିଁ । ନାରୀକୁ ଯେ ଦୁର୍ବଳତାର ଆଖ୍ୟା ଦିଆଯାଏ, ତାହା ନିତାନ୍ତ ଅମୂଳକ ବୋଲି ଜଣାଯାଏ; କାରଣ ନାରୀ ଦୁର୍ବଳ ହୋଇଥିଲେ ସାମାଜିକ ଅବଲମ୍ବନରେ ସେ ଏତେ ବଡ଼ ସ୍ଥାନ ପାଇ ନ ଥାନ୍ତା । ଅନେକ ସମୟରେ ପୁରୁଷ ଯାହା କରିବାକୁ ଅକ୍ଷମ ହୁଏ, ନାରୀ ତାହା ଅକାତରରେ ସାଧନ କରେ । ସନ୍ତାନ ରକ୍ଷା ପାଇଁ ନାରୀର ତ୍ୟାଗ ଅସାଧାରଣ କହିଲେ ଚଳେ । ନିଜର ପ୍ରାଣ ବିନିମୟରେ ସନ୍ତାନର ସୁଖ କାମନା କରିବା ନାରୀର ଧର୍ମ । ମାତୃତ୍ୱରେ ଭାରତୀୟ ନାରୀ ଯେ ଗୌରବ ଅନୁଭବ କରି ଆସିଅଛି, ତାହା ଏହି ଆଦର୍ଶକୁ ଅନୁସରଣ କରି ଗଠିତ । ତ୍ୟାଗ ଯାହାର କର୍ମ-ମନ୍ତ୍ର ଓ ମାନବ ଜାତିର ବିସ୍ତୃତିରେ ଯେ କର୍ଣ୍ଣଧାର ସ୍ୱରୂପ ହୋଇପାରେ, ତାକୁ ଦୁର୍ବଳତାର ଆଖ୍ୟା ଦେବା ଅସମୀଚୀନ ନୁହେଁ କି ?

ନାରୀର ମହତ୍ତ୍ୱ କେବଳ ମାତୃତ୍ୱରେ ଆବଦ୍ଧ ନୁହେଁ । ଅବସ୍ଥା ବିଶେଷରେ ଭିନ୍ନ ଭିନ୍ନ ସମାଜ ନାରୀକୁ ଯେ ଦୃଷ୍ଟିରେ ଦେଖିଛି ଓ ତାହାଠାରୁ ଯାହା ପାଇବାକୁ ଆଶା ବଳାଇଛି, ସେ ସେହି ସମାଜକୁ ବଞ୍ଚିତ କରିନାହିଁ । ଆଜି ମାତୃତ୍ୱର ଆଦର୍ଶ ପାଶ୍ଚାତ୍ୟ ସମାଜ ନିକଟରେ ଭାରତ ପରି ଆଦୃତ ନୁହେଁ । ପାଶ୍ଚାତ୍ୟ ନାରୀ ତାର ସମାଜରୁ ସମୟୋପଯୋଗୀ ଅଭାବ ଦୂର କରୁଛି ବୋଲି ଜଗତ୍ ଚକ୍ଷୁରେ ଏତେ ବଡ଼ ଆସନ ପାଇଛି । ବୋଧହୁଏ ଭାରତୀୟ ଆଦର୍ଶ ଗ୍ରହଣ କରିଥିଲେ ସେ ସଭ୍ୟତା-ଭିମାନୀ ପାଶ୍ଚାତ୍ୟ ପୁରୁଷର ହୃଦୟକୁ ଅଧିକାର କରି ପାରି ନ ଥାନ୍ତା । ତା ବୋଲି କେହି ନ ଭାବନ୍ତୁ ଯେ ଭାରତୀୟ ରମଣୀର ଆଦର୍ଶ ହୀନ । ଜଳବାୟୁ ସମ୍ପର୍କରେ ସଭ୍ୟତାର ଯେ ସ୍ୱାତନ୍ତ୍ର୍ୟ ଦେଖାଯାଏ, ତାହା ପ୍ରାଚ୍ୟ ଓ ଭାରତବାସୀଙ୍କୁ ତ୍ୟାଗ କରି ନାହିଁ । ସେଥିଯୋଗୁଁ ନାରୀର ଆଦର୍ଶ ମଧ୍ୟ ପୃଥକ୍ ହୋଇ ରହିଅଛି । ଆଜି ଯେଉଁମାନେ ପାଶ୍ଚାତ୍ୟ ଦୃଷ୍ଟିରେ ପ୍ରାଚ୍ୟ ନାରୀକୁ କିମ୍ବା

ପ୍ରାଚ୍ୟ ଦୃଷ୍ଟିରେ ପାଶ୍ଚାତ୍ୟ ନାରୀକୁ ଦେଖିବାକୁ ଚାହାନ୍ତି, ସେମାନଙ୍କୁ ଭ୍ରାନ୍ତ ବୋଲି କୁହାଯାଇପାରେ । ସମ୍ବାଦପତ୍ରମାନଙ୍କରେ ଆଧୁନିକ ଶିକ୍ଷିତା ନାରୀର ଯଥେଷ୍ଟ ପ୍ରଶଂସା ପ୍ରଚାରିତ ହେଉଅଛି । ସାଧାରଣତଃ ପ୍ରାଚ୍ୟର ଯେଉଁ ରମଣୀମାନେ ପାଶ୍ଚାତ୍ୟ ରୀତିରେ ଶିକ୍ଷିତା ହୁଅନ୍ତି, ସେମାନଙ୍କୁ ଆମ୍ଭମାନଙ୍କ ଦେଶରେ ଆଦର୍ଶ ନାରୀ ବୋଲି ମନେ କରିଥାନ୍ତି । କିନ୍ତୁ ପ୍ରଣାଳୀ ଭେଦରେ ଗୋଟିଏ ଦେଶର ଶିକ୍ଷା ଅପର ଦେଶ ପକ୍ଷରେ କେତେଦୂର ଗ୍ରହଣୀୟ ହୋଇପାରେ, ଏକଥା ନ ଭାବି ଗୋଟାଏ ସୁଲଭ ଜନମତକୁ ସମର୍ଥନ କରିବା ଇତର ଲୋକର କାର୍ଯ୍ୟ । ବିଦେଶୀୟ ଶିକ୍ଷା ପ୍ରଣାଳୀର ଗ୍ରହଣୀୟ ବିଷୟମାନଙ୍କୁ ସ୍ୱଦେଶରେ ପ୍ରଚଳନ କରିବା ଲାଗି ଯେ ସଂସ୍କାର ଆବଶ୍ୟକ ହୁଏ, ତାହା ସମାଜ ପକ୍ଷରେ ଅସ୍ୱାସ୍ଥ୍ୟକର ନୁହେଁ । ଏପରି ସଂସ୍କାର ଦ୍ୱାରା ଆଦର୍ଶାନୁସରଣରେ କ୍ଷତି ଘଟିବାର ଆଶଙ୍କା ରହେ ନାହିଁ । କୁମାରୀ "ନାଇଟିଙ୍ଗେଲ" ଙ୍କର ସେବାବ୍ରତ ଓ ରାଣୀ ଦୁର୍ଗାବତୀଙ୍କର ସମର ପ୍ରତିଭା ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ ରମଣୀ ସମାଜରେ ଚିରଦିନ ଆଦୃତ ହେବ ।

ଏହି ଦୁଇ ମନସ୍ୱିନୀ ରମଣୀଙ୍କର ଶିକ୍ଷା ସମଜାତୀୟ ନ ଥିଲା; କିନ୍ତୁ ନାରୀ ହୃଦୟର ପ୍ରକୃତ ମହତ୍ତ୍ୱ ସେମାନଙ୍କର କାର୍ଯ୍ୟରେ ପ୍ରକାଶିତ ହେଲାବେଳେ ପ୍ରଚଳିତ ଶିକ୍ଷାପଦ୍ଧତିର ସଙ୍କୀର୍ଣ୍ଣତା ସ୍ୱତଃ ଦୂର ହୋଇ ଯାଇଥିଲା । ଶିକ୍ଷା ଯଦି ମାନବିକତାର ବିକାଶରେ ସାହାଯ୍ୟ କରୁଥାଏ, ତାହାହେଲେ ଆଦର୍ଶ ଅଭିନ୍ନ ହେଲେ ସୁଦ୍ଧା ସମାଜର କୌଣସି ଅମଙ୍ଗଳ ଘଟେ ନାହିଁ ।

ସାମାଜିକ ବିପ୍ଳବରେ ନାରୀ ଯଥେଷ୍ଟ ପରିବର୍ତ୍ତନ ଆଣେ । ୟୁରୋପ ଓ ଆଧୁନିକ ଭାରତ ଏହାର ପ୍ରତ୍ୟକ୍ଷ ସାକ୍ଷୀ କହିଲେ ଚଳେ । ଆଜି ଏହି ବୈଜ୍ଞାନିକ ଯୁଗରେ ୟୁରୋପୀୟ ନାରୀ ବ୍ୟୋମବିହାରିଣୀ କିମ୍ବା ଭାରତୀୟ ନାରୀ କଲେଜ-ଶିକ୍ଷାର୍ଥିନୀ ହୋଇ ନ ପାରିଲେ ୟୁରୋପ ଓ ଭାରତର ସଭ୍ୟ ଯୁବକମାନେ ସେମାନଙ୍କୁ ଜୀବନ ସଙ୍ଗିନୀ କରିବାକୁ ପଶ୍ଚାତ୍‌ପଦ ହୁଅନ୍ତି । ପୃଥିବୀର ଯାବତୀୟ ସମାଜରେ ବର୍ତ୍ତମାନ ଗୋଟାଏ ବ୍ୟସ୍ତତା ଦେଖାଦେଇଛି । ଏହି ବ୍ୟସ୍ତତା ମଧ୍ୟରେ ସମାଜର ଗୋଟାଏ ଗତି ହେଉଛି ବୋଲି ମନେ ହୁଏ । ବ୍ୟସ୍ତତାର ମାତ୍ରା ବଢ଼ାଇ ଦେବାରେ ନାରୀ କମ୍ ସାହାଯ୍ୟ କରୁନାହିଁ । ସମାଜରେ ପୁରୁଷ ଯେ ବୀଜ ବପନ କରେ, ତାକୁ ଅଙ୍କୁରିତ କରିବା ପାଇଁ ନାରୀର ସାହାଯ୍ୟ ସବୁଦିନେ ଲୋଡ଼ା ହୋଇଥାଏ । ଆର୍ଯ୍ୟ ଋଷିମାନେ ବେଦ ପ୍ରଣୟନ କଲାବେଳେ ନାରୀଠାରୁ ସାହାଯ୍ୟ ପାଇଥିବାର ପ୍ରମାଣ ମିଳେ । ଆଧୁନିକ ସମାଜରେ ନାରୀ ଗୋଟାଏ ସ୍ୱାଧୀନ ଭାବରେ ପ୍ରଣୋଦିତ ହୋଇ ନିଜର କାର୍ଯ୍ୟ ପ୍ରଣାଳୀକୁ ନିୟନ୍ତ୍ରିତ କରିବାକୁ ଚାହେଁ । ଏଥିରେ ତାକୁ ଦୋଷୀ କରି ହେବ ନାହିଁ । ପୁରୁଷଠାରୁ ପ୍ରଥମେ ଏପରି ଇଙ୍ଗିତ ପାଇ ନ ଥିଲେ ନାରୀ ଏ ଦିଗରେ ଅଗ୍ରସର ହେବାକୁ ପ୍ରୟାସିନୀ ହୋଇ ନ ଥାନ୍ତା । ମନୁଷ୍ୟ କୌଣସି କର୍ମ କଲାବେଳେ ପରିଣାମଟାକୁ ସହଜରେ ଦେଖିପାରେ ନାହିଁ । ଅସଂଯତ ଅବସ୍ଥାର ଅଧୀନ ହୋଇ ପୁରୁଷ ଯଦି ନାରୀକୁ ଅନୁସରଣ କରିବାର ସୁବିଧା ଦେଇଥାଏ, ତାହାହେଲେ ସମାଜରେ ନାରୀର ପ୍ରଭୁତ୍ୱ ଦେଖି କାତର ହେବା ଉଚିତ ନୁହେଁ । କ୍ଷୁବ୍ଧତାରେ ନାରୀର ଅନ୍ତରରୁ ଯେ ବାଣୀ ଭାସି ଆସେ, ତାକୁ ପୁରୁଷ ଅନେକ ସମୟରେ ବୁଝିବାକୁ ଅସମର୍ଥ ହୋଇଥାଏ । ସେଥିଯୋଗୁଁ ସମାଜର ଅଧିକାଂଶ ବିଭ୍ରାଟରେ ନାରୀକୁ ଦାୟୀ କରାଯାଏ । ପୁରୁଷ ନାରୀ ହୃଦୟର ନିଭୃତ ଭାବନା ଧରି ପାରୁଥିଲେ ସାମାଜିକ ଅପଖ୍ୟାତିରେ ନାରୀ ଏକାକିନୀ ଦୋଷୀ ସାବ୍ୟସ୍ତ ହେଉ ନଥାନ୍ତା ।

ଜାତୀୟ ସାହିତ୍ୟରେ ସମାଜର ଛବି ପ୍ରତିବିମ୍ବିତ ହେଲାବେଳେ ନାରୀତ୍ୱର ପରିଚୟ ପରିସ୍ଫୁଟ ହୋଇ ଉଠେ । ପ୍ରାଚୀନ ଶିଳ୍ପରେ ଯେ ଉତ୍କର୍ଷ ଦେଖାଯାଏ ଏବଂ ଯାହା ଯେକି ଅତୀତ ସଭ୍ୟତା ତାର ସ୍ୱାତନ୍ତ୍ର୍ୟ ରକ୍ଷା କରିଥାଏ, ସେଥିରେ ନାରୀର ସ୍ଥାନ ଅତି ଉଚ୍ଚ କହିଲେ ଚଳେ । ଉତ୍କଳର ପୁରାତନ ଦେବାଳୟ ମାନଙ୍କରେ ଯେଉଁ ମୂର୍ତ୍ତି ସବୁ ଖୋଦିତ ହୋଇଅଛି ତାହା ଅତୀତ ଓଡ଼ିଆ ସମାଜର ଗୋଟାଏ ବିରାଟ କାହାଣୀ ପ୍ରକାଶ କରେ ନାହିଁ କି ? ଦିନ ଚାଲିଯାଏ । ସମାଜର ଅଲକ୍ଷିତରେ କେତେ ପରିବର୍ତ୍ତନ ଘଟେ । ଅଲକ୍ଷିତରେ ଯାହା ଆସି ଚାଲିଯାଏ, ତାକୁ ଅତୀତ ଘୋଡ଼ାଇ ରଖେ । ଅତୀତର ଉତ୍କଳୀୟ ନାରୀ ଯେ ରୀତି ଅନୁସରଣ କରୁଥିଲା । କିମ୍ବା ତତ୍‌କାଳୀନ ସମାଜରେ ସେ ଯେଉଁ ସ୍ଥାନ ପାଇଥିଲା; ଆଜି ଆମ୍ଭମାନଙ୍କର ସମାଜ ତାକୁ ପୂର୍ଣ୍ଣଭାବେ ଅବଧାରଣ କରି ପାରୁ ନାହିଁ । ଉପେନ୍ଦ୍ର, ଅଭିମନ୍ୟୁ ପ୍ରଭୃତି ପ୍ରାଚୀନ ଓଡ଼ିଆ କବିମାନେ ନାରୀକୁ ଯେପରି ଭାବରେ ଚିତ୍ରିତ କରିଅଛନ୍ତି, ସେଥିରେ ଆଧୁନିକ ଉତ୍କଳବାସୀର ଅନୁକରଣ କରିବାର କିଛି ନ ଥାଇପାରେ; କିନ୍ତୁ ସେହି ପ୍ରାଚୀନ କବିତାମାନଙ୍କରେ ଯେଉଁ ମଧୁର ଉନ୍ମାଦନାର ଆବେଗ ରହିଛି, ଆଜି କେତେଜଣ ଓଡ଼ିଆ କବି ତହିଁର ଆସ୍ୱାଦନ ପାଇଛନ୍ତି ? ଏକାଳର ନାରୀକୁ ଯେ ଚକ୍ଷୁରେ ଦେଖେ ଏବଂ ଜୀବନର ଉପାଦେୟତାରେ ତାର ପ୍ରଭାବ ଯେପରି ଅନୁଭବ କରେ, ପରବର୍ତ୍ତୀ ପତିତ ବଂଶଧରମାନେ ଯେପରି

ଅନୁଭବ କରିପାରନ୍ତି ନାହିଁ । ଯେ ଜାତିର ବିଶାଳ କୀର୍ତ୍ତି ପୃଥିବୀରେ ବିସ୍ମୟ ଜନ୍ମାଉଛି, ତାର ନାରୀସ୍ଥ ଚରିତ୍ର ହୀନ ହୋଇ ନ ପାରେ । ଯାର ବୁଦ୍ଧେ ନାରୀ ଅନ୍ତରର ନିଭୃତ ଆବେଗ । ନାରୀଚରିତ୍ର ଅଙ୍କନ ପ୍ରଣାଳୀରେ ଯେ ରହିଯାଏ ଯେଉଁ ବିଶେଷତ୍ୱ, ତାକୁ ଅବଲମ୍ବନ କରିବା ଦୁର୍ବଳ ଜାତି ପକ୍ଷରେ ସମ୍ଭବ ହୁଏ ନାହିଁ । ଉପେନ୍ଦ୍ରଙ୍କ ନାୟିକା ବର୍ଣ୍ଣନା ପୃଥିବୀର କାବ୍ୟମାନଙ୍କରେ ବିରଳ । ଆଧୁନିକ ଔପନ୍ୟାସିକ କିମ୍ବା କବିମାନେ ପ୍ରାଚୀନ କାବ୍ୟମାନଙ୍କରେ ଆଦି ରସର ବର୍ଣ୍ଣନା ଦେଖି ନାସିକା କୁଞ୍ଚନ କରିପାରନ୍ତି; କିନ୍ତୁ ସେମାନଙ୍କର ବର୍ଣ୍ଣନାରେ ଯେ ଅଶ୍ଳୀଳ ଉଚ୍ଛୃଙ୍ଖଳଭାବ ଦେଖାଯାଏ, ତାହା ପ୍ରାଚୀନ କାବ୍ୟମାନଙ୍କରେ ନାହିଁ କହିଲେ ଚଳେ । ଏଥିରେ ମଧ୍ୟ ସେମାନଙ୍କୁ ଦୋଷୀ କରି ହେବ ନାହିଁ । ଯୁଗ ଧର୍ମରେ ପ୍ରଭାବିତ ନାରୀ ସମାଜ ସଙ୍ଗରେ ଯେପରି ସମ୍ପର୍କ ରଖିଛି, କାବ୍ୟ ଉପନ୍ୟାସ ପ୍ରକୃତିରେ ତଦନୁଯାୟୀ ଚିତ୍ର ପ୍ରକାଶିତ ହେବା ଅସଙ୍ଗତ ନୁହେଁ ।

ସର୍ବଦା ଗୋଟିଏ ଭାବରେ ସମାଜର ସ୍ଥିତି ଆଚରିତ ହୁଏ ନାହିଁ । ପୁରୁଣା ବୋଲି ପ୍ରାଚୀନତାକୁ ଉପେକ୍ଷା କରି ନୂତନତ୍ୱର ମୋହରେ ଭାସିଯିବା ଦ୍ୱାରା ସମାଜର ଗୌରବ ବଢ଼େ ନାହିଁ । ଆଧୁନିକ ସମାଜ ନାରୀକୁ ପୁରୁଷ ସଙ୍ଗେ ସମାନ ଆସନ ଦେଲେ ସୁଦ୍ଧା ତାର ଅନ୍ତରର ବେଦନା ପ୍ରକାଶ କରିବାରେ ସାହାଯ୍ୟ କରେ ନାହିଁ । ସ୍ୱାଧୀନତା ପାଇବା ଛଳରେ ନାରୀ ପୁରୁଷଠାରୁ ଅସଂଯୁକ୍ତ ରହୁଛି । ସେଥିରେ ସମାଜ ତାକୁ ବାଧା ଦେଉନାହିଁ; କିନ୍ତୁ ଗୋପନରେ ବ୍ୟଭିଚାର ହେଲାବେଳେ କେହି ସେଥିପ୍ରତି ଲକ୍ଷ୍ୟ ରଖି ନାହିଁ । ଆଜିକାଲି ଯୁଗରେ ଘୋଡ଼ାଇ ରଖି କୁକାର୍ଯ୍ୟ କରିପାରିଲେ ସଭ୍ୟତାର ହାନି ଘଟେ ନାହିଁ । ପାଶ୍ଚାତ୍ୟ ଶିକ୍ଷାରେ ଗଢ଼ା ଆଧୁନିକ ଭାରତୀୟ ଶିକ୍ଷିତ ସମାଜ ଅନେକ ସମୟରେ ନାରୀକୁ ସୌଖୀନ ବସ୍ତୁ ପରି ଗ୍ରହଣ କରୁଛି । ଏହାଦ୍ୱାରା ନାରୀ ହୃଦୟର ପ୍ରକୃତ ମହତ୍ୱ ବୁଝାଯାଉ ନାହିଁ । ବିଳାସିତା ମୋହରେ ଯେ ସାମୟିକ ଉତ୍ତେଜନା ଆସେ, ସେଥିରେ ହୃଦୟର ମିଳନ ହୁଏ ନାହିଁ । ଏହା ଗୋଟିଏ ଦୁର୍ବଳତାର ଲକ୍ଷଣ । ପୁରୁଷ ନାରୀକୁ ଦୁର୍ବଳା କୁହେ; କିନ୍ତୁ ନିଜେ ଦୁର୍ବଳ ବୋଲି ଧାରଣା କରିପାରେ ନାହିଁ । ନାରୀର ଅନ୍ତର୍ନିହିତ ଆକର୍ଷଣ ପ୍ରଭାବରେ ପୁରୁଷ ଆକୃଷ୍ଟ ହେଉଥିଲେ ଆଜି ସାମାଜିକ ଜୀବନରେ ଔପନ୍ୟାସିକ ବ୍ୟର୍ଥ ପ୍ରଣୟର ଚିତ୍ର ଦେଖାଇ ପାରନ୍ତେ କି ?

ମୌଳିକତା ସମାଜର ଭିତ୍ତି ପରିବର୍ତ୍ତନ ଦ୍ୱାରା ଏହା ସଙ୍କୁଚିତ କିମ୍ବା ବିସ୍ତାରିତ ହୋଇପାରେ । ସମାଜର ସ୍ଥିତି ପକ୍ଷରେ ଯେଉଁ ଖାଣ୍ଟି ଜୀବନଶକ୍ତି ଆବଶ୍ୟକ ହୁଏ, ତାହା ପୁରୁଷ ଓ ନାରୀ ହୃଦୟର ଉତ୍ପତ୍ତି ଲାଭ କରିଥାଏ । ସାମାଜିକ କାର୍ଯ୍ୟ ସାଧନରେ ଉଭୟଙ୍କର ପ୍ରେରଣା ଓ ଉତ୍ସାହ ରହିଥାଏ; ତେଣୁ ଜଣଙ୍କୁ ବାଦ୍ ଦେଲେ ସମାଜର ସ୍ଥିତି ଲୋପ ପାଇଯାଏ । ଅନ୍ୟ ପକ୍ଷରେ ମୌଳିକତାକୁ ଭୁଲିଗଲେ ମଧ୍ୟ ସମାଜ ରକ୍ଷାରେ ବିଶେଷ ବାଧା ଜନ୍ମେ । ଅନେକ ସମାଜ ସଂସ୍କାରକ ଏଥି ପ୍ରତି ଲକ୍ଷ୍ୟ ରଖନ୍ତି ନାହିଁ । ସେମାନେ ଯେଉଁ ପରିବର୍ତ୍ତନ ଆଣନ୍ତି, ତଦ୍ଦ୍ୱାରା ସମାଜରେ କିଛି ସମୟ ପାଇଁ ଗୋଟାଏ ନୂତନତ୍ୱ ଓ ଚଞ୍ଚଳତା ଆସେ । ସାଧାରଣ ଲୋକେ ନିର୍ବିଘ୍ନରେ ପ୍ରଚଳିତ ସାମାଜିକ ପ୍ରଥାମାନଙ୍କୁ ପଦଦଳିତ କରି ନୂତନତ୍ୱ ସନ୍ଧାନରେ ବ୍ୟସ୍ତ ହୋଇ ପଡ଼ନ୍ତି; କିନ୍ତୁ ଶେଷରେ ପାଆନ୍ତି କଅଣ ? ଯେଉଁ ନୂତନତ୍ୱ ପ୍ରଥମେ ଚକ୍ଷୁକୁ ଝଲସାଇ ଦେଇଥାଏ, ତାହା କେଉଁଆଡ଼େ ଲୁଚିଯାଏ; ଅତୀତର ଉଦ୍‌ବୋଧନ ପୁଣି ଆସି ସମାଜକୁ ଜାଗ୍ରତ କରେ । ଆଜି ଆମ ଦେଶର କେତେକ ସ୍ୱାଧୀନତା ପ୍ରୟାସିନୀ ନାରୀ ସମାଜରେ ଗୋଟାଏ ବିପ୍ଳବ ଆଣିବାକୁ ଚାହାନ୍ତି । ଆର୍ଥିକ, ରାଜନୈତିକ ଓ ଅନ୍ୟାନ୍ୟ ବିଷୟରେ ଅଧିକାରିଣୀ ହେବାକୁ ସେମାନଙ୍କର ପ୍ରବଳ ଆକାଂକ୍ଷା ଜନ୍ମିଲିଣି । ପୁରୁଷର ସଙ୍କୀର୍ଣ୍ଣତା ଓ ସ୍ୱାର୍ଥସିଦ୍ଧି ସେମାନଙ୍କୁ ଏ ଦିଗରେ ଅଗ୍ରସର କରାଇ ପାରିଥାଏ; କିନ୍ତୁ ସେମାନଙ୍କର ଭାବିବା ଦରକାର ଯେ, ଭାରତୀୟ ରମଣୀର ଆଦର୍ଶ ପାଶ୍ଚାତ୍ୟ ଆଦର୍ଶକୁ ଅନୁସରଣ କରି ଗଠିତ ହେବା ଆଦୌ ଉଚିତ ନୁହେଁ । ତଦ୍ଦ୍ୱାରା ସମାଜର ମୌଳିକତା ନଷ୍ଟ ହୋଇଯିବାର ଯଥେଷ୍ଟ ସମ୍ଭାବନା ଅଛି । ଭାରତରେ ପୁରୁଷ ଓ ନାରୀର ଆଦର୍ଶ ସର୍ବଦିନେ ପୃଥକ୍ ରହିବ । ପାଶ୍ଚାତ୍ୟ ସମାଜ ସଙ୍ଗେ ଭାରତୀୟ ସମାଜର ସାଦୃଶ୍ୟ ରକ୍ଷା କରିବାକୁ ଯାଇ ମୌଳିକତା ଲୋପ କରିଦେଲେ ଭାରତୀୟ ନାରୀ ଯେଉଁ ସ୍ୱାତନ୍ତ୍ର୍ୟ ଲୋଡ଼ୁଛି, ତାହା ମରୀଚିକା ପରି ସର୍ବଦା ଦୂରକୁ ଅପସରି ଯାଉଥିବ ।

ଅନେକ ସମୟରେ ଆଦର୍ଶକୁ ବହୁଦୂରରେ ରଖି ଦେଶାଚାର ସାମାଜିକ ନିୟମକୁ ନିୟନ୍ତ୍ରିତ କରିଥାଏ । ପଲ୍ଲୀଜୀବନ ସହିତ ସଂଶ୍ଳିଷ୍ଟ ହେଲେ ଏହାର ପ୍ରକୃଷ୍ଟ ପରିଚୟ ମିଳେ । ପଲ୍ଲୀର ନାରୀ ଅତୀତ ଆଦର୍ଶକୁ ଭୁଲିଗଲେ ସୁଦ୍ଧା ଗୋଟାଏ ନିଷ୍ଠା ଓ

ଜୀବନକୁ ପ୍ରଭାବିତ କରିଥାଏ । ଜୀବନର କ୍ଷୁବ୍ଧତା ପଲ୍ଲୀ ନାରୀ ପ୍ରାଣରେ ଆସେ; କିନ୍ତୁ କୌଣସି ସମାଜ-ବିପ୍ଳବକୁ ବରଣ କରି ପୁରୁଷ ଉପରେ ଆଧିପତ୍ୟ ବିସ୍ତାର କରିବାକୁ ସେ ସହଜରେ ପ୍ରୟାସିନୀ ହୁଏ ନାହିଁ । ସମାଜର ଭିତ୍ତି ପଲ୍ଲୀରେ ଥାଏ । ପଲ୍ଲୀ ନାରୀ ଜୀବନରେ ଯେ ମୌଳିକତା ଲକ୍ଷିତ ହୁଏ, ତାକୁ ଶିକ୍ଷିତା ନାରୀ ଅନାଦର କରିପାରେ; କିନ୍ତୁ ନାରୀତ୍ୱର ବିଶିଷ୍ଟ ଉପାଦାନ ମୌଳିକତା ଅଭାବରେ ଅସ୍ପଷ୍ଟ ହୋଇ ରହିଯାଏ । ବୀରପ୍ରସବିନୀ ନାରୀ ସମାଜର ଶକ୍ତି-ଜନୟିତ୍ରୀ । ସେ ମୌଳିକତାକୁ ସମୂଳେ ତ୍ୟାଗ କଲେ ସମାଜ ଆଦୌ ତିଷ୍ଠି ରହିପାରିବ ନାହିଁ । ଉପର୍ଯ୍ୟୁକ୍ତ ଦୃଷ୍ଟିରେ ଦେଖିବାକୁ ଗଲେ ନାରୀର ସ୍ଥାନ ସମାଜରେ ପୁରୁଷଠାରୁ କୌଣସି ଅଂଶରେ ହୀନ ନୁହେଁ ବୋଲି ବୁଝାଯିବ ।

# ନାରୀର ସ୍ୱାତନ୍ତ୍ର୍ୟ

ସମସ୍ତଙ୍କର ଦୃଷ୍ଟି ସମାନ ନୁହେଁ । ଆଜକାର ଅସାମଞ୍ଜସ୍ୟ କାଲିକ ନ ଥିବ । ଏକ ମୁହୂର୍ତ୍ତର ସ୍ପନ୍ଦନ ଅନ୍ୟ ମୁହୂର୍ତ୍ତକୁ ରହେ ନାହିଁ । ବେଗର ସମତା ସହିତ ପରିବର୍ତ୍ତନର କୌଣସି ସମ୍ପର୍କ ନାହିଁ । ସମଜାତୀୟ ପରିବର୍ତ୍ତନ-ପ୍ରଣାଳୀ ପ୍ରତ୍ୟେକ ପଦାର୍ଥ-ବିଶେଷରେ ଯେ ଅତି ଦୃଷ୍ଟ ଅସାମଞ୍ଜସ୍ୟ ରହିଯାଏ, ତାକୁ ଅନୁସରଣ କରି ମନୁଷ୍ୟ ଦେଖେ, ସେ ନିଜେ ଯେଉଁ ଦୃଷ୍ଟିରେ ଜଗତଟାକୁ ଦେଖୁଛି, ସମସ୍ତେ ସେପରି ଦେଖୁ ନାହାନ୍ତି । ସେଥିଯୋଗୁଁ ସମସ୍ତେ ଏକ ଦୃଷ୍ଟିର ଅଧୀନ ନୁହନ୍ତି । ଏହି ସୂତ୍ରରେ ଦେଖିବାକୁ ଗଲେ ସମାଲୋଚକର ସ୍ଥାନ ନାହିଁ । ଜଗତର ପୁଞ୍ଜୀଭୂତ ଅସାମଞ୍ଜସ୍ୟ ମଧ୍ୟରେ ଯେ ସୌନ୍ଦର୍ଯ୍ୟର ବିକାଶ ସମ୍ଭବ ହୋଇପାରେ, ତହିଁର ନିଦର୍ଶନ ଯେ କୌଣସି ଅସାମଞ୍ଜସ୍ୟରୁ ବାଦ୍ ଯାଏ ନାହିଁ । ଅସାମଞ୍ଜସ୍ୟ ରକ୍ଷା ବିଧିର ନିୟମ ଓ ସୌନ୍ଦର୍ଯ୍ୟର ସୋପାନ ।

ନାରୀ ସେହି ସୁମହତ୍ ସୋପାନର ଅଧିକାରିଣୀ ହୋଇ ଆଜ ଜଗତରେ ଗୋଟିଏ ଭାବାନ୍ତର ଆଣିବାକୁ ଚାହେଁ । ଭାବ କେବଳ ନୁହେଁ; କାର୍ଯ୍ୟରେ ଭାବର ପରିଣତି ଦେଖାଇବାକୁ ଯାଇ ସେ ଅନେକ ସମୟରେ ଠିକ୍ ପଥ ନିର୍ଣ୍ଣୟ କରିପାରୁ ନାହିଁ । ଉଦ୍ଦାମ ଭାବ ପୋଷଣ କରି ନାରୀ ରହେ ପୁରୁଷ ସହିତ ସମ୍ପୃକ୍ତ କିମ୍ବା ଚିର ଦିନ ପାଇଁ ସେ ପୁରୁଷକୁ ହୃଦୟରୁ ପୋଛିଦେଇ ନିଜର ମୁକ୍ତିର ସନ୍ଧାନରେ ଚାଲିଯାଏ । ତେବେ ପୁରୁଷ ଓ ନାରୀର ସମ୍ପର୍କ କଅଣ ଏତେ ଜଟିଳ ଓ ରହସ୍ୟମୟ ? ବାସ୍ତବିକ ନାରୀ ଓ ପୁରୁଷର ସମ୍ପର୍କଟା ସୃଷ୍ଟି କାଳ ଅଚ୍ଛେଦ୍ୟ ହେଲେ ସୁଦ୍ଧା ଗୋଟାଏ କୁହେଳିକାରେ ସର୍ବଦା ଆଚ୍ଛନ୍ନ ହେଲାପରି ଜଣାଯାଏ ।

ବର୍ତ୍ତମାନ ନାରୀ ସମାଜ ନିକଟରେ ଆତ୍ମବାଣୀ ପ୍ରକାଶ କରିବାକୁ ଯାଇ ପୁରୁଷକୁ ଯେପରି ଭାବରେ ଦୋଷୀ ମନେ କରୁଛି, ସେପରି ଭାବ ତା ମନରୁ ଦୂର ହେବା ଉଚିତ୍ । ନାରୀ ପୁରୁଷ ସଙ୍ଗେ ସମତା ଲୋଡ଼ି ତା ଦୋଷରାଶି ସଙ୍ଗେ ନିଜର ଗୁଣରାଶିକୁ ମିଳାଇଦେଲେ ସେ ମହତ୍ତ୍ୱ ହୋଇ ନ ପାରେ । ଯଦି ନାରୀର ପୁରୁଷ ସହିତ ସମାନ ସ୍ଥାନ ଅଧିକାର କରିବାର ଦାବୀ ଥାଏ, ତାହାହେଲେ ଏକ ଭୂମିକାରେ ନାରୀ ରହିବ ପୁରୁଷ ଠାରୁ ପୃଥକ୍ । ପୁନଶ୍ଚ ଦୁଇଟି ଅସମାନ ବସ୍ତୁର ମିଳନରେ ଯଦି ଅନନ୍ତ ସୌନ୍ଦର୍ଯ୍ୟର କଳ୍ପିତ ଆଭା ଦେଖାଯାଉଥାଏ; ତାହାହେଲେ ସେହି ମିଳନଟି—ନାରୀ ଓ ପୁରୁଷର । ଅନେକ ସମୟରେ ଏ ମିଳନଟା ହୁଏ ଜୀବନର ଭିତ୍ତିଭୂମି ! ଏହାରି ଉପରେ ମାନବ ଜାତିର ଅମର ଇତିହାସ ଗଢ଼ି ହୋଇ ଉଠେ । ଆଦର୍ଶର ତାରତମ୍ୟ ଅନୁସାରେ ସାମାଜିକ ବିପ୍ଳବ ଆସିପାରେ, କିନ୍ତୁ ଜୀବନର ମିଳନ ଚିହ୍ନଟା ଏହି ବିପ୍ଳବ ପ୍ରତି ବିଶେଷ ଲକ୍ଷ୍ୟ ରଖେ ନାହିଁ ।

ପ୍ରାଚୀନତା ଚାଲିଯାଏ । ନୂତନତ୍ୱ ତାର ସ୍ଥାନ ଅଧିକାର କରେ । ବିଶେଷତ୍ୱ ରହିଯାଏ କେବଳ ପରିବର୍ତ୍ତନରେ । ଏହି ପରିବର୍ତ୍ତନ ଅଧୀନରେ ଆଧୁନିକ ଶିକ୍ଷିତ ସମାଜ ଭକ୍ତ କବିଙ୍କର ବିରହବର୍ଣ୍ଣନାକୁ ଅନାଦର କଲାବେଳେ ଇଂରାଜୀସ୍ତ ଶିକ୍ଷିତ ପୁରୁଷ ଓ ନାରୀ (Compasionate marriage)ର ସାର୍ଥକତା ଅନୁଭବ କରିବା ସଙ୍ଗତ ହୋଇପାରେ । ଆଦର୍ଶର ତାରତମ୍ୟ ଅନୁସାରେ ଓ ବର୍ତ୍ତମାନ ସାଂସାରିକ ଅବସ୍ଥା ଦୃଷ୍ଟିରେ ନାରୀକୁ ସମାନ ଅଧିକାର ଦେଇ କାର୍ଯ୍ୟ ନିର୍ବାହିକା ସମିତିମାନଙ୍କରେ Director କରିଦେଲେ ଦେଶର ଉନ୍ନତି ହୋଇପାରେ; କିନ୍ତୁ Vetoing Powerକୁ ପୁରୁଷ ଯେପରି ନିଜ ହାତରୁ ନ ଛାଡ଼େ ସେଥିପ୍ରତି ଦୃଷ୍ଟି ଦେବା ଉଚିତ । ନାରୀତ୍ୱର ପ୍ରକୃଷ୍ଟ ପରିଚୟ ପୁସ୍ତକ ଲିଖନ, ଆଇନ ପ୍ରଣୟନ କିମ୍ବା ବକ୍ତୃତା ଦାନରେ ମିଳେ ନାହିଁ ।

ଦାତା ଓ ଗ୍ରହୀତାର ସ୍ଥାନ ଏକ ଶ୍ରେଣୀଭୁକ୍ତ ନୁହେଁ । ନାରୀର ସେଥିପ୍ରତି ଟିକିଏ ନଜର ଦେବା ଆବଶ୍ୟକ । ସେ କହିପାରେ ପ୍ରତ୍ୟେକର ଜନ୍ମଗତ ଦାବୀ ଅଛି, ସେ କାହିଁକି ପୁରୁଷର ଅଧିକାରରୁ ବଞ୍ଚିତ ହେବ ? ନାରୀ ଯାହା ଆଜି ପର୍ଯ୍ୟନ୍ତ ପାଇଛି, ପାଇବ କିମ୍ବା ଆଉ ନ ପାଇବ, ସେ କଥା ବିଚାର କରିବାର ଭାର ପୁରୁଷ ଉପରେ ନ୍ୟସ୍ତ ନୁହେଁ କି ? ପ୍ରକୃତ ଶକ୍ତିଶାଳିନୀ ହୋଇଥିଲେ ନାରୀ ଆଜି ପର୍ଯ୍ୟନ୍ତ ପୁରୁଷର ଅପେକ୍ଷା ରଖି ନ ଥାନ୍ତା । କେଉଁଦିନୁ ସେ ନିଜର ସ୍ୱତନ୍ତ୍ର ସମାଜ ଗଢ଼ି ନିଅନ୍ତାଣି । ପୁରୁଷର ଅବିଚାରରେ ନାରୀ ଆଉ ନିଜକୁ ଅସହାୟା ମନେ କରୁ ନ ଥାନ୍ତା । ଗୋଟାଏ ଗାଢ଼ ଅସାମଞ୍ଜସ୍ୟର ଚିହ୍ନ ଚିରଦିନ ପାଇଁ ଅପସାରିତ ହୋଇ ଯାଆନ୍ତାଣି; କିନ୍ତୁ ଏହା କଅଣ ସମ୍ଭବ ? ପୁରୁଷ ଅନ୍ତର ଅପେକ୍ଷା ନାରୀର ଅନ୍ତର ବେଶୀ କୋମଳ । ସ୍ୱାଭାବିକ କୋମଳତାକୁ ଦୂର କରିବା ନାରୀ ପକ୍ଷରେ ଅସମ୍ଭବ । କେତେକ ଅସାଧାରଣ ରମଣୀଙ୍କର କାର୍ଯ୍ୟକଳାପରେ ଏଥିରେ ବ୍ୟତିକ୍ରମ ଦେଖାଯାଇପାରେ । କିନ୍ତୁ ସ୍ୱାଭାବିକ ଗୁଣାନୁଯାୟୀ ନାରୀ ସୃଷ୍ଟି ରକ୍ଷାର ଯେ ଭାର ବହନ କରିଚି, ସେଥିରେ କର୍କଶ କାର୍ଯ୍ୟ ସମ୍ପାଦନ କରିବା ତାର ପ୍ରକୃତି-ବିରୁଦ୍ଧ ପରି ମନେ ହୁଏ । ପୃଥକ୍ Franchise ଦାବୀ କରି ନାରୀ ପୁରୁଷର ସମକକ୍ଷ ହେଉ, କାହାର ଆପତ୍ତି ରହିବ ନାହିଁ; କିନ୍ତୁ ମାତୃତ୍ୱର ଉପେକ୍ଷା କଲେ, ତାର ମୌଳିକତା ଲୋପ ପାଇଯିବ । ପବିତ୍ର ମାତୃଧର୍ମ ପାଳନ ତତ୍ପରତାରେ ନାରୀ ପୁରୁଷର ବିଷ୍ଟ ଉପେକ୍ଷା କଥା ଦୂରେ ଥାଉ; ତାର ନିର୍ମମ ଆଚରଣ ପ୍ରତି ସୁଦ୍ଧା ଭ୍ରୂକ୍ଷେପ କରେ ନାହିଁ । ଆତ୍ମନିର୍ଭରଶୀଳତା ଉଭୟ ପୁରୁଷ ଓ ସ୍ତ୍ରୀ ଚରିତ୍ରରେ ମହତ୍ତ୍ୱ ଆଣେ । ବାହ୍ୟ ଚେଷ୍ଟାମାନଙ୍କ ଉପରେ ଦୃଷ୍ଟି ରଖିଲେ ଅନ୍ତରର ବଳ ପ୍ରତି ବିଶ୍ୱାସ ଜନ୍ମେ ନାହିଁ । ପୁରୁଷ ଯଦି ଏହାକୁ ଲକ୍ଷ୍ୟ କରି ନ ପାରେ, ତାହାହେଲେ ନାରୀ କାହିଁକି ତାକୁ ଅନୁସରଣ କରିବ ? ଆଇନ ବଳ ଏହାର ଉପଯୁକ୍ତ ପ୍ରତିକାର ନୁହେଁ । ନାରୀ ନିଜର ଚରିତ୍ର ବଳରେ ପୁରୁଷଠାରୁ ସହସ୍ର ଗୁଣରେ ବଡ଼ ହୋଇ ପାରିବ । ତାର ଚରିତ୍ରର ମହତ୍ତ୍ୱ ଦେଖିଲେ ପୁରୁଷ ସ୍ୱତଃ ଅବନତ ହୋଇପଡ଼ିବ ।

ପ୍ରାଚ୍ୟ ଓ ପାଶ୍ଚାତ୍ୟ ମିଳନରେ ଯେ ପରିବର୍ତ୍ତନ ଆସୁଛି, ତାହା ଯୁଗୋଚିତ ହୋଇପାରେ, କିନ୍ତୁ ସେଥିରେ ପୁରୁଷ ଓ ନାରୀର କର୍ତ୍ତବ୍ୟ ପନ୍ଥା ସ୍ୱତନ୍ତ୍ର ଭାବରେ ସ୍ଥିରୀକୃତ ହେଲେ କୌଣସି ଅନିଷ୍ଟ ଘଟିବ ନାହିଁ । ଭିନ୍ନ ଭିନ୍ନ ଦେଶର ଜଳବାୟୁ ଓ ସଭ୍ୟତା ଏକ ନୁହେଁ । ତା ବୋଲି ଆଦାନ ପ୍ରଦାନ ପ୍ରଣାଳୀକୁ ବାଦ୍ ଦେବା ଉଚିତ ନୁହେଁ । ତଦ୍ଦ୍ୱାରା ଉନ୍ନତି ପଥରେ ବାଧା ଘଟେ । ଯାହାର ଯାହା ନିଜସ୍ୱ ଥାଏ, ତାକୁ ଲୋପ କରିଦେଇ ପରଧନରେ ବଡ଼ ହେବା ବୁଦ୍ଧିମାନର କାର୍ଯ୍ୟ ନୁହେଁ । ଗୋଟିଏ ଦେଶର ପୁରୁଷ ଯଦି ଅନ୍ୟ ଦେଶର ପୁରୁଷ ସଙ୍ଗେ ନିର୍ବିରୋଧରେ ମିଶି ପ୍ରକୃତିଗତ ଆଦର୍ଶକୁ ନ ଭୁଲେ, ତାହାହେଲେ ନାରୀ ମଧ୍ୟ ସେହି ରୀତି ଅନୁସରଣ କରିପାରେ । ବର୍ତ୍ତମାନ ପାଶ୍ଚାତ୍ୟ ଶିକ୍ଷାଭିମାନୀ କେତେକ ଭାରତୀୟା ନାରୀ ସାମାଜିକ ଆଚାର ଓ ନୀତି ପ୍ରତି ଆଦୌ ଦୃଷ୍ଟି ନଦେଇ ସୁଲଭ ବୈଦେଶିକ ନୀତି ଅନୁସରଣ କରିବାକୁ ବଡ଼ ବ୍ୟଗ୍ର ହେଲେଣି । ଏହା ସେମାନଙ୍କର ଗୋଟିଏ ଭ୍ରମ ବୋଲି ମନେହୁଏ । ଭାରତୀୟ ନାରୀ ପାଶ୍ଚାତ୍ୟ ଶିକ୍ଷା ପାଆନ୍ତୁ, ସେଥିରେ କେହି ଆପତ୍ତି କରିବେ ନାହିଁ; କିନ୍ତୁ ସମ୍ପୂର୍ଣ୍ଣ ପାଶ୍ଚାତ୍ୟ ଭାବରେ ଅନୁପ୍ରାଣିତା ହେଲେ ଜାତୀୟ ଚିନ୍ତା ତରଙ୍ଗରେ ହଠାତ୍ ବାଧା ଆସିବ । ଏହି ବାଧା ଶୁଭ ଫଳ ପ୍ରସବ କରିବ ନାହିଁ । ଗୋଟିଏ ଜାତୀୟ ଚିନ୍ତା ତରଙ୍ଗକୁ କୌଣସି ଏକ ବିଶିଷ୍ଟ ଯୁଗ ସମୂଳେ ପରିବର୍ତ୍ତନ କରିପାରେ ନାହିଁ । ଅନ୍ତରର ମୌଳିକଭାବ ଯେପରି ଶରୀରର ଗଠନକ୍ରିୟା ସୁଦ୍ଧା ସାଧିତ ହୋଇଥାଏ । ସୁତରାଂ ସମଗ୍ର ଜାତି ଏହି ମୌଳିକ ଭାବର ବିକାଶ ମାତ୍ର । ବାହ୍ୟ ଦୃଷ୍ଟିରେ କେହି ଅନ୍ତର ମୌଳିକ ଭାବକୁ ଅନୁସରଣ କରିପାରେ ନାହିଁ । ଭାରତର ନାରୀ ମାତୃଧର୍ମ ପାଳନ ପାଇଁ କୁବେରର ଐଶ୍ୱର୍ଯ୍ୟକୁ ସୁଦ୍ଧା ଭ୍ରୂକ୍ଷେପ କରେ ନାହିଁ; କିନ୍ତୁ ପାଶ୍ଚାତ୍ୟ ନାରୀ ପାଖରେ ଏହି ଭାବ କେତେଦୂର ଗ୍ରହଣୀୟ, ତାହା ଆଧୁନିକ ଭାରତୀୟ ନାରୀକୁ ବୁଝାଇବାକୁ ହେବ ନାହିଁ । ବିଳାସିତା ନାରୀ ଧର୍ମ ବିରୋଧୀ, ବିଶେଷତଃ ବର୍ତ୍ତମାନ ଦେଶର ଅବସ୍ଥା ଦୃଷ୍ଟିରେ ଭାରତୀୟ ନାରୀ ପକ୍ଷରେ ଏହା ଗୋଟାଏ କଣ୍ଟକ । ଅବନତି ଦୂର କରି ନୂତନ ତେଜରେ ଗୋଟାଏ ବୀର ଜାତି ଗଢ଼ିବା ପାଇଁ ନାରୀ ଯେପରି ସାହାଯ୍ୟ କରେ, ପୁରୁଷ ସେପରି କରିପାରି ନାହିଁ । ଜାତି ଗଠନର ସନ୍ଧିସ୍ଥଳରେ ନାରୀ ଯେ ତ୍ୟାଗ ସ୍ୱୀକାର କରେ, ତାହା ଅଧିକାଂଶ ସମୟରେ ପୁରୁଷର ଧାରଣାର ବହିର୍ଭୂତ ହୋଇପଡ଼େ ।

ମନେ ରଖିବାକୁ ହେବ, ଏହି ସନ୍ଧିସ୍ଥଳରେ ନାରୀ ପୁରୁଷ ସହିତ ସମାନ ଆସନ ଦାବୀ କରେ ନାହିଁ । ଭିନ୍ନ ଆଦର୍ଶ ଅବଲମ୍ବନ କରି ସମାନତା ଆଡ଼କୁ ଦୃଷ୍ଟି ରଖିଲେ ସ୍ଖଳନ ପାଇଁ ପଥ ବିସ୍ତୃତ ହୋଇଯାଏ । ସମର କ୍ଷେତ୍ରରେ ବୀରପ୍ରସବିନୀକୁ ବୀରତ୍ୱର ପରିଚୟ ଦେବାକୁ ପଡ଼େ ନାହିଁ । ପୁରୁଷ ଚରିତ୍ରରେ ବୀରତ୍ୱର ଯେ ମହନୀୟତା ବିକଶିତ ହୁଏ, ସେଥି ସକାଶେ ନାରୀ

ଯଥେଷ୍ଟ ତ୍ୟାଗ ସ୍ୱୀକାର କରିଥାଏ । ବିଳାସିତାର ସହଜ ପ୍ରଲୋଭନରେ ନାରୀ ପବିତ୍ର ମାତୃତ୍ୱ ଧର୍ମର ଅଧିକାରିଣୀ ହୋଇପାରେ ନାହିଁ । ନାରୀ ଆଦର୍ଶରେ ସର୍ବଦା ଗୋଟାଏ ସ୍ୱାତନ୍ତ୍ର୍ୟ ରହିଥାଏ, ତାକୁ ଲକ୍ଷ୍ୟ କରି ନ ପାରିଲେ ନାରୀର ଅଧଃପତନ ହୋଇପାରେ । ଜାତିକୁ ଗଠନ କରିବାର ଗୁରୁ ଦାୟିତ୍ୱ କେବଳ ପୁରୁଷ ଉପରେ ନ୍ୟସ୍ତ ନୁହେଁ । ପୁରୁଷ ଓ ନାରୀର ସମ୍ମିଳିତ ଉଦ୍ୟମରେ ମନୁଷ୍ୟତ୍ୱର ଯେଉଁ ପରିଣତି ଆସେ, ସେଥିରୁ ଗୋଟାଏ ବିରୋଧ ଭାବ ସୃଷ୍ଟି କଲେ ଜାତିର ଅମଙ୍ଗଳ ଘଟିବା ସୁନିଶ୍ଚିତ । ଅନ୍ତରର ପ୍ରେରଣା ନ ପାଇ ବାହ୍ୟ ଚଞ୍ଚଳତାବଶତଃ ନାରୀ ଓ ପୁରୁଷର ମିଳନରେ ସାମାଜିକ ଜୀବନ ଆବିଳ ହୋଇପାରେ । ସୁତରାଂ ଦେଶର ଶିକ୍ଷା ପଦ୍ଧତିରେ ଦୁଇଟି ଭିନ୍ନ ମାର୍ଗ ରହିବା ବାଞ୍ଛନୀୟ । ଆଧୁନିକ ସମାଜ ସଂସ୍କାରକମାନଙ୍କ ମଧ୍ୟରୁ କେହି କେହି ପୁରୁଷ ଓ ସ୍ତ୍ରୀ ଶିକ୍ଷାକୁ ଗୋଟାଏ ସମାନ ପଦ୍ଧତିରେ ଚଳାଇବାକୁ ଇଚ୍ଛା କରନ୍ତି କିନ୍ତୁ ଏହା କେତେଦୂର ସମାଜ ପକ୍ଷରେ ଉପଯୋଗୀ ହେବ ତାହା ଗମ୍ଭୀର ଚିନ୍ତାର ବିଷୟ । କୌଣସି ମତର ପ୍ରତିଷ୍ଠା ପାଇଁ ଅବଶ୍ୟ ଯୁକ୍ତିର ଅଭାବ ନାହିଁ । ଅନେକ ସମୟରେ ଯୁକ୍ତିବଳ ଦ୍ୱାରା ସ୍ୱାଭାବିକ ପ୍ରବୃତ୍ତିର କଥା ବାଦ୍ ଦିଆଯାଇଥାଏ । ବର୍ତ୍ତମାନ ଯୁଗରେ ଗୋଟାଏ ଆବରଣର ଅନ୍ତରାଳରେ ସବୁ ଅଘଟଣ ଘଟଣା ଘଟି ଯାଉଛି; କିନ୍ତୁ ସମାଜ କଣ ସେଥିପାଇଁ ଲକ୍ଷ୍ୟ ରଖୁଛି ? ବାହାରର ବେଷ୍ଟନୀ ସବୁ ସମୟରେ ଅନ୍ତରର ଭାବକୁ ଘୋଡ଼ାଇ ରଖିପାରେ ନାହିଁ । ତେଣୁ ସ୍ୱଭାବଗତ ଦୁର୍ବଳତା ସବୁ ଶିକ୍ଷାଦୀକ୍ଷାକୁ ପରାସ୍ତ କରି ଅନେକ ସମୟରେ ବଡ଼ ବ୍ୟଗ୍ର ହୋଇଉଠେ । ଏପରି ବିଷମ ସମୟରେ ପୁରୁଷ କିମ୍ବା ନାରୀର କର୍ତ୍ତବ୍ୟଜ୍ଞାନ ଯଦି ଲୋପ ପାଇଯାଏ, ତାହାହେଲେ ସମାଜ ସଂସ୍କାରକ କଣ ଦାୟୀ ହେବେ ? ଥରେ ସ୍ରୋତର ଗତି ଗୋଟାଏ ଦିଗରେ ଧାବିତ ହେଲେ ତାକୁ ରୋଧ କରିବା ସହଜ ନୁହେଁ । ଆଜି ଯେଉଁମାନେ ପୁରୁଷ ଓ ସ୍ତ୍ରୀକୁ ସମାନ ଆସନରେ ବସାଇ ଦେବାକୁ ଚାହାନ୍ତି, ସେମାନଙ୍କର ଟିକିଏ ଏଥି ପ୍ରତି ଦୃଷ୍ଟି ଦେବା ସମୀଚୀନ ବୋଧହୁଏ ।

ମନୁଷ୍ୟତ୍ୱର ବିକାଶ ପାଇଁ ଗୋଟିଏ ସର୍ବବାଦି ସମ୍ମତ ମାର୍ଗ ନିର୍ଦ୍ଦେଶ କରାଯାଇ ନାହିଁ । ଏଥିପାଇଁ ବହୁ ଜାତିର ସମନ୍ୱୟରେ କୌଣସି ସାଧାରଣ ପଥ ଅନ୍ୱେଷଣ କରିବା ମଧ୍ୟ ସମ୍ଭବ ନୁହେଁ । ବ୍ୟକ୍ତିଗତ ଭାବରେ ଦେଖିବାକୁ ଗଲେ ଗୋଟିଏ ଜୀବନର ଘଟଣାବଳୀ ସ୍ୱତନ୍ତ୍ର ଅପର ଜୀବନ ସହିତ ସାମଞ୍ଜସ୍ୟ ରକ୍ଷା କରିଥାଏ । ଜୀବନର ମିଳନ କ୍ଷେତ୍ରରେ ପୁରୁଷ ଓ ନାରୀର ବିଭିନ୍ନ ଆଦର୍ଶ ଯେଉଁ ଏକତ୍ୱ ପ୍ରତିପାଦନ କରେ, ତାହା ମନୁଷ୍ୟତ୍ୱ ବିକାଶ ପାଇଁ ଯଥେଷ୍ଟ ସାହାଯ୍ୟ କରିଥାଏ । ମନୁଷ୍ୟର ଶାରୀରିକ, ମାନସିକ ଓ ଆଧ୍ୟାତ୍ମିକ ଉନ୍ନତି ପାଇଁ ଯେଉଁ ଉପାଦାନ ସବୁ ଆବଶ୍ୟକ ହୋଇଥାଏ, ସେଗୁଡ଼ିକ ଉଭୟ ପୁରୁଷ ଓ ନାରୀ ଯୋଗାଇଥାନ୍ତି । କୌଣସି ବିଶିଷ୍ଟ ପୁରୁଷ କିମ୍ବା ନାରୀର ଜୀବନ ଖୁବ୍ ମହତ୍ ହୋଇପାରେ, ଅସାଧାରଣ ଶକ୍ତି ବିକାଶ କରି ଏହା ଆଦର୍ଶ ସ୍ଥାନ ଅଧିକାର କରିପାରେ; କିନ୍ତୁ ଗୋଟାଏ ଅପୂର୍ଣ୍ଣତା ଅଲକ୍ଷିତରେ ରହିଯାଏ, ଯାହାକୁ ସାଧାରଣ ଦୃଷ୍ଟି ସହଜରେ ଆବିଷ୍କାର କରିପାରେ ନାହିଁ । ସତୀତ୍ୱର ଅମରଗାଥା ରାମାୟଣରେ ବର୍ଣ୍ଣିତ ଅଛି । ପତିବ୍ରତା ସୀତାଦେବୀଙ୍କୁ ଯେଉଁ ବିଶ୍ୱବରେଣ୍ୟ ଆସନ ଦିଆହୋଇଅଛି, ତାହା ରାମଚରିତ୍ର ବ୍ୟତୀତ ନିଶ୍ଚୟ ଶ୍ରୀହୀନ ବୋଧ ହୁଅନ୍ତା । ମାନବର ଶ୍ରେଷ୍ଠ ଆଦର୍ଶକୁ ରାମ ଓ ସୀତା ଦୁଇ ବିଭିନ୍ନ ଦିଗରୁ ପୂର୍ଣ୍ଣ କରିଅଛନ୍ତି, ଆଜି ଏ ନବଯୁଗରେ ନାରୀର ଦୃଷ୍ଟି ଏ ଦିଗକୁ ଯାଉନାହିଁ । ବିଶେଷତଃ ଭାରତୀୟ ନାରୀର ଯେ ଗୋଟାଏ ସ୍ୱତନ୍ତ୍ର ଆଦର୍ଶ ଅଛି, ତାକୁ ସେ ଭୁଲିଯାଇ ପାଶ୍ଚାତ୍ୟ ସଭ୍ୟତା ମୋହରେ ନିଜକୁ ବିଦେଶୀ ଛାଞ୍ଚରେ ଗଢ଼ିନେବା କଣ ଉଚିତ ? ଟିକିଏ ଦୃଷ୍ଟି ସଞ୍ଚାଳନ କଲେ ଭାରତୀୟ ନାରୀ ଦେଖିବ, ପାଶ୍ଚାତ୍ୟ ଜାତି, ନାରୀ ସମସ୍ୟା ଘେନି କେତେ ଦୂର ବିବ୍ରତ । ସ୍ୱାଧୀନତା-ପ୍ରୟାସିନୀ, ପାଶ୍ଚାତ୍ୟ ନାରୀ ପୁରୁଷକୁ ଉନ୍ନତି ପଥରୁ ଅନ୍ତର କରି ଦେଇପାରେ; କିନ୍ତୁ ଭାରତୀୟ ନାରୀ ତାର ପାଶ୍ଚାତ୍ୟ ଭଗିନୀକୁ ଅନୁସରଣ କଲେ ନିଜ ଆଦର୍ଶରୁ ବିଚ୍ୟୁତ ହେବ । ଆଧୁନିକ ସଭ୍ୟତାର ଚରମ ସ୍ଥାନ ଅଧିକାର କରି 'ଜର୍ମାନୀ' ଆଜି ନାରୀକୁ ସ୍ୱତନ୍ତ୍ର ପଥ ଦେଖାଇଲାଣି । ପ୍ରବଳ 'ହିଟଲରିଜିମ୍' ନାରୀ ଆଦର୍ଶକୁ ପୁରୁଷ ସହିତ ସମାନ ରଖିବାକୁ ଚାହେଁ ନାହିଁ । ଜାତିର ସର୍ବାଙ୍ଗୀନ ଉନ୍ନତିକଳ୍ପେ ନାରୀ କର୍ମକ୍ଷେତ୍ରରେ ପୁରୁଷଠାରୁ ପୃଥକ୍ ରହିବ । ଜର୍ମାନୀର ଅନୁସୃତ ପଥ ସମସ୍ତ ପାଶ୍ଚାତ୍ୟ ଜାତି ପକ୍ଷରେ ଦିନେ ଅବଲମ୍ବନୀୟ ହୋଇପାରେ ।

ଯୁଗର ପରିବର୍ତ୍ତନ ସଙ୍ଗେ ରୁଚିର ପରିବର୍ତ୍ତନ ଘଟିଥାଏ । ସୁଦୂର ଅତୀତ କଥା ଦୂରେଥାଉ, ବିଗତ ଶତାବ୍ଦୀରେ ନାରୀ ଓ ପୁରୁଷ ମଧ୍ୟରେ ଯେଉଁ ଅସଙ୍ଗତ ବ୍ୟବଧାନ ଥିଲା, ତାହା ଆଜି ଅନେକ ଦୂର ଅପସାରିତ ହୋଇଗଲାଣି । ରକ୍ଷଣଶୀଳ ପ୍ରାଚ୍ୟ ଜଗତ୍ ବର୍ତ୍ତମାନ ନାରୀକୁ ଅନେକ ପରିମାଣରେ ସ୍ୱାଧୀନତା ଦେଲାଣି । ପୁରୁଷର ଅଗ୍ରଗତିରେ ନାରୀ କେବେ ବାଧା

ବାଧା ଦେଉନାହିଁ; ବରଂ ପୁରୁଷର ସଙ୍କୀର୍ଣ୍ଣ ଦୃଷ୍ଟି ନାରୀର କର୍ମକ୍ଷେତ୍ରକୁ ଅନେକ ସମୟରେ ଗୋଟାଏ କ୍ଷୁଦ୍ର ସୀମା ମଧ୍ୟରେ ଆବଦ୍ଧ କରି ଦେଇଛି । ଏହା ଦେଖି ନାରୀର ପୁରୁଷକୁ ସ୍ୱାର୍ଥପର ଭାବିବା ସ୍ୱାଭାବିକ ହୋଇପାରେ; କିନ୍ତୁ ଦୁହିଁଙ୍କ ମଧ୍ୟରେ ପ୍ରକୃତିଗତ ଯେଉଁ ବ୍ୟବଧାନ ଅଛି, ତାକୁ ଦୂର କରି ନାରୀର ସ୍ୱାତନ୍ତ୍ର୍ୟ ଲୋଡ଼ିବା ଉଚିତ ନୁହେଁ । ସବୁ ଯୁଗରେ ନାରୀ ପୁରୁଷର ସହଧର୍ମିଣୀ ରୂପେ ଜଗତର ହିତ ସାଧନ କରି ଆସିଅଛି । ପୁରୁଷର କର୍ମଜୀବନକୁ ଗୌରବମୟ କରିବା ପାଇଁ ତାର ତ୍ୟାଗ ଓ ପ୍ରେରଣା ଏକାନ୍ତ ଆବଶ୍ୟକ । କଠିନ ଜୀବନ ସଂଗ୍ରାମରେ ପୁରୁଷ ଯେଉଁସବୁ କାର୍ଯ୍ୟ ସଂପାଦନ କରେ, ସେଥିରେ ନାରୀର ସାହଚର୍ଯ୍ୟ କମ୍ ନୁହେଁ । ଜୀବନର ସରସ ଦିଗରେ ଯଦି ଦୁହିଁଙ୍କର ମିଳନ ଲକ୍ଷ୍ୟ ହୋଇଥାଏ, ତାହାହେଲେ କେହି କାହାରିକୁ ତ୍ୟାଗ କରି ପାରିବେ ନାହିଁ । କେବଳ ଜୀବନ୍ତୁ ଉପରେ ଦୁହିଁଙ୍କର ପବିତ୍ର ମିଳନ ସମ୍ଭବ ନୁହେଁ, ତେଣୁ ଗୋଟାଏ ସାମାଜିକ ଚବଶା ଦ୍ୱାରା ଦୁହିଁଙ୍କୁ ଟିକିଏ ପୃଥକ୍ ରଖାଯାଇଅଛି ଓ ତଦନୁଯାୟୀ ଦୁଇଟି ଭିନ୍ନ କର୍ମମାର୍ଗ ମଧ୍ୟ ନିରୂପଣ କରାଯାଇଅଛି, ଏହାଦ୍ୱାରା ପୁରୁଷ କିମ୍ବା ନାରୀର ଆତ୍ମବିକାଶ ପାଇଁ କୌଣସି ବାଧା ଆସେ ନାହିଁ, ଅନେକ ସମୟରେ କୁସଂସ୍କାରର ପ୍ରଭାବ ଦୁହିଙ୍କର ସଂପର୍କକୁ ଯଥାର୍ଥ ରୂପେ ଜ୍ଞାପନ କରାଇ ଦିଏ ନାହିଁ । ଏଥିଯୋଗୁଁ ନାରୀ ନିଜକୁ ଅବହେଳିତ ମନେକରି ବିଦ୍ରୋହୀ ହୋଇଉଠେ; କିନ୍ତୁ ମାନସିକ ବିକାରର ବଶବର୍ତ୍ତିନୀ ନାରୀ ଯେଉଁ ସ୍ୱାତନ୍ତ୍ର୍ୟ ଲୋଡ଼େ, ତାହାର ମର୍ମ ସେ ବୁଝି ନ ଥାଏ । ସ୍ୱାଭାବିକ ଅବସ୍ଥା ବେଶୀ ଦିନ ଘୋଡ଼ାଇ ହୋଇ ରହେ ନାହିଁ; ଯୁଗର ପରିବର୍ତ୍ତନ ସଙ୍ଗେ ସଙ୍ଗେ ଏହା ବୁଲିଯାଏ ।

ଆଲେଚ୍ୟ ବିଷୟର ଧାରାରୁ ନାରୀର କୌଣସି ସ୍ୱାତନ୍ତ୍ର୍ୟ ନାହିଁ ବୋଲି ଅନୁମିତ ହୋଇପାରେ । ବାସ୍ତବିକ ତାହା ନୁହେଁ । ବିଶ୍ୱର ଅସୀମତା ଦୃଷ୍ଟିରେ ନରନାରୀ ପରି ଦୁଇଟି ଜୀବନର ପରିସର କଳ୍ପନା କରି ବିରୁଦ୍ଧଭାବ ଆଣିବାର ନାରୀ ହୃଦୟର ସଙ୍କୀର୍ଣ୍ଣତା ଆଜି ସ୍ୱାତନ୍ତ୍ର୍ୟ ଲୋଡ଼ୁଛି । ସେ ଯଦି ଜାଣନ୍ତା ତାର ସ୍ୱାତନ୍ତ୍ର୍ୟ ସେହି ବିଶ୍ୱ ବିଶାଳରେ ନିହିତ, ତାହାହେଲେ ସେ ପୁରୁଷ ସହିତ ସାମଞ୍ଜସ୍ୟ ବିଧାନ କରିବାକୁ ପ୍ରୟାସିନୀ ହୁଅନ୍ତା ନାହିଁ । ଏ ମୁକ୍ତି କଣ ପୁରୁଷ ହାତରେ ଅଛି ? ଚିରଦିନ ଅଛି । ନରନାରୀର ପ୍ରେମ-ନିଗଡ଼ରେ ଏହା ଆବଦ୍ଧ ଅଛି ।

ଏହାର ସନ୍ଧାନ ଯେ ପାଇ ନାହିଁ, ସେ କେବଳ ମରୀଚିକାରେ ଦୌଡ଼ୁଥାଏ । ମରୀଚିକାରେ ଦୌଡ଼ିଲାବେଳେ ଶୁଷ୍କକଣ୍ଠରୁ ଚିତ୍କାର ଆସେ—ମୁକ୍ତି । ନାରୀ ନିପୀଡ଼ିତା ହେଲେ ତା ହୃଦୟକନ୍ଦରରୁ ଯେଉଁ କରୁଣ ବାଣୀ ଭାସି ଆସେ, ତାହା ଶତ ବିଶ୍ୱାସିକା ଗାଥା ଗାଇ ଦେଇଯାଏ । ପୁରୁଷ ଶୁଣେ, ଗୋଟାଏ ବିଷମ ରାଗିଣୀ ତାର ହୃଦୟ ତନ୍ତ୍ରୀରେ ସମତା ଲୋଡ଼ୁଛି । ଅସମାନତାରେ ସମାନତା ଆଣିବା ପୁରୁଷର ପୌରୁଷର ପରିଚୟ ଦିଏ ନାହିଁ କି ? ଯାହାର ସମାନତା ଦେବାର ଅଧିକାର ଅଛି, ତାହାଠାରୁ ସ୍ୱାତନ୍ତ୍ର୍ୟ ଲୋଡ଼ିବାର ଆବଶ୍ୟକ କଅଣ ? ନାରୀର ପୁରୁଷ ପରି ଉଦାରତା ଥିଲେ ସେ ସ୍ୱାତନ୍ତ୍ର୍ୟର କଥା ସୁଦ୍ଧା ମୁହଁରେ ଆଣନ୍ତା ନାହିଁ । ପୁରୁଷ କେତେଥର ନାରୀଠାରୁ ସ୍ୱାତନ୍ତ୍ର୍ୟ ଲୋଡ଼ିଛି ? ସ୍ୱାତନ୍ତ୍ର୍ୟ ଯଦି ପ୍ରବଳର ଧନ ହୋଇଥାଏ, ତାହାହେଲେ ନାରୀ ପୁରୁଷ ନିକଟରେ ଶତ ବିଦ୍ରୋହ କଲେ ସୁଦ୍ଧା ପାଇବ ନାହିଁ । ପୁରୁଷର କଥା ପଦକରେ ନାରୀ ଚୁପ୍ ହୋଇ ରହିବ । ସୀତା ଦେବୀ ପତିର ଦାରୁଣ ନିର୍ବାସନ ଦଣ୍ଡ ବିନା ଅପରାଧରେ ବରଣ କରି ନେଲାବେଳେ ପତିପ୍ରେମ କିପରି ତାଙ୍କର ଉଚ୍ଛ୍ୱସିତ ହୋଇ ଉଠିଥିଲା ଓ ଯାହାକୁ ବର୍ଣ୍ଣନା କରିବାକୁ ଯାଇ ଅମର କବି ବାଲ୍ମୀକି ଅମର ହେଲେ, ତାହା ବର୍ତ୍ତମାନ ଯୁଗର ନାରୀର ଧାରଣାର ବିଷୟ ନୁହେଁ ? ଦୂର ଅତୀତ ଓ ସମଗ୍ର ନାରୀଜାତି କଥା ଛାଡ଼ିଦେଇ ଆମ୍ଭମାନଙ୍କର ଉତ୍କଳର ଅବସ୍ଥା ଦେଖିଲେ ମନରେ ବିଷାଦ ଆସେ । ଆଜି ଉତ୍କଳର ପୁରୁଷ ପଦବାଚ୍ୟ କେତେଜଣ ଅଛନ୍ତି, ତାହା କୁହାଯାଇ ପାରୁନାହିଁ, ଅର୍ଥନୈତିକ ଦୁରବସ୍ଥାରେ ଦେଶର ଜନସାଧାରଣ କେତେଦୂର ମୁହ୍ୟମାନ, ତାହା ସମସ୍ତେ ବୁଝି ସାରିଲେଣି । ଉତ୍କଳର ନାରୀ ସ୍ୱାତନ୍ତ୍ର୍ୟ ପାଇଲେ ଯଦି ଏହାର ପ୍ରତିକାର ବିଧାନ କରିପାରେ, ତାହାହେଲେ ତାର ଇଚ୍ଛା ବିରୁଦ୍ଧରେ ପୁରୁଷର କୌଣସି ବାଧା ଜନ୍ମାଇବା ଅବିଧେୟ । ନାରୀ ସ୍ୱାତନ୍ତ୍ର୍ୟତା ପାଇ ଦେଖୁ ସେଥିରେ କଅଣ ଅଛି । ❊

---

❊ ୧୭ । ୧୨ । ୭୪ ଉତ୍କଳ ସାହିତ୍ୟ ସମାଜର ସାଧାରଣ ସଭାରେ ପଠିତ ।

# ସ୍ୱାଧୀନ ଚିନ୍ତା

ଜଗତ୍ ପରିବର୍ତ୍ତନଶୀଳ । ବିଶ୍ୱଜନନୀ ପ୍ରକୃତି ଦେବୀର ମାୟିକ କ୍ରିୟା ଅନୁସରଣ କରି ମାନବ ତାର ବ୍ୟକ୍ତିତ୍ୱକୁ ଫୁଟାଇବାକୁ ସତତ ଚେଷ୍ଟିତ । କ୍ଷୁଦ୍ର ମନୁଷ୍ୟର ଚେଷ୍ଟା ଉପେକ୍ଷଣୀୟ ନୁହେଁ । ସୁରମ୍ୟ ହର୍ମ୍ୟ, ଯୌବନର ମୃଦୁମନ୍ଦ ଆମୋଦ ଓ ଆବେଗଭରା ପ୍ରଣୟ ପାଇ ନିଜକୁ ଭାଗ୍ୟବାନ ମନେ କରି ପୁଣି ପର ମୁହୂର୍ତ୍ତରେ ଅସାର ନନ୍ଦନକାନନରେ ପେଚକର ରବ ଶୁଣିଲେ ଚିରବସନ୍ତ-ସେବିତ କୋକିଳ-କୂଜିତ ସେହି ବନାନୀର ଦୃଶ୍ୟ କି ଭୟଙ୍କର ବୋଧହୁଏ ! କବି ଯଥାର୍ଥରେ ଗାଇଛନ୍ତି "ଆଜି ଯେ ରାଜେନ୍ଦ୍ରାସନେ କାଲି ସେ ଫକୀର" । ସ୍ୱତଃ ହୃଦୟରୁ ପ୍ରଶ୍ନ ଉଠେ, ତେବେ କଅଣ ଆମର ଗୋଟାଏ କିଛି କର୍ତ୍ତବ୍ୟ ବୋଲି ଜିନିଷ ନାହିଁ ? ନା, ନିଶ୍ଚୟ ଅଛି । ବୀରକେଶରୀ ଅର୍ଜ୍ଜୁନ ଏହି ମାୟିକ କ୍ରିୟାର ମୋହ ଦୂର କରି ନ ପାରି ଯେତେବେଳେ ହତାଶ ହୋଇପଡ଼ିଲେ, ସେତେବେଳେ ତାଙ୍କୁ ଆଦେଶ ହେଲା—"କ୍ଲୈବ୍ୟଂ ମାସ୍ମ ଗମଃ ନୈତତ୍ତ୍ୱୟ୍ୟୁପପଦ୍ୟତେ ।" ଏହି ପ୍ରବୁଦ୍ଧ ବାକ୍ୟ ଭାରତର କର୍ମକ୍ଷେତ୍ରରୁ ଅନ୍ତର୍ହିତ । ଭାରତ ଆଜି ତାର ଅତୀତର ଚିତାଗ୍ନି ବକ୍ଷରେ ଧାରଣ କରି ଜଗଦ୍‌ବାସୀଙ୍କୁ ଶୁଣାଇ ଦେଉଛି—"ମୋର ସବୁ ଯାଇଛି । ଅଛି କେବଳ ଏହି ଅଗ୍ନି ଶିଖା, ଏ ଲିଭିବାର ନୁହେଁ, ହିନ୍ଦୁର ତ୍ୟାଗ ମନ୍ତ୍ରରେ ଏ ମହାଯଜ୍ଞର ପ୍ରତିଷ୍ଠା ।" ଭାରତବାସି, ଆଲୋକ ଲିଭିବ ନାହିଁ । ବାତ୍ୟା ଥରକୁ ଥର ଚେଷ୍ଟା କରିବ ଯାହାକୁ ନିର୍ବାପିତ କରିବା ପାଇଁ, କିନ୍ତୁ ସବୁ ବିଫଳ ହେବ । ଭାରତର ଦୁର୍ଦ୍ଦିନରେ ଯେତେବେଳେ ଚାରିଆଡ଼େ ଘୋର ଅନ୍ଧକାର ମାଡ଼ି ଆସିବ, ସେତେବେଳେ ଏହି ଆଲୋକ ରେଖା ତାକୁ ପତନରୁ ରକ୍ଷା କରିବ । ଭସ୍ମାବୃତ ଅଗ୍ନି ପରି ଭାରତର ନଷ୍ଟ ଗୌରବ ଶନୈଃ ଶନୈଃ ପ୍ରକାଶ ପାଇବ । ତେବେ ଆଉ ଆବଶ୍ୟକ କଅଣ ? ଆବଶ୍ୟକ ଯଥେଷ୍ଟ ଅଛି, ଆମର ଜାତୀୟ ଭିତ୍ତି ସ୍ଥାପନର ଦିନ ଆସିଛି । ଆଦର୍ଶ ଓ କର୍ମୀ ଲୋଡ଼ା । ଏ ମାହେନ୍ଦ୍ର ବେଳାରେ ଶୁଭ କାର୍ଯ୍ୟରେ ପୁରୋଧା କିଏ ହେବ ? ଭାରତର ତରୁଣ, ତୁମେ ଏ ଗୁରୁ ଭାର ନେବାକୁ ଗର୍ବ ଅନୁଭବ କରିବ ନାହିଁକି ? ନିଶ୍ଚୟ, ଏହା ତୁମର ଜନ୍ମଗତ ଦାବୀ । ଏଥିରୁ ତୁମକୁ କେହି ବଞ୍ଚିତ କରିପାରିବେ ନାହିଁ; ବରଂ ଜୋର କରି ଭବିଷ୍ୟତ ବଂଶଧରମାନେ ଦେଶର ଆସନ୍ନ ଅମଙ୍ଗଳ ପାଇଁ ତୁମକୁ ଦାୟୀ କରିବେ । ସମସ୍ୟା ବଡ଼ ଗୁରୁତର । ଔଦାସୀନ୍ୟ ଚଳିବ ନାହିଁ । ଶତ ଲାଞ୍ଛନା ଓ ଅପମାନ ଭୋଗକରି ନିଜର ପୁରୁଷତ୍ୱ ରକ୍ଷା କରିବାକୁ ହେବ । ଏ ସନ୍ଧି ସ୍ଥଳରେ ପ୍ରତ୍ୟେକ ଭାରତବାସୀର ନିରପେକ୍ଷ ଭାବରେ ସମସ୍ତ ଗୁରୁତର ବିଷୟ ଆଲୋଚନା କରିବା ସମୀଚୀନ ବୋଧହୁଏ । ଭାରତର ଦୁରବସ୍ଥା ପ୍ରତି ବର୍ତ୍ତମାନ ଦୃଷ୍ଟିପାତ କରାଯାଉ । ତାର ସେହି ହାହାକାର ଭିତରେ ଜୀବନର ସ୍ପନ୍ଦନ ଅଛି ନା ନାହିଁ ? ଦୁର୍ଭିକ୍ଷ ଓ ମହାମାରୀ ତାକୁ ମୁମୂର୍ଷୁ ଅବସ୍ଥାକୁ ଆଣି ସାରିଲାଣି । ତାର ସେହି ପ୍ରାଣସ୍ପର୍ଶୀ କାତର ଦୃଷ୍ଟିରେ ମହାମନା Mr. W. S. Lilly, I. C. S. ବ୍ୟଥିତ ହୋଇ "India & it's problems" ରେ ଯାହା ଲେଖିଯାଇଛନ୍ତି, ସେଥିରୁ କତିପୟ ପଂକ୍ତି ଉଦ୍ଧାର କଲୁ—"I shall never forget my own famine experience, how as I rode out on a horse-back, morning after morning, I passed crowds of wandering skeletons and saw human corpses by the road side, unburied, uncared for, half-devoured by dogs and vultures; and how still sadder sight—children, the joy of the world as the old greeks deemed them, had become it's ineffable sorrow there, forsaken even by the mothers, their feverish eyes shining from hollow sockets, their flesh utterly wasted away; only gristle and sinew and cold shivering

skin remaining; their heads mere skulls, their puny frames full of loathsome diseases engendered by the starvation in which they had been conceived and born and nurtured—the sight, the thought of them haunts me still." ଯେଉଁ ଭୀଷଣ ଶ୍ମଶାନର ଦୃଶ୍ୟ ଆଙ୍କି ଦିଆଗଲା, ତା କିପରି ରୋମାଞ୍ଚକର ! କଙ୍କାଳମାତ୍ରାବଶିଷ୍ଟ, କୋଟରଗତ ଚକ୍ଷୁ, ଅନ୍ନକଷ୍ଟ ପରିତ୍ୟକ୍ତ ଶିଶୁର ଶେଷ ନିଃଶ୍ୱାସର ପ୍ରତିଧ୍ୱନି Mr. Lillyଙ୍କର ହୃଦୟ କନ୍ଦରରୁ କଦାପି ଯାଇ ନାହିଁ । ଯେଉଁ ଭାରତରେ ଲକ୍ଷ ଲକ୍ଷ ମହାପ୍ରାଣୀ ଅନ୍ନ ମୁଠାକ ସକାଶେ ଜୀବନ ହରାଉଛନ୍ତି, ସେ ମହାଶ୍ମଶାନ ନୁହେଁ ତ ଆଉ କଅଣ ? ଭଗବାନ୍, ଭାରତର ନାମ ପୃଥିବୀରୁ ଲୋପ କରିଦେବା ତୁମର ଅଭିପ୍ରାୟ ନୁହେଁ କି ? କେତେଦିନ ଭାରତ ପ୍ରାୟଶ୍ଚିତ୍ତ କରିଥିବ ? ତାର ଯେ ଶକ୍ତି ଶେଷ ହେବାକୁ ବସିଲାଣି !

ଆଜି ଏ ନବଯୁଗରେ ପତିତ ଭାରତ କର୍ଣ୍ଣରେ Professor Edward. E. Ross ଆସି ଶୁଣାଇ ଦେଇଗଲେ—"I was greatly impressed with the physical beauty of India, and still more with their intellectual ability." ତେବେ କଅଣ ଭାରତର ଜୀବନ ଅଛି ? ଦେବଭୂମିରେ ପୁଣି କଅଣ ପାରିଜାତ ଫୁଟିବ ? ଏସବୁ କଳ୍ପନା ନୁହେଁ ତ ? ନା, ସମସ୍ତ ଆସୁଚି । ଭାରତ ଭାଗ୍ୟରେ କାହିଁକି ଏ ବିପାକ ଘଟିଲା ? କିଏ ଏଥି ସକାଶେ ଦାୟୀ ? ସୂକ୍ଷ୍ମ ଦୃଷ୍ଟିରେ ଆଲୋଚନା କଲେ ଜଣାଯାଏ, ଏଥିସକାଶେ କେତେକାଂଶରେ ଆମ୍ଭମାନଙ୍କର ଶାସକମାନେ ଦାୟୀ ଅଟନ୍ତି । ସେମାନଙ୍କର ଆମ୍ଭମାନଙ୍କୁ ସବୁବେଳେ ନାବାଳକ କରି ରଖିବା ଅନ୍ୟାୟ । Mr. Andrews ଏ ସମ୍ପର୍କରେ କହିଛନ୍ତି—"Our whole British talk about being 'trusted of India' and coming out to 'serve' her, about, hearing the 'white man's burden,' about ruling India 'for her good', and all the rest is the biggest hypocrisy on God's earth." ପୃଥିବୀରେ ଯେତେଦିନଯାଏ ଏହି ଆଧିପତ୍ୟ ବିସ୍ତାର କରିବାର କ୍ଷମତା ଗୋଟିଏ ଜାତି ଅନ୍ୟ ଉପରେ ଜାହିର କରୁଥିବ, ସେତେଦିନ ଯାଏ ଜାତିବୈଷମ୍ୟ ଦୂର ହେବ ନାହିଁ । ଏହାର ବିଷମୟ ଫଳ ସମଗ୍ର ମନୁଷ୍ୟ ଜାତିକୁ ଶାନ୍ତିରୁ ବଞ୍ଚିତ କରିବ । ଜାତିଗତ ବିଦ୍ୱେଷ ସବଳକୁ ଦୁର୍ବଳ ଉପରେ ପ୍ରବୃତ୍ତ କରିବା ପାଇଁ ଉତ୍ତେଜିତ କରେ । Mr. H. G. Wells କହିଛନ୍ତି—"There is no more evil than race prejudice. It justifies and holds together more baseness, cruelty and abonination than any other sort of error in the world."

ପରାଧୀନ ଭାରତର ଉନ୍ମେଷ ଦେଖି କେତେକ ଉଦାର ହୃଦୟ ଇଂରେଜ ତାକୁ ତାର ଜନ୍ମଗତ ଦାବିରୁ ବଞ୍ଚିତ କରିବାକୁ ଇଚ୍ଛା କରନ୍ତି ନାହିଁ; ବରଂ ଉତ୍ସାହ ଦେଇ ଅନେକଥର କହିଛନ୍ତି—Sir Henry Cotton ତାଙ୍କର New India ନାମକ ପୁସ୍ତକରେ ଆମର ଜାତୀୟ ଭାବକୁ ଲକ୍ଷ୍ୟ କରି ଲେଖିଛନ୍ତି—"The people of India possess an instinctive capacity for local self-government." ଇଂରେଜମାନେ ଭାରତର କୌଣସି ଉନ୍ନତି ସାଧନ କରି ନାହାନ୍ତି, ଏପରି କହିବା ମଧ୍ୟ ଅନ୍ୟାୟ । ତୁଳନା କରି ଦେଖିଲେ ଜଣାଯାଏ, ଉନ୍ନତି ଅପେକ୍ଷା ଅବନତି ବେଶୀ ପରିମାଣରେ ଘଟିଚି । William Jennings Bryan ତାଙ୍କ ମୃତ୍ୟୁ ପୂର୍ବରୁ ଭାରତ ଶାସନ ସମ୍ବନ୍ଧରେ ଯାହା କହିଯାଇଛନ୍ତି, ତାହା ଉପର୍ଯ୍ୟୁକ୍ତ ମତର ପୋଷକତା କରେ । ସେ କହିଛନ୍ତି—"The British have conferred some benefits on India; but they have extorted an enormous price for them." ଦେଶର କୁସଂସ୍କାର ଦୂର କରି ନୂତନ ଆକାରରେ ଗଢ଼ିବାକୁ ହେଲେ ଶାସନଯନ୍ତ୍ରକୁ ତଦନୁଯାୟୀ ଚଲାଇବା ଆବଶ୍ୟକ । ସାମାଜିକ ଅବସ୍ଥା ସଙ୍ଗେ ଶାସନ ପଦ୍ଧତିର ବିଶେଷ ସମ୍ବନ୍ଧ । ଶାସନଭାର ନ ପାଇବା ଯାଏ ଭାରତବାସୀ ସେମାନଙ୍କର ସାମାଜିକ ଉନ୍ନତି ଆଶାନୁରୂପ କରି ପାରିବେ ନାହିଁ । Mr. G. A. Spender ଏ ବିଷୟ ଆଲୋଚନା କରି ଲେଖିଛନ୍ତି—"Only a government trusted by Indians and to a large extent manned by themselves will be able to combat the religious and caste prejudices which impede and in a hundred other ways impoverish the people and retard their progress."

ଭାରତର ବର୍ତ୍ତମାନ ରାଜନୀତି କ୍ଷେତ୍ରରେ ଧର୍ମ ଓ ଜାତୀୟ ସମସ୍ୟା ପ୍ରଧାନ ଅନ୍ତରାୟ । ତାକୁ ଦୂର କରିବାକୁ ହେଲେ ପରସ୍ପର ମଧ୍ୟରେ ବିଶ୍ୱାସଭାବ ଜନ୍ମାଇବା ଏକମାତ୍ର ଉପାୟ । ଅନିଷ୍ଟ ବୀଜ ଥରେ ରୋପିତ ହେଲେ ପରିଣାମ ବିଷମୟ ହୋଇଉଠେ । ଧର୍ମର ପ୍ରକୃତ ମର୍ମ ନ ବୁଝି କେବଳ ବ୍ୟକ୍ତିଗତ ସ୍ୱାର୍ଥ ସାଧନ ସକାଶେ ତାକୁ ଉପଲକ୍ଷ୍ୟ କରିବା ପୁରୁଷର କାର୍ଯ୍ୟ ନୁହେଁ । ଦେଶର ଅମଙ୍ଗଳ ଚିରଦିନ ଏହି କଳଙ୍କିତ ଧର୍ମର ଭେଦ ଉପରେ ଆସି ଆଧିପତ୍ୟ ବିସ୍ତାର କରିଛି । ଭାରତବାସୀର ଏ ଦୁର୍ବଳତାକୁ ଅନ୍ୟାନ୍ୟମାନେ ନିଜର ଉଦ୍ଦେଶ୍ୟ ସାଧନ ସକାଶେ ଲଗାଇ କୃତାର୍ଥ ହୋଇଚନ୍ତି । ଯେଉଁ ଦେଶର ଲୋକମାନେ ଖାଇବାକୁ ପାଆନ୍ତି ନାହିଁ; ସେଠାରେ ଧର୍ମ ଅଛି ବୋଲି ବିଶ୍ୱାସ ହୁଏ ନାହିଁ । ବୃଥା ଧର୍ମ ଆଡ଼ମ୍ବରରେ ଉତ୍ସାହ ବ୍ୟୟ ନ କରି ଦେଶ ହିତକର କାର୍ଯ୍ୟରେ ଲଗାଇବା ପ୍ରତ୍ୟେକ ସ୍ୱାଧୀନଚେତା ଭାରତୀୟଙ୍କର କର୍ତ୍ତବ୍ୟ ବୋଲି ମନେ ହୁଏ ।

ଦୁର୍ବଳ ଭାରତ ଉପରେ କପଟତାର ଜାଲ ଯେପରି କେତେ ଅତ୍ୟାଚାର କରାଯାଇଛି; ସବୁ ସେ ନୀରବରେ ସହିଯାଇଛି । ଶେଷ ବେଳକୁ ଥିଲା—"Morley Minto Refoms" । ସାର୍ ସୁରେନ୍ଦ୍ରନାଥ ବାନାର୍ଜି ତାଙ୍କର "A Nation in making" ପୁସ୍ତକରେ ଏହା ସମ୍ବନ୍ଧରେ ନିମ୍ନମତେ ଲେଖିଛନ୍ତି—"India owes to Lord Minto the system of communal representation for the legislative councils from the meshes of which it will take her many long years to emerge."

ସୁରେନ୍ଦ୍ରନାଥଙ୍କ ପରି ଦୂରଦର୍ଶୀ ରାଜନୀତିଜ୍ଞ ଭାରତର ଭବିଷ୍ୟତ ପରିଷ୍କାର କରି ଦେଖି ପାରିଲେ ନାହିଁ । କାଳିମା କେବେଦିନେ ଦୂର ହେବ ? ଉଦୀୟମାନ ରବିର କିରଣଜାଲ ଜାତିବିଦ୍ୱେଷର ଅନ୍ଧକାର ମଧ୍ୟରେ କିଣ ଲୁଚିଯିବ ? ଏ ଭାବନା ବଡ଼ ଅସହନୀୟ । କର୍ମୀ ସାଧକମାନଙ୍କର ସାଧନା ତ ବୃଥା ହେବାର ନୁହେଁ । ତାହାହେଲେ ନୈରାଶ୍ୟ ଭାବ ମନରେ ଆଣିବା ଅନୁଚିତ ।

ଦେଶରୁ ଭେଦଭାବ ଦୂର ହୋଇ ସ୍ୱାୟତ୍ତଶାସନ ମିଳିଲେ ଯେ ଆମ୍ଭେମାନେ ପୂର୍ଣ୍ଣମାତ୍ରାରେ ସୁଖୀ ହେବୁଁ, ଏ କଥା ସହଜରେ ବୁଝାଯାଇ ପାରିବ ନାହିଁ । ଯେତେଦିନ ଯାଏ ଶିକ୍ଷାର ଅଙ୍ଗସୌଷ୍ଠବ ପ୍ରତି ଦେଶବାସୀଙ୍କର ଦୃଷ୍ଟି ପଡ଼ି ନାହିଁ, ସେତେଦିନ ପର୍ଯ୍ୟନ୍ତ ଅନ୍ଧକାର ଘୁଞ୍ଚିବ ନାହିଁ ।

ନୂତନ ଭାରତର ଗଠନ କାର୍ଯ୍ୟରେ ବିଶ୍ୱବିଦ୍ୟାଳୟର କର୍ମୀମାନଙ୍କର ଯୋଗଦେବା ଏକାନ୍ତ ଆବଶ୍ୟକ । ସେମାନଙ୍କର ଶିକ୍ଷା, ଦୂରଦର୍ଶିତା, ଉତ୍ସାହ ଓ ନୈଷ୍ଠିକତା ଗଠନ ପ୍ରଣାଳୀର ବିବିଧ କଲ୍ୟାଣ ଉତ୍ପାଦନ କରିବ । ଆଧୁନିକ କଲେଜ ଶିକ୍ଷାର୍ଥୀଙ୍କର ପ୍ରେରଣା ଅନେକ ସମୟରେ କ୍ଷୁବ୍ଧ ଝଟିକା ଆକାର ଧାରଣ କରି ସମାଜରେ ଯେଉଁ ପରିବର୍ତ୍ତନ ଆଣିବାକୁ ବସେ, ସେଥିରେ ଅନେକ ତ୍ରସ୍ତ ହୋଇଯାନ୍ତି । ଯେଉଁମାନେ ଉଚ୍ଚଶିକ୍ଷାକୁ ଏପରି ଭୟବିହ୍ୱଳ ଦୃଷ୍ଟିରେ ଦେଖୁଥିବେ, ସେମାନଙ୍କର ଏହାର ଦୂରରେ ରହିବା ଆବଶ୍ୟକ । ସମୟର ଗୁରୁତ୍ୱ ଦୃଷ୍ଟିରେ ଆମ୍ଭେମାନେ ବିଶ୍ୱବିଦ୍ୟାଳୟରୁ ତେଜସ୍ୱୀ ଓ ନୂତନତ୍ୱ ପକ୍ଷପାତୀ ଛାତ୍ର ପାଇବା ଆଶାକରୁଁ । ଦେଶର ଗୌରବ ଓ ଆଶାଭରସା ଯେଉଁମାନଙ୍କ ଉପରେ ନ୍ୟସ୍ତ, ସେମାନେ ଯଦି ହୀନ ଓ ପରମୁଖାପେକ୍ଷୀ ହୁଅନ୍ତି, ତାହାହେଲେ ଆକାଂକ୍ଷା କେବଳ କଳ୍ପନାରେ ପର୍ଯ୍ୟବସିତ ହେବ । Professor Radhakrishnan ଲକ୍ଷ୍ନୌଠାରେ ବିଶ୍ୱବିଦ୍ୟାଳୟ ଛାତ୍ରମାନଙ୍କୁ କହିଚନ୍ତି—"If a University produces men who are low-spirited, who pay for safety, care for comfort and afraid to take any risk then that University has failed in its essential task."

ଏ ଦୁର୍ଦ୍ଦିନରେ ପ୍ରତ୍ୟେକ ଶିକ୍ଷିତ ବ୍ୟକ୍ତିଙ୍କର ଦେଶର କଲ୍ୟାଣ ଚିନ୍ତାକରି ସମାଜର ଉନ୍ନତି ପ୍ରତି ମନୋଯୋଗୀ ହେବା ଓ ସେଥି ସଙ୍ଗେ ପ୍ରଚଳିତ କୁସଂସ୍କାର ଦୂର କରିବା କର୍ତ୍ତବ୍ୟ । ଏଥିରୁ ବିରତ ହେଲେ କେବଳ ଭୀରୁତାର ପରିଚୟ ମିଳିବ । ଅନ୍ୟାୟ ଓ ଅସତ୍ କାର୍ଯ୍ୟ ବିରୁଦ୍ଧରେ ଛିଡ଼ା ହେବାର ସାହସ ଯେଉଁମାନଙ୍କର ନାହିଁ, ସେମାନେ ଆଧୁନିକ ସମାଜରେ ସ୍ଥାନ ପାଇବାର ଉପଯୁକ୍ତ ନୁହନ୍ତି । ବଞ୍ଚକତାର ଦିନ ଆଉ ନାହିଁ । ଧନ ଗର୍ବରେ ଅନ୍ୟାୟ କରି ସମାଜକୁ ତୁଚ୍ଛ ମନେ କରିବାର ଦୁଃସାହସ ଏଣିକି ତ୍ୟାଗ କରିବାକୁ ହେବ ।

ଭାରତର ଶିକ୍ଷିତ ତରୁଣ ! ତୁମର କର୍ମକ୍ଷେତ୍ର ନ୍ୟାୟ ଓ ଅନ୍ୟାୟର ସନ୍ଧିସ୍ଥଳରେ । ତୁମେ ନୀରବ ରହିଲେ ଚଳିବ କି ? ଦେଶର ଆର୍ଥିକ ଅବସ୍ଥା ବଡ଼ ଶୋଚନୀୟ । ବିଶ୍ୱବିଦ୍ୟାଳୟର ଉପାଧି ଧରି ବସିଲେ କିଛି କାମ ହେବ ନାହିଁ । କବିତ୍ୱର ଭାବ ଖେଳାଇ romance ସୃଷ୍ଟି କରିବାର ସମୟ ଏ ନୁହେଁ । ଦୃଢ଼ କର୍ତ୍ତବ୍ୟ ନିକଟରେ ପ୍ରଣୟିନୀର ପ୍ରେମ କିଛି ନୁହେଁ । ଭାରତ ସନ୍ତାନ ଏଥର ଦୃଷ୍ଟାନ୍ତ ଅନେକ ଥର ଦେଇଛି । ପୁଣି ଦେଶର ଆହ୍ୱାନ ଆସିଲାଣି । କୌଣସି ଦେଶ ନେତାଙ୍କର କାର୍ଯ୍ୟରେ ମୁଗ୍ଧ ହୋଇ ନିଜତ୍ୱ ହରାଇବା ପ୍ରକୃତ ଶିକ୍ଷିତଙ୍କ ପକ୍ଷରେ ଶୋଭନୀୟ ନୁହେଁ । ତାଙ୍କର ନିଜର ସାଧନା ଓ ଚରିତ୍ରବଳ ତାଙ୍କୁ କର୍ମକ୍ଷେତ୍ରରେ ବେଶ୍ ଅଗ୍ରସର କରାଇପାରିବ; କେବଳ ସାହସ ଥିବା ଦରକାର । Professor Radhakrishnan କେତେକ ନେତାଙ୍କୁ ଲକ୍ଷ୍ୟକରି କହିଛନ୍ତି—"Many of our leaders aim not at truth but at success."

ଭାରତର କର୍ମକ୍ଷେତ୍ର ତାର ଯୁବକମାନଙ୍କ ପାଇଁ ସର୍ବଦା ଉନ୍ମୁକ୍ତ । ସେମାନଙ୍କୁ ବାଦ୍ ଦେଇ ଦେଶକୁ ଉନ୍ନତି ପଥରେ ନେବାକୁ ଯେଉଁମାନେ ଚାହାନ୍ତି, ସେମାନେ ଭ୍ରାନ୍ତ । ଯୁବକମାନେ ମଧ୍ୟ ନିଜକୁ ଦେଶର ଗୌରବ ମନେ କରି କୁସଂସ୍କାର ବିରୁଦ୍ଧରେ ଠିଆ ନ ହେଲେ ସମାଜର ପତନ ଅବଶ୍ୟମ୍ଭାବୀ । ପୁନଶ୍ଚ ସେ ମହାଶୟ ଏ ସମ୍ବନ୍ଧରେ କହିଛନ୍ତି--"The future seems to be with the youth who revolt against a corrupt social order and religious fanaticism. Those who are indifferent when the situation is so grave are guilty of cruelty. Injustice thrives on the indifference of the people."

ବିଶ୍ୱବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ହେବା ପରେ ନିଜର କର୍ତ୍ତବ୍ୟ ଅବଧାରଣ କରିବା ବଡ଼ କଷ୍ଟକର ହୁଏ । ଅନେକ ନିଜର ସ୍ୱାଧୀନ ଭାବ ପ୍ରକାଶ କରିବାକୁ ଅସମର୍ଥ ହୁଅନ୍ତି । ସମାଜ ଓ ସମୟର ସ୍ରୋତ ସେମାନଙ୍କୁ କୌଣସି ସ୍ୱତନ୍ତ୍ରତା ଦିଏ ନାହିଁ । ସେମାନେ ଅନେକ ସମୟରେ ନିଜର ଇଚ୍ଛା ବିରୁଦ୍ଧରେ କେବଳ ଲୋକମତର ପୋଷକତା କରିବା ପାଇଁ କାର୍ଯ୍ୟ କରନ୍ତି । ଏପରି କରିବା ଦ୍ୱାରା ଉଚ୍ଚଶିକ୍ଷାର ଉଦ୍ଦେଶ୍ୟ ସାଧିତ ହୁଏ ନାହିଁ । ସାଧାରଣ ମନୁଷ୍ୟ ଓ ଶିକ୍ଷିତଙ୍କ ମଧ୍ୟରେ କୌଣସି ପାର୍ଥକ୍ୟ ରହେ ନାହିଁ । ପତିତ ସମାଜ ଓ ଜାତିର ଉଦ୍ଧାର କରିବାକୁ ହେଲେ ଶିକ୍ଷିତଙ୍କର କିଛି ବିଶେଷତ୍ୱ ଦେଖାଇବା ଆବଶ୍ୟକ, ନଚେତ୍ ଲୋକେ କାହିଁକି ଅନ୍ୟମାନଙ୍କୁ ଲକ୍ଷ୍ୟ ନ କରି ସେମାନଙ୍କୁ ଅନୁକରଣ କରିବେ ? ମନେହୁଏ ଚରିତ୍ରବଳ ଓ ସ୍ୱାଧୀନଭାବ ଯେକି ଶିକ୍ଷିତ ନିଜର ପାର୍ଥକ୍ୟ ବଜାୟ ରଖିବାକୁ ସର୍ବଦା ଚେଷ୍ଟା କରିବେ । ସମାଜର କୌଣସି ବାହ୍ୟ ଆବରଣ ସେମାନଙ୍କୁ ଘୋଡ଼ାଇପାରିବ ନାହିଁ । ଆମ୍ଭମାନଙ୍କର ଏହି ମତର ଯାଥାର୍ଥ୍ୟ ସେହି ପ୍ରଫେସର ମହାଶୟଙ୍କର ନିମ୍ନ ପ୍ରକାଶିତ ଭାବରୁ କେତେକାଂଶରେ ଉପଲବ୍ଧ ହୋଇପାରେ—"When you step out of the University and enter life, you are tempted to say what you are expected to say and not what you really think."

ଏ ତ ଗଲା ଭାରତର କଥା । ଦରିଦ୍ର ଉତ୍କଳର ଅବସ୍ଥା କେତେ ଉତ୍କଳୀୟ ଯୁବକ ଭାବନ୍ତି କି ? ଆଧୁନିକ ଉଚ୍ଚଶିକ୍ଷା କେତେଜଣ ଓଡ଼ିଆଙ୍କୁ ଠିକ୍ କରି ଗଢ଼ି ପାରିଛି ? ବୋଧହୁଏ ସଂଖ୍ୟା ଖୁବ୍ କମ୍ । ସଙ୍କୀର୍ଣ୍ଣତା ଓ ସ୍ୱାର୍ଥ ଉତ୍କଳ ଆକାଶରେ ଘନୀଭୂତ ହୋଇ ଆସିଛି । କୌଣସି ସଦନୁଷ୍ଠାନ ଉତ୍କଳରେ ତିଷ୍ଠି ପାରି ନାହିଁ । ଜାତୀୟତାକୁ ବଜାୟ ରଖିବାକୁ ଆମ୍ଭମାନଙ୍କ ମଧ୍ୟରେ କେତେଜଣ ଚେଷ୍ଟିତ । ମନୋମାଳିନ୍ୟ ଲାଗି ରହିଛି, ସେଥିରେ ପୁଣି ଅନୁକରଣ କରିବାର ପ୍ରବୃତ୍ତି ଓଡ଼ିଆ ପ୍ରାଣକୁ ବେଗି ମୁଗ୍ଧ କରିଛି । ବିଶେଷତଃ ଓଡ଼ିଆ ନାରୀ ବର୍ତ୍ତମାନ ପ୍ରକୃତ ଶିକ୍ଷା ଛାଡ଼ି ଗୋଟାଏ କିଛି ନୂତନତ୍ୱ ଆଣିବାରେ ବ୍ୟସ୍ତ । ଦରିଦ୍ର ଓଡ଼ିଆର ବାହାରୁ କିଛି ଆଣିବାର ବର୍ତ୍ତମାନ ଆବଶ୍ୟକ ନାହିଁ । ତାର ଭଗ୍ନ କୁଟୀର ଖଣ୍ଡିକ ନିର୍ମାଣ କରିବାକୁ ହେଲେ ପ୍ରାଚୀନତା ଆଡ଼କୁ ଟିକିଏ ଦୃଷ୍ଟି ଦେବା ଆବଶ୍ୟକ । ଯାହା ଅଛି ତାକୁ ସମୂଳେ ବାଦ୍ ଦେବା ନିତାନ୍ତ ଗର୍ହିତ । ଉତ୍କଳରେ ସ୍ତ୍ରୀ ଶିକ୍ଷା ଅଭାବ ହେଲେ ସୁଦ୍ଧା ଭବିଷ୍ୟତ ଗୃହଲକ୍ଷ୍ମୀମାନଙ୍କୁ Byron ଓ Keats ପଢ଼ାଇବା ଆମ୍ଭମାନଙ୍କ ପକ୍ଷରେ ଉଚିତ ନୁହେଁ । କୌଣସି ଉଚ୍ଚ ସାହିତ୍ୟ ଆଲୋଚନାରୁ ସ୍ତ୍ରୀମାନଙ୍କୁ ବିରତ କରିବା ଆମର ଉଦ୍ଦେଶ୍ୟ ନୁହେଁ; କିନ୍ତୁ ଅବସ୍ଥା ଦେଖି

ବ୍ୟବସ୍ଥା କରିବା ଉଚିତ । କାବ୍ୟ କିମ୍ବା ଉପନ୍ୟାସ ଜଗତରେ ପ୍ରେମର ବନ୍ୟା ବୁହାଇ ଓଡ଼ିଆ ସ୍ତ୍ରୀ ପ୍ରାଣକୁ ସରସ କରିବାର ପକ୍ଷପାତୀ ଆମ୍ଭେମାନେ ନୋହୁଁ ।

ଉତ୍କଳରେ ପୁରୁଷ ଓ ନାରୀର କାର୍ଯ୍ୟ ସ୍ୱତନ୍ତ୍ର ରଖିବାକୁ ହେବ । ଲକ୍ଷ୍ୟ ଏକ, କିନ୍ତୁ ବିଭିନ୍ନ ଦିଗରୁ କାର୍ଯ୍ୟ ହେବା ବାଞ୍ଛନୀୟ । ଓଡ଼ିଆ ନିଜ ଆଦର୍ଶରେ ଗଢ଼ି ହେବାକୁ ଚାହେଁ । ତାର ମୌଳିକତାରେ ହଠାତ୍ ଆଘାତ ଦେବା ସୁବିଧା-ଜନକ ନୁହେଁ ।

ଅବଶ୍ୟ ଦିନ ଆସିବ, ଯେତେବେଳେ ଉତ୍କଳୀୟ ନାରୀ ସଙ୍ଗୀତର ମୂର୍ଚ୍ଛନା, କାବ୍ୟ ଓ ଉପନ୍ୟାସର ଭାବ ତରଙ୍ଗରେ ଓଡ଼ିଆ ପ୍ରାଣକୁ ସଞ୍ଜୀବିତ କରିବ ! କିନ୍ତୁ ନିର୍ମାଣ କ୍ରିୟା ଶେଷ ନ କରି ସାମୟିକ ଉତ୍ତେଜନା ବଶତଃ ଛାତ ଉପରେ ବସିବାର ଦେଖିଲେ କାହା ମନରେ ବିଷାଦ ନ ଆସିବ ? ଉଦୀୟମାନ ସରଳ ପ୍ରାଣ ଓଡ଼ିଆ ଯୁବକ ! ତୁମେ ଟିକିଏ ଶାନ୍ତ ହୁଅ ! ଦୁର୍ବଳ ନାରୀ ଜାତିକୁ ତୁମର ପ୍ରଭାବରେ ପ୍ରଭାବିତ କରି ବର୍ତ୍ତମାନ-ଉତ୍କଳକୁ ଗଢ଼ିନିଅ ।

# ରମଣୀ ସମ୍ପର୍କ

ବିଶ୍ୱମୋହିନୀ ରୂପସୀ ନାରୀ ପ୍ରକୃତି ଦେବୀଙ୍କର ଆକର୍ଷଣକାରୀ ଉପାଦାନରେ ଗଠିତ । ପୁରୁଷର ଜ୍ଞାନ, ନିଷ୍ଠା ଓ ସାହସ ମୁହୂର୍ତ୍ତକେ ନାରୀର ଇଙ୍ଗିତରେ ଲୋପ ପାଇପାରେ । ନଭଶ୍ଚୁମ୍ବୀ ପ୍ରାସାଦର ରାଜରାଜେଶ୍ୱରଠାରୁ ଦୀନ କୁଟୀରବାସୀ ପର୍ଯ୍ୟନ୍ତ ସମସ୍ତେ ନାରୀର ବଶ୍ୟତା ଅକାତରେ ସ୍ୱୀକାର କରନ୍ତି । ଅମିତତେଜା, ବୀରାଗ୍ରଣୀର କର୍କଶ ହୃଦୟ ନାରୀର ସୁକୋମଳ କରସ୍ପର୍ଶରେ ସ୍ୱତଃ ଅବନତ ହୋଇପଡ଼େ । ତାର କଟାକ୍ଷରେ ମନୁଷ୍ୟର ଶତ ସାଧନା ଲୋପ ପାଇଯାଏ । ତାର ସାମାନ୍ୟ ହାସ୍ୟଚ୍ଛଟାରେ ପୁରୁଷ ନିଜ କଳ୍ପନା-ରାଜ୍ୟରେ ସୌଦାମିନୀର କନକ ଶୋଭା ଦେଖିବାକୁ ପାଏ । ନାରୀର ଭରା ଯୌବନ ତରଙ୍ଗ ସନ୍ଦର୍ଶନରେ ପୁରୁଷର ଯେତେବେଳେ ବିଭ୍ରାନ୍ତି ଆସେ, ସେତେବେଳେ ତାର ଶତ ନେପୋଲିୟନ୍‌ର ପରାକ୍ରମ ଥିଲେ ସୁଦ୍ଧା ବୁଦ୍‌ବୁଦ ପରି କ୍ଷଣକେ ଅନ୍ତର୍ହିତ ହୋଇଯାଏ ।

ପୁରୁଷର ଓ ସ୍ତ୍ରୀର ମିଳନ ଇଚ୍ଛା ବଡ଼ ପ୍ରବଳ । ଏ ଆକାଂକ୍ଷା ରୋଧ କରିବା ଅସ୍ୱାଭାବିକ ବୋଧହୁଏ । ପ୍ରାକୃତିକ କିମ୍ବା ଅନୁଯାୟୀ ଏମାନଙ୍କ ମିଳନକୁ ଜୀବର ଧର୍ମ ବୋଲି କୁହାଯାଇପାରେ । ବିଶ୍ୱବ୍ରହ୍ମାଣ୍ଡ ନିର୍ଲିପ୍ତ ପରମେଶ୍ୱରଙ୍କର ମାୟା-କଳ୍ପନା । ଏହି ମାୟା କିମ୍ବା ପ୍ରକୃତିର ଅନନ୍ତ କାର୍ଯ୍ୟ-କାରିଣୀ ଶକ୍ତି ଦ୍ୱାରା ଜଗତର ସୃଷ୍ଟି, ସ୍ଥିତି ଓ ଲୟ ସାଧିତ ହୁଏ । ଈଶ୍ୱର ଓ ପ୍ରକୃତି ବିଭିନ୍ନ ନ ହେଲେ ସୁଦ୍ଧା ଦୁଇଟି ପୃଥକ୍ ସତ୍ତା ପରି ଅଧିଷ୍ଠାନ କରେ । ପୁରୁଷ ଓ ସ୍ତ୍ରୀ ଦୁହେଁ ଏହି ଦୁଇ ସତ୍ତାର ପ୍ରତିଭୂ ସ୍ୱରୂପ ସ୍ଥୂଳ ଦୃଷ୍ଟିରେ ଦେଖାଯାନ୍ତି ଓ ସେମାନଙ୍କ ମିଳନରେ ଦୁଇଟି ଉଦ୍ଦେଶ୍ୟ ଦେଖିବାକୁ ମିଳେ—ସୃଷ୍ଟି ପ୍ରବାହକୁ ଅବ୍ୟାହତ ରଖିବା ଓ ଜୀବର ଆତ୍ମ-ସମ୍ପୂର୍ତ୍ତି ସାଧନ । ସ୍ତ୍ରୀ ଓ ପୁରୁଷର ମିଳନ ଇଚ୍ଛା ବିଧିକୃତ । ପ୍ରକୃତି ଓ ପୁରୁଷର ମିଳନ ଦ୍ୱାରା ଆତ୍ମା ଯେଉଁ ଆନନ୍ଦ ଉପଭୋଗ କରେ, ସେହି ମିଳନାନନ୍ଦ ପାଇଁ ଜୀବ ନିରନ୍ତର ବ୍ୟାକୁଳ । ସେହିହେତୁ ପୁରୁଷ ସ୍ୱଭାବର ବଶବର୍ତ୍ତୀ ହୋଇ ଲୋଲୁପ ଦୃଷ୍ଟିରେ ଅନାଇ ରହେ—ପତଙ୍ଗ ପରି ରମଣୀର ରୂପବହ୍ନିରେ ଝାସ ଦେବା ପାଇଁ । ଏ ଅଧୀରତା ପୁରୁଷର କଣ ନିରର୍ଥକ ? କାମ ଉତ୍ତେଜନାର ନିବୃତ୍ତି ଆସିଲେ ରମଣୀର ରକ୍ତାଭ ଗଣ୍ଡଦେଶ ମତ୍ତତାର କାରଣ ହୁଏ ନାହିଁ । ପ୍ରକୃତ ଦେଖିବାକୁ ଗଲେ ପୁରୁଷର ସ୍ତ୍ରୀ ସମ୍ଭୋଗ ସୁଖ କ୍ଷଣସ୍ଥାୟୀ । ବର୍ଣ୍ଣିତ ଅଛି—"ନେନ୍ଦୂ କରୋତି ସର୍ବେଷାଂ ସୁଖଂ ଦୁଃଖଞ୍ଚ ସଞ୍ଚିତଂ"—ଯୋଗୀମାନେ ଯୋଗଦ୍ୱାରା ବିନ୍ଦୁଧାରଣ କରି ପ୍ରକୃତିର ପ୍ରଧାନ ଆସକ୍ତିକୁ ନିର୍ବାପିତ କରି ଜୀବନ୍ମୁକ୍ତ ହୁଅନ୍ତି । ସାଧାରଣ ମନୁଷ୍ୟ ଏ ପଥରେ ଅଗ୍ରସର ହେବା ଅସମ୍ଭବ କହିଲେ ଚଳେ । ଶ୍ରୀମତ୍ ଶଙ୍କରାଚାର୍ଯ୍ୟ କହିଛନ୍ତି—"ସମ୍ମୋହୟତ୍ୟେବ ସୁରେବ କା ? —ସ୍ତ୍ରୀ ।" ସୁରା ପରି ମନୁଷ୍ୟକୁ ସ୍ତ୍ରୀ ଉନ୍ମତ୍ତ କରେ । ଶିହ୍ଲନାଚାର୍ଯ୍ୟ ଥରେ ଶ୍ମଶାନରେ ଖଣ୍ଡିଏ ବଂଶଦଣ୍ଡର ଅଗ୍ରଭାଗରେ ଗୋଟିଏ ସ୍ତ୍ରୀ ଲୋକର ମାଂସ ଚର୍ମ ବିହୀନ ମସ୍ତକ କଙ୍କାଳ ସଂଲଗ୍ନ ଦେଖିଲେ । ସେହି କପାଳର ମୁଖରନ୍ଧ୍ର ଦେଇ ବାୟୁ ନିଃସୃତ ହେବାବେଳେ ଗୋଟାଏ ଶବ୍ଦ ହେଉଥାଏ । ଶିହ୍ଲନାଚାର୍ଯ୍ୟଙ୍କର ମନେ ହେଲା ଯେପରି ସେହି ଶବ୍ଦ ମନୁଷ୍ୟକୁ ଲକ୍ଷ୍ୟ କରି କହୁଛି—"ମୂଢ଼ ମାନବ ! ଶ୍ମଶାନକୁ ଆସି ଥରେ ଏହି କପାଳକୁ ଦେଖ ଓ ଯେଉଁ ସ୍ତ୍ରୀ ପାଇଁ କାମାନ୍ଧ ହୋଇ କେତେ ପାଶବିକତାର ପରିଚୟ ଦେଇଥିଲୁ, ସେହି ସ୍ତ୍ରୀର ମୁଖ ସ୍ମରଣ କର । ଏହି ଦେଖ ତାର ପରିଣାମ । ସେ ମୁଖାରବିନ୍ଦ ଆଉ କାହିଁ ? ଏ କଙ୍କାଳରେ ସେ ମୁଖର କିଛି ଚିହ୍ନ ଅଛି କି ? ବର୍ତ୍ତମାନ ମନେ କର, ଯେଉଁ ଅଧରସୁଧା ପାନ କରୁଥିଲୁ—ସେ କାହିଁ ? ସେ ଭ୍ରୂଭଙ୍ଗୀର କିଛି ଚିହ୍ନ ଅଛି କି ? ଯଦି ସେତେବେଳେ ତୋର ଏହି କଥା ମନେ ପଡ଼ୁଥାନ୍ତା, ତାହାହେଲେ ସେ ମୁଖରେ ଏତେ ଆସକ୍ତ ହୋଇଥାନ୍ତୁ କି ?"

ଜ୍ଞାନୀ, ସାଧକ ଓ ଯୋଗୀମାନଙ୍କ ଦୃଷ୍ଟିରେ ନାରୀ ଉନ୍ନତି ପଥର କଣ୍ଟକ ବୋଧ ହୋଇପାରେ କିମ୍ବା ତାର କିଛି ମୂଲ୍ୟ ନ ଥାଇପାରେ; କିନ୍ତୁ ଯେଉଁ ମାତୃଶକ୍ତି ଉପରେ ଜଗତର ଶ୍ରୀ ଓ ସ୍ଥିତି ନିର୍ଭର କରେ, ତାକୁ କିଅଣ ଉପେକ୍ଷା କରାଯାଇ-ପାରେ ? ପୁରୁଷକୁ କିଏ ପୁରୁଷତ୍ୱ ଦାନ କରେ ? ସ୍ଥବିରକୁ ସେବା, ଯୁବକକୁ ପ୍ରେମ ଓ ଶିଶୁକୁ ସ୍ତନ୍ୟଦାନ କରି ନାରୀ ପୁରୁଷକୁ ସର୍ବଦା ଉଜ୍ଜୀବିତ କରି ରଖିଛି । ପୀଡ଼ିତର ପୀଡ଼ା, ତୃଷାର୍ତ୍ତର ତୃଷା ଓ ଦରିଦ୍ରର ଦୈନ୍ୟ ଦୂର କରିବାରେ ନାରୀ ଉତ୍କଣ୍ଠିତା ନୁହେଁ କି ? ସର୍ବକଲ୍ୟାଣୀ ନାରୀର ମାତୃତ୍ୱ ଦର୍ଶନ କରି ଆମ୍ଭେମାନେ ନାରୀ ଶକ୍ତିରେ ବିଶ୍ୱନିୟନ୍ତାଙ୍କର ଅପୂର୍ବ ସୃଷ୍ଟି କୌଶଳର ପରିଚୟ ପାଉଁ । ଶୈଶବରୁ ବାର୍ଦ୍ଧକ୍ୟ ପର୍ଯ୍ୟନ୍ତ ନିରବଚ୍ଛିନ୍ନ ଭାବରେ ପୁରୁଷ ସ୍ତ୍ରୀର ସହାୟତା ପାଇ ତାକୁ ଅବଜ୍ଞା କରିବା ଉଚିତ ନୁହେଁ । କେବଳ ସାହାଯ୍ୟ ନୁହେଁ, ନିଜର ସର୍ବସ୍ୱ ଦେଇ ନାରୀ ଅକୁଣ୍ଠିତ ଚିତ୍ତରେ ପୁରୁଷର ମଙ୍ଗଳ ସାଧନ କରେ । ଇହଜୀବନରେ ପତିହୀନା ହେଲେ ସ୍ୱଚ୍ଛନ୍ଦରେ ଚିତାନଳରେ ପଶି ପରପାରରେ ସ୍ୱାମୀ ସହିତ ମିଳିତ ହେବାର ଆକାଂକ୍ଷା ପ୍ରଥମ ହିନ୍ଦୁ ନାରୀର ଥିଲା । ସ୍ୱାର୍ଥାନ୍ଧ ପୁରୁଷ କେତେ ଅତ୍ୟାଚାର କରେ, ସବୁ ସେ ସହିପାରେ । ସ୍ୱାମୀ ଦେବତା; ତା ପାଇଁ ସର୍ବତ୍ୟାଗିନୀ ହେବା ଦୁର୍ବଳା ନାରୀ ପକ୍ଷରେ ହିଁ ସମ୍ଭବପର । ପୁରୁଷ ନିର୍ବିରୋଧରେ ଅନାୟାସରେ ତାର ପ୍ରଣୟପାଶକୁ ତୁଚ୍ଛ ମନେ କରିପାରେ; କିନ୍ତୁ ସ୍ତ୍ରୀ ପକ୍ଷରେ ତାହା ମହାପାତକ । ଏକାଧିକବାର ବିବାହ କରି ପୁରୁଷ ତାର ପୁରୁଷତ୍ୱ ଦେଖାଇପାରେ, କିନ୍ତୁ ସ୍ତ୍ରୀର ଅନ୍ୟ ପୁରୁଷ ମୁହଁକୁ ସୁଦ୍ଧା ଚାହିଁବାର ଅଧିକାର ନାହିଁ । ସନ୍ତାନର ଜନ୍ମ ଓ ଲାଳନପାଳନରେ ନାରୀର କଷ୍ଟ ପୁରୁଷ ଅପେକ୍ଷା ସହସ୍ର ଗୁଣ ଅଧିକ । ସ୍ୱାମୀ, ପୁତ୍ର, କନ୍ୟା ଓ ପରିବାରର ମଙ୍ଗଳ କାମନା କରି ନିବିଷ୍ଟ ଚିତ୍ତରେ ଭଗବାନଙ୍କ ଆରାଧନା କରିବାରେ ନାରୀ ଯେପରି ଗୌରବ ଅନୁଭବ କରେ, ପୁରୁଷ ସେପରି ଗୌରବ ଅନୁଭବ ସୁଦ୍ଧା କରେ ନାହିଁ; ବରଂ ଆତ୍ମୋନ୍ନତି ପଥରୁ ନାରୀକୁ ଦୂର କରିପାରିଲେ ସଫଳକାମ ହେଲି ବୋଲି ମନେକରେ । ସ୍ତ୍ରୀ ଓ ପୁରୁଷ ମଧ୍ୟରେ ଏପରି ବୈଷମ୍ୟ ହେବାର କାରଣ କିଅଣ ? ନାରୀ ଦୁର୍ବଳା ବୋଲି ପୁରୁଷ ତା ଉପରେ ଏପରି ପ୍ରଭୁତ୍ୱ ବିସ୍ତାର କରେ କିମ୍ବା ତାର ଜନ୍ମଗତ ତ୍ୟାଗ ଗୁଣରେ ସେ ସର୍ବଦା ପୁରୁଷକୁ ସନ୍ତୁଷ୍ଟ କରିବାକୁ ଚାହେଁ ? ଯଦି ସର୍ବସ୍ୱ ବିନିମୟରେ ନାରୀ-ପୁରୁଷର ମିଳନ ପ୍ରତିଷ୍ଠିତ ହେବାକୁ ଚାହେଁ, ତାହାହେଲେ ସେ ଦୁର୍ବଳା ନୁହେଁ । ତାର ତ୍ୟାଗ-ଶକ୍ତି ମହାନ୍ । ଏହି ମହୀୟସୀ ଶକ୍ତି ନିକଟରେ ପୁରୁଷ ପରାସ୍ତ ହେବାକୁ ବାଧ୍ୟ । ନାରୀର ଜନ୍ମ ପୁରୁଷକୁ ତୃପ୍ତ କରି ରଖିବା ପାଇଁ । ମର୍ତ୍ତ୍ୟରେ ପାରିଜାତର ସୌରଭ ଓ ଅମରାଗଣଙ୍କ ବୀଣାଝଙ୍କାର ପୁରୁଷ ନାରୀ ସହିତ ଭୋଗ କରିବାକୁ କ୍ଷମ ହୋଇଥାଏ ।

ରମଣୀର ସମ୍ପର୍କଚ୍ୟୁତ ହେଲେ ପୁରୁଷ ହୃଦୟ ହୁଏତ ଶୂନ୍ୟ ହୋଇଉଠିବ କିମ୍ବା ବିମଳ ଆନନ୍ଦରେ ବିକଶିତ ହେବ । ଯେ ଥରେ ରମଣୀର ସ୍ନେହସରସ କଥାରେ ମୁଗ୍ଧ ହୋଇ ଜୀବନର ଅଳୀକତାକୁ ସୁଖ ସ୍ୱପ୍ନରେ ମିଶାଇ ଦେଇଛି ଓ ଯାହାର ଚିଦାକାଶରେ ରମଣୀର ସୌମ୍ୟ ମୂର୍ତ୍ତି ଫୁଟି ଉଠି ଆଶାର ନିକୁଞ୍ଜ କାନନରେ ମଳୟର ମୃଦୁମନ୍ଦ ହିଲ୍ଲୋଳ ଖେଳାଇ ଦେଇଛି ଓ ଯାହାର ଶାନ୍ତ ସ୍ପର୍ଶରେ ପୁରୁଷ ନିଜକୁ ଧନ୍ୟ ମନେ କରିଛି, ତାକୁ ଦୂର କରିବା ପୁରୁଷ ପକ୍ଷରେ ଅସମ୍ଭବ କହିଲେ ଚଳେ । ହୃଦୟକୁ କଠିନ କରି ପୁରୁଷ ତାର ଅନୁସୃତ ପ୍ରଣୟ-ପଥରୁ ଅନ୍ତର ହୋଇପାରେ; କିନ୍ତୁ ସ୍ମୃତି ସହଜରେ ଲିଭିବାର ନୁହେଁ । ଦୁଇଟି ଅନ୍ତରର ନିଭୃତତମ ଭାବନା ନୀରବରେ ଯେପରି ଏକତୋମୁଖୀ ହୋଇ ଗଢ଼ି କରିଥାଏ, ତାହା ପୁଣି ଜନ୍ମ-ଜନ୍ମାନ୍ତର ମିଳନର ସୂତ୍ରପାତ କରେ । ଅନନ୍ତ ସୁଖପିପାସୁ ମାନବ ସୁଖ ଆଶାରେ ମରୀଚିକାର ଅଧିଷ୍ଠାତ୍ରୀ ଦେବୀ ସେହି ନାରୀକୁ ପୁଣି ଧରିବାକୁ ଦୌଡ଼େ ତାର ବହୁଜନ୍ମବ୍ୟାପୀ କାମନା ପୂରଣ ପାଇଁ । ଯେତେବେଳେ ଚଞ୍ଚଳାନାରୀ ପୁରୁଷ ହୃଦୟରେ ଯେଉଁ ମୋହ ସଞ୍ଚାର କରେ, ତାକୁ ରୋଧ କରି ଅନ୍ୟମାର୍ଗରେ ନିୟନ୍ତ୍ରିତ କଲେ ସ୍ୱତଃ ପୁରୁଷ ଅନ୍ତରରୁ ଗୋଟାଏ ପ୍ରବୁଦ୍ଧତା ଝରିଉଠେ । ଜୀବନର ମରୁଭୂମିରେ ସେହି ରମଣୀ ସମ୍ପର୍କ ଅସ୍ଥାୟୀ ହେଲେ ସୁଦ୍ଧା କେତେ ଯେ ଆରାମପ୍ରଦ, ତାହା ଅନୁଭବୀ ବିନା ଅନ୍ୟ କେହି ବୁଝି ପାରିବେ ନାହିଁ ।

ଅନ୍ୟ ପକ୍ଷରେ ଯଦି ପୁରୁଷ ଆଜନ୍ମ ରମଣୀକୁ ଉପେକ୍ଷା କରି ଦୂରେଇ ରହି ନିର୍ଜନରେ ପ୍ରାକୃତିକ ସୌନ୍ଦର୍ଯ୍ୟ ଉପଭୋଗ କରି ବିଶ୍ୱକର୍ତ୍ତାଙ୍କର ମଙ୍ଗଳମୟ ବିଧାନରେ ଗୌରବ ଅନୁଭବ କରେ ଓ ନିଜର ନିର୍ଲିପ୍ତତାରେ ସର୍ବଦା ଅଚଞ୍ଚଳ ରହେ, ତାହାହେଲେ ସେ ସ୍ୱର୍ଗୀୟ ଆନନ୍ଦର ଆସ୍ୱାଦନ ପାଇପାରେ । ନିର୍ଝରିଣୀର କଳତାନ; ଅସ୍ତଗାମୀ ସୂର୍ଯ୍ୟର ଶେଷ କିରଣ ଛଟାରେ ରଞ୍ଜିତ ଦିଗ୍‌ବଳୟ ଓ ବସନ୍ତଦୂତର କୂଜନ ବିଶ୍ୱ-ପ୍ରକୃତି-ପୂଜନ ଏହି ଅସାଧାରଣ ମାନବ ନିକଟରେ

ନୈବେଦ୍ୟର ସାମଗ୍ରୀ ରୂପେ ଗୃହୀତ ହୁଏ, ଅନନ୍ତ ପ୍ରକୃତ ସଙ୍ଗେ ତାର ସମ୍ପର୍କ ଅବଚ୍ଛିନ୍ନ ରହେ । ବିଶ୍ୱର ପ୍ରତି ଅଣୁ ପରମାଣୁରେ ସେ ସେହି ଭୂମାଶକ୍ତିର ଉନ୍ମେଷ ଦେଖି ଜୀବଜଗତର କୌଣସି କିମ୍ବା ସଙ୍ଗେ ଘନିଷ୍ଠତା ସ୍ଥାପନ କରିବାକୁ ଚାହେଁ ନାହିଁ । ନାରୀର ଅନନ୍ୟ ସୌନ୍ଦର୍ଯ୍ୟରେ ସେ ଲିପ୍ତ ହେବାକୁ ଅସାର ମନେ କରେ ।

ଶତରଙ୍ଗିଣୀ ତା ମନୋରାଜ୍ୟରେ ଗ୍ରୁମ୍ବାମାନ ପକାଇପାରନ୍ତି ନାହିଁ । ମୋହାବେଶ-ଶୂନ୍ୟ ଜ୍ଞାନୀ ଓ ଉନ୍ମୁକ୍ତ ମାନବର ଆନନ୍ଦ ଆସଙ୍ଗଲିପ୍ସାପରିପୂର୍ଣ୍ଣ ସ୍ତ୍ରୀଠାରେ ନାହିଁ ।

ରସ ପିପାସା ଜୀବର ପ୍ରାଣେ ପ୍ରାଣେ ସଂପୃକ୍ତ । ଏ ପିପାସାଶାନ୍ତିର ପ୍ରକୃତ ଉପାୟ ନ ପାଇ ଜୀବ ଏଣେ ତେଣେ ଧାଇଁ ବୁଲେ । ନର ଓ ନାରୀର ଆତ୍ମା ଏକ । ନରଠାରେ ଚିତ୍ତଶକ୍ତି ଓ ନାରୀଠାରେ ଆନନ୍ଦଶକ୍ତିର ବିକାଶ ଆଧିକ୍ୟବଶତଃ ନର ନାରୀ ପ୍ରତି ଓ ନାରୀ ନର ପ୍ରତି ଆକୃଷ୍ଟ ହୁଏ । କାମପରତନ୍ତ୍ର ହେଲେ ପୁରୁଷ ଓ ସ୍ତ୍ରୀ ଉଭୟଙ୍କର ଅଧୋଗତି ହୁଏ । କାମୋପଭୋଗରେ କାହାର ମହତ୍ତ୍ୱ ବଢ଼େ ନାହିଁ କିମ୍ବା ହୃଦୟର ପିପାସା ମେଣ୍ଟେ ନାହିଁ । ନାରୀଠାରୁ ଦୂରରେ ରହି ତାକୁ ହୃଦୟର ଆରାଧ୍ୟା ଦେବୀ ରୂପେ ବରଣ କଲେ ପୁରୁଷର ପ୍ରେମୋଚ୍ଛ୍ୱାସ ଉତ୍ତୁଙ୍ଗ ଆକାର ଧାରଣ କରେ । ସେହି ପ୍ରେମ-ତରଙ୍ଗରେ ନାରୀର ଅନନ୍ୟ ମୂର୍ତ୍ତି ବିମଳ ଆଲୋକରେ ଉଦ୍‌ଭାସିତ ହୋଇ ପୁରୁଷର ଅନ୍ତରକୁ ଆଲୋକିତ କରେ । ଏ ସମୟରେ ପୁରୁଷ ରମଣୀ-ସମ୍ପର୍କ ଉପେକ୍ଷା କରିପାରେ । ସେ କେବଳ ଚାହେଁ ନାରୀର ସୌନ୍ଦର୍ଯ୍ୟକୁ ମାନସ ପଟରେ ଆଙ୍କି ରଖିବାକୁ । ଯଦି ନାରୀ ଏତାଦୃଶ ପୁରୁଷକୁ ତାର ସୌନ୍ଦର୍ଯ୍ୟ ଉପାସନାରେ ଅନାସକ୍ତ ରଖିବାରେ ସାହାଯ୍ୟ କରେ, ତାହାହେଲେ ଉଭୟଙ୍କ ଜୀବନ ଧନ୍ୟ ହୁଏ । କ୍ଷଣଭଙ୍ଗୁର ଜୀବନରେ ଏପରି ଉଦାର ପ୍ରେମରସ ପାନ କରିବା ଅତି ଅଳ୍ପ ଭାଗ୍ୟବାନଙ୍କଠାରେ ଘଟିଥାଏ । ଅକସ୍ମିକ ଘଟନାସ୍ରୋତରେ କେହି କେହି ଏହାର ସନ୍ଧାନ ସୁଦ୍ଧା ହରାଇ ବସନ୍ତି । ହୃଦୟରେ ମଳିନତା ଥିବା ଯାଏ ଏ ପଥରେ ଅଗ୍ରସର ହେବା ସାଧାରଣ ପୁରୁଷ କିମ୍ବା ସ୍ତ୍ରୀ ପକ୍ଷରେ ସହଜ ନୁହେଁ; କାରଣ ସମ୍ଭୋଗ ଇଚ୍ଛା ବଳବତୀ ହୋଇ ଲକ୍ଷ୍ୟ-ଭ୍ରଷ୍ଟ କରାଇଦିଏ । ପ୍ରେମିକସାଧକ ଗାଇଛନ୍ତି—

ଅମିୟ ସାଗରେ ସିନାନ କରିବ
                    କେଶ ନା ଭିଜିବେ ତାୟ;
ମାଙ୍କଡ଼ସାର ଜାଲେ ହାତୀରେ ବାନ୍ଧିବ
                    ପୀରତି ମିଲିବେ ତାୟ ।"

ପର ନାରୀ ପ୍ରେମ-ସାଧନାର ବିଶେଷ ଉପଯୁକ୍ତ ବୋଲି ଆଦର୍ଶ ପ୍ରେମଭକ୍ତମାନେ ସ୍ଥିର କରିଛନ୍ତି; କିନ୍ତୁ ବିଷୟଟି ଆଲୋଚନା କଲେ ତାର ପ୍ରଣାଳୀ ଭାବ ଜଣାପଡ଼େ । ପୁରୁଷ ଭଗବାନ୍ ଶ୍ରୀକୃଷ୍ଣଙ୍କ ପରି ଜିତେନ୍ଦ୍ରିୟ ହେଲେ ପର ସ୍ତ୍ରୀ ସହିତ ପ୍ରେମସମ୍ବନ୍ଧ ସ୍ଥାପନ କରିପାରେ । ଯାହାକୁ ପ୍ରେମଗୁରୁ ରାଧାରୂପେ ଗ୍ରହଣ କରିବାକୁ ହେବ, ସେ ମଧ୍ୟ ଗୋପୀ-ସ୍ୱଭାବ ଅନୁରାଗିଣୀ ହେବା ଆବଶ୍ୟକ । ମୋଟ ଉପରେ ଆସକ୍ତ ଭାବ ଥିବାଯାଏ ପର ସ୍ତ୍ରୀଠାରୁ ଦୂରରେ ରହିବା ଶ୍ରେୟସ୍କର । ଏ ସମ୍ପର୍କରେ ବର୍ତ୍ତମାନ ଯୁଗର ସାଧାରଣ ଉପନ୍ୟାସଗୁଡ଼ିକ ସମ୍ବନ୍ଧରେ କିଛି କୁହାଯାଇପାରେ । କେହି କେହି ପାଶ୍ଚାତ୍ୟ ଶିକ୍ଷାଦୀପ୍ତ ନବୀନ ଉପନ୍ୟାସ ଲେଖକ ଯେଉଁ ବିକୃତ ପ୍ରେମଚିତ୍ର ଦେଖାନ୍ତି, ତଦ୍ୱାରା ତରଳମତି ବାଳକ-ବାଳିକାମାନଙ୍କର ସହଜରେ ପଦସ୍ଖଳନ ହୋଇପାରେ । ରୁଚିସମ୍ପନ୍ନ ଏହି ଔପନ୍ୟାସିକମାନେ ଲେଖନୀ ଧାରଣ କଲାବେଳେ ନୀତିମାର୍ଗକୁ ଲକ୍ଷ୍ୟ କରନ୍ତି ନାହିଁ ।

କ୍ରମୋନ୍ନତପରାୟଣ ପୁରୁଷ ଓ ସ୍ତ୍ରୀ ଉଭୟ ପରସ୍ପର ସହିତ ଲକ୍ଷ୍ୟ ପଥରେ ଅଗ୍ରସର ହୋଇପାରନ୍ତି । ସ୍ତ୍ରୀକୁ ବିଳାସର ସାମଗ୍ରୀ ସ୍ୱରୂପ ନ ଦେଖି ପ୍ରାଚୀନ ଆର୍ଯ୍ୟଋଷିମାନଙ୍କ ଉପଦେଶାନୁଯାୟୀ ଧର୍ମପତ୍ନୀର ମହତ୍ତ୍ୱ ତାଠାରୁ ଉପଲବ୍ଧି କରିବା ଉଚିତ; କିନ୍ତୁ ଆଧୁନିକ କେତେକ ହିନ୍ଦୁ ନିର୍ବିରୋଧରେ ଯେ କୌଣସି ଜାତି କିମ୍ବା ସମାଜରେ ବିବାହ କରି କୁଳାଚାର ପ୍ରଥାମାନଙ୍କର ସଙ୍କୀର୍ଣ୍ଣତା ଦୂର କରନ୍ତି ବୋଲି ସେମାନଙ୍କର ବିଶ୍ୱାସ । ଯେଉଁ ନାରୀ ପୁରୁଷର ଅର୍ଦ୍ଧାଙ୍ଗିନୀ ଏବଂ ଯାହା ସାହାଯ୍ୟରେ ସେ ଐହିକ ଓ ପାରଲୌକିକ ମଙ୍ଗଳ ସାଧନ ଦ୍ୱାରା ଆତ୍ମୋନ୍ନତି କରିପାରେ, ତାକୁ ବାହ୍ୟ ଦୃଷ୍ଟିରେ ମୁଗ୍ଧ ହୋଇ

ଜୀବନସଙ୍ଗିନୀ ରୂପେ ଗ୍ରହଣ କରିବା ନିତାନ୍ତ ଗର୍ହିତ । ଯେଉଁମାନେ ପରଲୋକ କିମ୍ବା ହିନ୍ଦୁର ବେଦାନ୍ତ ପ୍ରକ୍ରିୟାରେ ବିଶ୍ୱାସ କରନ୍ତି ନାହିଁ, ସେମାନଙ୍କ କଥା ସ୍ୱତନ୍ତ୍ର । ଯେ ପର୍ଯ୍ୟନ୍ତ ନାରୀ ବିଳାସର ବସ୍ତୁ, ସେ ପର୍ଯ୍ୟନ୍ତ ତା ଠାରୁ କୌଣସି ସାହାଯ୍ୟର ଆଶା କରିବା ଉଚିତ ନୁହେଁ । ଆହୁରି ମଧ୍ୟ କେବଳ ପୁରୁଷକୁ ଏ ସମ୍ପର୍କରେ ସମ୍ପୂର୍ଣ୍ଣ ଦୋଷୀ କରିବା ଅନୁଚିତ । ଅନେକ ସ୍ତ୍ରୀ ଅଛନ୍ତି, ଯେଉଁମାନେ ସାକ୍ଷାତ କାଳଭୁଜଙ୍ଗିନୀ, ଦୁର୍ଭାଗ୍ୟବଶତଃ ଯେଉଁ ପୁରୁଷମାନେ ସେମାନଙ୍କୁ ବିବାହ କରନ୍ତି, ସେମାନଙ୍କର ପତନ ଅନିବାର୍ଯ୍ୟ । ସୁତରାଂ ପୁରୁଷ ଓ ସ୍ତ୍ରୀର ମିଳନକୁ ହେୟ ମନେ କରିବାକୁ ହେବନାହିଁ । ସମଭାବାପନ୍ନ ପୁରୁଷ ଓ ସ୍ତ୍ରୀର ମିଳନ ହେବା ଏକାନ୍ତ ବିଧେୟ ।

ଜଗତରେ ନରନାରୀ କେବଳ ପାଶବିକତା ଆଚରଣ କରି ସେମାନଙ୍କର ଉନ୍ନତି ସାଧନ କରିପାରନ୍ତି ନାହିଁ । କଲ୍ୟାଣକର ସାଧନାରେ ନରର ଦେବତ୍ୱ ଓ ନାରୀର ଦେବୀତ୍ୱ ପ୍ରକାଶ କଲେ ଜୀବନର ପୂର୍ଣ୍ଣତା ଆସେ । ଚରିତ୍ରବାନ୍ ସ୍ୱାମୀ ଓ ସତୀ ସ୍ତ୍ରୀ ଜନ୍ମଜନ୍ମାନ୍ତରରେ ସୁଦ୍ଧା କେହି କାହାଠାରୁ ବିଚ୍ଛିନ୍ନ ହୁଅନ୍ତି ନାହିଁ । ପୂର୍ଣ୍ଣତା ଲାଭ କରିବା ପର୍ଯ୍ୟନ୍ତ ଉଭୟଙ୍କର ସମ୍ପର୍କ ରହିଥାଏ । ଏ କଥା ହିନ୍ଦୁଛଡ଼ା ଅନ୍ୟ କେହି ସ୍ୱୀକାର କରିବାକୁ କୁଣ୍ଠାବୋଧ କରି ପାରନ୍ତି । ଆଜି ଏ ଦୁର୍ଦ୍ଦିନରେ ସୁଦ୍ଧା ଭାରତ-ବର୍ଷରୁ ସେପରି ପୁରୁଷ ଓ ସ୍ତ୍ରୀ ଶୂନ୍ୟ ହୋଇନାହାନ୍ତି । ଧର୍ମର ଭିତ୍ତି ଉପରେ ଯେଉଁମାନଙ୍କର ଜୀବନ ଗଢ଼ା, ସେମାନେ ନରନାରୀର ସମ୍ପର୍କକୁ ଲଘୁ ଦୃଷ୍ଟିରେ ଦେଖନ୍ତି ନାହିଁ । ଅନ୍ୟ ଦେଶମାନଙ୍କ ତୁଳନାରେ ପୁଣ୍ୟଭୂମି ଭାରତ ତାର କନ୍ୟାମାନଙ୍କୁ ସର୍ବଦା ଅତି ପବିତ୍ର ଆସନ ଦେଇଛି । ସେମାନେ ମଧ୍ୟ ସେହି ମର୍ଯ୍ୟାଦାକୁ ଅକ୍ଷୁଣ୍ଣ ରଖିଛନ୍ତି, ସଂଖ୍ୟାତୀତ ଅଗ୍ନିପରୀକ୍ଷାରେ ସେମାନଙ୍କର ସତୀତ୍ୱ ପ୍ରମାଣ କରାଯାଇଛି ।

ନାରୀର କୋମଳ ହୃଦୟ କଠିନ ତ୍ୟାଗର କଷ୍ଟି ପଥର ଘର୍ଷଣରେ ଦେଖାଯାଇଛି; ଯେତେବେଳେ ବିଶୁଦ୍ଧ ସ୍ୱର୍ଣ୍ଣ, ସେତେବେଳେ ସମାଜ ଗ୍ରହଣ କରିଛି ବନ୍ଦନୀୟା ଦେବୀ ଭାବରେ । କେତେକ ଶିକ୍ଷିତା ରମଣୀ ଏ ଆଦର୍ଶକୁ ଅବଜ୍ଞା କରି, ସେମାନଙ୍କର ସ୍ୱାତନ୍ତ୍ର୍ୟ ପ୍ରତିଷ୍ଠା କରିବାକୁ ଚାହାଁନ୍ତି । ଭବିଷ୍ୟତ ଦେଶ ପ୍ରଶାସନରେ ସେମାନେ ପୁରୁଷ ସହିତ ପ୍ରତିଦ୍ୱନ୍ଦ୍ୱୀ ହେବାକୁ ବଡ଼ ବ୍ୟଗ୍ର । ନାରୀତ୍ୱର ପରାକାଷ୍ଠା ସ୍ୱତନ୍ତ୍ର enfrachisement ରେ ନାହିଁ । ନାରୀର ମହତ୍ତ୍ୱ ଓ ପବିତ୍ର ଲକ୍ଷ୍ୟକୁ କ୍ରମଶଃ ସଙ୍କୀର୍ଣ୍ଣ ଓ ଦ୍ୱେଷପୂର୍ଣ୍ଣ କଲେ ତାର ସ୍ଥାନ ମଧ୍ୟ ସମାଜରେ ସେହିପରି ନୀଚ ହୋଇଯିବ । ପବିତ୍ର ଭାରତରେ ନାରୀତ୍ୱର ଯେଉଁ ଶ୍ରେଷ୍ଠ ଆଦର୍ଶ ଅମରାକ୍ଷରରେ ଲିପିବଦ୍ଧ କରାଯାଇଛି, ତାକୁ ବିସ୍ମୃତ ହୋଇ ଜାତୀୟତା ଗଠନ କରିବା ଆମ୍ଭମାନଙ୍କର ଉଚିତ ନୁହେଁ । ସ୍ୱାମୀ ବିବେକାନନ୍ଦଙ୍କର ନିମ୍ନୋଦ୍ଧୃତ କତିପୟ ପଂକ୍ତିରୁ ଭାରତୀୟ ରମଣୀ ତାର ମହତ୍ତ୍ୱ ଉପଲବ୍ଧି କରି ଗନ୍ତବ୍ୟ ପଥ ଅନୁସରଣ କରିବ,—

"All our mythology may vanish, even our Vedas may depart and our sanskrit literature may vanish for ever, but so long as there will be five hindus living here, men speaking only the most vulgar patois, then will be the story of Sita present.... Any attempt to modernise our women, if it tries to take our women apart from that ideal of Sita, is immediately a failure as we see everyday. The women of India must grow and develop in the foot-prints of Sita and that is the only way."

# ହିନ୍ଦୁର ସାଧନା

ସୁଷୁପ୍ତି ଓ ଜାଗରଣ ସୃଷ୍ଟିର ନିୟମ । ମଧ୍ୟାହ୍ନ ରବିର ପ୍ରଖର ରଶ୍ମି ସନ୍ଧ୍ୟା ଆଗମରେ ଦିଗ୍‌ବଳୟର ଶୋଭା ବିସ୍ତାର କରି ଅସ୍ତମିତ ହୁଏ ଓ ପରଦିନ ପ୍ରଭାତରେ ତାର ଆଗମନୀ ବାର୍ତ୍ତା ଜଣାଏ । ଭାରତର ଯେଉଁ ଜ୍ଞାନାଲୋକ ଦିନେ ଜଗତକୁ ଉଦ୍‌ଭାସିତ କରିଥିଲା, ତାହା ପୁଣି ସହସ୍ରାଧିକ ବର୍ଷ ଅଜ୍ଞାନାନ୍ଧକାର ପରେ ଆତ୍ମପ୍ରକାଶ କରିବାକୁ ଅଗ୍ରସର ହୋଇଅଛି । ଅତ୍ୟାଚାର-ନିପୀଡ଼ିତ ହିନ୍ଦୁର ପ୍ରାଚୀନତମ ସଭ୍ୟତା କାଳ ବକ୍ଷରେ ତାର ସ୍ୱତନ୍ତ୍ର-ବୈଜୟନ୍ତୀ ଉତ୍ତୋଳନ କରି ରଖିଛି । କେତେ ପ୍ରଭାବଶାଳୀ ଜାତି ଅସାଧାରଣ ପ୍ରତିଷ୍ଠାଲାଭ କରି ଅତୀତର ବିସ୍ମୃତି ଗର୍ଭରେ ଲୀନ ହୋଇଗଲେ । ସେମାନଙ୍କର ଦର୍ପ ଓ ଐଶ୍ୱର୍ଯ୍ୟ ଜଳ ବୁଦ୍‌ବୁଦ୍‌ପରି ଉଭେଇଗଲା । ଅଲଙ୍ଘ୍ୟ ବିନାଶ ଧର୍ମର ଅଧୀନ ହୋଇ ସଭ୍ୟତା ଓ ବିଭବ କାଳକ୍ରମେ ଲୋପ ପାଏ, କିନ୍ତୁ ହିନ୍ଦୁର ଯେ ଏ ସମ୍ପର୍କରେ ବ୍ୟତିକ୍ରମ ଦେଖାଯାଏ, ତାହା କେବଳ ତାର ସ୍ୱାତନ୍ତ୍ର୍ୟ ଓ ସାଧନା ଉପରେ ଆରୋପ କରାଯାଇପାରେ । ଏହି ବିଶେଷତ୍ୱ ନ ଥିଲେ ହିନ୍ଦୁର ନାମ ମଧ୍ୟ ଜଗଦ୍‌ବାସୀ ଭୁଲି ଯାଆନ୍ତେଣି । କେବଳ ତାର ନିଜତ୍ୱ ରକ୍ଷାରେ ସେ ଖ୍ୟାତି ଅର୍ଜନ କରିନାହିଁ, ଯେଉଁ ଜ୍ଞାନ ଓ ସାମ୍ୟଭାବ ହିନ୍ଦୁ ପ୍ରଚାର କରିଥିଲା, ତାହା ଆଜି ସୁଦ୍ଧା ଅଦ୍ୱିତୀୟ, ଅତୁଳନୀୟ ହୋଇ ରହିଅଛି । ଅସାଧାରଣ ସାଧନା ପ୍ରଭାବରେ ସେ ପୃଥିବୀରେ ଶ୍ରେଷ୍ଠତମ ଆସନ ପାଇଅଛି । ବର୍ତ୍ତମାନ ତାର ସ୍ୱାତନ୍ତ୍ର୍ୟ ଓ ସାଧନା ବିଷୟରେ କିଞ୍ଚିତ୍ ଆଲୋଚନା କରାଯାଉ ।

ମାନବର ଯାବତୀୟ କାର୍ଯ୍ୟ, କଳ୍ପନା ଓ ଧାରଣା ଅନ୍ତର୍ଜଗତ ଓ ବହିର୍ଜଗତରେ ସଂଶ୍ଳିଷ୍ଟ । ଆର୍ଯ୍ୟ ଭାରତୀୟ ଅନ୍ୟାନ୍ୟ ଦେଶବାସୀଙ୍କ ପରି ନିଗୂଢ଼ ତତ୍ତ୍ୱମାନଙ୍କର ସମାଧାନ ପାଇଁ ପ୍ରଥମେ ବାହ୍ୟ ପ୍ରାକୃତିକ ସୌନ୍ଦର୍ଯ୍ୟରେ ଲିପ୍ତ ରହିଲା ଓ ପ୍ରକୃତିଜାତ ସୁନ୍ଦର ଓ ମହତ୍ତ୍ୱ ବସ୍ତୁମାନଙ୍କରେ ଐଶୀ ଶକ୍ତି ଉପଲବ୍‌ଧି କରି ସେହି ମହୀୟସୀ ଶକ୍ତି ନିକଟରେ ଅବନତ ହେଲା; କିନ୍ତୁ ଅନ୍ତରର ଜ୍ଞାନ ପିପାସା ନିବୃତ୍ତି ପାଇଁ ଓ ଇହ ଜୀବନର ନଶ୍ୱରତା ସମ୍ବନ୍ଧରେ ଆଲୋଚନା କରିବା ପାଇଁ ତାକୁ ଅନ୍ତର୍ଜଗତର କ୍ରିୟା ଅନୁଶୀଳନ କରିବାକୁ ହେଲା । ଯେଉଁଦିନ ଭାରତସନ୍ତାନ ବାହ୍ୟ ପଦାର୍ଥ ସୌନ୍ଦର୍ଯ୍ୟରେ ପୂର୍ଣ୍ଣ ତୃପ୍ତି ନ ପାଇ ନିଜର ଚିନ୍ତାସ୍ରୋତକୁ ଅନ୍ତର୍ମୁଖୀ କଲା, ସେହିଦିନୁ ତାର ନୂତନ ଆଧ୍ୟାତ୍ମିକ ଜୀବନର ଆରମ୍ଭ ହେଲା । ଆତ୍ମତତ୍ତ୍ୱ ବିଚାର କରିବାର କ୍ଷମତା ହିନ୍ଦୁର କ୍ରମଶଃ ପ୍ରବଳ ହୋଇ ଉଠିଲା । ବେଦର ଜ୍ଞାନ-କାଣ୍ଡ ଏହି ମହା ମନୀଷୀମାନଙ୍କର ଆଲୋଚନାର ବିଷୟ ହେଲା । ବହୁ ଜନ୍ମବ୍ୟାପୀ ସାଧନା କଲେ ସୁଦ୍ଧା ଜ୍ଞାନ କାଣ୍ଡକୁ ଆୟତ୍ତ କରିବା ସାଧାରଣ ମନୁଷ୍ୟ ପକ୍ଷରେ ସହଜ ନୁହେଁ ବୋଲି ସେମାନେ ଘୋଷଣା କଲେ । ଗୌତମ ଓ କପିଳ ଇତ୍ୟାଦି ବିଜ୍ଞ ଦାର୍ଶନିକମାନେ ସେମାନଙ୍କ ମତର ପୋଷକତା ପାଇଁ ଅଧିକାଂଶ ସ୍ଥଳରେ ଏହି ଜ୍ଞାନକାଣ୍ଡ କିମ୍ବା ଉପନିଷଦ୍‌ର ଆଶ୍ରୟ ନେଲେ । ବେଦବର୍ଣ୍ଣିତ କେତେକ ବିଷୟ କେବଳ କୌଣସି ବିଶିଷ୍ଟ ଘଟଣା କିମ୍ବା ସମୟର ସୀମା ମଧ୍ୟରେ ଆବଦ୍ଧ ରହିଲା ଓ ଅପର କେତେକ ମନୁଷ୍ୟ ସ୍ୱଭାବ ଓ ଆତ୍ମାର ସ୍ୱରୂପ-ନିର୍ଣ୍ଣୟ ପନ୍ଥା ସ୍ଥିର କରିବାରେ ପ୍ରସିଦ୍ଧି ଲାଭ କଲା । ସୃଷ୍ଟି ସମ୍ବନ୍ଧୀୟ ଗବେଷଣା ଓ ମନୋବିଜ୍ଞାନର ଭିତ୍ତି ବେଦର ପ୍ରତିଷ୍ଠା ଉପରେ ନିର୍ଭର କଲା । ପରବର୍ତ୍ତୀ ଯୁଗମାନଙ୍କରେ ବିଭିନ୍ନ ମତାବଲମ୍ବୀମାନେ ବେଦାନ୍ତର ଭିନ୍ନ ଭିନ୍ନ ମତ ପ୍ରକାଶ କଲେ । ଦ୍ୱୈତ ଓ ଅଦ୍ୱୈତବାଦ ଯେନି ମତାନ୍ତର ଉପସ୍ଥିତ ହେଲା ।

ପୃଥିବୀର ଅନ୍ୟାନ୍ୟ ଦେଶର ଅଧିବାସୀମାନେ ଯେତେବେଳେ ବିଷୟବାସନା ପରତନ୍ତ୍ର ହୋଇ ପାର୍ଥିବ ବସ୍ତୁରେ ଆସକ୍ତ ରହିଲେ, ପ୍ରାଚୀନ ହିନ୍ଦୁମାନେ ସେତେବେଳେ ଐଶ୍ୱର୍ଯ୍ୟର ଅସାରତା ଅନୁଭବ କରି ମୁକ୍ତି ମାର୍ଗରେ ବିମଳ ଆଲୋକ ଅନୁସରଣ କଲେ । ଏହି ପରମାର୍ଥ ତତ୍ତ୍ୱ ଅନୁସନ୍ଧାନରେ ହିନ୍ଦୁର ସ୍ୱତନ୍ତ୍ରତା ପ୍ରତିଷ୍ଠିତ ହେଲା ।

ସାଧାରଣ ମନୁଷ୍ୟର ଜ୍ଞାନ ଗୋଟାଏ ସୀମା ମଧ୍ୟରେ ଥାଇ ବୈଜ୍ଞାନିକ ବିଶ୍ଳେଷଣ-କ୍ରିୟାଦ୍ୱାରା ସାମାନ୍ୟ ବସ୍ତୁ ମଧ୍ୟରେ ଏ କଥା ସନ୍ଦର୍ଶନ କରେ; କିନ୍ତୁ ବିଶ୍ୱର ଯାବତୀୟ ପଦାର୍ଥରେ ସମଦୃଷ୍ଟି ଲାଭ କରିବା କେବଳ ଆତ୍ମଜ୍ଞାନୀ ପକ୍ଷରେ ସମ୍ଭବପର । ଯେଉଁ ଜ୍ଞାନକାଣ୍ଡ ବିଷୟରେ ସୂଚନା ଦେଲୁଁ, ସେଥିରେ ସୃଷ୍ଟି, ସ୍ଥିତି ଓ ପ୍ରଳୟ ବିଷୟ ବର୍ଣ୍ଣନା କରାଯାଇ କେଣେ ସର୍ବଶକ୍ତିମାନଙ୍କୁ ଆଦିକାରଣ ସ୍ୱରୂପ ଧରାଯାଇଛି । ସେହି ସର୍ବନିୟନ୍ତାଙ୍କୁ ପୃଥକ୍ ରଖାଯାଇ କ୍ଷୁଦ୍ର ମାନବକୁ ତାଙ୍କର ଉଦ୍ଦେଶ୍ୟରେ ଆତ୍ମ-ସମର୍ପଣ କରିବାକୁ ଆଦେଶ ଦିଆଯାଇଅଛି । ତାଙ୍କର ମାହାତ୍ମ୍ୟ ବର୍ଣ୍ଣନା କରିବାକୁ ଯାଇ ଉପନିଷଦ୍ ଯେଉଁ ମହତ୍ତ୍ୱ ଓ ଉଦାର ଭାବର ଅବତାରଣା କଲେ ତାହା ନିମ୍ନୋକ୍ତ ପଂକ୍ତିରୁ ପ୍ରତିପାଦିତ ହୋଇପାରେ—"ନତେ ସୂର୍ଯ୍ୟୋ । ଭାତି, ନ ଚନ୍ଦ୍ର ତାରକଂ, ନେମା ବିଦ୍ୟୁତୋ ଭାନ୍ତି କୁତୋଽୟମଗ୍ନିଃ ।" ପୁଣି ସେହି ସୃଷ୍ଟି, ସ୍ଥିତି ଓ ପାଳନକର୍ତ୍ତାଙ୍କର ସତ୍ତାକୁ ସାମାନ୍ୟ ଧୂଳିକଣାରେ ସୁଦ୍ଧା ଅନୁଭବ କରିବାକୁ ଉପଦେଶ ଦେଲେ । ଅଦ୍ୱୈତବାଦୀମାନେ ଯେତେବେଳେ ଈଶ୍ୱରଙ୍କୁ ମାନବଆତ୍ମାରୁ ଅଭିନ୍ନ ବୋଲି ପ୍ରମାଣ କଲେ, ସେତେବେଳେ ମରଜଗତରେ ଅନିତ୍ୟତା ଯେନି ଆଉ ମନୁଷ୍ୟ ପ୍ରାଣରେ କ୍ଷୁବ୍ଧତା ଆସିଲି ନାହିଁ ।

ବର୍ତ୍ତମାନ ଯୁଗର ପାଶ୍ଚାତ୍ୟ ବିଜ୍ଞାନ ସେ ସବୁ ତଥ୍ୟ ଆବିଷ୍କାର କରିଛି । ସେଥିମଧ୍ୟରୁ ଅନେକ ପ୍ରାଚୀନ କାଳରେ ହିନ୍ଦୁମାନଙ୍କୁ ଅବିଦିତ ନ ଥିଲା । ଅଳ୍ପ ଦିନ ତଳେ ପାଶ୍ଚାତ୍ୟ ବିଜ୍ଞାନ ସ୍ଥିର କରିଛି ଯେ, ବିଭିନ୍ନ ଶକ୍ତିର ଉନ୍ମେଷ କେବଳ ଗୋଟାଏ ଶକ୍ତି ଉପରେ ନିର୍ଭର କରେ । ଯାହାକୁ ଉତ୍ତାପ, ଚୌମ୍ବିକ ଶକ୍ତି କିମ୍ବା ବିଦ୍ୟୁତ୍‌ର ପ୍ରଭାବ ବୋଲି କୁହାଯାଏ, ସେସବୁ ଏକ ଶକ୍ତି-ସମଷ୍ଟିର ଅଂଶମାତ୍ର । ବହୁଦିନ ପୂର୍ବେ ସଂହିତାରେ ହିନ୍ଦୁମାନେ ଏ ବିଷୟର ଉଲ୍ଲେଖ ପାଇଥିଲେ । ମନୁଷ୍ୟର ଚିନ୍ତାସ୍ରୋତ ଅନ୍ତଃକରଣ କିମ୍ବା ଚିତ୍ତ ଶକ୍ତିରୁ ଉତ୍ପତ୍ତି ଲାଭ କରି ସେହି ଶକ୍ତିର ପରିଚୟ ଦିଏ । ଯେଉଁମାନେ ବାହ୍ୟଜଗତରେ ସ୍ୱତନ୍ତ୍ରତା ସ୍ଥାପନ କରିବାକୁ ପ୍ରୟାସ କରନ୍ତି, ସେମାନେ ମଧ୍ୟ ଚିତ୍ତ ଶକ୍ତିକୁ ବାଦ୍ ଦେଇପାରିବେ ନାହିଁ । ଅନ୍ତର୍ଜଗତରେ ଆତ୍ମାର ବିକାଶ ପାଇଁ ମନର ସାହାଯ୍ୟ ନେବାକୁ ହୁଏ । ସୁତରାଂ ମନର ଦୃଢ଼ତା ଉପରେ ବହିର୍ଜଗତ ଓ ଅନ୍ତର୍ଜଗତର କ୍ରିୟା ଅନୁସରଣ କରିବାକୁ ହୁଏ । ମନର ଉତ୍କର୍ଷ ସାଧନ କରିବାକୁ ଯାଇ ହିନ୍ଦୁମାନେ ଶରୀରକୁ ଉପେକ୍ଷା କରି ନାହାନ୍ତି । 'କ୍ଷଣିକ ବିଜ୍ଞାନ ବାଦ' ଶରୀରକୁ ଗୋଟିଏ ବହମାନ ସ୍ରୋତସ୍ୱତୀ ସଙ୍ଗେ ତୁଳନା କରିଅଛି । ପଦାର୍ଥର ସଂଯୋଗ ଓ ବିୟୋଗ ସର୍ବଦା ଶରୀର ଉପରେ ଲାଗି ରହିଛି । ନଦୀର ଜଳ, କୂଳ ଓ ଅବସ୍ଥା ଯେପରି ସମୟାନୁସାରେ ପରିବର୍ତ୍ତିତ ହୁଏ, ସେହିପରି ଶରୀରର ଗଠନ ଓ କ୍ଷୟ ସାଧିତ ହୁଏ ।

ପୃଥିବୀରେ ଥିବା କୌଣସି ପଦାର୍ଥ ସମୟ ବିଶେଷରେ ମନୁଷ୍ୟ ଶରୀରରେ ପ୍ରବେଶ କରି ପୁଣି ନିର୍ଗତ ହୋଇଯାଏ । ବୌଦ୍ଧ ଦାର୍ଶନିକମାନେ ଉପର୍ଯ୍ୟୁକ୍ତ ମତର ଅନୁସରଣ କରି କେତୋଟି ସୁଗମପଥ ବାହାର କରିଅଛନ୍ତି; କିନ୍ତୁ ଅଦ୍ୱୈତବାଦରେ ଏହାର ସ୍ଥିର ସିଦ୍ଧାନ୍ତ ହୋଇଅଛି । ନଦୀ ପରି ମନ ଓ ଶରୀର ସର୍ବଦା ପରିବର୍ତ୍ତନଶୀଳ । କେବଳ ଆତ୍ମା ଚିରନୂତନ । ବାଲ୍ୟାବସ୍ଥାରେ ଯେଉଁ ଶରୀର ଓ ମନ ମନୁଷ୍ୟ ପୋଷଣ କରିଥାଏ, ତାହା ଯୌବନ କିମ୍ବା ବାର୍ଦ୍ଧକ୍ୟରେ ନଥାଏ । ଇଂରେଜ ଓ ଜର୍ମାନୀ ପଣ୍ଡିତମାନେ ସ୍ଥୂଳ ଶରୀରକୁ ଗୋଟାଏ ବୋଲି ଧରନ୍ତି । ସେମାନଙ୍କ ମତରେ ଗୋଟିଏ ସାମାନ୍ୟ ପତଙ୍ଗ ଓ ମହାପୁରୁଷର ଶରୀର ଏକ—ପ୍ରକାଶ ଓ ଶ୍ରେଣୀଭେଦରେ ବିଭିନ୍ନ ଆକାର ଧାରଣ କରିଥାଏ । ପାତଞ୍ଜଳ ଦର୍ଶନରେ ଏ ବିଷୟ ବର୍ଣ୍ଣିତ ଅଛି— "ଜାତ୍ୟନ୍ତର ପରିଣାମଃ ପ୍ରକୃତ୍ୟାପୂରାତ୍ ।" ତାରତମ୍ୟ ଥିଲେ ସୁଦ୍ଧା ପ୍ରତ୍ୟେକ ଶରୀରରେ ଆତ୍ମା ଅବସ୍ଥାନ କରନ୍ତି । ଆତ୍ମାର ବିକାଶ କେଉଁଠି କମ୍, କେଉଁଠି ବେଶୀ । ସ୍ଥୂଳ ଶରୀର ଆତ୍ମଦର୍ଶନ ପକ୍ଷରେ ଅନ୍ତରାୟ ଘଟାଏ । ତ୍ରିଗୁଣର ଆଧିକ୍ୟ କମି ଆସିଲେ ଓ ଶରୀରର ସୂକ୍ଷ୍ମତା ପ୍ରତିପନ୍ନ ହେଲେ ଆତ୍ମବଳ ଉତ୍ତରୋତ୍ତର ବୃଦ୍ଧି ପାଇ ଶେଷରେ ଆତ୍ମାର ସ୍ୱପ୍ରକାଶ ଜଣାପଡ଼େ । ସେଥିଯୋଗୁଁ ହିନ୍ଦୁମାନେ ପ୍ରଥମେ ଖାଦ୍ୟପେୟରେ ବିଶେଷ ସାବଧାନ ହୁଅନ୍ତି; କାରଣ ଖାଦ୍ୟପେୟ ଉପରେ ଗୁଣମାନଙ୍କର ଉତ୍କର୍ଷ ବା ଅପକର୍ଷ ନିର୍ଭର କରେ । ହିନ୍ଦୁର ବିବାହ ଧର୍ମକୁ ମଧ୍ୟ ଆଧ୍ୟାତ୍ମ ମାର୍ଗାନୁଯାୟୀ କରାଯାଇଛି । କାମପରତନ୍ତ୍ର ହୋଇ ବିବାହ କଲେ ଯେଉଁ ସନ୍ତାନମାନେ ସେହି ବିବାହର ଫଳସ୍ୱରୂପ ଜନ୍ମଗ୍ରହଣ କରନ୍ତି, ସେମାନେ ସମାଜର ଅନିଷ୍ଟ କରନ୍ତି । ମନୁଙ୍କ ମତରେ ପିତାମାତାଙ୍କ କାମୋପଭୋଗରୁ ଯେଉଁ ସନ୍ତାନର ଜନ୍ମ ହୁଏ, ସେ ଆର୍ଯ୍ୟ ନୁହେଁ । ଏପରି ସନ୍ତାନ-

ମାନଙ୍କ ସଂଖ୍ୟାବହୁଳତା ହେତୁ ଆଜିକାଲି ଜଗତରେ ମନ୍ଦକାର୍ଯ୍ୟ ବ୍ୟାପିଯାଉଛି । କୁକାର୍ଯ୍ୟଦ୍ୱାରା ଆତ୍ମା ସଙ୍କୁଚିତ କିମ୍ବା ନିଷ୍ପ୍ରଭ ହୁଏ ବୋଲି ହିନ୍ଦୁମାନେ ସେଥିପ୍ରତି ବିଶେଷ ଲକ୍ଷ୍ୟ ରଖନ୍ତି । ଆତ୍ମୋନ୍ନତି ଜୀବର ଧର୍ମ । ପୂର୍ଣ୍ଣତା ତାର ସ୍ୱଭାବଗତ ଦାବୀ । ଯେତେବେଳେ ସେ ଇହସଂସାରର ଅସାରତା ମୋହ ଦୂର କରେ, ସେତେବେଳେ ତାର ଗନ୍ତବ୍ୟସ୍ଥାନ ନିକଟବର୍ତ୍ତୀ ହୋଇଆସେ ଓ ସେ ଆତ୍ମାନନ୍ଦ ଉପଭୋଗ କରେ । ହିନ୍ଦୁର ଦୈନନ୍ଦିନ ଜୀବନରେ ସୁଦ୍ଧା ସାମାନ୍ୟ କାର୍ଯ୍ୟଗୁଡ଼ିକ ସେହି ଚିର ଅନାମୟ ଧାମ ପ୍ରାପ୍ତି ଉଦ୍ଦେଶ୍ୟରେ ସାଧିତ ହୋଇଥାଏ । ପୃଥିବୀର ଅନ୍ୟ କୌଣସି ଜାତି ଏ ବିଷୟରେ ତାର ଅଗ୍ରଣୀ ହୋଇ ପାରିନାହାନ୍ତି । ବିଷୟ ଲାଳସା ଚିରଦିନ ଅତୃପ୍ତ ରହିବ । ପାର୍ଥିବ ବାସନା ପୂରଣରେ ଜୀବର ଶାନ୍ତି ନାହିଁ; ବରଂ ମାୟାର ଅନ୍ଧକାର ବେଶୀ ଗାଢ଼ ହୋଇଆସେ । ଜଡ଼ ବିଜ୍ଞାନର ମୋହରେ ପଡ଼ି ଯେଉଁମାନେ ଭାରତୀୟ ହିନ୍ଦୁର ସାଧନାକୁ ଘୃଣା କରନ୍ତି, ସେମାନେ ବିଷୟଭୋଗର ଶେଷ ମାତ୍ରାଟି ପାଇ ପୁଣି ହିନ୍ଦୁକୁ ଅନୁସରଣ କରିବାକୁ ବାଧ୍ୟ ହେବେ ।

ବୌଦ୍ଧମାନେ ହିନ୍ଦୁର ଆତ୍ମ-ବିଶ୍ୱାସ ଦୂର କରିବାକୁ ଯାଇ କେବଳ ତ୍ରିଗୁଣ ଉପରେ ସମସ୍ତ କାର୍ଯ୍ୟର ସ୍ଥିତି ନିର୍ଦ୍ଧାରଣ କରନ୍ତି । ସେମାନେ ଯେଉଁ ଆତ୍ମ-ସତ୍ତାକୁ ଗୁଣମାନଙ୍କଠାରୁ ଭିନ୍ନ ବୋଲି ଗ୍ରହଣ କରନ୍ତି, ତାହା ସେମାନଙ୍କ ଭ୍ରମଦୃଷ୍ଟିରେ ସେପରି ଉପଲବ୍ଧି ହୋଇଥାଏ । ରଜ୍ଜୁରେ ସର୍ପଭ୍ରମ ଘଟି ଶେଷରେ ଭ୍ରମ ଦୂର ହେଲେ ଯେପରି ରଜ୍ଜୁର ସ୍ଥାୟିତ୍ୱ ରହେ, ସେହିପରି ଗୁଣ ଓ ଆତ୍ମା ଭ୍ରମବଶତଃ ଦୁଇ ଭିନ୍ନ ଭାବର ସୃଷ୍ଟି କରେ । ସାଧାରଣ ଲୋକ ଯାହାକୁ ଗୁଣ ବୋଲି ଅନୁଭବ କରନ୍ତି, ତତ୍ତ୍ୱଦର୍ଶୀମାନେ ତାକୁ ଅନନ୍ତ ସତ୍ତାର ବିକାଶ ବୋଲି ଧରନ୍ତି । ଏକ ସମୟରେ ଜଣକଦ୍ୱାରା ସେମାନଙ୍କର ପୃଥକ୍ ଭାବ ଦେଖାଯାଏ ନାହିଁ । ଗୁଣର ଆତ୍ମାଠାରୁ ସ୍ୱତନ୍ତ୍ରତା ନାହିଁ । ପ୍ରତିବିମ୍ବ-ଗୁଣର ଆଧିକ୍ୟ କିମ୍ବା ନ୍ୟୁନତାବଶତଃ ଏକ ଆତ୍ମା ଅପର ଆତ୍ମାଠାରୁ ଭିନ୍ନ ବୋଧହୁଏ । ଗୁଣଶୂନ୍ୟ ହେଲେ ଆତ୍ମାର ଦ୍ୱୈତଭାବ ରହେନାହିଁ । ପରମାତ୍ମା ଓ ଜୀବାତ୍ମା ଏକ ବୋଧ ହୁଅନ୍ତି । ବୌଦ୍ଧମାନେ ଯାହାକୁ ଗୁଣ ବୋଲି କହନ୍ତି, ତାହା ଆତ୍ମାବ୍ୟତୀତ ପ୍ରକଟିତ ହୋଇ ପାରେ ନାହିଁ । ହିନ୍ଦୁ ସିଦ୍ଧାନ୍ତ ଯେଉଁ ସାଧନା ମାର୍ଗରେ ପ୍ରତିଷ୍ଠା ଲାଭ କରିଛି, ତାକୁ ଲାଭ କରିବା ପାଇଁ ଅନ୍ୟାନ୍ୟ ଜାତି କିମ୍ବା ଧର୍ମାବଲମ୍ବୀ ପକ୍ଷରେ ବହୁ ଆୟାସସାଧ୍ୟ । ଅବଶ୍ୟ ଅନେକ କୁସଂସ୍କାର କାଳକ୍ରମେ ହିନ୍ଦୁ ଧର୍ମ ଜୀବନରେ ପ୍ରବେଶ କରିଛି, କିନ୍ତୁ ସେଥିବୋଲି କେହି ନ ଭାବନ୍ତୁ ଯେ, ତାହାର ଜ୍ଞାନାଲୋକ ଲିଭିଯାଇଛି; ହିନ୍ଦୁର ପନ୍ଥା ଅନୁସରଣ ନ କଲେ ମାନବ ଜୀବନର ମହତ୍ତ୍ୱ ସହଜରେ ଉପଲବ୍ଧ ହୋଇପାରିବ ନାହିଁ ।

ସୃଷ୍ଟି ରହସ୍ୟ ଭେଦ କରିବାରେ ହିନ୍ଦୁର କୃତିତ୍ୱ ବେଶୀ । ହିନ୍ଦୁ ମତରେ ବିଶ୍ୱର ସମସ୍ତ ଶକ୍ତି ପ୍ରଳୟ ସମୟରେ ପ୍ରାଣ କିମ୍ବା ସ୍ପନ୍ଦନରେ ପରିଣତ ହୁଏ ଓ ବସ୍ତୁଜଗତ ଏକୀଭୂତ ହୋଇ ଆକାଶରେ ଅବସ୍ଥାନ କରେ । ଏହି ଆକାଶ ବସ୍ତୁର ପ୍ରଥମ ଓ ଶେଷ ଅବସ୍ଥା ପ୍ରାଣ କିମ୍ବା ସ୍ପନ୍ଦନର ଘାତ ପ୍ରତିଘାତ ଦ୍ୱାରା ଆକାଶରୁ ଯେଉଁ ତରଙ୍ଗସବୁ ଉତ୍ଥିତ ହୁଏ, ତଦ୍ଦ୍ୱାରା ବିଶ୍ୱ ସୃଷ୍ଟିର ସୂତ୍ରପାତ ହୁଏ । ସମଗ୍ର ବ୍ରହ୍ମାଣ୍ଡର ସ୍ଥିତି ମଧ୍ୟ ଶେଷରେ ଦୁଇଟି ବିଷୟ—ଆକାଶ ଓ ପ୍ରାଣରେ ଅବସ୍ଥାନ କରେ । ଆଧୁନିକ ବୈଜ୍ଞାନିକମାନେ ଦୁହିଙ୍କର ମିଳନ ଦେଖାଇ ପାରିନାହାନ୍ତି; କିନ୍ତୁ ବ୍ରହ୍ମରେ ସେମାନଙ୍କର ଲୟ ସାଧିତ ହୁଏ ବୋଲି ଉପନିଷଦ୍ ପ୍ରକାଶ କରିଅଛନ୍ତି । ମାନବର ମନ ବ୍ରହ୍ମ କିମ୍ବା ମହତ୍ତ୍ୱର ଅଂଶବିଶେଷ ।

ମହତ୍ତ୍ୱର ଅଂଶ ସମଷ୍ଟିରେ ବିଶ୍ୱର ପ୍ରକାଶ । ଶରୀର କିମ୍ବା ପଦାର୍ଥ ବିଶେଷରେ ଯାହା ନିହିତ ଓ ସଂଘଟିତ ହେଉଅଛି, ବାହ୍ୟ ସଂସାରରେ ମଧ୍ୟ ତଦ୍ରୂପ ଘଟୁଅଛି । ସ୍ଥୂଳ ଦେହର ଅନ୍ତରାଳରେ ମନର ବସତି, ଏହାକୁ ସାଧାରଣତଃ ସୂକ୍ଷ୍ମ ଶରୀର ବୋଲି କୁହାଯାଇଥାଏ । ସୂକ୍ଷ୍ମ ଶରୀରକୁ ଆତ୍ମା ଯନ୍ତ୍ର ସ୍ୱରୂପ ବ୍ୟବହାର କରନ୍ତି । ମନକୁ ପାଶ୍ଚାତ୍ୟମାନେ ଆଗେ ଆତ୍ମା ବୋଲି ସ୍ଥିର କରିଥିଲେ । କିନ୍ତୁ ବର୍ତ୍ତମାନ ହିନ୍ଦୁର ମତ ଗ୍ରହଣ କରିଅଛନ୍ତି । ମନ ଇନ୍ଦ୍ରିୟମାନଙ୍କ ଚାଳକ । ତାର ସ୍ୱଭାବଗତ ବିକ୍ଷିପ୍ତତା ନାହିଁ । ହିନ୍ଦୁ ଦାର୍ଶନିକମାନେ ମନକୁ ନିସ୍ତରଙ୍ଗ ହ୍ରଦ ସଙ୍ଗେ ତୁଳନା କରିଛନ୍ତି । ସ୍ଥିର ଜଳାଶୟରେ ଉପଳ ଖଣ୍ଡ ନିକ୍ଷିପ୍ତ ହେବାମାତ୍ରେ ଯେଉଁ ତରଙ୍ଗ ଉତ୍ଥିତ ହୁଏ, ତାହା ସମସ୍ତ ଜଳାଶୟକୁ ବ୍ୟାପିଯାଏ । ସେହିପରି ଇନ୍ଦ୍ରିୟମାନଙ୍କ ସାହାଯ୍ୟରେ ବାହ୍ୟ ବିଷୟସବୁ ଉପଳଖଣ୍ଡ ପରି ଚିତ୍ତ ସମୁଦ୍ରରେ ନିକ୍ଷିପ୍ତ ହେଲେ, ହୃଦୟ-ଶୃଙ୍ଖଳା ଉପସ୍ଥିତ ହୁଏ । ଏହି ଚଞ୍ଚଳତା ଦୂର କରି ଉନ୍ନତି ମାର୍ଗରେ ଅଗ୍ରସର ହେବାପାଇଁ ହିନ୍ଦୁ ସଂଯମକୁ ସାଧନାର ପଞ୍ଚମ ସୋପାନ ବୋଲି ଗ୍ରହଣ କରେ ।

ଭାରତର ଜଳବାୟୁ ଓ ଅବସ୍ଥିତି ଅନେକ ପରିମାଣରେ ହିନ୍ଦୁର ଆଧ୍ୟାତ୍ମିକ ଉନ୍ନତି ପକ୍ଷରେ ସହାୟ ହୋଇଅଛନ୍ତି । ପୃଥିବୀର ଅନ୍ୟ କୌଣସି ଦେଶ ହୋଇଥିଲେ ସେ ଏପରି କଠିନ ସାଧନାରେ ମନ ବଳାଇ ନ ଥାନ୍ତା । ପ୍ରାକୃତିକ ଅନ୍ତରାୟ ଦ୍ୱାରା ଦେଶବାସୀଙ୍କର ମୌଳିକତା ଅକ୍ଷୁଣ୍ଣ ରହିଲା ଓ ସେମାନେ ଜ୍ଞାନଚର୍ଚ୍ଚା କରିବା ପାଇଁ ଯଥେଷ୍ଟ ସୁବିଧା ପାଇଲେ । ସହଜଶକ୍ତିର ଯାଞ୍ଚା କରି ହିନ୍ଦୁ ଜ୍ଞାନ-ମାର୍ଗର କଠିନତା ଭେଦ କଲା । ସାମାନ୍ୟ ଧୂଳିକଣାରେ ବିଶ୍ୱର ସମ୍ପର୍କ ସ୍ଥାପନ କରି ନିଜେ ନିର୍ଲିପ୍ତ ରହିଲା । ପାର୍ଥିବ ଦୁଃଖ ନାଶର ପ୍ରକୃତ ଉପାୟ ହିନ୍ଦୁ ପ୍ରଥମେ ସ୍ଥିର କଲା । ସେ ଯେଉଁ ଦୀକ୍ଷାଗୁରୁର ଆସନ ଅଧିକାର କଲା, ତାହା ଅନ୍ୟ ଦେଶବାସୀଙ୍କଦ୍ୱାରା ଅଧିକୃତ ହେବା ସମ୍ଭବପର ନୁହେଁ । ଭାରତ ସନ୍ତାନ ଛଡ଼ା ଅନ୍ୟ ଜାତିର ହୃଦୟ କନ୍ଦରରୁ ଅଧ୍ୟାତ୍ମଜ୍ଞାନ ସ୍ଫୁରିତ ହେବା ସହଜ ନୁହେଁ । ଭାରତର ଜ୍ଞାନାଲୋକରେ ଜଗତର ଅଜ୍ଞାନାନ୍ଧକାର ଅପସାରିତ ହୋଇଥିଲା ଓ ଚିରଦିନ ହେଉଥିବ ।

# ସେ ଓ ମୁଁ

କାଳସ୍ରୋତରେ ସବୁ ଅତୀତ ଆଡ଼କୁ ଭାସି ଯାଉଛି । ମୋର ପିଲାଦିନୁ ଆଜି ପର୍ଯ୍ୟନ୍ତ କେତେ ପରିବର୍ତ୍ତନ ହୋଇ ଗଲାଣି, ତାହାର କିଛି ଗଣନା ନାହିଁ । ଦିନେ କୈଶୋର ଆସିଥିଲା—ଜଗତଟାକୁ ମୁଁ ଦେଖୁଥିଲି ଗୋଟିଏ ନନ୍ଦନ କାନନ ପରି ! ସେତେବେଳେ ଜନକ-ଜନନୀର ସୁଖକୋଡ଼ରେ ମୋର ଆଶାସ୍ୱପ୍ନ ମୋତେ ଭୁଲାଇ ରଖିଥିଲା । କାଳର ଭୀଷଣତାକୁ ମୁଁ ଆଦୌ ଭାବିପାରୁ ନଥିଲି । ମୋର ସୁକୋମଳ ଅନ୍ତରରେ କେବଳ ଗୋଟିଏ ସରସ ରାଗିଣୀର ଆଭାସ ପାଇଥିଲି । ତାକୁ ହିଁ ସମ୍ବଳ କରି ଅଗ୍ରସର ହେଲି । ଜୀବନଟା ଯେ କ୍ଷଣସ୍ଥାୟୀ, ଏ କଥା ମୋ ମନକୁ ସ୍ପର୍ଶ ସୁଦ୍ଧା କରି ନ ଥିଲା । ମୋର ଲକ୍ଷ୍ୟ ଥିଲା ସୌନ୍ଦର୍ଯ୍ୟ ଉପରେ । ଦିନ ଚାଲିଗଲା—ଅନ୍ତରର ସେହି ରାଗିଣୀଟି ଅନ୍ତଃସଲିଳା ଫଲ୍‌ଗୁ ପରି ବହିବାକୁ ଲାଗିଲା । ମୋର କୈଶୋର ଆଜି ଆଉ ନାହିଁ । ଯେଉଁଠାରେ ରହି ମୁଁ ସୁଖସ୍ୱପ୍ନ ଦେଖିଥିଲି ସେଠାରୁ ବହୁଦୂରକୁ ଚାଲି ଆସିଲିଣି ।

ସ୍ରୋତରେ ତରଣୀ ଭାସିଯାଏ । ତରଣୀ ଆରୋହୀ କେତେ ସ୍ଥଳଭାଗ ଅତିକ୍ରମ କରି ଚାଲିଯାଏ । ଅତ୍ୟୁଜ୍ଜ୍ୱଳ ସ୍ଥାନକୁ ସେ ମନ ମଧ୍ୟରେ ଆଙ୍କି ରଖେ । ଘଟନାବହୁଳ ଜୀବନସ୍ରୋତ ପ୍ରଖର ଗତିରେ ଚାଲିଛି । ସମସ୍ତଙ୍କ ଦୃଷ୍ଟି ମଧ୍ୟ ସମାନ ନୁହେଁ । ମୁଁ ଯେଉଁ ଭାବରେ ପ୍ରଭାବିତ ହୋଇ ଅଗ୍ରସର ହୋଇଥିଲି, ତାହା କେତେ ମାର୍ଗ ଅନୁସରଣ କଲାଣି, କିନ୍ତୁ ଜୀବନସ୍ରୋତ ସଙ୍ଗେ ସେହି ରାଗିଣୀଟି ପ୍ରଚ୍ଛନ୍ନ ରହିଛି । ସଂସାରର ନିର୍ଯ୍ୟାତନାରେ ତାହା କେତେଥର ଲୁପ୍ତପ୍ରାୟ ହୋଇ ଆସିଛି । ବାହାରର କେତେ ଆବର୍ଜନା ଆସି ତାକୁ ଘୋଡ଼ାଇ ରଖିଛି । କେତେବେଳେ ଅବା ଗୋଟାଏ ପ୍ରବଞ୍ଚନା ଆସି ମୋ ଅନ୍ତରକୁ ଆଲୋଡ଼ନ କରି ସେହି ରାଗିଣୀକୁ ମୁଖରିତ କରିବାକୁ ଚେଷ୍ଟା କରିଛି; କିନ୍ତୁ ସବୁ ବିଫଳ ହେଲା ପରି ମୋତେ ଜଣାଯାଏ । ମୁଁ ଶତଚେଷ୍ଟା କରିଛି, ଜୀବନର ଗତିକୁ ବଦଳାଇ ଗୋଟିଏ ନୂତନ ରାଗିଣୀରେ ଗାନ କରିବି ବୋଲି, କିନ୍ତୁ ସବୁ ପ୍ରୟାସ ବୃଥା ହୋଇଛି । ମନ ମଧ୍ୟରେ ଅନେକ ଥର ଆଲୋଚନା କରି ଦେଖେ, "ମୁଁ କାହିଁକି ସୌନ୍ଦର୍ଯ୍ୟକୁ ଏତେ ଭଲ ପାଏ ?" ମୋ ମନ ଭାରି ମଳିନ ହୋଇଗଲାଣି; କିନ୍ତୁ ଭଲ ପାଇବାର ବାସନା ଆଦୌ କମି ନାହିଁ । ନିର୍ଝରିଣୀରୁ ବହି ଆସି ଜଳ ରୁଦ୍ଧ କିମ୍ବା ଆବିଳ ହୋଇପାରେ; କିନ୍ତୁ ତାହା ଚିରଦିନ ପାଇଁ ନୁହେଁ । ମୋ ଅନ୍ତରରୁ ଯେଉଁ ସୁମଧୁର ସ୍ୱର ଫଲ୍‌ଗୁ ବହି ଆସିଲାଣି, ତାକୁ ବନ୍ଦ କରିଦେବା ଆଉ ସମ୍ଭବପର ହେବ ନାହିଁ । ଯଦି ରାଗିଣୀଟି ବେସୁରା ହୋଇ ଉଠେ, ତାହା ହେଲେ ଯନ୍ତ୍ର ଚାଳନାକୁ କିଛିଦିନ ପାଇଁ ବନ୍ଦ କରିଦେବି ।

ଅନେକ ଥର ମୋ ଅନ୍ତରର ସେହି ଅପୂର୍ବ ରାଗିଣୀ ସ୍ୱତଃ ଝଙ୍କୃତ ହୋଇ ଉଠିଛି । ବସନ୍ତର ମୃଦୁ ହିଲ୍ଲୋଳ, କୋକିଳର କୁହୁତାନ, ମେଘର ଗୁରୁଗର୍ଜନ ଓ ଶରତର ଅନୁପମ ଶୋଭା କାହା ମନରେ କିପରି ଭାବ ଆଣେ, ତାହା ମୁଁ ଜାଣେ ନାହିଁ; କିନ୍ତୁ ପ୍ରକୃତିର ସେହି ବିଭିନ୍ନ ବିଭାବଗୁଡ଼ିକ ମୋ ମନରେ ଜଣକର ଆଭାକୁ ଅସ୍ପଷ୍ଟ ରୂପେ ଆଙ୍କି ଦେଇଯାଏ । ମୁଁ ଦେଖେ, ନଗ୍ନ ପ୍ରକୃତିର ଶୋଭା-ସମ୍ପଦ ସଙ୍ଗେ ତାର ଆଭା ମିଶି ରହିଛି । ସେ ଆସି ମୋ ହୃଦୟରେ କେତେ ଭାବ ଖେଳାଇ ଦେଇ ଚାଲିଯାଏ, କିନ୍ତୁ ମୁଁ ତାର ମନଭୁଲା କୌଶଳକୁ ଜାଣିପାରେ ନାହିଁ । ମୁଁ ତାକୁ ଚିହ୍ନିଥିଲି । ସେ ଥିଲା—କଳ୍ପନା ରାଜ୍ୟର ଏକ ଅନୁପମା ସୁନ୍ଦରୀ, ମୁଁ ଦେଖୁଥିଲି ତାକୁ ଜଣେ ଦର୍ଶକ ପରି । ମୋର ବାସ୍ତବତା ମଧ୍ୟରେ ତାକୁ କେତେଥର କେତେ ଭିନ୍ନ ରୂପରେ ଦେଖିପାରିଛି । କୈଶୋରରେ ମନରେ ଯେତେବେଳେ ଆବିଳତା ଆସିଥିଲା ଓ ସେତେବେଳେ ତାଠାରୁ ଯେଉଁ ଇଙ୍ଗିତ ପାଇଥିଲି, ସେଇ ଇଙ୍ଗିତ ମୋ ଜୀବନର ଗତିକୁ ବଦଳାଇଛି କି ନା, କହିପାରିବି ନାହିଁ; କାରଣ ମୁଁ ଜାଣେ,

ମୋର ଗଢ ବଡ଼ ବିସ୍ମୃତ ଓ ଚଞ୍ଚଳ । ସେ ମୋତେ ଭଲ ପାଉଥିଲା ମୋର ଚଞ୍ଚଳତା ସକାଶେ; କାରଣ ସେ ଥିଲା ନଜେ ଚଞ୍ଚଳା । ଏତେ ଭଲ ପାଇବାଟା କାହାର ବାଞ୍ଛନୀୟ ନ ଥିଲା । 'ସେ' ଓ 'ମୁଁ' ଗୋଟାଏ ବ୍ୟବଧାନ ସୃଷ୍ଟି କରି ରହୁଥିଲୁ । ସେ ମୋ ଉପରେ ଅନେକ ସମୟରେ ପ୍ରଭାବ ବିସ୍ତାର କରେ । ଗୋଟାଏ ଦ୍ୱନ୍ଦ୍ୱର ଦୃଢପାତ ହୁଏ; କିନ୍ତୁ ଆମ ଦୁହିଙ୍କର ଗତ କେହି ଲକ୍ଷ୍ୟ କରିପାରନ୍ତି ନାହିଁ । ଆମେ ଦୁହେଁ ଥିଲୁ ବୈଚିତ୍ର୍ୟ-ରହସ୍ୟର ସଦା ଅନୁଚର । ତେଣୁ 'ମୁଁ' ଓ 'ସେ'କୁ ଉପଯୁକ୍ତ ବିଗ୍ରହ ଦୃଷ୍ଟିରେ ଦେଖିନେବା ସମସ୍ତଙ୍କ ପକ୍ଷରେ ସମ୍ଭବ ହେବ ନାହିଁ ।

ବ୍ୟବଧାନ ସଙ୍ଗେ ଆକର୍ଷଣର କୌଣସି ବିରୋଧ ନାହିଁ । ମୁଁ ଓ ସେ ଯେତେ ଦୂରରେ ରହିଲେ ସୁଦ୍ଧା ଦୁହିଙ୍କର ମିଳନକୁ ଅବହେଳା କରିବା ଗୋଟାଏ ବ୍ୟର୍ଥତା । ମୋର ମନ ଥିଲା ବିସ୍ମୃତ; କିନ୍ତୁ ସେହି ବିସ୍ମୃତିରେ 'ସେ'ର ଅନ୍ତର୍ଗତ ଯେଉଁ ପରିବର୍ତ୍ତନ ଆଣିବ, ତାହା ଚରିତ୍ର ପାଇଁ ଜୀବନକୁ ସରସତା କିମ୍ବା ରକ୍ତତାରେ ପୂର୍ଣ୍ଣ କରିଦେଇ ଯିବ ଓ ମୁଁ ଯେଉଁ ବାସ୍ତବ ଚିତ୍ର ଦେଖାଇବି, ସେଥିରେ 'ସେ' ର ବିଗ୍ରହ ହୋଇଯିବ ।

ମୋ ପାଖରେ 'ସେ' ଥିଲା ଏକ ଉଚ୍ଚ ସ୍ତରରେ । ମୁଁ ଯେତେବେଳେ ଭାବୁଥିଲି ତା କଥା, ସ୍ୱତଃ ଏହି କଥା ମୋ ମନରେ ପଡ଼ୁଥିଲା—"All the great and noble works of the world, all great reformations were inspired and carried out by the secret influence of women. Take any mighty work in the world; if you take its hidden source, you will find that the dynamic centre which gave shape, energy and direction to the affair was the secret hand of some women acting from the background." ସୁତରାଂ 'ସେ' କାହିଁକି ମୋଠାରୁ ଦୂରରେ ରହି ମହତ୍ତ୍ୱ ନ ହେବ ? ଉପର୍ଯ୍ୟୁକ୍ତ ଉଦ୍ଧୃତ ପଂକ୍ତି କୌଣସି କଳ୍ପନା ସୁନ୍ଦରୀ ପ୍ରତି ଲକ୍ଷ୍ୟ କରାଯାଇ ଲିଖିତ ହେବା ଅସମ୍ଭବ ନୁହେଁ । ମୋ ଦୃଷ୍ଟିରେ ଯାହା ଦେଖାଗଲା, ଅନ୍ୟମାନେ ସେପରି ଦେଖିବାକୁ ବାଧ୍ୟ ନୁହନ୍ତି ।

ସହଜରେ କହି ହେବନାହିଁ, କିଏ କାହାକୁ ଅନୁସରଣ କରେ—'ମୁଁ' 'ସେ' କୁ ନା 'ସେ' 'ମୁଁ'କୁ ! ଦୁହିଙ୍କ ମଧ୍ୟରେ ଗୋଟିଏ ଅଲକ୍ଷିତ ଆକର୍ଷଣ ନ ଥିଲେ କେହି କାହାକୁ ଅନ୍ୱେଷଣ କରନ୍ତେ ନାହିଁ । ଅନେକ ସମୟରେ 'ସେ' ଚାଲିଯାଏ, 'ମୁଁ' ରହିଯାଏ କିମ୍ବା 'ମୁଁ' ଚାଲିଯାଏ, 'ସେ' ରହିଯାଏ । ମୋର ଓ ତାର ପରିଚୟ ଏ ଜନ୍ମର ନୁହେଁ । ମୁଁ କେତେ ଥର ତାକୁ ଅବଜ୍ଞା କରିଛି, କେତେ ଥର ତାଠାରେ ଆବିଳତାର ନିଦର୍ଶନ ପାଇଛି । ସେ ଆସି ମୋତେ ପ୍ରଲୋଭନ ଦେଖାଏ, ମୁଁ ତାକୁ ଦେଖି ତା ଦୋଷ ଭୁଲିଯାଏ । ସେ ପୁଣି ମୋତେ ଦୋଷୀ ସାବ୍ୟସ୍ତ କରେ । ପ୍ରକୃତରେ ଦୋଷୀ କିଏ— 'ସେ' ନା 'ମୁଁ' ? ମୁଁ ତାକୁ ଭଲ ପାଏ ବୋଲି ତା ଠାରୁ ଦୂରରେ ରହେ । ମୁଁ ଓ ସେ ଦୁହେଁ ଏକାଠି ହେଲେ ଜଗତ ଉପହାସ କରେ ।

ଦୋଷଟି ରହେ—ଜଗତର ଅନାକାଂକ୍ଷିତ ଦର୍ଶନ ଉପରେ । ଅନ୍ୟ ପକ୍ଷରେ ସେ ମୋତେ ଭଲ ପାଏ ଓ ନିଜେ ଶଙ୍କିତ ହୋଇ ମୋ ନିକଟକୁ ସମସ୍ତ ସମୟରେ ଚାଲିଆସେ; ତେଣୁ ବ୍ୟବଧାନ ନିୟମର ବ୍ୟତିକ୍ରମ ଘଟେ । ଦୁହେଁ ଥିଲୁ ଚିର ପରିଚିତ; କିନ୍ତୁ ଜଗତ ଆମ ଦୁହିଙ୍କୁ ରଖିଲା ଚିର ଅପରିଚିତ ପରି । ତାର ଆଦେଶକୁ ମୁଁ ପାଳନ ନ କଲେ ସେ ନୀରବ ରହେ; ସେ କିଛି ସ୍ପଷ୍ଟ କରି ପ୍ରକାଶ କରେ ନାହିଁ । ମନେ ପଡ଼େ, ସେ ଥରେ ଦୂର ପର୍ବତଟିଏ ଦେଖାଇ ଦେଇ ମୋତେ ଶୁଣାଇ ଦେଲା— "ଏହି ଦେଖ, ଦିଗ୍‌ବଳୟରେ ପର୍ବତର ଭୀଷଣତା କେଉଁଆଡ଼େ ଲୁଚି ଯାଇଛି । ଶାନ୍ତ ଛବିଟି ପରି ଏହା କେତେ ରମଣୀୟ ! ତୁମେ କଣ ମୋତେ ଏହିପରି ଦୂରରେ ରଖି ଭଲ ପାଇବାକୁ ଇଚ୍ଛା କର ?" ମୁଁ ନୀରବ ରହିଲି । ସେ ହସିଦେଇ ଚାଲିଗଲା । ତାର ଓଷ୍ଠାଧରରେ କ୍ଷଣକ ପାଇଁ ଯେଉଁ କମନୀୟ କାନ୍ତି ଉଠିଥିଲା, ତାହା ସେହି ଦିଗ୍‌ବଳୟରେ ଅସ୍ତଗାମୀ ସୂର୍ଯ୍ୟର ଶେଷ ରକ୍ତିମ ରଶ୍ମି ସଙ୍ଗେ ମିଶିଗଲା । ସେ ଚାଲିଗଲା; କିନ୍ତୁ ମୋ ଅନ୍ତରରେ ରଖିଦେଇଗଲା ଗୋଟିଏ ଚିତ୍ରର କେତେଗୁଡ଼ିଏ ଉପକରଣ ମାତ୍ର । ସେ ଯେତେବେଳେ ଶାନ୍ତମୂର୍ତ୍ତି ଧରି ଆସେ, ସେତେବେଳେ ମୋର କ୍ଷୁବ୍ଧତା କେଉଁଆଡ଼େ ଉଭେଇଯାଏ । ସେ ଯାହା କହିଯାଏ, ମୁଁ ତାକୁ ବିନା ଆପତ୍ତିରେ ଶୁଣେ; କିନ୍ତୁ ତାର ଚଞ୍ଚଳତାକୁ ମୁଁ ନିକଟ ସହିପାରେ ନାହିଁ । ବସନ୍ତର

ମୃଦୁଝଙ୍କାର ଆସେ, ମୋର ଅନତିଦୂରରେ ବୃକ୍ଷଟି ଟିକିଏ ଦୋହଲିଯାଏ । ପତ୍ରଗୁଡ଼ିକ ଅକାତରେ ଝଡ଼ି ପଡ଼ନ୍ତି । ସନ୍ଧ୍ୟା ଆସେ, ଜ୍ୟୋତ୍ସ୍ନାପ୍ଲାବିତ ନଦୀବକ୍ଷରେ ତରଣୀ ଭାସିଯାଏ । ମୁଁ କେବଳ ଅନାଇ ରହେ । ସେ ଆସି କହିଦିଏ—"ତୁମ ସାଥୀଟି ପାଖକୁ ଯାଉ ନା ?" ମୁଁ ଭାବେ, ସେ କାହିଁକି ମୋ ଭାବ ରାଜ୍ୟରେ ଗୋଟାଏ ଆଘାତ ଦେଇ ଚାଲିଗଲା ! ମୋ ସଙ୍ଗେ ଖେଳିବା ତାର ଅଭିପ୍ରାୟ ହୋଇ ନ ଥିଲେ, ଠିକ୍ ସମୟ ଦେଖି ସେ ଆସନ୍ତା ନାହିଁ । ମୋର କିଛି ଦୋଷ ଦେଖିଲେ ସେ ବଡ଼ ଉପହାସ କରୁଥିଲା । କେତେଥର ତାର ଅନଧିକାର ବକ୍ତବ୍ୟ ମୋତେ ବିବ୍ରତ କରିପକାଇଛି; କିନ୍ତୁ ମୁଁ ଜାଣେ ନାହିଁ, କାହିଁକି ତାକୁ କ୍ଷମା ଦେଇଚି !

ଆଗରୁ କହିଚି, ମୁଁ ତାକୁ ଚିହ୍ନିଥିଲି; କିନ୍ତୁ ସେ କୁହେ ତାର ଅନ୍ତର ତାକୁ ଅଜଣା ! କେତେଥର ମୋ କଥା ଶୁଣିବାକୁ ସେ ଅବସର ପାଇଛି; କିନ୍ତୁ ମୋ କଥାର କୌଣସି ଉତ୍ତର ଦେଇନାହିଁ । କେବଳ ମୁଁ କହିଯାଏ, ସେ ଶୁଣେ । ଅଧିକାଂଶ ସମୟରେ ସେ ମୋର ମନେ ପକାଇଦିଏ; ଜଗତରେ କେହି କାହାର ନୁହଁନ୍ତି । ମୁଁ ଯେତେବେଳେ ତାର ଓ ମୋର ବ୍ୟବଧାନକୁ ପାସୋରିଦିଏ, ସେତେବେଳେ ସେ ମୋତେ ବିଦ୍ରୂପ କରେ । ମୁଁ ନିଜର ଦୁର୍ବଳତା ବୁଝିପାରି ତା ପାଖରୁ ଅପସରିଯାଏ । ମୁଁ ଓ ସେ କେହି କାହାରିକୁ ଭୟ କରୁନାହିଁ । ଦୂର ପର୍ବତର ସେହି ଧାରଣା ଆମ ଦୁହିଁଙ୍କ ମଧ୍ୟରେ ସୌନ୍ଦର୍ଯ୍ୟର ଏକ ଅଭିନବ ଭାବ ଜାଗ୍ରତ କରିଦେଇଥିଲା । ମୋ ପାଖରୁ ସେ ଅନ୍ତର ହୋଇ ଚାଲିଯାଏ । ମୁଁ ତାକୁ ଭୁଲିବାକୁ ଚେଷ୍ଟା କରେ; କିନ୍ତୁ ଆକସ୍ମିକ ଘଟଣା ଆସି ପୁଣି ଦୁହିଁଙ୍କ ମନରେ ଆଳାପ ରଚନା କରାଇଦିଏ । ମୁଁ ତାକୁ କେବେ ଘୃଣା କରିଚି ବୋଲି ମନେ ହୁଏ ନାହିଁ । କୈଶୋରରେ ଯେଉଁ ରାଗିଣୀ ବାଜି ଉଠିଥିଲା, ତାକୁ ସେ ସର୍ବଦା ମୋ ଅନ୍ତରରେ ଉଦ୍‌ବୁଦ୍ଧ କରି ରଖିଥିଲା ବୋଲି ମୋର ତା ପ୍ରତି ଏତେ ଅନୁରାଗ; ବିଶେଷତଃ ତାର ଭାବ ମୋର ହୃଦୟକୁ କାହିଁକି ଉଦ୍‌ବେଳିତ କରୁଥିଲା—ଏକଥା ସେ କିମ୍ବା ମୁଁ ଜାଣି ନଥିଲୁ । ସଂସାରର କଠୋରତାକୁ ମନରୁ ଦୂର କରିବା ଦୁହିଁଙ୍କର ଅଭିପ୍ରାୟ ଥିଲା । ଅଭିପ୍ରାୟ ଯେ ସବୁବେଳେ ସିଦ୍ଧିରେ ପରିଣତ ହୁଏ ନାହିଁ; ଏକଥା କେବଳ ମୁଁ ଜାଣିଥିଲି । ସଂସାରର ତାଡ଼ନା ମଧ୍ୟରେ ମୁଁ ତାକୁ ଭୁଲିବାକୁ ଅନେକଥର ଇଚ୍ଛା କଲିଣି; କିନ୍ତୁ ପଛରୁ ଡାକ ସେ ମୋର ଗତି ଫେରାଇଦିଏ । ଏଥିରେ ତାର କିଛି ହେଲେ ମାତ୍ର ଦୋଷ ନାହିଁ । ମୋର ତା ଡାକ ଶୁଣିବାରେ ରହିଯାଏ ଟିକିଏ ତ୍ରୁଟି । ମୋର ଭାବିବା ଉଚିତ୍, ସେ ତ ନିଜର ଅନ୍ତର କଥା ଜାଣେ ନାହିଁ, ତା ଡାକ ଶୁଣିବାରେ ମୋର ଲାଭ କଣ ?

ମୁଁ ତାକୁ ଦେଖୁଥିଲି ଗୋଟାଏ ପ୍ରହେଳିକା ପରି । ତା ଠାରେ ସୌନ୍ଦର୍ଯ୍ୟର ପୂର୍ଣ୍ଣତା ଦେଖିବା ଥିଲା ମୋ ଜୀବନର ଲକ୍ଷ୍ୟ । ମୋର ଚଞ୍ଚଳତା ଦେଖି ସେ ଗୋପନରେ ଆସିଲେ ମୁଁ ସ୍ତବ୍ଧ ହେଉଥିଲି । ଯେତେ ରୂପରେ ସେ ମୋ ନିକଟକୁ ଆସୁଥିଲା, ସବୁଥିରେ ତାର ଥିଲା ଗୋଟିଏ ସରଳତାର ଦୀପ୍ତି । ନିର୍ଜନରେ ପ୍ରକୃତିର ଶୋଭା ଦେଖିଲାକ୍ଷଣି ମୁଁ ତାକୁ ମନରେ ପକାଏ । ସେ ଆସି ତାର ମୁକ୍ତ ପ୍ରାଣର ସରଳ କାହାଣୀ କହିଦେଇଯାଏ ।

ଏପରି ସୁବିଧା ମୋ ଜୀବନରେ ଖୁବ୍ କମ୍ ଆସିଚି । ଉଷାର ରକ୍ତିମ ଆଭା ପୂର୍ବାକାଶରେ ଫୁଟିଉଠେ । ସେ ଆସି ମୋ କାନରେ କହିଦିଏ—"ଜୀବନର ଅନ୍ଧକାରକୁ ପଛରେ ପକାଇ ଦେଇ ଅଗ୍ରସର ହୁଅ ।" ମୁଁ ଅନ୍ତରର ଗୋପନ ରାଗିଣୀ ତାକୁ ଶୁଣାଇବା ପାଇଁ ଚେଷ୍ଟା କରେ । ସେ କୁହେ, ରାଗିଣୀର ଝଙ୍କାର ଯେତେବେଳେ ଅସ୍ପଷ୍ଟ ହୋଇ ଉଭେଇ ଯାଉଥିବ, ସେତେବେଳେ ତାକୁ କାନଡେରି ଶୁଣିବ—ତା ପୂର୍ବରୁ ନୁହେଁ । ପୁଷ୍ପର ସୌରଭରେ ସେ ତାର ପ୍ରଶସ୍ତିର ଅବ୍ୟକ୍ତ ଚିତ୍ର ଆଙ୍କିଦିଏ । ତାର ଇଚ୍ଛା—ସେ ଇଙ୍ଗିତ ଦେବ, ମୁଁ ତାକୁ ଅନୁସରଣ କରିବି; କିନ୍ତୁ ମୋର ଉପଲବ୍ଧି ହେଲା—ନାରୀ ଶକ୍ତି-ରୂପିଣୀ, ତାକୁ ଅନୁସରଣ କରିବା କଳ୍ପନା ରାଜ୍ୟରେ ଗୋଟାଏ ବିଚରଣ ଓ ସେହି ବିଚରଣରେ ବାସ୍ତବତାର କାଳିମା ଅପସାରିତ ହୁଏ ।

# ସାଥୀ

ସ୍ୱଚ୍ଛଳ ପ୍ରୟାସୀ ମନୁଷ୍ୟର ମନ ସ୍ୱଚ୍ଛ କଳନାଦିନୀ ପରି ସଦା ଗତିଶୀଳ । ଅନନ୍ତ ଜଳଧି ସଙ୍ଗେ ଯେପରି ତଟିନୀ ମିଶିଯାଏ, ସେହିପରି ବିଶ୍ୱ ପ୍ରକୃତିର ଅସୀମତାରେ ଜୀବନର ଧାରାଟି ଗୋଟାଏ ଚିରନ୍ତନ ମିଳନ ଲୋଡ଼େ । ମିଳନରେ ମୁକ୍ତି ଓ ଆନନ୍ଦର ସମ୍ଭାବନା ନ ଥିଲେ ଜଣେ ଆଉ ଜଣକ ପାଇଁ ଅପେକ୍ଷା ରଖନ୍ତା ନାହିଁ । ଏହି ଅପେକ୍ଷାରେ ମିଳନରେ ଭିତ୍ତିଭୂମି ଦୃଢ଼ ହୁଏ । ଜଗତର ନିର୍ଯାତନା ଜୀବନର ସହଜ ଗତିକୁ ବଦଳାଇ ଦେଇ ଯେଉଁ ବିଭୀଷିକା ଜନ୍ମାଏ, ସେଥିରେ ମନୁଷ୍ୟ ଅଧିକାଂଶ ସମୟରେ ବଡ଼ କ୍ଷୁବ୍ଧ ହୋଇ ଉଠେ ଓ ତାର ଦୃଷ୍ଟିରେଖା ଗୋଟାଏ ନିରୂପିତ ସୀମା ମଧ୍ୟରେ ଆବଦ୍ଧ ହୋଇ ରହେ । ଯେଉଁମାନେ ଏହି ସୀମାକୁ ଅତିକ୍ରମ କରି ଅଗ୍ରସର ହୁଅନ୍ତି, ସେମାନେ ମୁକ୍ତ ବିହଙ୍ଗ ପରି ଗୋଟାଏ ଅନନ୍ତ ପଥର ପଥିକ ହୁଅନ୍ତି । ଅସରନ୍ତି ପଥରେ ସାଥୀଟିଏ ପାଇଁ ପଥିକ ସମୟ ସମୟରେ ଉଦ୍‌ବିଗ୍ନ ହୋଇ ଅନାଇ ରହେ; କିନ୍ତୁ କେତେ ଜଣ ଭାଗ୍ୟବାନ ସାଥୀର ସରସ ସଂପର୍କ ଲାଭ କରିବାକୁ ସମର୍ଥ ହୁଅନ୍ତି ? ଜଗତରେ ଦୁଇଟା ହୃଦୟର ନିର୍ଦ୍ୱନ୍ଦ୍ୱ ମିଳନ ଖୁବ୍ କମ୍ ଦେଖିବାକୁ ମିଳେ । ସାମାଜିକ ଓ ଲୌକିକ ରୀତିନୀତିର ଆଶ୍ରୟରେ ଯେଉଁ ସହୃଦୟତା ଦେଖାଯାଏ, ତାହା ଗୋଟାଏ ଛଳନା ମାତ୍ର । ଏହି ଛଳନା ମନୁଷ୍ୟର ସ୍ୱରୂପକୁ ଘୋଡ଼ାଇ ରଖେ । ତେଣୁ ଭଲମନ୍ଦ ନିର୍ଣ୍ଣୟ କରି ସାଥୀଟିର ସନ୍ଧାନ ନେବା ମନୁଷ୍ୟ ପକ୍ଷରେ ପ୍ରାୟ ଅସମ୍ଭବ ହୁଏ ।

ସୁଖର ସାଥୀ ହେବା ପାଇଁ ଅନେକ ଆସନ୍ତି; କିନ୍ତୁ ପ୍ରକୃତ ବନ୍ଧୁଟି ଦୁର୍ଦ୍ଦିନରେ ତାଙ୍କର ପରିଚୟ ଦେଇ ଚାଲିଯାନ୍ତି । ସେ କୌଣସି ସ୍ୱାର୍ଥସିଦ୍ଧିର ଅପେକ୍ଷା ରଖନ୍ତି ନାହିଁ । ହୃଦୟର ସାଧୁ ପ୍ରେରଣାରେ ଜଣେ ଯଦି ଆଉ ଜଣକୁ ସାଥୀ କରିନେବାକୁ ଇଚ୍ଛା କରେ, ତାହାହେଲେ ସମାଜର କୌଣସି ନିବିଡ଼ ବନ୍ଧନ ଏହି ମିଳନକୁ ବାଧା ଦେବା ଉଚିତ ନୁହେଁ । କିନ୍ତୁ ଏପରି ମିଳନ କେତେଟା ଦେଖାଯାଏ ? ମିଳନରେ ବନ୍ଧୁତ୍ୱର ପରାକାଷ୍ଠା ପ୍ରମାଣିତ ହୋଇପାରେ । ତା ବୋଲି ପ୍ରତ୍ୟେକ ମିଳନକୁ ନିୟମର ନିଗଡ଼ରେ ଆଣି ରଖିବା ସୁବିବେଚନା ନୁହେଁ । ବିବାହ-ବନ୍ଧନରେ ପୁରୁଷ ଓ ନାରୀର ମିଳନ ହୁଏ । ଦେଶ ଓ ସମାଜର ମଙ୍ଗଳ ପାଇଁ ବିବାହକୁ ଧର୍ମାନୁମୋଦିତ ପ୍ରଧାନ ଗାର୍ହସ୍ଥ୍ୟ କର୍ମ ରୂପେ ଆବହମାନକାଳରୁ ଗ୍ରହଣ କରାଯାଇଅଛି; କିନ୍ତୁ ବିବାହ ପରେ ଅଳ୍ପସଂଖ୍ୟକ ନାରୀ ଓ ପୁରୁଷର ଅନ୍ତର ସମପ୍ରେରଣାର ବଶବର୍ତ୍ତୀ ହୋଇଥାଏ । ଅବଶ୍ୟ ସ୍ୱାମୀ ସ୍ତ୍ରୀର ମନୋଗତ ବୈଷମ୍ୟକୁ ସହଜରେ ଧରି ହୁଏ ନାହିଁ ବୋଲି ଜଗତରେ ବିବାହ-ମିଳନଟା ସବୁଠାରୁ ବଡ଼ । ଆଜୀବନ ଗୋଟାଏ ନିରୂପିତ ଧର୍ମ ପାଳନ କରି ଓ ପରସ୍ପରଠାରୁ ଅସଂପୃକ୍ତ ରହି ଦୁଇଜଣ ନରନାରୀ ସ୍ୱାମୀ-ସ୍ତ୍ରୀର ମିଳନ ଅପେକ୍ଷା ଅନ୍ୟ ଏକ ଉନ୍ନତ ମିଳନର ସମ୍ଭାବନା ଦେଖାଇ ପାରନ୍ତି; କିନ୍ତୁ ପୁରୁଷ ଓ ନାରୀର ଯୌନ ସଂପର୍କଟା ଏ ଦିଗରେ ଅଗ୍ରସର ହେବା ପାଇଁ ବାଧା ଦିଏ ବୋଲି ସମାଜ ଏପରି ମିଳନକୁ ସନ୍ଦେହ ଚକ୍ଷୁରେ ଦେଖେ । ଆଦର୍ଶ ମହତ୍ ହେଲେ ସୁଦ୍ଧା ଦେଶାଚାର କୁଳାଚାର ପ୍ରଭୃତିର ବିରୋଧୀ ହେବା ସୁନ୍ଦର ନୁହେଁ । ତେଣୁ ଗୋଟାଏ ନିର୍ଦ୍ଦିଷ୍ଟ ମାର୍ଗରେ ଜଗତର ନରନାରୀ ଚାଲିଛନ୍ତି । ଆଜି ସଭ୍ୟତାର ଚରମ ଶିଖରରେ ଯେଉଁମାନେ ଆସୀନ, ସେମାନେ ସଗର୍ବରେ ପୁରାତନ ରୀତିନୀତିକୁ ଅବହେଳା କରି ନୂତନ ମାର୍ଗରେ ବିଚରଣ କରୁଛନ୍ତି । କିନ୍ତୁ ସେମାନଙ୍କ ମଧ୍ୟରୁ ଅଧିକାଂଶଙ୍କର ପଥଭ୍ରଷ୍ଟ ପଥିକର ଦଶା ଘଟୁଅଛି । ଗୋଟାଏ ପ୍ରତିଷ୍ଠିତ ମାର୍ଗରେ ଗତି କଲେ ମନୁଷ୍ୟ ନୀତିବାଦୀ ହୋଇପାରେ; କିନ୍ତୁ ଅନ୍ତରର ଆକାଂକ୍ଷା ପ୍ରାୟ ଅପୂର୍ଣ୍ଣ ରହିଯାଏ । ଗୁରୁ ଶିଷ୍ୟକୁ କେତେଗୁଡ଼ିଏ ନିୟମ ପାଳନ କରିବାକୁ ଆଦେଶ ଦେଇ ଯେପରି ତାଙ୍କର କର୍ତ୍ତବ୍ୟ ଶେଷ ହେଲା ବୋଲି ମନେ କରନ୍ତି, ସେହିପରି ସମାଜ ପୁରୁଷ ଓ ନାରୀକୁ ବିବାହ ବନ୍ଧନରେ ବାନ୍ଧିଦେଇ ନିଶ୍ଚିନ୍ତ ରହେ । ବିବାହ ପରେ କେହି ଦେଖନ୍ତି ନାହିଁ ଯେ, ନାରୀ ପୁରୁଷକୁ କିମ୍ବା ପୁରୁଷ

ନାରୀକୁ କପରି ଚକ୍ଷୁରେ ଦେଖୁଛି । ଅନେକ ସମୟରେ ଧର୍ମ ଓ ସମାଜ ଭୟରେ ମନୁଷ୍ୟ ତାର ମନୋଗତ ଭାବ ପ୍ରକାଶ କରିପାରେ ନାହିଁ । ସୁନ୍ଦରୀ ସ୍ତ୍ରୀର ସ୍ୱାମୀ କୁତ୍ସିତ ହେଲେ ସୁଦ୍ଧା ସମାଜର ନିୟମ ପାଳନ କରି ସେ ସ୍ୱାମୀର ଅନୁଗାମିନୀ ହେବ । ଏଠାରେ ଅନ୍ତରର କଥା ବିଚାର୍ଯ୍ୟ ନୁହେଁ । ସାମାଜିକ କଠିନ ନିୟମମାନଙ୍କର ପ୍ରବର୍ତ୍ତନ ପୂର୍ବରୁ ମନୁଷ୍ୟର ସ୍ୱାଭାବିକ ପ୍ରବୃତ୍ତି-ଗୁଡ଼ିକର ସମ୍ୟକ ଆଲୋଚନା କରିବା ଏକାନ୍ତ ଆବଶ୍ୟକ । କେବଳ ଆଦର୍ଶବାଦ ଉପରେ ଦେଶ ତଥା ଜାତିର ମଙ୍ଗଳ ନିୟନ୍ତ୍ରଣ ନିର୍ଭର କରେ ନାହିଁ । ଜଗତରେ ସୀତା ସାବିତ୍ରୀଙ୍କର ସଂଖ୍ୟା କେତେ ? ଏ ସମ୍ପର୍କରେ ଆଉ ଗୋଟିଏ କଥା ଉଲ୍ଲେଖ ଯୋଗ୍ୟ । ନାରୀ ଯେଉଁଠାରେ ପୁରୁଷକୁ ନିଜ ଅପେକ୍ଷା ବଡ଼ ମନେ କରେ ଓ ତା ହୃଦୟ ବିନିମୟରେ ପୁରୁଷକୁ ଲାଭ କରିବାକୁ ଅଗ୍ରସର ହୁଏ, ସେଠାରେ ଧର୍ମ କିମ୍ବା ସମାଜର ଦୋହାଇ ଦେଇ ନାରୀକୁ କଳଙ୍କିତା ଆଖ୍ୟା ଦେବା ଭୀଷଣ ନିଷ୍ଠୁରତା । ଉଦ୍‌ଭ୍ରାନ୍ତ ଯୌବନର ପ୍ରତାରଣାରେ ପୁରୁଷ ଓ ନାରୀ ମଧ୍ୟରେ ଗୋଟାଏ ସହଜ ବନ୍ଧୁତା ଜନ୍ମିପାରେ, କିନ୍ତୁ ଏହା ବେଶୀ ସମୟ ସ୍ଥାୟୀ ହୋଇ ରହିପାରେ ନାହିଁ । ଅନେକ ସମୟରେ ଯୁବକ-ଯୁବତୀ ବିବାହକୁ ସ୍ୱର୍ଗସୁଖ ରୂପେ କାମନା କରୁଥାନ୍ତି । ସେମାନେ ଜାଣି ନଥାନ୍ତି, ରଙ୍ଗିନ ଯୌବନ-ପର୍ଦ୍ଦାଟିର ଅନ୍ତରାଳରେ ଗୋଟାଏ ବିରାଟ ବୈଷମ୍ୟର ଲୀଳାଭୂମି ବିସ୍ତାରିତ ହୋଇ ରହିଅଛି । ଲୋକେ କହନ୍ତି—ଦୁଇ ଦିନର ଦୁନିଆରେ ବୃଥା ସ୍ନେହ ମମତାକୁ ପାସୋରି ଦେଇ ସବୁ ଦୁଃଖକଷ୍ଟ ଭୁଲିଯିବା ଉଚିତ । ଏପରି ସାନ୍ତ୍ୱନା ନିରର୍ଥକ ନୁହେଁ । ଅନ୍ତରର ସ୍ନେହଟିକି ଦେଇ ନିଃସ୍ୱ ହେଲେ ଜୀବନ ବଡ଼ ଦୁର୍ବହ ବୋଧହୁଏ । ନୈରାଶ୍ୟରେ ଅନ୍ତରର ଆରାଧ୍ୟ ଧନଟି ଲୁଚିଯିବା କିମ୍ବା ତାକୁ ମନରୁ ପାସୋରି ଦେବା ସହଜ ନୁହେଁ । ବରଂ ନୈରାଶ୍ୟରେ ହୃଦୟ ଶକ୍ତି ସଞ୍ଚୟ କରିବାକୁ ଅବସର ପାଏ । ସୁତରାଂ ସଂସାରରେ ଅବହେଳିତ ହେଲେ ଯେଉଁ ଦୁଃଖ ଆସେ, ତାକୁ ମନୁଷ୍ୟ ଭୁଲିଯାଇପାରେ; କିନ୍ତୁ ଅନ୍ତରର ନିଭୃତ ପ୍ରଦେଶରେ ଯେଉଁ ସ୍ପନ୍ଦନଟିକି ଜଣେ ଆଉ ଜଣଙ୍କ ପ୍ରତି ଅନୁଭବ କରିଥାଏ, ତାକୁ ପାସୋରି ଦେବା ଅସମ୍ଭବ କହିଲେ ଚଳେ । ଅନନ୍ତ ପଥର ଯାତ୍ରୀ ନିକଟରେ ଦୁନିଆଟା ଦୁଇଦିନର ହୋଇପାରେ; କିନ୍ତୁ ଯେଉଁ ସାଥୀଟିକୁ ଅପେକ୍ଷା କରୁଥାଏ, ସେ ଦୁଇଦିନ ପାଇଁ ଆସେ ନାହିଁ । ଦୁଇଟି ପ୍ରବାହ ଦୁଇ ବିଭିନ୍ନ ଦିଗରୁ ବହି ଆସି ଏକତ୍ରିତ ହୋଇଯାନ୍ତି; ସେମାନଙ୍କର ପୃଥକ୍ ସତ୍ତା ଲୋପ ପାଇଯାଏ । ପ୍ରବାହ ପରି ଦୁଇଟି ଜୀବନ ମିଳିତ ହୋଇପାରନ୍ତି; କିନ୍ତୁ ଜୀବନର ମୁକ୍ତତା ନ ଥିଲେ ଜଣେ ଆଉ ଜଣଙ୍କ ସହିତ ବାହ୍ୟ ଦୃଷ୍ଟିରେ ମିଳିଗଲେ ସୁଦ୍ଧା ସେମାନଙ୍କ ଅନ୍ତର ସେହି ମିଳନକୁ ମାନେ ନାହିଁ । ଅନ୍ତରର ବିରୋଧ ଯେନ ସ୍ୱାମୀ ସ୍ତ୍ରୀ ମଧ୍ୟରେ ପ୍ରଣୟର ପବିତ୍ରତା ନଷ୍ଟ ହୋଇଯାଏ । ତେଣୁ ଶରୀରର ସୁଖ-କାମନାରେ ଅନ୍ତରର ମିଳନକୁ ତ୍ୟାଗ କରିବାକୁ ପଡ଼େ । ପ୍ରାଚୀନ ଭାରତୀୟ ଆଦର୍ଶରେ ସ୍ତ୍ରୀକୁ ସହଧର୍ମିଣୀ କରାଯାଇଅଛି; କିନ୍ତୁ ଆଜିକାଲି ପାଶ୍ଚାତ୍ୟ ନୀତିବାଦୀମାନେ ସ୍ତ୍ରୀକୁ ସହକର୍ମିଣୀ ରୂପେ ଗ୍ରହଣ କରି ଗୋଟିଏ ନୂତନ ମାର୍ଗ ଉଦ୍‌ଘାଟନ କରିବେ ବୋଲି ମନେ କରନ୍ତି । ପ୍ରାଚୀନ ଓ ଆଧୁନିକ ଦୁଇ ଆଦର୍ଶ ମଧ୍ୟରେ ପାର୍ଥକ୍ୟ ଦେଖାଇ ଗୋଟିକୁ ବଡ଼ କିମ୍ବା ଗୋଟିକୁ ସାନ ପ୍ରମାଣ କରିବା ଆମ୍ଭମାନଙ୍କର ଉଦ୍ଦେଶ୍ୟ ନୁହେଁ । ରୁଚିଭେଦରେ ଏପରି ପାର୍ଥକ୍ୟ ଦେଖାଯିବା ସମ୍ପୂର୍ଣ୍ଣ ସ୍ୱାଭାବିକ ।

ସମଜାତୀୟମାନଙ୍କର ମିଳନରେ ପ୍ରକୃତିଗତ କୌଣସି ବାଧା ନାହିଁ; କିନ୍ତୁ ମନୁଷ୍ୟ ହୃଦୟ ସମ୍ପର୍କରେ ଏହି ନିୟମର ଟିକିଏ ବ୍ୟତିକ୍ରମ ଦେଖାଯାଏ । ଜଗତର ଅସଂଖ୍ୟ ନରନାରୀ ମଧ୍ୟରେ କେତେଗୁଡ଼ିଏ ବିଶିଷ୍ଟ ସାଧାରଣ ପ୍ରବୃତ୍ତି ଅଛି । ସେଗୁଡ଼ିକ ବାଦ୍ ଦେଲେ ମନୁଷ୍ୟ ଚରିତ୍ରରେ ଘୋର ଅସାମଞ୍ଜସ୍ୟ ଦେଖାଯାଏ । ଜଣକର ପ୍ରକୃତି ଅନ୍ୟ ଜଣକ ସହିତ ସମ୍ପୂର୍ଣ୍ଣ ରୂପେ ମିଳିପାରେ ନାହିଁ । ଯଦି ବାହାରଟାର ପାର୍ଥକ୍ୟ ସହଜରେ ଲକ୍ଷିତ ହୋଇପାରେ, ତାହାହେଲେ ଅନ୍ତରର ଦୂରତ୍ୱ କିପରି ବଢ଼ିଯାଏ, ତାହା ଅନୁମାନ କରିବା ଆଦୌ କଠିନ ହେବନାହିଁ । ଏକଗର୍ଭଜାତ ସନ୍ତାନମାନଙ୍କର ଦୃଷ୍ଟାନ୍ତ ଦେଖିଲେ ଉପର୍ଯ୍ୟୁକ୍ତ ମତର ସତ୍ୟତା ଉପଲବ୍ଧି କରାଯାଇପାରିବ । ଅନେକେ କହନ୍ତି, ପ୍ରାଚୀନ ଯୁଗରେ ମନୁଷ୍ୟ ଚରିତ୍ରରେ କଳଙ୍କର କାଳିମା ଅଳ୍ପ ପରିମାଣରେ ଥିଲା, ଆଜି ତାହା ବହୁ ପରିମାଣରେ ବଢ଼ି ଯାଇଛି । ଆଧୁନିକ ମତବାଦୀମାନେ ବୋଧହୁଏ ଏ କଥାକୁ ସହଜରେ ସ୍ୱୀକାର କରିବାକୁ ଅଗ୍ରସର ହେବେ ନାହିଁ । ଆଦିମ ଜାତିର ଅବସ୍ଥା ସହିତ ଆମ୍ଭମାନଙ୍କର ବର୍ତ୍ତମାନ ଅବସ୍ଥା ତୁଳନୀୟ ନୁହେଁ; ରୁଚିର ପରିବର୍ତ୍ତନକୁ ଆମ୍ଭେମାନେ ଭୁଲକ୍ରମେ ସମୟର ପରିବର୍ତ୍ତନ ବୋଲି କହୁଁ । ଅତୀତର ଘଟଣା ଯେପରି ଥିଲା, ଆଜି ମଧ୍ୟ ତାହାହିଁ ଅଛି; କିନ୍ତୁ ଏକ ପରିବର୍ତ୍ତନ ନିୟମ ସର୍ବବ୍ୟାପୀ ଭାବେ ପ୍ରକୃତିର କ୍ରିୟା ସଙ୍ଗେ ମିଶିଯାଇଅଛି । ମନୁଷ୍ୟ ଏହାକୁ ଅବଧାରଣ କରିପାରେ ନାହିଁ ବୋଲି ଦେଶ ଓ କାଳ ଉପରେ ଭେଦଭାବ ଆରୋପ କରେ । ନାରୀ ଓ ପୁରୁଷର ଅନ୍ତର ଚିରଦିନ ରହସ୍ୟରେ ଆଚ୍ଛନ୍ନ ହୋଇ ରହିଅଛି । ସୁଦୂର ଅତୀତରେ ମନୁଷ୍ୟର ଯେଉଁ ପିପାସା ଥିଲା, ଆଜି ମଧ୍ୟ ସେଥିରୁ ସେ

ନବୃତ୍ତ ନୁହେଁ । ପ୍ରକୃତିର କ୍ରିୟା ସହିତ ମନୁଷ୍ୟର ଅନ୍ତର ଗୋଟାଏ ଭାବରେ ମିଳିଯିବାକୁ ଚାହେଁ; କିନ୍ତୁ ସେହି ଭାବର ମିଳନଟିକୁ ସ୍ଥିର କରିବା ଅତୀତରେ ସହଜ ନ ଥିଲା; ବର୍ତ୍ତମାନ ମଧ୍ୟ ସହଜ ନୁହେଁ । ସହସ୍ରାଧିକ ବର୍ଷ ପୂର୍ବେ ମନୁଷ୍ୟ ଯେଉଁ ବିଶ୍ୱଭାବର ସନ୍ଧାନ ପାଇବାକୁ ବ୍ୟାକୁଳ ହୋଇ ଉଠିଥିଲା, ଆଜି ସେ ସେହି ସନ୍ଧାନରୁ ବିରତ ନୁହେଁ । ପୁରୁଷ ନାରୀକୁ ଯେଉଁ ଚକ୍ଷୁରେ ଦେଖୁଥିଲା, ଆଜି ମଧ୍ୟ ସେହି ଚକ୍ଷୁରେ ଦେଖୁଚି ଓ ଚିରଦିନ ଏହିପରି ଦେଖୁଥିବ ।

ଜୈବ ଆକର୍ଷଣ ଉଭୟ ପୁରୁଷ ଓ ନାରୀକୁ ପରସ୍ପର ସହିତ ମିଳିବାକୁ ପ୍ରେରଣା ଦିଏ; କିନ୍ତୁ ଏହି ପ୍ରେରଣାରେ ଉତ୍ତେଜନାର ମାତ୍ରା ଅନେକ ସମୟରେ ବେଶୀ ପରିମାଣରେ ଅନୁଭୂତ ହୋଇଥାଏ । ସେଥିଯୋଗୁଁ ସାଧାରଣ ପ୍ରାଣୀଙ୍କ ଜୀବନରେ ଅଶାନ୍ତି ଦେଖାଯାଏ । ଜୀବତ୍ୱରୁ ସ୍ୱାର୍ଥର ଉତ୍ପତ୍ତି । ସ୍ୱାର୍ଥସଂଶ୍ଲିଷ୍ଟ ଦୃଷ୍ଟିରେ ନାରୀ ପୁରୁଷକୁ କିମ୍ବା ପୁରୁଷ ନାରୀକୁ ଦେଖିବାଦ୍ୱାରା ଗୋଟିଏ ସ୍ୱାଭାବିକ ପିପାସା ଜନ୍ମିଥାଏ । ଏହି ପିପାସାର ନିବୃତ୍ତି ପାଇଁ ମନୁଷ୍ୟ ତାର କେତେଗୁଡ଼ିଏ ପାଶବିକ ପ୍ରବୃତ୍ତିକୁ ଦମନ କରେ । ଶକ୍ତି ସଂରକ୍ଷଣକୁ ଅବହେଳା କଲେ, ମନୁଷ୍ୟର ପତନ ଅନିବାର୍ଯ୍ୟ ହୁଏ । ଯଦି କେହି କହେ, ମୁକ୍ତ ପ୍ରାଣ ମୁକ୍ତ ପ୍ରକୃତି ପରି ଗତି କରିବ, ତାକୁ ପୁଣି ସଂଯତ କରିବାରେ ଲାଭ କଅଣ ? ଯାହା ମୁକ୍ତ, ତାକୁ କୌଣସି ବାଧା ଦେବା ପ୍ରାକୃତିକ ନିୟମର ବିରୋଧୀ ବୋଲି ଅନୁମିତ ହୋଇପାରେ; କିନ୍ତୁ ପ୍ରାକୃତିକ କ୍ରିୟାକୁ ଅନୁସରଣ କଲେ ଏହି ଭ୍ରାନ୍ତି ଦୂର ହୋଇଯାଏ । ସଂରକ୍ଷଣ ପ୍ରକୃତିର ପ୍ରଧାନ କାର୍ଯ୍ୟ । ଏହାକୁ ଯଦି ମୁହୂର୍ତ୍ତକ ପାଇଁ ବାଦ୍ ଦିଆଯାଏ, ତାହାହେଲେ ପ୍ରଳୟ ଅବଶ୍ୟମ୍ଭାବୀ ହୋଇପଡ଼ିବ । ମୁକ୍ତ ଗତି ରକ୍ଷଣସାପେକ୍ଷ । ସଂଯମ ସ୍ୱାଧୀନତାର ଭିତ୍ତି । ତେଣୁ ମନୁଷ୍ୟର ମୁଖ୍ୟ ପଥଟି ସଂଯମକୁ ତ୍ୟାଗ କରି ଗଠିତ ହୋଇପାରେ ନାହିଁ । ସଂଯମ ଅଭାବରେ ମନୁଷ୍ୟର ସୁଖର ସଂସାରଟି ଅନେକ ସମୟରେ ଛାରଖାର ହୋଇଯାଏ । ଉତ୍ତେଜନା ଗୋଟାଏ ଭ୍ରାନ୍ତି । ଅସଂଯତ ଅବସ୍ଥାରେ ମନୁଷ୍ୟ ଉତ୍ତେଜିତ ହୋଇ ଯାହାକୁ ଅନୁସରଣ କରେ କିମ୍ବା ଯେଉଁ ଅଭାବ ଅନୁଭବ କରେ, ତାକୁ ଗୋଟାଏ ଆତ୍ମତୃପ୍ତିକର ଆବରଣଦ୍ୱାରା ଘୋଡ଼ାଇ ରଖିବାକୁ ସେ ଚେଷ୍ଟାକରେ । ଏହି ଆବରଣକୁ ଉନ୍ମୋଚନ ନ କଲେ ମନୁଷ୍ୟର ପ୍ରକୃତ ଅଭାବ ଜଣାପଡ଼େ ନାହିଁ । ତେଣୁ ଜଣେ ଜଣକର ସାହଚର୍ଯ୍ୟ କିମ୍ବା ବନ୍ଧୁତା ଲାଭ କରିବାର ପ୍ରୟାସୀ ହେଲେ କେବଳ କର୍ଣ୍ଣତୃପ୍ତିକର କଥା କେତେ ପଦ ଶୁଣି ନିଜ ଅନ୍ତରକୁ ଅବନତ କରିଦେବା ସମୀଚୀନ ନୁହେଁ । ତଦ୍ଦ୍ୱାରା ମନୁଷ୍ୟତ୍ୱର ଅବମାନନା ହୁଏ । ପ୍ରକୃତ ସାଥୀ ଅନ୍ତରରେ ମିଳନର ସନ୍ଧାନ ନିଅନ୍ତି ।

ମିଳନରେ ହୃଦୟର ମହତ୍ତ୍ୱ ନିରୂପଣ କରାଯାଇପାରେ । ନାରୀ ଓ ପୁରୁଷ ମଧ୍ୟରେ ଯେ ମିଳନ ହୁଏ, ତାକୁ ମଧୁର କରିବା ପାଇଁ ସାଧାରଣତଃ ଗୁରୁ ଲଘୁ ଭାବର ପୋଷକତା କରିବାକୁ ହୁଏ । ଅଧିକାଂଶ ସମୟରେ ପୁରୁଷ ନାରୀ ଅପେକ୍ଷା ଉଚ୍ଚ ଅଧିକାର ଲାଭ କରିଥାଏ । କାରଣ ଏଥିରେ ପ୍ରକୃତିଗତ ଗୋଟାଏ ବୈଷମ୍ୟ ଅଛି । ପୁରୁଷ ନାରୀକୁ ହୀନ ମନେ କରେ ନାହିଁ; ବରଂ ପୁରୁଷର ସ୍ୱାଭାବିକ କର୍କଶତା ନାରୀର କୋମଳତା ସଂସ୍ପର୍ଶରେ ଯେଉଁ ପାର୍ଥକ୍ୟ ଦେଖାଇଦିଏ, ସେଥିରେ ଉଭୟ ପୁରୁଷ ଓ ନାରୀ ହୃଦୟର ପାର୍ଥକ୍ୟ ଦେଖି ଉଚ୍ଚ ଓ ନୀଚର ଗୋଟାଏ ସୀମା ସୃଷ୍ଟି କରିଦେବା ଉଚିତ ନୁହେଁ । କେବଳ ଏହି ଦୁଇଭାବକୁ ଆରୋପ କରି ଯଦି ଜଣେ ଅନ୍ୟଜଣଙ୍କଠାରୁ ଯଥେଷ୍ଟ ସ୍ନେହ ମମତା ଲାଭ କରିପାରିଲା, ତାହାହେଲେ ବନ୍ଧୁତାର ପ୍ରକୃତ ପରୀକ୍ଷା ମିଳେ । ଦୁଇଟି ହୃଦୟ ସମଭାବର ଅଧୀନ ହେବାପାଇଁ ସମୟ ଲାଗିପାରେ; କିନ୍ତୁ ପ୍ରକୃତିଗତ ବୈଷମ୍ୟକୁ ଦୂର କରି ଜଣେ ଯେତେବେଳେ ଅନାହୂତଭାବେ ଅନ୍ୟ ଜଣକର ଅନୁସରଣ କରେ ଓ ସଂସାରର ସବୁ ଦୈନ୍ୟ ଦୁର୍ଦ୍ଦଶା ଭୁଲିଯାଇ ସେହିଜଣଙ୍କୁ ଗତିମୁଖର ପ୍ରଧାନ ଅବଲମ୍ବନ ରୂପେ ଗ୍ରହଣ କରେ, ସେତେବେଳେ ଆଉ ଭେଦଭାବ ରହେ ନାହିଁ । ମୁକ୍ତ ସ୍ରୋତସ୍ୱିନୀ ପରି ଏହି ଦୁଇଟି ପ୍ରାଣ ବିଶ୍ୱର ଅସୀମତାରେ ମିଶିଯିବାକୁ ଧାଇଁ ଯାଆନ୍ତି । ସ୍ୱାମୀ ଓ ସ୍ତ୍ରୀ ମଧ୍ୟରେ ଏହି ଭାବ ସହଜରେ ଜନ୍ମିଯାଇ-ପାରେ । ଯେଉଁଠି ସ୍ତ୍ରୀ ସ୍ୱାମୀକୁ କେବଳ ଶରୀର ସଙ୍ଗୀ ରୂପେ ଗ୍ରହଣ କରେ, ସେଠାରେ ଏପରି ଭାବ ପ୍ରାୟ ଅନାଦୃତ ହୁଏ । ଆଦର୍ଶର ପ୍ରଭାବ ଅନେକ ସମୟରେ ମନୁଷ୍ୟକୁ ଗୋଟିଏ ପ୍ରଚଳିତ ଗ୍ରନ୍ଥରେ ଗଢ଼ିନିଏ; ସେ ତାର ନିଜତ୍ୱ ପ୍ରକାଶ କରିପାରେ ନାହିଁ । ଜଣକୁ ଭଲ ପାଇବାକୁ ହେବ; ସୁତରାଂ ନିଜ ଇଚ୍ଛା ବିରୁଦ୍ଧରେ ସୁଦ୍ଧା ସେହି ଜଣକୁ ଜୀବନବ୍ୟାପୀ କଷ୍ଟ ସ୍ୱୀକାର କରି ନିଜର ବୋଲି ପରିଚୟ ଦେବ । ଅବଶ୍ୟ ଏହାର ବ୍ୟତିକ୍ରମ ଦେଖାଯାଇଥାଏ । ନିଷ୍ଠୁର ସ୍ୱାମୀ ସ୍ତ୍ରୀ ଉପରେ ଯଥେଚ୍ଛ ଅତ୍ୟାଚାର କରେ । ସ୍ତ୍ରୀ ସବୁ ଅକାତରରେ ସହିଯାଏ ଓ ତାର ସର୍ବସ୍ୱ ବିନିମୟରେ ସ୍ୱାମୀକୁ ଦେବତାରୂପେ ପୂଜା କରେ । ଏପରି ଦୃଷ୍ଟାନ୍ତ ଆଜିକାଲି ବିରଳ ହେଲେ ସୁଦ୍ଧା ସମାଜରେ ଆଦର୍ଶ ସ୍ଥାନ ଅଧିକାର କରିଅଛି । ସ୍ତ୍ରୀର ପବିତ୍ର ପ୍ରେମ ବିପଥଗାମୀ

ସ୍ୱାମୀକୁ ସୁପଥରେ ଚାଳିତ କରିପାରେ; କିନ୍ତୁ ଉଭୟଙ୍କର ପ୍ରକୃତ ମିଳନ ପୂର୍ବରୁ ସ୍ତ୍ରୀ ସ୍ୱାମୀ ଅପେକ୍ଷା ଅଧିକ ଦୂର ଅଗ୍ରସର ହୋଇଥାଏ । ଏଠାରେ ଜଣକର ତ୍ୟାଗରେ ଦୁଇଜଣଙ୍କର ପଥ ଉଦ୍‌ଘାଟିତ ହୁଏ । ଅସୀମ ପଥର ଯାତ୍ରାରେ ନାରୀ ପ୍ରେରଣା ଦେଇ ପୁରୁଷକୁ ଧନ୍ୟ କରେ । ପୁରୁଷର ପୌରୁଷ ନାରୀର ତ୍ୟାଗ ନିକଟରେ ତୁଳନୀୟ ନୁହେଁ । ନାରୀ ଦୁର୍ବଳା ହୋଇପାରେ, କିନ୍ତୁ ସାଂସାରିକ ଦୁଃଖ କଷ୍ଟ ଦୂର କରିବା ପାଇଁ ସେ ପୁରୁଷକୁ ଯଥେଷ୍ଟ ସାହାଯ୍ୟ ଦିଏ । ନାରୀ ଓ ପୁରୁଷର ଦୁଇଟି ଶକ୍ତି ଯେଉଁବେଳେ ଠିକ୍ ରୂପେ ମିଳିତ ହୋଇଯାଏ, ସେତେବେଳେ ଅନ୍ୟ କୌଣସି ସାଥୀ ଆବଶ୍ୟକ ହୁଅନ୍ତି ନାହିଁ । ପରେ ମିଳନର ଯବନିକା ପଡ଼ିଗଲେ ବ୍ୟକ୍ତିର କୁଟିଳ ମାର୍ଗ କ୍ରମଶଃ ସଙ୍କୁଚିତ ହୋଇଆସେ ଓ ମନୁଷ୍ୟର ଭ୍ରାନ୍ତି ମଧ୍ୟ ସେଥିସଙ୍ଗେ ଅପସାରିତ ହୋଇଯାଏ । ସେ ଆଉ ସାଥୀ ଅପେକ୍ଷାରେ ଜଗତକୁ ଅନାଇ ରହେ ନାହିଁ । ସ୍ୱଭାବର ଅନୁବର୍ତ୍ତୀ ହୋଇ ପୁରୁଷ ଓ ନାରୀ ପରସ୍ପରକୁ ଅପେକ୍ଷା କରନ୍ତି; କିନ୍ତୁ ସମୟ ସମୟରେ କୌଣସି ଆକସ୍ମିକ ସଂଘର୍ଷ ଜୀବନର ଗତିକୁ ଏପରି ବଦଳାଇ ଦିଏ ଯେ, ପୁରୁଷ କିମ୍ବା ନାରୀ କେହି କାହାରିକୁ ଅପେକ୍ଷା କରନ୍ତି ନାହିଁ । ମଧୁର ପ୍ରେମରସରେ ହଳାହଳ ମିଶିବା ସହଜ ନୁହେଁ । ଏହା ଯଦି ଅଲକ୍ଷିତରେ ମିଶିଯାଇ ଜୀବନର ସ୍ପନ୍ଦନକୁ ବିଚଳିତ କରିଦିଏ, ତାହାହେଲେ ଗୋଟାଏ ଅଦ୍ଭୁତ ଦୃଶ୍ୟ ସଂସାର ପଥରେ ଅଙ୍କିତ ହୋଇଯାଏ । ଏ ଦୃଶ୍ୟ ଦେଖାଏ—ଦୁଇଟି ସାଥୀ ଚାଲିଛନ୍ତି, ଜଣେ ଜଣକ ପଶ୍ଚାତରେ ଅନୁସରଣ କରୁଛି; କିନ୍ତୁ ଅଗ୍ରଗାମୀ ପଥିକର ଆଦୌ ପଶ୍ଚାଦ୍‌ଦୃଷ୍ଟି ପଡ଼ୁନାହିଁ । ସେ ଦେଖୁନାହିଁ, ସାଥୀଟି ତାର ନୀରବରେ ଡାକୁଛି । କେବଳ ଲକ୍ଷ୍ୟ ରଖି ଗୋଟାଏ ଅସରନ୍ତି ପଥରେ ଯାତ୍ରା ଆରମ୍ଭ କରିଦେଇଛି । ଜୀବନର ସବୁ ଆଶା ଭରସା ଜଣକ ଉପରେ ନ୍ୟସ୍ତ କରିଦେବାର ଆକାଂକ୍ଷା ନାରୀ ଯେପରି ଆନନ୍ଦିତ ହୋଇ ହୃଦୟରେ ପୋଷଣ କରେ, ପୁରୁଷ ପକ୍ଷରେ ସେପରି ସମ୍ଭବ ହେବ ନାହିଁ । ସ୍ୱାମୀ ଓ ସ୍ତ୍ରୀ ଦୁଇଜଣ ସାଥୀଙ୍କ ମଧ୍ୟରେ ଅଗ୍ରଗାମୀ ହେବା ସ୍ୱାମୀର କର୍ତ୍ତବ୍ୟ । ସମସ୍ତ ସମୟରେ ସ୍ତ୍ରୀ ସ୍ୱାମୀକୁ ପଛରେ ପକାଇଦେଇ ଅଗ୍ରସର ହୁଏ, କିନ୍ତୁ ତାର ଗତି ସାମାନ୍ୟ ବାଧା ପାଇଲାକ୍ଷଣି ପ୍ରତିହତ ହୋଇପଡ଼େ । ନାରୀର ସ୍ୱାଭାବିକ ଦୁର୍ବଳତା ଓ ସଙ୍କୁଚିତ ଦୃଷ୍ଟି ତାର ଅଗ୍ରଗତିରେ ବାଧା ଦିଏ । ଆବହମାନ କାଳରୁ ଏହି ପ୍ରଥା ମାନବ ସମାଜରେ ପ୍ରତିଷ୍ଠା ଲଭିଆସିଅଛି । ବେଳେବେଳେ ବ୍ୟତିକ୍ରମ ଦେଖାଦେଲେ ସୁଦ୍ଧା ନାରୀ ପୁରୁଷକୁ ଛାଡ଼ି ଲକ୍ଷ୍ୟ ସ୍ଥଳରେ ପହଞ୍ଚିବା ସହଜ ନୁହେଁ । କିନ୍ତୁ ପୁରୁଷ ପକ୍ଷରେ ଏହା ପ୍ରଯୋଜ୍ୟ ନୁହେଁ । ତାହା ହୋଇଥିଲେ, କାଞ୍ଚନ ସହ କାମିନୀକୁ ତ୍ୟାଗ କରିବା ପାଇଁ ଆପ୍ତବାଣୀ ପ୍ରଚଳିତ ହୋଇ ନ ଥାନ୍ତା ।

ଜୀବନର ସଂପୂର୍ଣ୍ଣ ବିଧାନରେ ମାନବିକତାର ଏକ ଅତି ଉନ୍ନତ ବିକାଶ ହୋଇପାରେ । ନାରୀ ଓ ପୁରୁଷର ହୃଦୟ ଏହି ବିଧାନ ପାଇଁ ଉପଯୁକ୍ତ କ୍ଷେତ୍ର । ବସ୍ତୁ ମୋହରେ ଆକର୍ଷଣ ଥିଲେ ଏ ଦିଗରେ ଗତି କରିବା କଠିନ ହୁଏ ।

ସ୍ଥୂଳଦୃଷ୍ଟିରେ ଦେଖିବାକୁ ଗଲେ, କର୍ମ ଜୀବନରେ ଏହାର ପ୍ରୟୋଜନୀୟତା ବେଶୀ ନାହିଁ । ଜଣେ ଜଣକୁ ଭଲ ପାଇବ; କିନ୍ତୁ ଜୀବନର ଗାଢ଼ତା ବୃଦ୍ଧି ପାଇଁ ସେ ବିଷୟଟି ଅତି ଗୋପନରେ ରଖିବ । ସମାଜ କଥା ଦୂରେ ଥାଉ, ଯେଉଁ ଦୁଇଜଣଙ୍କ ମଧ୍ୟରେ ଭାବ ବିନିମୟ ହେଉଥିବ, ସେମାନେ ମଧ୍ୟ ପରସ୍ପରକୁ ହୃଦୟ ଖୋଲି ଭଲ ପାଇବା କଥାଟି ପ୍ରକାଶ କରିବେ ନାହିଁ । ଯଦି ସେପରି କରନ୍ତି, ତାହାହେଲେ ହୃଦୟର ଗାମ୍ଭୀର୍ଯ୍ୟ କମିଯିବା ସଙ୍ଗେ ସଙ୍ଗେ ସ୍ତ୍ରୀ ପୁରୁଷର ଆସଙ୍ଗଲିପ୍ସା ପ୍ରବଳ ହୋଇଉଠିବାର ଆଶଙ୍କା ରହିବ । ଏହି ସ୍ୱାଭାବିକ ବନ୍ଧୁତାର ଚିରନୂତନ ବନ୍ଧନକୁ ଦୃଢ଼ କରିବା ସମସ୍ତଙ୍କ ପକ୍ଷରେ ସମ୍ଭବ ନୁହେଁ । ତେଣୁ ମାନବ ହୃଦୟର ଗୋପନ ଦ୍ୱାରଟି ଚିରଦିନ ରୁଦ୍ଧ ହୋଇ ରହେ । ଅନେକ ସମୟରେ ପୁରୁଷ ନିଜର ଭାବ-ପ୍ରବଣତାକୁ ସମ୍ଭାଳି ନ ପାରି ତାର ଶିକ୍ଷାସାଙ୍ଗୀ ବନ୍ଧୁଟି ନିକଟରେ ପ୍ରକାଶ କରିଦିଏ । ବୁଦ୍ଧିମତୀ ନାରୀ ପୁରୁଷର ପ୍ରଗଲ୍‌ଭତାକୁ ଘୋଡ଼ାଇ ରଖେ । ଏହିଠାରେ ନାରୀ ପୁରୁଷକୁ ଚିହ୍ନିବାର ଗୋଟାଏ ଅବସର ପାଏ । ପୁରୁଷର ଭାବ-ତରଙ୍ଗ ଖେଳିଗଲା-ବେଳେ ନାରୀ ଦେଖେ, ତା ହୃଦୟର ଗୁପ୍ତବାଣୀଟି ପୁରୁଷ ମୁଖରୁ ପ୍ରକାଶ ପାଉଅଛି କି ନାହିଁ । ନାରୀ ଅନ୍ତରର ଗୋପନ ଭାବଟି ମୁଦ୍ରିତ କଳିକା ପରି ରହିଥାଏ । ପୁରୁଷଠାରୁ ଭାବତରଙ୍ଗ ଆସି ଆଘାତ ଦେଲେ ସେ ମୁଦ୍ରିତ କଳିକାଟି ପ୍ରସ୍ଫୁଟିତ ହୁଏ । ପ୍ରସ୍ଫୁଟିତ ହେବା ମାତ୍ରେ ପୁରୁଷ ହୃଦୟରେ ଗୋଟାଏ ପ୍ରତିଘାତ ଦେଇ ଜଣାଇଦିଏ; ସେ ପୁରୁଷର ଅନୁବର୍ତ୍ତିନୀ ହେବାକୁ ଜାଗ୍ରତ ହେଲା । ସମୀରଣର ମୃଦୁ ମର୍ମର ସ୍ପର୍ଶିତା ଲତାର ସୌରଭ ମିଶି ବିଶ୍ୱରେ ଅମୀୟ ଭାବ ଖେଳାଇଦିଏ, ନାରୀ ଓ ପୁରୁଷର ଉପର୍ଯ୍ୟୁକ୍ତ ଅନୁବର୍ତ୍ତିତା ସେହିପରି ଅନ୍ୟ ଏକ ଅପାର୍ଥିବ ଭାବର ଅବତାରଣା କରେ । ପରେ ନାରୀ ହୃଦୟ ତାର ସାଥୀଟି

ପାଇଁ ଉନ୍ମୁକ୍ତ ହୋଇଗଲେ ତାକୁ ସହଜରେ ବନ୍ଦ କରି ହୁଏ ନାହିଁ । ଏହା ହେଲା ନାରୀ ହୃଦୟର ବିଶେଷତ୍ୱ । ନାରୀ ପୁରୁଷକୁ ନିଜ ଅନ୍ତରଟି ଦାନ କରି ଦେଇ ନିଃସ୍ୱ ହୋଇଯାଏ, କିନ୍ତୁ ପୁରୁଷର ହୃଦୟ ସେପରି ସହଜରେ ହୁଏ ନାହିଁ । ପୁରୁଷର ଭାବ ଉତ୍ତରୋତ୍ତର ବୃଦ୍ଧି ଲାଭ କରେ । ସେ ମଧୁଲିପ୍ସୁ ଅଳିପରି ସର୍ବଦା ନାରୀ ହୃଦୟର ସରସତାକୁ ଲୁଣ୍ଠନ କରିବାକୁ ପ୍ରୟାସ କରୁଥାଏ । ପୁରୁଷର ସ୍ୱାଭାବିକ ଚଞ୍ଚଳତା ଏଥି ସକାଶେ ଦାୟୀ ବୋଲି କୁହାଯାଇପାରେ । ପୁରୁଷ ହୃଦୟର ଚଞ୍ଚଳତାକୁ ବାଦ୍ ଦେଇ ମିଳନ-ପ୍ରୟାସିନୀ ନାରୀ ପୁରୁଷକୁ ସାଥୀ ରୂପେ ବରଣ କରିନିଏ । ସାଧାରଣତଃ ତଟଦେଶରେ ଯେପରି ସମୁଦ୍ରର ଉତ୍ତାଳ ତରଙ୍ଗ ବେଶୀ ପରିମାଣରେ ଦୃଷ୍ଟ ହୁଏ, କିନ୍ତୁ ଟିକିଏ ଭିତରକୁ ଗଲେ କେବଳ ଜଳର ଗମ୍ଭୀରତା ଏକ ଶାନ୍ତ ଛବି ପ୍ରକଟିତ କରେ, ସେହିପରି ପୁରୁଷ ଅନ୍ତରର ନିଭୃତ ପ୍ରଦେଶରେ ଯେଉଁ ମିଳନ ପ୍ରତୀକ୍ଷା ଶାନ୍ତ ଭାବ ଧାରଣ କରିଥାଏ, ତାହା ନାରୀର ଆତ୍ମ ତୃପ୍ତି ବିଧାନ କରି ଚିରଦିନ ପାଇଁ ତାକୁ ପୁରୁଷ ସହିତ ମିଳାଇଦିଏ । ନାରୀ ଓ ପୁରୁଷର ଅସଂପୃକ୍ତ ମିଳନ ଅସମ୍ଭବ ନୁହେଁ । ଥରେ ଦୁହିଁଙ୍କର ଭାବଧାରା ମିଶିଗଲେ ଜଗତର କୌଣସି ପ୍ରତିବନ୍ଧକ ସେମାନଙ୍କର ବିଚ୍ଛେଦ ଘଟାଇପାରେ ନାହିଁ । ଜଗତ୍ ଚକ୍ଷୁରେ ସେମାନେ କେହି କାହାରି ସହିତ ମିଳନ୍ତି ନାହିଁ; କିନ୍ତୁ ଅନନ୍ତ ଜୀବନ ପଥର ସାଥୀରୂପେ ସେମାନଙ୍କର ମାର୍ଗ ଗୋଟାଏ ବିଶେଷତ୍ୱ ରଖି ଦେଇଯାଏ । ସେମାନେ ପରସ୍ପରଠାରୁ ଦୂରେଇ ରହନ୍ତି, କିନ୍ତୁ ଅତି ନିକଟ ସାଥୀଠାରୁ ବଳିଯା'ନ୍ତି । କାରଣ ଅନ୍ତରର ସାଥୀ ବାହାରକୁ ଦେଖେ ନାହିଁ । ଭାବାବେଗରେ ନରନାରୀର ଏପରି ମିଳନ ସର୍ବଥା ବାଞ୍ଛନୀୟ; କିନ୍ତୁ ଜଗତରେ ସେମାନଙ୍କର ସଂଖ୍ୟା ଅତି ଅଳ୍ପ । ଶରୀର ସୌନ୍ଦର୍ଯ୍ୟରେ ଆକୃଷ୍ଟ ହୋଇ ପ୍ରତ୍ୟେକ ପୁରୁଷ ନାରୀକୁ ସାଥୀ କରିନେବାକୁ ଉଦ୍‌ଗ୍ରୀବ ହୋଇପାରନ୍ତି; କିନ୍ତୁ ଅନ୍ତରର ଭାବବିନିମୟରେ ନାରୀକୁ ନିଜର କରିନେବା ସବୁ ପୁରୁଷଙ୍କ ପକ୍ଷରେ ସମ୍ଭବ ହୁଏ ନାହିଁ । ନାରୀର ସୌନ୍ଦର୍ଯ୍ୟଲୁଣ୍ଠନ ପ୍ରୟାସରେ ପୁରୁଷର ପ୍ରତାରଣା ବଡ଼ ଅଲକ୍ଷିତରେ ରହିଥାଏ । ସୁତରାଂ ନାରୀ ପୁରୁଷକୁ କିମ୍ବା ପୁରୁଷ ନାରୀକୁ ଜୀବନର ଚିର ସାଥୀ ରୂପେ ଗ୍ରହଣ କରିବା ପୂର୍ବରୁ ଥରେ ପରସ୍ପରକୁ ଚିହ୍ନି ନେବା ଏକାନ୍ତ ଆବଶ୍ୟକ ।

# ପାର୍ଥକ୍ୟର ପରୀକ୍ଷା

ପାର୍ଥିବ କ୍ରିୟାମାନଙ୍କର ଭଲ ଓ ମନ୍ଦ ବିଚାର ପାଇଁ ଯେଉଁ ନୀତିମାର୍ଗସବୁ ଅବଧାରିତ ହୋଇଅଛି, ତାହା ଦେଶ, କାଳ ଓ ଅନ୍ୟାନ୍ୟ ପାରିପାର୍ଶ୍ୱିକ ଅବସ୍ଥା ଦୃଷ୍ଟିରେ ଭିନ୍ନ ପ୍ରତୀୟମାନ ହେବାର ଯଥେଷ୍ଟ କାରଣ ଅଛି । ଜାଗତିକ କ୍ରିୟା-ପ୍ରଣାଳୀରେ ଗୋଟିଏ ଧାରା ଯଦି ନିରବଚ୍ଛିନ୍ନ ଭାବରେ ଗତି କରୁଥାନ୍ତା, ଓ ମନୁଷ୍ୟ ମନର ସଂପ୍ରସାରିତା ଆଦୌ ନ ଥାନ୍ତା, ତାହାହେଲେ ଦୋଷ ବା ଗୁଣକୁ ନିର୍ଣ୍ଣୟ କରିବା ପାଇଁ କୌଣସି ନୀତି ମାର୍ଗର ଅନୁବର୍ତ୍ତୀ ହେବାକୁ ପଡ଼ନ୍ତା ନାହିଁ; କିମ୍ବା ଗୋଟାଏ ପାର୍ଥକ୍ୟ ପାଇଁ ଜଗତରେ ସ୍ଥାନ ରହନ୍ତା ନାହିଁ । ପାର୍ଥକ୍ୟ ସୃଷ୍ଟି ମନୁଷ୍ୟ ମନର ଗୋଟିଏ ବିଶିଷ୍ଟ ବିଭବ । ଏହାରି ସାହାଯ୍ୟରେ ସେ କେତେ ରଙ୍ଗର ଚିତ୍ର ଜଗତ ସମକ୍ଷରେ ଆଙ୍କି ଦେଇପାରେ ।

ବିଭିନ୍ନ ମାନସିକ ଗତିରେ ଯେଉଁ କ୍ରିୟାବୈଷମ୍ୟର ଉତ୍ପତ୍ତି ଘଟେ, ତାହା ଦେଶ ଓ କାଳ ଭେଦରେ ଗୋଟାଏ ବିଶାଳ ପାର୍ଥକ୍ୟ ସୃଷ୍ଟି କରି ନୀତି ମାର୍ଗକୁ ସମାନ ରଖାଇ ଦିଏ ନାହିଁ । ସେଥିଯୋଗୁଁ ମନୀଷୀମାନଙ୍କର ମତ ଅନେକ ସମୟରେ ବିରୁଦ୍ଧ ଭାବର ପୋଷକତା କରିଥାଏ । କିନ୍ତୁ ଏହି ଅସମାନତା ମଧ୍ୟରେ ଏକ ସମାନତା ଆତ୍ମଗୋପନ କରିଥାଏ—ଯାହାକୁ ସାଧାରଣ ଲୋକ ସହଜରେ ଅନୁଭବ କରିପାରେ ନାହିଁ । ଏକ ଜାତୀୟ ଉପାଦାନରେ କେତେଗୁଡ଼ିଏ ବିଭିନ୍ନ ପ୍ରକାର ବସ୍ତୁ ନିର୍ମିତ ହୁଏ ବୋଲି, ସେମାନଙ୍କର ଭିନ୍ନତା ଉପାଦାନର ଭିନ୍ନତା ପ୍ରମାଣ କରେ ନାହିଁ । ସେହିପରି ମନ ଏକ । ଏହାର ଯେଉଁ ବିରାଟ ବ୍ୟାପକତା ଅଛି, ସେଥିରେ ସଂଖ୍ୟାତୀତ ଭାବର ଉନ୍ମେଷ ହୋଇ ମୁହୂର୍ତ୍ତକ ମଧ୍ୟରେ ଲୁପ୍ତ ହୋଇଯାଇପାରେ । ଭଲ ଓ ମନ୍ଦ କିମ୍ବା ଦୋଷ ଓ ଗୁଣ ବିଚାର କରିବା ମନର ଗୋଟିଏ ଅତି ସାଧାରଣ କାର୍ଯ୍ୟ । ଏଥିରେ ଯଦି ନୀତି ମାର୍ଗରେ କୌଣସି ପାର୍ଥକ୍ୟ ଦେଖାଯାଏ, ତାହା ହେଲେ ତାକୁ ମନୀଷୀମାନଙ୍କର ଭ୍ରମ କିମ୍ବା ତ୍ରୁଟି ବୋଲି ଧରିବାକୁ ହେବ ନାହିଁ । ଏହାକୁ ମାନସିକ ଗତିର ଗୋଟିଏ ବିଶିଷ୍ଟ ବିକାଶ ରୂପେ ଗ୍ରହଣ କରିବା ସବୁଠାରୁ ଶ୍ରେୟସ୍କର ।

ପାର୍ଥକ୍ୟ ଜ୍ଞାନ ମନର ବିକାଶୋନ୍ମୁଖ ବୃତ୍ତିମାନଙ୍କର ପୁଷ୍ଟିସାଧନରେ ସହାୟତା କରେ । ପାର୍ଥକ୍ୟକୁ ଭେଦଭାବର ସୃଷ୍ଟି ହେବା ସଙ୍ଗେ ମନୋବୃତ୍ତିର ମଳିନତା ଆଶଙ୍କା କରାଯାଇପାରେ; କିନ୍ତୁ ସମୟବିଶେଷରେ ଅହିତରୁ ହିତର ଉତ୍ପତ୍ତି ପାଇଁ ଏହା ଏକ ମାର୍ଗସ୍ୱରୂପ ଅବଲମ୍ବନୀୟ । ଏଥିପ୍ରତି ଦୃଷ୍ଟି ନ ଦେଇ କେବଳ ଦୁଷ୍ଟ ଦୃଷ୍ଟିରେ ଅମଙ୍ଗଳକୁ ଭୟ କରିବା ଉଚିତ ନୁହେଁ । ଜଗତରେ ଉଚ୍ଚ ନୀଚକୁ ପଛରେ ପକାଇଦେଇ ଚାଲିଯାଇପାରେ; କିନ୍ତୁ ସମୟ ବିଶେଷରେ ଉଚ୍ଚର ଭିତ୍ତି-ସ୍ଥାପନରେ ନୀଚର ସହାୟତା ଅଗ୍ରାହ୍ୟ ନୁହେଁ । ଧନୀ ଓ ଦରିଦ୍ରର ପାର୍ଥକ୍ୟ ଚିରଦିନ ସମାଜରେ ରହେନାହିଁ । ଧନୀର ଐଶ୍ୱର୍ଯ୍ୟ-ଲୋଲୁପତା ଦରିଦ୍ରର ସର୍ବସ୍ୱ ଅପହରଣ କରି ଯେଉଁ ଭେଦ ସୃଷ୍ଟି କରେ, ସେଥିରେ ଦରିଦ୍ରର ସ୍ଥାନ ଜଗତରେ ଅତି ତୁଚ୍ଛ ବୋଧ ହେଲେ ସୁଦ୍ଧା ଦୁହିଁଙ୍କ ମଧ୍ୟରେ ଗୋଟାଏ ଦୂରତ୍ୱ ସ୍ଥିରରୂପେ ନିର୍ଣ୍ଣୀତ ହୋଇପାରେ ନାହିଁ । ଅନେକ ସମୟରେ ବସ୍ତୁ ମୋହର ଉତ୍ତେଜନା ଗୋଟିଏ କାଳ୍ପନିକ ଦୂରତ୍ୱ ନିର୍ଦ୍ଦେଶ କରିଦିଏ । ତେଣୁ ଧନୀ ଓ ଦରିଦ୍ର ସଂପର୍କ ଅତି ନିକଟ ହେଲେ ମଧ୍ୟ ମରୀଚିକା ଭ୍ରମ ଘଟିଯାଏ । ଭେଦଭାବର ସୀମା ମାନସିକ ଉତ୍କର୍ଷ ଓ ଅପକର୍ଷ ଉପରେ ନିର୍ଭର କରେ ।

ଅହିତରୁ ହିତର ଉତ୍ପତ୍ତି ଯଦି ଆକସ୍ମିକ ନ ହୋଇ ଗୋଟିଏ ନିୟମର ଅଧୀନତାରେ ସାଧିତ ହେଉଥାଏ, ତାହାହେଲେ ପାର୍ଥକ୍ୟକୁ ସେହି ନିୟମର ବିଶେଷ ଅଙ୍ଗ ରୂପେ ଧରାଯାଇପାରେ ଏବଂ ତାହାରି ଧାରାରେ ଉଚ୍ଚ ଓ ନୀଚ, ଦୋଷ ଓ ଗୁଣ, ସୁନ୍ଦର ଓ କୁତ୍ସିତ—ସମସ୍ତଙ୍କୁ ଭିନ୍ନ ଭିନ୍ନ ସ୍ତର ବିଶେଷରେ ପୃଥକ୍ ଶ୍ରେଣୀଭୁକ୍ତ କଲେ କୌଣସି ତ୍ରୁଟି ଘଟେ ନାହିଁ ।

ଗୋଟିଏ ମୂଳାଧାରରୁ ବହୁ ପ୍ରଣାଳୀ ନିର୍ଗତ ହେଲା ପରି ଅନେକଗୁଡ଼ିଏ ନିୟମ ଗୋଟିଏ ବିଶାଳ ନିୟମର କ୍ରମ କିମ୍ବା ବିଭିନ୍ନ ବିକାଶ ଦେଖାଇ ପାରନ୍ତି ।

ସୌନ୍ଦର୍ଯ୍ୟ ଓ ଜ୍ଞାନର କୌଣସି ନିର୍ଦ୍ଦିଷ୍ଟ ପରିମାପ ନାହିଁ; କିନ୍ତୁ ପାର୍ଥକ୍ୟ ସେମାନଙ୍କ ମଧ୍ୟରେ ଯେଉଁ କାଳ୍ପନିକ ସ୍ତର ସବୁ ସୃଷ୍ଟି କରେ, ସେଥିରେ ବିକାଶର ପଥ ସୁଗମ ହୋଇଯାଏ । ବିକାଶହିଁ ସୃଷ୍ଟିର ମୂଳଭିତ୍ତି । ଏହାକୁ ଗ୍ରହଣ କଲେ ଜାଗତିକ ଉନ୍ନତି ବିଷୟ ଆଲୋଚନା କଲେ ମନୁଷ୍ୟର ମନ ଗୋଟାଏ ଧାରାବାହିକ କର୍ମପନ୍ଥା ମଧ୍ୟରେ ଆବଦ୍ଧ ହୋଇ ରହେ । ବୈଜ୍ଞାନିକ ସୂକ୍ଷ୍ମ ଆବିଷ୍କ୍ରିୟା ଗାଣିତିକ ପ୍ରମାଣ ଉପରେ ନିର୍ଭର କରେ ସତ୍ୟ, କିନ୍ତୁ କଳ୍ପନାର ପ୍ରଭାବକୁ ଏଡ଼ିଦେଇ ଜ୍ଞାନର ନୂତନତ୍ୱ ସୃଷ୍ଟି ଗୋଟିଏ ପ୍ରତିଷ୍ଠିତ ସୀମାର ପରିସରକୁ ବଢ଼ାଇଦେଲେ ସୁଦ୍ଧା ବିଶ୍ୱପ୍ରକୃତିର ବିକାଶମାର୍ଗ ଅବଧାରିତ ହୋଇପାରେ ନାହିଁ । ବିଶ୍ୱବ୍ରହ୍ମାଣ୍ଡର ସୃଷ୍ଟି ଓ ସ୍ଥିତି କୌଣସି ନିର୍ଦ୍ଦିଷ୍ଟ ବୈଜ୍ଞାନିକ ନିୟମକୁ ଅନୁକରଣ କରେ ନାହିଁ; ବରଂ ମନୁଷ୍ୟର ଗବେଷଣା ଯେଉଁ ଗାଣିତିକ ନିୟମ ସବୁ ଉଦ୍‌ଭାବନ କରିଅଛି, ସେଗୁଡ଼ିକ ତାର ସୀମାବଦ୍ଧ ଦୃଷ୍ଟିର ପରିଚାୟକ ହିଁଏ । ଅନେକ ସମୟରେ ମନୁଷ୍ୟ ଜୀବନବ୍ୟାପୀ ବୈଜ୍ଞାନିକ ଗବେଷଣାଦ୍ୱାରା କେତେ ନୂତନ ତଥ୍ୟ ଆବିଷ୍କାର କରେ ଓ ତଦ୍ଦ୍ୱାରା ଜଗତର ପ୍ରଭୂତ ମଙ୍ଗଳ ହୁଏ; କିନ୍ତୁ ବିଜ୍ଞାନର ଯାବତୀୟ କୌଶଳ ଅନନ୍ତ ବ୍ରହ୍ମାଣ୍ଡର ପରିଚାଳନା ଶକ୍ତି ନିକଟରେ ପରାସ୍ତ ହୁଏ । ଏହାକୁ ଉପେକ୍ଷା କରି ବୈଜ୍ଞାନିକ ଜଡ଼ବାଦୀ ହୁଏ । ଅନନ୍ତ ସତ୍ତାକୁ ଉପଲବ୍ଧି କରିବା ତା ପକ୍ଷରେ ପ୍ରାୟ ସମ୍ଭବପର ହୁଏ ନାହିଁ । ଅଦ୍ଭୁତ ବୈଜ୍ଞାନିକ ଯନ୍ତ୍ର ନିର୍ମାଣ କଲେ ବୈଜ୍ଞାନିକର ପ୍ରଖର ବୁଦ୍ଧିର ପରିଚୟ ମିଳେ; କିନ୍ତୁ ସତ୍ୟ ଓ ସୌନ୍ଦର୍ଯ୍ୟର ଉନ୍ମେଷ ପାଇଁ ଏହା କେତେଦୂର ସାହାଯ୍ୟ କରେ, ସହଜରେ କହିହେବ ନାହିଁ । ଧାରାବାହିକ ନିୟମ ବା ପ୍ରଣାଳୀରେ ମନର ସଯତ୍ନ ଅବସ୍ଥା ଆସିପାରେ; କିନ୍ତୁ ବିକାଶର ମାର୍ଗ ଏହା ଉପରେ ସମ୍ପୂର୍ଣ୍ଣ ନିର୍ଭର କରିଥିବା ଜଣାପଡ଼େ ନାହିଁ । ସତ୍ୟ ଓ ସୌନ୍ଦର୍ଯ୍ୟର ଉପାସକମାନେ ଧାରାବାହିକ ନିୟମ ବା ପ୍ରଣାଳୀର ଆଶ୍ରୟ ନେବାକୁ ସମସ୍ତ ସମୟରେ କୁଣ୍ଠାବୋଧ କରନ୍ତି; କାରଣ ହୃଦୟର ମୁକ୍ତାବସ୍ଥା କୌଣସି ନିୟମର ଅପେକ୍ଷା ରଖେ ନାହିଁ । ଜଡ଼ବିଜ୍ଞାନ କଥା ଦୂରେ ଥାଉ, ଭାଷା ଓ ଅଭିବ୍ୟକ୍ତିର ବିନା ଆଶ୍ରୟରେ ମହାତ୍ମାମାନେ ସୃଷ୍ଟିତତ୍ତ୍ୱର ମର୍ମସ୍ପର୍ଶୀ ଲୀଳା ହୃଦୟଙ୍ଗମ କରି ନିମେଷେକ ମଧ୍ୟରେ ଅତୀତ, ବର୍ତ୍ତମାନ ଓ ଭବିଷ୍ୟତକୁ ଯେପରି ଦେଖିପାରନ୍ତି, ବସ୍ତୁବାଦର ଚରମ ଉତ୍କର୍ଷ ସେପରି ଦେଖାଇପାରେ ନାହିଁ । ସୌନ୍ଦର୍ଯ୍ୟ ଓ ଜ୍ଞାନର ଉପଲବ୍ଧି ପାଇଁ ଯେଉଁ ପୃଥକ୍ ସ୍ତର ସବୁ ସେମାନଙ୍କଦ୍ୱାରା ସ୍ୱୀକୃତ ହୁଏ, ସେଗୁଡ଼ିକ ବିଜ୍ଞାନର ଗଣ୍ଡି ମଧ୍ୟରେ ଆବଦ୍ଧ ନୁହେଁ । ବୈଜ୍ଞାନିକ ଯନ୍ତ୍ର ସାହାଯ୍ୟରେ ଯୁଗଯୁଗବ୍ୟାପୀ ସାଧନା କରି ଯାହା ସ୍ଥିର କରିପାରେ, ତାହା ଅନ୍ତର୍ଦୃଷ୍ଟି-ସମ୍ପନ୍ନ ମହାତ୍ମାମାନଙ୍କ ପକ୍ଷରେ ଅତି ହେୟ ବୋଲି ବିବେଚିତ ହୁଏ । ତେଣୁ ମନୁଷ୍ୟର ଭଲ ଓ ମନ୍ଦ ବିଚାର ପାଇଁ ସେମାନଙ୍କର ନୀତିମାର୍ଗ ପ୍ରଶସ୍ତ ବୋଧହୁଏ ।

ପାର୍ଥକ୍ୟ ଜ୍ଞାନ, କଳା, ବିଜ୍ଞାନ, ଓ ଅନ୍ୟାନ୍ୟ ମାନବୀୟ କ୍ରିୟାମାନଙ୍କର ଉତ୍କର୍ଷ ସାଧନରେ ସାହାଯ୍ୟ କରେ । ସାଧନା ପରାୟଣ କଳାବିତ୍ କିମ୍ବା ବୈଜ୍ଞାନିକ ଏହି ଜ୍ଞାନବଳରେ ନୂତନତ୍ୱ ସୃଷ୍ଟି କରିବାକୁ ସମର୍ଥ ହୁଅନ୍ତି । ସାଧକର ପରିମିତ ଜୀବନକାଳକୁ ସାର୍ଥକ କରିବା ପାଇଁ ଯଦି ଗୋଟାଏ ନିର୍ଦ୍ଦିଷ୍ଟ ପରୀକ୍ଷା ଥାଆନ୍ତା, ତାହାହେଲେ ନୂତନତ୍ୱର ସ୍ଥାନ ସୀମାବଦ୍ଧ ହୋଇ ରହନ୍ତା । ନିର୍ଦ୍ଦିଷ୍ଟ ନିୟମ ବା ପ୍ରଣାଳୀମାନଙ୍କର ଅନୁସୃତିରେ ଜୀବନର ସାର୍ଥକତା ପ୍ରମାଣିତ ହୋଇପାରେ; କିନ୍ତୁ ବିକାଶୋନ୍ମୁଖ ପ୍ରତିଭା ସାହାଯ୍ୟରେ ନୂତନତ୍ୱ ସୃଷ୍ଟି କରିବାଦ୍ୱାରା ମନୁଷ୍ୟ ଜ୍ଞାନର ଯେଉଁ ଉନ୍ମେଷ ଆସେ, ତାହା କୌଣସି ଧାରାବାହିକ ନିୟମକୁ ଅପେକ୍ଷା ରଖେ ନାହିଁ ।

ମନୁଷ୍ୟର ସ୍ୱାଭାବିକ ଉତ୍କର୍ଷ ଅନେକ ପରିମାଣରେ ସଂସ୍କାର ଉପରେ ନିର୍ଭର କରେ । ଏଥିପ୍ରତି ଦୃଷ୍ଟି ନ ଦେଇ ତାକୁ ସବୁବେଳେ ଗୋଟିଏ ତୀବ୍ର ନିୟମ ପାଳନ କରିବାକୁ ବାଧ୍ୟ କଲେ ସେ ବିଦ୍ରୋହୀ ହୋଇ ଉଠେ । ଗୋଟିଏ ପ୍ରତିଷ୍ଠିତ ନିୟମକୁ ମାନି ଚଳିବା ସାଧାରଣ ମନୁଷ୍ୟ ପକ୍ଷରେ ସୁବିଧାଜନକ ହୋଇପାରେ, କିନ୍ତୁ ବିକାଶ ପକ୍ଷରେ ଏହା ସମସ୍ତ ସମୟରେ ବିରୋଧ ଘଟାଏ । ସେଥିଯୋଗୁଁ ନୀତିବାଦୀଙ୍କର ଦୃଷ୍ଟି ସବୁବେଳେ ଅତି ଉଦାର ହେବା ଉଚିତ । ଏ ସମ୍ବନ୍ଧରେ ପୃଥିବୀର ପ୍ରସିଦ୍ଧ କଳାବିତ୍ Nicholas Rocrich ଙ୍କ ମତ ଏଠାରେ ଉଦ୍ଧାର କରାଗଲା—

"In the service of great culture one should limit oneself to a uniform programme. Every standard leads to tyranny…………

Like a careful gardener, the true culture bearer will not ruthlessly crush these flowers which enter life outside his garden if they belong to the same precious kind which he safeguards. The manifestations of culture are just a manifold as the manifestations of endless varieties of life itself".

ପାର୍ଥକ୍ୟର ପରିଖା ବିଭିନ୍ନ ପରିସ୍ଥିତି ସୃଷ୍ଟି କରି ଜ୍ଞାନ ଦାନ ସଙ୍ଗେ ଜୀବନର ଆବିଳତାକୁ ଦୂର କରେ । ଜୀବନର ବିଶାଳତାକୁ ଲକ୍ଷ୍ୟ କରି ଲେଖକ ଉତ୍କର୍ଷର ମାର୍ଗକୁ ଉନ୍ମୁକ୍ତ ରଖିବାକୁ କହୁଛନ୍ତି । ଜୀବନର ଅଶେଷ ପ୍ରକାର ବିକାଶରେ ଉତ୍କର୍ଷର ମାର୍ଗ ବହୁମୁଖୀ ହୁଏ । ତେଣୁ ମାର୍ଗର ବହୁଳତା ପାର୍ଥକ୍ୟର ଅସଂଖ୍ୟ ପରିଖା ସୃଷ୍ଟି କରି ମନୁଷ୍ୟକୁ ବହୁବିଧ ଜ୍ଞାନର ଅଧିକାରୀ କରାଏ ।

ସ୍ଥିତି-ଶୀଳତା ବିକାଶର ଅନ୍ତରାୟ । ସୌନ୍ଦର୍ଯ୍ୟବୋଧ ଓ ଭାବର ଅଭିବୃଦ୍ଧିରେ ମନୁଷ୍ୟର ଯେଉଁ ଉନ୍ନତ ଅବସ୍ଥା ଆସେ, ତାହା ସ୍ଥିର ବିଶେଷରେ ଗୋଟାଏ ମହାବ୍ୟାପକତାର ଆଶ୍ରୟ ନିଏ; କିନ୍ତୁ ବ୍ୟକ୍ତିଗତ ସ୍ୱାତନ୍ତ୍ର୍ୟ ଗୋଟାଏ ପାର୍ଥକ୍ୟ ସୃଷ୍ଟି କରି ଏହି ବ୍ୟାପକତାକୁ ଗୋଟାଏ ନିର୍ଦ୍ଦିଷ୍ଟ ପରିଧି ମଧ୍ୟରେ ସୀମାବଦ୍ଧ କରିଦିଏ । ତେଣୁ ଜଣକର ନିରୂପିତ ମାର୍ଗ କିଛିଦିନ ଅନୁସୃତ ହେଲା ପରେ ଯଦି ତାହା ଅନାଦୃତ ହୁଏ, ତାହାହେଲେ ତଦ୍ଦ୍ୱାରା ବିକାଶ ପକ୍ଷରେ ଅନ୍ତରାୟ ଘଟେ ନାହିଁ । ଜଣେ ମନସ୍ୱୀ ବ୍ୟକ୍ତିର ଶକ୍ତି ବଳରେ କିଛି ସମୟ ପାଇଁ ଜାତି ଓ ସମାଜର ଗତିକୁ ନିୟନ୍ତ୍ରିତ କରିପାରନ୍ତି; କିନ୍ତୁ ତାଙ୍କର ନିୟନ୍ତ୍ରଣ ସ୍ୱତଃ ଅପସାରିତ ହୋଇଯାଏ । ଏହା ଘଟି ନ ଥିଲେ ଦେଶ ଓ କାଳଗତ ବୈଷମ୍ୟ ଆଦୌ ରହନ୍ତା ନାହିଁ । ଅନେକ ସମୟରେ ଏହି ବୈଷମ୍ୟକୁ ଲକ୍ଷ୍ୟ କରି କେହି କେହି ମାନବକୁ ପ୍ରଗତିଶୀଳ ଜୀବ ବୋଲି କହିଥାନ୍ତି; କିନ୍ତୁ ପ୍ରକୃତରେ ସେପରି କହିବାର କିଛି ଯାଥାର୍ଥ୍ୟ ନାହିଁ । କାଳର ସୀମା ନିରୂପଣ ନାହିଁ, ତଥାପି ମନୁଷ୍ୟ ବର୍ଷ, ମାସ, ଦିନ ପ୍ରଭୃତି ସମୟର ଯେଉଁ ଛେଦ ଆଣିଛି, ତାର ସଭ୍ୟତାର ପରିମାପ ପାଇଁ ତାହା ଯଥେଷ୍ଟ ହୋଇପାରେ । କିନ୍ତୁ ପରିମାପକୁ ଦେଖି ପ୍ରଗତିର ପରିମାଣ ସ୍ଥିର କରିବା ସହଜ ନୁହେଁ । ଘଣ୍ଟାର Pendulum ଅବିରାମ ଗତି କରୁଥାଏ । ଗତିରେ କୌଣସି ପାର୍ଥକ୍ୟ ନ ଥିଲେ ସୂଚୀ କଳଘଣ୍ଟା ସାହାଯ୍ୟରେ ସମୟକୁ କାର୍ଯ୍ୟୋପଯୋଗୀ କରିବାକୁ ମନୁଷ୍ୟ ଯେଉଁ ବିଭାଗ ସୃଷ୍ଟି କରିଅଛି, ତାହା କାଳର ଅସୀମତା ନିରୂପଣ କରେ ନାହିଁ । Pendulum ପରି ମନୁଷ୍ୟ ସଭ୍ୟତାର ଗତି ଅଛି; କିନ୍ତୁ ଗତି କେଉଁଆଡ଼େ ଯାଉଛି, କେହି କହି ପାରିବେ କି ? ଗତି ନିରୂପଣ ନ କରି ମନୁଷ୍ୟକୁ ପ୍ରଗତିଶୀଳ ଜୀବ କହିବା ସମୀଚୀନ ନୁହେଁ । ସହସ୍ର ବର୍ଷ ତଳେ ମନୁଷ୍ୟ ପ୍ରକୃତିର ଯେଉଁ ବିଶେଷତ୍ୱ ଥିଲା, ଆଜି ମଧ୍ୟ ତାହାହିଁ ଅଛି । କେବଳ କେତେଗୁଡ଼ିଏ ଆଚାରଗତ ଓ ରୁଚିଗତ ପ୍ରଭେଦକୁ ଯେପରି ଗୋଟାଏ ପାର୍ଥକ୍ୟ ଦେଖାଯାଇଥାଏ । ଏହାକୁ ଦେଶ ଓ କାଳ ଉପରେ ସାଧାରଣତଃ ଆରୋପ କରାଯାଇ-ଥାଏ । ଭେଦଭାବର ପରିଖା ମନୁଷ୍ୟକୁ ସର୍ବଦା ଉଦ୍‌ବୁଦ୍ଧ କରି ରଖିଅଛି । ଏପରି ପ୍ରଭାବରେ ଜାତିଗତ ସଭ୍ୟତା ଅନେକ ପରିମାଣରେ ପ୍ରଭାବିତ ହୋଇଥାଏ । ତେଣୁ ପ୍ରାଚୀନ ଭାରତୀୟ ଓ ରୋମାନ୍ ସଭ୍ୟତାର ବିଶିଷ୍ଟତା ଆଧୁନିକ ବସ୍ତୁବାଦୀର ଚକ୍ଷୁରେ କେବଳ ଗୋଟାଏ ସ୍ୱତନ୍ତ୍ରତା ଦେଖାଇଥାଏ । ଆଜି ସମାଜରେ ସେହି ସଭ୍ୟତାର କୌଣସି ପ୍ରଭାବ ନାହିଁ କହିଲେ ଚଳେ । ପାର୍ଥକ୍ୟର ପରିଖା—ବିସ୍ମୃତି ସଭ୍ୟତାର ଗୋଟାଏ କଳ୍ପିତ ମାପକାଠି ପାଇଁ ସୁବିଧା ଦିଏ । କିନ୍ତୁ ଅଗ୍ରଗତିର ସୂଚନା ଏଥିରେ ମିଳେ ନାହିଁ ।

ଅନ୍ତରର ଭାବ ଯେପରି କର୍ମଜଗତର ପରିଚାଳନା, କିନ୍ତୁ ଏହା ସବୁଦିନେ ସମଭାବରେ ମନୁଷ୍ୟକୁ ପ୍ରଣୋଦିତ କରେ ନାହିଁ । ଅତୀତର ମଧୁମୟ ସ୍ମୃତି କେତେଜଣଙ୍କୁ ଉଦ୍‌ବୁଦ୍ଧ କରି ରଖେ । ବାଲ୍ୟ ଓ ଯୌବନର ଚପଳତା ସଙ୍ଗେ ବାର୍ଦ୍ଧକ୍ୟର ସ୍ଥିରତା ସମାନ ରହେ ନାହିଁ । କ୍ରୀଡ଼ାରତ ଶିଶୁ ଶୈଶବ ଓ ଯୌବନର ପରିଖାମାନଙ୍କୁ ଅତିକ୍ରମ କରି ଯେତେବେଳେ ସଂସାରର କଠିନ କର୍ମକ୍ଷେତ୍ରରେ ପ୍ରବେଶ କରେ, ସେତେବେଳେ ତାର ଅନ୍ତରର କୋମଳ ଭାବପ୍ରଧାନ ଜଗତର କଠିନତା

ମଧ୍ୟରେ ପ୍ରାୟ ବିଲୁପ୍ତ ହୋଇ ଆସିଥାଏ । ଅନେକ ସମୟରେ କର୍ମର ଜଟିଳତା ଅନ୍ତରକୁ ଶୁଷ୍କ କରିଦିଏ ଓ ମନୁଷ୍ୟ ଗୋଟିଏ ଧାରାବାହିକ କର୍ମ ସାଧନରେ ଜୀବନକୁ ଅତିବାହିତ କରି ଅନ୍ତିମ ଦଶାରେ ନୈରାଶ୍ୟବାଦୀ ହୁଏ ।

ବ୍ୟକ୍ତିଗତ ଭାବ ବା ଅନୁଭୂତି ପାର୍ଥକ୍ୟର ପରଖାକୁ ଦୃଢ଼ୀଭୂତ କରି ରଖେ । ଏହାର ଫଳରେ ମନୁଷ୍ୟର ରୁଚି ଶିକ୍ଷା ଓ ସଂସ୍କୃତି ବିଭିନ୍ନ ପ୍ରକାରର ହୁଏ । ଜାତିଧର୍ମ ନିର୍ବିଶେଷରେ ଗୋଟାଏ ସମନ୍ୱୟ ଆଣିବାକୁ ଯେଉଁମାନେ ଉଦ୍‌ଭ୍ରାନ୍ତ, ସେମାନଙ୍କର ଦୃଷ୍ଟି ଏ ଦିଗରେ ସଫଳିତ ହୁଏ ନାହିଁ । ରାଜନୀତିରେ ମୈତ୍ରୀସ୍ଥାପନର ବ୍ୟବସ୍ଥା ଏକପ୍ରକାର ଛଳନା ପରି ଜଣାଯାଏ । ଅନ୍ତରର ଉଚ୍ଛ୍ୱାସକୁ ସବୁବେଳେ ସମାନ ରଖାଯାଇପାରେ ନାହିଁ । ସଙ୍ଗସ୍ୱ ବିନିମୟରେ ଯାହାକୁ ମଣିଷ ନିଜର କରିଥାଏ, ସେ ପୁଣି ଶନ୍ତାର ହଳାହଳ ବର୍ଷି ଦେଇ ଚାଲିଯାଏ କିମ୍ବା ତଥାକଥିତ ମନୁଷ୍ୟ ହୃଦୟର ବିଶେଷତ୍ୱ ଗୋଟିଏ ଅବଲମ୍ବନରେ ଅପେକ୍ଷା ରଖେ ନାହିଁ । ବ୍ୟକ୍ତିଗତ ସ୍ୱଭାବର ଏପରି ବୈପରୀତ୍ୟ ଦେଖିଲେ ଦୁଇଟି ବିଭିନ୍ନ ଜାତି ମଧ୍ୟରେ ଐକ୍ୟ ସଂସ୍ଥାପନ ବ୍ୟର୍ଥ ପ୍ରଚେଷ୍ଟା ପରି ଅନୁମିତ ହୁଏ ।

କିନ୍ତୁ ବ୍ୟଷ୍ଟିଭାବର ପ୍ରବଳ ପ୍ରେରଣା ସମଷ୍ଟିର ଅନୁଭୂତି ଆଣିବା ପାଇଁ ଏକ ସହଜ ସୋପାନ । ସୌନ୍ଦର୍ଯ୍ୟ ମୁକ୍ତିନିଷ୍ଠା; କିନ୍ତୁ ଆଧାରର ବିଶିଷ୍ଟତା ଅଭାବରେ ଏହାର ବିକାଶ ସୁଦ୍ଧା ସମ୍ଭବପର ହୁଏ ନାହିଁ । ବିଶିଷ୍ଟତା ବ୍ୟଷ୍ଟି ଭାବର ପୁଷ୍ଟି ସାଧନ କରି ସୌନ୍ଦର୍ଯ୍ୟର ଯେଉଁ ଚିହ୍ନ ପ୍ରକାଶ କରେ, ତାହା ଧୀରେ ଧୀରେ ଭାବର ସମ୍ପୂର୍ତ୍ତି ଆଣେ । ମନର ଆବିଳତା ପ୍ରକୃତ ସୌନ୍ଦର୍ଯ୍ୟବୋଧ ପକ୍ଷେ ବାଧା ଜନ୍ମାଏ । ଏହାକୁ ଦୂର କଲେ ବ୍ୟଷ୍ଟିଭାବର ସରଣୀ ସମଷ୍ଟି ଆଡ଼କୁ ସରଳ ହୋଇ ରହେ । ବାସନା ପରତନ୍ତ୍ର ମନୁଷ୍ୟ ଅନେକ ସମୟ କ୍ଷୁବ୍ଧ ହୃଦୟରେ ସଂସାରର ସବୁ ଦୈନ୍ୟ ବ୍ୟକ୍ତ କିମ୍ବା ବସ୍ତୁ ବିଶେଷର ପ୍ରାପ୍ତି ପାଇଁ ବରଣ କରି ନେଇଥାଏ । ସେ ମନେ କରିଥାଏ; ଉକ୍ତ ବିଶିଷ୍ଟ ଲକ୍ଷ୍ୟ ଅଭ୍ରାନ୍ତ ରହିଲେ ତାର ଆକାଂକ୍ଷା ପୂର୍ତ୍ତି ହେବ, ଓ ହୃଦୟର ଦ୍ୱିଧାଭାବ ଚିରଦିନ ପାଇଁ ଲୋପ ପାଇଯିବ; କିନ୍ତୁ ପ୍ରାପ୍ତି ଆକାଂକ୍ଷା ଜୀବନର ଅନ୍ଧକାରକୁ ବଢ଼ାଇଦିଏ । ମନୁଷ୍ୟର ଗତିପଥରେ କେତେ ଆକର୍ଷଣ ଆସେ, କିନ୍ତୁ ସମସ୍ତଙ୍କର ପ୍ରଭାବ ସମାନ ନୁହେଁ । ଯେଉଁ ଆକର୍ଷଣ ମନୁଷ୍ୟର ସୁପ୍ତ ଶକ୍ତିର ଉଦ୍‌ବୋଧନ ଆଣି ସୌନ୍ଦର୍ଯ୍ୟରେ ତାର ପୂର୍ଣ୍ଣତା ନିର୍ଦ୍ଦେଶ କରିଦିଏ, ତାହାହିଁ ଅବଲମ୍ବନୀୟ । ଏହି ସୁପ୍ତ ଶକ୍ତି ତାର କର୍ମେନ୍ଦ୍ରିୟମାନଙ୍କ ସହିତ ଅସଂପୃକ୍ତ ଅବସ୍ଥାରେ ଥାଏ । କର୍ମେନ୍ଦ୍ରିୟମାନଙ୍କର ଅତ୍ୟଧିକ ଚାଳନାରେ ମନର ଗୋଟାଏ ଆବେଗ ବୃଦ୍ଧି ପାଏ ଓ ମନୁଷ୍ୟ ବହିର୍ଜଗତରେ ଦୃଷ୍ଟି ନିବଦ୍ଧ କରି ଗୋଟାଏ ଅସାର ଜୀବନଯାପନ କରେ । ଜଗତରେ କାହାକୁ ହେୟ ଜ୍ଞାନ କରିବା ଉଚିତ ନୋହିଲେ ସୁଦ୍ଧା ପାର୍ଥକ୍ୟ ଜ୍ଞାନରେ ଚାଳିତ ହୋଇ ନିଜର ମାର୍ଗଟି ସ୍ଥିର କରିନେବା ମନୁଷ୍ୟର ପ୍ରଧାନ କର୍ତ୍ତବ୍ୟ । ନୀତିମାନଙ୍କର ପାର୍ଥକ୍ୟ ସମସ୍ତ ସମୟରେ ବିରୁଦ୍ଧ ଭାବର ପୋଷକତା କରି ପାର୍ଥକ୍ୟର ପରଖାମାନଙ୍କୁ ଭିନ୍ନ ପ୍ରତୀୟମାନ କରାଏ; କିନ୍ତୁ ବ୍ୟଷ୍ଟିଭାବର ଅଭିବୃଦ୍ଧିରେ ଏହି ପ୍ରତୀତି ଶୀଘ୍ର ଦୂର ହୋଇଯାଏ । ଆଲୋକ ରେଖାଟିଏ ଯେତେ କ୍ଷୀଣ ହେଲେ ସୁଦ୍ଧା ଗଭୀର ଅନ୍ଧକାରରେ ତାର ସ୍ୱାତନ୍ତ୍ର୍ୟ ରକ୍ଷା କରିଥାଏ । ମନୁଷ୍ୟର ଲକ୍ଷ୍ୟ ଏପରି ହେବା ଆବଶ୍ୟକ । ଜୀବନରେ ପ୍ରତିବନ୍ଧକ ଆସିବ, ନୀତିମାର୍ଗରେ ବିଡ଼ମ୍ବନା ଘଟିବ; ସଂସାରର ନିର୍ଯ୍ୟାତନାରେ ସେ ମୁହ୍ୟମାନ ହୋଇ ପଡ଼ିବ; କିନ୍ତୁ ସ୍ୱାତନ୍ତ୍ର୍ୟ ରକ୍ଷାରେ ତାର ପ୍ରକୃତ ଆତ୍ମ-ବଳ ସଂଚିତ ହେବ ।

ଗ୍ରହଣ କରିବାର ପ୍ରବୃତ୍ତି ମନ୍ଦ ହୋଇ ନ ପାରେ; କିନ୍ତୁ ବିକାଶୋନ୍ମୁଖ ପ୍ରତିଭାକୁ ଏହା ପ୍ରାୟ ସାହାଯ୍ୟ କରେ ନାହିଁ, ଦାନ କଲେ ହିଁ ଗ୍ରହଣ କରିବାର ମର୍ମ ବୁଝାଯାଏ । ଏଥି ଗୋଟିକ ସହିତ ଅନ୍ୟଟି ତୁଳନୀୟ ନୁହେଁ; ଗ୍ରହଣ କଲେ ହୃଦୟ ସ୍ୱତଃ ସଙ୍କୁଚିତ ହୋଇଯାଏ । ମନୁଷ୍ୟ ନିଜକୁ ଶ୍ରେଷ୍ଠ ମନେ କରିପାରେ କିନ୍ତୁ ଦାନରେ ଏହାର ବିପରୀତ ଅବସ୍ଥା ଆସେ । ଅନେକ ସମୟରେ ଏ ସମ୍ବନ୍ଧରେ ଭ୍ରମ ଘଟିପାରେ । ଜଣେ ଯଦି ଅକାତରରେ ଆଉଜଣଙ୍କୁ ଭଲ ପାଇଲା ଓ ତାର ସଙ୍ଗସ୍ୱ ସେହି ଜଣକ ପାଦତଳେ ଅର୍ପଣ କଲା, ତାହା ହେଲେ ଏଠାରେ କିଏ ବଡ଼ ହେବ ? ଦାତା ନା ଗ୍ରହୀତା ? ଦାତା ଓ ଗ୍ରହୀତାର ପାର୍ଥକ୍ୟ ନିର୍ଣ୍ଣୟ କରିବା ସବୁ ସ୍ଥଳରେ ସମାନ ନୁହେଁ । ଶ୍ରେଣୀଗତ ବିଶେଷତ୍ୱ ଉଭୟଙ୍କୁ ଏକ ପରିସ୍ଥିତିର ଅଧୀନ କରାଏ ନାହିଁ; କିନ୍ତୁ ଯେତେବେଳେ ଦୁଇଟି ହୃଦୟ ଏକାଭାବରେ ମିଶିଯିବାକୁ ଉଦ୍‌ଭ୍ରାନ୍ତ—ଜଣକର ଦୋଷ ଓ ଗୁଣ, ଭଲ ଓ ମନ୍ଦରେ ଅନ୍ୟ ଜଣକ ପୂର୍ଣ୍ଣମାତ୍ରାରେ ଅନୁପ୍ରାଣିତ ହୁଏ, ସେତେବେଳେ ଉଭୟଙ୍କର ପାର୍ଥକ୍ୟ ଜ୍ଞାନ ଲୋପ ପାଇଥାଏ । ଦୁଇଟି ହୃଦୟ ଉଚ୍ଛ୍ୱସିତ ହୋଇ ମିଳିଗଲେ ଆଉ ପାର୍ଥକ୍ୟର ସୀମା ରହେ ନାହିଁ; ସାନ ବଡ଼ ଭାବ ମଧ୍ୟ ଏଥି ସଙ୍ଗେ ଚାଲିଯାଏ ।

ସୌନ୍ଦର୍ଯ୍ୟର ପୂଜାରେ ପାର୍ଥକ୍ୟ-ଦୃଷ୍ଟି ଏକ ଉପଯୁକ୍ତ ବିଧାନ । ସାଧାରଣ ଲୋକେ ମଧ୍ୟ କହିଥାନ୍ତି "ଦୂରପର୍ବତ ଓ ଦୂରବନ୍ଧୁ ସମାନ । ଦୂରତ୍ୱରେ ପାର୍ଥକ୍ୟର ପ୍ରଭାବ ବିଶେଷ ଭାବରେ ପର୍ଯ୍ୟବସିତ । ସୁଦୂର ଅତୀତର ବିବୃତ ଇତିହାସରେ ଲିପିବଦ୍ଧ କରାଯାଇଅଛି । କିନ୍ତୁ ଇତିହାସ-ପାଠକର ଦୃଷ୍ଟି ଐତିହାସିକର ଚିତ୍ରକୁ ଯେପରି ଅନୁଭବ କରେ, ବୋଧହୁଏ ଐତିହାସିକ ସେପରି ଭାବରେ ପ୍ରକାଶ କରି ନ ଥାଏ । ବିଗତ ଐତିହାସିକ ଘଟନାକୁ ବର୍ତ୍ତମାନ ପାଠକ ପାରିପାର୍ଶ୍ୱିକ ଅବସ୍ଥାରେ ପ୍ରଭାବିତ ହୋଇ ଗୋଟାଏ ଭିନ୍ନ ଆକାରରେ ଗ୍ରହଣ କରିବା ସମ୍ପୂର୍ଣ୍ଣ ସ୍ୱାଭାବିକ । ବର୍ତ୍ତମାନ ଓ ଅତୀତର ପରିଖାକୁ କଳ୍ପନା ସଂଯୋଗ କରିପାରେ; କିନ୍ତୁ ଗୋଟାଏ ପାର୍ଥକ୍ୟ କାଳ ଓ ନିମିତ୍ତକୁ ଆଶ୍ରୟ କରି ରହେ । ଯୁଗ ପରେ ଯୁଗ ଆସେ, ଗୋଟାଏ ପରିବର୍ତ୍ତନର ଧାରା ଅଲକ୍ଷିତରେ ଗତି କରୁଥାଏ । ମନୁଷ୍ୟ ଏହାକୁ କ୍ୱଚିତ୍ ଲକ୍ଷ୍ୟ କରେ । ଅତୀତର ଇତିବୃତ୍ତ କଥା ଦୂରେ ଥାଉ, ଜୀବନର ସାମାନ୍ୟ ଘଟଣାଗୁଡ଼ିକୁ ଯଦି ଲିପିବଦ୍ଧ କରାଯାଏ, ତାହାହେଲେ ମନୁଷ୍ୟ ଗୋଟାଏ ପାର୍ଥକ୍ୟ ସହଜରେ ଜାଣି ପାରିବ । ଶୈଶବରୁ ଯୌବନରେ ପରିଣତି ଧୀରେ ଓ ଅଲକ୍ଷିତରେ ସାଧିତ ହୋଇଥାଏ । କାଳ, ନିମିତ୍ତର ବିନା ସାହାଯ୍ୟରେ ଯେଉଁ ପରିବର୍ତ୍ତନ ଆଣେ, ସେଥିରେ ପରିଖାଟି ସୁସ୍ପଷ୍ଟ ଜଣାପଡ଼େ । ମନୁଷ୍ୟର ଗତି ଅପ୍ରତିହତ । ସେ ଆଜି ଯେଉଁ ସ୍ଥାନରେ ଦଣ୍ଡାୟମାନ, କାଲି ସେଠାରୁ ଅଜ୍ଞାତରେ ଅନେକ ଦୂର ଅପସରିଯାଏ । ସମୟ ସମୟରେ ଏହି ଅପସୃତ ତା ଅନ୍ତରରେ ଗୋଟାଏ ଆକସ୍ମିକ ସ୍ପନ୍ଦନ ଖେଳାଇ ଦେଇ ଚାଲିଯାଏ । ସ୍ପନ୍ଦନର ପୁନରାବୃତ୍ତି ଥାଇପାରେ; କିନ୍ତୁ ସମାନତା ରହେ ନାହିଁ । ଏଥିଯୋଗୁଁ ଜଣକ ପ୍ରତି ଯେଉଁ ଅନୁରାଗ ଆସିଥାଏ, ତାହା ଅନ୍ୟ ପାଇଁ ଆସେ ନାହିଁ । ଗୋଟିଏ ଉତ୍ସରୁ ଦୁଇଟି ଧାରା ବହିଆସେ, କିନ୍ତୁ ଦୁହେଁ ବିଭିନ୍ନ ମାର୍ଗ ଦେଇ ଚାଲିଯାନ୍ତି । ମନୁଷ୍ୟର ହୃଦୟର ଭାବଧାରା ଚିରଦିନ ପାଇଁ ଉନ୍ମୁକ୍ତ, କିନ୍ତୁ କାହାରି ଭାବ କିପରି ମାର୍ଗ ଅନୁସରଣ କରିବ, କେହି କହିପାରିବେ ନାହିଁ । ଗୋଟିଏ ଚିରନ୍ତନ ପାର୍ଥକ୍ୟ ମଧ୍ୟରେ ସମାନତା ଆଣିବା ବ୍ୟର୍ଥ ପ୍ରୟାସ ପରି ଜଣାପଡ଼େ । ମାନସିକ ଉତ୍କର୍ଷ ଅତି ଉଚ୍ଚ ଧରଣର ହେଲେ ଗୋଟାଏ ସମାନତାର ସନ୍ଧାନ ମିଳିପାରେ । ମନୀଷୀମାନେ ସତ୍ୟ ଓ ସୌନ୍ଦର୍ଯ୍ୟର ଅନ୍ୱେଷଣରେ ପାର୍ଥକ୍ୟ ଜ୍ଞାନକୁ ସାଧନ ମାର୍ଗରୁ ଲୋପ କରି ଦେଇ ପାରନ୍ତି; କିନ୍ତୁ ସାଧାରଣଙ୍କ ପକ୍ଷେ ଏହା ସମ୍ଭାବ୍ୟ ନୁହେଁ । ବ୍ୟଷ୍ଟି ଭାବର ସମ୍ୟକ ସଂପ୍ରୀତି ଆସିଲେ ମନୁଷ୍ୟ ପ୍ରକୃତିର ସୌନ୍ଦର୍ଯ୍ୟକୁ ଉପଲବ୍ଧି କରିପାରେ । ଅସଂଖ୍ୟ ପରିଖା ଅତିକ୍ରମ କରିବା ପରିବର୍ତ୍ତେ, ଗୋଟିଏ ପରିଖାର ଉପର ଦେଇ ଅତିକ୍ରମଣର କୌଶଳକୁ ଶିକ୍ଷା କରିବା ସାଧନ ତତ୍ପରତା ଉପରେ ନିର୍ଭର କରେ । ବ୍ୟଷ୍ଟି ଭାବରୁ ସମଷ୍ଟିର ଉପଲବ୍ଧି ଏଥିରେ ସହଜ ହୁଏ । ଅବଶ୍ୟ ସମୟ ଆସିବ ଯେତେବେଳେ ମନୁଷ୍ୟକୁ ପାର୍ଥକ୍ୟ ଭାବ ଦୂର କରିବାକୁ ହେବ; କାରଣ ତାର ଗତିଶୀଳତାର ପରିଣତି । ଏକ ବିଶାଳ ସମାନତା । ଯେତେଦିନ ଯାଏ ମନୁଷ୍ୟ ସାଂସାରିକ କର୍ମ-କୁଟିଳତାକୁ ତ୍ୟାଗ କରେ ନାହିଁ, ସେତେ ଦିନ ଯାଏ ତାକୁ ଗୋଟିକ ପରେ ଗୋଟିଏ ପରିଖା ଅତିକ୍ରମ କରିବାକୁ ପଡ଼େ । ପରିବର୍ତ୍ତନ ସୌନ୍ଦର୍ଯ୍ୟାନୁଭୂତିରେ ପାର୍ଥକ୍ୟର ବିଭିନ୍ନ ସ୍ତରସବୁ ରଖିଦେଇଯାଏ । ତେଣୁ ଆଜି ଯାହାକୁ ଜଣେ ଅତି ଯତ୍ନରେ ଗ୍ରହଣ କରିଥାଏ, କାଲି ପୁଣି ତାକୁ ନିର୍ବିରୋଧରେ ଛାଡ଼ିଦିଏ । ଜଗତରେ ଏହି ସାଧାରଣ ନିୟମକୁ ଲଙ୍ଘନ କରି ଯେଉଁମାନେ ଉନ୍ମୁକ୍ତ ହେବାକୁ ଚାହାନ୍ତି, ସେମାନଙ୍କର ଗତି ଅସାଧାରଣ ହୁଏ, ସାଧାରଣଙ୍କ ପକ୍ଷରେ ସୌନ୍ଦର୍ଯ୍ୟର ବିଭିନ୍ନ ସ୍ତର ରହିବା ବାଞ୍ଛନୀୟ ।

ହୃଦୟର ପ୍ରେରଣା ଉପରେ ସୌନ୍ଦର୍ଯ୍ୟବୋଧ ନିର୍ଭର କରେ । ସୌନ୍ଦର୍ଯ୍ୟ ଓ ପ୍ରେମର ଅନୁଭୂତି ପରସ୍ପରସାପେକ୍ଷ । ସୌନ୍ଦର୍ଯ୍ୟଜ୍ଞାନର ଅଲ୍ପତାରେ ପ୍ରେମର ସହଜ ବିକାଶ ହୁଏ ନାହିଁ । ହୃଦୟର ପ୍ରେରଣା ମଧ୍ୟ ସବୁ ସମୟରେ ସମାନ ଭାବରେ ସବୁ ମନୁଷ୍ୟକୁ ଉଦ୍‌ବୁଦ୍ଧ କରେ ନାହିଁ । ଏହି ଅସମାନତା ଯେପରି ପାର୍ଥକ୍ୟର ବିଭିନ୍ନ ପରିଖା ଭିନ୍ନ ଭିନ୍ନ ମନୁଷ୍ୟକୁ ସର୍ବଦା ଘେରି ରହେ ଓ ଜଣକର ଭାବରେ ଅନ୍ୟ ଜଣେ ଆକୃଷ୍ଟ ହେବା କଠିନ ହୁଏ । ଯେଉଁମାନଙ୍କର ଭାବପ୍ରବଣତା ଅନ୍ୟମାନଙ୍କୁ ପ୍ରଭାବିତ କରେ, ସେମାନଙ୍କର ଭାବନା ସାଧାରଣ ସ୍ତରକୁ ସ୍ପର୍ଶ କଲେ ସୁଦ୍ଧା ଅବାସ୍ତବରୁ ବାସ୍ତବର ଚିତ୍ର ଆଙ୍କି ଜଟିଳ କର୍ମ ସମସ୍ୟାକୁ ସରଳ କଲାବେଳେ ସେମାନେ କୌଣସି ପରିଖାରେ ଆବଦ୍ଧ ରହନ୍ତି ନାହିଁ । ସେମାନଙ୍କର ଦୃଷ୍ଟିରେଖା ଅପ୍ରତିହତ ଭାବରେ ଗତି କରେ । ଉନ୍ନତ ଭାବନାରେ ଉତ୍କୃଷ୍ଟ କର୍ମର ଉପୂତ୍ତି ସେମାନେ ଦେଖାଇ ପାରନ୍ତି । ସୌନ୍ଦର୍ଯ୍ୟର ବହୁମୁଖୀ ଧାରା ଅଛି, କିନ୍ତୁ ଭାବୁକର ଚିତ୍ରଣପ୍ରଣାଳୀରେ ଗୋଟିଏ ପ୍ରବାହ ଅବିରାମ ଗତି କରୁଥାଏ । ତେଣୁ ନୀତି, ଧର୍ମ ଓ କର୍ମ ବହିର୍ଦୃଷ୍ଟିରେ ଭିନ୍ନ ଭିନ୍ନ ପ୍ରତୀୟମାନ ହେଲେ ସୁଦ୍ଧା ଉନ୍ନତ ଭାବନା ସେଗୁଡ଼ିକୁ ଏକ ବୋଲି ଗ୍ରହଣ କରିଥାଏ ।

ସଂସାର ମାର୍ଗରେ ମନୁଷ୍ୟକୁ ଅସଂଖ୍ୟ ପରୀକ୍ଷା ଅତିକ୍ରମ କରିବାକୁ ପଡ଼େ । ପରୀକ୍ଷାମାନଙ୍କର ଉଦ୍‌ବେଳ ପ୍ରବାହରେ ସାଧାରଣ ମନୁଷ୍ୟ ଇତସ୍ତତଃ ହୋଇ ପଡ଼େ । ସ୍ରୋତର ପ୍ରଖରତା ସବୁ ପରୀକ୍ଷାରେ ସମାନ ନ ଥାଏ । ଗୋଟିଏ ପରୀକ୍ଷାକୁ ଅତିକ୍ରମ କରି ଯେଉଁ ଅନୁଭୂତି ଆସେ, ତାହା ସଂସାର ଯାତ୍ରୀ ପକ୍ଷେ ଯଥେଷ୍ଟ ନୁହେଁ । ପରୀକ୍ଷାମାନଙ୍କର ପାର୍ଥକ୍ୟ ତାକୁ ବିବିଧ ଅବଲମ୍ବନ ଗ୍ରହଣ କରିବାକୁ ବାଧ୍ୟ କରେ । ଗୋଟିଏ ଅବଲମ୍ବନରେ ଯଦି ଜୀବନକାଳଟା ଅତିବାହିତ ହୋଇଥାନ୍ତା, ତାହାହେଲେ ସଂସାରରେ ଅସାମଞ୍ଜସ୍ୟ ପାଇଁ ସ୍ଥାନ ରହନ୍ତା ନାହିଁ କିମ୍ବା ମନୁଷ୍ୟର ଧର୍ମ ଓ ନୀତି ଏତେ ଜଟିଳ ହୁଅନ୍ତା ନାହିଁ । ଏହି ଜଟିଳତାକୁ ଲକ୍ଷ୍ୟ କରି ଆପ୍ତ ବାକ୍ୟ ପ୍ରୟୋଗ କରାଯାଇଛି—"ଧର୍ମସ୍ୟ ତତ୍ତ୍ୱଂ ନିହିତଂ ଗୁହାୟାଂ" ମନୁଷ୍ୟ ବହୁ ଧର୍ମ ଓ ନୀତି ସଂସ୍ପର୍ଶରେ ଆସିପାରେ, କିନ୍ତୁ ଗୋଟିକରେ କାହିଁକି ସେ ଉଦ୍‌ବୁଦ୍ଧ ହେଲା ପରି ଜଣାପଡ଼େ ? ସମସ୍ତଙ୍କ ଅନ୍ତରର ପ୍ରେରଣା ସମାନ ନୁହେଁ । ଜଣେ ଯେଉଁ ଭାବରେ ଅନୁପ୍ରାଣିତ, ଅନ୍ୟ ଜଣେ ତାକୁ ଉପେକ୍ଷା କରିପାରେ । ଏଥିରେ କିଛି ବିସ୍ମୟ ନାହିଁ । ଯେତେବେଳେ ହୃଦୟର ଆବେଗ ଗୋଟିଏ ବିଶିଷ୍ଟ ନୀତି ବା ଧର୍ମକୁ ଅନୁସରଣ କରେ, ସେତେବେଳେ ପାର୍ଥକ୍ୟ ଜ୍ଞାନର ପ୍ରଭାବ ମନୁଷ୍ୟକୁ ଉଦାରଭାବର ବଶବର୍ତ୍ତୀ କରାଏ ।

ଭାବଧାରାର ଅସାମଞ୍ଜସ୍ୟରେ ବିଭିନ୍ନ ମାନସିକ ବିକାଶର ପରିଚୟ ମିଳେ । ବୈଜ୍ଞାନିକ ଓ ଦାର୍ଶନିକ ମଧ୍ୟରେ ଭିନ୍ନ ଭିନ୍ନ ମତ ଦେଖାଦେଲେ ସୁଦ୍ଧା ତାକୁ ବିରୁଦ୍ଧ ମୂଳକ କୁହାଯାଇ ପାରିବ ନାହିଁ । ବିସ୍ତୀର୍ଣ୍ଣ ଓ ପ୍ରବଳ ଜଳସ୍ରୋତ ଉଚ୍ଚ ଭୂମିରୁ ନିମ୍ନ ଭୂମିକୁ ପ୍ରବାହିତ ହେଉଥାଏ । ସ୍ରୋତର ଉପରି ଭାଗକୁ ଟିକିଏ ଦୂରରୁ ଦେଖିଲେ କେବଳ ଗୋଟିଏ ଧାରା ଅବିଚ୍ଛିନ୍ନ ଭାବେ ବହିଗଲା ପରି ଜଣାଯାଏ; କିନ୍ତୁ ସ୍ରୋତର ପ୍ରକୃତ ଅବସ୍ଥା ତାହା ନୁହେଁ । କେତେ ଆବର୍ତ୍ତ ଓ ଅନ୍ତଃସ୍ରୋତରେ (Under Current) ପ୍ରବାହଟି ବିକ୍ଷୁବ୍‌ଧ ହେଉଥାଏ । ମାନସିକ ପ୍ରବୃତ୍ତିଗୁଡ଼ିକ ଏହିପରି ଗୋଟିଏ ବାହ୍ୟ ସମାନତା ଆଚରଣ କରି ଭିତରେ ମନୁଷ୍ୟ ସ୍ୱଭାବର ଯେଉଁ ବୈଷମ୍ୟ ସୃଷ୍ଟି କରେ; ତଦ୍ଦ୍ୱାରା ପାର୍ଥକ୍ୟର ପରୀକ୍ଷା ସୃଷ୍ଟି ହୁଏ । ମନର ଅବିକ୍ଷୁବ୍‌ଧ ଅବସ୍ଥା ଆସିଲେ ପରୀକ୍ଷାର ପରିସର କ୍ରମଶଃ ସଙ୍କୁଚିତ ହୋଇଆସେ ଓ ଶେଷରେ ମନୁଷ୍ୟ ପାର୍ଥକ୍ୟ ଜ୍ଞାନ ଲୋପ କରିଦେଇ ସର୍ବଭୂତରେ ନିଜର ସତ୍ତା ଅନୁଭବ କରେ । ଏହାହିଁ ମନୁଷ୍ୟର ଶେଷ ପରୀକ୍ଷା ।

# ବାସ୍ତବତା

ବାସ୍ତବତା ଜୀବନର ମାନଦଣ୍ଡ । ନୈରାଶ୍ୟବାଦୀମାନେ ଏହି କଥା ଗ୍ରହଣ କରିବାକୁ କୁଣ୍ଠାବୋଧ କରିପାରନ୍ତି; କାରଣ ସେମାନଙ୍କ ଦୃଷ୍ଟିରେ ଜଗତ୍ ଓ ଜୀବନ ଗୋଟିଏ ଗୋଟିଏ ପ୍ରହେଳିକା ପରି ପ୍ରତୀତ ହୁଏ । ବାସ୍ତବିକ ମହାକାଳ ଗର୍ଭରେ ଜୀବନର ଅଳ୍ପତା ଓ ପ୍ରାକୃତିକ ଘଟଣା ସମ୍ପାତରେ ଜଗତର ମୁହୂର୍ତ୍ତିକେ ଘୋର ଆଚମ୍ବିତ ପରିବର୍ତ୍ତନ ଦେଖିଲେ ସହଜରେ ଯେ କେହି ବାସ୍ତବତାକୁ ତୁଚ୍ଛ ମନେ କରିବେ । ଐଶ୍ୱର୍ଯ୍ୟ-ଗରବିଣୀ ନଗରୀ ହଠାତ୍ ଭୂକମ୍ପର ପ୍ରବଳ ଆଲୋଡ଼ନରେ ଯେତେବେଳେ ଧୂଳିସାତ୍ ହୁଏ ଓ ଯୌବନରେ ମନୁଷ୍ୟର ସୌମ୍ୟ ମୂର୍ତ୍ତି ମରଣସ୍ପର୍ଶରେ ଚିରଦିନ ପାଇଁ ହଜିଯାଉଥାଏ, ସେତେବେଳେ ସ୍ୱତଃ ମନରେ ଗୋଟିଏ ଶୂନ୍ୟ ଭାବ ଆସେ । ଏହି ଶୂନ୍ୟତା ଅବାସ୍ତବତା ଓ ବାସ୍ତବତା ମଧ୍ୟରେ ସଂଯୋଜକ ପରି ରହେ ।

ସାଗର ବେଳାରେ ସ୍ଥଳଭାଗର ଶେଷ ଓ ମରଣରେ ଜୀବନର ପରିଣତି ଦେଖି ମନୁଷ୍ୟ ହତାଶ ହୋଇ ଅନାଇ ରହେ । ସାଗରର ଅନ୍ତହୀନ ନୀଳିମା ସଙ୍ଗେ ହୃଦୟର ଶୂନ୍ୟତା ଏକ ତାନରେ ମିଶିଯାଏ; କିନ୍ତୁ ମନୁଷ୍ୟର ଗତି କଅଣ ଏଥିରେ ବିଲୀନ ହୋଇଯାଇପାରେ ? ସୀମାବଦ୍ଧ ସୀମାହୀନରେ ପ୍ରବିଷ୍ଟ ହେବାପାଇଁ ଯଦି ମନୁଷ୍ୟ ପ୍ରେରଣା ପାଇ ନ ଥାନ୍ତା ଓ ସେହି ସୀମାହୀନ ଯଦି ମନୁଷ୍ୟର ପ୍ରକୃତ ସତ୍ତା ସନ୍ଧାନ ନେବାକୁ ସମର୍ଥ ହେଉ ନ ଥାନ୍ତା, ତାହାହେଲେ ଜଗତର ଅବାସ୍ତବତା ତାକୁ ଚିରଦିନ ପାଇଁ ଭୁଲାଇ ରଖନ୍ତା । ତତ୍ତ୍ୱଦର୍ଶୀ ମହାପୁରୁଷମାନେ ଜୀବନର ଶୂନ୍ୟତାକୁ ଉପେକ୍ଷା କରନ୍ତି; କିନ୍ତୁ ଆମ୍ଭେମାନେ ସାଧାରଣତଃ ନୈରାଶ୍ୟବାଦୀ ହୋଇ କିଛି ସମୟ ପାଇଁ ନିଜର ଗନ୍ତବ୍ୟ ପଥ ଅବଧାରଣ କରିପାରୁ ନାହିଁ ।

ଏହି ପ୍ରସଙ୍ଗରେ କେହି ଗାଣିତିକ ଶୂନ୍ୟତାର ସଂଯୋଜନା କ୍ରିୟା ଦେଖି ବିସ୍ମିତ ହେବେ ନାହିଁ । ଆର୍ଯ୍ୟ ଦାର୍ଶନିକ କହିଗଲେ, ମହାଶୂନ୍ୟରୁ ଜଗତର ଉତ୍ପତ୍ତି ଘଟିଅଛି । ସେହି ଶୂନ୍ୟତା ଉପରେ ବାସ୍ତବତାର ଭିତ୍ତିଭୂମି ସ୍ଥାପନ କରିବା ଏକ ଉତ୍କୃଷ୍ଟ ଉପାୟ । ନଶ୍ୱର ଜୀବ ସତ୍ୟ, ଶିବ ଓ ସୁନ୍ଦରଙ୍କୁ ଯେତେବେଳେ ନିଜ ଧାରଣାର ଅଧୀନ କରି ପାରିଛି, ସେତେବେଳେ ସେ ବାସ୍ତବତାକୁ ବାଦ୍ ଦେଇ ପାରିବ ନାହିଁ । ସମସ୍ତେ ଅକୁଣ୍ଠିତ ଭାବରେ ସୌନ୍ଦର୍ଯ୍ୟକୁ ସ୍ୱୀକାର କରନ୍ତି । ଅବଶ୍ୟ ଗ୍ରାହକ ବିଶେଷଙ୍କ ଦୃଷ୍ଟିରେ ତାରତମ୍ୟ ସୌନ୍ଦର୍ଯ୍ୟର ଗୋଟିଏ ଗୋଟିଏ ବିଶିଷ୍ଟ ବିଭବ ଦେଇପାରେ; କିନ୍ତୁ ହୃଦୟର ଅନୁଭୂତି ସମସ୍ତଙ୍କର ସମାନ ରହେ ନାହିଁ । ସମସ୍ତଙ୍କ କଥା ଦୂରେ ଥାଉ, ଜଣେ ବ୍ୟକ୍ତିର ହୃଦୟର ଉନ୍ମାଦନା ଆଜି ଯାହା ଅଛି, କାଲି ତାହା ପରିବର୍ତ୍ତିତ ହୋଇପାରେ । ସୌନ୍ଦର୍ଯ୍ୟର ଶ୍ରେଣୀ ବିଭାଗ କରି ଗୁରୁ ଲଘୁ ଭାବ ଦେଖାଇବା ଏ ପ୍ରସଙ୍ଗରେ ଉଦ୍ଦେଶ୍ୟ ନୁହେଁ ।

ଜଗତରେ ରୂପର ସ୍ଥିତି କ୍ଷଣିକ । କ୍ଷଣିକରେ ରୂପର ପୂଜା ସୌନ୍ଦର୍ଯ୍ୟର ଯେଉଁ ଅନୁଭୂତି ଆଣେ ଓ ଅନ୍ଧକାର ଅବାସ୍ତବ ରାଜ୍ୟରେ ଯେଉଁ ଆଶାର ଆଲୋକଟିକି ଜାଳି ଦିଏ, ସେଥିରେ ମନୁଷ୍ୟର ନଶ୍ୱରତା ଅନେକ ଦୂର ଘୁଞ୍ଚି ଯାଏ ଓ ସେ ଗୋଟିଏ ବାସ୍ତବ ପ୍ରତ୍ୟୟର ଅଧୀନ ହୁଏ । ଏହି ପ୍ରତ୍ୟୟଟିକି ଜୀବନରେ ଯାହାର ଆସେ ନାହିଁ, ତାହାର ଅବାସ୍ତବତାରୁ ଗତି କେବଳ ଶୂନ୍ୟତାରେ ପର୍ଯ୍ୟବସିତ ହୋଇ ରହିବା ସମ୍ଭବ । ଏଠାରେ ଶୂନ୍ୟତା ସଂଯୋଜକ ହେବା ପକ୍ଷେ ବାଧା ଜନ୍ମେ । ଜଗତରେ ଅସ୍ଥାୟୀ ରୂପର ପୂଜକ ଅନେକ; କିନ୍ତୁ ଅବାସ୍ତବରୁ ବାସ୍ତବ ଆଡ଼କୁ ଯିବା ପାଇଁ ଯେଉଁ ଶୂନ୍ୟତା ଚକ୍ଷୁ ସମକ୍ଷରେ ଭାସି ଉଠେ, ତାକୁ ରୂପର ପୂଜା ସବୁ ସମୟରେ କିମ୍ବା ସବୁଶ୍ରେଣୀର ପୂଜକମାନଙ୍କଦ୍ୱାରା ସମାଧାନ କରାଯାଇପାରେ ନାହିଁ । କିନ୍ତୁ ଭାବାବେଶରେ ମନୁଷ୍ୟ ଯେ ପ୍ରତିମାଟିକୁ କଳ୍ପନା ପଟରେ ଆଙ୍କି ନେଇଥାଏ, ତାକୁ ସବୁବେଳେ ମୋହର ଦୋହାଇ ଦେବା

ସମୀଚୀନ ନୁହେଁ । ମୋହର ଆବରଣ ତଳେ ଯେଉଁ ପ୍ରତୀକ୍ଷା ଥାଏ, ତାହା ଦିନେ ଏକ ବାସ୍ତବ ଜାଗରଣ ଆଣେ । ବିଲ୍ୱମଙ୍ଗଳଙ୍କ ଜୀବନରେ ଏହା ପ୍ରତିପାଦିତ ହୋଇଯାଇଛି । ନବ ବସନ୍ତର ଗୋଟିଏ ଝଙ୍କାର, ପ୍ରେୟସୀର ଅଧରରେ କମନୀୟକରେ ସରଳ ଓ ସାନ୍ତ ହାସ୍ୟ ଓ ସଙ୍ଗୀତର ପ୍ରାଣସ୍ପର୍ଶୀ ମୂର୍ଚ୍ଛନା ଯେ ଉଦ୍‌ବୋଧନ ଆଣେ, ସେଥିରେ ମନୁଷ୍ୟର କେତେ ଲୁପ୍ତ ପ୍ରେରଣା ଜାଗ୍ରତ ହୋଇଉଠେ । ଏହାର ସ୍ଥାୟିତ୍ୱ ଅତ୍ୟଳ୍ପ ହେଲେ ସୁଦ୍ଧା ଗୋଟାଏ ପ୍ରତ୍ୟୟ ମନୁଷ୍ୟମନରେ ଜନ୍ମାଇଦିଏ ଓ ଏହାରି ଅବଲମ୍ବନରେ ମନୁଷ୍ୟ ଅବାସ୍ତବରୁ ବାସ୍ତବ ଆଡ଼କୁ ଅଗ୍ରସର ହୁଏ । ରୂପର ସ୍ଥିତି କ୍ଷଣିକ ହେଲେ ସୁଦ୍ଧା ସୌନ୍ଦର୍ଯ୍ୟର ଯେଉଁ ଆଭାସଟିକ ଏଥିରେ ଲାଗି ରହିଥାଏ, ତାହା ତାକୁ ଆତ୍ମନିଦର୍ଶନ ପାଇଁ ସୁବିଧା ଦିଏ । ଏହି ନିଦର୍ଶନ ସମସ୍ତଙ୍କ ଚକ୍ଷୁରେ ସମାନ ଭାବରେ ଦେଖାଯିବାର କୌଣସି ବିଧି ନାହିଁ । ତେଣୁ ରୂପର ପୂଜା ପଦ୍ଧତି ସମାନ ରହେ ନାହିଁ । ମନ୍ଦିରରେ କେବଳ ପ୍ରତିମାଟି ରଖିଦେଲେ ଉଦ୍ଦେଶ୍ୟ ସାଧିତ ହୋଇପାରେ ନାହିଁ । ପ୍ରତିମାର ପ୍ରାଣ ପ୍ରତିଷ୍ଠା ମଧ୍ୟ ପୂଜକ ଉପରେ ନିର୍ଭର କରେ । ପ୍ରତିମା ପୂଜାର ସାର୍ଥକତା ହୃଦୟଙ୍ଗମ ନକରି ସେ ସମ୍ବନ୍ଧରେ ଗୋଟାଏ ହୀନ ଧାରଣାର ବଶବର୍ତ୍ତୀ ହେବା ଉଚିତ ନୁହେଁ ।

ଅବାସ୍ତବ ଘଟଣାମାନଙ୍କର ସମାବେଶରେ ଜୀବନ ସ୍ରୋତ ବଡ଼ ଚଞ୍ଚଳ; ତଥାପି ଏହି ଚଞ୍ଚଳତା ମଧ୍ୟରେ ଗୋଟାଏ ତରଙ୍ଗ ଜୀବନର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ପ୍ରସାରିତ ହେଉଥାଏ । ସମୟ ସମୟରେ ଏହା କ୍ଷୀଣ ହୋଇ ଉଭେଇଗଲା ପରି ଜଣାପଡ଼େ । କିନ୍ତୁ ବାସ୍ତବିକ ତାହା କଅଣ ସମ୍ଭବ ? ଜଳ ଓ ବାୟୁ ତରଙ୍ଗ ଥରେ ସୃଷ୍ଟି ହେଲେ ବିଲୀନ ହୁଏ ନାହିଁ । ତରଙ୍ଗର କ୍ଷୀଣତା ପ୍ରସାର ପକ୍ଷେ କୌଣସି ବାଧା ଦିଏ ନାହିଁ । ତରଙ୍ଗରେ ଆଘାତ ଲାଗି ଗୋଟିଏ ପ୍ରତିକ୍ରିୟା ସୃଷ୍ଟି ହୋଇପାରେ; କିନ୍ତୁ ତାହାର ପ୍ରଭାବକୁ ଅନିଷ୍ଟକାରୀ କହିବା ଉଚିତ ନୁହେଁ । ମନୁଷ୍ୟର ଆକାଂକ୍ଷା ଏହି ତରଙ୍ଗର ନାମାନ୍ତର ମାତ୍ର । ଆଶା ଓ ଆକାଂକ୍ଷା ତାକୁ ସର୍ବଦା ଉଦ୍‌ବୁଦ୍ଧ କରୁ ନ ଥିଲେ, ସେ ସଂସାର ପଥରେ ବଡ଼ ଶିଥିଳ ହୋଇ ପଡ଼ୁଥାନ୍ତା । ନୈରାଶ୍ୟବାଦୀମାନେ ଆକାଂକ୍ଷାର ତୀବ୍ରତାକୁ ଲକ୍ଷ୍ୟ କରି ତାହାର ଅସାରତା ଦେଖାଇ ପାରନ୍ତି; କିନ୍ତୁ ପ୍ରକୃତରେ ତାହା ନୁହେଁ । ଧୂମ ଅଗ୍ନିକୁ ଆବୃତ କରି ରଖିଲା ପରି ଆକାଂକ୍ଷାର ଆବରଣ ତଳେ ଆନନ୍ଦର ଉତ୍ସଟି ଲୁକ୍‌କାୟିତ ହୋଇଥାଏ । ତାକୁ ମନୁଷ୍ୟ ଅନେକ ସମୟରେ ଜାଣିପାରେ ନାହିଁ । ଜାଣି ନପାରି ଗୋଟିଏ ବାହ୍ୟ ଉତ୍ତେଜନାର ବଶବର୍ତ୍ତୀ ହେଲେ ଆକାଂକ୍ଷାର ତୀବ୍ରତା କେବଳ ପ୍ରକଟିତ ହୋଇଥାଏ, ଆକାଂକ୍ଷା ଧୂମର ଅନ୍ଧକାରରେ ସମସ୍ତ ଜୀବନଟା ଅତିବାହିତ ହୋଇଯିବା ଅସମ୍ଭବ ନୁହେଁ । ଯେ ପର୍ଯ୍ୟନ୍ତ ମନୁଷ୍ୟ ଅବାସ୍ତବରେ ମଜ୍ଜି ରହିଥାଏ, ସେ ପର୍ଯ୍ୟନ୍ତ ତାକୁ ଆଲୋକର ସନ୍ଧାନ ମିଳେ ନାହିଁ । ଆକାଂକ୍ଷାର ତୀବ୍ରତାରେ ସେ ଯେତେବେଳେ ମୁହ୍ୟମାନ ହୋଇପଡ଼େ, ସେତେବେଳେ ତାର ଗତିପଥ ବଡ଼ ସଙ୍କୁଚିତ ହୋଇଯାଏ ଓ ସେ ଅବାସ୍ତବରୁ ବାସ୍ତବ ଆଡ଼କୁ ଯାଇପାରେ ନାହିଁ । ଜୀବନର ସାଧାରଣ ଘଟଣାମାନଙ୍କୁ ପ୍ରାୟ କେହି ଲକ୍ଷ୍ୟ କରନ୍ତି ନାହିଁ । ଦିନ ପରେ ଦିନ ଆସି ଚାଲିଯାଏ । କେତେ ସୁଖ-ସ୍ମୃତି ସେଥିସଙ୍ଗେ ଅତୀତରେ ମିଶି ଯାଏ । ଆଜି ଯେଉଁ କମନୀୟ କାନ୍ତି ନୟନ ରଞ୍ଜନ କରି ବାସ୍ତବର ପରିଚୟ ଦେଉଅଛି, ହୁଏତ କାଲିକି ତାହା କେଉଁଆଡ଼େ ଲୁଚି ଯାଇଥିବ । ଖାଲି ରହିଥିବ ଗୋଟାଏ ସାନ୍ତ୍ୱିର ଆଭାସ । ଏହି ଆଭାସଟିକ ମଧ୍ୟ ଦୈନନ୍ଦିନ ଘଟଣା ସମ୍ପାତରେ ବଡ଼ କ୍ଷୀଣ ହୋଇ ଚିରକାଳରେ ତାର ପରିଣତି ରଖି ଦେଇଯିବା ବିଚିତ୍ର ନୁହେଁ । ଅବସନ୍ନ ପ୍ରାଣ ମଧୁରତାକୁ ସ୍ଥାନ ଦିଏ ନାହିଁ । ତେଣୁ ମନୁଷ୍ୟ ଜୀବନସଂଗ୍ରାମରେ ଉତ୍ପୀଡ଼ିତ ହୋଇ ନୈରାଶ୍ୟବାଦୀ ହୋଇପଡ଼େ । ସୁଖର କଳ୍ପନା ତାକୁ ଭଲ ଲାଗେ ନାହିଁ । ସେ ମନେ କରେ, ଜଗତଟା ଅବାସ୍ତବରେ ଗଢ଼ା । ଅବାସ୍ତବରେ ମଜ୍ଜି ରହି ଯେଉଁ ସୁଖର କଳ୍ପନା କରାଯାଏ, ତାହା ମନୁଷ୍ୟର ଅନୁସନ୍ଧେୟ ନୁହେଁ । ଅବଲମ୍ବନ ଲକ୍ଷ୍ୟ ନିରୂପଣରେ ସାହାଯ୍ୟ କରିପାରେ । କିନ୍ତୁ ଅବଲମ୍ବନଟିକୁ ପାଇ ଆତ୍ମ ବିସ୍ମୃତ ହେଲେ ମନୁଷ୍ୟ ଲକ୍ଷ୍ୟ ସ୍ଥଳରେ ପହଞ୍ଚିପାରେ ନାହିଁ । ତେଣୁ ସୁଖସ୍ମୃତି ଓ ସୁଖ କଳ୍ପନା ଲାଗି କେବଳ ଅବାସ୍ତବ ମଧ୍ୟରେ ଆବଦ୍ଧ ରହିବା ଉଚିତ ନୁହେଁ ।

ସୌନ୍ଦର୍ଯ୍ୟବୋଧ ବାସ୍ତବତା ନିରୂପଣରେ ଏକମାତ୍ର ପନ୍ଥା ନୁହେଁ । ଜୀବନର ସଂଖ୍ୟାତୀତ ଘଟଣାବଳୀ ମଧ୍ୟରେ ଏକ ବିରାଟ ଶୁଭ ସଙ୍କେତ ଦେଖିପାରିଲେ, ମନୁଷ୍ୟ ଧନ୍ୟ ହୋଇପାରେ । ଏହା ସମସ୍ତଙ୍କ ଭାଗ୍ୟରେ ଘଟେ ନାହିଁ । ଜଗତର ହିତ ଲାଗି ଯେଉଁମାନଙ୍କର ହୃଦୟ ବ୍ୟାକୁଳ, ସେହିମାନେ ଏହାକୁ ଦେଖିପାରନ୍ତି । ସେହିମାନଙ୍କର ଦୂରଦୃଷ୍ଟି ଅହିତରୁ ହିତର ଉତ୍ପତ୍ତି ପାଇଁ ପ୍ରେରଣା ପାଇଥାଏ । ଗୋଟାଏ ଅସୀମ ଧୈର୍ଯ୍ୟ ସେମାନଙ୍କ ହୃଦୟତନ୍ତ୍ରୀରେ ଶକ୍ତି ସଞ୍ଚାର କରୁଥାଏ । ତାହା ହୋଇ ନ ଥିଲେ ବୁଦ୍ଧ ଚୈତନ୍ୟ ପ୍ରଭୃତି ଧର୍ମ ସଂସ୍ଥାପକମାନେ ଜଗତର ମଙ୍ଗଳ ପାଇଁ ଏତେ ନିର୍ଯ୍ୟାତନା ସହି ପାରି ନ ଥାନ୍ତେ । ଜଗତଟା

ଯଦି କୌଣସି ଆକସ୍ମିକ ହେତୁର ଫଳ ସ୍ୱରୂପ ହୋଇ ନ ଥାନ୍ତା, ତାହାହେଲେ ନଶ୍ୱର ମାନବର କର୍ମ ନିୟନ୍ତ୍ରଣ ପାଇଁ ଯୁଗେ ଯୁଗେ ମହାମାନବମାନେ ଅବତୀର୍ଣ୍ଣ ହୁଅନ୍ତେ ନାହିଁ । ସ୍ଥୂଳ ଦୃଷ୍ଟିରେ ଜଗତଟା ଅବାସ୍ତବ ସଦୃଶ ଅନୁମିତ ହୋଇପାରେ; କିନ୍ତୁ ଯେଉଁ ଶକ୍ତି ପ୍ରଭାବରେ ଏହା ଚାଳିତ, ତାକୁ ଅବାସ୍ତବ ମନେ କରିବା ନୈରାଶ୍ୟବାଦୀ ପକ୍ଷରେ ସମୀଚୀନ ନୁହେଁ ।

ସାଂସାରିକ ଜୀବନରେ ସାମାନ୍ୟ ଘଟଣାମାନଙ୍କ ପର୍ଯ୍ୟାଲୋଚନା କଲେ ମଙ୍ଗଳ ଓ ଅମଙ୍ଗଳର ନିଦର୍ଶନ ମିଳେ । ଜଡ଼ବାଦୀ ଶକ୍ତି ଓ କର୍ମକୁଶଳତା ଉପରେ ମଙ୍ଗଳ ଓ ଅମଙ୍ଗଳର ନିର୍ଣ୍ଣୟ-ପନ୍ଥା ନିର୍ଦ୍ଦେଶ କରିଦେଇ ପାରନ୍ତି; କିନ୍ତୁ ଅନେକ ସମୟରେ ଜୀବନର ସନ୍ଧିସ୍ଥଳ ମନୁଷ୍ୟକୁ ଏପରି ଗୋଟାଏ ପ୍ରତିକୂଳ ଜଟିଳ ଅବସ୍ଥାର ଅଧୀନ କରାଏ ଯେ, ସେ ବାଧ୍ୟ ହୋଇ ନିଜର ପୌରୁଷକୁ ବିଶ୍ୱାସ କରିପାରେ ନାହିଁ । ନେପୋଲିଅନଙ୍କ ପରି ଅଜେୟ ବୀର ଦିନେ ନତମସ୍ତକରେ ନିଜର ପରାଜୟକୁ ସ୍ୱୀକାର କରିଥିଲେ । ବିଶ୍ୱବିଜୟୀ ଆଲେକ୍‌ଜାଣ୍ଡର ଜୀବନର ଶେଷରେ ଗୋଟାଏ ଶୂନ୍ୟତାର ଛବି ଆଙ୍କିଦେଇ ଗଲେ । ଅକ୍ଳାନ୍ତ କର୍ମମୟ ଜୀବନର ପରିଣତି ଯଦି ଏପରି ପ୍ରକଟିତ ହୁଏ, ତାହା ହେଲେ ମନୁଷ୍ୟ ସ୍ୱତଃ ନୈରାଶ୍ୟବାଦୀ ହୋଇପଡ଼ିବ । ମନୁଷ୍ୟ ସଂସାରକୁ କିଛିଦିନ ପାଇଁ ଆସି ଚାଲିଯାଏ । କେବଳ ଆସିବା ଓ ଯିବାକୁ ଧରି ବିଚାର କଲେ ଜୀବନର ଉଦ୍ଦେଶ୍ୟ ଜଣାପଡ଼େ ନାହିଁ । ସାଂସାରିକ ଜୀବନର ଅବାସ୍ତବତା ମରଣର ଶୂନ୍ୟତାରେ ଉଭେଇ ଯାଏ; କିନ୍ତୁ ଈଶ୍ୱର ବିନାଶରେ ଶିବ ଓ ସୁନ୍ଦର ସମ୍ପୃକ୍ତ ରହନ୍ତି ନାହିଁ । ହିନ୍ଦୁର ପୁରାଣ ଶିବ ସଙ୍ଗେ ମହାକାଳର ଏକ ଅବିଚ୍ଛେଦ୍ୟ ସମ୍ବନ୍ଧ ବର୍ଣ୍ଣନା କରିଛି । ଏହି ସମ୍ବନ୍ଧ ଭିତ୍ତିହୀନ କଳ୍ପନା-ପ୍ରସୂତ ପୌରାଣିକ ବର୍ଣ୍ଣନା ନୁହେଁ । ମହାକାଳ ରୂପିଣୀ ନାଗାଧିରାଜ-ନନ୍ଦିନୀ କୈଳାସପତିଙ୍କର ପ୍ରଣୟାକାଂକ୍ଷିଣୀ ହୋଇ ବହୁଯୁଗ ତପସ୍ୟାନିରତା ହୋଇ ରହିଲେ । ତପଃ ଆଚରଣ କରି ପାର୍ବତୀ ଯେଉଁ ଏକାଗ୍ରତା ଲାଭ କଲେ, ତାହା ତାଙ୍କୁ ଶିବଙ୍କ ସଙ୍ଗେ ମିଳନ କରାଇଦେଲା । ମନୁଷ୍ୟର ଶିକ୍ଷା ଓ ମଙ୍ଗଳର ସ୍ୱରୂପ ଅବଧାରଣ ପାଇଁ ପୁରାଣକାର ଏପରି ବର୍ଣ୍ଣନା କରି ପାରନ୍ତି । ମନୁଷ୍ୟ ଯେତେବେଳେ ଦେଖେ, ଈଶ୍ୱରର ବିନାଶରେ ଗୋଟାଏ ମହାଶୂନ୍ୟ ତା ଚକ୍ଷୁ ସମକ୍ଷରେ ଭାସି ଉଠୁଛି, ସେତେବେଳେ ସେ ଭାବେ, ତେବେ କଅଣ ଏ ଜୀବନଟା ଗୋଟାଏ ପ୍ରହେଳିକା ? ଏ ପ୍ରଶ୍ନର ସମାଧାନ ପାଇଁ ତା ଅନ୍ତରଟା ବଡ଼ ବ୍ୟାକୁଳ ହୋଇପଡ଼େ । ସଂସାରର ସହସ୍ର ନିର୍ଯ୍ୟାତନା ମଧ୍ୟରେ ମନୁଷ୍ୟର ସବୁ ଆଶାଭରସା ଯେତେବେଳେ ବିଲୁପ୍ତ ପ୍ରାୟ ଦେଖାଯାଏ, ସେତେବେଳେ ତା ଅନ୍ତରରୁ ଗୋଟାଏ ଆଶ୍ୱାସନା ଆସି ତାକୁ ବଞ୍ଚାଇ ରଖେ । ସଂସାରର ପ୍ରହେଳିକା ଆଉ ତାକୁ ବ୍ୟଥିତ କରିପାରେ ନାହିଁ । ଜରା, ରୋଗ ଓ ଶୋକ ମନୁଷ୍ୟକୁ ଅନେକ ସମୟରେ ଅତି ଅଧୀର କରିଦିଏ; କିନ୍ତୁ ପରିଣାମରେ ସେ ଯେଉଁ ଆଶାର ସ୍ୱପ୍ନଟିକି ଦେଖେ, ତାହା ତାକୁ ବାସ୍ତବତା ଆଡ଼କୁ ଟାଣିନିଏ । ଐଶ୍ୱର୍ଯ୍ୟର ମୋହ ଆଉ ପ୍ରହେଳିକାର ଚିତ୍ର ପ୍ରକଟିତ କରିପାରେ ନାହିଁ । ଦିନେ ରାଜକୁମାର ସିଦ୍ଧାର୍ଥଙ୍କ ଜୀବନରେ ମନୁଷ୍ୟର ଅବଶ୍ୟମ୍ଭାବୀ ଜରା, ରୋଗ ଓ ଶୋକର ଆକ୍ରମଣ ଗୋଟାଏ ମହାପରିବର୍ତ୍ତନ ଆଣିଥିଲା । ଜଗତର ପ୍ରହେଳିକାକୁ ଦୂର କରି ମାନବଧର୍ମର ଚରମ ବିକାଶ ଦେଖିବା ପାଇଁ ସେ ରାଜସିଂହାସନ ତ୍ୟାଗ କରି ଚାଲିଗଲେ । ସିଦ୍ଧାର୍ଥଙ୍କର ବ୍ୟଥିତ ହୃଦୟର ସଂକଳ୍ପ ଜଗତରେ ଯେଉଁ ଧର୍ମ ବିପ୍ଳବ ଆଣିଥିଲା, ତାହା ଆଜି ସୁଦ୍ଧା ମନୁଷ୍ୟ ସମାଜରୁ ଅନ୍ତର୍ହିତ ହୋଇନାହିଁ । ଅହିତର ନିରାକରଣ ପାଇଁ ସେ ଯେଉଁ ପନ୍ଥା ଉଦ୍‌ଘାଟନ କରି ଦେଇଗଲେ, ତାହା ସମସ୍ତଙ୍କ ପକ୍ଷରେ ଗ୍ରହଣୀୟ ହୋଇ ନ ପାରେ, କିନ୍ତୁ ତାଙ୍କ ପ୍ରଚାରିତ ବାଣୀରେ ମଙ୍ଗଳର ଯେଉଁ ନିଦାନ ନିହିତ ଅଛି, ତାହା କେହି ଅସ୍ୱୀକାର କରିପାରିବେ ନାହିଁ । ବୁଦ୍ଧଦେବ ଅବାସ୍ତବ ରାଜ୍ୟରୁ ରେଖାଟିଏ ଟାଣିନେଇ ଶୂନ୍ୟରେ ମିଳାଇ ଦେଇଅଛନ୍ତି । ଶୂନ୍ୟତାର ବନ୍ଧନରୁ ମୁକ୍ତ ପାଇବା ପାଇଁ କୌଣସି ସଂଯୋଜନା ଆବଶ୍ୟକ ହୁଏ ନାହିଁ । ଜୀବନର ଆକାଂକ୍ଷା ସବୁବେଳେ ମୁକ୍ତିରେ ପର୍ଯ୍ୟବସିତ ହୋଇ ରହେନାହିଁ । ତେଣୁ ହୃଦୟର ପ୍ରେରଣା ମରଣରେ ଶୂନ୍ୟତାକୁ ଭେଦ କରି ଗୋଟିଏ ବାସ୍ତବ ଅବଲମ୍ବନ ଲୋଡ଼େ । ଯଦି ସେପରି କିଛି ଆଧାର ନ ଥାନ୍ତା, ତାହା ହେଲେ ମନୁଷ୍ୟ ସେ ଦିଗରେ ଅଭିମୁଖୀ ହୁଅନ୍ତା ନାହିଁ । ବାୟୁମଣ୍ଡଳରେ ଶବ୍ଦର ପ୍ରସାର ଓ ଅଭିବ୍ୟକ୍ତି ହେଲାପରି ହୃଦୟର ପ୍ରେରଣା ମୁକ୍ତିରେ ବାସ୍ତବତାର ନିଦର୍ଶନ ପାଏ । ଏହା କେବଳ ମନୁଷ୍ୟର ପ୍ରଗାଢ଼ ଅନୁଭୂତି ଉପରେ ନିର୍ଭର କରେ । ଶୂନ୍ୟତାର ସେତୁରେ ବିଶ୍ୱପ୍ରକୃତିର ଉପାଦାନ ସଂଶ୍ଳିଷ୍ଟ ଥାଏ । ଭାବୁକର ନିବିଷ୍ଟ ଚିତ୍ତ ତାକୁ ଅନୁସରଣ କରି ଅବାସ୍ତବରେ ବାସ୍ତବର ସନ୍ଧାନ ପାଏ । ସୂକ୍ଷ୍ମ ଅନ୍ତର୍ଦୃଷ୍ଟି ନ ଥିଲେ ମନୁଷ୍ୟ ଏ ଦିଗରେ ଅଗ୍ରସର ହୋଇପାରେ ନାହିଁ ।

ସୃଷ୍ଟି ଓ ପ୍ରକୃତିର ରହସ୍ୟ ଭେଦ କରିବା ପାଇଁ ମନୁଷ୍ୟର ଶକ୍ତି ଅଛି । ଶକ୍ତି-ନିୟନ୍ତ୍ରଣ କେବଳ ପାର୍ଥିବ-ମାର୍ଗାବଲମ୍ବୀ ହେଲେ ମନୁଷ୍ୟ ଜଗତର ବେଷ୍ଟନୀ ମଧ୍ୟରେ ଆବଦ୍ଧ ହୁଏ । ସେ ବାସ୍ତବର ପରିକଳ୍ପନା କରିପାରେ ନାହିଁ । ଜାଗତିକ କ୍ଷୁଦ୍ର କର୍ମ-ସମସ୍ୟା ଆଲୋଚନାକଲେ ଏକ ତୁଳନାତ୍ମକ ବୁଦ୍ଧିର ବିକାଶ ଘଟେ ଏବଂ ତଦ୍ଦ୍ୱାରା ମନୁଷ୍ୟ ଯେଉଁ ସୋପାନରେ ଅଧିରୂଢ଼ ହୁଏ, ସେଥିରେ ସେ ରହସ୍ୟର ଦ୍ୱାର ଉନ୍ମୁକ୍ତ କରିବାକୁ କଥଞ୍ଚିତ୍ ସମର୍ଥ ହୋଇଥାଏ । ସମସ୍ତ ସମୟରେ ପାର୍ଥିବ ଉନ୍ନତିର ଚରମ ସୀମାରେ ଉପନୀତ ହୋଇ ସୁଦ୍ଧା ମନୁଷ୍ୟର ଉପଯୁକ୍ତ ବିକାଶ ହୁଏ ନାହିଁ । ଜଗତର ଯାବତୀୟ ଘଟନାର କାରଣ ଅଜ୍ଞାତ ରହୁ ନ ଥିଲେ, ରହସ୍ୟ ଭେଦ କରିବା ପାଇଁ କୌଣସି ଆତ୍ମାସାଧୀନ ହେବାକୁ ପଡ଼ନ୍ତା ନାହିଁ । ସତ୍ୟ ସୌନ୍ଦର୍ଯ୍ୟ ଓ ମଙ୍ଗଳର ମୂଳାଧାର ରହସ୍ୟରେ ଆଚ୍ଛନ୍ନ ହୋଇ ରହିବାରେ କିଛି କିଛି ସାର୍ଥକତା ନାହିଁ ? ପାର୍ଥିବ ବେଷ୍ଟନୀଟି ଏପରି ଭାବରେ ଗଢ଼ା ଯେ, ମନୁଷ୍ୟ ଏ ଦିଗରେ ଦୃଷ୍ଟି ନ ଦେଲେ ସୁଦ୍ଧା ତା ଜୀବନ କାଳ ଅତିବାହିତ ହୋଇଯାଏ । ସଙ୍ଖ୍ୟାତୀତ ମାନବ ଜୀବନର ବିଶେଷତ୍ୱ ଏଥିରେ ସମ୍ପୃକ୍ତ ରହେ ନାହିଁ । ଜୀବନକୁ ଯନ୍ତ୍ରବତ୍ ଚାଳିତ କରିବାରେ ଯେଉଁମାନେ ପକ୍ଷପାତୀ, ସେମାନଙ୍କର ଦୃଷ୍ଟି ସୂକ୍ଷ୍ମ କଳ୍ପନା ରାଜ୍ୟରେ ବିଚରଣ କରି ରହସ୍ୟ ଭେଦର ସାର୍ଥକତା ପାଇଁ ଆକୃଷ୍ଟ ହୁଏ ନାହିଁ । ଅଧିକନ୍ତୁ ଦୈନନ୍ଦିନ ଘଟଣାମାନଙ୍କ ପର୍ଯ୍ୟାୟରେ ମନୁଷ୍ୟର ଅବକାଶ ଅତ୍ୟଳ୍ପ । ସାଧାରଣ ମାନବୀୟ ଆକାଂକ୍ଷାରେ କେବଳ ପାର୍ଥିବ ବିଷୟ ଜଡ଼ିତ ହୋଇ ରହେ । ବାସ୍ତବ ଓ ଅବାସ୍ତବର ମୂଳାଧାର ନିରୂପଣ କରି ଗୋଟିଏ ସହଜ ଓ ସ୍ୱତନ୍ତ୍ର ପନ୍ଥା-ନିର୍ଦ୍ଧାରଣ ସମସ୍ତଙ୍କ ପକ୍ଷରେ ସମ୍ଭବ ହୁଏ ନାହିଁ । ସାମୟିକ ମଧୁର ଅଜ୍ଞାତ ଭାବଟିଏ ମନୁଷ୍ୟ ହୃଦୟରେ ସ୍ୱତଃ ଉନ୍ମେଷିତ ହେଲେ ସୁଦ୍ଧା ସତ୍ୟ, ସୌନ୍ଦର୍ଯ୍ୟ ଓ ମଙ୍ଗଳର ଅଭିବ୍ୟକ୍ତିକୁ ସେ ଜଗତର ବେଷ୍ଟନୀ ମଧ୍ୟରେ ସହଜରେ ଦେଖିପାରେ ନାହିଁ । ସାଧାରଣ ବୁଦ୍ଧିର ଅଳ୍ପତା, ସମୟ ଓ ଅବଲମ୍ବନ ବିଶେଷର ସହାୟତାରେ ପ୍ରସାର ଲାଭ କରିଥାଏ । ଏହାକୁ ଲକ୍ଷ୍ୟ ରଖିଲେ ରହସ୍ୟ ଅନ୍ଧକାରର ସାର୍ଥକତା ପ୍ରମାଣିତ ହୋଇଥାଏ । ଜନ୍ମାନ୍ତରବାଦ ଏହାକୁ କୌଣସି ହେତୁର ଅଧୀନ ବୋଲି ଦେଖାଇପାରେ । ଜନ୍ମାନ୍ତର ବାଦ କଥା ଦୂରେ ଥାଉ, ସାଧାରଣ ବୁଦ୍ଧିର ପରାକାଷ୍ଠା ଦ୍ୱାରା ବଡ଼ ଜଗତର ପ୍ରହେଳିକା ତନ୍ନ ତନ୍ନ ହୋଇ ପରୀକ୍ଷିତ ହେଲେ ଯେଉଁ ଅନୁଭୂତି ଆସେ, ତାହା ମନୁଷ୍ୟକୁ ଉଚ୍ଚତମ କୋଠରୀରେ ଅବସ୍ଥାପିତ କରେ । ଏପରି ଉନ୍ନତ ସୋପାନର ଅଧିକାରୀ ଅବାସ୍ତବର ପରିଣତି ବାସ୍ତବରେ ଦେଖିପାରେ । ଗତିଶୀଳର ବିଭିନ୍ନ ଅବସ୍ଥା ଗୋଟିକ ପରେ ଗୋଟିଏ ପରିବର୍ତ୍ତନ ଆଣେ । ପରିବର୍ତ୍ତନର ପର୍ଯ୍ୟାୟରେ ବିକାଶ ଯେତେବେଳେ ସୁସ୍ପଷ୍ଟ ହୋଇପଡ଼େ, ସେତେବେଳେ ଜ୍ଞାନର ପରିପକ୍ୱତା ଜଣାପଡ଼େ । ଅଧିକାଂଶ ମନୁଷ୍ୟ ପରିବର୍ତ୍ତନ ସଙ୍ଗେ ସ୍ୱରୂପର ସ୍ଥିତିଶୀଳତା ଦେଖନ୍ତି ନାହିଁ । ଯୌବନର ଉନ୍ମାଦନା ଚାଲିଯାଏ, କିନ୍ତୁ ପରିବର୍ତ୍ତନରେ ଆସେ ଗୋଟାଏ ବିଷୟ-ମୋହର ଜାଲ । ସମୟ ଓ ଅବସ୍ଥାର ଦାସ ମନୁଷ୍ୟର ନିଜତ୍ୱ ଏପରି ଆବୃତ ହୋଇ ରହିଲେ ଲକ୍ଷ୍ୟ ଅନିର୍ଦ୍ଦିଷ୍ଟ ରହିଯାଏ । ସାଧାରଣ ଦୃଷ୍ଟାନ୍ତଟିଏ ଏ ବିଷୟର ସରଳତା ଦେଖାଇପାରେ । ପ୍ରତ୍ୟେକ ମନୁଷ୍ୟ କର୍ମକ୍ଷେତ୍ରରେ ଗୋଟିଏ ଉଦ୍ଦେଶ୍ୟ ଘେନି ଚାଳିତ ହୁଏ । ଜଗତରେ ସେ ଯାହା କରିଯାଏ, ତହିଁର ସ୍ଥାୟିତ୍ୱ କେତେ ଦିନ ? ଜାଗତିକ କର୍ମର ଅସାରତା ହୃଦୟଙ୍ଗମ କରି ଅନେକ ନୈରାଶ୍ୟବାଦୀ ହୋଇ ପଡ଼ନ୍ତି । ହୃଦୟକୁ ଅବାସ୍ତବର ଚିନ୍ତା ପୂର୍ଣ୍ଣମାତ୍ରାରେ ଗ୍ରାସ କଲେ ଚକ୍ଷୁ ସମକ୍ଷରେ କେବଳ ଏକ ମହାଶୂନ୍ୟତା ଭାସି ଉଠେ । ମନୁଷ୍ୟ ନିଶ୍ଚେଷ୍ଟ ହୁଏ । ଜୀବନର ସାର୍ଥକତା ସଙ୍ଗେ ସେ ବାସ୍ତବତାକୁ ଭୁଲିଯାଏ । ତରଙ୍ଗର ବ୍ୟାପ୍ତି ପ୍ରତି ହୃଦୟର ପ୍ରେରଣା ଅବାସ୍ତବ ନୁହେଁ । ଅବାସ୍ତବକୁ ଅବଲମ୍ବନ କରି ମନୁଷ୍ୟ ବାସ୍ତବ ଆଡ଼କୁ କ୍ରମଶଃ ଧାବିତ ହେଉ ନ ଥିଲେ ହୃଦୟ ଏତେ ଘାତ ପ୍ରତିଘାତର ଲୀଳାଭୂମି ହୋଇ ନ ଥାନ୍ତା । ମନୁଷ୍ୟର ସାମାନ୍ୟ କ୍ରୀଡ଼ା କୌତୁକରେ ବାସ୍ତବତାର ଯେଉଁ ବ୍ୟଞ୍ଜନା ଅଛି, ତାହା ସମସ୍ତଙ୍କ ଦୃଷ୍ଟିରେ ଧରାପଡ଼େ ନାହିଁ । ବୈଦ୍ୟୁତିକ ଶକ୍ତିଶାଳାରୁ ଯେପରି ଶକ୍ତି ସଞ୍ଚାଳିତ ହୋଇ ମନୁଷ୍ୟର ବିବିଧ କ୍ରିୟା ସମ୍ପାଦନରେ ସହାୟତା କଲେ ସୁଦ୍ଧା ସେ ସେହି ଶକ୍ତିର ମୂଳଧାରାକୁ ଅନେକ ସମୟରେ ଅବଧାରଣ କରିପାରେ ନାହିଁ; ସେହିପରି ରହସ୍ୟକୁ ଭେଦ ନ କରି ଜାଗତିକ କାର୍ଯ୍ୟ ସାଧନ କଲେ କୌଣସି କ୍ଷତି ଘଟେ ନାହିଁ । ବାସ୍ତବତା ଓ ସୃଷ୍ଟି ରହସ୍ୟ ପରସ୍ପର ସମ୍ପୃକ୍ତ । ଗୋଟିକର ଚିନ୍ତା ପ୍ରକାଶରେ ଅନ୍ୟଟି ପ୍ରତିବିମ୍ବିତ ହୁଏ । ଚଳଚ୍ଚିତ୍ରରେ ଆଲୋକ ଓ ଅନ୍ଧକାରର ସମ୍ମିଶ୍ରଣ ଯେପରି ସୌନ୍ଦର୍ଯ୍ୟର ଗୋଟାଏ ଆଭା ମୁହୂର୍ତ୍ତିକ ପାଇଁ ନୟନର ତୃପ୍ତି ବିଧାନ କରି ହୃଦୟରେ ଭାବାନ୍ତର ଆଣେ, ସେହିପରି ସଂସାରର ଅବାସ୍ତବ ଘଟଣାରାଶି ପର୍ଯ୍ୟାୟରେ ଯେଉଁ ବିକାଶର ପ୍ରେରଣା ମନୁଷ୍ୟ ଅନୁଭବ କରେ, ତାହା ତାକୁ ସତ୍ୟ ଓ ସୌନ୍ଦର୍ଯ୍ୟର ମାର୍ଗାବଲମ୍ବନ କରିବା ପାଇଁ ଯଥେଷ୍ଟ ସାହାଯ୍ୟ କରେ । ପ୍ରକୃତରେ ପାର୍ଥିବ ବସ୍ତୁମାନଙ୍କର କୌଣସି ଅନୁପଯୋଗୀତା ନାହିଁ । ଦ୍ରଷ୍ଟାର ଶୁଭେଚ୍ଛା ଉପରେ ସବୁ ନିର୍ଭର କରେ ।

ଜୀବନ ଓ ମରଣ, ଆଶା ଓ ନୈରାଶ୍ୟ, ସୁଖ ଓ ଦୁଃଖର ସନ୍ଧି ସ୍ଥଳରେ ଶୂନ୍ୟତାର ସ୍ପର୍ଶ ମନୁଷ୍ୟକୁ ଆତ୍ମପରୀକ୍ଷା ପାଇଁ ଅବସର ଦିଏ । ଆତ୍ମବଳ କ୍ଷୀଣ ଥିଲେ, ସେ ଯେଉଁ ସ୍ରୋତରେ ଭାସି ଆସୁଥାଏ; ତାହା ହଠାତ୍ ଭିନ୍ନାକାର ଅବଲମ୍ବନ କଲେ କିମ୍ବା ପରିବର୍ତ୍ତିତ ହୋଇଗଲେ ଜୀବନର ବ୍ୟବଚ୍ଛେଦ-ଗତି ତାକୁ ଅତିମାତ୍ରାରେ ବିଭ୍ରାନ୍ତ କରେ । ଏହି ବିଭ୍ରାନ୍ତି ଯୋଗୁ ଜୀବନର ଲକ୍ଷ୍ୟ ସ୍ଥିର ରହିପାରେ ନାହିଁ । କାମନାର କୁସୁମ କେତେ ରଙ୍ଗରେ ଫୁଟେ; କେତେ ଆକର୍ଷଣରେ ମନୁଷ୍ୟର ମନ ଚଞ୍ଚଳ ହୋଇପଡ଼େ; କିନ୍ତୁ ବାସ୍ତବତାର ନିଦର୍ଶନ ବଡ଼ ଅଲକ୍ଷିତରେ ରହିଯାଏ । ଆଜି ପୃଥିବୀର ସଭ୍ୟତମ ଜାତିମାନେ ଯେ ଆଦର୍ଶରେ ଅନୁପ୍ରାଣିତ ଓ ସେମାନେ ଯେଉଁ ମାର୍ଗରେ ଗତି କରୁଅଛନ୍ତି, ସେଥିରେ କେବଳ ପ୍ରବଳ ଶକ୍ତି ପରୀକ୍ଷାର ପରିଚୟ ମିଳିବ । ଶକ୍ତିର ସଂଘର୍ଷରେ ପ୍ରବଳ ଓ ଦୁର୍ବଳ ମଧ୍ୟରେ ଭେଦ ସୂଚନା ଓ ସାମୟିକ ପାର୍ଥିବ ଉନ୍ନତିର ବିଧାନ ପନ୍ଥା ଛଡ଼ା ଜୀବନର ବାସ୍ତବତା ନିରୂପଣ ପାଇଁ ପ୍ରଶସ୍ତ ସ୍ଥାନ ନାହିଁ । ଶକ୍ତିମାନ ଜୀବନର ଅନ୍ଧକାରରେ ମୁହ୍ୟମାନ ହୋଇ ନ ପାରେ । କର୍ମକ୍ଷେତ୍ରରେ ସେ ଯେଉଁ ଆଲୋକର ବର୍ତ୍ତିକା ଜାଳିଦିଏ; ସେଥିରେ ଅନ୍ୟମାନଙ୍କର କର୍ମପଥ ସୁସ୍ପଷ୍ଟ ଜଣାଯାଇପାରେ; କିନ୍ତୁ ବ୍ୟକ୍ତିଗତ ଚରିତ୍ରରେ ଯେ ବିଭିନ୍ନ ଭାବ ପରିଲକ୍ଷିତ ହୁଏ, ତହିଁର ଗୋଟିଏ ସମନ୍ୱୟ ଆଣି ଅନନ୍ତ ଜୀବନ ଉପରେ ରେଖାପାତ କରିବା ଅତି କଠିନ । ଶକ୍ତି ସଂରକ୍ଷଣ ଓ ଶକ୍ତିଚାଳନା ପରସ୍ପର ନିର୍ଭର ସାପେକ୍ଷ ହେଲେ ସୁଦ୍ଧା ଜଗତର ବେଷ୍ଟନୀ ବାହାରେ ସେମାନଙ୍କର ସଂପର୍କ ବିକ୍ଷିପ୍ତ ହୋଇଯାଏ । ଶୂନ୍ୟରେ ବାୟୁତରଙ୍ଗ ବେତାର ଯନ୍ତ୍ର ସାହାଯ୍ୟରେ ସମ୍ବାଦ ଆଦାନପ୍ରଦାନ କରୁଛି । ଏ ଯନ୍ତ୍ର ତା ନିର୍ମାତାର ଯଥେଷ୍ଟ ଶକ୍ତିମତ୍ତାର ପରିଚୟ ଦେଉଅଛି; କିନ୍ତୁ ସମଗ୍ର ମାନବଜାତିର ହୃଦୟତନ୍ତ୍ରୀରେ ସମରାଗିଣୀଟିଏ ତୋଳି ଏକ ମହତ୍ତ୍ୱ ସନ୍ଦେଶ ଦ୍ୱାରା ସେମାନଙ୍କୁ ଉଦ୍‌ବୁଦ୍ଧ କରିବା ପାଇଁ ଆଜି ପର୍ଯ୍ୟନ୍ତ କୌଣସି ଅଭିନବ ଶକ୍ତିଶାଳୀ ମନୀଷୀ ପକ୍ଷରେ ସମ୍ଭବ ହୋଇପାରି ନାହିଁ । ତାହା ହୋଇଥିଲେ ବୁଦ୍ଧ, ମହମ୍ମଦ, ଯୀଶୁ ପ୍ରଭୃତି ଯୁଗାବତାରମାନେ ବିଭିନ୍ନ ଧର୍ମ ପ୍ରଚାର କରି ନଥାନ୍ତେ । ମାନବ ଜୀବନର କ୍ଷୁଧା ବଡ଼ ଭୀଷଣ ଓ ବିଭିନ୍ନ । ଏହି କ୍ଷୁଧା ଜଡ଼ବିଜ୍ଞାନ ବଳରେ ଦୃପ୍ତ ଐଶ୍ୱର୍ଯ୍ୟଶାଳୀ ପାଶ୍ଚାତ୍ୟ ଜାତି ସମ୍ମୁଖରେ ଆଜି ଗୋଟିଏ ମହାବିଭୀଷିକା ଦେଖାଇଦେଲଣି । ମନେହୁଏ, ଏହାରି ଧାରାରେ ଯେଉଁ ଶୂନ୍ୟତା ଆସିବ, ସେଥିରେ ସେମାନଙ୍କର ଆତ୍ମବଳ ପରୀକ୍ଷିତ ହେବ । ରାଜ୍ୟଲୋଭ ଓ ଧନଲୋଭର ପୂର୍ତ୍ତିପାଇଁ ଯେ ଶକ୍ତି ବ୍ୟୟିତ ହୁଏ, ତାହା କଅଣ ମନୁଷ୍ୟର ପ୍ରକୃତ ଆବରଣ ଉନ୍ମୁକ୍ତ କରେ ? ମନୁଷ୍ୟ ଅନ୍ତରରେ ଯେ ମହାଶୂନ୍ୟର ସ୍ରଷ୍ଟା ଆତ୍ମଗୋପନ କରିଅଛି, ତାକୁ ଜଡ଼ ବିଜ୍ଞାନର ସମସ୍ତ ଶକ୍ତି ପ୍ରକଟିତ କରିପାରିବ ନାହିଁ । ମନୁଷ୍ୟର ଅନ୍ତର୍ନିହିତ ପ୍ରେରଣା ବିଭିନ୍ନ ହେଲେ ସୁଦ୍ଧା ଏକ ମୂଳାଧାରରୁ ଏହାର ଭିନ୍ନତା ଅନୁଭୂତ ହୋଇପାରେ ।

ସୌନ୍ଦର୍ଯ୍ୟ ଓ ମଙ୍ଗଳର ଅନୁଭୂତି ମନୁଷ୍ୟର ଆଜନ୍ମ ଚେଷ୍ଟା । ଶିଶୁର ସାମାନ୍ୟ ପୁତୁଳାଟିଏ ପାଇବା ପାଇଁ ବ୍ୟଗ୍ରତା, ତରୁଣୀର କାମିନୀ ଓ କାଞ୍ଚନରେ ଯୌବନ କ୍ଷୁଧା ମେଣ୍ଟାଇବାର ପ୍ରଚେଷ୍ଟା ସମାନ ହୋଇ ନ ପାରେ; କିନ୍ତୁ ସେମାନଙ୍କ ଆକର୍ଷଣର ମୂଳାଧାର ଏକ । ଜଗତରେ କେହି ଅମଙ୍ଗଳ ଓ ଅସୁନ୍ଦରର ଗ୍ରହଣ ଲାଳସୀ ହୁଏ ନାହିଁ । ଦୃଷ୍ଟି ବୈଷମ୍ୟରେ ଯେ ପାର୍ଥକ୍ୟ ଦେଖାଏ, ତାହା ମଙ୍ଗଳ ଓ ସୌନ୍ଦର୍ଯ୍ୟର ବିରୋଧୀ ନୁହେଁ । ହୃଦୟର ପ୍ରେରଣା ପାର୍ଥିବ ଅବଲମ୍ବନ ସାହାଯ୍ୟରେ ସୌନ୍ଦର୍ଯ୍ୟ ଓ ମଙ୍ଗଳର ଅନୁଭୂତି ଆଣେ, ତାହା ବାସ୍ତବତା ମାନଦଣ୍ଡରେ ଜୀବନର ସାର୍ଥକତା ପ୍ରମାଣ କରେ । ଜଗତରେ ରୂପ ଐଶ୍ୱର୍ଯ୍ୟର ମୋହ ଯେ ପର୍ଯ୍ୟନ୍ତ ସତ୍ୟକୁ ଆଚ୍ଛନ୍ନ କରି ରଖେ, ସେ ପର୍ଯ୍ୟନ୍ତ ମନୁଷ୍ୟ ଗୋଟିଏ ଛାୟା ଅନୁସରଣ କରୁଥାଏ । ଏହି ଛାୟା ମଙ୍ଗଳ ଓ ସୌନ୍ଦର୍ଯ୍ୟର ହେତୁଭୂତ । ତେଣୁ ଜଗତ କେବଳ ମାୟାପ୍ରପଞ୍ଚର ଅଧିଷ୍ଠାନ ଭୂମି ନୁହେଁ । ଛାୟା ଓ କାୟାପରି ବାସ୍ତବ ଓ ଅବାସ୍ତବର ସମ୍ପର୍କ । ଛାୟାକୁ ଅନୁସରଣ କରିବା ମାନବ ଜୀବନର ଲକ୍ଷ୍ୟ ନୁହେଁ । ସତ୍ୟ, ଶିବ ଓ ସୁନ୍ଦରକୁ ପାଇଲେ ମନୁଷ୍ୟର ପ୍ରତିଷ୍ଠା ଆସେ । ସତ୍ୟ ବା ବାସ୍ତବତା ଅଭାବରେ ଜୀବନର ଗତି କିଛିକାଳ ପାଇଁ ଉନ୍ମୁକ୍ତ ଦେଖାଯାଇ ପାରେ; କିନ୍ତୁ ମନୁଷ୍ୟର ଚରମ ପରିଣତି ସେହି ମହାଶୂନ୍ୟରେ ବାସ୍ତବତାର ଅନୁସରଣ । ଜଗତ୍ କିମ୍ବା ଜୀବନ କିଛି ତୁଚ୍ଛ ନୁହେଁ । ସୌନ୍ଦର୍ଯ୍ୟ ଓ ମଙ୍ଗଳର ଅସ୍ଥାୟୀ ଆକର୍ଷଣ ପ୍ରଭାବରେ ମନୁଷ୍ୟର ଅନ୍ତର ଯେଉଁ ଘାତ ପ୍ରତିଘାତ ଅନୁଭବ କରେ, ସେମାନଙ୍କୁ ପରୀକ୍ଷା କରିବା ପାଇଁ ବାସ୍ତବତାର ପ୍ରେରଣା ତାର ଅଛି । ଏହି ପ୍ରେରଣା ମାନଦଣ୍ଡ ସ୍ୱରୂପ ଜୀବନର ଉପାଦେୟତା ପ୍ରମାଣ କରେ ।

# କଳା ଓ ପ୍ରକୃତି

ତିନୋଟି ତତ୍ତ୍ୱର ସହଯୋଗରେ ସୃଷ୍ଟି । ପ୍ରକୃତି, ପରମାତ୍ମା, ଜୀବ—ଏହି ତିନି ତତ୍ତ୍ୱର ସମାବେଶ ଯେଉଁଠାରେ ନାହିଁ, ସୃଷ୍ଟି ମଧ୍ୟ ସେଠାରେ ନାହିଁ । କାହିଁକି ନା ଦ୍ୱନ୍ଦ୍ୱରୁ ସୃଷ୍ଟି । ଯେଉଁଠାରେ ଦ୍ୱନ୍ଦ୍ୱ ନାହିଁ, ସେଠାରେ ସୃଷ୍ଟି ମଧ୍ୟ ନାହିଁ । ସୃଷ୍ଟିର ଶେଷ ପରିଣତି ପ୍ରଳୟ । ଏହି ପ୍ରଳୟହିଁ ସୃଷ୍ଟିର ଶାନ୍ତ ଅବସ୍ଥା । ସୃଷ୍ଟିର ଆରମ୍ଭଟା ଦ୍ୱନ୍ଦ୍ୱାବସ୍ଥା ଅର୍ଥାତ୍ ସୃଷ୍ଟିର ମୂଳ କାରଣ ଦ୍ୱନ୍ଦ୍ୱ । ଯେଉଁ ମୁହୂର୍ତ୍ତରେ ମନୁଷ୍ୟର ଶାରୀରିକ, ମାନସିକ ଆଦି ସକଳ ପ୍ରକାର ଦ୍ୱନ୍ଦ୍ୱର ଅବସାନ ଘଟେ, ସେହି ମୁହୂର୍ତ୍ତରେ ମନୁଷ୍ୟ ଶରୀରର ମଧ୍ୟ ଅବସାନ ଘଟେ । ସେତେବେଳେ କେବଳ ମନୁଷ୍ୟ ହୁଏ ନିର୍ଦ୍ୱନ୍ଦ୍ୱ, ଅର୍ଥାତ୍ ସେତେବେଳେ ସେହି ନିର୍ଲୋଭତା, ଇଚ୍ଛା ଅନିଚ୍ଛା କିଛି ନ ଥାଏ ନା । ଅତଏବ, ଏହା ଅନିବାର୍ଯ୍ୟ ଯେ ଯେତେବେଳ ପର୍ଯ୍ୟନ୍ତ ମନୁଷ୍ୟ ସଂସାରର ଯାବତୀୟ ବିକର୍ମରେ ଲିପ୍ତ ରହୁଛି, ସେ କର୍ମ ସାତ୍ତ୍ୱିକ, ରାଜସିକ ବା ତାମସିକ ହେଉ ନା କାହିଁକି, ଦ୍ୱନ୍ଦ୍ୱ ତାର ମଧ୍ୟରେ ଲାଗି ରହୁଛି । ଯେତେବେଳେ ସ୍ତ୍ରୀ ପୁରୁଷ ମଧ୍ୟରେ ସୃଷ୍ଟି କରିବାର ଇଚ୍ଛା ହୁଏ, ସେତେବେଳେ ସେମାନଙ୍କ ମଧ୍ୟରେ ଦ୍ୱନ୍ଦ୍ୱର ଆବିର୍ଭାବ ହୁଏ । ସ୍ତ୍ରୀ ପୁରୁଷର ଏହି ମାନସିକ ଦ୍ୱନ୍ଦ୍ୱହିଁ ପ୍ରେମ । ଆଉ ଶାରୀରିକ ଦ୍ୱନ୍ଦ୍ୱ ହିଁ କାମ । ଏହି କାମ ଆଉ ପ୍ରେମର ଚରମ ପରିଣତି ସନ୍ତାନ ଅର୍ଥାତ୍ ସୃଷ୍ଟି । ସେଥିପାଇଁ ଭାରତୀୟ ଆର୍ଯ୍ୟଗଣ ବିଶ୍ୱର ଅଶାନ୍ତ ମାନବକୁ ବାରମ୍ବାର ଉପଦେଶ ଦେଇ ଆସିଛନ୍ତି ଯେ ସାଂସାରିକ ସକଳ ପ୍ରକାର ଦ୍ୱନ୍ଦ୍ୱରୁ ମୁକ୍ତ ହୁଅ—ମୋକ୍ଷ ଲାଭ କରିବ—ଶାନ୍ତି ଲାଭ କରିବ, ଅର୍ଥାତ୍ ତୁମର ଆଉ ସୃଷ୍ଟି ହେବ ନାହିଁ—ସୃଷ୍ଟି ହେଲେ ସିନା ତୁମକୁ ଦୁଃଖ ଭୋଗ କରିବାକୁ ପଡ଼ିବ ।

ଏହି ଦ୍ୱନ୍ଦ୍ୱ ସକାଶେ ବିପରୀତ ସ୍ୱଭାବ ସମ୍ପନ୍ନ ବିଭିନ୍ନ ତତ୍ତ୍ୱ ଆବଶ୍ୟକ । ତା ନ ହେଲେ ସଂଘର୍ଷ, ଆକର୍ଷଣ, ବିକର୍ଷଣ ଅସମ୍ଭବ । ସମାନ ଗୁଣ ସମ୍ପନ୍ନ ତତ୍ତ୍ୱମାନଙ୍କ ମଧ୍ୟରେ ସଂଘର୍ଷ ହୁଏ ନାହିଁ । ସ୍ତ୍ରୀର ଶରୀର ରଚନା ଆଉ ମନୋଭାବ ପୁରୁଷ ଠାରୁ ଭିନ୍ନ ବୋଲି ସେମାନଙ୍କ ମଧ୍ୟରେ ଦ୍ୱନ୍ଦ୍ୱ ପ୍ରକାଶ ପାଏ । ପ୍ରକୃତି, ପରମାତ୍ମା, ଜୀବ ବିଭିନ୍ନ ଗୁଣ ବିଶିଷ୍ଟ ତତ୍ତ୍ୱ । ପ୍ରକୃତି କେବଳ ସତ୍, ଅର୍ଥାତ୍ ଏହାର କେବଳ ଅସ୍ତିତ୍ୱ ଅଛି । ଏହାଛଡ଼ା ଏହାର ଆଉ କୌଣସି ଗୁଣ ନାହିଁ । ଜୀବ, ଏହା ସତ୍ ଏବଂ ଚିତ୍ ଅର୍ଥାତ୍ ଏହାର ଅସ୍ତିତ୍ୱ ରହିଛି । ଆଉ ଏହା ଚେତନ ଶକ୍ତି ବିଶିଷ୍ଟ ଗୋଟାଏ ତତ୍ତ୍ୱ । ଏହି ଦୁଇଗୁଣକୁ ବାଦ୍ ଦେଲେ ଏହାର ଆଉ କୌଣସି ଗୁଣ ନାହିଁ । କିନ୍ତୁ ପରମାତ୍ମା ସତ୍, ଚିତ୍ ଏବଂ ଆନନ୍ଦ; ଅର୍ଥାତ୍ ଏହି ତତ୍ତ୍ୱର ଅସ୍ତିତ୍ୱ ରହିଛି, ଏହା ଚେତନ ଶକ୍ତିସମ୍ପନ୍ନ ଗୋଟାଏ ତତ୍ତ୍ୱ, ଏହାଠାରେ ଆନନ୍ଦର ଅସ୍ତିତ୍ୱ ମଧ୍ୟ ବର୍ତ୍ତମାନ । ଏହି ତତ୍ତ୍ୱ ପୂର୍ଣ୍ଣତତ୍ତ୍ୱ । ପ୍ରକୃତି, ପରମାତ୍ମା, ଜୀବ, ଏହି ତିନିତତ୍ତ୍ୱର ସହଯୋଗର ଅଭାବରେ ଅର୍ଥାତ୍ ସତ୍, ଚିତ୍, ଆନନ୍ଦ, ଏହି ତିନିଗୁଣ ଅର୍ଥାତ୍ ବିସ୍ତାର ଅଭାବରେ ସୃଷ୍ଟି ସମ୍ଭବପର ନୁହେଁ ।

ମନୁଷ୍ୟ କେବଳ ସତ୍ ଏବଂ ଚିତ୍; କିନ୍ତୁ ତାଠାରେ ଆନନ୍ଦ ନାହିଁ । ଆନନ୍ଦର ଅଭାବରେ ତାର ଅସ୍ତିତ୍ୱ ସମ୍ଭବ ନୁହେଁ ବୋଲି ସେ ସେହି ଆନନ୍ଦକନ୍ଦଠାରୁ ଆନନ୍ଦ ପାଇବା ପାଇଁ ଲାଳାୟିତ ହୁଏ । ଆଉ ଏଥିପାଇଁ ହିଁ ମନୁଷ୍ୟ ନିଜର ସକଳ ପ୍ରକାର ଉଚ୍ଚ ପ୍ରବୃତ୍ତିର ବିକାଶ କରିବାରେ ତନ୍ମୟ ହୋଇଉଠେ । ଦୟା, ପ୍ରେମ, ସ୍ନେହ, ଭକ୍ତି, ସାରଲ୍ୟ, ସତ୍ୟ, ନ୍ୟାୟ ଇତ୍ୟାଦି ସଂକ୍ଷେପରେ କହିବାକୁ ଗଲେ ଧର୍ମ । ଏହି ଧର୍ମ ପାଇଁ ମନୁଷ୍ୟ ତନ୍ମୟ ହୋଇଉଠେ; ଅର୍ଥାତ୍ ଏହି ଧର୍ମକାର୍ଯ୍ୟ କରି ମନୁଷ୍ୟ ଆନନ୍ଦ ପାଇବାକୁ ଚାହେଁ । କିନ୍ତୁ ସୃଷ୍ଟି ଯେତେବେଳେ ରହିଛି, ଦ୍ୱନ୍ଦ୍ୱ ସେତେବେଳେ ରହିଛି, ଅର୍ଥାତ୍ ସଂସାରରେ ଭଲମନ୍ଦ, ପାପପୁଣ୍ୟ, ନ୍ୟାୟ ଅନ୍ୟାୟ, ଅଶୁଭ ଶୁଭ, ସତ୍ୟ ମିଥ୍ୟା, ଏ ସମସ୍ତ ଦ୍ୱନ୍ଦ୍ୱର ବୀଜ ଯେତେବେଳେ ରହିଛି, ସେତେବେଳେ ଏହା ସମ୍ଭବ ନୁହେଁ ଯେ ସୃଷ୍ଟିର ସମସ୍ତେ କେବଳ ଧର୍ମର ଅନୁଶୀଳନ କରିବେ ଅର୍ଥାତ୍ ସମସ୍ତେ

ଏହି ସମସ୍ତ ସୃଷ୍ଟ ଉଚ୍ଛୃଙ୍ଖଳ ସକଳର କୋଣ ଢଗରେ ଚେଷ୍ଟିତ ହେବେ । ତେଣୁ ମନୁଷ୍ୟ ଯେତେବେଳେ ଖୁବ୍ ସହଜ ଉପାୟରେ, ନିତାନ୍ତ ଶସ୍ତା ଦରରେ ଅଳ୍ପ ଆୟାସରେ ଆନନ୍ଦ ପାଇବାକୁ ବ୍ୟଗ୍ର ହୋଇଉଠେ; ସେତେବେଳେ ସେ ସୃଷ୍ଟି କରେ 'କଳା' । ତେଣୁ କଳା ମନୁଷ୍ୟର ତିଆରି ଜିନିଷ । ସାଧାରଣ ମନୁଷ୍ୟ ତେଣୁ ଏହି ସୃଷ୍ଟ ଉଚ୍ଛୃଙ୍ଖଳ ପ୍ରବୃତ୍ତି ସକଳକୁ ବାସ୍ତବ ରୂପରେ ଗ୍ରହଣ ନ କରି କଳା ରୂପରେ ଗ୍ରହଣ କରିବାକୁ ବାଧ୍ୟ ହୁଏ । ଅନେକଙ୍କ ମତରେ ସେଥିପାଇଁ ସେହି କଳା ଉତ୍କୃଷ୍ଟ । ଯାହା ଏହି ପ୍ରବୃତ୍ତି ସକଳର ବିଶ୍ଳେଷଣରେ ସିଦ୍ଧହସ୍ତ । କଳା ଆନନ୍ଦ ଦିଏ ସାଧାରଣ ମନୁଷ୍ୟଙ୍କୁ । ପ୍ରକୃତି ଆନନ୍ଦ ଦିଏ ଦାର୍ଶନିକଙ୍କୁ, ସାଂସାରିକ ସମସ୍ତ ବନ୍ଧନରୁ ମୁକ୍ତ ହୋଇ ଆନନ୍ଦର ଆକାର ସେହି ପ୍ରକୃତିର ସ୍ରଷ୍ଟାଙ୍କୁ ଯେ ଚାହେଁ, ତାଙ୍କୁ । ଅତଏବ ମନୁଷ୍ୟଙ୍କୁ ଆନନ୍ଦ ଦେବା ଲାଗି ସେହି ଅଦୃଷ୍ଟ ଶକ୍ତି ଯେଉଁ କଳା ସୃଷ୍ଟି କରେ, ତାକୁ କଳା ନ କହି କୁହାଯାଏ ପ୍ରକୃତି । ଆଉ ସାଧାରଣ ମନୁଷ୍ୟ ସେହି ପ୍ରକୃତିରୁ ଆନନ୍ଦ ଗ୍ରହଣ କରିବାରେ ବିଫଳ ମନୋରଥ ହୋଇ ଯେଉଁ ଅସ୍ୱାଭାବିକ ଆନନ୍ଦ ସୃଷ୍ଟି କରେ, ତାର ନାମ 'କଳା' । ଏଥିପାଇଁ କଳାର ଆଭିଧାନିକ ଅର୍ଥ ହେଉଛି—opposite to nature କିନ୍ତୁ କଳାର ଆଶ୍ରୟ ପ୍ରକୃତି । ଏଣୁ ପ୍ରକୃତି ଈଶ୍ୱରର ତିଆରି ଜିନିଷ ।

କଳା ଆଉ ପ୍ରକୃତିର ଏହି ଘନିଷ୍ଠ ସମ୍ପର୍କକୁ ଲକ୍ଷ୍ୟ କରି ବୋଧହୁଏ ସେକ୍ସପିଅର କହିଛନ୍ତି, "But the art itself is nature" କିନ୍ତୁ ଯାହା ପ୍ରକୃତିର ବିପରୀତ, ତା' ହେଉଛି କଳା; ଅର୍ଥାତ୍ ଯାହା ଅସ୍ୱାଭାବିକ, ତା' କଳା । ଅନ୍ୟ ପକ୍ଷରେ ଯାହା ସ୍ୱାଭାବିକ, ତାହା ପ୍ରକୃତି । ଗୋଲାପ ଫୁଲଟିଏ ଗଛରେ ଫୁଟିଛି, ଏଟା କଳା ନୁହେଁ—ଏଟା ପ୍ରକୃତି । ଏହି ଫୁଲକୁ ଚିତ୍ରକର ତୁଳୀଦ୍ୱାରା ରଙ୍ଗ ସାହାଯ୍ୟରେ କାଗଜରେ ଯେତେବେଳେ ରୂପ ଦେବ, ସେତେବେଳେ ସେଟା ହେବ କଳା । କବି ଯେତେବେଳେ କହିବ, "ରକ୍ତଗୋଲାପ ରଙ୍ଗୀନ ସୁନ୍ଦରୀ ଆମାର କାଛେ ସମାନ ପ୍ରିୟ"; ସେତେବେଳେ ଗୋଲାପ ହେବ କଳା । କାହିଁକି ନା, ଗୋଲାପ ଓ ସୁନ୍ଦରୀ କେତେବେଳେ ସମାନ ହୋଇ ପାରେ ନା । ପ୍ରକୃତରେ, ଅର୍ଥାତ୍ ପ୍ରକୃତିର ଦୃଷ୍ଟିରେ ଦୁହେଁ ଅଲଗା ଅଲଗା ଜିନିଷ; କିନ୍ତୁ ଦୁହେଁ ସମାନ ହେଲେ କବିର ଦୃଷ୍ଟିରେ—କବିତା କ୍ଷେତ୍ରରେ; ଦାର୍ଶନିକ ବା ତତ୍ତ୍ୱଦର୍ଶୀର ଦୃଷ୍ଟିରେ ନୁହେଁ—ତତ୍ତ୍ୱ ବା ଦର୍ଶନ କ୍ଷେତ୍ରରେ ନୁହେଁ । ଦାର୍ଶନିକ ପ୍ରକୃତିର ଉପାସକ—କବି କିନ୍ତୁ କଳାର ଉପାସକ । ସାଧାରଣ ଅର୍ଥରେ କବି କହିଲେ ଯାହା ବୁଝାଏ, ମୁଁ ଏଠାରେ କେବଳ ସେହି ଅର୍ଥକୁ ଗ୍ରହଣ କରିଛି । ଅଥଚ କବି ଶବ୍ଦର ଅର୍ଥ ବଡ଼ ବ୍ୟାପକ ।

ମନୁଷ୍ୟ ଚାହେଁ ଆନନ୍ଦ—ସହଜଲଭ୍ୟ ଆନନ୍ଦ; ଯେହେତୁ ଦୁର୍ଲ୍ଲଭ ଆନନ୍ଦ ଆୟାସସାଧ୍ୟ । ସେଥିପାଇଁ ସେ ସେହି ଦୁର୍ଲ୍ଲଭ ଆନନ୍ଦର ଅନୁକରଣରେ ସହଜଲଭ୍ୟ ଆନନ୍ଦ ସୃଷ୍ଟି କରେ; ଅର୍ଥାତ୍ ପ୍ରକୃତିକୁ ଅନୁକରଣ କରି ସେ କଳା ସୃଷ୍ଟି କରେ । ଅତଏବ କଳା ପ୍ରକୃତିର ଅନୁଗତ । ଆନନ୍ଦ ଯେତେବେଳେ ସେହି ଅଖଣ୍ଡ ତତ୍ତ୍ୱଠାରେ କେବଳ ନିହିତ, ମନୁଷ୍ୟ ନିଜେ ସ୍ୱତନ୍ତ୍ର ଭାବରେ ଆନନ୍ଦ ସୃଷ୍ଟି କରିପାରିବ କିପରି ? ତେଣୁ ସେ ସେହି ବିରାଟ ଆନନ୍ଦକୁ ବିକୃତ ରୂପରେ ଗ୍ରହଣ କରିବାକୁ ବାଧ୍ୟ ହୁଏ, ଅର୍ଥାତ୍ କଳା ପ୍ରକୃତିର ବିକୃତ ରୂପ ମାତ୍ର ।

କିନ୍ତୁ କଳା ପୂର୍ଣ୍ଣତା ପାଏ କେତେବେଳେ ? ମନୁଷ୍ୟ ତାକୁ ପୂର୍ଣ୍ଣପ୍ରାଣରେ ଗ୍ରହଣ କରେ କେତେବେଳେ ? ଯେତେବେଳେ କଳା ନିଜର ବାସ୍ତବ ସ୍ୱରୂପକୁ ଅବଗୁଣ୍ଠନ ମଧ୍ୟରେ ଆବଦ୍ଧ ରଖି କହେ, 'ମୁଁ କଳା ନୁହେଁ—ମୁଁ ବାସ୍ତବ ଜିନିଷ', ସେତେବେଳେ ଯାଇ ସାଧାରଣ ମନୁଷ୍ୟ ତାକୁ ପାଇବାକୁ ଲାଳାୟିତ ହୋଇଉଠେ । ଆଉ ଶେଷରେ ନିରାଶ ହୁଏ । ମରୀଚିକା ପଛରେ ଧାବମାନ ତୃଷାର୍ତ୍ତ ପଥିକର ଅବସ୍ଥାପ୍ରାପ୍ତ ହୁଏ । କିନ୍ତୁ କଳା ଏହିଠାରେ ଜୟୀ ହୁଏ—ମନୁଷ୍ୟ ହୁଏ ପରାଜିତ । ପରାଜିତ ମନୁଷ୍ୟ ଏହିଠାରେ ହିଁ କଳାର ସ୍ତବଗାନ କରେ । ସେ କହେ "That is art which conceals art" କଳା ସାଧାରଣ ମନୁଷ୍ୟ ଉପରେ ଏତେ ପ୍ରଭାବ ପକାଏ ଯେ, ମନୁଷ୍ୟ ଯଦି ସାବଧାନ ନ ରହେ, ସେ ନିଜର ଅସ୍ତିତ୍ୱ ଭୁଲିଯାଇ କଳାର ଅସ୍ତିତ୍ୱକୁହିଁ କେବଳ ବାସ୍ତବ ବୋଲି ଭୁଲ କରି ନିଜର ଅବମାନନା କରେ । ଯେଉଁ କଳା ମନୁଷ୍ୟର ସାଧାରଣ ବୁଦ୍ଧିକୁ ଏପରି ଆଚ୍ଛନ୍ନ କରେ, ସେ ଯଦି ପ୍ରକୃତିକୁ ଅନୁସରଣ ନ କରେ—ବାସ୍ତବତା ସଙ୍ଗରେ ଯଦି ଆନ୍ତରିକତା ସ୍ଥାପନ ନ କରେ—ପ୍ରକୃତିର ସ୍ୱଚ୍ଛ ସରଳ ପ୍ରବାହରେ ଅବଗାହନ କରି ନିଜକୁ ଯଦି ନିର୍ମଳ ପବିତ୍ର ନ କରେ, ତେବେ ସେ

ଜନ ସାଧାରଣଙ୍କର ଅମଙ୍ଗଳ କରିବାରେ ହିଁ ନିଜକୁ ଗୌରବାନ୍ୱିତ ମନେ କରିବ । ଏହି ଧରଣର କଳାର କବ୍ଳ କବଳରୁ ମନୁଷ୍ୟ ନିଜକୁ ରକ୍ଷା କରିବା ପାଇଁ ଆଗ୍ରହୀମାନେ କହନ୍ତି "କଳାକୁ କଳା ରୂପରେ ହିଁ ଗ୍ରହଣ କରିବାକୁ ହେବ ।"—'Art for arts sake'.

ବୈରାଗ୍ୟଭାବାପନ୍ନ ତ୍ୟାଗମୂଳକ ଚଳଚ୍ଚିତ୍ରର ମଧୁର ଦୃଶ୍ୟ ଦର୍ଶନରେ ତନ୍ମୟ ହୋଇ, କୁତ୍ସିତ କାମବାସନାଜଡ଼ିତ, ଉଦ୍ଦଣ୍ଡ ପ୍ରେମ ପରିପୂର୍ଣ୍ଣ ଚିତ୍ର ଦର୍ଶନରେ ଆତ୍ମହରା ହୋଇ, ମନୁଷ୍ୟର ନୀଚତମ ଏବଂ ଅଶାନ୍ତ ବେଗମୂଳକ ପ୍ରବୃତ୍ତିକୁ ଶାନ୍ତ କରିବାରେ ଏକାନ୍ତ ସହାୟକ ନିଶାଦ୍ରବ୍ୟାଦି ସେବନମୂଳକ ପ୍ରବୃତ୍ତିକାରକ ଦୃଶ୍ୟାବଳୀ ଦର୍ଶନରେ ଅଧୀର ହୋଇ, ମନୁଷ୍ୟ ସଂସାରତ୍ୟାଗୀ, ପ୍ରେମପାଗଳ, ଏବଂ ମଦ୍ୟପ ଅବସ୍ଥାରେ ଇତସ୍ତତଃ ଘୁରିବୁଲୁଥିବାର ସମ୍ବାଦ ମଧ୍ୟ ସମସ୍ତ ସମୟରେ ସମ୍ବାଦପତ୍ର ବିତରଣ କରିଥାଏ । ସାଧାରଣ ଲୋକଙ୍କ କଥା ବାଦ୍ ଦେଲେ ମଧ୍ୟ ଶୁଣିବାକୁ ମିଳେ ଯେ, ବଡ଼ ବଡ଼ ଚିନ୍ତାଶୀଳ ବ୍ୟକ୍ତିଙ୍କ ମଧ୍ୟ କଳା ସେମାନଙ୍କର ଅସ୍ତିତ୍ୱକୁ ଭୁଲାଇ ନିଜର ଅସ୍ତିତ୍ୱଟାକୁ ବାସ୍ତବ ବୋଲି ପ୍ରମାଣ କରିବାରେ ଜୟୀ ହୋଇଛି । ଏଥିପାଇଁ ପିତା ଶ୍ରୀ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ଭଳି ସ୍ଥିତପ୍ରଜ୍ଞ ପୁରୁଷ ମଧ୍ୟ ଦର୍ଶକମଣ୍ଡଳୀଙ୍କ ମଧ୍ୟରୁ ଉଠିଯାଇ ଅଭିନୟରତ କଳାକାର ଗିରିଶ-ଚନ୍ଦ୍ରଙ୍କୁ ରଙ୍ଗମଞ୍ଚ ମଧ୍ୟରେ ହିଁ ଚର୍ମ ପାଦୁକାରେ ପ୍ରହାର କରିବାକୁ ହୋଇଥିଲା । ଏହିପରି ଦାୟିତ୍ୱପୂର୍ଣ୍ଣ କର୍ତ୍ତବ୍ୟକୁ ଯେଉଁମାନେ ନିଜର କରି ନେଇଛନ୍ତି; ସେମାନଙ୍କୁ ଏ ଦିଗରେ କିପରି ସାବଧାନ ରହିବାକୁ ହେବ, ତାହା ଏଥିରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ।

ଈଶ୍ୱରଙ୍କର ସୃଷ୍ଟି ପ୍ରକୃତି ଯେପରି ମଙ୍ଗଳମୟ, ମନୁଷ୍ୟର ସୃଷ୍ଟି କଳା ମଧ୍ୟ ସେହିପରି ଯଦି ମଙ୍ଗଳମୟ ନ ହୁଏ, ତେବେ ରୁଷ୍ଟ ପ୍ରକୃତି ଭୂମିକମ୍ପ, ଅନାବୃଷ୍ଟି, ମହାମାରୀ ଆଦି ପ୍ରଳୟଙ୍କରୀ ରୂପ ଧାରଣ କରି ନିରୀହ, ଶାନ୍ତ ଜନତାର ଯେପରି ମୂଲୋତ୍ପାଟନ କରିବାରେ ନିଜର ସମସ୍ତ ଶକ୍ତି ବ୍ୟୟ କରୁଛି, କଳା ମଧ୍ୟ ସେହିପରି ଜନତାର କେବଳ ଧ୍ୱଂସ ସାଧନରେ ନିଜର ତେଜକୁ ନଷ୍ଟ କରିବ । ପ୍ରକୃତିର ଏହି ପ୍ରକୋପ କିନ୍ତୁ ସ୍ୱାଭାବିକ; କଳାର ଏହି ଅବାଞ୍ଛନୀୟ ପ୍ରକୋପ ଅସ୍ୱାଭାବିକ; ତେଣୁ ବେଶୀ କଷ୍ଟଦାୟକ । ଭୂମିକମ୍ପରେ ମନୁଷ୍ୟ ଯଦି ମରିଯାଏ, ସେ ନିର୍ଦ୍ୱନ୍ଦ୍ୱ ହୁଏ, ଶାନ୍ତି ପାଏ; କିନ୍ତୁ କଳା ପ୍ରଭାବରେ ମନୁଷ୍ୟ ଯଦି କୁତ୍ସିତ ମନୋ-ଭାବାପନ୍ନ ହୁଏ, ଦ୍ୱନ୍ଦ୍ୱର ଘୂର୍ଣ୍ଣିବାୟୁରେ ଯଦି ସେ ବିକ୍ଷିପ୍ତ ହୁଏ, ସେ ଶାନ୍ତି ପାଏ ନା—ଜୀବନ୍ମୃତ ଅବସ୍ଥା ପ୍ରାପ୍ତ ହୁଏ । ଜୀବନ୍ମୃତ ଅପେକ୍ଷା ମୃତ୍ୟୁ ଶ୍ରେୟସ୍କର ।

ଅବୁଝା ଶିଶୁ ଅଖାଦ୍ୟ ଖାଇବାକୁ ଜିଦ୍ ଧରିଲେ ମଧ୍ୟ ମା'ତାକୁ ତାହା ନ ଦେଇ ସ୍ତନ୍ୟ ଦିଏ । ଅଜ୍ଞ ଜନସାଧାରଣ ଆତ୍ମାର ଅକଲ୍ୟାଣକାରୀ ଆନନ୍ଦ ଗ୍ରହିଁ ଥିଲେ ମଧ୍ୟ କବି, ଚିତ୍ରକର, ଶିଳ୍ପୀ, ସଙ୍ଗୀତଜ୍ଞ, ନୃତ୍ୟବିଦ୍, ସେମାନଙ୍କୁ ଯଦି ନିର୍ମଳ ଆନନ୍ଦ ବିତରଣ କରେ, ତେବେ ଯାଇ ଶିଳ୍ପୀର ଶିଳ୍ପକର୍ମ ସାର୍ଥକତା ଲାଭ କରେ । ମାତାଲ ମଦଖାଇ ଯେଉଁ ଆନନ୍ଦ ପାଏ, ବେଶ୍ୟାସକ୍ତ ବେଶ୍ୟା ସଙ୍ଗରେ ସହବାସ କରି ଯେଉଁ ଆନନ୍ଦ ପାଏ, ଅର୍ଥଲୋଭୀ ପରସ୍ୱ ଅପହରଣ କରି ଯେଉଁ ଆନନ୍ଦ ପାଏ, ସେହି ଆନନ୍ଦ ଯାହା, ପାଷାଣରେ ଉଲଗ୍ନ ନାରୀ ମୂର୍ତ୍ତି ଗଢ଼ିବାରେ ଯେଉଁ ଆନନ୍ଦ, ନାରୀର ମାତୃରୂପକୁ କାମ ବାସନାର ଦୃଢ଼ ଫାଶରେ ଆବଦ୍ଧ ରଖି ଚିତ୍ତଉତ୍କ୍ଷିପ୍ତ କାରିଣୀ ତାର ସ୍ତନ, ଜାନୁ, ନିତମ୍ବର ଉତ୍କଟ ବର୍ଣ୍ଣନା କରିବାରେ ଯେ ଆନନ୍ଦ, ତାହା ମଧ୍ୟ ସେଇଆ । ଯାହା କାମଶାସ୍ତ୍ରର ବିଷୟ, ତାକୁ କଳା ଭିତରେ ପୂରେଇବା ଅସଙ୍ଗତ ।

ହଁ, ଏ ସମ୍ବନ୍ଧରେ ଗୋଟାଏ ପ୍ରଶ୍ନ ଉଠିପାରେ । ଯାହା ବାସ୍ତବ ସତ୍ୟ, ତାକୁ ବାସ୍ତବ ସତ୍ୟ ବୋଲି ପ୍ରକାଶ କରିବାରେ ଆପତ୍ତି କାହିଁକି ? ପ୍ରଶ୍ନଟା ଠିକ୍ । ଉତ୍ତରଟା ମଧ୍ୟ ବେଠିକ୍ ନୁହେଁ । କାରଣ ଏହି ବାସ୍ତବତା ଆଉ ସତ୍ୟର ମଧ୍ୟ ସୀମା ଅଛି । ଏମାନେ ଯଦି ସୀମା ଲଙ୍ଘନ କରିଛନ୍ତି, ତେବେ ଏମାନେ ବାସ୍ତବ; ସତ୍ୟ ଆକାରରେ ନ ରହି ଅସତ୍ୟ ଏବଂ ଅବାସ୍ତବତାର ଆକାର ଧାରଣ କରିବେ । ପୃଥିବୀରେ ଏପରି କେତେଗୁଡ଼ାଏ ସତ୍ୟ ଅଛି, ଯାହା କେବଳ ସତ୍ୟ, ଅଥଚ ତାକୁ ଯଦି ପ୍ରକାଶ କରାଯାଏ, ସେ ହେବ ଅସତ୍ୟ । ଆଉ ଟିକିଏ ସ୍ପଷ୍ଟ କରି କହିବାକୁ ଗଲେ, ସେ ହେବ ବେହିଆମି । ସମସ୍ତେ ଜାଣନ୍ତି ସ୍ତ୍ରୀ ପୁରୁଷର ସଂସର୍ଗରେ ସନ୍ତାନର ଉତ୍ପତ୍ତି ହୁଏ । ସମସ୍ତେ ଜାଣନ୍ତି ଆଉ ଏଟା ସତ୍ୟ ବୋଲି କେହି ଯଦି ମୁକ୍ତ ପ୍ରାଙ୍ଗଣରେ ଲୋକଚକ୍ଷୁର ସମକ୍ଷରେ ଏହାର ଆବଶ୍ୟକତା ଅନୁଭବ କରନ୍ତି, ତେବେ ସେଟା ସତ୍ୟ ନ ହୋଇ ହେବ ପଶୁତ୍ୱ । ପଶୁ ପକ୍ଷରେ ଏହା ଅପରିହାର୍ଯ୍ୟ । ସତ୍ୟର କାର୍ଯ୍ୟ, ମନୁଷ୍ୟକୁ ସତ୍‌ପଥରୁ ଆଣିବା—ମନୁଷ୍ୟର ନିରନ୍ତ ଦୁର୍ଦ୍ଦମନୀୟ ମନକୁ

ଉତ୍‌କ୍ଷିପ୍ତ କରିବା ନୁହେଁ । ଏହି ଉତ୍‌କ୍ଷିପ୍ତତାରୁ, ଚଞ୍ଚଳତାରୁ, ପତନରୁ ମନୁଷ୍ୟକୁ ବଞ୍ଚାଇବା ପାଇଁ ଯେଉଁ ବିଦ୍ୟାର ଆଶ୍ରୟ ନିଆଯାଏ, ସେ ହେଉଛି କଳା । ଏଥିପାଇଁ ଅରବିନ୍ଦ କହନ୍ତି,—"The first and lowest use of art is purely aesthetic, the second is the intelectual and educational, the third and highest is spiritual." ଏଥିପାଇଁ ଯେ କଳା ସୃଷ୍ଟି କରେ ସେ ସାଧାରଣ ଲୋକ ନୁହେଁ । ସେ ଦାର୍ଶନିକ ନ ହେଲେ ମଧ୍ୟ, ତତ୍ତ୍ୱଦର୍ଶୀ ନ ହେଲେ ମଧ୍ୟ ଅନ୍ତତଃ ଚରିତ୍ରବାନ୍ ହେବ; ତେବେ ଯାଇ ସେ ଉତ୍କୃଷ୍ଟ କଳା ସୃଷ୍ଟି କରିପାରିବ । ଚରିତ୍ରବାନ୍ କଳାବିଦ୍‌ର କଳାହିଁ ଉତ୍କୃଷ୍ଟ । ତା ୨୧-୧୧-୧୯୪୫ରେ ଜୟପୁରଠାରେ ଅନୁଷ୍ଠିତ ପି: ଇ: ଏନ୍: ସଭାରେ ଶ୍ରୀ ସର୍ବପଲ୍ଲୀ ରାଧାକୃଷ୍ଣନ୍ ଏହି କଥାଟାକୁ ହିଁ ପରୋକ୍ଷରେ ପ୍ରକାଶ କରିଥିଲେ । ସେ କହିଥିଲେ—"Unless you yourself is a great seer, you can not produce great literature."

ଶରତ୍ ପ୍ରଭାତର କଅଁଳ ଦୂବଘାସ ଉପରେ ପତିତ ମୁକ୍ତାନିନ୍ଦୀ ଶିଶିର ବିନ୍ଦୁ ଆଉ ଚକ୍ର ଗୋଲାପର ସୁମଧୁର ହାସ୍ୟ, ଚମେଲି ଗନ୍ଧ-ସୁରଭିତ 'ନିଶୀଥିନୀର ମନ୍ଦ ମଳୟର ମୃଦୁଳ ପରଶ ସବୁଜ କିଶଳୟ ଉଡ଼ାଳରେ ଲୁଚି ଧୀର ସମୀର ହିଲ୍ଲୋଳରେ ରଜନୀଗନ୍ଧାର ଲୁଚକାଳି ଖେଳ ଚଞ୍ଚଳ ଚରଣ ପାତରେ ଆଉ ଖୁସିମନରେ ଝିଲ୍ଲୀର ଗାନ—କୁସୁମରାଣୀ ସାଥିରେ ଭୃଙ୍ଗରାଜର ପ୍ରେମପ୍ରୀତି ଆଉ ପ୍ରେୟସୀର ମନୋରଞ୍ଜନ ଲାଗି ତାର ଗୁଞ୍ଜନ—କବିକୁ କରେ ସ୍ପର୍ଶ—କାମୁକକୁ ସ୍ପର୍ଶ କରିପାରେନା । ଏହି ବାସ୍ତବ ଜିନିଷକୁ ନେଇ କବି କଳା ସୃଷ୍ଟି କରେ । କାରଣ ବାସ୍ତବତାହିଁ କଳ୍ପନାରୁ ପ୍ରସୂତ । ଏହି ପ୍ରାକୃତିକ ସୌନ୍ଦର୍ଯ୍ୟରେ ହିଁ ସେ ଦେଖେ ସେ ସେହି ବିରାଟ କଳାବିଦ୍ ବିଶ୍ୱକର୍ମାର କଳା କୌଶଳ—ତା ପ୍ରତି ସେ ନତି ଜଣାଏ । ତାରି ଅନୁକରଣରେ ସେ ତାର କଳାର ନାୟକ ସୃଷ୍ଟି କରେ ରାମଚନ୍ଦ୍ର ରୂପରେ—ନାୟିକା ସୃଷ୍ଟିକରେ ସୀତା ରୂପରେ; କିନ୍ତୁ ଏହି ବାସ୍ତବ ଜିନିଷକୁ ନେଇ କାମୁକ ସୃଷ୍ଟି କରେ କାମୁକତା । ଯଥା :—ଚନ୍ଦ୍ରିମା ରାତି—କଳକଳନାଦିନୀ କଲ୍ଲୋଳିନୀ-ତୀରସ୍ଥିତ ଉପବନରେ ତାର ନାୟିକା ବସିଛି—ଗୁଣ୍ଡ୍ରୁ ଗୁଣ୍ଡ୍ରୁ ସ୍ୱରରେ ଗୀତ ଗାଉଛି । ସରଳା ତରଳା ଷୋଡ଼ଶୀ ନାୟିକା ନିଃସଙ୍କୋଚ ମନରେ ବସିଛି । ତାର ଖିଆଲ ନାହିଁ ଯେ, ତାର ବକ୍ଷ ଉନ୍ମୁକ୍ତ । ତାର ସ୍ତନ ଯୁଗଳ ସତେ ଯେପରି ଚନ୍ଦ୍ରଠାରୁ ଅମୃତ ପାଇବା ଆଶାରେ ତା ପ୍ରତି ଅନାଇ ରହିଛି, ଆଉ ଅମୃତ ପାଇ ପରିପୁଷ୍ଟ ହୋଇ ରହିଛି । ଏଥିପାଇଁ ଯେ, ତାର ସନ୍ତାନକୁ ସେ ଅମୃତ ଦେବ । କିନ୍ତୁ ସନ୍ତାନ କାହିଁ ? ନାୟକ ଆସିଲେ, ମୁଗ୍ଧ ହେଲେ—ଚୁମ୍ବନ ଦେଲେ—ପ୍ରେମ କଲେ—ସୃଷ୍ଟି ହେଲା ସନ୍ତାନ । ଏ ଯେଉଁ କଳା, ଏ କଳା ମନୁଷ୍ୟର ଆଧ୍ୟାତ୍ମିକ ପଥର ଅନ୍ତରାୟ—କଳାର ପବିତ୍ର ନାମରେ କଳଙ୍କ । ଏହାକୁ କଳା ନ କହି କୁହାଯିବ ଫାଶ । ଗାନ୍ଧିଜୀ ଏହାହିଁ କହନ୍ତି—"All art must help the soul to realise its inner self. Anything which is hindrance to the flight of the soul is a delusion and a snare."

ରାମାୟଣରେ ଆଉ ମହାଭାରତରେ କବି ମହର୍ଷି ବାଲ୍ମୀକି ଆଉ ମହର୍ଷି କୃଷ୍ଣଦ୍ୱୈପାୟନ ମଧ୍ୟ କଳାବିଦ୍ । ପ୍ରକୃତିର ପୂତ, ନିର୍ମଳ, ଉନ୍ମୁକ୍ତ କୋଳରେ ବସି ଅର୍ଥାତ୍ ପ୍ରକୃତିକୁ ଆଶ୍ରୟ କରି ସେମାନେ କଳା ସୃଷ୍ଟି କଲେ । ସେଥିପାଇଁ ତାଙ୍କର କଳା ପ୍ରକୃତିର ଅନୁଗତ । ପ୍ରକୃତିକୁ ନିର୍ମମ ଭାବରେ ତ୍ୟାଗ କରି ସେମାନେ ପାଗଳାମିକୁ ପ୍ରଶ୍ରୟ ଦେଇ ନାହାନ୍ତି—ଅତି କଳ୍ପନା କରି ନାହାନ୍ତି । ରାମାୟଣର ଚରିତ୍ର ନାୟିକା ସୀତା କଳାର ବିଚିତ୍ର ସୃଷ୍ଟି । ଏହିଠାରେ ହିଁ କଳାର ସ୍ପଷ୍ଟ ଆତ୍ମପ୍ରକାଶ—ଏହିଠାରେ ହିଁ କଳା ବିଜୟୀ—ଏହିଠାରେ ହିଁ କଳା କହୁଛି, "ମୁଁ ଅବାସ୍ତବ ନୁହେଁ, ମୁଁ ବାସ୍ତବ ଜିନିଷ, ଅର୍ଥାତ୍ ରାମଚନ୍ଦ୍ର ଅଲୌକିକ ଶକ୍ତିସମ୍ପନ୍ନ ବିଷ୍ଣୁଙ୍କର କେବଳ ଅଂଶାବତାର ନୁହନ୍ତି—ସେ ଅଯୋଧ୍ୟାର ରାଜା—ସେ ପୁତ୍ର, ମାତାପିତା, ପାତ୍ରମନ୍ତ୍ରୀ, ଦାସଦାସୀ ପରିବେଷ୍ଟିତ ଅଯୋଧ୍ୟାର ରାଜା । ତାଙ୍କୁ ସୀତାଙ୍କର ବିରହରେ ଦୁଃଖ ହେଉଛି—ଲକ୍ଷ୍ମଣଙ୍କ ବିଚ୍ଛେଦରେ ଦୁଃଖ ହେଉଛି—ଲବକୁଶ ସଙ୍ଗେ ମିଳନରେ ଆନନ୍ଦ ହେଉଛି—ପ୍ରଥମ ଦର୍ଶନରେ ସୀତାଙ୍କ ସୌନ୍ଦର୍ଯ୍ୟ ପ୍ରତି ସେ ମୁଗ୍ଧ ହେଉଛନ୍ତି, ଆଉ ଏହି ଦୁର୍ବଳତାକୁ (?) ଭାଇ ଲକ୍ଷ୍ମଣ ଆଗରେ ସ୍ପଷ୍ଟ ଭାବରେ ପ୍ରକାଶ କରୁଅଛନ୍ତି । ସୀତା ସେହିପରି କେବଳ ଅଂଶାବତାର ଭଗବାନଙ୍କର ଆହ୍ଲାଦିନୀ ଶକ୍ତି ନୁହନ୍ତି—ଅନନ୍ତ ସାଗର ମଧ୍ୟସ୍ଥିତ ଶେଷନାଗଶାୟୀ ଭଗବାନ ବିଷ୍ଣୁଙ୍କ ପାଦ ପାଖରେ ବସି ତାଙ୍କର ପଦ ସେ କେବଳ ମର୍ଦ୍ଦନ୍ତି ନାହାନ୍ତି । ସେ ମର୍ଯ୍ୟାଦା ପୁରୁଷୋତ୍ତମ ଭଗବାନ ରାମଚନ୍ଦ୍ର, ଯେ କି ଅଯୋଧ୍ୟାର ରାଜା, ତାଙ୍କର ଧର୍ମପତ୍ନୀ—ଲବକୁଶଙ୍କର ଜନନୀ – ଅଯୋଧ୍ୟା ରାଜପରିବାରର କୁଳବଧୂ-ରାଜର୍ଷି

ଜନକଙ୍କ ଅତି ଆଦରଣୀୟା କନ୍ୟା । ରାମଙ୍କ ବିରହରେ ବାଲ୍ମୀକି ଆଶ୍ରମ ନିକଟରେ ସେ ପ୍ରାଣତ୍ୟାଗ କରିବାକୁ ମଧ୍ୟ ପ୍ରସ୍ତୁତ ହେଉଛନ୍ତି । କିନ୍ତୁ ଗର୍ଭରେ ଯେ ରାମଙ୍କର ତେଜ, ସେଥିରୁ ସେ ନିରସ୍ତ ହେଉଛନ୍ତି । ରାମଙ୍କ ଅନୁପସ୍ଥିତିରେ ଲକ୍ଷ୍ମଣଙ୍କୁ ସନ୍ଦେହ ଚକ୍ଷୁରେ (?) ଦେଖି ତାଙ୍କୁ ତିରସ୍କାର କରୁଛନ୍ତି । ରାଜସୂୟ ଯଜ୍ଞ ସମୟରେ ରାମଙ୍କର ଦ୍ୱିତୀୟ ପତ୍ନୀ-ଗ୍ରହଣର ସମ୍ଭାବନା କଳ୍ପନା କରି ବିଚଳିତ ହେଉଛନ୍ତି—ମହର୍ଷିଙ୍କଠାରୁ ସାନ୍ତ୍ୱନାବାଣୀ ଶୁଣି ଶାନ୍ତ ହେଉଛନ୍ତି, ଆଉ ସନ୍ଦେହମନା ପ୍ରଜାଗଣଙ୍କ ଆଗରେ ବାରମ୍ବାର ନିଜର ସତୀତ୍ୱର ପ୍ରମାଣ ଦେବାରେ କୁଣ୍ଠିତ ହେଉଛନ୍ତି । ଅତିଶୟ ଲଜ୍ଜାବଶତଃ ତାଙ୍କ ହୃଦୟର ଗତିରୋଧ ହେଉଛି । ସେ ଯେଉଁ ମାଟିରୁ ଜନ୍ମ, ସେହି ମାଟିରେ ମିଶି ଯାଉଛନ୍ତି; ଅର୍ଥାତ୍ ତାଙ୍କର ମହାପ୍ରସ୍ଥାଣ ହେଉଛି । ଏହା ହେଉଛି କବିଗୁରୁ ମହର୍ଷି ବାଲ୍ମୀକିଙ୍କ ନାରୀ ଚରିତ୍ର ଚିତ୍ରଣ । ସ୍ୱାଭାବିକତାକୁ ହିଁ ଅନୁସରଣ କରି ଅସ୍ୱାଭାବିକତା ଅର୍ଥାତ୍ କଳା ସୃଷ୍ଟି କରିଛନ୍ତି ।

ଏହି ଗୋଟିଏ କାବ୍ୟର ନାୟକ-ନାୟିକା ଭାରତର ଘରେ ଘରେ ମୂର୍ତ୍ତିମନ୍ତ ହୋଇଅଛନ୍ତି କାହିଁକି ? କାହିଁକି ଭାରତର ଘରେ ଘରେ ପୂଜା ପାଉଛନ୍ତି ? କାହିଁକି ମନୁଷ୍ୟ ରୋଗରେ, ଦୁଃଖରେ, ବିପଦରେ 'ହେ ରାମ' କହି ଉଠୁଛି ? ଏହିଠାରେ ଦେଖିବାର କଥା ଯେ, ମହର୍ଷି ଗୋଟାଏ ବାସ୍ତବ ବିଷୟ ବସ୍ତୁକୁ କଳା ସାହାଯ୍ୟରେ କିପରି ଜୀବନ୍ତ କରି ରଖିଛନ୍ତି; ଆଉ ଗୋଟିଏ ଅବାସ୍ତବ କଳ୍ପନାକୁ କଳା ସାହାଯ୍ୟରେ କିପରି ବାସ୍ତବ କରି ତୋଳିଛନ୍ତି; ଯେଉଁଥିପାଇଁ କି ଆଜି ସୁଦ୍ଧା ରାମଙ୍କର ନାମ ଉଚ୍ଚାରଣ କଲେ ସମସ୍ତ ଯାତନାରୁ ମୁକ୍ତ ହେବାର ଦୃଢ଼ ଆଶା ଲୋକେ କରନ୍ତି । ରାମଙ୍କର ବିଗ୍ରହ ସମକ୍ଷରେ ଦଣ୍ଡାୟମାନ ହୋଇ, ଯୁକ୍ତକର ହୋଇ, ବିଗ୍ରହକୁ ପ୍ରଲୋଭନ ଦେଖାଇ ନିଜର ଈପ୍ସିତ ଫଳ ଲାଭ ପାଇଁ ପ୍ରାର୍ଥନା କରନ୍ତି ।

ହଜାର ହଜାର ବର୍ଷ ପୂର୍ବେ ଯେଉଁ କାବ୍ୟ ରଚିତ ହୋଇଥିଲା, ସେ ଆଜି ଭାରତର ଧର୍ମଗ୍ରନ୍ଥ ! ଭାରତର ଘରେ ଘରେ, ପୁରେ ପୁରେ, ଶିକ୍ଷିତ ଅଶିକ୍ଷିତ, ଧନୀ ନିର୍ଦ୍ଧନ, ସମସ୍ତେ ରାମାୟଣ, ମହାଭାରତ, ପଢ଼ୁଛନ୍ତି, ଶୁଣୁଛନ୍ତି, ଶୁଣାଉଛନ୍ତି । ଗୋଟାଏ କାବ୍ୟ, ଗୋଟାଏ କଳା ଏହା ଏଡ଼େ ବାସ୍ତବ ହୋଇ ଉଠିଲା କାହିଁକି ? କାରଣ, ଏ କଳା ପ୍ରକୃତିର ଅନୁଗତ । ମନୁଷ୍ୟର ସୂକ୍ଷ୍ମ ଉଚ୍ଚ ପ୍ରବୃତ୍ତି ସକଳର ଉନ୍ମେଷକ । ଆଉ ମନୁଷ୍ୟର ନୀଚ ପ୍ରବୃତ୍ତି ସକଳର ପ୍ରହରୀ ।

କଳା ସୃଷ୍ଟିର ଲକ୍ଷ୍ୟ ମନୁଷ୍ୟର ଦୁଷ୍ଟ ଇନ୍ଦ୍ରିୟଗୁଡ଼ିକୁ ଆୟତ୍ତାଧୀନ କରି ସେମାନଙ୍କୁ ଉଚିତ୍ ପଥର ନିର୍ଦ୍ଦେଶ ଦେବା, ଦୁଷ୍ଟ ଇନ୍ଦ୍ରିୟମାନଙ୍କୁ ଉତ୍ତେଜିତ କରିବା ନୁହେଁ; ଅର୍ଥାତ୍ ପ୍ରକୃତିର ନିର୍ଦ୍ଦେଶକୁ ମାନି ଚଳିବା କଳାର ପରମ କର୍ତ୍ତବ୍ୟ । କେହି କହି ପାରନ୍ତି, ମନୁଷ୍ୟ ଯଥେଷ୍ଟ କାମୋପଭୋଗ କରିବାକୁ ଚାହେଁ, ତାର ଏହିପରି ବଳିଷ୍ଠ ଇଚ୍ଛା ହେଉଛି । ଏଟା ପ୍ରକୃତିର ଇଚ୍ଛା ବୋଲି କାହିଁକି ଧରି ନ ଯିବ ? ଆଉ କଳା ଏଥିପାଇଁ କାହିଁକି ସାହାଯ୍ୟ ନ କରିବ ? ଉତ୍ତର ଏହି ଯେ, ଏହା ଯଦି ବାସ୍ତବିକ୍ ପ୍ରକୃତିର ଉଦ୍ଦେଶ୍ୟ ବା ଇଚ୍ଛା ହୋଇଥାଏ, ତେବେ ଯଥେଷ୍ଟ କାମୋପଭୋଗ ଫଳରେ ଶରୀରର ମଙ୍ଗଳ ହୁଅନ୍ତା । ଶରୀର ପୁଷ୍ଟ ରହନ୍ତା; କିନ୍ତୁ ମନୁଷ୍ୟ ରୁଗ୍ଣ, ଦୁର୍ବଳ ହୋଇପଡ଼େ କାହିଁକି ? ପ୍ରକୃତି ଚାହେଁନା ଯେ, ତାର ଇଚ୍ଛା ବିରୁଦ୍ଧରେ ତାକୁ ବଳାତ୍କାର କରାଯାଉ । ତେଣୁ ସେ ବାଧା ଦିଏ—କଠିନ ବାଧା । ଏହି ବାଧା ବା ଧକ୍କା ହିଁ ରୋଗ, ଅସ୍ଥିରତା, ଦୁର୍ବଳତା । ତେବେ ଏ ସବୁ ଚାହେଁ କିଏ ? ମନ । ଏହି ମନ ଯେତେବେଳେ ବୁଦ୍ଧିର ସାହାଯ୍ୟରେ ମାର୍ଜିତ ହୁଏ, ସେତେବେଳେ ସେ ଶାନ୍ତ ହୁଏ । ସେ ବୁଦ୍ଧିକୁ ମାର୍ଜିତ କରେ କିଏ ? ଯେ କରେ ସେ କଳା । (ପାଞ୍ଚ ମନ ପଚିଶ ପ୍ରକୃତି ବୋଲି ଗୋଟାଏ କଥା ଅଛି; ତେଣୁ ମନକୁ ମୁଁ ପ୍ରକୃତି ସଙ୍ଗରେ ଗ୍ରହଣ କରିନାହିଁ । )

ମନୁଷ୍ୟ ପ୍ରକୃତିକୁ ଚିହ୍ନିବାକୁ ଉଦ୍‌ବୁଦ୍ଧ ହୁଏ କଳା ସାହାଯ୍ୟରେ । କଳା ଦିଏ ତାକୁ ପ୍ରେରଣା । ଯେତେବେଳେ ମନୁଷ୍ୟ କଳାର ପ୍ରେରଣାରେ ପ୍ରକୃତିକୁ ଚିହ୍ନି ପାରେ, ସେତେବେଳେ ସେ ଆଉ କଳାର ଆବଶ୍ୟକତା ଅନୁଭବ କରେନା । କାରଣ କଳା ସାଧନ ପଥର ପାଥେୟ ମାତ୍ର, ଲକ୍ଷ୍ୟ ନୁହେଁ । ଅର୍ଥାତ୍ ଅବାସ୍ତବତା ବାସ୍ତବତାକୁ ପାଇବାର ଉପାୟ ମାତ୍ର । ମନୁଷ୍ୟ ବେଦର, ଉପନିଷଦ୍‌ର, ଗୀତାର ବିରାଟ ସତ୍ୟଗୁଡ଼ାକ ରୂପକ ଆକାରରେ ଜାଣିଲାପରେ ସେହି ପଥରେ ସେ ଯିବାକୁ ବ୍ରତୀ ହୁଏ । ବ୍ରତ ସମାପ୍ତ ହେଲେ ବ୍ରତର ଫଳ ସେହି ବାସ୍ତବତାକୁ ସେ ହୃଦୟଙ୍ଗମ କରେ । ସେତେବେଳେ ସେ ଆଉ ପଥିକ ନ ହୋଇ, ସଂସାରୀ ନ ହୋଇ ହୁଏ ମୁକ୍ତ, ନିର୍ଦ୍ୱନ୍ଦ୍ୱ । ମାନବ ନ ହୋଇ ହୁଏ ଅତିମାନବ । ଲକ୍ଷ୍ୟ ସ୍ଥଳରେ ପହଞ୍ଚିଲେ, ଅର୍ଥାତ୍ ପଥ ଶେଷ କଲେ, ଆଉ ପାଥେୟର ଆବଶ୍ୟକତା ହୁଏନା; ଅର୍ଥାତ୍ ପ୍ରକୃତିକୁ ଚିହ୍ନିଲେ, ଅନୁଭବ କଲେ

ଆଉ କଳାର ପ୍ରୟୋଜନୀୟତା ରହେନା । କିନ୍ତୁ ପ୍ରକୃତି ସଙ୍ଗେ ପରିଚିତ ପୁରୁଷ, ଲୋକ ସାଧାରଣଙ୍କୁ ପ୍ରକୃତି ସଙ୍ଗରେ ପରିଚୟ କରାଇବାକୁ କଳା ସୃଷ୍ଟି କରେ । ସେ କଳା ବିଶ୍ୱରେ ରାମାୟଣ, ମହାଭାରତ, ଉପନିଷଦ୍, ବେଦବେଦାନ୍ତ ନାମରେ ପ୍ରକାଶ ଲାଭ କରେ । ଏହା ହେଉଛି କଳାର ମୁଖ୍ୟ ଏବଂ ଶେଷ ଉଦ୍ଦେଶ୍ୟ । ଏଥିପାଇଁ କଳାବିଦ୍ ସାମାନ୍ୟ ମନୁଷ୍ୟ ନୁହେଁ—ସେ ଅସାଧାରଣ ମନୁଷ୍ୟ । ସେ ଆମର ମାନନୀୟ, ଆଦରଣୀୟ, କାରଣ ସେ ଯେ ବିଶ୍ୱର ଗୁରୁ ।

କଳାର ଗୋପନୀୟ ରହସ୍ୟକୁ ଯେ ବୁଝିଛି, ଆଉ ପ୍ରକୃତିର ଏହି ବିରାଟ ସତ୍ତାକୁ ଯେ ଉପଲବ୍ଧି କରିଛି, ସେ କଦାପି କଳାକୁ ପ୍ରକୃତିଠାରୁ (ପ୍ରକୃତି ଅର୍ଥରେ ଚେତନ ଆଉ ଜଡ଼, ଏହି ଦୁଇ ପ୍ରକୃତିକୁ ମୁଁ ଗ୍ରହଣ କରିଛି) ବିଚ୍ଛିନ୍ନ କରିବ ନାହିଁ । କଳା ଆଉ ପ୍ରକୃତିକୁ ସେ ସମଭାବରେ ଗ୍ରହଣ କରିବ । ସେତେବେଳେ ସେ କଳାକୁ ଆଉ ବିକୃତ ବା ବିକଳାଙ୍ଗ କରିବ ନାହିଁ । କଳାକୁ ଗ୍ରହଣ କରିବ କଳା ରୂପରେ, ପ୍ରକୃତିକୁ ଗ୍ରହଣ କରିବ ପ୍ରକୃତି ରୂପରେ, ଆଉ ବୁଝିବ—ଏ ଦୁହିଁଙ୍କର ସମ୍ବନ୍ଧ ଘନିଷ୍ଠ । ସେତେବେଳେ କଳାକାର ହେବ ତତ୍ତ୍ୱଦର୍ଶୀ ଆଉ ତତ୍ତ୍ୱଦର୍ଶୀ ହେବ କଳାକାର । ବାଲ୍ମୀକି ତତ୍ତ୍ୱଦର୍ଶୀ ଅଥଚ କଳାକାର ଶିଳ୍ପୀ । ବ୍ୟାସଦେବ ତତ୍ତ୍ୱଦର୍ଶୀ ଅଥଚ କଳାକାର, କଳାବିଦ୍ । ଉପନିଷଦ୍ ରଚୟିତା ଦାର୍ଶନିକ, ତତ୍ତ୍ୱଦର୍ଶୀ ଅଥଚ କଳାକାର, ଶିଳ୍ପୀ ।

ଦେବର୍ଷି ନାରଦ ତତ୍ତ୍ୱଦର୍ଶୀ । ସେ ପୁଣି ନାରଦୀୟ ସଙ୍ଗୀତର ସ୍ରଷ୍ଟା । ପିନାକପାଣି ରୁଦ୍ରଦେବ ବୀତରାଗ, ସନ୍ନ୍ୟାସୀ, ବ୍ରହ୍ମବେତ୍ତା । ସେ ପୁଣି ତାଣ୍ଡବ ନୃତ୍ୟର ଆବିଷ୍କାରକ । ଭଗବାନ ଶ୍ରୀକୃଷ୍ଣ ଯୋଗୀରାଜ, ଦାର୍ଶନିକ । ସେ ପୁଣି ବଂଶୀବାଦନ କଳାରେ ସିଦ୍ଧହସ୍ତ ।

ବିଶ୍ୱକର୍ମାର ସମସ୍ତ ସୃଷ୍ଟିର ରହସ୍ୟ ପ୍ରକୃତି ମଧ୍ୟରେ ହିଁ ନିହିତ । ଆଉ ସେହି ବିଶ୍ୱକର୍ମାର ଅମୃତ ସନ୍ତାନ ମାନବ କଳାରେ ହିଁ ତାର ସମସ୍ତ ଜୀବନର ରହସ୍ୟକୁ ରୂପ ଦିଏ । ବିଶ୍ୱକର୍ମା ଯେପରି କଳାବନ୍ତ, ମନୁଷ୍ୟ ମଧ୍ୟ ସେହିପରି କଳାବନ୍ତ । ତେଣୁ ମନୁଷ୍ୟ ବିଶ୍ୱକର୍ମାର ନିକଟତମ । ବିଶ୍ୱକର୍ମା ତାର (ମାନବର) ଗୁରୁଜନ – ବନ୍ଧୁ । ତେଣୁ କଳା ଯଦି କେବଳ ବହିର୍ମୁଖ ନ ହୋଇ ଅନ୍ତର୍ମୁଖ ହୁଏ, ତେବେ ମଙ୍ଗଳ । ଏହି ଉଦ୍ଦେଶ୍ୟକୁ ଲକ୍ଷ୍ୟ ରଖି ଭାରତୀୟ କଳାର ସୃଷ୍ଟି । ବିଶ୍ୱଗୁରୁ, କଳାବିଦ୍ ବିଶ୍ୱକର୍ମା ଭାରତୀୟ କଳାବିଦ୍‌କୁ ଆଶୀର୍ବାଦ କରନ୍ତୁ । ଯେପରି ସେ ଭାରତୀୟ ଆର୍ଷ କଳାବିଦ୍‌ଗଣଙ୍କ ପଥକୁ ଅନୁସରଣ କରେ ।

# ସୌନ୍ଦର୍ଯ୍ୟ ଓ କଳା

ସୌନ୍ଦର୍ଯ୍ୟ ଜୀବନର ଉତ୍ସ । ବିଶ୍ୱ ପ୍ରକୃତିରେ ଆନନ୍ଦର ସତ୍ତା ସୌନ୍ଦର୍ଯ୍ୟର ଚୟନ କୌଶଳରେ ଆତ୍ମପ୍ରକାଶ କଲେ ଜୀବଜଗତ୍ ମୋହିତ ହୁଏ । ଆନନ୍ଦରେ ପ୍ରତ୍ୟକ୍ଷାନୁଭୂତି ସୌନ୍ଦର୍ଯ୍ୟ ଅବଲମ୍ବନରେ ପ୍ରାଣକୁ ସ୍ପର୍ଶ କରେ । ଏ ସ୍ପର୍ଶଟିକ ଜୀବର ଆଦି ସୃଷ୍ଟିରୁ ଆଜ ପର୍ଯ୍ୟନ୍ତ ଲାଗି ରହିଛି ଓ ଏହାର କ୍ରମବିକାଶରେ ଜୀବନର ମହନୀୟତା ସଂଶ୍ଳିଷ୍ଟ ଅଛି । ଏକ ଦିଗରେ ଜୀବସୃଷ୍ଟିର ଅଶେଷ ଶ୍ରେଣୀ-ବିଭାଗ, ଅନ୍ୟ ଦିଗରେ ସୌନ୍ଦର୍ଯ୍ୟର ବିଭିନ୍ନ ସ୍ତର, ଲୌହ ଓ ଚୁମ୍ବକର ଆକର୍ଷଣ ପରି ପରସ୍ପର ପ୍ରତି ଆବଦ୍ଧ ରହିଛନ୍ତି । ଆକର୍ଷଣକୁ ଅନୁସରଣ କରି ଜୀବନର ଧାରାଟି ବହିଯାଉଛି ।

ସୌନ୍ଦର୍ଯ୍ୟର ଅଭିବ୍ୟକ୍ତି ପାଇଁ କଳାର ସୃଷ୍ଟି । ଜୀବନର ଉନ୍ନତ ବିକାଶ ସୌନ୍ଦର୍ଯ୍ୟର ଅବଦାନକୁ ନିଜସ୍ୱ କରି ଗୋଟାଏ ସ୍ୱତନ୍ତ୍ରତା ଲୋଡ଼େ ଓ ଏହି ସ୍ୱାତନ୍ତ୍ର୍ୟ ଯେନ ବିଭିନ୍ନ କଳାର ଉତ୍ପତ୍ତି ଘଟେ । ଜୀବନର ଉତ୍କର୍ଷରେ କଳା ପରିମାପ ସ୍ୱରୂପ ହୁଏ । ମାନବୀୟ ସଭ୍ୟତାର ଅତୀତ ଓ ବର୍ତ୍ତମାନ ଏହାରି ସାହାଯ୍ୟରେ ଏପରି ମୂର୍ତ୍ତିମନ୍ତ ହୋଇଉଠିଛି ଯେ, ଏହାକୁ ବାଦ୍ ଦେଲେ ମାନବ ଜୀବନର ସରସତା ରହେ ନାହିଁ । ଅଗଣିତ ଭଲମନ୍ଦ ପରିବର୍ତ୍ତନ ମଧ୍ୟରେ ସାଂସାରିକ ଜୀବନର ଅଳ୍ପତା ମନୁଷ୍ୟ ମନରେ ସ୍ୱତଃ ଗୋଟାଏ ନୈରାଶ୍ୟ ଆଣିଥାଏ । ଦୁଃସହ ଘଟଣାଚକ୍ରର ଆଘାତରେ କେତେ ସୁଖର ସଂସାର ଜଳ ବୁଦ୍‌ବୁଦ ପରି ମୁହୂର୍ତ୍ତକେ ଲିଭେଇଯାଏ । ପୁଣି ବିଷାଦ-କାଳିମାର କ୍ରୂର ଆବରଣ ଅପସାରିତ ହୋଇ ଅତୁଳନୀୟ ଐଶ୍ୱର୍ଯ୍ୟ ମନୁଷ୍ୟର ମନକୁ ଅଭିଭୂତ କରିଦିଏ । ବିପଦ ଓ ସମ୍ପଦ ଦୁଇଟିଯାକ କ୍ଷଣସ୍ଥାୟୀ । ଜୀବନର ପରିଧି ଏ ଦୁହିଁଙ୍କୁ କେବଳ ସ୍ପର୍ଶ କରି ଗତି କଲେ ତାର ଉନ୍ନତ ବିକାଶ ଜଣାପଡ଼େ ନାହିଁ । ଆଲୋକର ଆଧାରକୁ ଭୁଲିଯାଇ କେବଳ ଆଲୋକଟିକକ ପାଇ ଆତ୍ମବିସ୍ମୃତ ହେଲେ ଆଲୋକକୁ ଧରି ରଖିବାରେ କ୍ଷମତା ଆସେ ନାହିଁ । ମହତ୍ତ୍ୱର ପାର୍ଥକ୍ୟ ଏହି ଅଧିକାର ଶକ୍ତି ଉପରେ ପରିଲକ୍ଷିତ ହୁଏ, ସାଧାରଣ ସଂସାରୀର ଦୃଷ୍ଟିରେ ସଂକୀର୍ଣ୍ଣ ସୀମା ମଧ୍ୟରେ ରହିଯାଏ ବୋଲି ତାର ଯଥାର୍ଥ ଗତି ସେ ନିଜେ ଅବଧାରଣ କରିପାରେ ନାହିଁ । ବୃଥାରେ ଅସାରକୁ ସାର କରି ସେ ଗୋଟାଏ ବାହ୍ୟ ଆନନ୍ଦ ଅନୁଭବ କରେ । ଯେତେଦିନ ପର୍ଯ୍ୟନ୍ତ ମନୁଷ୍ୟ ସଂସାରର ନିଗଡ଼କୁ ଭାଙ୍ଗି ଦେଇ ତାର ଦୃଷ୍ଟିକୁ ବିସ୍ତୀର୍ଣ୍ଣ ନ କରିଛି, ସେତେଦିନ ପର୍ଯ୍ୟନ୍ତ ସେ ବାସ୍ତବ ଆନନ୍ଦର ଅଧିକାରୀ ହୋଇ ପାରିବ ନାହିଁ କିମ୍ବା ତାର ପ୍ରକୃତ ସୌନ୍ଦର୍ଯ୍ୟବୋଧ ଆସିବ ନାହିଁ । ସ୍ରୋତସ୍ୱିନୀ ବହିଯାଇ ଅନନ୍ତ ସାଗର ସଙ୍ଗମରେ ମିଶିଯିବା ପରିବର୍ତ୍ତେ ଯଦି ତପ୍ତ ମରୁଭୂମିରେ ନିଜକୁ ମିଶାଇ ଦିଏ, ତାହାହେଲେ ତାର ସ୍ରୋତସ୍ୱିନୀ ଆଖ୍ୟା ବୃଥା ହୋଇଯାଏ । ପ୍ରଚଣ୍ଡ ବାଲୁକାପ୍ରାନ୍ତରରେ ତାର ଗତି ନିମ୍ନଦେଶକୁ ଚାଲିଯାଏ—ରହିଯାଏ କେବଳ ଗୋଟାଏ ବିଭୀଷିକା—ଗୋଟାଏ ମହାଶୂନ୍ୟତାର କରାଳ ମୂର୍ତ୍ତି । ବର୍ତ୍ତମାନ ଦେଖାଯାଉ, ଜୀବନର ଗତିଟା କେଉଁଆଡ଼େ ? ସୌନ୍ଦର୍ଯ୍ୟର ଅବଦାନ ସମସ୍ତଙ୍କ ପାଇଁ ସମାନ ନୁହେଁ । ତେଣୁ ଉତ୍ସ ଏକ ହେଲେ ସୁଦ୍ଧା ପ୍ରବାହ ଏକ ହୁଏ ନାହିଁ । ଗୋଟାଏ ନଦୀ ନିଜକୁ ସାଗର ସଙ୍ଗମରେ ମିଶାଇଦେଲା, ଆଉ ଗୋଟାଏ ତପ୍ତ ବାଲୁକାଶଯ୍ୟାରେ ଆତ୍ମଗୋପନ କରି ରହିଲା । ଜୀବନଟା ମଧ୍ୟ ସେହିପରି । ସୌନ୍ଦର୍ଯ୍ୟର ପ୍ରଭାବ ଜୀବନକୁ ଯେ ସ୍ତରକୁ ନେଇଯାଏ, କଳାର ପ୍ରକାଶ ମଧ୍ୟ ତଦନୁଯାୟୀ ସ୍ମାରକ ସ୍ତମ୍ଭ ପରି ଜୀବନର ଗତିରେ ସୌନ୍ଦର୍ଯ୍ୟକୁ ଦେଖାଇଦିଏ । ଆଜି ପର୍ଯ୍ୟନ୍ତ ଜଗତରେ ଯେତେ ସଭ୍ୟତାର ଅଭ୍ୟୁଦୟ ହୋଇ ବିଲୟ ଘଟିଲାଣି, ସେ ସମସ୍ତଙ୍କୁ କଳା ସଂଯୋଜନା-ସୂତ୍ରରେ ଉଜ୍ଜୀବିତ କରି ରଖିପାରିଛି ।

ସୌନ୍ଦର୍ଯ୍ୟର ବିକ୍ଷିପ୍ତତାକୁ କଳା ଅଙ୍କନ କୌଶଳରେ ସଜାଇ ଦିଏ । କେବଳ ସଜାଇ ଦିଏ ନାହିଁ, ସୌନ୍ଦର୍ଯ୍ୟାନୁଭୂତି ପାଇଁ ପୃଥକ୍ ଧାରା ସବୁ ଖୋଲିଦିଏ । ଭିନ୍ନ ଭିନ୍ନ ଶ୍ରେଣୀର କଳାବିଦ୍‌ମାନଙ୍କର ସାଧନା ଏହି ଧାରାମାନଙ୍କ ଅବଲମ୍ବନରେ

ପୂର୍ଣ୍ଣତା ଆଡ଼କୁ ଗତି କରେ । ସୌନ୍ଦର୍ଯ୍ୟର ଚିତ୍ରଣକୁ ଯେ ଯେତେ ଜୀବନ୍ତ କରି ମନୁଷ୍ୟ ମନରେ ଦୀପ୍ତି ସଞ୍ଚର କରିପାରିଛି, ତାର ଆସନ ମାନବ ସମାଜରେ ସେତେ ବଡ଼ ହୋଇ ରହିଛି । ଅସଂଯତ ଭାବୋଚ୍ଛ୍ୱାସରେ ପ୍ରକୃତ କବିତାର ପରିଚୟ ମିଳେ ନାହିଁ । ହୃଦୟର ନିଭୃତ କନ୍ଦରରେ ଯେ ସ୍ପନ୍ଦନଟି ରହି ଅନାମୟ ପ୍ରେରଣା ବଳରେ ସୌନ୍ଦର୍ଯ୍ୟକୁ ରୂପଦାନ କରୁଛି, ତାହା ମଧ୍ୟ ସୌନ୍ଦର୍ଯ୍ୟଠାରୁ ବିଚ୍ଛିନ୍ନ ନୁହେଁ । ମହାକବି ବାଲ୍ମୀକିଙ୍କର ଅସାଧାରଣ ପ୍ରେରଣା-ନିଃସୃତ ଅମର କବିତାରେ ଏହାର ପ୍ରକାଶ ସ୍ପଷ୍ଟ ହୋଇ ରହିଛି । ମାନବ ଜୀବନର ଭିତ୍ତି ଉପରେ ସତ୍ୟ ଓ ସୌନ୍ଦର୍ଯ୍ୟର ସମନ୍ୱୟ ଅମର କବିଙ୍କର ଲଲକାରେ ଯେ ଅମୃତଧାରା ଖୋଲି ଦେଇଛି, ତାହା କଦାପି ଶୁଷ୍କ ହେବ ନାହିଁ । ଅଦ୍ଭୁତ ଶକ୍ତିସମ୍ପନ୍ନ ମହାକବି ଗ୍ରୀକୈଶ୍ୱର୍ଯ୍ୟଠାରୁ ଧନ କୃତ୍ତିବାସ ପର୍ଯ୍ୟନ୍ତ ସବୁ ଚିତ୍ରରେ ସୌନ୍ଦର୍ଯ୍ୟର ଏପରି ସ୍ପର୍ଶ ଲଗାଇ ଦେଇଛନ୍ତି ଯେ, ମନୁଷ୍ୟତ୍ୱର ପରିଣତି ଦେବତ୍ୱରେ ରହିଯାଇଛି ।

ଦେଶ ଓ କାଳଗତ ପାର୍ଥକ୍ୟରେ କଳାର ରୂପଭେଦ ସମ୍ପୂର୍ଣ୍ଣ ସ୍ୱାଭାବିକ । ଜୀବନର ପରିବର୍ତ୍ତନ-ଶୀଳତା ମଧ୍ୟ ଅନେକ ପରିମାଣରେ ତାକୁ ପ୍ରଭାବିତ କରିଥାଏ । ଦେଶ କିମ୍ବା ଜାତି ବିଶେଷର କଳା ଦୃଷ୍ଟିକୁ ଗୋଟାଏ ନିର୍ଦ୍ଦିଷ୍ଟ ଦିଗରେ ନିୟନ୍ତ୍ରଣ କଲାବେଳେ ମୌଳିକତା ଅକ୍ଷୁର୍ଣ୍ଣ ରହିବା ବାଞ୍ଛନୀୟ । ଆଜି ପ୍ରାଚ୍ୟ ଓ ପାଶ୍ଚାତ୍ୟର ମିଳନରେ ସତ୍ୟର ଯେଉଁ ଅବମାନନା ଘଟୁଛି, ସେଥିପାଇଁ ଏହି ନିୟନ୍ତ୍ରଣ ପ୍ରଥା ଦାୟୀ । ଶିକ୍ଷାଭିମାନୀ ଭାରତୀୟ କୃତ୍ରିମ ଆବରଣ ତଳେ ଜୀବନର ଯେ ସ୍ତରରେ ଆସି ପହଞ୍ଚିଲାଣି, ସେଠାରୁ ଆଉ ନିମ୍ନକୁ ସ୍ଖଳନ ହେଲେ ତାହାର ବିନାଶ ଅନିବାର୍ଯ୍ୟ । ଜୀବନର ଗତି ଗୋଟାଏ ଦିଗରେ ସ୍ୱଚ୍ଛନ୍ଦ୍ୟ ଲେଉଡ଼ିଲାବେଳେ, ଶିକ୍ଷା ଯଦି ତାକୁ ସାହାଯ୍ୟ କରିବା ପରିବର୍ତ୍ତେ ଦୁର୍ବଳ କରିଦିଏ, ତାହାହେଲେ ତାହା ଆଦୌ 'ଆର୍ଟ' ବା କଳା ନୁହେଁ । ଯେଉଁଠି ସତ୍ୟର ପ୍ରକାଶ ପ୍ରଚ୍ଛନ୍ନ, ସେଇଠି ସୌନ୍ଦର୍ଯ୍ୟର ବିକାଶ ମଳିନ ଓ ଜୀବନର ଗତି ବଡ଼ କ୍ଷୀଣ । ଆମ୍ଭମାନଙ୍କ ଦେଶରେ ଶିକ୍ଷା-ନିୟନ୍ତ୍ରଣ କଲାବେଳେ କେହି ଜୀବନର ପରିସ୍ଥିତିକୁ ଦେଖନ୍ତି ନାହିଁ । ଗୋଟିଏ କଳକୁ ଚଳାଇ କେତେଗୁଡ଼ିଏ ବାହ୍ୟ ସମାନତା ଥିବା ପଦାର୍ଥ ବାହାର କଲା ପରି ବିଦ୍ୟାଳୟରୁ କେତେଗୁଡ଼ିଏ ଲୋକ ବାହାରି ଆସିଲେ ଜାତୀୟ ଜୀବନର ପ୍ରକୃତ ବିନାଶ ଜଣାପଡ଼େ ନାହିଁ । ବ୍ୟକ୍ତିଗତ ଜୀବନର ଯେଉଁସବୁ ବିଶେଷତ୍ୱ ଥାଏ, ତାହା କଳା ଦୃଷ୍ଟିର ବାହାର ନୁହେଁ । ବିଶ୍ୱ ସୌନ୍ଦର୍ଯ୍ୟର ଲୀଳା ଭୂମିରେ କିଛି ହୀନ କିମ୍ବା ହେୟ ନୁହେଁ । କଳାହୀନ କର୍ମ ଓ ସୌନ୍ଦର୍ଯ୍ୟହୀନ ପ୍ରାଣ ସଂସାରରେ ବିରଳ ।

ଜୀବନର ଚଞ୍ଚଳ ଗତିରେ କଳା ବିଶିଷ୍ଟ ବେଷ୍ଟନୀ ମାନଙ୍କ ପାଇଁ ରେଖାପାତ କରିଦିଏ । ଏହାରି ଭିତରେ କବି, ଭାବୁକ, ଚିତ୍ରକର, ଶିଳ୍ପୀ ପ୍ରଭୃତି ସେମାନଙ୍କ ସାଧନାର କ୍ଷେତ୍ର ପ୍ରସ୍ତୁତ କରି ନିଅନ୍ତି । ସୌନ୍ଦର୍ଯ୍ୟର ଉତ୍ପତ୍ତି ଦୂରରେ ରହି କ୍ଷେତ୍ରର ଉତ୍କର୍ଷ ସମ୍ପାଦନ କରୁଥାଏ । ନିଦାଘ ପତ୍ର ଅନ୍ତରାଳରେ ମଳୟର ମର୍ମର ଶବ୍ଦ, ଜ୍ୟୋତ୍ସ୍ନାପ୍ଲାବନ ସଙ୍ଗେ ନୀରବ ନିଶୀଥିନୀର ସମାବେଶ, ଦୂର ପର୍ବତ ଗାତ୍ରରେ ଅସ୍ତଗାମୀ ରଶ୍ମିର କିରଣଛଟା, ନିସ୍ତବ୍ଧ ଅରଣ୍ୟାନୀରେ ନାନାଜାତୀୟ ପକ୍ଷୀମାନଙ୍କର ମିଶ୍ରିତ କଳତାନ, ଶାନ୍ତ ସମୀରଣରେ ଭାସି ଆସୁଥିବା ଦୂର ବିପଞ୍ଚିର ଅସ୍ପଷ୍ଟ ରାଗିଣୀ, ସୁନ୍ଦରୀର ସରଳ ଭାବର ସରସ ସ୍ଫୂର୍ତ୍ତି ଜୀବନରେ ମୁହୂର୍ତ୍ତିକ ପାଇଁ ସୌନ୍ଦର୍ଯ୍ୟର ଯେ ଉପାଦାନ ସମ୍ପାଦ ଦେଇଯାଏ; ସେଥିରେ କଳାର ଈପ୍ସିତ ବେଷ୍ଟନୀର ଗଠନ-ସାମଗ୍ରୀ ଯଥେଷ୍ଟ ଥାଏ । ସୌନ୍ଦର୍ଯ୍ୟର ଅମଳ ଇଙ୍ଗିତ ସବୁ କଳାବିତ୍‌ମାନଙ୍କ ପକ୍ଷେ ସମାନ ନୁହେଁ । ଜୀବନର ସ୍ୱାତନ୍ତ୍ର୍ୟ ଓ ବିକାଶ-ମାର୍ଗର ଭିନ୍ନତାକୁ ଘେନି ଏହା ବେଷ୍ଟନୀମାନଙ୍କୁ ଏପରି ଗଢ଼ିଦିଏ ଯେ, ଗୋଟାଏ ପାର୍ଥକ୍ୟ ସାଧାରଣତଃ ଦେଖା-ଯାଇଥାଏ । କବି, ଚିତ୍ରକର ଓ ଶିଳ୍ପୀ ଏକ ସୌନ୍ଦର୍ଯ୍ୟ ଉତ୍ସରୁ ଉପାଦାନ ଅପହରଣ କଲେ ସୁଦ୍ଧା ସେମାନଙ୍କର ପ୍ରକାଶ ପ୍ରଣାଳୀରେ ଭିନ୍ନତା ରହିଯାଏ । ଏହି ଭିନ୍ନତା ଆଦୌ ଅଯଥାର୍ଥ ନୁହେଁ । ବିଶ୍ୱ ସୌନ୍ଦର୍ଯ୍ୟର ବିଶ୍ୱ-ମୂର୍ତ୍ତି ଯଦି ଜଣେ କଳାବିତ୍ ଦ୍ୱାରା ଗୋଟିଏ ବିଶିଷ୍ଟ କାଳରେ, ପ୍ରକାଶିତ ହୋଇପାରନ୍ତା, ତାହାହେଲେ କଳା ସୃଷ୍ଟି ପାଇଁ ଆଉ ସ୍ଥାନ ରହନ୍ତା ନାହିଁ । କୌଣସି ବିଶିଷ୍ଟ କଳାର ଶ୍ରେଣୀ ଓ ଉପଶ୍ରେଣୀ ବିଭାଗ ଦେଖିଲେ ସହଜରେ ଅନୁଭୂତ ହେବ ଯେ, ସୌନ୍ଦର୍ଯ୍ୟର ବିଶାଳତାକୁ ସାଧାରଣତଃ ବ୍ୟାପକ ଭାବରେ ଗ୍ରହଣ କରିବାକୁ ସମସ୍ତେ ସମର୍ଥ ନୁହନ୍ତି, କଳାବିତ୍‌ର ସୌନ୍ଦର୍ଯ୍ୟାନୁଭୂତି ପାଇଁ କୌଣସି ନିର୍ଦ୍ଦିଷ୍ଟ ଧାରା ନାହିଁ ।

ଯାହାର ଯେପରି ଭାବରେ ବିଶ୍ୱ ସୌନ୍ଦର୍ଯ୍ୟକୁ ଦେଖିବାର ଶକ୍ତି ଅଛି ଓ ନିଜର ଅଙ୍କନ କୌଶଳରେ ସେ ସେହି ସୌନ୍ଦର୍ଯ୍ୟକୁ ରୂପଦାନ କରି ଗୋଟାଏ ନୂତନତ୍ୱ ଦେଖାଇ ପାରିଛି, ତାର କଳା-ସୃଷ୍ଟି ସେହି ପରିମାଣରେ ଜୀବନ୍ତ ଓ ସ୍ଥାୟୀ । କଳାକୁ ଶ୍ରେଣୀ ବିଭାଗ କରି ଶିକ୍ଷାଦାନର ଉପଯୋଗୀ କରାଯାଇପାରେ; କିନ୍ତୁ ସମୂହ ଭାବରେ ସୌନ୍ଦର୍ଯ୍ୟ ଉପଭୋଗ କରିବା ପାଇଁ କୌଣସି ନିର୍ଦ୍ଦିଷ୍ଟ କଳାର ଅନୁସୃତ ସବୁବେଳେ ପ୍ରଶସ୍ତ ବୋଧ ହୁଏ ନାହିଁ । ସାଧାରଣ ଜୀବନର ଧାରାବାହିକ ଗତିରେ ଏହାର ଅନୁଶୀଳନ ଜୀବନକୁ ଗୋଟାଏ ଗ୍ରନ୍ଥରେ ଗଣ୍ଠିଦିଏ; କିନ୍ତୁ ସୌନ୍ଦର୍ଯ୍ୟକୁ ଏପରି ସୀମାବଦ୍ଧ କରିବା ଦ୍ୱାରା ବିକାଶମାର୍ଗ ସଙ୍କୁଚିତ ହୋଇଯାଏ । ପ୍ରାଚୀନ କବିତା, ଚିତ୍ର ପ୍ରଭୃତିରେ ଗୋଟାଏ ସମାନତା ଥିଲା । ସେତେବେଳେ କଳାର ନିର୍ଦ୍ଦିଷ୍ଟ ସୀମାକୁ କେହି ଅତିକ୍ରମ କରୁ ନ ଥିଲେ ବୋଲି ଆଜି ନୂତନତ୍ୱ ପ୍ରଭାବରେ କଳାର ବୈଶିଷ୍ଟ୍ୟ ଗୋଟାଏ ଯୁଗାନ୍ତର ଆଣି ପାରିଛି । ସୌନ୍ଦର୍ଯ୍ୟର ଉପାଦାନ ସବୁଦିନେ ସମାନ ଭାବରେ ରହିଛି, କିନ୍ତୁ କଳାବିତ୍‌ର ନୂତନତ୍ୱ ସୃଷ୍ଟି ତାର ନିଜସ୍ୱ, ସୁତରାଂ ଜୀବନରେ ଚଞ୍ଚଳତାରେ ସେ ସୌନ୍ଦର୍ଯ୍ୟର ଯେଉଁ ଚିର ନୂତନ ସ୍ୱର୍ଣ୍ଣଟିକା ଲଗାଇ ଦେଇଯାଏ, ସେଥିପାଇଁ ସେ ଅମର ହୋଇ ରହେ ।

ସାଧାରଣ ସଂସାରୀ ଓ କଳାବିତ୍‌ର ବେଷ୍ଟନୀ ସମାନ ରହେ ନାହିଁ । ଏକ ପରିସ୍ଥିତିରେ ଦୁହିଁଙ୍କର ଜୀବନ ଗଠିତ ହେଲେ ସୁଦ୍ଧା ବିକାଶ ମାର୍ଗ ଦୁହିଁଙ୍କୁ ପୃଥକ୍ କରିଦିଏ । ଜଣଙ୍କର ଜଗତର ଜଡ଼ତା ସଙ୍ଗେ ଘନିଷ୍ଠତା ଓ ସେହି ସମ୍ପର୍କରେ ପ୍ରତ୍ୟକ୍ଷ ସୌନ୍ଦର୍ଯ୍ୟକୁ ଛାଡ଼ିଦେଇ କେବଳ କେତେଗୁଡ଼ିଏ କଳାର ତୀବ୍ର ନିୟମ ପାଳନରେ ଜୀବନର ସରସତା ଉପଲବ୍ଧି ଓ ଅପର ସୌନ୍ଦର୍ଯ୍ୟ ସଙ୍ଗେ ମିଶିଯାଇ ନିଜର ଆନନ୍ଦାନୁଭୂତିର ଏକ ଅପୂର୍ବ ଚିତ୍ର ପ୍ରକାଶ ସଂସାରରେ ଦୁଇଟି ବିଶିଷ୍ଟ ଧାରା ଖୋଲିଦିଏ । ଜୀବନଟା ଯେ ଗୋଟାଏ ପ୍ରକାଣ୍ଡ 'ଆର୍ଟ'ର ଅଭିବ୍ୟକ୍ତି, ଏହା ଯେପରି ସୌନ୍ଦର୍ଯ୍ୟଲିପ୍ସୁ କଳାବିତ୍ ବୁଝିପାରେ, ସାଧାରଣ ସଂସାରୀ ସେପରି ବୁଝେ ନାହିଁ । ଏକ ପକ୍ଷରେ ଜୀବନର ଦିନ କେତୋଟା ପାଇଁ ଅସ୍ଥାୟୀ ସ୍ଫୂର୍ତ୍ତି, ଅନ୍ୟ ପକ୍ଷରେ ଏକ ଅସୀମ ଶାନ୍ତ ସୌନ୍ଦର୍ଯ୍ୟରେ ଏହାର ପରିସମାପ୍ତି ଦୁହିଁଙ୍କୁ ଭୁଲାଇ ରଖିଛି । ଦୁହେଁ ସୌନ୍ଦର୍ଯ୍ୟର ଉପାସକ, କିନ୍ତୁ ପ୍ରକାର ଭେଦ ଯୋଗୁଁ ଜୀବନର ସମାନତା ରହେ ନାହିଁ । ପ୍ରତ୍ୟେକ ସଂସାରୀର କଳାଜ୍ଞାନ ଅଛି; କାରଣ ଯେତେ ସାମାନ୍ୟ ହେଉ ପଛକେ, ସେ ସୌନ୍ଦର୍ଯ୍ୟର ଅଧିକାରୀ । ନିରୂପିତ କଳାଦ୍ୱାରା ଜୀବନର ଗତିକୁ ନିୟନ୍ତ୍ରିତ କରିଦେଲେ ସୌନ୍ଦର୍ଯ୍ୟବୋଧ କମି ଆସେ; ରହିଯାଏ କେବଳ ଗୋଟାଏ ଶୁଷ୍କ କଳାର ବେଷ୍ଟନୀ । ପ୍ରକୃତ କଳାବିତ୍ ଏହାର ବହୁ ଦୂରରେ ରହେ । ଆଜିକାଲି ସଭ୍ୟତମ ଜାତିମାନଙ୍କ ମଧ୍ୟରେ ବୈଜ୍ଞାନିକ ଗବେଷଣାର ଆବରଣ ତଳେ ଏହି ବେଷ୍ଟନୀର ରୁକ୍ଷତା ବେଶ୍ ଅନୁଭୂତ ହେଲଣି । ସୌନ୍ଦର୍ଯ୍ୟକୁ ବାଦ୍ ଦେଇ କେବଳ କଳାକୁ ଅନୁସରଣ କଲେ କାୟାକୁ ଛାଡ଼ି ଛାୟାକୁ ଅନୁସରଣ କଲାପରି ହୁଏ, 'ଆର୍ଟ'ର 'ଟେକ୍‌ନିକ୍' ବା କଳା-କୌଶଳ-ଶିକ୍ଷା ଓ ସୌନ୍ଦର୍ଯ୍ୟବୋଧ ମଧ୍ୟରେ ଯଥେଷ୍ଟ ପାର୍ଥକ୍ୟ ଅଛି । ଦୁଇଟିଯାକ ଶ୍ରେଷ୍ଠ କଳାବିତ୍ ଅଧିକାରରେ ଥାଏ ।

ସୌନ୍ଦର୍ଯ୍ୟର ଅବଦାନ ବଡ଼ ଉଦାର । ଗ୍ରାହକର ସଙ୍କୀର୍ଣ୍ଣ ଦୃଷ୍ଟିରେ ଏହା ଅନେକ ସମୟରେ ଭ୍ରଷ୍ଟ ଦେଖାଯାଇଥାଏ । ମହତ୍ତ୍ୱକୁ ଘୃଣ୍ୟ ଆସନ ଅର୍ପଣ କରିବାରେ ଯେଉଁ ଅବମାନନା ଘଟେ, ସୌନ୍ଦର୍ଯ୍ୟରେ ଲୋଲୁପତାର ଛାୟାପାତ କଲେ ସେହିପରି ଅବିଚାର ହୁଏ । ଆସକ୍ତିପୂର୍ଣ୍ଣ କଦର୍ଯ୍ୟ ଲାଳସାର ତୃପ୍ତି ପାଇଁ ସୌନ୍ଦର୍ଯ୍ୟର ସୃଷ୍ଟି ହୋଇ ନାହିଁ । ଜୀବନର ମହନୀୟତା ଉପଲବ୍ଧି କରି ବାସ୍ତବତା ଆଡ଼କୁ ଯିବା ପାଇଁ ଏହା ଏକ ଅବଲମ୍ବନ ସ୍ୱରୂପ । ଅବଲମ୍ବନକୁ ଠିକ୍ ରୂପେ ଆଙ୍କି ନ ପାରିଲେ କଳାର ସାର୍ଥକତା ଜଣାପଡ଼େ ନାହିଁ । କଳାବିତ୍‌ର ବିଶେଷତ୍ୱ ଏହି ଅଙ୍କନ ପ୍ରଣାଳୀ ଉପରେ ସମ୍ପୂର୍ଣ୍ଣ ରୂପେ ନିର୍ଭର କରେ । ସୌନ୍ଦର୍ଯ୍ୟର ଉପଯୁକ୍ତ ବିଚାର କରି ତାକୁ ରୂପଦାନ କରିବା ଗୋଟାଏ ବିଷମ ସମସ୍ୟା । ଚିତ୍ରକରର ତୁଳୀ ସାମାନ୍ୟ ଟିକେ ଏଣେ ତେଣେ ହୋଇଗଲେ ଯେପରି ଚିତ୍ରର ସୁଶ୍ରୀ ନଷ୍ଟ ହୋଇଯାଏ, ସେହିପରି ଭାବର ଅଭିବ୍ୟକ୍ତିରେ ଚଞ୍ଚଳତା ଦେଖାଦେଲେ ବର୍ଣ୍ଣନା ଅସଙ୍ଗତ ହୁଏ । ଯାହା ଚିର ସୁନ୍ଦର, ତାହା ମଧ୍ୟ ଚିରନୂତନ । ସୌନ୍ଦର୍ଯ୍ୟକୁ ଆଙ୍କିଲାବେଳେ କଳାବିତ୍ କେବଳ ଗୋଟାଏ ନୂତନତ୍ୱ ଦେଖାଇଥାଏ, ସୌନ୍ଦର୍ଯ୍ୟର ଉପାଦାନକୁ ଗ୍ରହଣ କଲାବେଳେ କଳାବିତ୍‌ର ବିଶେଷ ସାବଧାନ ହେବା ଆବଶ୍ୟକ, କାରଣ ଅମୃତ ସଙ୍ଗେ ଗରଳ ବାହାରି ଆସିପାରେ । ଗରଳକୁ ପାନ କରିବା ପାଇଁ ଶିବଙ୍କ ପରି ଶକ୍ତିସମ୍ପନ୍ନ ନ ହେଲେ ଅମୃତର ଆସ୍ୱାଦନ କାହାରି ଅନୁଭୂତିକୁ ଆସିବ ନାହିଁ । ଯେତେବେଳେ କଳାବିତ୍ ଅନ୍ତରରେ ସ୍ୱାଧୀନ ସୌନ୍ଦର୍ଯ୍ୟ ବୋଧ ଆଣି ତାକୁ କଳାରେ ରୂପଦାନ କରେ, ତାକୁ ଯଦି ଲାଳସା ପରତନ୍ତ୍ର ହୋଇ ଆତ୍ମସାତ୍ କରେ, ତାହାହେଲେ ଦାନ

କରିବା ପାଇଁ ତାର କିଛୁ ରହେ ନାହିଁ । କଳାବିତ୍‌ର ନିଷ୍ଠା ଓ ମହତ୍ତ୍ୱ ତ୍ୟାଗରେ ସମୁଜ୍ଜ୍ୱଳ ହୋଇ ରହେ । ଅନ୍ତରର ବୁଭୁକ୍ଷାରେ ସୌନ୍ଦର୍ଯ୍ୟର ପ୍ରକୃତ ଚିତ୍ରଣ ସମ୍ଭବ ହୁଏ ନାହିଁ, ସୁନ୍ଦରୀର ସରସ ଭାବକୁ କାମୁକ ବାସ୍ତବ ଚିତ୍ରରେ ଦେଖାଇ ପାରେ ନାହିଁ । କନକ-ବରଣୀର ଶିରୀଷକୋମଳ ଅଙ୍ଗଲତା ମାଳତୀକୁଞ୍ଜର ଅନ୍ତରାଳରେ ମିଶିଯାଇ ଜ୍ୟୋତ୍ସ୍ନା-ସ୍ନାତ ନୀରବ ରଜନୀର ଏକ ଅନୁପମ ସମ୍ପଦ ଦେଖାଇ ଦେଲାବେଳେ କଳାବିତ୍‌ର ଅନ୍ତର ଯେଉଁ ଆଲୋଡ଼ନ ସୃଷ୍ଟି କରେ, ତାହା ଯୁଗାନ୍ତର ପାଇଁ କଳାର କୋମଳ ସ୍ତର ସଞ୍ଚୟ କରେ । ଭାବର ଗମ୍ଭୀରତା ଓ ଶୁଦ୍ଧତା ସୌନ୍ଦର୍ଯ୍ୟ-ଚିତ୍ରଣର ପ୍ରଧାନ ଭିତ୍ତିଭୂମି । କଳାବିତ୍ ଏହାରି ଉପରେ ତାର ଅଙ୍କନର ବାସ୍ତବତା ଦେଖାଇବାକୁ ସମର୍ଥ ହୁଏ ।

କଳାର ଉନ୍ନତ ସ୍ତରରେ ସୌନ୍ଦର୍ଯ୍ୟର ସ୍ଫୂର୍ତ୍ତି ବଡ଼ ସ୍ପଷ୍ଟ ଓ କୋମଳ ହୋଇ ରହେ । ପ୍ରଣୟର ପବିତ୍ର ଚିତ୍ରଣ ପାଇଁ ଏହା ପ୍ରଶସ୍ତ । ଜୀବନର ସରସତା ମଧୁର ପ୍ରଣୟକୁ ଛାଡ଼ିଦେଲେ ଅନ୍ୟ କୌଣସି ଅବଲମ୍ବନରେ ଏପରି ଜଣାପଡ଼େ ନାହିଁ । ସୌନ୍ଦର୍ଯ୍ୟର ତୀବ୍ର ଅନୁଭୂତିରେ କ୍ଷିପ୍ର ଯୌବନର ଉଦ୍ଦାମ ପ୍ରେରଣା ଜୀବନକୁ ଚଞ୍ଚଳ କରି ନେଲାବେଳେ ପ୍ରଣୟ ଆସି ବାଧା ଦିଏ । ପ୍ରଣୟର ବାଧାଟା ଗୋଟାଏ ଆଡ଼କୁ ଆସେ ନାହିଁ । ଯେଉଁଠି ଦୁଇଟି ଭାବପ୍ରବାହ ଥରେ ଉଚ୍ଛ୍ୱସିତ ହୋଇ ମିଶିଯିବା ବେଳେ ଆଉ ଗୋଟିଏ ଭାବର ପ୍ଲାବନ ଆସି ସେହି ସଙ୍ଗମରେ ଆଘାତ ଦେଇ ଚାଲିଯାଏ, ସେହିଠି ଜୀବନର ସରଳଗତି ବ୍ୟବଧାନ ପୂର୍ଣ୍ଣ ବକ୍ରତାକୁ ଅନୁସରଣ କରେ । ଏହି ବ୍ୟବଧାନ ଉପରେ ଜୀବନର ବାସ୍ତବତା ଅନେକ ସମୟରେ ନିରୂପିତ ହୋଇଯାଏ । ସୌନ୍ଦର୍ଯ୍ୟର ଅନୁସୃତିରେ ଜୀବନର ଗତି ନିୟନ୍ତ୍ରଣ କଲାବେଳେ ବ୍ୟବଧାନ ଗୋଟାଏ ଅସାଧାରଣ ଆବରଣ ତଳେ ଆସେ । ଜୀବନର ସୌନ୍ଦର୍ଯ୍ୟସ୍ରୋତ ଉଚ୍ଛ୍ୱସିତ ହୋଇ ଶାନ୍ତ ଅବସ୍ଥାକୁ ଆସିଲାବେଳେ ଯଦି ଆଉ ଗୋଟାଏ ସୌନ୍ଦର୍ଯ୍ୟର ଢେଉ ଆସି ଖେଳିଯାଏ, ତାହାହେଲେ ଜୀବନର ଗତିଟା ସାଧାରଣ ସୀମାକୁ ଅତିକ୍ରମ କରି ଚାଲିଯାଏ— ରଖିଦେଇଯାଏ ଗୋଟାଏ ପ୍ରକାଣ୍ଡ ଅଭିବ୍ୟକ୍ତିର ବ୍ୟବଧାନ । ଏହି ବ୍ୟବଧାନକୁ କଳି ନପାରି କେତେ ସୁଖର ଜୀବନ ମଉଳିଯାଏ । ଐଶ୍ୱର୍ଯ୍ୟର ମୋହ ସୁଦ୍ଧା ଏହାକୁ ଲୋପ କରିପାରେ ନାହିଁ । ଜୀବନର ଅଭିବ୍ୟକ୍ତି ପାଇଁ ସାଂସାରିକ ଆୟୁକାଳ ଅତି ଅଳ୍ପ; କିନ୍ତୁ ସୌନ୍ଦର୍ଯ୍ୟ ସ୍ପର୍ଶରେ କଳାର ବିଶାଳତା ଦେଖିଲେ କାଳର ଅଳ୍ପତା ଘୁଞ୍ଚିଯାଏ; ରହିଯାଏ କେବଳ ସୌନ୍ଦର୍ଯ୍ୟର ଏକ ଅପୂର୍ବ ଚିତ୍ର । କାଳର ଅମୂଲ୍ୟ ସମ୍ପଦ ପ୍ରଣୟର ପ୍ରତ୍ୟାବାସରେ ଚିରଦିନ ବିଭବଶାଳୀ ହୋଇ ରହେ ।

ସତ୍ୟ ସୌନ୍ଦର୍ଯ୍ୟର ସତ୍ତାକୁ ସବୁବେଳେ ପ୍ରମାଣ କରେ । କଳା ସେହି ପ୍ରମାଣମାନଙ୍କୁ ଲିପିବଦ୍ଧ କରେ । କଳାର ସ୍ଥାୟିତ୍ୱ ଓ ମହତ୍ତ୍ୱ ସୌନ୍ଦର୍ଯ୍ୟର ପ୍ରକୃତ ବିକାଶ ଉପରେ ନିର୍ଭର କରେ । ଜୀବନର ଗତି ଯେଉଁଠି ସଙ୍କୁଚିତ, ସୌନ୍ଦର୍ଯ୍ୟର ବିକାଶ ସେଇଠି କ୍ଷୀଣ । ସାଂସାରିକ ଜଟିଳ ଜୀବନର ଧାରାବାହିକ ଗତିରେ ଯେ ବକ୍ରତା ଦେଖାଯାଏ, ତାହାର ସୌନ୍ଦର୍ଯ୍ୟ ସଙ୍ଗେ କୌଣସି ସମ୍ପର୍କ ରହେ ନାହିଁ । ସୌନ୍ଦର୍ଯ୍ୟବୋଧ ନ ଆଣି ଜୀବନକୁ କଳା ବେଷ୍ଟନୀରେ ଆବଦ୍ଧ କରି ରଖିବା ଦ୍ୱାରା ଗୋଟାଏ ଗଡ଼ୁଲିକା ପ୍ରବାହର ଉତ୍ପତ୍ତି ଘଟେ । ଏହି ପ୍ରବାହରେ ସତ୍ୟର ସନ୍ଧାନ ସହଜ ହୁଏ ନାହିଁ । ବଂଶ, ଜାତି, ଦେଶ ଓ କାଳଗତ ପାର୍ଥକ୍ୟ କଳାକୁ ଭିନ୍ନ ଭିନ୍ନ ରୂପ ଦାନ କଲେ ସୁଦ୍ଧା ସୌନ୍ଦର୍ଯ୍ୟର ଚିତ୍ରଣ ଚିରନ୍ତନ ହୋଇ ରହିବ । ପୁରାଣ ବର୍ଣ୍ଣିତ ଶ୍ୱେତପଦ୍ମାସୀନା ଲକ୍ଷ୍ମୀ, ତପୋନିରତା ଗିରିଜାନନ୍ଦିନୀ ପାର୍ବତୀ ଓ ଜ୍ଞାନଭକ୍ତିଦାୟିନୀ ସରସ୍ୱତୀ ସୌନ୍ଦର୍ଯ୍ୟର ବିରାଟ ରୂପକ ହୋଇ କଳାକୁ ଅତି ଅସାଧାରଣ ଭାବରେ ମୂର୍ତ୍ତିମତୀ କରି ଦେଇଛନ୍ତି । ଐଶ୍ୱର୍ଯ୍ୟର ଅଧୀଶ୍ୱରୀ ଦେବୀ ପଦ୍ମାସୀନା ଅନାସକ୍ତ ସୌନ୍ଦର୍ଯ୍ୟର ପ୍ରତୀକ ରୂପେ ଜୀବନର ଯେଉଁ ଉନ୍ନତ ସୋପାନ ଖୋଲି ଦେଇଛନ୍ତି, ତାଙ୍କୁ ପାର୍ବତୀଙ୍କ କଠୋର ତପଶ୍ଚର୍ଯ୍ୟା ତ୍ୟାଗର ଚରମ ନିଷ୍ଠାରେ ଅଧିକ ସମୁଜ୍ଜ୍ୱଳ କରିଦେଇଛି । ଏକପକ୍ଷରେ ଅନାସକ୍ତ ଭୋଗର ଚରମ ସୀମା ଓ ଅନ୍ୟ ପକ୍ଷରେ ତ୍ୟାଗରେ ସତ୍ୟ ଓ ସୌନ୍ଦର୍ଯ୍ୟର ଅମର ବିକାଶ ବୀଣାପାଣିଙ୍କ ବିପଞ୍ଚୀରେ ଯେଉଁ ଯେଉଁ ଅମୃତ ରାଗିଣୀ ତୋଳି ଦେଇ ଯାଇଛି, ତାକୁ କଳା କଦାପି ବିସ୍ମୃତ ହେବ ନାହିଁ । କଳାବିତ୍‌ର ସାଧନା ସୌନ୍ଦର୍ଯ୍ୟ ଅବଲମ୍ବନରେ ଯେତେବେଳେ ପବିତ୍ରତା ଆଡ଼କୁ ଗତି କରେ, ସେତେବେଳେ ଏହି ତ୍ରିମୂର୍ତ୍ତିଙ୍କର ମହୀୟସୀ ଶକ୍ତି ତା ଅନ୍ତରରେ ଜାଗ୍ରତ ହୋଇ ଉଠେ । କଳାର କୋମଳ ସ୍ତରରୁ ସତ୍ୟ ଓ ସୌନ୍ଦର୍ଯ୍ୟର ସମନ୍ୱୟ ଜୀବନ୍ତ ବିଗ୍ରହ ରୂପେ ତାକୁ ଅଗ୍ରସର ହେବାକୁ ଇଙ୍ଗିତ ଦିଏ । କଳାର ବାସ୍ତବତା ଆସି ସୌନ୍ଦର୍ଯ୍ୟର ଅସୀମତାରେ ଗୋଟାଏ ଚିରନୂତନ ମୁକ୍ତଦ୍ୱାର ଖୋଲାଇ ଦେଇ ଅତୀତ ଓ ବର୍ତ୍ତମାନର ଦୂରତ୍ୱକୁ ଲଙ୍ଘାଇଦିଏ ।

ସୌନ୍ଦର୍ଯ୍ୟର ଆତ୍ମା ଏକ । କଳା-ବିଭ୍ରାଟ ଅନେକ ସମୟରେ ସତ୍ୟର ଅପଳାପ ଘଟାଇ ଏହି ଆତ୍ମାକୁ ବଡ଼ ଅସ୍ପଷ୍ଟ କରିଦିଏ । ଯୁଗଯୁଗ ବ୍ୟାପୀ ଗୋଟାଏ କାଳିମା ଜୀବନର ଗତିକୁ ଢାଙ୍କି ରଖେ । ସୌନ୍ଦର୍ଯ୍ୟବୋଧ ସଙ୍ଗେ ସତ୍ୟର ବିଳୟ ଘଟିଲେ ଜୀବନର ଉତ୍କୃଷ୍ଟ ସୋପାନଟା ପଙ୍ଗୁ ରହେ । ଏପରି ପରିସ୍ଥିତିରେ ଜାତୀୟ ଜୀବନର ଉତ୍କର୍ଷ ମଧ୍ୟ କଳା ସାହାଯ୍ୟରେ ସାଧିତ ହୋଇପାରେ ନାହିଁ । ଚିରଦିନ ଜାତୀୟ ଜୀବନର ଗତି ବୃଥାରେ ବହିଯାଏ ନାହିଁ । ବାଧାଗ୍ରସ୍ତ ସ୍ରୋତସ୍ୱିନୀର ଉତ୍ତୁଙ୍ଗ ଆକାର ପରି ଏପରି ଗୋଟାଏ ଉଚ୍ଛ୍ୱାସ ଆସେ, ଯାହା ସବୁ କୃତ୍ରିମ ବାଧା ଏଡ଼ିଦେଇ ପୁଣି ସତ୍ୟ ଓ ସୌନ୍ଦର୍ଯ୍ୟର ବିକାଶକୁ ସ୍ପଷ୍ଟ କରିଦିଏ । ଜାତି ଜାଗ୍ରତ ହୁଏ, ଅତୀତର କଳା-ସୌନ୍ଦର୍ଯ୍ୟକୁ ଅବଲମ୍ବନ କରି ନୂତନ କଳା ସୃଷ୍ଟି କରେ । ସତ୍ୟର ଭିତ୍ତିଭୂମିରେ ପ୍ରତିଷ୍ଠିତ କଳା ସୌନ୍ଦର୍ଯ୍ୟର ଆତ୍ମାଟିକୁ ଚିରଦିନ ସମ୍ପାଦ ରଖିଥାଏ ଓ ସହସ୍ର ବାଧା ଆସିଲେ ସୁଦ୍ଧା ତାହା ପୁଣି ଦୀପ୍ତି ପ୍ରକାଶ କରେ ।

ସୌନ୍ଦର୍ଯ୍ୟ ଓ କଳାର ଭିନ୍ନତା ଲୋପ ପାଇଗଲେ ଜୀବନର ବିରାଟ ଛନ୍ଦରେ କୌଣସି ବିସୁରା ରାଗିଣୀ ବାଜେ ନାହିଁ । ଜୀବନର କଳାକୁ ଜୀବ ଭଲ ଭାବରେ ଉପଲବ୍ଧି କରିପାରୁଥିଲେ ଜଗତରେ ଏତେ ଉପଦ୍ରବ ଘଟନ୍ତା ନାହିଁ । ଜୀବନର 'ଆର୍ଟ'କୁ ଯେ ଯେତେ ପରିମାଣରେ ଆନନ୍ଦ ଅନୁଭବ କରିବା ପାଇଁ ସୌନ୍ଦର୍ଯ୍ୟ ଆହରଣରେ ଲଗାଇ ଦିଏ, ତାର ଗତି ସେତେ ଉନ୍ନତ ହୋଇ ରହେ । ସୌନ୍ଦର୍ଯ୍ୟର ଉପଭୋଗରେ କଳାର ବିକାଶ ଦେଖାଇବାକୁ ଯାଇ କଳାବିତ୍ ନିଜର ଦୁର୍ବଳତା ରଖେ ନାହିଁ । ଜୀବନରେ ସୌନ୍ଦର୍ଯ୍ୟର ଅନୁଭୂତି ପାଇଁ କଳାର ଯେତେଗୁଡ଼ିଏ ମାର୍ଗ ନିର୍ମିତ ଅଛି, ସେଥିମଧ୍ୟରେ ପ୍ରେମର ଚିହ୍ନଣଟା ସବୁଠାରୁ ସୁନ୍ଦର, ସରଳ ଓ ମର୍ମସ୍ପର୍ଶୀ ବୋଧହୁଏ । ଅବଶ୍ୟ ପ୍ରେମର ବ୍ୟାପକତାରେ ଜ୍ଞାନ ଓ ଭକ୍ତିର ପୃଥକତ୍ୱ ରହି ନ ପାରେ; କିନ୍ତୁ କଳାକୁ ଏକଦେଶଦର୍ଶୀ କରିବା ଦ୍ୱାରା ସୌନ୍ଦର୍ଯ୍ୟର ପୂର୍ଣ୍ଣତା ଆସେ ନାହିଁ । ଯେ କଳା ଦେଶ ଓ କାଳକୁ ଅତିକ୍ରମ କରି ନପାରେ, ତାର ସ୍ଥାୟିତ୍ୱ ସଂସାରରେ ବେଶୀଦିନ ରହେ ନାହିଁ । ପ୍ରେମର ସୌନ୍ଦର୍ଯ୍ୟ ଓ କଳାର ଦ୍ୱୈତଭାବ ରହେ ନାହିଁ । ସୌନ୍ଦର୍ଯ୍ୟ ଓ କଳାକୁ ପ୍ରେମର ଅମୃତ ଝଙ୍କାର ଏକ କରିଦିଏ । ଏହାର ପବିତ୍ର ଉଚ୍ଛ୍ୱାସରେ ଜୀବନର ଜଟିଳ ବାଧା ସବୁ ଏକ ହୋଇଯାଏ ।

ସୌନ୍ଦର୍ଯ୍ୟ ଓ କଳା ଜୀବନର ବାସ୍ତବ ବିକାଶ ଦେଖାଏ । ଏ ଦୃଷ୍ଟିକୁ ଉପେକ୍ଷା କଲେ ଜୀବନରେ ଅଗ୍ରଗତିର ସୂଚନା ମିଳେ ନାହିଁ, ଜୀବନର ଚରମ ପରିଣତି ଆତ୍ମାନୁଭୂତି । କଳାର ବେଷ୍ଟନୀ ମଧ୍ୟରୁ ସୌନ୍ଦର୍ଯ୍ୟର ଚିହ୍ନଣ ଯେତେବେଳେ ଏକ ଅନାମେୟ ଅସୀମତା ଆଡ଼କୁ ଚାଲିଯାଏ ଓ ଜୀବନର ମୁକ୍ତତା ତାହାର ସଙ୍ଗେ ଖୋଲିଦିଏ, ସେତେବେଳେ କଳାର ସାର୍ଥକତା ଆସେ । ଧର୍ମ, ବିଜ୍ଞାନ, ସାହିତ୍ୟ ପ୍ରଭୃତି ବିଶିଷ୍ଟ କଳାତ୍ମକ ମାନବ ଜାତିର ସଭ୍ୟତାକୁ ଆଦିମ ଯୁଗରୁ ନିୟନ୍ତ୍ରିତ କରି ଆସିଲାଣି । ଜୀବନର ବିକାଶ ବିଶ୍ୱ-ପ୍ରକୃତି ସହିତ ସଂଶ୍ଳିଷ୍ଟ ଥିବାରୁ ସୌନ୍ଦର୍ଯ୍ୟର ଚିହ୍ନଣରେ କଳାର ଉତ୍କର୍ଷ ମାନବପ୍ରାଣକୁ ଚିରଦିନ ଆକର୍ଷଣ କରି ରଖେ । ଜୀବନରୁ ସୌନ୍ଦର୍ଯ୍ୟ ଓ କଳାକୁ ବାଦ୍ ଦେଲେ ଆତ୍ମବିକାଶର ପଥ ରୁଦ୍ଧ ହୋଇ ଗୋଟାଏ ଶୁଷ୍କତାର ଅନ୍ତରାଳରେ ତାର ଗତି ମିଶିଯାଏ । ଜୀବନ ଶୂନ୍ୟତାରୁ ଆସି ସେହି ଶୂନ୍ୟତା ରଖି ଚାଲିଯାଏ; ବାସ୍ତବତାର ଅନୁଭୂତି ସୁଦ୍ଧା ମିଳେ ନାହିଁ ।

# ଜୀବନ ଓ ଆକାଂକ୍ଷା

ଜୀବନର ଅଶେଷ ପ୍ରକାର ଗତି ଓ ପରିଣତି ମଧ୍ୟରେ ଗୋଟାଏ ଆକର୍ଷଣ ଅଛି । ଏହାକୁ ବାଦ୍ ଦେଇ ଦେଖିଲେ ଜୀବନର କୌଣସି ମହତ୍ତ୍ୱ ଜଣାପଡ଼େ ନାହିଁ । ଆକର୍ଷଣର ଅଭିବ୍ୟକ୍ତିରୁ ଆକାଂକ୍ଷାର ଉତ୍ପତ୍ତି କର୍ମଜଗତକୁ ସର୍ବଦା ଉଦ୍‌ବୁଦ୍ଧ କରି ରଖିଛି । କର୍ମଧାରାର ବୈଚିତ୍ର୍ୟ ବିଧାନରେ ଜୀବନର ସ୍ୱାଚ୍ଛନ୍ଦ୍ୟ କେବଳ ଆକାଂକ୍ଷାକୁ ଅନୁସରଣ କରୁଥାଏ । ଜୀବନକୁ ଯଦି ଏହି ବିରାଟ ଶକ୍ତିର ସାମାନ୍ୟ ସ୍ପନ୍ଦନ ବୋଲି ମନେ କରାଯାଏ, ତାହାହେଲେ ଆକର୍ଷଣ ହେବ ସେହି ସ୍ପନ୍ଦନର ଏକ ବ୍ୟାପକ କ୍ରିୟା, ଯାହାର ପରିସମାପ୍ତି ପାଇଁ କୌଣସି ସୀମାର ନିର୍ଦ୍ଦେଶ ନାହିଁ । ଜୀବନ ଆଗରେ ଆକର୍ଷଣ ରହିଛି । ଯେତେବେଳେ ଏହା ବନ୍ଦ ହୋଇଯିବ, ସେତେବେଳେ ଜୀବନର ବିକାଶ ଅବସ୍ଥା ଆଉ ଆସିବ ନାହିଁ । ଆକର୍ଷଣ ହିଁ ଦେଖାଇ ଦେଉଛି ଯେ ଜୀବନଟା ବସ୍ତୁ ଜଗତର ସୀମା ମଧ୍ୟରେ ଆବଦ୍ଧ ନୁହେଁ । ଜୀବନର ଗତି ଅନନ୍ତ ନ ହୋଇ ପାରେ, କିନ୍ତୁ ଏହା ପରିମିତ ସାଧାରଣ ଆୟୁକାଳ ମଧ୍ୟରେ ଶେଷ ହୋଇଯାଏ ନାହିଁ ।

ସମସ୍ତଙ୍କର ଆକାଂକ୍ଷା ସମାନ ହୁଏ ନାହିଁ । ଜୀବନର ବ୍ୟାପକତା ଯେ ଯେପରି ଅନୁଭବ କରେ, ତାର ଆକାଂକ୍ଷା ମଧ୍ୟ ସେହିପରି ଉନ୍ନତ ବୋଲି ବିବେଚିତ ହୁଏ । ସାଧାରଣ ଲୋକର ଆକାଂକ୍ଷାରେ କୌଣସି ବିଶେଷତ୍ୱ ନ ଥାଏ; କାରଣ ତା ଜୀବନରେ ଆକର୍ଷଣ ବେଶୀ ବ୍ୟାପକ ନୁହେଁ । ଜଣେ ଦୂରଦୃଷ୍ଟିସମ୍ପନ୍ନ ରାଜନୀତିଜ୍ଞ କିମ୍ବା ମନସ୍ୱୀ ବୈଜ୍ଞାନିକ ଜୀବନର ଏକ ଉନ୍ନତ ସ୍ତରରେ ପହଞ୍ଚି ତାଙ୍କର ଆକାଂକ୍ଷାର ଯେଉଁ ସଫଳତା ଦେଖାନ୍ତି, ତାହା ସାଧାରଣ ବିଷୟବାନ୍ ଲୋକର ଧାରଣାକୁ ସୁଦ୍ଧା ଆସେ ନାହିଁ । ଆକାଂକ୍ଷାର ତାରତମ୍ୟ ଅନୁସାରେ ଉଚ୍ଚ କିମ୍ବା ନୀଚ କର୍ମଧାରାର ଉତ୍ପତ୍ତି ସଙ୍ଗେ କର୍ମୀମାନଙ୍କର ସ୍ୱତଃ ଶ୍ରେଣୀ ବିଭାଗ ହୋଇଯାଏ । କ୍ଷୁଦ୍ର ଆକାଂକ୍ଷାମାନଙ୍କର ଫଳପ୍ରାପ୍ତିରେ ଜୀବନର ସବୁ ଉତ୍ସାହ ବ୍ୟୟିତ ହୋଇଗଲେ ମନୁଷ୍ୟର ଦୃଷ୍ଟି ରେଖା ବେଶୀ ଦୂରକୁ ଯାଇପାରେ ନାହିଁ । ମାନବିକତାର ଉନ୍ନତ ବିକାଶ ସାମାନ୍ୟ ବସ୍ତୁ ମୋହରେ ଆବଦ୍ଧ ଆକାଂକ୍ଷାରେ ସମ୍ଭବ ହୁଏ ନାହିଁ । ଜୀବନର ପ୍ରକୃତ ଅଭାବ ଅନୁଭବ ନ କରିବା ପର୍ଯ୍ୟନ୍ତ ଏହାର ଗତି ଓ ପରିଣତି ସମ୍ପର୍କରେ ମନୁଷ୍ୟ ଆକର୍ଷଣର ପ୍ରଭାବକୁ ବୁଝିପାରେ ନାହିଁ ।

ପାରିପାର୍ଶ୍ୱିକ ଅବସ୍ଥାର ପ୍ରଭାବରେ ପଡ଼ି ଅନେକ ସମୟରେ ମନୁଷ୍ୟ କେତେକ ଆକାଂକ୍ଷା ମନରେ ପୋଷଣ କରେ । ସେଗୁଡ଼ିକ ସଫଳ ନ ହେଲେ ଗୋଟାଏ ନିରୁତ୍ସାହ ଭାବ ତା ମନକୁ ଗ୍ରାସ କରେ । ନିଜ ଜୀବନର ଗତିକୁ ଲକ୍ଷ୍ୟ ନ ରଖି କେବଳ ବାହ୍ୟ ଉତ୍ତେଜନାର ବଶବର୍ତ୍ତୀ ହୋଇ ଯେଉଁ ଆକାଂକ୍ଷା ପୋଷଣ କରାଯାଏ, ତାହାର କୌଣସି ଭିତ୍ତି ନ ଥାଏ । କିଛି ସମୟ ପାଇଁ ଗୋଟାଏ ଆକାଂକ୍ଷା ହୃଦୟକୁ ପୂର୍ଣ୍ଣମାତ୍ରାରେ ଅଧିକାର କରି ଚାଲିଯାଇପାରେ । ଏହାର ସଫଳତା କିମ୍ବା ବିଫଳତା ଜୀବନର ଗୋଟାଏ ସ୍ୱତନ୍ତ୍ର ଅଧ୍ୟାୟ ଖୋଲି ଦେଇପାରେ; କିନ୍ତୁ ଏହା ସମସ୍ତ ଜୀବନର ପରିମାପ ନୁହେଁ । ଆକାଂକ୍ଷାର ସଫଳତା ସଙ୍ଗେ ଜୀବନର ସରସତା ସମ୍ବର୍ଦ୍ଧନ ପାଇଁ ଜଡ଼ିତ ରହେନାହିଁ । ଅବସ୍ଥାର ପରିବର୍ତ୍ତନ ଆକାଂକ୍ଷାକୁ ପ୍ରଭାବିତ କରିଥାଏ । ଘଟନାଚକ୍ରରେ ପଡ଼ି ମନୁଷ୍ୟ ବର୍ତ୍ତମାନ ଯାହା ପାଇବାକୁ ଏକାନ୍ତ ଇଚ୍ଛା କରୁଛି, ପୁଣି ସମୟ ଆସିଲେ ସେଥିରୁ ବଞ୍ଚିତ ହେବାପାଇଁ ଆକାଂକ୍ଷିତ ହୁଏ । ଜୀବନର ପ୍ରତ୍ୟେକ ଘଟନା ପଛରେ ଆକାଂକ୍ଷାର ପ୍ରଭାବ ଥାଏ । ମନୁଷ୍ୟ ଅଧିକାଂଶ ସମୟରେ ଏହା ଜାଣିପାରେ ନାହିଁ, କାରଣ ଜୀବନର ଗତି ସଙ୍ଗେ ଘଟନାସ୍ରୋତ ବଡ଼ ଚଞ୍ଚଳରେ ଧାଉଁଛି । ଅବସ୍ଥା ବିଶେଷର ଅଧୀନ ହୋଇ ଦିନେ ସେ ଅତୀତରେ କଣ ଭାବିଥିଲା, ଆଜି ତାର ମନେ ନାହିଁ; ଅଥଚ କେତେଗୁଡ଼ିଏ ଅନାକାଂକ୍ଷିତ ବସ୍ତୁ ତା ସମକ୍ଷରେ ଉପସ୍ଥିତ; ଯେଉଁଥିରେ ସେ ଅନ୍ତରର କ୍ଷୁବ୍ଧତା ଅନୁଭବ କରୁଛି; କିନ୍ତୁ କାରଣ ଜାଣିପାରୁ ନାହିଁ ।

ଦିନେ ଦୂରରୁ ଅତି ସୁନ୍ଦର ଦେଖି ଯାହାକୁ ପାଇବା ପାଇଁ ସେ ଅତି ଉତ୍କଣ୍ଠିତ ହୋଇଉଠିଥିଲା, ଆଜି ତାହାର ଦର୍ଶନ ମନରେ ଗୋଟାଏ ଝଞ୍ଜା ସୃଷ୍ଟି କରି ଦେଉଛି । ଏ ସମସ୍ତ ବିପ୍ଳବ ମୂଳରେ ମନର ଏକ ଦୁର୍ଦ୍ଧର୍ଷ ଅସମାନତା ବିଦ୍ୟମାନ । ଆକାଂକ୍ଷା ଓ ଅନୁଭୂତି ସର୍ବଦା ସମାନ ହୋଇ ରହୁଥିଲେ ଏପରି ଘଟନ୍ତା ନାହିଁ । ମନର ଅସ୍ଥିର ଅବସ୍ଥା ବାସ୍ତବ ଅନୁଭୂତିର ବିରୋଧୀ । ସମସ୍ତଙ୍କ ମନରେ ଆକାଂକ୍ଷା ଥାଏ; କିନ୍ତୁ ଅନୁଭୂତିର ବିଶେଷତ୍ୱ ଉପରେ ଏହାର ସଫଳତା ଅନେକ ସମୟରେ ନିର୍ଭର କରେ । ବିଭିନ୍ନ ଅବସ୍ଥା କିମ୍ବା ଘଟନା ସଂସ୍ପର୍ଶରେ ଆସି ମନୁଷ୍ୟ ନାନା ଆଶଙ୍କା ପୋଷଣ କରିପାରେ । କିନ୍ତୁ ଜୀବନରେ ସେମାନଙ୍କର ପ୍ରଭାବ ଦେଖିବାକୁ ହେବ । ଜୀବନର ବିଶାଳତା ସଙ୍ଗେ ଯେଉଁ ଆକାଂକ୍ଷାର କୌଣସି ସମ୍ବନ୍ଧ ନାହିଁ, ତାକୁ ମୂଳରୁ ତ୍ୟାଗ କରିବା ଉଚିତ୍ । ଆକାଂକ୍ଷା ଆସେ ଜୀବନରେ ସରସତା ଦେଖାଇବା ପାଇଁ, କିନ୍ତୁ ଏହା ଯଦି ଏକ ସାମୟିକ ଉତ୍ତେଜନା ଆଣି ଚାଲିଯାଏ, ତାହାହେଲେ ଏହାର କୌଣସି ସାର୍ଥକତା ଜଣାପଡ଼େ ନାହିଁ । ହୃଦୟର ପ୍ରେରଣାକୁ ଅନୁସରଣ କରି ଆକାଂକ୍ଷାର ଉତ୍ପତ୍ତି ହେଲେ ଜୀବନର ଗୋଟାଏ ସ୍ୱଚ୍ଛଳ ଗତି ଆସେ । ଉନ୍ନତ ଜାଗତିକ କର୍ମଧାରାରେ ଏହାର ପ୍ରଭାବ ସ୍ପଷ୍ଟ ରୂପେ ଜଣାପଡ଼େ ।

ମନୁଷ୍ୟର କର୍ମ ତାର ଆକାଂକ୍ଷାକୁ ଅନୁସରଣ କରେ । କାମନାହୀନ କର୍ମ ଜଗତରେ ବିରଳ କହିଲେ ଚଳେ; କିନ୍ତୁ ଜୀବନର ଗତି ଯେତେବେଳେ ଅତି ଉନ୍ନତ ସ୍ତରକୁ ଚାଲିଯାଏ, ସେତେବେଳେ ତାର ଦୃଷ୍ଟିରେଖା ଜଗତର ସୀମା ଲଂଘନ କରି ଅସୀମରେ ନିବଦ୍ଧ ରହେ । ପ୍ରାଚୀନ ଭାରତୀୟ ମନୀଷୀ ଓ ଆଧୁନିକ ଶ୍ରେଷ୍ଠ ବୈଜ୍ଞାନିକମାନେ ଜଗତର ଯେଉଁ ବିସ୍ମୟକର କର୍ମ ସବୁ ସମ୍ପାଦନ କରିଅଛନ୍ତି ସେଥିରେ ସେମାନଙ୍କର ଅତି ଉଦ୍ଧ୍ୱର୍ଗାମୀ ଦୃଷ୍ଟିର ପରିଚୟ ମିଳେ । ପ୍ରାଚ୍ୟ ଓ ପାଶ୍ଚାତ୍ୟର କର୍ମଭୂମିରେ ଯେଉଁ ଭିନ୍ନତା ଦେଖା ଦେଉଛି, ତାହା ଜାତିଗତ ସ୍ୱାର୍ଥସଂଶ୍ଲିଷ୍ଟ ଆକାଂକ୍ଷା ସମ୍ଭୂତ । ଏଥିରେ ମନୁଷ୍ୟ ଅନ୍ତରର ଉଦ୍‌ବୋଧନ ଆସୁନାହିଁ । ବିଜ୍ଞାନ ବଳରେ ପାଶ୍ଚାତ୍ୟ ଜାତି ନିଜକୁ ବଡ଼ ଦେଖାଇ ପାରୁଛି ସତ୍ୟ କିନ୍ତୁ ସେମାନଙ୍କ ମନରୁ ସଙ୍କୀର୍ଣ୍ଣତା ଯାଇନାହିଁ । ବିଜ୍ଞାନ ସାହାଯ୍ୟରେ ଯେତେ ଉତ୍ପାତ କରାଯାଉଛି, ସେଥିପାଇଁ ବୈଜ୍ଞାନିକ ଦାୟୀ ନୁହେଁ । ଜାତୀୟ ଜୀବନର ଭାଗ୍ୟବିଧାତା ରୂପେ ଯେଉଁମାନେ ସର୍ବଦା ରଣ ଦୁନ୍ଦୁଭି ବଜାଇବାକୁ ଉଦ୍ୟତ, ସେମାନଙ୍କ ମଧ୍ୟରୁ କେହି ପ୍ରାୟ ବୈଜ୍ଞାନିକର ମହତ୍ ଲକ୍ଷ୍ୟ ଦେଖନ୍ତି ନାହିଁ । ତାର ସଫଳ ସାଧନାକୁ ସେମାନେ ମନୁଷ୍ୟ ଜାତିର ଉଚ୍ଛେଦ ପାଇଁ ପ୍ରୟୋଗ କରନ୍ତି । ମହତ୍ ଆକାଂକ୍ଷା ପ୍ରସୂତ ଗୋଟାଏ କର୍ମ ଗୋଟାଏ ବିରୁଦ୍ଧ ବେଷ୍ଟନୀରେ ରହିଗଲେ, ତାର ମହତ୍ତ୍ୱ ଅଳ୍ପ ସମୟରେ ନଷ୍ଟ ହୋଇଯାଏ । ବେଦ ଓ ବେଦାନ୍ତର ଉତ୍ପତ୍ତି ବେଳେ ଭାରତୀୟ କର୍ମ ଓ ଭାବନା ଖୁବ୍ ବିସ୍ତୃତ ଥିଲା । କ୍ଷୁଦ୍ର ସାଂସାରିକ ପରିସର ମଧ୍ୟରେ ତାର ଆକାଂକ୍ଷା ଆବଦ୍ଧ ହୋଇ ରହୁ ନ ଥିଲା । ସେ ଦେଖୁଥିଲା—ସମସ୍ତ ବିଶ୍ୱରେ ଗୋଟାଏ ଶକ୍ତିର ବିକାଶ । ଅଣୁ ପରମାଣୁଠାରୁ ଆରମ୍ଭ କରି ଅସଂଖ୍ୟ ଗ୍ରହ, ଉପଗ୍ରହ ଓ ସୌରଜଗତ୍ ପର୍ଯ୍ୟନ୍ତ ସେହି ଶକ୍ତିର ନିର୍ଦ୍ଦେଶରେ ଚାଳିତ । ଦିନ ଚାଲିଗଲା, ଦେଶର ଅଧଃପତନ ଅବସ୍ଥା ଆସିଲା, ଭାରତବାସୀର କର୍ମପ୍ରେରଣା କ୍ରମଶଃ କ୍ଷୀଣ ହୋଇଗଲା । ଦ୍ୱେଷ, ପରଶ୍ରୀକାତରତା ପ୍ରଭୃତି ଦୋଷ ଜାତୀୟ ଜୀବନକୁ ଅଧିକାର କଲା । ନୀଚ ଆକାଂକ୍ଷା ହୃଦୟରେ ପୋଷଣ କରି ଭାରତୀୟ ଗୋଟାଏ ନିମ୍ନ ସ୍ତରରେ ପଡ଼ି ରହିଲା । ଜ୍ଞାନ ସାଧନର ପୁଣ୍ୟ ପୀଠରୁ ସ୍ୱାର୍ଥ-ସିଦ୍ଧିର ବାର୍ତ୍ତା ପ୍ରଚାରିତ ହେଲା । ଜୀବନର ପ୍ରକୃତ ମହତ୍ତ୍ୱ କେହି ବୁଝିଲେ ନାହିଁ । ଜାତୀୟ ଆକାଂକ୍ଷା ଶ୍ରେଣୀଗତ ସଙ୍କୀର୍ଣ୍ଣତା ଆଶ୍ରୟରେ ଭ୍ରଷ୍ଟ ହୋଇଗଲା । ପୃଥିବୀର ପ୍ରାଚୀନ ସଭ୍ୟତମ ଜାତି ପରାଧୀନ ହୋଇ ରହିଲା । ଉଚ୍ଚାକାଂକ୍ଷା ଜାତୀୟ କର୍ମମାର୍ଗରୁ ଅନ୍ତର୍ହିତ ହୋଇଗଲେ, ଜାତିର ମହତ୍ତ୍ୱ ନଷ୍ଟ ହୋଇଯାଏ । ପାଶ୍ଚାତ୍ୟ ରାଜନୀତିଜ୍ଞମାନେ ଦେଶ ଓ ଜାତି ନାମରେ ଯେଉଁ କୂଟନୀତିର ଆଶ୍ରୟ ନେଉଅଛନ୍ତି, ତାହା ବେଶି ଦିନ ତିଷ୍ଠି ପାରିବ ନାହିଁ । ବିଜ୍ଞାନର କୌଶଳକୁ ଜଗତର ଅହିତ ପାଇଁ ପ୍ରୟୋଗ କରି ସେମାନେ ସଭ୍ୟତାର ଯେ ଗରିମା ପ୍ରକାଶ କରୁଅଛନ୍ତି, ତାହା ଅଳ୍ପକାଳ ମଧ୍ୟରେ ଅସାର ବୋଲି ପ୍ରତୀତ ହେବ । ନିରୀହ ଜନଶକ୍ତିର ବିଲୋପ ସାଧନ ପାଇଁ କୌଣସି ଶ୍ରେଷ୍ଠ ବୈଜ୍ଞାନିକର ଆକାଂକ୍ଷା ହୋଇ ନ ପାରେ । ପ୍ରାଚୀନ ଭାରତର ଉନ୍ନତ ଦାର୍ଶନିକ ଗବେଷଣା ଓ ଆଧୁନିକ ବୈଜ୍ଞାନିକର ବିସ୍ମୟକର ଆବିଷ୍କାରରେ କୌଣସି ବିରୋଧ ନାହିଁ । ବିଜ୍ଞାନର Electron theory ଓ ଆର୍ଯ୍ୟ ଦର୍ଶନରେ ଅଣୁ ପରମାଣୁର ସମସ୍ୟା ଏକ କହିଲେ ଚଳେ । ଜ୍ଞାନ-ପିପାସୁର ଆକାଂକ୍ଷା ବିଭିନ୍ନ ଦିଗରେ ଗତି ନ କଲେ ଜ୍ଞାନ ବିଜ୍ଞାନର ମହତ୍ତ୍ୱ ସୀମାବଦ୍ଧ ହୋଇଯାଏ । ସୁତରାଂ ଏ ଦିଗରେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ପେନ କୌଣସି ବିରୋଧ ଜନ୍ମାଇବା ଉଚିତ ନୁହେଁ । ଜଗତରେ ମହତ୍ ଆକାଂକ୍ଷା ଓ କର୍ମର ଆଦର ଚିରଦିନ ରହିବ ।

ଜାତୀୟ ଜୀବନର ଆକାଂକ୍ଷା କେବଳ ରାଜନୀତିରେ ପର୍ଯ୍ୟବସିତ ନୁହେଁ, ସମାଜନୀତି, ଧର୍ମ, ଶିକ୍ଷା, ଓ ସଂସ୍କୃତି ପ୍ରଭୃତିର ଉନ୍ନତି ସାଧନ ନ କଲେ ଜାତି କଦାପି ବଡ଼ ହୋଇପାରେ ନାହିଁ । ଜାତୀୟ ଜୀବନର ବିକାଶରେ ରାଜନୀତି ଅତ୍ୟନ୍ତ ଲୋଡ଼ା । କିନ୍ତୁ ଏହାର ସାଧନାକୁ ସୁନିୟନ୍ତ୍ରିତ ନ କଲେ ଗୋଟାଏ ବିଶୃଙ୍ଖଳ ଭାବ ଜାତୀୟ ଜୀବନକୁ ଅଧିକାର କରେ । ଅନେକେ କହିପାରନ୍ତି, ରାଜନୀତିର ମାର୍ଗ ସରଳ ନୁହେଁ; ତେଣୁ ରାଜନୀତିଜ୍ଞମାନେ କୂଟନୀତିର ଆଶ୍ରୟ ନେବା ସ୍ୱାଭାବିକ । ଦେଶର ଜନସାଧାରଣଙ୍କର ହିତ ନାମରେ ଯେ କର୍ମର ସୂତ୍ରପାତ କରାଯାଏ, ତାହାର ପରିଣାମ ଅନିଷ୍ଟକାରକ ହୋଇପାରେ ନାହିଁ । ଗୋଟାଏ ଅଭିସନ୍ଧି ମନରେ ରଖି ଜାତୀୟ କର୍ମପନ୍ଥାରେ ଭିନ୍ନ ଭାବ ଆରୋପ କରି ଯେଉଁମାନେ ଦେଶ-ନାୟକ ହେବାକୁ ଯାଆନ୍ତି, ସେହିମାନେ ହିଁ ଦେଶରେ ବିଶୃଙ୍ଖଳା ସୃଷ୍ଟି କରନ୍ତି । ଅବଶ୍ୟ ଅନେକ ସମୟରେ ଶିକ୍ଷାର ଅଭାବ-ବଶତଃ ବିଷୟର ପ୍ରକୃତ ମର୍ମ ନ ବୁଝି ଲୋକମାନେ ଗଣ୍ଡଗୋଳ ସୃଷ୍ଟି କରିଥାନ୍ତି; କିନ୍ତୁ ଏହା ବେଶୀ ସମୟ ସ୍ଥାୟୀ ହୋଇ ରହେ ନାହିଁ । ଦୂରଦୃଷ୍ଟିସମ୍ପନ୍ନ ରାଜନୀତିଜ୍ଞଙ୍କର ଗୋଟାଏ ନୈତିକ ପ୍ରଭାବ ଥାଏ । ତାଙ୍କର ମହତ୍ ଆକାଂକ୍ଷାକୁ ଅନୁସରଣ କରି ଜାତିର ଅନ୍ତରରେ ଗୋଟାଏ ଉଦ୍‌ବୋଧନ ଆସେ । ଏ ଉଦ୍‌ବୋଧନ କୂଟନୀତିପରାୟଣ ରାଜନୀତିଜ୍ଞଙ୍କର କର୍ମମନ୍ତ୍ରରେ ଆସେ ନାହିଁ । ଜୀବନର ବ୍ୟାପକତା ସରଳତା ଲୋଡ଼େ, ଏଥିରେ ଶକ୍ତିର ସଂଘର୍ଷ ନାହିଁ । ଜଗତରେ କୌଣସି ଜାତି ସମରପ୍ରିୟ ନୁହେଁ; କିନ୍ତୁ ଯେତେବେଳେ କେତେଗୁଡ଼ାଏ ବିରୁଦ୍ଧ କ୍ରିୟା ଜାତୀୟ ଜୀବନର ସ୍ୱଚ୍ଛନ୍ଦ ଗତିରେ ବାଧା ଦିଏ, ସେତେବେଳେ ଏହା ସ୍ୱତଃ ଉଦ୍‌ବେଳିତ ହୋଇଉଠେ । ସ୍ୱାର୍ଥର ଦ୍ୱାହି ଦେଇ ଜାତୀୟ ଉତ୍ତେଜନା ଅଣାଯାଇପାରେ ଓ ସମରକୁ ଜାତିର ସ୍ୱାର୍ଥସିଦ୍ଧି ପାଇଁ ବରଣ କରାଯାଇପାରେ । ଉପର୍ଯ୍ୟୁକ୍ତ ଦୁଇଟି ଦୃଷ୍ଟାନ୍ତରୁ, ଗୋଟିକରେ ଜାତିର ମୌଳିକତା ରକ୍ଷା ଓ ଅପରଟିରେ ଜାତୀୟ ସ୍ୱାର୍ଥ ଜଡ଼ିତ ଥିବାରୁ ସମରର ପ୍ରୟୋଜନୀୟତା ଜଣାପଡ଼େ । ଜାତିର ଉନ୍ନତି କାମନାରେ ରାଜନୀତିଜ୍ଞମାନେ ସମରକୁ ଶେଷ ଓ ସାମୟିକ ଅବଲମ୍ବନରୂପେ ଗ୍ରହଣ କରିପାରନ୍ତି । ଯେ ପର୍ଯ୍ୟନ୍ତ ଜାତୀୟ ଭାବଧାରାରେ କୌଣସି ପ୍ରବଳ ପ୍ରତିବନ୍ଧକ ଆସିନାହିଁ, ସେ ପର୍ଯ୍ୟନ୍ତ ଜାତୀୟ ଆକାଂକ୍ଷାକୁ ସଂଘର୍ଷ ପଥରେ ଚାଳିତ କରିବା ଉଚିତ ନୁହେଁ । ଜାତୀୟ ଜୀବନର ସ୍ଥିତି ଯେତେବେଳେ ଅସମ୍ଭବ ହୋଇ ଉଠିବ, ସେତେବେଳେ ପ୍ରତିକ୍ରିୟାଶୀଳ ଶକ୍ତିର ଧ୍ୱଂସସାଧନ ଅଯଥାର୍ଥ ମନେ ହେବ ନାହିଁ, ସୁତରାଂ ଜାତିର କର୍ଣ୍ଣଧାର ରୂପେ ଯେଉଁମାନେ ଦେଶର ରାଜନୀତିକ୍ଷେତ୍ରରେ ବିଚରଣ କରୁଛନ୍ତି, ସେମାନଙ୍କର ବିଶେଷ ସାବଧାନ ହେବା ଆବଶ୍ୟକ । ଗୋଟାଏ ଦୁରାକାଂକ୍ଷା ହୃଦୟରେ ପୋଷଣ କରି ସମଗ୍ର ଜାତିକୁ ବିପ୍ଳବବାଦୀ କରିଦେଲେ ଦେଶର ମଙ୍ଗଳ ହୁଏ ନାହିଁ । ଦେଶବାସୀର ଅନ୍ତରର ଅନୁଭୂତି ସଙ୍ଗେ ତାର ପ୍ରକୃତ ଅଭାବ ଅନୁଭବ କରି ଜାତୀୟ କର୍ମପ୍ରେରଣା ଆଣିବାକୁ ଆକାଂକ୍ଷିତ ନ ହେଲେ ଦେଶ-ନାୟକର ସ୍ଥାନ ଅଧିକାର କରିବା ଗୋଟାଏ ବୃଥା ଚେଷ୍ଟା । ଦେଶମାତୃକାର ପବିତ୍ର ସେବା ବ୍ରତ ଅବଲମ୍ବନ କରିବା ବଡ଼ କଠିନ । ଜଣକର ବ୍ୟକ୍ତିଗତ ଆକାଂକ୍ଷା ପୂର୍ଣ୍ଣ ନ ହେଲେ ଗୋଟାଏ ଜୀବନ ବାଧାଗ୍ରସ୍ତ ହୁଏ; କିନ୍ତୁ ସମୂହ ଜାତୀୟ ଜୀବନର ଆକାଂକ୍ଷା ଅପୂର୍ଣ୍ଣ ରହିଗଲେ ଦେଶର ଅଧଃପତନ ଆସେ । ଅନେକ ଧର୍ମବିପ୍ଳବ ଓ ରାଜନୀତି ଆନ୍ଦୋଳନରେ ଏହା ପ୍ରମାଣିତ ହୋଇପାରିଛି । ଜଣେ ଅସାଧାରଣ ଧର୍ମସଂସ୍କାରକ କିମ୍ବା ରାଜନୀତିଜ୍ଞ ସବୁଦିନ ପାଇଁ ଜାତିର କର୍ମମାର୍ଗକୁ ନିୟନ୍ତ୍ରିତ କରିପାରିବେ ନାହିଁ । ତାଙ୍କର ଦୀକ୍ଷା ଯେଉଁମାନେ ଗ୍ରହଣ କରିବେ, ସେହିମାନଙ୍କର ଅତି ଉଚ୍ଚ ଆକାଂକ୍ଷା ପୋଷଣ କରିବା ଉଚିତ । ଏ ଆକାଂକ୍ଷାରେ ସ୍ୱାର୍ଥର ଛାୟା ପର୍ଯ୍ୟନ୍ତ ପଡ଼ିଲେ ସମସ୍ତ ଜାତି ମଧ୍ୟରେ ଗୋଟାଏ ବିଦ୍ୱେଷ ଭାବ ଜନ୍ମିବାର ସମ୍ଭାବନା ଥାଏ । ଜାତୀୟ ଜୀବନସ୍ରୋତରେ ନିଜର ସତ୍ତାକୁ ମିଶାଇ ଦେଲେ ଦେଶସେବା ବ୍ରତ ସାର୍ଥକ ହୁଏ । ସେମାନଙ୍କର ଆକାଂକ୍ଷାକୁ ଅନୁସରଣ କଲେ ଜାତିର ମହତ୍ତ୍ୱ ସ୍ୱତଃ ପ୍ରକାଶିତ ହୁଏ ।

ଶକ୍ତିର ଉନ୍ମେଷରେ ଆକାଂକ୍ଷାର ସଫଳତା ନିହିତ ଥାଏ । ଶକ୍ତିହୀନର ଆକାଂକ୍ଷା ଆକାଶ-କୁସୁମ ପରି କଳ୍ପନାର ଗୋଟାଏ ଅଳୀକ ବିକାଶ । ଏହା ମୁହୂର୍ତ୍ତକ ପାଇଁ ତା ପ୍ରାଣରେ କ୍ଷୀଣ ସ୍ପନ୍ଦନଟିଏ ଆଣିପାରେ; କିନ୍ତୁ ଜଗତରେ ସେ ସର୍ବଦା ଅତି ନଗଣ୍ୟ ହୋଇ ପଡ଼ି ରହେ । ଶକ୍ତିମାନ୍ ଓ ଶକ୍ତିହୀନର ଆକାଂକ୍ଷାଗତ ପାର୍ଥକ୍ୟରେ ଜଗତର ଯାବତୀୟ କ୍ଷୁଦ୍ର ଓ ମହତ୍ କର୍ମ ସମଷ୍ଟିର ସୃଷ୍ଟି । ଜଣେ ବିଶାଳ ଯଶ ଓ ବିପୁଳ ଐଶ୍ୱର୍ଯ୍ୟର ଅଧିକାରୀ ହେଲେ ଅପର ଜଣକ ହୁଏ ପଥର ଭିକାରୀ । ସମସ୍ତ ଦିବସର ପରିଶ୍ରମ ବିନିମୟରେ ତାକୁ ମୁଠାଏ ଅନ୍ନ ସୁଦ୍ଧା ମିଳେ ନାହିଁ । ଜଣକର ସାମାନ୍ୟ ଇଙ୍ଗିତକୁ ଅସଂଖ୍ୟ ନରନାରୀ ଅନାଇ ରହିଛନ୍ତି; ଅଥଚ ଆଉ ଜଣକର ଜୀବନବ୍ୟାପୀ କାକୁତି ମିନତି କାହାରି କର୍ଣ୍ଣ ଗହ୍ୱରରେ ପ୍ରବେଶ କରୁନାହିଁ ।

ଏ ପ୍ରଭେଦ କାହିଁକି ? ଦରିଦ୍ର କିଏ ଧନବାନ୍ ହେବାକୁ ଇଚ୍ଛା କରେ ନାହିଁ ? ଶକ୍ତିହୀନ କିଏ ଶକ୍ତିଶାଳୀର ପ୍ରତ୍ୟାଶୀ ନୁହେଁ ? ଜୀବନର ନୀତିକୁ ଅନୁସରଣ ନ କଲେ ଏ ପ୍ରଶ୍ନମାନଙ୍କର ଉତ୍ତର ମିଳେ ନାହିଁ । ଏ ସମ୍ପର୍କରେ ଜନ୍ମାନ୍ତରୀଣ ସଂସ୍କାରକୁ କେହି ନିର୍ଦ୍ଦେଶ କରି ଦେଇପାରନ୍ତି । କେବଳ ଜନ୍ମର ବିଶେଷତ୍ୱ ଯେଉଁ ପ୍ରତିଷ୍ଠା କିମ୍ବା ଐଶ୍ୱର୍ଯ୍ୟ ଲାଭ କରିବା ଦୃଷ୍ଟାନ୍ତରୁ ଏପରି ନିର୍ଦ୍ଦେଶ ହେବା ସ୍ୱାଭାବିକ । ଜନ୍ମାନ୍ତରକୁ ସ୍ୱୀକାର କିମ୍ବା ଅସ୍ୱୀକାର କଲେ ମଧ୍ୟ ଶକ୍ତିକୁ ଆକାଂକ୍ଷାର ପୋଷୟିତ୍ରୀ ବୋଲି ମାନିବାକୁ ହେବ । ହୃଦୟରେ ଆକାଂକ୍ଷା ପୋଷଣ କଲାମାତ୍ରେ ଏହା ଫଳବତୀ ହୁଏ ନାହିଁ । ମନର ଚଞ୍ଚଳତା ଦୂର କରି ଶକ୍ତି ସଞ୍ଚୟ କରିବା ଆବଶ୍ୟକ । ସ୍ୱପ୍ନାବିଷ୍ଟ ମନୁଷ୍ୟ ଯେପରି ଅସଂଖ୍ୟ କର୍ମ ସମ୍ପାଦନ ମୁହୂର୍ତ୍ତକେ କରିଦିଏ, ଅଥଚ ଜାଗ୍ରତ ଅବସ୍ଥାରେ ସେଥିରେ ଅସାରତା ଅନୁଭବ କରେ, ସେହିପରି ମନର କ୍ଷିପ୍ରଗତିରେ କେତେ ଭିତ୍ତିହୀନ ଆକାଂକ୍ଷା ଉଠି ବିଲୀନ ହୋଇଯାଏ । ଯେଉଁ ଆକାଂକ୍ଷାଗୁଡ଼ିକ ଜୀବନର ଗତିରେ ରେଖାପାତ କରି ଚାଲିଯାଉଛି, ସେହିମାନଙ୍କୁ ଅନୁସରଣ କରି ମନୁଷ୍ୟର କର୍ମଧାରା ସଦା ପ୍ରବାହିତ । ଶକ୍ତିହୀନତାରୁ ଜୀବନର ଗତି ଯେତେବେଳେ ନିମ୍ନଗାମୀ ହୁଏ ଓ ମାନସିକତାର ବିକାଶ ସଙ୍କୁଚିତ ହୋଇ ଆସେ, ସେତେବେଳେ ଆକାଂକ୍ଷାର ସ୍ୱର୍ଣ୍ଣ ମଧ୍ୟ ମାନସ ପଟରେ ମଳିନ ହୋଇଯାଏ । ଉପଯୁକ୍ତ ଶକ୍ତିର ଅଧିକାରୀ ଥିବା ପର୍ଯ୍ୟନ୍ତ ମନୁଷ୍ୟ ଜୀବନରେ ଏପରି ପତନ ଘଟେ ନାହିଁ । ଅନେକ ସମୟରେ ମନୁଷ୍ୟ ସ୍ୱତଃ ପ୍ରଣୋଦିତ ହୋଇ ଶକ୍ତିହୀନ ହୁଏ । ନୀଚ କାମନା ସ୍ୱାର୍ଥିକ ଉଦ୍ଦେଶ୍ୟରେ ସେ ଜୀବନର ନିମ୍ନସ୍ତରକୁ ଚାଲିଯାଏ । ଥରେ ଜୀବନର ମହତ୍ ଲକ୍ଷ୍ୟ ଭୁଲିଗଲେ ଆଉ ଊର୍ଦ୍ଧ୍ୱଗତି ସହଜରେ ହୁଏ ନାହିଁ । ମନୁଷ୍ୟର ଅଧୋଗତିରେ ଆତ୍ମବିଶ୍ୱାସ ହ୍ରାସ ହୋଇଯାଏ ।

ଜୀବନର ଗମ୍ଭୀର ଚିନ୍ତାରେ ଅନ୍ତରର ଆକାଂକ୍ଷା ମହତ୍ତ୍ୱ ହୁଏ । ଉତ୍କୃଷ୍ଟ ଓ ଅପକୃଷ୍ଟ କର୍ମସବୁ ଏଥିର ପରିଚୟ ଦିଏ । ଜୀବନଟା କେବଳ ଭୋଗବିଳାସର ସରଣୀ ନୁହେଁ । ପରିତୃପ୍ତ କାମନାରେ ଏହାକୁ ବିଚାର କରାଯାଏ ନାହିଁ । ଜୀବନର ଦୁର୍ଗମ ପଥ ଚିରଦିନ ରହସ୍ୟରେ ଆଚ୍ଛନ୍ନ । ମନୁଷ୍ୟର ଆକାଂକ୍ଷା ଏହି ରହସ୍ୟ ଭେଦ କରିବାକୁ କ୍ୱଚିତ୍ ଅଗ୍ରସର ହୁଏ । ଦୁନିଆରେ ତାର ଦିନ କେତେଟା ଅବସ୍ଥିତି କେବଳ ବସ୍ତୁମୋହରେ ତାକୁ ଭୁଲାଇ ରଖେ । କାମିନୀ ଓ କାଞ୍ଚନ ପ୍ରାପ୍ତିରେ ସେ ସକଳ ଆକାଂକ୍ଷାର ସଫଳତା ଅନୁଭବ କରେ । ଜୀବନର ଆକର୍ଷଣକୁ କୃତ୍ରିମ ସୌନ୍ଦର୍ଯ୍ୟରେ ସଂଯୁକ୍ତ କରିଦିଏ; କିନ୍ତୁ ପରିଣାମରେ ଦେଖେ—ଗୋଟାଏ ଅଭାବ, ଯାହାକୁ ଦୂର କରିବା ପାଇଁ ଆଦୌ ଆକାଂକ୍ଷିତ ହୋଇନାହିଁ । ଦିନେ ରାଜପୁତ୍ର ଶାକ୍ୟସିଂହଙ୍କର କେତୋଟି ଘଟନା ଦର୍ଶନରେ ଜୀବନର ଯେ ପରିବର୍ତ୍ତନ ଆସିଥିଲା, ତାହା ଇତିହାସ ପାଠକମାନଙ୍କର ବିସ୍ମୃତ ନୁହେଁ । ସେ ସମଗ୍ର ମାନବ ଜାତିର ଦୁଃଖ ଅପନୋଦନ କରିବା ପାଇଁ ସଂସାରତ୍ୟାଗୀ ହେଲେ । ମନୁଷ୍ୟକୁ ମୁକ୍ତି ପଥ ଦେଖାଇବା ହେଲା ତାଙ୍କ ଜୀବନର ଏକମାତ୍ର ଆକାଂକ୍ଷା । ଏହି ଆକାଂକ୍ଷାକୁ ଅନୁସରଣ କରି ସେ ଯେଉଁ ସତ୍ୟ ଆବିଷ୍କାର କଲେ, ତାହା ଚିରଦିନ ପାଇଁ ମନୁଷ୍ୟର ଅଜ୍ଞାନ ଅନ୍ଧକାର ଦୂର କରିବ । ପ୍ରତି ଯୁଗରେ ମହାପୁରୁଷମାନେ ମନୁଷ୍ୟ ଜୀବନରୁ କଲୁଷ ହରଣ କରିବା ପାଇଁ ଆବିର୍ଭୂତ ହୁଅନ୍ତି । ସେମାନଙ୍କର ବାଣୀରେ ଗୋଟାଏ ଅସାଧାରଣ ଉଦ୍ଦୀପନା ଥାଏ । ଜଡ଼ତାଗ୍ରସ୍ତ, ହୀନ, କାମନାପରତନ୍ତ୍ର ମନୁଷ୍ୟ ପୁଣି ଏଥିରୁ ବଞ୍ଚିତ ହୁଏ ନାହିଁ । ବହୁକାଳରୁ ପୋଷିତ ନୀଚ ଆକାଂକ୍ଷାକୁ ସେ ମୁହୂର୍ତ୍ତକେ ତ୍ୟାଗ କରି ଜୀବନର ଗୋଟିଏ ଅତି ଉନ୍ନତ ସ୍ତରକୁ ଚାଲିଯାଏ । ଶ୍ରୀ ଚୈତନ୍ୟଦେବଙ୍କର ଧର୍ମ ପ୍ରଚାର ସମୟରେ ଦୁର୍ବୃତ୍ତ ଜଗାଇ, ମାଧାଇ ଦୁଇଭାଇଙ୍କ ଜୀବନରେ ଏହିପରି ପରିବର୍ତ୍ତନ ଘଟିଥିବାର ଉଲ୍ଲେଖ ଅଛି । ମନୁଷ୍ୟ ଜୀବନର ଯେତେ ଉନ୍ନତ ସ୍ତରକୁ ଯାଏ, ତାର ଆକାଂକ୍ଷା ସେହିପରି ମହତ୍ତ୍ୱ ହୁଏ । ସତ୍ ଆକାଂକ୍ଷା ପ୍ରାୟ ଅପୂର୍ଣ୍ଣ ରହେ ନାହିଁ ।

ଶକ୍ତି-ସଂରକ୍ଷଣରେ ମନୁଷ୍ୟର ଆତ୍ମବିଶ୍ୱାସ ଜନ୍ମେ । ଆତ୍ମବିଶ୍ୱାସ ଆକାଂକ୍ଷାର ସଫଳତାରେ ଉନ୍ନତ କର୍ମମାର୍ଗର ସୃଷ୍ଟି କରେ । ଜଗତର ଶ୍ରେଷ୍ଠ କବି, ଦାର୍ଶନିକ, ରାଜନୀତିଜ୍ଞ ଓ ବୈଜ୍ଞାନିକମାନଙ୍କର ଭାବଧାରାରେ ଏହାର ପ୍ରଭାବ ଅଚଞ୍ଚଳ ଥାଏ । ସେମାନଙ୍କର ଅନ୍ତରତମ ଆକାଂକ୍ଷାର ଅଭିବ୍ୟକ୍ତି ଏହାରି ଉପରେ ପ୍ରତିଷ୍ଠା ଲଭେ । କର୍ମୀମାନଙ୍କର ଆକାଂକ୍ଷା ବିଭିନ୍ନ ହୋଇପାରେ; କିନ୍ତୁ ସେମାନଙ୍କର ଆତ୍ମପ୍ରତ୍ୟୟରେ ନ୍ୟୂନତା ବାଞ୍ଛନୀୟ ନୁହେଁ । ଜଗତରେ ଅମର କୀର୍ତ୍ତିର ଅଧିକାରୀ ବିଶାଳ ଆକାଂକ୍ଷା ପୋଷଣ କରି ନୀରବ ରହେ ନାହିଁ । ତାର କର୍ମ ପ୍ରଚେଷ୍ଟା ଅତି ଅସାଧାରଣ ହୋଇ ଉଠେ । ଜୀବନର ନିମ୍ନ କିମ୍ବା ଉଚ୍ଚ ସ୍ତର ତାକୁ କୌଣସି ବାଧା ଦେଇପାରେ ନାହିଁ । ତାର ଗତିରେ ଯେଉଁ ସ୍ୱାତନ୍ତ୍ର୍ୟ ଥାଏ, ତାହା ସାଧାରଣତଃ ଲକ୍ଷିତ ହୁଏ ନାହିଁ । ସେ ଜଗତରୁ ଯାହା ଗ୍ରହଣ କରେ, ତାହା ସମସ୍ତଙ୍କର ଆୟତ୍ତାଧୀନ ଥାଏ; କିନ୍ତୁ ତାର ପ୍ରକାଶ ପ୍ରଣାଳୀ

ଗୋଟାଏ ବିଶେଷତ୍ୱ ଦେଖାଇଦେଇ ତାକୁ ଜଗତ୍ ସମକ୍ଷରେ ମହତ୍ କରିଦିଏ । ଜଣେ ମନୀଷୀ କହିଛନ୍ତି—ଜଗତରେ ମୌଳିକତାର ପରିବର୍ତ୍ତନ ନାହିଁ । କେବଳ ପ୍ରକାଶ ପ୍ରଣାଳୀର ଭିନ୍ନତା ଗୋଟାଏ ନୂତନତ୍ୱ ଉତ୍ପାଦନ କରେ । ପ୍ରକୃତିର ବର୍ଣ୍ଣନା ସବୁ କବି କରନ୍ତି, କିନ୍ତୁ ଜଣେ କାହିଁକି ଅନ୍ୟମାନଙ୍କଠାରୁ ବଡ଼ ବୋଲି ବିବେଚିତ ହୁଅନ୍ତି ? କାଳିଦାସ ଓ ସେକ୍ସପିଅର କାବ୍ୟ-ଜଗତରେ ଯେ ବୈଚିତ୍ର୍ୟ ଦେଖାଇଦେଲେ, ତାହା କାହିଁକି ଆଜି ପର୍ଯ୍ୟନ୍ତ ଅନ୍ୟମାନଙ୍କ ପକ୍ଷରେ ସମ୍ଭବ ହେଲ ନାହିଁ ? କେହି କେହି କହିପାରନ୍ତି, ଜନ୍ମଗତ ପ୍ରତିଭାବଳରେ କାଳିଦାସ ଓ ସେକ୍ସପିଅର ଜଗତରେ ପୂଜ୍ୟ ହୋଇଅଛନ୍ତି; କିନ୍ତୁ ପ୍ରତିଭା ବିକାଶରେ ଏପରି କୌଣସି ନିୟମ ନାହିଁ । ସାଧନା ବଳରେ ଶକ୍ତି ସଞ୍ଚୟ କଲେ ଯେ କେହି ପ୍ରତିଭାବାନ୍ ହୋଇପାରେ । ଆର୍ଯ୍ୟ ମନୀଷୀମାନେ ସେମାନଙ୍କ ଜୀବନରେ ଏଥିର ଯଥେଷ୍ଟ ଦୃଷ୍ଟାନ୍ତ ଦେଖାଇଯାଇଛନ୍ତି । ଜୀବନର ବ୍ୟାପକତାକୁ ଲକ୍ଷ୍ୟ ରଖି ଆକାଂକ୍ଷାକୁ ବିସ୍ତୀର୍ଣ୍ଣ କରିଦେଲେ ମନୁଷ୍ୟର କର୍ମସାଧନା ସ୍ୱତଃ ମହତ୍ ହୋଇଉଠେ । ମନୁଷ୍ୟ ଜୀବନରେ ନାନା ପ୍ରତିବନ୍ଧକ ଆସେ, ଜଟିଳ କର୍ମ ସମସ୍ୟାରେ ସେ ବିବ୍ରତ ହୋଇପଡ଼େ; କ୍ଷୁଦ୍ର ଆକାଂକ୍ଷାମାନଙ୍କର ବିଫଳତାରେ ସେ ନିଜକୁ ବଡ଼ ଅସହାୟ ମନେ କରିପାରେ, କିନ୍ତୁ ଯେ ପର୍ଯ୍ୟନ୍ତ ତାର ଆତ୍ମବିଶ୍ୱାସଟିକି ଅଛି, ସେ ପର୍ଯ୍ୟନ୍ତ ତାକୁ ହେୟଜ୍ଞାନ କରିବା ଉଚିତ ନୁହେଁ । ଅନେକ ସ୍ଥଳରେ ଦେଖାଯାଇଛି, ଜଗତ ଚକ୍ଷୁରେ ସେ ଅତ୍ୟନ୍ତ ଅବହେଳିତ । ସେ ଏକ ଅସାଧାରଣ ପ୍ରତିଭାର ବିକାଶ ଦେଖାଇପାରିଛି । ଜଗତ୍‌ରେ ହଠାତ୍ କାହାର ହୀନତାର ପରିଚୟ ଦେବା ସମୀଚୀନ ନୁହେଁ । ବିଲ୍ୱମଙ୍ଗଳଙ୍କ ପରି କାମାନ୍ଧ ମଧ୍ୟ ଦିନେ ମହାତ୍ମା ହୋଇପାରନ୍ତି । କ୍ଷୁଦ୍ରର ମହତ୍ ହେବାରେ ଜୀବନର ସ୍ପଷ୍ଟ ବିକାଶ ଜଣାପଡ଼େ । ତେଣୁ ଆକାଂକ୍ଷାକୁ ଗ୍ରେଠ କରିବା ବୁଦ୍ଧିମାନ ପକ୍ଷରେ କଦାପି ଶୋଭନୀୟ ନୁହେଁ ।

# ମୁଁ ଓ 'କିନ୍ତୁ'

ଜଣେ ସାହିତ୍ୟିକ ବନ୍ଧୁଙ୍କ ଅନୁରୋଧରେ କିଛି ଲେଖିବାକୁ ହେବ, କିନ୍ତୁ ଲେଖିବି କଣ ? କଲମଟା ଧରି ଦୀର୍ଘ ଅତୀତ ଆଡ଼କୁ ଅନାଇ ବସିଲି, କିଛି ପ୍ରେରଣା ପାଇବାକୁ । ମୋର ତ ସମ୍ବଳ କିଛି ନ ଥିଲା । ଆଜି ମଧ୍ୟ ନାହିଁ । ଅତୀତକୁ ଛାଡ଼ି ଯେତେବେଳେ ଭବିଷ୍ୟତକୁ ଅନାଉଛି, ଗୋଟାଏ କୁହେଳିକା ଆସି ଚକ୍ଷୁ ସମ୍ମୁଖରେ ଭାସି ଉଠୁଛି । ମୋତେ କଣ ରିକ୍ତ ହୋଇ ଜୀବନଟାକୁ କଟାଇ ଦେବାକୁ ହେବ ? ଆଶାର କୁହୁକିନୀ ମନ୍ତ୍ରରେ ମୁଗ୍ଧ ହୋଇ କେତେଥର ଜୀବନ ପଥରେ ଗୋଟାଏ ସମ୍ବଳ ଚିରଦିନ ପାଇଁ ସମ୍ପାଦି ରଖିବି ବୋଲି ମନ ପ୍ରାଣ ଢାଳି ଦେଇଛି, କିନ୍ତୁ କାହିଁକି ? କିଛି ତ ମୋର ବୋଲି ନାହିଁ । ଧନ, ଯଶ ଓ ପ୍ରେମର ଆକର୍ଷଣ ହୃଦୟ ତନ୍ତ୍ରୀରେ କେତେଥର ଝଙ୍କୃତ ହୋଇଉଠିଛି, କିନ୍ତୁ କେହି ତ ହେଲେ ମୋତେ ଆଶ୍ୱାସନା ଦେଇପାରି ନାହିଁ ! ଅଗ୍ରସର ହୁଏ, "କିନ୍ତୁ" ଆସି ଗୋଟାଏ ଯବନିକା ପକାଇଦେଇଯାଏ । କୈଶୋର ଆସିଥିଲା, ମନେ କରିଥିଲି ଯୌବନର ଉନ୍ମାଦନାରେ ସବୁ ଭୁଲିଯାଇ ଗୋଟାଏ ଅନାହତ ସୁଖ ତନ୍ଦ୍ରାରେ ମଜ୍ଜି ଯିବି । ଜଗତର ଚିତ୍ରଶାଳାରେ ମୁହୂର୍ତ୍ତିକ ପାଇଁ ଗୋଟାଏ ଉତ୍ଫୁଲ୍ଲ ଛବି ଦେଖାଇଦେବି । କୁସୁମ ସଙ୍ଗେ ନିଜକୁ ମିଶାଇ ଦେବି । ମୁହୂର୍ତ୍ତିକ ପାଇଁ ଟିକେ ସୁବାସ ବିତରଣ କରି ସେହି ବିରାଟ ଅତୀତ ଗର୍ଭରେ ଲୁଚିଯିବି, "କିନ୍ତୁ" ବାସ୍ତବତାକୁ ଆଣି ସବୁ ବ୍ୟର୍ଥ କରିଦେଇଗଲା ।

ଜଗତ୍ ସଙ୍ଗେ ଖାପଛଡ଼ା ହେବି, ନିଜକୁ ଅସମ୍ପୃକ୍ତ କରି ଦର୍ଶକପରି ସବୁ ଦେଖିଯିବି, କେବଳ ସାଥୀ କରିନେବି ସ୍ୱଢ଼ ଗଢ଼ା ଜୀବନର ଦୃଶ୍ୟଟିକୁ, କିନ୍ତୁ ପୁଣି ଏ ପ୍ରୟାସରେ ବାଧା ଆସିଲା । ଛାତ୍ରାବସ୍ଥାରେ ପଢ଼ିଥିଲି 'Echo'ର ଗଳ୍ପ । ଆଜି ଜୀବନରେ ଅନୁଭବ କଲି ସେହି ଗଳ୍ପର ଗୋଟାଏ ମର୍ମନ୍ତୁଦ ଆବେଗ । ଥରେ ଜଣେ ସରସ-ସାଥୀ ହୃଦୟର ଭାବ ବ୍ୟକ୍ତ କରିବାକୁ ଯାଇ 'କିନ୍ତୁ' କହି ନୀରବ ରହିଲେ । ମନେ କଲି ଜୀବନ ରଙ୍ଗଭୂମିରେ 'କିନ୍ତୁ' ଗୋଟାଏ କଠିନ ସମସ୍ୟା—ଯାହାକୁ ସମାଧାନ କରିବାକୁ ସମସ୍ତେ ବ୍ୟଗ୍ର ହୋଇ ପଡ଼ନ୍ତି, କିନ୍ତୁ କେତେଜଣ ସମର୍ଥ ହୁଅନ୍ତି ତାହା ମୋତେ ଜଣା ନାହିଁ । ନିଗୂଢ଼ ଅଭିବ୍ୟକ୍ତିରେ ଯେ ଗୋପନ କାହାଣୀ ପ୍ରକାଶିତ ହୁଏ, ତାହା ପୁଣି 'କିନ୍ତୁ'ର ଅନ୍ତରାଳରେ ରହିଯାଏ । ଭାଷା ଭାବକୁ ଖୋଲିଦିଏ, 'କିନ୍ତୁ' ଭାବର ଆତ୍ମାକୁ ଘୋଡ଼ାଇ ରଖେ । ଜଗତର ରହସ୍ୟ ରହିଯାଏ 'କିନ୍ତୁ'ର ଆବରଣ ଭିତରେ । କୋକିଳ ପଞ୍ଚମ ତାନରେ ଗାଇଯାଏ, ବନଭୂମି ମୁଖରିତ କରେ, କିନ୍ତୁ ହୃଦୟ କାହାର ଉଦ୍ଦେଶ୍ୟରେ ଅବନତ ହୋଇ ପଡ଼େ, କେହି ସ୍ପଷ୍ଟ କରି କହିପାରନ୍ତି ନାହିଁ । ମୁଁ ନିଜର ବୋଲି ଅନେକଙ୍କୁ ଅନୁସରଣ କରିଛି, ହୃଦୟ ଭାର ସ୍ୱତଃପ୍ରବୃତ୍ତ ହୋଇ ପ୍ରକାଶ କରି ଦେଇଛି; କିନ୍ତୁ ମୂଲ୍ୟ ବୁଝିଛନ୍ତି ତାର କେତେଜଣ ? ଭାବପ୍ରବଣ ହୃଦୟରେ ଗୋଟାଏ ସରଳ ପଥ ଖୋଜିଛି; କିନ୍ତୁ ପାଇଛି କଣ ? ସବୁ ବ୍ୟର୍ଥ ହୋଇ ନାହିଁକି ? ମନୁଷ୍ୟ ଚାହେଁ କଣ ? ଏ ପ୍ରଶ୍ନର ଉତ୍ତର ଦେବ କିଏ ? ମୋର ଯଦି ସଂସାର ସଙ୍ଗେ ସମ୍ପର୍କ ନାହିଁ; ତାହାହେଲେ ମୋ ଭାବ ବ୍ୟକ୍ତ କରି ଲାଭ କଣ ? ଜଗତରେ ମୋର ଜନ୍ମ, ଜୀବ ଭାବରେ ମୋର କେତେଗୁଡ଼ାଏ ବସ୍ତୁ ସଙ୍ଗେ ସମ୍ପର୍କ ନିଶ୍ଚୟ ରହିବ, ତେବେ ମୋ ପଥରେ ବାଧା ଦେଉଛି କିଏ ? ମୋ ପରି ଅସଂଖ୍ୟ ନରନାରୀ ଧରା ବକ୍ଷରେ ଚାଲିଛନ୍ତି । ସମସ୍ତେ ନିର୍ବିବାଦରେ ଚାଲିଲେ କଣ ପ୍ରକୃତିର ସମତା ନଷ୍ଟ ହୋଇଯା'ନ୍ତା ? ଏ ତ ଗଲା ମୋର ମହତ ଭାବନା, କିନ୍ତୁ ସଂସାରର ବନ୍ଧ ଗଢ଼ ତ ରହିଛି । ତାକୁ ଦୂର କରିବ କିଏ ?

ଜୀବ ଧର୍ମ ପାଳନ କରି ମୁଁ ସଂସାରଠାରୁ ପୃଥକ୍ ରହିପାରିବି ନାହିଁ । ସଂସାରକୁ ଭୁଲିଲେ ନିଜକୁ ଭୁଲିବାକୁ ହେବ; କିନ୍ତୁ ରକ୍ତ ମାଂସର ଶରୀରରେ ଏହା ତ ସହ୍ୟ କରି ହେବ ନାହିଁ । ଯଦି ମନୁଷ୍ୟ ହୋଇ ସାଧାରଣ ନୀତି ଅବଲମ୍ବନ

କରେ ତାହେଲେ ଜୀବ ଧର୍ମ ପାସୋରି ଦେଇ ପାରିବ; କିନ୍ତୁ ସାଧନାର କଠିନତା ଭିତରେ ପ୍ରବେଶ କରିବାକୁ ହେବ; ସ୍ୱପ୍ନ ଆଉ ସ୍ୱପ୍ନ ହୋଇ ରହିବ ନାହିଁ । କଳ୍ପନାର ଆଶ୍ୱାସନା ଆସି ଉତ୍‌କ୍ଷିପ୍ତ ଜୀବନକୁ ଟାଣି ରଖିବ ନାହିଁ । ମୁଁ ତ ନିଜକୁ ଭୁଲିଯିବି; କିନ୍ତୁ ରଖିବ କ'ଣ ? ଅହମିକା, ଦମ୍ଭ ଓ ଅଭିମାନ ସବୁ ଗଳିଯିବ । ଆଉ ରହିବ କ'ଣ ? ରହିବ କେବଳ ଗୋଟାଏ ପ୍ରକାଣ୍ଡ ଶୂନ୍ୟତା । ଶୂନ୍ୟତାର ତ ମୂଲ୍ୟ ନାହିଁ । ଏ ତ ବଡ଼ କଠିନ କଥା, ତୃପ୍ତି ପାଇବା ଆଶାରେ ସବୁ ଛାଡ଼ିବାକୁ ମନ ବଳାଇଥିଲି କିନ୍ତୁ ଏ ପ୍ରୟାସ ମଧ୍ୟ ବୃଥା ହେଲା ।

ଜୀବନରେ ଯେତେବେଳେ 'କିନ୍ତୁ' ଗୋଟାଏ ବ୍ୟବଚ୍ଛେଦ ଆଣେ, ମୁଁ ସେତେବେଳେ ନୀରବରେ ସବୁ ଯାତନା ସହିଯାଏ । ସ୍ରୋତ ନିମ୍ନଗାମୀ ମନୁଷ୍ୟର ମନ ମଧ୍ୟ ସ୍ୱଭାବର ଅନୁବର୍ତ୍ତୀ, କିନ୍ତୁ ଦୁଇଟିର ସାମଞ୍ଜସ୍ୟରେ ଅଛି ଗୋଟାଏ ଆଭ୍ୟନ୍ତରୀଣ ଅସାମଞ୍ଜସ୍ୟ । କ୍ଷିପ୍ରା ତଟିନୀ ସାଗରରେ ଧାଇଁଯାଏ, ଅନନ୍ତ ଜଳଧି ସଙ୍ଗେ ମିଶେ । ଅଜସ୍ର ବାଧା ବିଘ୍ନ ଆସେ; ସେଥିପାଇଁ ତାର ଦୃକ୍‌ପାତ ନାହିଁ । ସେ ଉଚ୍ଛୁଳି ଉଠିଲେ କେହି ତାର ଗତିରୋଧ କରିପାରନ୍ତି ନାହିଁ । ସେ ଯାହା ଚାହେଁ ତାହା ନିର୍ବିଘ୍ନରେ କରିଯାଏ । ପ୍ରକୃତିର ସହାୟତାରେ ତଟିନୀ ନିଜକୁ ପୂର୍ଣ୍ଣମାତ୍ରାରେ ଉନ୍ମୁକ୍ତ କରିଦିଏ । ବିଶ୍ୱର ଅସୀମତାରେ ଗୋଟାଏ ସାମାନ୍ୟ ବିନ୍ଦୁଠାରୁ ହୀନ ହେଲେ ମଧ୍ୟ ସେ କେବେ ନିଜକୁ ଅସହାୟ ମନେ କରେ ନାହିଁ । କିନ୍ତୁ ମନୁଷ୍ୟ ସ୍ୱଭାବରେ କାହିଁକି ଏପରି ଲକ୍ଷିତ ହୁଏ ନାହିଁ ? ହୃଦୟ ଖୁବ୍ ଉଦାର ହୋଇପାରେ । କଳ୍ପନା ବଳରେ ମନୁଷ୍ୟ ଶତସଂଖ୍ୟକ ତଟିନୀକୁ ଉପେକ୍ଷା କରିପାରେ । ଦରିଦ୍ର କୁଟୀରବାସୀ ହୋଇ ସେ ରାଜାଧିରାଜର ଆକାଂକ୍ଷା ପୋଷଣ କରିପାରେ, କୁତ୍ସିତ ହୋଇ ବିଶ୍ୱମୋହିନୀ ରୂପସୀର ସୌନ୍ଦର୍ଯ୍ୟ କାମନା କରିପାରେ, କିନ୍ତୁ ଏସବୁ ଭାବନା କାହିଁକି ତାର ଉଭେଇଯାଏ ? ଭାବନାର ଅତ୍ୟୁଚ୍ଚ ଶିଖରରୁ ଖସିପଡ଼ି ସେ ନିଜକୁ କାହିଁକି ଅସହାୟ ମନେକରେ ? ମନୁଷ୍ୟ ଯାଉଥାଏ ଗୋଟାଏ ବାଟରେ, ତାର ଦୃଷ୍ଟି ନିବଦ୍ଧ ଥାଏ ଗୋଟାଏ ଲକ୍ଷ୍ୟରେ । ମନପ୍ରାଣ ଢାଳି ଦେଇଥାଏ ସେ ଜଣକ ପାଇଁ, କିନ୍ତୁ କି ପରିବର୍ତ୍ତନ ଆସେ ଯେ ସେ ନିତାନ୍ତ ସଙ୍କୁଚିତ ହୋଇପଡ଼େ । ଯାହାର ଆରାଧନାରେ ମନ ଶରୀରକୁ ସୁଦ୍ଧା ଉପେକ୍ଷା କରିପାରେ, ତାକୁ ପୁଣି ସ୍ମୃତିପଟରେ ଆଣିବାକୁ ତାର ଭୟ ହୁଏ । ପ୍ରକୃତି ଯେତେବେଳେ ଇଙ୍ଗିତ ଦେଲା, ତଟିନୀ ସେତେବେଳେ ସାଗରରେ ଧାଇଁଗଲା । ସେ ଇଂଗିତ କଣ ମାନବପ୍ରତି ହେଲା ନାହିଁ ? ନିଶ୍ଚୟ ହୋଇଥିଲା, "କିନ୍ତୁ" ଟି ହେଲା ତାର ବିରୋଧୀ ।

ମୁଁ ପିଲାଦିନୁ ଥିଲି ବଡ଼ ସୌନ୍ଦର୍ଯ୍ୟପ୍ରିୟ । ସୌନ୍ଦର୍ଯ୍ୟର ଆଶ୍ରୟ ଦେଖିଲେ ନିଜକୁ ପାସୋରି ପକାଉଥିଲି । ଭାବୁଥିଲି ସୌନ୍ଦର୍ଯ୍ୟକୁ ଏକମାତ୍ର ଅବଲମ୍ବନ କରି ଜୀବନଟାକୁ ଗୋଟାଏ ଝୁଲିରେ କଟାଇଦେବି । ଯୌବନ ଆସିଲା— ଅନ୍ତରରେ ଗୋଟାଏ ଅବ୍ୟକ୍ତ ସୁମଧୁର ରାଗିଣୀ ବାଜି ଉଠିଲା । ନଦୀ, ବନ, ପର୍ବତ ଓ ଦୂର ଚକ୍ରବାଳରେ ଯାଇ ମୋର ଅନ୍ତର ଖୋଜିବାକୁ ଲଗିଲା ଜଣକର ସନ୍ଧାନ ପାଇବା ପାଇଁ । ସେ ଜଣକ କିଏ ? ସୌନ୍ଦର୍ଯ୍ୟ ଥିଲା ଯାହାର ଏକମାତ୍ର ସମ୍ବଳ, ଯାହାର ଅଧରକାନ୍ତରେ ଗୋଟିଏ ନୈସର୍ଗିକ ଶୋଭାର ଆଭା ଉଚ୍ଛୁଳି ଉଠୁଥିଲା, ସେହି ହେଲା ମୋର ଅନ୍ୱେଷଣର ଏକମାତ୍ର କାରଣ । ହୃଦୟ ମୋର କେଉଁ ଅଜ୍ଞାତ କାଳରୁ ଗୋଟାଏ ଅସ୍ପଷ୍ଟ ଛବି ଆଙ୍କି ରଖିଥିଲା । ତାର ପ୍ରତିଛବି ପାଇବାକୁ ଯେତେ-ବେଳେ ଉଦ୍‌ବିଗ୍ନ ହୋଇ ଉଠିଲି ଓ କେତେ ରୂପସୀର ମୁଖକାନ୍ତିରେ ସେହି ଅଜ୍ଞାତ ସୁଷମାର ଚିହ୍ନ ସନ୍ଧାନ କରିବାକୁ ପ୍ରୟାସ କଲି, ସେତେବେଳେ ଆସିଲା—"କିନ୍ତୁ" ।

ସବୁ ଭାବନା ଦଳିଗଲା । ସୌନ୍ଦର୍ଯ୍ୟ ଲୁଚିଗଲା । ରହିଗଲା କେବଳ ଗୋଟାଏ ତୀବ୍ର ବିଦ୍ରୂପ । ହୃଦୟ ନିସ୍ତେଜ ହୋଇଗଲା । ଯୌବନକୁ ଶତ ଧିକ୍‌କାର ଦେଲି, ନିଜକୁ ଅଭିଶପ୍ତ ମନେକଲି । ଭାବିଲି ଜଗତଟା 'ମଜଲିସ୍'ର ସ୍ଥାନ ନୁହେଁ । ମୁଁ ଯାହାର ସନ୍ଧାନରେ ଆତ୍ମବିନିମୟ କରିବାକୁ ଯାଇଥିଲି, ସେ ତ ମୋର ଅନ୍ତରର କଥା ଜାଣିପାରିଲା ନାହିଁ । ଜାଣିଥିଲେ ଅବା କରନ୍ତା କ'ଣ ? ଗୋଟାଏ ନିଷ୍ଠୁର କୋମଳତା-ବିଦ୍ୱେଷୀ ସାମାଜିକ ଶାସନ ମନୁଷ୍ୟକୁ ଯେ ନିଗଡ଼ରେ ବାନ୍ଧି ରଖିବାକୁ ଚାହେଁ, ତାହା ହାତରୁ ନିଷ୍କୃତି ପାଇବାର ଅଧିକାର ତାର କିମ୍ବା ମୋର ନ ଥିଲା । ଅନ୍ତରର ଅବଲମ୍ବନକୁ ଛାଡ଼ିଦେଲି, କିନ୍ତୁ ସାନ୍ତ୍ୱନା ଆସିଲା ନାହିଁ । ପୁଣି ଭାବିଲି ଗୋଟାଏ ପ୍ରତି-ଛବି ପାଇଁ ଏତେ ବ୍ୟସ୍ତ ହେବି କାହିଁକି ? ଯେଉଁଠାରେ ଦୁର୍ବଳତା ଅଛି, ଯାହାକୁ ମନୁଷ୍ୟ ଗୋପନରେ ରଖିବାକୁ ଚାହେଁ, ସେଥିରେ କ'ଣ ପ୍ରକୃତ ଆନନ୍ଦ ମିଳିପାରେ ? ମନେ ପଡ଼ିଲା ପରକୀୟା ପ୍ରେମ କଥା; ମୁଁ ତ ସୌନ୍ଦର୍ଯ୍ୟକୁ ଉପଯୁକ୍ତ ପୂଜା ଦେଇପାରିନାହିଁ, ଦୁର୍ବଳ ହୃଦୟରେ ଅନେକଥର ହରସ କଥା ଭାବିବାକୁ ଯାଇ ନରକର

ପୂର୍ବ ଗନ୍ଧ ଆବିଷ୍କାର କରିପକାଇଛୁ ତେବେ ପରକୀୟା-ପ୍ରେମ କଥା ଭାବିବାରେ ମୋର ଆଦୌ ଅଧିକାର ନାହିଁ। ଭୁଲି ଯାଇଥିଲି—"First deserve then desire" କଥାଟାର ସାରବତ୍ତା। ଉତ୍କ୍ଷିପ୍ତ ଅବସ୍ଥା ଚାଲିଗଲା। ନିଜକୁ ପ୍ରକୃତିସ୍ଥ କରିନେଲି; କିନ୍ତୁ ବିସ୍ମୃତ ରାଗିଣୀ ଗୋଟାଏ ବରାବର ବାଜିବାକୁ ଲାଗିଲା।

ବୀଣାର ତାର ଛିଣ୍ଡିଯାଏ। ଅନ୍ୟ ତାର ସଂଯୋଗ କରି ତାର କାର୍ଯ୍ୟ ସମ୍ପାଦନ କରାଯାଏ। ମନେକଲି ହୃଦୟର କୋମଳ ପର୍ଦ୍ଦାଟି ଛିଣ୍ଡିଗଲେ କ'ଣ ତାର ସ୍ଥାନ ପୂରଣ କରି ହେବ ନାହିଁ ? ହୁଏ—କିନ୍ତୁ ଯେ ସ୍ୱରଟି ବାଜି ଉଠେ, ସେଥିରେ ଅନ୍ୟ ଏକ ଅପରିଚିତ ନୂତନ ରାଗିଣୀର ସନ୍ଧାନ ମିଳେ। ଯାହା ଲୁଚିଗଲା, ତାକୁ ଖୋଜି ପାଇବାକୁ ଚେଷ୍ଟା କରିବା ମନୁଷ୍ୟର ଗୋଟାଏ ମସ୍ତ ଭୁଲ କିନ୍ତୁ ମନ ତ ଏଥିରେ ମାନେ ନାହିଁ। ଲୁଚିଯିବା ପଦାର୍ଥକୁ ସେ ବେଶି ପରିମାଣରେ ଖୋଜିବୁଲେ। ଆଗରୁ କହିଛି, ମୁଁ ଥିଲି ସୌନ୍ଦର୍ଯ୍ୟର ଉପାସକ। ଉପାସକ ବୋଲି ଠିକ୍‌ରୂପେ କହିହେବ ନାହିଁ। ପ୍ରକୃତ ଉପାସନାରେ 'ସମ୍ଭୋଗ'ର ଇଚ୍ଛା ନ ଥାଏ। ମୋର ଉପାସନା ଥିଲା, କିନ୍ତୁ 'ସମ୍ଭୋଗ' ପାଇଁ। ଜଗତଟା ଖାଦ୍ୟମିଶା, କିନ୍ତୁ ମୋ ମନରେ ଯେ ଖାଦ ଅଛି ତାକୁ ସୌନ୍ଦର୍ଯ୍ୟ ପାଇବାର ସୋପାନ ବୋଲି ଗ୍ରହଣ କରିଥିଲି। ମୁଁ ଜାଣିଥିଲି ଖାଦଟିକ ସରି ଆସିଲେ ଜଗତରେ ଆଉ ସ୍ଥାନ ମିଳେ ନାହିଁ। ମହର୍ଷି ମନୁ ମଧ୍ୟ କହିଛନ୍ତି—ପ୍ରତ୍ୟେକ କର୍ମରେ କାମନାର ପ୍ରଭାବ ଥାଏ। ଏହି କାମନାର ଖାଦ କର୍ମ ଜଗତକୁ ସଦାବେଳେ ଚାଳିତ କରୁଛି, କିନ୍ତୁ ମୁଁ ଯେଉଁ ପଥରେ ଚାଲିଥିଲି ସେଥିରେ କାହିଁକି ଅନ୍ତରାୟ ଆସିଲା ? ଯେ ସୌନ୍ଦର୍ଯ୍ୟ ରୂପ ଯେନ, ଭାଷା ଯେନ ଅନ୍ତରତମ ହୋଇ ଆସେ, ତାକୁ ଦୂର କରିଦେଲେ ମନରେ ନିଶ୍ଚୟ ଗୋଟାଏ ଅବସାଦ ଆସିବ। ତେବେ କ'ଣ ବୁଝିବାକୁ ହେବ ଯେ ସୌନ୍ଦର୍ଯ୍ୟ ଅବ୍ୟକ୍ତ ଓ ଯାହାର ବିକାଶ ପାଇଁ ରୂପ ଲୋଡ଼ା ହୁଏ ନାହିଁ ତାକୁ ସୌନ୍ଦର୍ଯ୍ୟ ପିପାସୁ ଅନୁସରଣ କରିବ ? ମୁଁ ତ ରହିଲି ଜଗତର ବେଷ୍ଟନୀ ମଧ୍ୟରେ, କିନ୍ତୁ ଏପରି ଅପାର୍ଥିବ ଭାବରେ ଅନୁପ୍ରାଣିତ ହେବାପାଇଁ ମନ ଆଦୌ ପସନ୍ଦ କରେ ନାହିଁ।

ସୌନ୍ଦର୍ଯ୍ୟାନୁଭୂତି ସଙ୍ଗେ ଆକର୍ଷଣର ପ୍ରଭାବଟା ମଧ୍ୟ ମୋ ହୃଦୟକୁ ଅତିମାତ୍ରାରେ ଅଭିଭୂତ କରିଥିଲା, "କଲୁ" ଥିଲା ଗୋଟାଏ ପ୍ରଚ୍ଛନ୍ନ ଶକ୍ତି ଯାହାର ଆବିର୍ଭାବରେ ମୁଁ •ହୃତସର୍ବସ୍ୱ ନହୋଇ ସ୍ୱ ସ୍ଥାନକୁ ଫେରିଆସେ। ଅନେକ ଥର ହୃଦୟର ଆବେଗରେ ଅସାରକୁ ସାର ମନେକରି ବହୁତ ଦୂର ଅଗ୍ରସର ହୋଇଥିଲି। ବାହାରଟାକୁ ଦେଖି ଅନ୍ତରକଥା ପାସୋରି ଦେଇଥିଲି, ମୁହୂର୍ତ୍ତିକରେ ସାମାନ୍ୟ ସ୍ପନ୍ଦନ ଭାବଜଗତରେ ମୋର କେତେଥର ବିପ୍ଳବ ଆଣିଥିଲା। ଜାଣେ ନାହିଁ ଯାହାପାଇଁ ମୋର ଅନ୍ତର ଆଲୋଡ଼ିତ ହେଉଥିଲା, ସେ କେତେଦୂର ମୋ ଭାବ ଗ୍ରହଣ କରିବାକୁ ସକ୍ଷମ ହୋଇଥିଲା। ମୁଁ ବାହାର ଦେଖି ଅନ୍ତରକୁ କଳନା କରିନିଏ, କିନ୍ତୁ ଏହିଠାରେ ରହିଯାଏ ଯେ ଭୁଲଟି, ତାହା ମୋ ବେଦନାମୟ ଜୀବନର ଭିତ୍ତିଭୂମି ହୁଏ।

ଜୀବନ କ୍ଷିପ୍ର ଗତିରେ ଚାଲିଛି; କିନ୍ତୁ ମନୁଷ୍ୟ ତାର ସ୍ୱଭାବାନୁଯାୟୀ ସଙ୍କେତସବୁ ପ୍ରଚ୍ଛନ୍ନରେ ରଖିଯାଉଛି। ଯେତେବେଳେ ବିପଦର କାଳିମା ଘୋଟି ଆସେ, ସେତେବେଳେ ସେ ଆଶ୍ରୟ ପାଇବାପାଇଁ ସେହି ଅତୀତର ସଙ୍କେତମାନଙ୍କ ଉପରେ ଦୃଷ୍ଟି ନିକ୍ଷେପ କରେ। ସୌନ୍ଦର୍ଯ୍ୟ ଥିଲା ମୋର ପ୍ରାଣରେ ଆକର୍ଷଣ। ଦୁର୍ଦ୍ଦିନ ଆସେ, ସଂସାରର ପୀଡ଼ନରେ ନିଜକୁ ଅସହାୟ ମନେକରେ, କିନ୍ତୁ ସୁନ୍ଦରୀର ସରସ ଅଧରରେ ଯେତେବେଳେ ହାସ୍ୟ ଟିକିଏ ଫୁଟି ଉଠେ ଓ ଚୂପସାରି ମୋର ଅବସନ୍ନତା ଦୂର କରିବାକୁ କଥା ପଦେ କହିଦିଏ, ସେତେବେଳେ ମୁଁ ନିମେଷକ ପାଇଁ ହୃଦୟର ଦାରୁଣ ଆଘାତ ଭୁଲିଯାଏ; କିନ୍ତୁ ଯେ ଦାଗଟି ମୋ ଅନ୍ତରକୁ ଭେଦକରି ଗୋଟାଏ ପ୍ରତିଷ୍ଠା ଲୋଡ଼େ ତାହା ଭବିଷ୍ୟତ ପାଇଁ ଗୋଟାଏ ଦୀର୍ଘ ଆକୁଳତା ସଞ୍ଚୟ କରି ରଖେ। ମୋର ଗତିକୁ ଅନେକଥର ବିସ୍ତାରିତ କରିଦେଇଛି—"କଲୁ" ଆସି ସବୁଥର ମୋ ବିସ୍ତୃତରେ ବାଧା ଦେଇଛି; ତୀବ୍ର ପିପାସା ବେଗକୁ ମୁଁ ସମ୍ଭାଳିପାରେ, କିନ୍ତୁ ବହୁ ଦିନ ସନ୍ଧ୍ୟକରେ ପୋଛିପାରେ ନାହିଁ ସେହି ଦାଗର ଦୃଢ଼ତାକୁ। ମୁଁ ଯେ ପଥର ପଥିକ ସେ ପଥରେ କିନ୍ତୁ—ସହଯାତ୍ରୀ ଆସିବାକୁ ଭୟ କରନ୍ତି।

# ସରସୀ

ଅନନ୍ତ ଜୀବନ ପଥରେ ସହଯାତ୍ରୀ ଆସନ୍ତି ଅନେକ, କିନ୍ତୁ କାଳର ବୁଦ୍‌ବୁଦରେ ଅଧିକାଂଶ କେଉଁଆଡ଼େ ହଜିଯାଆନ୍ତି; ସେମାନଙ୍କୁ ଧରି ହୁଏ ନାହିଁ । ଜଣେ ଜଣେ ଯାତ୍ରୀ ସାଂଗ ଛାଡ଼ି ଚାଲିଗଲା ପରେ ଯେଉଁ ପ୍ରହେଳିକା ସୃଷ୍ଟି କରି ଦେଇଯାଆନ୍ତି ତାହା ଗୋଟିଏ ଅସ୍ପଷ୍ଟ ରେଖାପାତ କରି ଜୀବନର ଶୂନ୍ୟତାରେ ବିଶ୍ୱସୌନ୍ଦର୍ଯ୍ୟର ଅବଦାନକୁ ଦେଖାଇଦିଏ । ପ୍ରହେଳିକା ନିମିଷକର ସୃଷ୍ଟି । ସମାଧି ତାର ସେହି ଅନନ୍ତ କାଳଗର୍ଭରେ । ବିଶ୍ୱମାନବର ଯାତ୍ରା ପଥରେ ଏହା ଗୋଟିଏ ଇଂଗିତମାତ୍ର । ଜୀବନର ଓ ପ୍ରକୃତିର ସଂଯୋଜନା ପାଇଁ ସଂଗଛଡ଼ା ଯାତ୍ରୀ କେହି ଯେଉଁ ଯବନିକା ପକାଇ ଦେଇଯାଆନ୍ତି ତାକୁ ଉଠାଇବା ସମ୍ଭବ ହୁଏ ନାହିଁ । ଯବନିକା ଆସ୍ତେ ଆସ୍ତେ ଲୁଚିଯାଏ, ପ୍ରହେଳିକା ଭାସି ଉଠି ପୁଣି ସେହି ଶୂନ୍ୟତାରେ ମିଶିଯାଏ । ଜୀବନଯାତ୍ରୀ କ୍ଷୁବ୍ଧ ହୋଇଉଠେ । ତା ନୟନର ମଣି ମୁହୂର୍ତ୍ତିକ ପାଇଁ ଗୋଟିଏ ପର୍ଦ୍ଦା ଅନ୍ତରାଳରେ ଢାଙ୍କିହୋଇ ରହେ । ପ୍ରକୃତି ଆସି ଏହି ପର୍ଦ୍ଦାକୁ ଅପସାରିତ କରିଦିଏ । ଯାତ୍ରୀ ଦେଖେ ବନ୍ଧୁ ତାର କେହି ନାହିଁ । ନଦୀ, ବନ, ପର୍ବତରେ ସେ ଖୋଜିବୁଲେ ଜଣେ କାହାକୁ ସହଯାତ୍ରୀ କରିବ ବୋଲି, କିନ୍ତୁ ଅନ୍ତର ତାର ମାନେ ନାହିଁ । ବସନ୍ତର ସନ୍ଧ୍ୟା ଆସେ, ଶୁଭ୍ରଜ୍ୟୋତ୍ସ୍ନାମୟୀ ଧରିତ୍ରୀ ଉତ୍‌ଫୁଲ୍ଲ ହୋଇଉଠେ । ବିପଞ୍ଚିର ଦୂରାଗତ ସ୍ୱନ ମଳୟର ହିଲ୍ଲୋଳରେ ଭାସି ଆସେ । କିନ୍ତୁ ତାର ପ୍ରତୀକ୍ଷା ଜଣକ ପାଇଁ ରହିଯାଏ । ଶରତର ଶେଫାଳି ଫୁଟି ଉଠି ଝରିପଡ଼େ । ସ୍ରୋତସ୍ୱିନୀ ନୀରବରେ ବହିଯାଏ, ସେ ଜଣକ କିନ୍ତୁ ଆସେ ନାହିଁ । ସେ ଜଣକ କିଏ ? ସରସୀ । ସରସୀ ଥରେ ଆସିଥିଲା । ସାଥି ତାର ଥିଲା ଶୈବାଳିନୀ । ସରସୀ ଓ ଶୈବାଳିନୀ ପ୍ରକୃତିର ଦୁଇ ଭିନ୍ନ ଉପାଦାନ । ଘଟଣାକ୍ରମରେ ଦୁହିଙ୍କ ମଧ୍ୟରେ ଯେଉଁ ଆତ୍ମୀୟତା ଜମିଥିଲା ତାହା ସାଧାରଣତଃ ବିରଳ । ଆଜନ୍ମତ୍ୟାଗୀ ପ୍ରଶାନ୍ତଚେତା ଗୌରୀଶଂକର ସଂସାରର ରୁକ୍ଷ ବେଷ୍ଟନୀରେ ସରସୀ ଓ ଶୈବାଳିନୀକୁ ଅତି ଯତ୍ନରେ ପାଳନକରି ଯେଉଁ ଆଦର୍ଶରେ ସେମାନଙ୍କୁ ଶିକ୍ଷା ଦେଇଥିଲେ ତାହା ଦୁହିଙ୍କ ଜୀବନରେ ଗୋଟାଏ ସମାନତା ଆଣିପାରିଲା ନାହିଁ । ଗୌରୀଶଂକରଙ୍କର ସଂସାରରେ ଏହି ଦୁଇଟି ପାଳିତ କୁମାରୀ—ସରସୀ ଓ ଶୈବାଳିନୀ ଛଡ଼ା ଅନ୍ୟ କେହି ନ ଥିଲେ । ଶୈଶବରୁ ଦୁହେଁ ସମାନ ଭାବରେ ବଢ଼ିଲେ କିନ୍ତୁ ନିୟତିର ବିଚିତ୍ର ବିଧାନରେ ଦୁହିଁଙ୍କର ଗତିପଥ ଭିନ୍ନ ହୋଇଗଲା । ସରସୀ ଓ ଶୈବାଳିନୀର ନିବିଡ଼ ବନ୍ଧୁତା ଭିତରେ ଗୋଟାଏ ପ୍ରଚ୍ଛନ୍ନ ଅସ୍ୱସ୍ତି ଥିଲା । ସେହିଟାକୁ ସରସୀ ବେଶି ଗୋପନରେ ରଖିଥିଲା । ଶୈବାଳିନୀ ତାର ଏକମାତ୍ର ବନ୍ଧୁ । ହୃଦୟର ଗଭୀରତମ ଅନୁଭୂତିରେ ସେ ଯେଉଁ ଚିତ୍ରପଟକୁ ଦୂରରେ ରଖି ମନେ ମନେ ଭଲ ପାଉଥିଲା ତାହା ଶୈବାଳିନୀ ପାଇଁ ଗୌରୀଶଂକର ଅନେକ ଦିନୁ ସମ୍ବାଦ ରଖି ଦେଇଥିଲେ । ସାମାନ୍ୟ ଚିତ୍ରଟିରେ ଈର୍ଷାଭାବ ଦେଖାଇ ସରସୀ ଶୈବାଳିନୀ ମନରେ କଷ୍ଟ ଦେବାପାଇଁ କେବେହେଲେ ସୁବିଧା ଦେଇନାହିଁ । ସରସୀର ସରଳ ହସଟି ତା ମନର କଥାକୁ ଲୁଚାଇରଖେ । ଶୈବାଳିନୀ ସରସୀର ମନକଥା ଜାଣିପାରେ, କିନ୍ତୁ ଚିତ୍ରଟିର ଆସକ୍ତି ତାକୁ ବନ୍ଧୁ ସ୍ନେହରୁ ବେଶି ଜଣାପଡ଼େ । ଚିତ୍ରଟି ହୁଏ ଦୁଇ ବନ୍ଧୁଙ୍କର ଅନ୍ତରର ବ୍ୟବଧାନ । ସରସୀ ଅନ୍ତରର ସମସ୍ତ ଅଭିବ୍ୟକ୍ତି ଶୈବାଳିନୀ ଆଗରେ ପ୍ରକାଶକରେ କିନ୍ତୁ ଚିତ୍ର ପ୍ରତି ତାର ଲେଶ ମାତ୍ର ଆସକ୍ତି ଥାଏ ବୋଲି ଶୈବାଳିନୀକୁ ଜାଣିବାକୁ ଦିଏ ନାହିଁ । ବରଂ ଅନେକ ସମୟରେ ସେ କଥା ପ୍ରସଙ୍ଗରେ ଚିତ୍ର ପ୍ରତି ଗୋଟାଏ ବିରାଗ ଭାବ ସୃଷ୍ଟି କରେ । ଅନ୍ତରର ନିଭୃତ ଅଭିବ୍ୟକ୍ତି କଥାରେ ସହଜରେ ପ୍ରକାଶିତ ହୁଏ ନାହିଁ । ଅନୁଭବୀ ଛଡ଼ା ଅନ୍ୟ କେହି ତାର ସତ୍ୟତା ବୁଝେନାହିଁ । ସରସୀର ସରଳ ହାସ ଓ ସ୍ୱାଭାବିକ ଚଞ୍ଚଳତାରେ ଏହାର ସ୍ୱର୍ଣ୍ଣ ଆତ୍ମଗୋପନ କରିଥିଲା । ବାଲ୍ୟସଙ୍ଗିନୀ ଶୈବାଳିନୀ ପାଖରେ ସରସୀ ଅନେକ ସମୟରେ ହୃଦୟ ଖୋଲି କଥା କୁହେ କିନ୍ତୁ ତାର ଅନ୍ତର ଯେ କାହିଁକି ଥରେ ଥରେ ବିଦ୍ରୋହୀ ହୋଇ ଉଠେ, ସେ ତାହା ନିଜେ ବୁଝିପାରେ ନାହିଁ । ଶୈବାଳିନୀକୁ କଥା ଛଳରେ ପଚାରେ :

ସରସୀ—ଶୈବାଳିନୀ, ଜୀବନ ଗୋଟାଏ ସ୍ପନ୍ଦନ । ଏହି ସ୍ପନ୍ଦନରେ ସ୍ଫୂର୍ତ୍ତି ଆଣିବା କ'ଣ ଦୋଷ ? ଅନ୍ତର ଯାହାକୁ ଭଲପାଏ, ତାକୁ ଲୁଚାଇ ରଖିଲେ ମନର ସ୍ଫୂର୍ତ୍ତି ସ୍ୱତଃ କମି ଆସିବ । ଜୀବନର ସ୍ପନ୍ଦନ ସେଥିସଙ୍ଗେ କ୍ଷୀଣ ହୋଇଯିବ, ତାର ସରସତା ଆଉ ରହିବ କେଉଁଠି ?

ଶୈବାଳିନୀ—ଭୁଲ୍ ବୁଝୁଛ ଭଉଣି ! ଜୀବନର ବିସ୍ତୀର୍ଣ୍ଣତାକୁ ତୁମେ ଦେଖିପାର ନାହିଁ । ଦୂର ପ୍ରାନ୍ତରରେ ଯେତେବେଳେ ବୁଲ୍‌ବୁଲ୍ ତୁମେ ଅଟକି ଯାଇ ଧୀର ଗମ୍ଭୀର ଭାବରେ ଅସ୍ତାଚଳଗାମୀ ରବିର ଶେଷ କିରଣଛଟା ଉପଭୋଗ କର ଓ ବସନ୍ତ ଗୋଧୂଳିର ମଳୟ ସ୍ପର୍ଶ ତୁମ କମନୀୟ ମୁଖ କାନ୍ତିରେ ଅଯତ୍ନମଣ୍ଡିତ ତୁମର ଚୂର୍ଣ୍ଣକୁନ୍ତଳକୁ ଦୋହଲାଇ ଦେଇଯାଏ, ସେତେବେଳେ ତୁମର ଅଙ୍ଗଲତା କାହିଁକି ସ୍ଫୂର୍ତ୍ତିର କୌଣସି ସୂଚନା ଦିଏ ନାହିଁ । ମୁଁ ତୁମ ସାଥିରେ ଥାଏ । ତୁମେ ମୋତେ ସୁଦ୍ଧା ଭାବାବେଶରେ ଭୁଲିଯାଅ । ତୁମ ଅନ୍ତର ଯାହା ଉଦ୍ଦେଶ୍ୟରେ ଏପରି ଅବନତ ହୋଇପଡ଼େ ତୁମେ ବୋଧହୁଏ ତାକୁ ଜାଣିପାର ନାହିଁ । ପିଲାଦିନୁ ତୁମକୁ ମୁଁ ଦେଖି ଆସିଛି । ତୁମେ ବଡ଼ ଚଞ୍ଚଳା । ସମୀରଣ ବହି ଆସେ । କ୍ଷୁଦ୍ର ସହକାର କୁଞ୍ଜର ପତ୍ର ଅନ୍ତରାଳରୁ ଗୋଟିଏ କ୍ଷୀଣ ମର୍ମର ଧ୍ୱନି ଫୁଟି ଉଠେ । ତୁମେ ସେଥି ସଙ୍ଗେ ଥରି ଉଠ । ପ୍ରକୃତିର ଦାନକୁ ତୁମେ ଠିକ୍‌ରୂପେ ଗ୍ରହଣ କରିପାର ନାହିଁ ବୋଲି ଜୀବନର ସ୍ଫୂର୍ତ୍ତିଟାକୁ ବଡ଼ କରି ଦେଖ । ମୋର ମନେହୁଏ ଏ ପର୍ଯ୍ୟନ୍ତ ତୁମେ କାହାକୁ ଭଲ ପାଇ ନାହଁ । ଯଦି କାହାକୁ ଭଲ ପାଇଥାଅ, ତାହାହେଲେ ତାକୁ ଅନ୍ତରରେ ଲୁଚାଇ ରଖିବାରେ ପ୍ରକୃତ ଆନନ୍ଦ ପାଇବ । ତୁମେ ମୋର ଆଜନ୍ମସଙ୍ଗିନୀ, କିନ୍ତୁ ଏହି ଅନ୍ତରର କିନ୍ନଟିକୁ ଦେଖିବାରେ ତୁମ ଓ ମୋ ମଧ୍ୟରେ ଗୋଟାଏ ପାର୍ଥକ୍ୟ ରହିଯାଏ । ମୁଁ ତୁମ ପରି ପତ୍ରର ମର୍ମର ଶବ୍ଦରେ ଚଞ୍ଚଳ ହୋଇ ଉଠେ ନାହିଁ । ମୁଁ ଦେଖେ ବିଶ୍ୱ ପ୍ରକୃତି ସଙ୍ଗେ ଜୀବନର ସମ୍ପର୍କ । ସଂସାର ପଥ ବଡ଼ ଦୁର୍ଗମ । ତୁମ ଗତିପଥରେ ସରସୀ, କେତେ ବିଭୀଷିକା ଦେଖିବ । ଜୀବନରେ ସହଯାତ୍ରୀ ସହଜରେ କେହି ମିଳିବେ ନାହିଁ । ଗୋଟାଏ ଶୂନ୍ୟତାରେ ତୁମେ ନିଜକୁ ବେଶୀକ୍ଷଣ ରଖିପାରିବ ନାହିଁ । ଯାତ୍ରା ତୁମର ସରିବ ନାହିଁ । କେତେ ପ୍ରହେଳିକା ଆସିବ ତୁମର ନିଜତ୍ୱକୁ ହଜାଇ ଦେବାପାଇଁ, କିନ୍ତୁ ତୁମ ଜୀବନର ଗୋଟାଏ ଅନୁଭୂତିକୁ ଲକ୍ଷ୍ୟ ରଖିବ । ଯେତେବେଳେ ରବି ଅସ୍ତାଚଳରେ ବୁଡ଼ି ଯାଉଥିଲା, ତୁମେ ନିର୍ବାକ ହୋଇ ପ୍ରାନ୍ତରରେ ଅନାଇ ରହିଥିଲ, ସେତେବେଳେ ତୁମ ଅନ୍ତରରେ ଯେଉଁ ଭାବ ଆସିଥିଲା, ତାହାକୁ ହିଁ ଅନୁସରଣ କରିବ । ଦେଖିବ—ଅନ୍ତରର ଉନ୍ମାଦନା ଜଣଙ୍କର ପୂଜା ପାଇଁ ବ୍ୟାକୁଳ । କିନ୍ତୁ ବନ୍ଧୁ, ସେ ଜଣକ ସହଜରେ ଧରାଦିଏ ନାହିଁ ।

ସରସୀ—ତେବେ କଣ ଶୈବାଳିନୀ, ଜୀବନଟା ମିଥ୍ୟା ବ୍ୟର୍ଥତା ? ଜଣକର ଅନୁସନ୍ଧାନରେ ସାରା ଜୀବନଟାକୁ ବିତାଇ-ଦେଇ ମଧ୍ୟ ସେ ଜଣକ ଆସି ଗୁଳାଯାଇପାରେ ?

ଶୈବାଳିନୀ—ସରସୀ, ତୁମେ ନାରୀ ଜନ୍ମର ସାର୍ଥକତାକୁ ଭଲରୂପେ ଅନୁଭବ କରିପାରନାହଁ । ସ୍ତ୍ରୀ ଓ ପୁରୁଷ ଦୁହେଁ ପରସ୍ପରର ପରିପୂରକ ହେଲେ ମଧ୍ୟ ଜଣକର ଉପାଦାନ ଅପରଠାରେ ନ ଥାଏ । ଈଶ୍ୱର ଅସୀମତାରେ ଦୁହିଁଙ୍କର ଲକ୍ଷ୍ୟ ଏକ ହୋଇଗଲେ ଜୀବନର ପୂର୍ଣ୍ଣତା ଆସେ । ଏହା ମନୁଷ୍ୟର ଶ୍ରେଷ୍ଠ ସାଧନା । ସ୍ତ୍ରୀ ଓ ପୁରୁଷ ସମାନ ଗତି ନ ଆସିବା ଯାଏ ଏପରି ସାଧନା ସମ୍ଭବ ହୁଏ ନାହିଁ । ସମାନଗତି ଆଣିବା ପକ୍ଷେ ଅନୁଭୂତି ପ୍ରଥମ ସୋପାନ । ଯଦି ଗୋଟାଏ ଜନ୍ମ କେବଳ ଅନୁଭୂତିରେ କଟିଯାଏ ତାହାହେଲେ ମଧ୍ୟ କିଛି କ୍ଷତି ନାହିଁ । କିନ୍ତୁ ସହିତ କେତେ ଜଣ ନାରୀ ପୁରୁଷକୁ ଅନୁସରଣ କରନ୍ତି ? ବୋଧହୁଏ ସଂଖ୍ୟା ଖୁବ୍ କମ୍ । ନାରୀ ଓ ପୁରୁଷର ଜୀବନ, ବିଧିର ଯେଉଁ ଅଚ୍ଛେଦ୍ୟ ବନ୍ଧନରେ ବନ୍ଧା, ତାକୁ ଏଡ଼ିଦେବା ସହଜ ନୁହେଁ । ସରସୀ, ତୁମେ ଦିନେ ଏହି ବନ୍ଧନରେ ବାନ୍ଧିହେବ କିନ୍ତୁ ଜାଣେ ନାହିଁ ବନ୍ଧନଟା ତୁମକୁ ସେତେବେଳେ କେମିତି ଲାଗିବ ।

ସରସୀ—ତେବେ କଣ ଶୈବାଳିନୀ, ଆମର ଜନ୍ମର ସାର୍ଥକତା ରହିବ ସେହି ବନ୍ଧନ ସୃଷ୍ଟି ଅନୁଭୂତିରେ ?

ଶୈବାଳିନୀ—ସରସୀ, ଆଗରୁ ତ କହିଛି ସଂସାର ପଥ ବଡ଼ ଦୁର୍ଗମ । ଗୋଟାଏ ଅନୁଭୂତି ନ ଥିଲେ ପଥର ବିଭୀଷିକା ବଢ଼ିଯାଏ । ମଣିଷ କୁଆଡ଼େ ଯାଉଛି ଜାଣିପାରେ ନାହିଁ ।

ସରସୀ—ମୁଁ ଦେଖୁଛି ଶୈବାଳିନୀ, ତୁମେ ଜୀବନର ଷ୍ଟୃତିଟାକୁ ନାରୀଜୀବନରୁ ବାଦ ଦେବାକୁ ଯାଉଛ । ସାଧନା ଓ ଅନୁସୃତ ତୁମର ଲକ୍ଷ୍ୟ ।

ଶୈବାଳିନୀ—ହଁ ସରସୀ, ଲକ୍ଷ୍ୟ ନ ଥାଇ ସାର୍ଥକ ଜୀବନ ଧାରଣ କରିହୁଏ ନାହିଁ । ଲକ୍ଷ୍ୟ ଏକ ନୁହେଁ, ବହୁ । ଅବିନାଶୀ ସତ୍ୟ ଓ ସୌନ୍ଦର୍ଯ୍ୟକୁ ଯେ ଯେପରି ଭାବେ ଅନୁଭବ କରିପାରିଛି ତାର ଲକ୍ଷ୍ୟ ସେତିକି ଦୂର ଉଚ୍ଚ କିମ୍ବା ନୀଚ ହୋଇ ରହିଛି । ମନୁଷ୍ୟ ଜୀବନର ଶୂନ୍ୟତାରେ ସେତୁର କାର୍ଯ୍ୟ କରିବାପାଇଁ ଏହା ପ୍ରକୃଷ୍ଟ ।

ସରସୀ—ଶୈବାଳିନୀ, ତୁମେ ଯାହା କହୁଛ ତାହା କଣ ନାରୀର କୋମଳ ପ୍ରାଣରେ ସମ୍ଭବ ? ଜାଣିଛ ତ ନାରୀ ଜଗତର ପ୍ରମୋଦ ଉଦ୍ୟାନରେ ଏକମାତ୍ର ସୁରଭିତ କୁସୁମ । ଶତ ଶତ ସାଧନା ତାର ସ୍ପର୍ଶରେ ଦୁର୍ବଳ ହୋଇଯାଏ ।

ନାରୀର ସାମାନ୍ୟ ଇଙ୍ଗିତରେ କେତେ ଜୀବନର ଗତି ବଦଳି ଯାଇପାରେ । ସେ ପୁଣି ଜଣକୁ ଅନୁସରଣ କରିବ— ସହଯାତ୍ରୀ ରୂପେ, ଲକ୍ଷ୍ୟ ରହିବ ତାର ସାଧନା ଓ ଅନୁସୃତ ଉପରେ । ତୁମର ଏପରି ଧାରଣା ମୋତେ ଭଲ ଲାଗୁ ନାହିଁ ।

ଶୈବାଳିନୀ—ସରସୀ, ତୁମକୁ ଭଲ ନ ଲାଗିବାର ଯଥେଷ୍ଟ କାରଣ ରହିଛି । ତୁମେ ଯେତେବେଳେ ପ୍ରମତ୍ତ ପବନରେ ଅଳି ଉଠ ଓ ବାଳ ରବିର କିରଣ ତୁମ ମୁଖମଣ୍ଡଳରେ ଝଲସି ଉଠି ତୁମ ମୁଖର ରକ୍ତିମ ଆଭାକୁ ସେହି ରବିଠାରେ ମିଶାଇଦିଏ, ସେତେବେଳେ ମୋର ମନେ ଅଛି—ତୁମେ ହୁଅ ପାଗଳିନୀ । ରବିକି ଖୋଜିବୁଲ । ସେ କିନ୍ତୁ ତୁମକୁ ଧରି ଦିଏ ନାହିଁ, ତା ଗତି ପଥରେ ସେ ଚାଲିଯାଏ । ତୁମେ ତାକୁ ନୀରବରେ ଅନାଇ ରହ । ସେ ତୁମ ଅନ୍ତର କଥା ବୁଝେ, କିନ୍ତୁ ମୁଁ ପାଖରେ ଥାଏ ବୋଲି ତୁମକୁ କିଛି କହେ ନାହିଁ । ତୁମଠାରେ ଯେଉଁ ପାଗଳାମିଟିକ ଅଛି, ତାହାହିଁ ତୁମ ଲକ୍ଷ୍ୟ ପଥର ଅନ୍ତରାୟ । ତୁମେ ତ ଅନୁସୃତକୁ ପସନ୍ଦ କରୁନଥିଲ, କିନ୍ତୁ ରବି ସଙ୍ଗେ ମୁହୂର୍ତ୍ତିକ ପାଇଁ ଯେପରି ମାତିଗଲ ସେଇଟା କଣ ଗୋଟାଏ ଅନୁସୃତ ହେଲନାହିଁ ! ସେ ଅନୁସୃତରେ ଭ୍ରାନ୍ତି ଥାଇପାରେ ।

ସରସୀ—ଶୈବାଳିନୀ, ତୁମେ ମୋ ଜୀବନର ଗତି ଏତେ ଅନୁସରଣ କରୁଛ କାହିଁକି ?

ଶୈବାଳିନୀ—ତୁମେ ପରା ମୋର ବାଲ୍ୟସାଥୀ । ତୁମର ମୋର ଜୀବନରେ ଯେଉଁ ନିବିଡ଼ ବନ୍ଧନ ଅଛି, ତାକୁ ଜନ୍ମାନ୍ତରରେ ଯୁଦ୍ଧା ଛିଣ୍ଡାଇ ହେବ କି ନାହିଁ, କହିପାରୁନାହିଁ । ପିତାଙ୍କର ପବିତ୍ର ଆଦର୍ଶ ଆମ ଦୁହିଁଙ୍କୁ ଯେପରି ଭାବେ ଗଢ଼ି ଆଣିଛି ସେଥିରେ ଆମ ଦୁହିଁଙ୍କ ମଧ୍ୟରେ ପରସ୍ପର ପ୍ରତି ଗୋଟାଏ ବିଚ୍ଛିନ୍ନତା ଆସିବା ସହଜ ନୁହେଁ । ମୁଁ ସର୍ବଦା ଦେଖେ, ତାଙ୍କର ଆଦର୍ଶ ତୁମ ଓ ମୋ ମଧ୍ୟରେ କେତେଦୂର ରକ୍ଷାପାଇଛି । ତୁମ ଗତିପଥ ଅନୁସରଣ କରିବାରେ ମୋର କିଛି ସ୍ୱାର୍ଥ ନାହିଁ ବୋଲି ଭାବିବ ନାହିଁ ।

ସରସୀ—ହଁ, ସ୍ୱାର୍ଥ ଜିନିଷଟା ଜଗତରେ ସବୁଠାରୁ ବଡ଼ କିନ୍ତୁ ଆମ ଦୁହିଁଙ୍କ ଜୀବନରେ ଏହାର ପ୍ରଭାବ ବେଶି ପ୍ରକାଶ ପାଇନାହିଁ । ଆଜନ୍ମରୁ ପିତାଙ୍କର ଉଦାରତା ଆମକୁ ଜଗତର ସାଧାରଣ ଗତିରୁ ବାହାରେ ରଖିଛି । ଆମେ ଦୁହେଁ ନଗ୍ନ ପ୍ରକୃତି କୋଳରେ ଦୁଇଟି କମନୀୟ ରମଣୀ ମୂର୍ତ୍ତି । ସେଥିରେ ପୁଣି ତୁମ ଓ ମୋ ମଧ୍ୟରେ ଅଚ୍ଛେଦ୍ୟ ପ୍ରୀତି ଜୀବନର ବିଭୀଷିକାକୁ ବହୁଦୂରକୁ ଅପସାରି ଦେଇଛି ।

ଶୈବାଳିନୀ – ନା ସରସୀ, ଜୀବନକୁ ଏତେ ସହଜ ମନେ କର ନାହିଁ । ଆମେ ନାରୀ, ସ୍ୱାଭାବିକ ଦୁର୍ବଳା, ଅମର ଗତିପଥରେ ଜଣେ ସହଯାତ୍ରୀ ନହେଲେ ପତନର ସମ୍ଭାବନା ଯଥେଷ୍ଟ ରହିଛି ।

ସରସୀ—ମୀରା ତ ଆମର ଶ୍ରେଣୀର ଜଣେ ନାରୀ । ସେ କାହିଁକି କାହାର ସଙ୍ଗରେ ଯିବାକୁ ଇଚ୍ଛା କଲା ନାହିଁ । ରାଜୈଶ୍ୱର୍ଯ୍ୟର ଅଧିକାରିଣୀ, ନାରୀ ଜଗତର ମଉଡ଼ମଣି ମୀରା, ପ୍ରବଳ ପ୍ରତାପୀ ପୁରୁଷକୁ ସହଯାତ୍ରୀ କରିବା କଥା ଦୂରେ ଥାଉ, ନିଜର ଦାସ ପରି ଖଟାଇ ପାରିଥାନ୍ତା, କିନ୍ତୁ ସେ କାହିଁକି ସଂଗଛଡ଼ା ହୋଇ ପାଗଳିନୀ ପରି ବୁଲିଲା ? ମୀରା କ'ଣ ତା ଜନ୍ମକୁ ସାର୍ଥକ କରି ପାରିନାହିଁ ?

ଶୈବାଳିନୀ—ସରସୀ, କାହା ସଂଗେ କାହାକୁ ତୁଳନା କରୁଛ ? ମୀରାର ଯେଉଁ ଅମର ସାଧନା ଥିଲା ତାହା ତୁମର କିମ୍ବା ମୋର ନାହିଁ । ମୀରା ଆସିଥିଲା ଯାତ୍ରାର ଶେଷ ଭାଗକୁ, ଆମେ ଅଛୁ ଯାତ୍ରାର ପ୍ରଥମ ଭାଗରେ । ମୀରାର ଜଣେ କିନ୍ତୁ ସହଯାତ୍ରୀ ଥିଲା, ତାକୁ ମୀରା ଛଡ଼ା ଅନ୍ୟ କେହି ଚିହ୍ନି ନ ଥିଲେ । ତାର ସକାଶେ ସେ ପାଗଳିନୀ ହୋଇ ସର୍ବୈଶ୍ୱର୍ଯ୍ୟଙ୍କୁ ତୁଚ୍ଛ କରି ଦେଇଥିଲା । ସ୍ତ୍ରୀ ବୋଲି ସମ୍ଭବ ନାହିଁ—ତୁମ ପାଗଳାମି ଟା ଏହି ଧରର । ମୀରାର ଆଦର୍ଶ ନାରୀ ଜଗତରେ ଅତୁଳନୀୟ ହୋଇ ଚିରକାଳ ରହିବ । ତା ଜୀବନର ସାର୍ଥକତାରେ ଯେ ଗୂଢ଼ ରହସ୍ୟ ରହିଛି ତାହା ସାଧାରଣ ନାରୀର ଧାରଣାକୁ ସହଜରେ ଆସିପାରେ ନାହିଁ ।

ସରସୀ—ତୁମେ କଣ କହିବାକୁ ଚାହୁଁ, ଆମ ଜୀବନରେ କୌଣସି ବିଶେଷତ୍ୱ ନାହିଁ ? ଆମ ଜୀବନର ରହସ୍ୟ କେତେ ଜଣଙ୍କୁ ଜଣା ?

ଶୈବାଳିନୀ—ହଁ, ନିଶ୍ଚୟ ଅଛି । ଆମ ଜୀବନ କଦାପି ମୂଲ୍ୟହୀନ ନୁହେଁ । ଶୁଷ୍କ ଧରଣୀପୃଷ୍ଠରେ ଆମେ ଦୁହେଁ ଶାନ୍ତିର ଦୁଇଟି ପ୍ରତିମୂର୍ତ୍ତି, କର୍ମକଠିନ ଜୀବନର ଆଶ୍ୱସ୍ତି ପାଇଁ ଆମର ସୃଷ୍ଟି । ଆମ ଜୀବନର ରହସ୍ୟ ରବି ସମ୍ପର୍କରେ କିମ୍ବା ତୁମର ଓ ମୋର ବିରୋଧରେ ଜଣାପଡ଼ିପାରେ, କିନ୍ତୁ ତୁମ ଓ ମୋ ମଧ୍ୟରେ ବିରୋଧ ଜନ୍ମି ନ ପାରେ । ଆମର ବନ୍ଧୁତା ଚିରଦିନର । ତୁମଠାରୁ ସଙ୍ଗଛଡ଼ା ହେଲେ ମୋତେ ଆଦୌ ଭଲ ଲାଗେ ନାହିଁ । ସରସୀ, ତୁମ ନାମ ପରି ତୁମ ରୂପଟି । ତୁମେ ଯେତେବେଳେ ହସ ହସ ମୁହଁରେ ମୋ ପାଖରେ ବସି ଜୀବନର ଗାଥା ଗାଇଯାଅ, ମୁଁ ନୀରବ ହୋଇ ସବୁ ଶୁଣୁଥାଏ, ସେତେବେଳେ ମୋର ମନେ ହୁଏ—ତୁମେ ଅନ୍ତର ଯେପରି କାହାକୁ ଗୋପନରେ ଅନ୍ୱେଷଣ କରୁଥିଲା । ମୁଁ ତୁମକୁ କିଛି କହେ ନାହିଁ । ଭାବେ—'ସ୍ଫୂର୍ତ୍ତିର ପ୍ରିୟା ସରସୀ ଅନ୍ତରର ଅଭାବଟାକୁ ଭଲକରି ବୁଝି ନ ପାରି ଗୋଟାଏ କଳ୍ପନା ସ୍ରୋତରେ ଭାସି ଯାଉଛନ୍ତି' । କଥା କହୁ କହୁ ତୁମେ ଚଞ୍ଚଳ ହୋଇଉଠ । ସମୀରଣ ତୁମ ବକ୍ଷୋଦେଶରେ ସଂଚରଣ କରି ଚାଲିଯାଏ । ମୁଁ ନୀରବ ରହେ । ଦେଖେ ତୁମ ଭିତରେ ଗୋଟାଏ ଉନ୍ମାଦନା ରହିଛି ।

ସରସୀ—ଶୈବାଳିନୀ, ଏହି ଉନ୍ମାଦନା ମୋ ଜୀବନର ରହସ୍ୟ । ଉନ୍ମାଦନା ଚାଲିଗଲେ ମୋ ଜୀବନର ବିଶେଷତ୍ୱ ରହିବ ନାହିଁ । ତୁମେ ମଧ୍ୟ ମୋତେ ପାସୋରି ଦେବ ।

ଶୈବାଳିନୀ—ସରସୀ, ତୁମକୁ ମୁଁ ପାସୋରି ପାରେ ନା, ତୁମକୁ ପାସୋରି ଦେଲେ ରବି ସଙ୍ଗେ ତୁମର ଓ ମୋର ମିଳିତ ଅଧ୍ୟାୟଟି ଜୀବନରୁ ବାଦ ପଡ଼ିଯିବ । ମନେ ଅଛି, ବାଲ୍ୟସୁଲଭ ଚପଳତାରେ ମୋତେ ଅନେକଥର ବିବ୍ରତ କରି ମୋ ପୂଜାର ନୈବେଦ୍ୟକୁ ଲୁଗ୍ଣ୍ଠେଇଅ ? ମୁଁ ବିରକ୍ତ ହେଲେ ତୁମେ ହସିଦେଇ ଚାଲିଯାଅ । ତୁମର ପାଳି ଆସେ । ମୋ ପୂଜାରେ ବାଧା ଦେଇ ତୁମେ ସ୍ଫୂର୍ତ୍ତି ଦେଖାଅ । ରବି ତ ତା ମାର୍ଗରୁ ତୁମକୁ ଦେଖେ । ତୁମର ତରଳ ହସରେ ସେ ଟିକିଏ ତାର ଅଗ୍ରଗାମୀ ରକ୍ତିମ କିରଣ ଛୁଇଁଦିଏ । ତୁମେ ଅପଦସ୍ତ ହୁଅ; ସେ ପୁଣି ଚାଲିଯାଏ । ତୁମର ଆରମ୍ଭ ହୁଏ ସେହି ଉନ୍ମାଦନା ।

ସରସୀ—ସହି, ଏ ଉନ୍ମାଦନା ବଡ଼ ଅସହ୍ୟ । ମୋ ଗତିପଥରେ ଏହା ବିଭ୍ରାନ୍ତି ଆଣେ । ରବିର କିରଣ ଲୁଚିଯାଏ । ମୁଁ ଚଞ୍ଚଳ ହୋଇ ତାକୁ ଖୋଜେ । ସେ ମୋ ପାଖକୁ ଆଉ ଆସେ ନାହିଁ । ରବି ମୁହୂର୍ତ୍ତିକର ବନ୍ଧୁ । ସେ ଚାଲିଯାଏ ତାର ମାର୍ଗରେ କେତେ 'ସରସୀ'ଙ୍କୁ ଦେଖେ । କିନ୍ତୁ ମୁଁ ରହିଯାଏ । ଗୋଟାଏ ବସ୍ତୁତିର ଅନ୍ତରାଳରେ ।

ଶୈବାଳିନୀ—ରବିକୁ ତୁମେ ଚିହ୍ନି ନାହଁ । ନାରୀ ଜଗତରେ ତୁମେ ଯେପରି ଚପଳା, ପୁରୁଷ ମଧ୍ୟରେ ସେ ସେହିପରି ଚଞ୍ଚଳ । ସାଗର ବକ୍ଷୋପରେ ସେ ଯେପରି ମଜ୍ଜି ଯାଇଥାଏ ସେତେବେଳେ କଣ ତୁମ କଥା ତା ମନରେ ଥାଏ ? ନଦୀ, ପର୍ବତରେ ପ୍ରକୃତିର ସୌନ୍ଦର୍ଯ୍ୟ ସଙ୍ଗେ ତାର ଉଦାରପ୍ରାଣ ମିଶିଗଲାବେଳେ ସେ ତୁମକୁ ବହୁଦୂରରେ ପକାଇଦେଇ ଚାଲି-ଯାଇଥାଏ ।

ସରସୀ—ତୁମେ ରବିର ଏତେ କଥା ଜାଣ କପରି ?

ଶୈବାଳିନୀ—ତୁମକୁ ଅଛପା ନାହିଁ । ଯେଉଁ ଚଳପଟ ଖଣ୍ଡିକ ପିତା ମୋତେ ଦେଇଥିଲେ ଓ ମୁଁ ଯାହାକୁ ପୂଜାର ନୈବେଦ୍ୟ ଅର୍ପଣ କଲାବେଳେ ତୁମେ ମୋତେ ବିବ୍ରତ କରୁଥିଲ, ପୂଜାହିଁ ଯଥେଷ୍ଟ ସୂଚନା ଦେବ ।

ସରସୀ—ଶୈବାଳିନୀ, ତୁମକୁ ଆଉ ଗୋଟିଏ କଥା ପଚାରିବି । ନାରୀର ଚଞ୍ଚଳତା ଦୋଷ ହେଲେ ତାହା କଣ ପୁରୁଷଠାରେ ମାର୍ଜନୀୟ ?

ଶୈବାଳିନୀ—ପୁରୁଷ ଓ ନାରୀ ମଧ୍ୟରେ ଯଥେଷ୍ଟ ତଫାତ୍ ଅଛି । ପୁରୁଷ ଓ ନାରୀର ଜୀବନରେ ଗୋଟାଏ ଅଖଣ୍ଡ ସମାନତା ଥିଲେ, ବିଶ୍ୱ ବୈଚିତ୍ର୍ୟର ବିଳାସର ମାର୍ଗ ଭିନ୍ନ ହୋଇଥାନ୍ତା । ନାରୀ ପୁରୁଷର ଅର୍ଦ୍ଧାଙ୍ଗିନୀ ହୋଇପାରେ, କିନ୍ତୁ ଦୁହିଙ୍କର ଅନ୍ତରର ସମାନତା ସହଜରେ ଆସେ ନାହିଁ । ବାହ୍ୟଦୃଷ୍ଟିରେ ସଂସାର ଯେଉଁ ସମାନତା ଦେଖେ, ତାହା କିଛି ନୁହେଁ । କମଳ ତ ରବିଠାରେ ସବୁ ଅର୍ପଣ କରି ଦେଇଛି ବୋଲି ଜଗତ ଜାଣେ । କିନ୍ତୁ ଭ୍ରମରର ଆକୁଳ ଗୁଞ୍ଜନରେ ସେ କାହିଁକି ଟିକିଏ ଉଦ୍‌କ୍ଷିପ୍ତ ହେଲପରି ଜଣାପଡ଼େ ।

ସରସୀ କହିଲା—ଏଠାରେ କିଏ ଦୋଷୀ ? ରବି ନା କମଳ ?

ସରସୀ—ଶୈବାଳିନୀ, ତୁମେ ନାରୀଜାତିର ଦୋଷ ଦେଖାଇବାରେ ବଡ଼ ପ୍ରବୀଣା । କମଳର ଦୋଷ ଥିଲେ ରବିର ମଧ୍ୟ ଦୋଷ ଥିବ । ବେଶୀ କହି ଲାଭ ନାହିଁ । ତୁମେ ଭଲରୂପେ ଜାଣ ମୋ ଦୃଷ୍ଟିରେ ରବିର ଦୋଷ କମଳ ଅପେକ୍ଷା ବେଶୀ । ପୁରୁଷ ଅନ୍ତରର ଗୋଟାଏ ଦୁର୍ଦ୍ଦମନୀୟ ପିପାସା ଚିରକାଳ ନାରୀ ଜାତିକୁ ତାହାର ଆଡ଼କୁ ଟାଣି ରଖିଛି । ନାରୀର ପତନ ସକାଶେ ପୁରୁଷ ଦାୟୀ ।

ଶୈବାଳିନୀ—ନାରୀ ସେହି ପିପାସାର କାରଣ ହେଲେ ପତନର କାରଣଟା ମଧ୍ୟ ସେହିପରି ଓଲଟିଯାଏ ।

ସରସୀ—ତେବେ କିଏ କାହାର ପତନର କାରଣ ?

ଶୈବାଳିନୀ—ଉଭୟେ ଉଭୟଙ୍କର ।

ସରସୀ—ଯେଉଁଠି ପତନର ଭୟ ଏତେ ବେଶୀ । ସେଠି ନାରୀର ଅନୁଭୂତିରେ ପୁରୁଷର ସ୍ଥାନ କାହିଁ ?

ଶୈବାଳିନୀ—ଅଛି ଦୃଷ୍ଟିର ତାରତମ୍ୟ । ଏହାର ବିଚାର ପକ୍ଷେ ବିସ୍ତୃତ । ତୁମର ଓ ମୋର ଜୀବନରେ ଏହାର ଦୃଷ୍ଟାନ୍ତ ଅନେକ ପରିମାଣରେ ସ୍ପଷ୍ଟ ହୋଇଉଠିଛି । ମୁଁ ଯାହାକୁ ପୂଜା କରିବା ପାଇଁ ନୈବେଦ୍ୟ ଅର୍ପଣ କରେ ତୁମେ ତାକୁ ପରିହାସ କର । ତୁମ ଓ ମୋ ଦୃଷ୍ଟିରେଖାର ପାର୍ଥକ୍ୟଟିକୁ ଲକ୍ଷ୍ୟକରି ପିତା ମୋତେ ଏ ଚିତ୍ରପଟଟି ଦାନ କଲାବେଳେ ମୁଁ ତାଙ୍କୁ ପଚାରିଲି ତୁମକୁ କାହିଁକି ସେହି ଦାନରୁ ସେ ବଞ୍ଚିତ କଲେ । ପିତାଙ୍କଠାରୁ ବୁଝିଲି, ତୁମ ଓ ମୋ ଅନ୍ତରର ଗୋଟିଏ ଜିନିଷକୁ ସମାନ ଭାବରେ ଧରି ପାରିବ ନାହିଁ । ରବି ମୋ ଜୀବନର ଉପାସ୍ୟ ଦେବତା ହେବ ବୋଲି ଆଗରୁ ଚିତ୍ରପଟରେ ତାହାର ଛବିକି ମୋତେ ଦେଖେଇଦେଲେ । ସ୍ୱାବୋଲି ଭାବିବ ନାହିଁ ଯେ ରବିକି ମୁଁ ନିଜର କରିଦେଇଛି । ମୁଁ ଅବଳା ବୋଲି ପ୍ରଥମେ ରବିକି ଦେଖି ପୂଜା ଅର୍ପଣ କଲି । ବାସନା ହେଲା—ସେ ହେବ ମୋ ଜୀବନର ସହଯାତ୍ରୀ । ଯଦେ ବସନ୍ତ ଆସିଲା, ତାର ଅଭିଯାନ ହେଲା ମୋରି ଆଡ଼କୁ, ତାକୁ ହଠାତ୍ ଦେଖି ମୁଁ ସଙ୍କୁଚିତ ହୋଇଗଲି । ତାର କିରଣ କିଛି ମାନିଲା ନାହିଁ । ମୋତେ ଅଯାଚିତ ଭାବରେ ସ୍ପର୍ଶକରି ମୋ ମନରେ ଗୋଟାଏ ଉନ୍ମାଦନା ଜନ୍ମାଇ ଦେଲା । ସେହିଦିନୁ ଚିତ୍ର ପୂଜା ଛାଡ଼ିଦେଲି । ରବିକି କଲି ଜୀବନ ପଥର ସହଯାତ୍ରୀ । ଯେତେବେଳେ ଦେଖିଲି ରବି ତୁମ ସଙ୍ଗରେ ଲୁଚକାଳି ଖେଳୁଛି, ଆଲୋକ ଓ ଛାୟାକୁ ଚିତ୍ର ଦେଖାଇ ତୁମକୁ ବିହ୍ୱଳିତ କରି ଦେଉଛି ଓ ତୁମେ ତାକୁ କଳା ମେଘର ଅନ୍ତରାଳରୁ ଧରିପାରୁ ନାହିଁ, ସେତେବେଳେ ରବି ପ୍ରତି ମୋର ଗୋଟାଏ ଅବିଶ୍ୱାସ ଆସିଲା । ରବିର ମୋ ପ୍ରତି ସବୁ ମାୟାମମତା ମଧ୍ୟ ପ୍ରତାରଣା ପରି ବୋଧହେଲା । ସେ ମୋର ପ୍ରଥମ ପୂଜା ଗ୍ରହଣ କଲାବେଳେ ମୋର ଚିର ଜୀବନର ସାଥୀ ହେବ ବୋଲି ପ୍ରତିଶ୍ରୁତି ଦେଇଥିଲା; କିନ୍ତୁ ତୁମ ସଙ୍ଗେ ସେ ଯେପରି ଖେଳିଲା ସେଥିରେ ମୁଁ ବଡ଼ କ୍ଷୁବ୍ଧ ହୋଇଉଠିଲି । ପୁଣି ଦେଖିଲି ରବିରେ ଏହି ଖେଳରେ ତୁମର ଟିକିଏ ଆତ୍ମବିସ୍ମୃତି ଆସିଛି । ମୋର ମନର ଅବସ୍ଥା ସଙ୍ଗେ ତୁମର ଭାବ ମିଳିଲା ନାହିଁ । ତୁମର ଓ ମୋର ଦୃଷ୍ଟି ଭିନ୍ନ ଦିଗରେ ଗଲା । ଏହି ଦୃଷ୍ଟିର ତାରତମ୍ୟ ଆମର ଅନୁଭୂତିରେ ପୁରୁଷର ସ୍ଥାନ ନିର୍ଦ୍ଦେଶ କରିବ ।

ସରସୀ—ତୁମ ଅନୁଭୂତିରେ କଣ ପତନର ଆଶଙ୍କା ନାହିଁ ? ତୁମେ ତ କହୁଛ ରବି ଚଞ୍ଚଳ । ତେବେ ତୁମେ ତାଙ୍କୁ ଧରିବ କିପରି ? ଯଦି ଏପରି ଜାଣିଥିଲ, ତାହାହେଲେ ତାଙ୍କୁ କାହିଁକି ସହଯାତ୍ରୀରୂପେ ବରଣ କରିନେଲ ? ପୁରୁଷର ସ୍ୱାର୍ଥପରତା ରବିଠାରେ କମ୍ ନାହିଁ; କିନ୍ତୁ ସେ ତାକୁ ଅତି ଗୋପନରେ ରଖିଥାଏ । ତୁମେ କଣ ତାର ସ୍ୱାର୍ଥପରତାକୁ ଆଜିଯାଏ ଜାଣିପାରି ନଥିଲ ?

ଶୈବାଳିନୀ—ସରସୀ, ରବିର ମୋ ସଙ୍ଗେ ମିଳନ ମୋତେ ସବୁ ଭୁଲାଇ ଦେଲା । ମୁଁ ଯେତେବେଳେ ତା ପାଖରେ ଅଭିମାନ କରୁଥିଲି ସେତେବେଳେ ସେ ମୋ ଉପରେ ସ୍ୱର୍ଗର ସୁଷମା ଆଙ୍କି ଦେଉଥିଲା । ମୋ ବିରହରେ ସେ ବିରହ ଯକ୍ଷ ପରି ଗିରିଶୃଙ୍ଗରେ ମୋତେ ପ୍ରତୀକ୍ଷା କରୁଥିଲା । ମୁଁ ତାକୁ କଲି ଜୀବନର ଅବଲମ୍ବନ । ଦୁର୍ଦ୍ଦିନରେ ତାରି ବନ୍ଧନ ମୋର ସବୁ ଦୁଃଖକୁ ଏଡ଼ିଦେଲା । ଭାବିଲି ରବି ଅନ୍ତରର ଉଚ୍ଛ୍ୱାସରେ ମୋର ଆଲେଖ୍ୟକୁ କଦାପି ଲୋପ କରି ଦେବ ନାହିଁ । କିନ୍ତୁ ମୋର ଏହି ସରଳ ବିଶ୍ୱାସ ବେଶୀ ଦିନ ରହିପାରିଲା ନାହିଁ । ରବି ନିକଟରେ ଥରେ ଆ ସମର୍ପଣ କରି ଆଉ ମୁଁ ଅନ୍ୟ ଅବଲମ୍ବନ ଧରି ପାରିଲି ନାହିଁ । ମୋ ଅନ୍ତରର ସ୍ୱତଃ ଗୋଟାଏ ବେସୁରା ରାଗିଣୀ ବାଜି ଉଠିଲା । ହୃଦୟର ଅନୁରକ୍ତି କେତେଥର ତା ଆଗରେ ପ୍ରକାଶ କଲି । ସେ ବୁଝିଲା ନାହିଁ । ସେ ହେଲା ବଡ଼ ଚଞ୍ଚଳ ।

ସରସୀ—ଶୈବାଳିନୀ, ପୁରୁଷର ନିର୍ମମ ବ୍ୟବହାର ସହ୍ୟ କରିବା ପାଇଁ କଣ ନାରୀର ସୃଷ୍ଟି ? କେଉଁ ନିୟନ୍ତାଙ୍କର ଆଦେଶରେ ଦୁର୍ବଳା ନାରୀ ଅନ୍ତରକୁ ପୁରୁଷ ଲୁଣ୍ଠନ କରି ଜଗତରେ ବଡ଼ ହେବ ? ଆମ୍ଭର ଗତି ଓ ମୁକ୍ତିରେ ପୁରୁଷର ସ୍ଥାନକୁ ସମୂଳେ ବାଦ୍ ଦେଲେ ଅଯଥାର୍ଥ ହେବ ବୋଲି ମୁଁ ଭାବେ ନାହିଁ । ପୁରୁଷ ଆସି ଆମର ଗତିପଥରେ ଗୋଟାଏ ବିଭ୍ରାନ୍ତି ସୃଷ୍ଟି କରି ଦେଇଥାଏ । ଆମେ ତାକୁ ନୀରବରେ ସହିଯାଉ । ସେଥିରେ ପୁଣି ପୁରୁଷ ହୁଏ ଆମଠାରୁ ବଡ଼ । ଆମ ଅନ୍ତର ବିଦ୍ରୋହୀ ହୋଇଉଠେ । କେହି ସେଥିପ୍ରତି ଦୃକ୍‌ପାତ କରେ ନାହିଁ । ଆମ ଜୀବନର ସରସତା ମରୁଭୂମିର ଘୂର୍ଣ୍ଣିଝଡ଼ରେ ମିଶିଯାଏ । ଅବଳାର ନାମ ସାର୍ଥକ କରି ଅମ ଜୀବନ ଯବନିକାଟି ଖସିପଡ଼େ । ଜଗତ୍ ଆମକୁ ଆଖ୍ୟାଦିଏ ମାୟାବିନୀ ।

କ୍ରମଶଃ—